# କବିଚନ୍ଦ୍ର ଗ୍ରନ୍ଥାବଳୀ





କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ନାଟକ (ସମ୍ପାଦ)

୧- ବନବିହାର *
୨- କୌତୁକ ଚିନ୍ତାମଣି *
୩- ବିଦ୍ୟାବଳୀ
୪- କିଶୋର ଚନ୍ଦ୍ରାନନ ଚମ୍ପୂ *
୫- ଶ୍ରୀ ଗୀତ ଗୋବିନ୍ଦ
୬- ପ୍ରୀତ ସୁଧାକର
୭- ବଂଶୀ ବିଳାସ
୮- ମାନିନୀ
୯- ଲକ୍ଷ୍ମୀ *

# କବିଚନ୍ଦ୍ର ଗ୍ରନ୍ଥାବଳୀ

## ପ୍ରଥମ ଖଣ୍ଡ

କାଳୀଚରଣ ପଟ୍ଟନାୟକ

ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୨

ପ୍ରଥମ ପ୍ରକାଶ
ଧନୁସଂକ୍ରାନ୍ତି
୧୩୭୫ ସାଲ

ମୂଲ୍ୟ—

ବନ୍ଧେଇ-କୋଡ଼ିଏ ଟଙ୍କା

ଅବନ୍ଧା-ସତର ଟଙ୍କା

KABICHANDRA GRANTHABALI

Works of

*Kabichandra Kalicharan Pattanaik*

First volume

First Edition
December 1968

Price

Bound Rs. 20

Unbound Rs. 17

# ଦୁଇ ପଦ

ପ୍ରାୟ ତିରିଶି ବର୍ଷ ତଳର କଥା । ସେତେବେଳେ ଅର୍ଥର ଅଭାବ ଯୋଗୁଁ ଅବସର ବିନୋଦନ ପାଇଁ ସିନେମା କି ଥିଏଟର ଯାଇ ହେଉ ନ ଥାଏ । କଟକ ସହରରେ ରହି, ଅକ୍ଲାନ୍ତ ପରିଶ୍ରମ କରି, ଗୋଟିଏ ଅନୁଷ୍ଠାନକୁ ଗଢ଼ିବାର ଦାୟିତ୍ୱ ପଡ଼ିଥିଲା ମୋ ଉପରେ । ଅବସର ବିନୋଦନ ପାଇଁ ସମୟ ନ ଥିଲା, ଇଚ୍ଛା ଥିଲେ ବି ଅର୍ଥ ନ ଥିଲା; କିନ୍ତୁ, ଦିନେ, କବିଚନ୍ଦ୍ର କାଳୀଚରଣଙ୍କର ନାଟକ 'ଗାର୍ଲସ୍କୁଲ'ର ଖ୍ୟାତି ଶୁଣି ଶୁଣି, ଆଉ ସମ୍ଭାଳି ପାରିଲି ନାହିଁ । କଟକ ସହରର ଗଳି କନ୍ଦି ସବୁଠି 'ଗାର୍ଲସ୍କୁଲ'ର ପ୍ରଶଂସା ଚର୍ଚ୍ଚା ଚାଲିଥାଏ । ସେହିଦିନ ନାଟ୍ୟାଚାର୍ଯ୍ୟ କାଳୀଚରଣଙ୍କୁ ମୁଁ ପ୍ରଥମ ଦେଖିଲି, ତାଙ୍କର 'ଓଡ଼ିଶା ଥିଏଟର୍ସ'ରେ । ଜଣେ ଜଣେ ଲୋକଙ୍କୁ ଦେଖିଲେ ଭଲ ଲାଗେ, ବନ୍ଧୁତା ସ୍ଥାପନ କରିବାକୁ ଇଚ୍ଛା ହୁଏ, କଥାବାର୍ତ୍ତା କରିବାକୁ ମନ ଡାକେ— ଏହାର କାରଣ ନିରୂପଣ କରିବା କଷ୍ଟକର କଥା; କିନ୍ତୁ ଏପରି ହୁଏ । କବିଚନ୍ଦ୍ର କାଳୀଚରଣଙ୍କୁ ପ୍ରଥମ ଦେଖାରୁହିଁ ମୁଁ ଭଲ ପାଇଲି, ଶ୍ରଦ୍ଧା କରି ବସିଲି ।

ଏ ଘଟଣାର ଦୀର୍ଘ ପନ୍ଦର ବର୍ଷ ପରେ ୧୯୫୫ ମସିହାର କଥା । କବିଚନ୍ଦ୍ରଙ୍କ ଘର ସାମନାରେ ମୋର ଇଷ୍ଟଦେବତା ଶ୍ରୀ ଜଗନ୍ନାଥଙ୍କ ମନ୍ଦିର । ସେହି ମନ୍ଦିର ସମ୍ମୁଖରେ ତାଙ୍କ ସହିତ ମୁଁ ଓଡ଼ିଆ ଶିଶୁ-ସାହିତ୍ୟ ଓ ପାଠ୍ୟପୁସ୍ତକ ନେଇ କଥାବାର୍ତ୍ତା ହେଉଥାଏ । କଥାବାର୍ତ୍ତା ଆରମ୍ଭରେ ସେଦିନ କବିଚନ୍ଦ୍ର ତାଙ୍କର ଗତାନୁଗତିକ ସମ୍ବୋଧନ ପରିବର୍ତ୍ତେ ହଠାତ୍ ମୋତେ 'ସାନଭାଇ' ବୋଲି ସମ୍ବୋଧନ କରି ବସିଲେ; ଆଉ ଆନ୍ତରିକ ପ୍ରେରଣାର ବଶବର୍ତ୍ତୀ ହୋଇ ମୁଁ ତାଙ୍କୁ 'ବଡ଼ଭାଇ' ବୋଲି ସେତେ-ବେଳେ ସ୍ୱୀକାର କରି ନେଲି । ସେହିଦିନୁ ତାଙ୍କର ମୋର ସମ୍ପର୍କ ସାନଭାଇ ବଡ଼ଭାଇର ସମ୍ପର୍କ ।

୧୮୯୮ ମସିହାରେ ସେ ଜନ୍ମ—ଏବେ ତାଙ୍କୁ ଏକସ୍ତରୀ ବର୍ଷ ଚାଲିଛି—ମୋଠୁ ଯୁଗେ ବଡ଼ ସେ । କିନ୍ତୁ ମୁଁ ଏବଠୁଁ କର୍ମକ୍ଲାନ୍ତ ଅନୁଭବ କଲିଣି । ଆଜି ଷୋହଳ ଘଣ୍ଟା ପରିଶ୍ରମ କଲେ ଶରୀର ବିଦ୍ରୋହ କରୁଛି । କିନ୍ତୁ ଆଜୀବନ ସାହିତ୍ୟସେବୀ 'ବଡ଼ଭାଇ' ଏ ପର୍ଯ୍ୟନ୍ତ ସେହିପରି ଉତ୍ସାହୀ, ସେହିପରି କାର୍ଯ୍ୟକ୍ଷମ ଅଛନ୍ତି । ଓଡ଼ିଶା ଭିତରେ, ବାହାରେ, କଟକରୁ ଦିଲ୍ଲୀ ପର୍ଯ୍ୟନ୍ତ ବହୁ ସଭା ସମିତିରେ ପ୍ରତିନିଧି ଯୋଗ ଦେଇ ମଧ୍ୟ ସେ କ୍ଲାନ୍ତ ନୁହନ୍ତି । ତାଙ୍କର ସାଧନା ଚାଲିଛି । ତାଙ୍କର ସାଧନା ଫଳାଭୂଇଁ ଓଡ଼ିଶା ପାଇଁ, ଜଗନ୍ନାଥ ତାଙ୍କୁ ଦୀର୍ଘଜୀବୀ କରନ୍ତୁ ।

ସାଧକ ନାଟ୍ୟାଚାର୍ଯ୍ୟ କବିଚନ୍ଦ୍ର କାଳୀଚରଣ ଅସାଧ୍ୟ ସାଧନା କରିଛନ୍ତି । ସାହିତ୍ୟ, ସଙ୍ଗୀତ, ନୃତ୍ୟରେ ମୌଳିକ ଅବଧାନ ପାଇଁ ସେ ଓଡ଼ିଶାର ଜନମାନସରେ ଚିରସ୍ମରଣୀୟ ହୋଇ ରହିବେ । ଆଜି ତାଙ୍କର ସମଗ୍ର ସାହିତ୍ୟିକ କୃତିକୁ ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବାକୁ ଯାଉଥିବାବେଳେ ମୋର ଆନନ୍ଦର ସୀମା ରହୁନାହିଁ; ତାଙ୍କର ସେହି ପ୍ରଥମ 'ସାନଭାଇ' ସମ୍ବୋଧନ କଥା ମୋର ମନେ ପଡ଼ିଯାଉଛି ।

ଧନୁସଂକ୍ରାନ୍ତି
୧୩୭୫

ଅନନ୍ତ ମିଶ୍ର

# ସୂଚୀପତ୍ର





କବିଚନ୍ଦ୍ର

# କାଳୀଚରଣ

## ( ସାହିତ୍ୟିକ ବିଶ୍ଳେଷଣ )

୧୮୯୮ ମସିହା ଡିସେମ୍ବର ତା୨୩ରିଖ (୧୩୦୬ ସାଲ ପୌଷ ବହୁଳ ଅମାବାସ୍ୟା) ଦିନ ଓଡ଼ିଶାର ପୂର୍ବତନ ଗଡ଼ଜାତ ବଡ଼ାମ୍ବାଠାରେ କବିଙ୍କର ଜନ୍ମ । ପିତାଙ୍କ ନାମ ଦୁର୍ଗାଚରଣ,ମାତାଙ୍କ ନାମ ରାଧାମାଳୀ । ପିତାମହ ନିମାଇଁଚରଣ ଥିଲେ ତତ୍‌କାଳୀନ ବଡ଼ାମ୍ବା ରାଜ୍ୟର ଜନୈକ ବିଶିଷ୍ଟ ରାଜକର୍ମଚାରୀ । କବିଙ୍କର ପିତାଥିଲେ ରାଜାଙ୍କର ପରମ ସୁହୃଦ୍ ଏବଂ ଶାସନ ପରାମର୍ଶଦାତା । ଏମାନେ ବାଙ୍କିସ୍ଥ ଚର୍ଚ୍ଚିକା ଠାକୁରାଣୀଙ୍କର ଦେଉଳକରଣ ବଂଶ । ପିତାମହ ନିମାଇଁ ଚରଣଙ୍କର ପ୍ରଗାଢ଼ ପାଣ୍ଡିତ୍ୟ କବିଙ୍କ ପରିବାରରେ ପୁରାତନ ସାହିତ୍ୟ ପ୍ରତି ସୃଷ୍ଟି କରିଥିଲା ଅପରିସୀମ ଆସକ୍ତି । କବିଥିଲେ ଜନ୍ମାନ୍ଧ । ପିତାଥିଲେ କାଳୀପୂଜକ । ଦୈବୀ ଚିକିତ୍ସା ପରେ କାଳୀଚରଣ ଦୃଷ୍ଟିଶକ୍ତି ଲାଭ କରିଥିଲେ । ଗୃହର ବିଳାସ ବିଲୋଳ ପରିବେଶ କବିଙ୍କ ଉପରେ ସେତେ ପ୍ରଭାବ ପକାଇପାରିନଥିଲା; ବରଂ ପିତାମହଙ୍କର ପାଣ୍ଡିତ୍ୟ ତଥା ପିତାଙ୍କର ସଙ୍ଗୀତ ଏବଂ ଅଭିନୟ ଦକ୍ଷତା କବିଙ୍କ ଜୀବନରେ ଆଙ୍କି ପାରିଥିଲା ଏକ ଅଲିଭା ମୁଦ୍ରାଙ୍କ । ପଣ୍ଡିତା ଜନନୀଙ୍କର ସାନିଧ୍ୟ ତଥା ଭକ୍ତି ସାହିତ୍ୟ ପ୍ରତି ଅନୁରକ୍ତି ମଧ୍ୟ କବିଙ୍କୁ କରିଥିଲା ଯଥେଷ୍ଟ ପ୍ରଭାବିତ । ମା କାଳୀଙ୍କ ଦୟାରୁ ସନ୍ତାନଟି ଜନ୍ମ ହୋଇଥିବାରୁ ପିତା ମାତା ଖୁବ୍ ଆନନ୍ଦରେ ତାଙ୍କ ନାମ ରଖିଥିଲେ କାଳୀଚରଣ ।

ଗୁରୁବର୍ଷ, ଗୁରୁମାସ, ଗୁରୁଦିନରେ କାଳୀଚରଣଙ୍କର ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲା । ତାଙ୍କର ବାଲ୍ୟଗୁରୁ ହେଉଛନ୍ତି ନରସିଂହପୁର ଗଡ଼ଜାତର ପଣ୍ଡିତ ଶ୍ରୀ ଆର୍ତ୍ତତ୍ରାଣ ମିଶ୍ର । ବାଲ୍ୟକାଳରୁ କାଳୀଚରଣଙ୍କର ସାହିତ୍ୟ ପ୍ରତି ଅନୁରକ୍ତି ଲକ୍ଷ୍ୟକରି, ପିତାମହ ନିମାଇଁ ଚରଣ ତାଙ୍କୁ ଅମରକୋଷ ପଢ଼ାଇବାର ବ୍ୟବସ୍ଥା କରିଥିଲେ । ତା'ପରେ କବି ଫେରିଆସିଥିଲେ ବଡ଼ାମ୍ବା ଗଡ଼କୁ । ସେ ସମୟରେ ବଡ଼ାମ୍ବାରେ ଦୀର୍ଘ ୨୧ଦିନ ଧରି ଚନ୍ଦନଯାତ୍ରା ହେଉଥାଏ । ତତ୍‌କାଳୀନ ସଙ୍ଗୀତପ୍ରିୟ ରାଜା ବିଶ୍ୱମ୍ବର ବୀରବର ମଙ୍ଗରାଜ ମହାପାତ୍ରଙ୍କ ସହାୟତାରେ ସଙ୍ଗୀତ ଓ ନୃତ୍ୟର ନାହିଁ ନ ଥିବା ବ୍ୟବସ୍ଥା ସମଗ୍ର ବଡ଼ାମ୍ବା ରାଜ୍ୟର ପ୍ରଜାଙ୍କୁ କରିଥାଏ ଆମୋଦିତ । ପିତାମହ ନିମାଇଁ ଚରଣଙ୍କ ରଚିତ ସଙ୍ଗୀତର ଭୂୟସୀ ଆଦୃତି ଓ ଉଦ୍ଭଟ କବି ପରିବାରକୁ ସମଗ୍ର ରାଜ୍ୟରେ କରିଥାଏ ସୁପରିଚିତ । ସର୍ବପ୍ରଥମେ ରାଜା ବଡ଼ାମ୍ବା ଗଡ଼କୁ ଗ୍ରାମଫୋନ ଆଣିଥାନ୍ତି । ଖାଲୁମିଆଁ (ଖାନ୍ ମହମ୍ମଦ)ଙ୍କର ଗୀତ—"ଆସୁଛନ୍ତି ବ୍ରଜବାସୀ ଧୀରେ ଧୀରେ ଚାଲି ଚାଲି" ବିଦ୍ୟାବୁଦ୍ଧି-ବୟସ ନିର୍ବିଶେଷରେ ସମସ୍ତଙ୍କର ହୋଇଥାଏ ପ୍ରିୟ ସଙ୍ଗୀତ । କାଳୀଚରଣ ମଧ୍ୟ ସେହି ଗୀତଟିକୁ ଅନୁକରଣ କରି ଲଳିତ କଣ୍ଠରେ ଗାଇପାରୁଥାନ୍ତି । ସେତେବେଳକୁ ତାଙ୍କର ବୟସ ମାତ୍ର ଆଠ ବର୍ଷ । ବଡ଼ାମ୍ବା ମଧ୍ୟଭର୍ଣ୍ଣାକୁଲାର ସ୍କୁଲରେ କିଛିକାଳ ପଢ଼ିବା ପରେ ବାଙ୍କୀ ମଧ୍ୟଇଂରାଜୀ ବିଦ୍ୟାଳୟରେ ତାଙ୍କ ନାମ ଲେଖାଗଲା ।

ବାଙ୍କୀରେ ଅପର ପ୍ରାଇମେରୀ ଫାଷ୍ଟକ୍ଲାସ୍ ଅର୍ଥାତ୍ ଚତୁର୍ଥ ଶ୍ରେଣୀର ଛାତ୍ର ଥିଲାବେଳେ କାଳୀଚରଣଙ୍କ କବି ହୋଇଥିଲା ଉନ୍ମେଷ । ସେ ଲେଖିଥିଲେ:—

"ଦେବୀ ଗୋ, ପରମାନନ୍ଦ ଦାୟିନୀ
ପଦ୍ମଗନ୍ଧ ପ୍ରସୂନ-ମାଳିନୀ ମା ଶ୍ମଶାନ ବିଳାସିନୀ
କରି ଦୟା ଦିନେ ସିଂହବାହିନୀ, ହର-ହୃଦୟ-ପରି-ଚାରିଣୀ" ।

( ଦୁଇ )

କବି କାଳୀଚରଣ ଥିଲେ ଜନୈକ ମେଧାବୀଛାତ୍ର । ସାହିତ୍ୟ ବ୍ୟତୀତ ଅନ୍ୟ ବିଷୟମାନଙ୍କରେ ମଧ୍ୟ ସେ ଥିଲେ ପାରଙ୍ଗମ । ତେଣୁ ସବୁ ଶିକ୍ଷକଙ୍କର ସେ ହୋଇପାରିଥିଲେ ପ୍ରିୟପାତ୍ର । ପ୍ରଧାନ ଶିକ୍ଷକ ୬ ରଘୁନାଥ ରାୟ ଥିଲେ ଏକାଧାରରେ କଳାପ୍ରେମୀ ଓ ବେହେଲାବାଦକ । ସେତେବେଳେ ବାଙ୍କୀରେ ସର୍ବପ୍ରଥମେ ଅଭିନୀତ ହେଉଥାଏ ରାମଶଙ୍କରଙ୍କର 'କାଞ୍ଚିକାବେରୀ' ନାଟକ । ତାହାର ଅନୁକରଣରେ ଛାତ୍ର କାଳୀଚରଣ ମଞ୍ଚସ୍ଥ କରାଇଥିଲେ 'ବାବାଜୀ' ନାଟକ । ଅବଶ୍ୟ ଏଥିପାଇଁ ତାଙ୍କର ସହାଧ୍ୟାୟୀମାନେ ସହାୟକ ହୋଇଥିଲେ । ଅଖାଟଣା ମଞ୍ଚଉପରେ ଯୋରଷ ଗୁଲ ଆଲୁଅରେ ନାଟକଟି ଅଭିନୀତ ହୋଇଥିଲେ ମଧ୍ୟ ଗ୍ରାମବାସୀଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ତାପରେ ତାଙ୍କରି ପ୍ରଚେଷ୍ଟାରେ ବାଙ୍କୀରେ ମଞ୍ଚସ୍ଥ ହୋଇଥିଲା ପଦ୍ମନାଭ ନାରାୟଣ ଦେବଙ୍କ ରଚିତ "ବାଣଦର୍ପଦଳନ" । କବିଙ୍କର ବାଲ୍ୟବନ୍ଧୁ ସୁବର୍ଣ୍ଣପୁରର ୬ ବୈଷ୍ଣବ ଚରଣ ତ୍ରିପାଠୀ ଯେ ଥିଲେ ଜଣେ ସୁଗାୟକ, ସେ କବିଙ୍କୁ ଉପରୋକ୍ତ ନାଟକ ଦୁଇଟିକୁ ମଞ୍ଚସ୍ଥ କରିବାରେ ହୋଇଥିଲେ ପ୍ରଧାନ ସହାୟକ ।

ବହୁ ସାଂସ୍କୃତିକ କାର୍ଯ୍ୟକଳାପରେ ଅଂଶ ଗ୍ରହଣ କରି ମଧ୍ୟ ଶିକ୍ଷାରେ ସେ ଆଦୌ ଅବହେଳା ପ୍ରଦର୍ଶନ କରୁନଥିଲେ । ବାଙ୍କୀରୁ କୃତିତ୍ୱ ସହକାରେ ମାଇନର ପାଶ କଲାପରେ ଖୋର୍ଦ୍ଧା ହାଇସ୍କୁଲରେ ତାଙ୍କର ନାମ ଲେଖାଗଲା । ସେତେବେଳକୁ କାଳୀଚରଣଙ୍କ ବୟସ ମାତ୍ର ଚଉଦବର୍ଷ । ପିତୃବ୍ୟ ୬କ୍ଷେତ୍ର ମୋହନ ପଟ୍ଟନାୟକଙ୍କ ପାଖରେ ତାଙ୍କୁ ରହିବାକୁ ପଡ଼ିଲା । ସେତେବେଳେ ଖୋର୍ଦ୍ଧା ହାଇସ୍କୁଲର ପ୍ରଧାନ ଶିକ୍ଷକ ଥା'ନ୍ତି ମହେନ୍ଦ୍ରନାଥ ମଜୁମଦାର ଓ ସେକେଣ୍ଡ ପଣ୍ଡିତ ଥାନ୍ତି ପଣ୍ଡିତ କୃପାସିନ୍ଧୁ ହୋତା । ଖୋର୍ଦ୍ଧା ନିକଟସ୍ଥ ଗୁରୁଜଙ୍ଗ ଗ୍ରାମରେ ସ୍ୱର୍ଗତଃ ଗୋବିନ୍ଦ ନନ୍ଦଙ୍କର ଗୋଟିଏ ଗୋଟି-ପୁଅ ଆଖଡ଼ା ଦଳ ଥାଏ । କବି ସେହି ଆଖଡ଼ା ସହିତ ରଖିଥିଲେ ଘନିଷ୍ଠ ସମ୍ପର୍କ । ପିତୃବ୍ୟ କ୍ଷେତ୍ରମୋହନ ପଟ୍ଟନାୟକଙ୍କର କଠିନ ନିର୍ଦ୍ଦେଶନା ସତ୍ତ୍ୱେ କାଳୀଚରଣ ଲୁଚିକରି ଆଖଡ଼ାକୁ ପଳାଉଥିଲେ । ସେଥିଯୋଗୁଁ ଅବଶ୍ୟ ତାଙ୍କୁ ତାଡ଼ନା ଓ ଲାଞ୍ଛନା ସହ୍ୟ କରିବାକୁ ପଡ଼ୁଥିଲା; କିନ୍ତୁ କଳାର ଆକର୍ଷଣ ନିକଟରେ ପିତୃବ୍ୟଙ୍କର ତାଡ଼ନା ଓ ଲାଞ୍ଛନା ହାରି ମାନିଥିଲା । ଗୁରୁ ବୈଦ୍ୟନାଥ ମିଶ୍ର (ଅବସର ପ୍ରାପ୍ତ ଆଇ: ଏ: ଏସ୍.) ଙ୍କ ଠାରୁ ସେ ବେହେଲା ଶିକ୍ଷା କରିଥିଲେ । ସ୍ୱର୍ଗତଃ ସୁଗାୟକ ବାସୁଦେବ ମହାପାତ୍ରଙ୍କ ଠାରୁ ଦୀର୍ଘ ଚାରିବର୍ଷ ପର୍ଯ୍ୟନ୍ତ ତାଙ୍କୁ ସଙ୍ଗୀତ ଶିକ୍ଷା କରିବାର ସୁଯୋଗ ମିଳିଥିଲା । ପ୍ରଥମେ କବି ଶୃଙ୍ଗାରଧର୍ମୀ ସଙ୍ଗୀତ ରଚନା କରୁଥିଲେ; କିନ୍ତୁ ପଣ୍ଡିତ ହୋତା ତାଙ୍କୁ ପ୍ରକୃତି ବର୍ଣ୍ଣନା କରିବାକୁ ପ୍ରବର୍ତ୍ତାଇଥିଲେ । ବାଲ୍ୟ-ସୁଲଭ ମଧୁର କଣ୍ଠରେ ତାଙ୍କ ରଚିତ ସଙ୍ଗୀତ ଶ୍ରୋତାମାନଙ୍କୁ କରିପାରୁଥିଲା ମନ୍ତ୍ରମୁଗ୍ଧ । ସେତେବେଳେ ଖୋର୍ଦ୍ଧା ହାଇସ୍କୁଲରୁ 'ଉଦ୍ୟମ' ନାମରେ ଗୋଟିଏ ମାସିକ ପତ୍ରିକା ପ୍ରକାଶ ପାଉଥାଏ । ସେଥିରେ ନିୟମିତ ଭାବେ ଲେଖୁଥାନ୍ତି କବି କାଳୀଚରଣ । ସ୍କୁଲର ପ୍ରାୟ ସମସ୍ତ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ଅଂଶ ଗ୍ରହଣ କରୁଥାନ୍ତି । ବିଶେଷତଃ ହାଇସ୍କୁଲର ପୁରସ୍କାର ବିତରଣୀ ସଭାରେ ହୋଇଥିବା କାମପାଳ ମିଶ୍ରଙ୍କର 'ସୀତା ବିବାହ' ନାଟକରେ କବି ପରଶୁରାମ ଭୂମିକାରେ ଅବତୀର୍ଣ୍ଣ ହୋଇ, ଜଣେ ଉତ୍କୃଷ୍ଟ ଅଭିନେତାର ନୈପୁଣ୍ୟ ଓ ପାଟବ ପ୍ରଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିପାରି ଥିଲେ ।

୧୯୧୭ ମସିହାରେ କାଳୀଚରଣ ଖୋର୍ଦ୍ଧା ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କଲାପରେ ରେଭେନ୍ସା କଲେଜରେ ତାଙ୍କର ନାମ ଲେଖାଗଲା । ଦେଓ୍ୱାନ ଘରେ ଜନ୍ମ ହୋଇଥିବାରୁ ଛାତ୍ରଜୀବନରେ ଅଭାବ କ'ଣ ତାଙ୍କୁ ଜଣା ନଥିଲା; କିନ୍ତୁ କାଳର କୁଟିଳ ଗତି ସମକ୍ଷରେ ମଣିଷ ଯୁଗେ ଯୁଗେ ହୁଏ ପରାହତ । ମଣିଷର ସୁନେଲି ସ୍ୱପ୍ନକୁ କାଳର କରାଳ ପ୍ରଭାବ କରେ ବିପର୍ଯ୍ୟସ୍ତ, ଏହା କେହି କେବେ ଅସ୍ୱୀକାର କରିପାରିବେ ନାହିଁ । ଦୁନିଆଁରେ ଉଚ୍ଚ ଆଶା ବା ନରଖେ କିଏ ? କାଳୀଚରଣ ସେମିତି ଉଚ୍ଚ ଆଶାରେ ଆଶାୟୀ ହୋଇ ଆରମ୍ଭ କରିଥିଲେ ତାଙ୍କର ଉଚ୍ଚଶିକ୍ଷା; କିନ୍ତୁ ପିତାଙ୍କର ଅକାଳମୃତ୍ୟୁ (୧୯୧୯ ଡିସେମ୍ବର) ତାଙ୍କ ଉଚ୍ଚଶିକ୍ଷା ସମକ୍ଷରେ ପକାଇଥିଲା ଏକ ଦୀର୍ଘ ପୂର୍ଣ୍ଣଚ୍ଛେଦ । ତୃତୀୟ ବାର୍ଷିକ କଳାରୁ କବିଙ୍କୁ ଉଚ୍ଚଶିକ୍ଷା ଇତିଶ୍ରୀ କରିବାକୁ ପଡ଼ିଥିଲା । ଡକ୍ଟର ହରେକୃଷ୍ଣ ମହତାବ, ଡକ୍ଟର କରୁଣାକର କର, ରାମଚନ୍ଦ୍ର ମହାପାତ୍ର, ମନମୋହନ ଘୋଷ ଇତ୍ୟାଦି ହେଉଛନ୍ତି କବିଙ୍କର ସହାଧ୍ୟାୟୀ । କଲେଜ ଜୀବନରେ ଓସ୍ତାଦ୍ ମାଧବରାଓ ପ୍ରମୁଖଙ୍କଠାରୁ ସେ ସଙ୍ଗୀତ ଶିକ୍ଷା କରିବାର ସୁଯୋଗ ମଧ୍ୟ ପାଇଥିଲେ ।

ଏହାପରେ ଆରମ୍ଭହେଲା କବିଙ୍କର ଚାକିରି ଜୀବନର ପ୍ରଥମ ଅଧ୍ୟାୟ । ପୂର୍ବତନ ଗଡ଼ଜାତ ଖଣ୍ଡପଡ଼ାରେ ସ୍କୁଲ୍ ସମୂହର ପରିଦର୍ଶକ (ସବ୍‌ଇନ୍‌ସପେକ୍ଟର ଅଫ୍ ସ୍କୁଲ୍‌ସ୍) ହିସାବରେ ତାଙ୍କର ଚାକିରି ଆରମ୍ଭ । ବେତନ ମାତ୍ର ପଚିଶ ଟଙ୍କା । ଶ୍ରୀରାମଚନ୍ଦ୍ର ମର୍ଦ୍ଦରାଜ ଭ୍ରମରବର ରାୟ ସେତେବେଳେ ଥା'ନ୍ତି ଖଣ୍ଡପଡ଼ାର ରାଜାସାହେବ । କିଛି ଦିନ ପାଇଁ ଅବଶ୍ୟ ସେହି ପରାଧୀନ କର୍ମସଂସ୍ଥାନ କବିଙ୍କ ମନରେ ସୃଷ୍ଟି କରିଥିଲା ବୀତରାଗ; କିନ୍ତୁ ମଣିଷ ହେଉଛି ପରିସ୍ଥିତିର ଦାସ । ପରିସ୍ଥିତିର ଇଙ୍ଗିତରେ ତା'ର ଗତି ନିୟନ୍ତ୍ରିତ । ତେଣୁ କିଛିଦିନ ଖଣ୍ଡପଡ଼ା ଗଡ଼ରେ ତାଙ୍କୁ ଅବସ୍ଥାନ କରିବାକୁ ପଡ଼ିଥିଲା । ସେତେବେଳେ ରାସ୍ତାପାଇଁ ଯାନବାହନର କୌଣସି ବନ୍ଦୋବସ୍ତ ନ ଥିଲା । ତେଣୁ କାଳୀଚରଣଙ୍କୁ ହାତୀଉପରେ ଚଢ଼ି ସ୍କୁଲ ପରିଦର୍ଶନ କରିବାକୁ ପଡୁଥିଲା । ତାଙ୍କୁ ରାଜାଙ୍କ ତରଫରୁ ଯେଉଁ ହାତୀଟି ମିଳିଥିଲା ତା'ର ନାମ ଥିଲା ଚଞ୍ଚଳପ୍ୟାରି ଓ ମାହୁନ୍ତର ନାମଥିଲା ସହଦେବ ଜୟସିଂହ । ରଘୁଆ ନାମକ ଜଣେ ଗିନିବାଦକ ଥିଲା ମାହୁନ୍ତ ସାଙ୍ଗରେ ମେଣ୍ଟ । ଚତୁର୍ଭୁଜ ମିଶ୍ର, ଯେ ଥିଲେ ତାଙ୍କ ଅଧୀନରେ ଇନସ୍‌ପେକଟିଂ ପଣ୍ଡିତ, ବେହେଲା ବଜାଇବାରେ ସେ ଥିଲେ ପାରଙ୍ଗମ । ଜୟସିଂହ ଭଲ ଖଞ୍ଜଣି ବଜାଇ ପାରୁଥିଲେ । ଅତଏବ ରାସ୍ତାକାଳରେ କାଳୀଚରଣ ତାଙ୍କର ସୁଲଳିତ କଣ୍ଠରେ ଗାଉଥିଲେ ଓ ଅନ୍ୟ ତିନି ଜଣ ବାଦ୍ୟ ସଂଯୋଗ କରୁଥିଲେ । ବାଟରେ ପାରିଧି କରିବାର ସୁଯୋଗ ମଧ୍ୟ ମିଳୁଥିଲା । ଖଣ୍ଡପଡ଼ା ଅବସ୍ଥାନ କାଳରେ ତାଙ୍କର କବିତ୍ୱରେ ପ୍ରୀତ ହୋଇ ଯାବତୀୟ ଖର୍ଚ୍ଚ ରାଜା ନିଜେ ବହନ କରୁଥିଲେ । ରାଜାଙ୍କୁ ତତ୍‌କାଳୀନ ରୀତି ଅନୁଯାୟୀ କବି ବହୁ ସଙ୍ଗୀତ ଉପହାର ଦେଇ ଶତାଧିକ ଟଙ୍କା ଓ ପାଟ ଯଥା ଇତ୍ୟାଦି ପୁରସ୍କୃତ ହୋଇଥିଲେ । ସେହି ସଙ୍ଗୀତ ମାନଙ୍କ ମଧ୍ୟରୁ ନିମ୍ନରେ ଗୋଟିଏ ସଙ୍ଗୀତର କିୟଦଂଶ ଉଦ୍ଧାର କରାଗଲା ।

"ସୁଧା ସିନ୍ଧୁରେ ! କାହିଁ ଲୁଚିଲୁ ଧନ ପୂର୍ଣ୍ଣ ମୁଖଇନ୍ଦୁ
× × × × × ×
ରତି ପ୍ରାନ୍ତେ ଶ୍ରାନ୍ତେ ସେତେବେଳେ ଗଣ୍ଡ ଯୁଗ ତନ୍ତ୍ର ଥାଇ ଝାଳେ
ଶତ୍ରି ହିଏ ତୋ ଚିବୁକେ ହେଲେ ରାମ କାମ-ମାନହାରି ଗଜମୋତି ବିନ୍ଦୁ ।
ସ୍ୱପ୍ନେ ଜାଗରଣେ ହୋଇ ବଣା କ୍ଷଣେ କ୍ଷଣେ ଦିଶୁ ବିଚକ୍ଷଣା
କଣାଠାରୁ ମୁଁ ଅଧିକେ କଣା
ରାମଚନ୍ଦ୍ରନୃପ ଭକ୍ଷେ ମନେଥିବ ବନ୍ଧୁ ।"

ଦୁଇ ବର୍ଷ ପରେ ରାଜାଙ୍କ ମୃତ୍ୟୁ ହେବାରୁ କବିଙ୍କୁ ମନ ଦୁଃଖରେ ଖଣ୍ଡପଡ଼ା ଛାଡ଼ିବାକୁ ପଡ଼ିଥିଲା ।

ଖଣ୍ଡପଡ଼ା ତ୍ୟାଗ କଲା ପରେ ଗଞ୍ଜାମରେ କାଳୀଚରଣଙ୍କୁ ସ୍କୁଲ୍ ପରିଦର୍ଶକ ହିସାବରେ ନିଯୁକ୍ତି ମିଳିଥିଲା । ବେତନ ଥିଲା ମାସିକ ଏକଶହ ଟଙ୍କା । ଗଞ୍ଜାମର ଜଳବାୟୁ ତାଙ୍କ ସ୍ୱାସ୍ଥ୍ୟର ପ୍ରତିକୂଳ ହେବାରୁ ସେ ଗଞ୍ଜାମରୁ କଟକ ଫେରି ଆସିଥିଲେ । ସେତେବେଳକୁ ଉତ୍କଳ ଦୀପିକାର ସଂପାଦକ ରାୟବାହାଦୂର ସୁଦାମ ଚରଣ ନାୟକଙ୍କର କାଳ ହୋଇ ଯାଇଥାଏ । ତେଣୁ କାଳୀଚରଣଙ୍କୁ ସେହି ପତ୍ରିକାର ସମ୍ପାଦକ ଓ ପ୍ରକାଶକ ଭାବେ ନିଯୁକ୍ତି ମିଳିଲା । ତାଙ୍କର ସଂପାଦନା-ଗତ ନୈପୁଣ୍ୟ ପ୍ରତି ସେ ସମୟର ବୁଦ୍ଧିଜୀବୀ ମାନେ ସନ୍ଦେହ ପ୍ରକାଶ କରିଥିଲେ; କିନ୍ତୁ ପରେ ପ୍ରାୟ ସମସ୍ତଙ୍କର ସନ୍ଦେହ ଅପସାରିତ ହୋଇଥିଲା । ଉତ୍କଳ ଗୌରବ ମଧୁସୂଦନ ନିଜେ ସାକ୍ଷାତ୍ ଦେଇ କୁଶଳୀ ସମ୍ପାଦକ କାଳୀଚରଣଙ୍କୁ ଆଶୀର୍ବାଦ କରିବାକୁ ଭୁଲି ନ ଥିଲେ । ତାଙ୍କର ଦାୟିତ୍ୱପୂର୍ଣ୍ଣ ସମ୍ପାଦନାରେ ତତ୍‌କାଳୀନ ପ୍ରାଚୀନ ସାହିତ୍ୟର ବାହକ 'ଉତ୍କଳ ଦୀପିକା'ର ନବୀକରଣ କିୟଦଂଶରେ ସମ୍ଭବ ହୋଇ ପାରିଥିଲା । ତାଙ୍କର ସମ୍ପାଦନାଗତ ପାଟବଯୋଗୁଁ 'ମୁକୁର'ର ସମ୍ପାଦକ ସ୍ୱର୍ଗତଃ ବ୍ରଜସୁନ୍ଦର ଦାସ ତାଙ୍କୁ ମଧ୍ୟ ସହସମ୍ପାଦକ ରୂପେ ଗ୍ରହଣ କରିଥିଲେ । ସେତେବେଳେ କାଳୀଚରଣଙ୍କର ବେତନଥିଲା ମାତ୍ର ଚାଳିଶ ଟଙ୍କା ।

କେବଳ ଓଡ଼ିଶା କାହିଁକି, ସମଗ୍ର ଭାରତୀୟ ସାହିତ୍ୟର ଇତିହାସ ପ୍ରତି ଦୃକ୍‌ପାତ କଲେ ଜଣାଯାଏ ଯେ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ରାଜନ୍ୟବର୍ଗଙ୍କର ବଦାନ୍ୟତା ଓ ସାହିତ୍ୟ ପ୍ରୀତି, ସାହିତ୍ୟିକମାନଙ୍କୁ ଯୋଗାଇ ପାରିଥିଲା ଯଥେଷ୍ଟ

ପ୍ରେରଣା । ଆଲୋଚ୍ୟ କବି ଗାୟକପିତାଙ୍କର ସୁନାମ, ସ୍ୱକୀୟ ଅବିକଳ୍ପ ସାରଲ୍ୟ, ସୌଜନ୍ୟ ତଥା ବିଦ୍ୱତ୍ତାକୁ ପୁଞ୍ଜି କରି ତତ୍‌କାଳୀନ ଗଡ଼ଜାତ ରାଜାମାନଙ୍କର ସ୍ନେହାସ୍ପଦ ହୋଇ ପାରିଥିଲେ । ବିଶେଷତଃ ତାଙ୍କର ସଙ୍ଗୀତ ଓ ନାଟକ ରଚନା ଯୋଗୁଁ ସେ ଅଧିକ ପ୍ରସିଦ୍ଧି ଓ ଲୋକପ୍ରିୟତା ହାସଲ କରିପାରିଥିଲେ । ୧୯୨୨ ମସିହାରେ ସମ୍ପାଦକ ବୃତ୍ତିରୁ ଅବ୍ୟାହତି ନେଇ କବି କିଛିଦିନ ପାଇଁ ମୟୂରଭଞ୍ଜ ମହାରାଜା ପ୍ରତାପ ଚନ୍ଦ୍ର ଭଞ୍ଜଙ୍କ ଅଧୀନରେ ନିଯୁକ୍ତି ଗ୍ରହଣ କରିଥିଲେ ।

ଯୁଗେ ଯୁଗେ ପରିବେଶ ମନୀଷ ଉପରେ ପକାଇଥାଏ ପ୍ରସାରି ପ୍ରଭାବ । କବି ଜନ୍ମରୁ ଐଶୀ ପ୍ରତିଭାର ଅଧିକାରୀ ହୋଇଥିଲେ ମଧ୍ୟ, ପରିବେଶର ସହଯୋଗରେ ଏହି ପ୍ରତିଭା ହୁଏ ବଳିଷ୍ଠ, ଶାଳୀନତାସମ୍ପନ୍ନ । ଯଦି ସେକ୍‌ସ-ପିଅର, ରବୀନ୍ଦ୍ର ନାଥ, ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ ଇତ୍ୟାଦି ଉପଯୁକ୍ତ ପରିବେଶର ସାନିଧ୍ୟ ପାଇ ନଥାନ୍ତେ ତାହାହେଲେ ତାଙ୍କ ସୃଷ୍ଟ ସାହିତ୍ୟ ମନୀଷି ମନକୁ ଏତେ ଆଲୋଡ଼ିତ କରି ପାରୁନଥାନ୍ତା । କବି କାଳୀଚରଣ ସେହିପରି ମୟୂରଭଞ୍ଜର ତତ୍‌କାଳୀନ ରାଜକୀୟ ପ୍ରଭାବ ଏଡ଼ାଇ ପାରିନଥିଲେ ।

ମହାରାଜାଙ୍କର ସଙ୍ଗୀତ ତଥା ଓଡ଼ିଆ ନାଟକ ପ୍ରତି ଅସରନ୍ତି ଆସକ୍ତି ତାଙ୍କ ମନରେ ନାଟକ ରଚନା ପାଇଁ ପ୍ରେରଣାର ବୀଜବପନ କରିଥିଲା । ରାଜକୀୟ ସାହାଯ୍ୟ ଓ ସହାନୁଭୂତି ତଥା କାଳୀଚରଣଙ୍କର ପ୍ରଗାଢ଼ ପ୍ରଚେଷ୍ଟା ବଳରେ ସେଠାରେ ଏକ ନାଟ୍ୟଦଳ ଜନ୍ମଲାଭ କରିଥିଲା । ଏହି ଦଳଦ୍ୱାରା ବାରିପଦାରେ 'ବାଂଶରୀ ବିଳାସ', 'ମାନିନୀ', 'ମୃଗୟା', 'ଶକୁନ୍ତଳା' ଇତ୍ୟାଦି ନାଟକ ସର୍ବସାଧାରଣଙ୍କ ମନରେ ପୁଲକ ଓ ଆଲୋକ ସଞ୍ଚାର କରି ଥରେ ନୁହେଁ, ଏକାଧିକବାର ହୋଇଥିଲା ଅଭିନୀତ ।

ମୟୂରଭଞ୍ଜର ଛଉନୃତ୍ୟ ଗୀତ, ନୃତ୍ୟ ଓ ଅଭିନୟର ବିଶେଷତ୍ୱ ଯୋଗୁ କେବଳ ଆଜିନୁହେଁ ବହୁଦିନରୁ ଓଡ଼ିଶା ଓ ପଡ଼ୋଶୀ ବାସିନ୍ଦାଙ୍କର ଚିତ୍ତବିନୋଦନ କରି ଆସିଅଛି । କବି କାଳୀଚରଣଙ୍କର ସହାୟତାରେ ଓଡ଼ିଶୀ ନୃତ୍ୟ ଓ ଅଭିନବ ସଙ୍ଗୀତ ଏଥିରେ ଅବତାରଣା କରାଯାଇ ପାରିଥିଲା । ଦକ୍ଷିଣ ସାହି ଛଉନାଚଦଳ କବିଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସି ବହୁ ନୂତନତାର ଅନୁସାରୀ ହୋଇପାରିଥିଲେ । "ସହିରେଗୃହିଁ ନବକିଶୋର ସୁଷମାରେ" ଏବଂ "ଆଉ ଝୁରି ହେଲେ ଥାଏ କି ସେ କଥା, ଆରେ ରସଲତା" ପ୍ରଭୃତି ଓଡ଼ିଶୀ ଗୀତ ନୃତ୍ୟସହିତ ଆଜି ପର୍ଯ୍ୟନ୍ତ ମୟୂରଭଞ୍ଜର ଛଉଦଳରେ ଜୀବିତ ରହିଛି ଓ ଅନାଗତ ବହୁବର୍ଷ ପର୍ଯ୍ୟନ୍ତ ରହିଥିବ ।

ମୟୂରଭଞ୍ଜ ପରିତ୍ୟାଗ କରି କାଳୀଚରଣ ଆଗ୍ରା ଯାତ୍ରା କରିଥିଲେ । ସେଠାରେ ପ୍ରସିଦ୍ଧ ଠୁମୁରୀ ଗାୟିକା ଅଗ୍ରାଓ୍ୱାଲି ମଲ୍‌କାଜାନଙ୍କଠାରୁ ସେ ଠୁମୁରି ଗୀତ ଓ ଭାବଶିକ୍ଷା କରିଥିଲେ । କିଛିଦିନ ସେଠାରେ ରହିଲା ପରେ ତାଙ୍କୁ ଗୟା ଯିବାକୁ ପଡ଼ିଥିଲା । ଗୟାରେ ସେ ରାମ୍ପୁ ମହାରାଜଙ୍କର Court Musician ବନଓ୍ୱାରୀ ମିଶ୍ରଙ୍କଠାରୁ ସଙ୍ଗୀତ ଶିକ୍ଷା କରିବାର ସୁଯୋଗ ପାଇଥିଲେ । ୧୯୨୩ ମସିହାରେ ଖୋର୍ଦ୍ଧା ନିକଟସ୍ଥ ଗୁରୁଜଙ୍ଗ ଗ୍ରାମନିବାସୀ ଅବସରପ୍ରାପ୍ତ ଡିଷ୍ଟ୍ରିକ୍ଟ ସବରେଜିଷ୍ଟ୍ରାର ଶ୍ରୀ ରାଧାନାଥ ମହାନ୍ତିଙ୍କ କନ୍ୟା ସୁଗାନ୍ଧୀଙ୍କ ସହିତ କବିଙ୍କର ବିବାହ ହୋଇଥିଲା । ତା'ପରେ ତାଙ୍କୁ ପୁରୀରେ ଅବସ୍ଥାନ କରିବାକୁ ପଡ଼ିଲା । ସେତବେଳେ ବାମଣ୍ଡାର ରାଜକୁମାର ମୋହିନୀ ମୋହନ ଦେବ (ରାମଚନ୍ଦ୍ରଦେବ) ପୁରୀ ରାଜା (ମୁକୁନ୍ଦ ଦେବ)ଙ୍କର ପୋଷ୍ୟପୁତ୍ର ହୋଇ ଆସିଥାନ୍ତି । ପାଟ ମହାଦେଈ ରହସ୍ୟ ମଣ୍ଡଳୀ ମଧ୍ୟ କବିଙ୍କର ଥିଲେ ଗୁଣୀ । କାଳୀଚରଣଙ୍କର ସଙ୍ଗୀତ ପ୍ରୀତି ଓ କାର୍ଯ୍ୟଦକ୍ଷତା ଲକ୍ଷ୍ୟକରି ରାଜା ତାଙ୍କୁ Court Musician ଓ Confidential Adviser ରୂପେ ନିଯୁକ୍ତି ଦେଇଥିଲେ । ସେତେବେଳେ temple manager ଥାଆନ୍ତି ରାୟବାହାଦୂର ରାଜକିଶୋର ଦାସ । ପଣ୍ଡିତ ସଦାଶିବ କାବ୍ୟକଣ୍ଠଙ୍କ ପ୍ରତିଷ୍ଠିତ ସାପ୍ତାହିକ ପତ୍ରିକା 'ପୁରୀବାସୀ' କବିଚନ୍ଦ୍ର କାଳୀଚରଣଙ୍କ ବଳିଷ୍ଠ ସମ୍ପାଦନାରେ ଆତ୍ମପ୍ରକାଶ କରୁଥାଏ କବିଙ୍କ ନିଜ ଛାପାଖାନାରୁ । ଓଡ଼ିଶାରେ ପ୍ରଥମ ପ୍ରଚେଷ୍ଟାରୂପେ 'ସଙ୍ଗୀତ ପ୍ରଭା' ନାମକ ଖଣ୍ଡିଏ ସଙ୍ଗୀତ ମାସିକ ପତ୍ରିକା ମଧ୍ୟ ପ୍ରକାଶ ପାଉଥାଏ, କବିଙ୍କ ଦ୍ୱାରା । ଓଡ଼ିଶାର ବରିଷ୍ଠ ସଂସ୍କୃତ ପଣ୍ଡିତ କବିଙ୍କ ସ୍ୱର୍ଗୀୟ ସହପାଠୀ ଉତ୍କଳ କରୁଣାକର ନରିଙ୍କ ସାହଚର୍ଯ୍ୟରେ ସେ ପୁରୀରେ ପ୍ରଥମ ଥର ପାଇଁ ସଂସ୍କୃତ ନାଟକ

'ମୃଚ୍ଛକଟିକ' ମଞ୍ଚସ୍ଥ କରାଇ ସମସ୍ତ ପୁରୀବାସୀଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ୧୯୨୫ ମସିହାରେ ପୁରୀରେ ଅବସ୍ଥାନକାଳରେ ଓଡ଼ିଶୀ ସଙ୍ଗୀତ ଓ ନାଟ୍ୟସାହିତ୍ୟକୁ ଏକ ନୂତନ ମନ୍ତ୍ରରେ ଅଭିମନ୍ତ୍ରିତ କରିବାପାଇଁ କବି ଆରମ୍ଭ କରିଥିଲେ ଗୋଟିଏ ରାସଦଳ । ଗଜପତି ତାଙ୍କର ସଙ୍ଗୀତ ରଚନାରେ ମୁଗ୍ଧ ହୋଇ 'କବିଚନ୍ଦ୍ର' ଉପାଧିରେ ତାଙ୍କୁ କରିଥିଲେ ବିଭୂଷିତ ଏବଂ ଦେଇଥିଲେ ଶ୍ରୀଜୀଉଙ୍କର "ରଥେ ଚ ରୂପେ ଶ୍ରୀମନ୍ଦିରେ" ଚାମରସେବା-ଅଧିକାର ଓ ତା ସହିତ ବୈଷ୍ଣବାଗ୍ନି-ପ୍ରାପ୍ତିର ସୌଭାଗ୍ୟ ।

କୌଣସି କାରଣବଶତଃ ପୁରୀ ରାଜାଙ୍କସହିତ କବିଙ୍କର ମନୋମାଳିନ୍ୟ ଘଟିଲା । ଆଉ ଚାକିରୀ ନ କରିବାକୁ ସେହିଦିନୁ ସେ କଲେ ଦୃଢ଼ସଂକଳ୍ପ ଓ ଲେଖିଲେ 'ଚାକିରୀ ଝକ୍‌ମାରି' ଗୀତ । ଯାହାର ପ୍ରଥମ ପଦ ହେଉଛି—

ଚାକିରୀ ଝକ୍‌ମାରି ଏ ଜୀବନେ ନାହିଁ କରି ।
ଖାମିନ୍ଦ ହସିଲେ ହସି—ଅଖୁସିରେ ଖୁସି
ଗଧକୁ କହିଲେ ଘୋଡ଼ା ଦିନଯାଏ ହାଁ ଜୀ ମାରି । ଇତ୍ୟାଦି ।

ଗୀତଟି ହିଜ୍ ମାଷ୍ଟରସ୍ ଭଏସ ରେକର୍ଡ଼ିଂ କୋମ୍ପାନୀଦ୍ୱାରା ରେକର୍ଡ଼ିଂ କରାଯାଇ ବହୁ ସମାଦୃତ ହୋଇଛି । ପୁରୀରେ କବିଙ୍କଦ୍ୱାରା ଗଠିତ ରାସଦଳ ନିରବଚ୍ଛିନ୍ନଭାବେ ଚଉଦ ବର୍ଷକାଳ ଓଡ଼ିଶୀ ଗୀତ ଓ ନୃତ୍ୟ ପରିବେଷଣ କରିପାରିଥିଲା । ପୂର୍ବରୁ ମୋହନ ଗୋସେଇଁ ରାସରେ ପୁରାତନ ସଂକୀର୍ତ୍ତନରୀତିର ପ୍ରବର୍ତ୍ତନ କରିଥିଲେ; କିନ୍ତୁ କବି ଏହି ରୀତିରେ ଆଣିଲେ ପରିବର୍ତ୍ତନ । ଭାବ ଓ କାଳୋଚିତ ରୀତିରେ ଗୀତ ରଚନା କରାଯିବାରୁ, ରାସ ଆଶାନୁରୂପ ଲୋକ ପ୍ରିୟତା ହାସଲ କରିପାରିଥିଲା; କିନ୍ତୁ ଦଳର ପରିଚାଳକ ପୂର୍ଣ୍ଣାନନ୍ଦ ମହାନ୍ତିଙ୍କସହିତ କବିଙ୍କର ସୁସମ୍ପର୍କ ନ ରହିବାରୁ ସାମୟିକ ଦଳରେ ଦେଖାଦେଇଥିଲା ବିଭ୍ରାଟ । ସେ ଯାହା ହେଉ କବିଙ୍କଦ୍ୱାରା ଗଠିତ 'ରାଧାରମଣ ରାସୋତ୍ସବ' କଳାପ୍ରିୟ ଗୋପାଳ ଗୋସେଇଁ ଓ ବାବାଜୀ ମହାପାତ୍ରଙ୍କର ସହଯୋଗ ପାଇ ଓଡ଼ିଶାର ପୁରପଲ୍ଲୀରେ ବାଢ଼ିପାରିଥିଲା ସର୍ବଚରିହାରୀ ରାସଲୀଳା । ସ୍ୱଳ୍ପବଚନିକା ବଦଳରେ ନାଟକୀୟ ରୀତିରେ ଉପଯୁକ୍ତ ବଚନିକାର ଅବତାରଣା କରାଯାଇଥିଲା । ସେ ସମୟରେ କବିଙ୍କ ରାସଦଳର ପୃଷ୍ଠପୋଷକ ଥିଲେ ସ୍ୱର୍ଗତ ଗୋପାଳ ପ୍ରହରାଜ, ଶଶିଭୂଷଣ ରାୟ, ବ୍ରଜସୁନ୍ଦର ଦାସ, ରାଧାନାଥ ଚୌଧୁରୀ ଓ ବାସୁଦେବ ହୋତା ।

କିଛି ଦିନପରେ ଦଳସହିତ ତାଙ୍କୁ ସାକ୍ଷୀଗୋପାଳ ଆସିବାକୁ ପଡ଼ିଲା । ଅଁଳା ନବମୀଠାରୁ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ସେଠାରେ ଖୁବ୍ ଯାକଯମକରେ ରାସୋତ୍ସବ ହେଉଥାଏ । କବି ସେଠାରେ ନିଜ ଦଳଜରିଆରେ ମଧ୍ୟ ରାସ ପରିବେଷଣ କରିବାର ସୁଯୋଗ ପାଇଥିଲେ ଓ ସ୍ୱକୀୟ ଅଭିନବ ପରିପାଟୀ ଶୈଳୀଯୋଗୁଁ ସର୍ବମୁଖରେ ହୋଇଥିଲେ ପ୍ରଶଂସିତ । କଟକ ଆସି ଶ୍ରୀରାମଚନ୍ଦ୍ର ଭବନ, ଗୋପାଳ ପ୍ରହରାଜଙ୍କ ହତା, ଜଗନ୍ନାଥବଲ୍ଲଭ ମଠ ପଡ଼ିଆ, ବାଙ୍କାବଜାରସ୍ଥ ରାଜକିଶୋର ଦାସଙ୍କ ଘରପଛ ପଡ଼ିଆରେ ସେ ରାସ ପରିବେଷଣ କରିଥିଲେ । ଟିକେଟର ମୂଲ୍ୟ ଥିଲା, ଯଥାକ୍ରମେ ଚାରି ଅଣା ଆଠ ଅଣା ଓ ଏକ ଟଙ୍କା । ରାତିକୁ ପାଞ୍ଚ ଶହ ଟଙ୍କାପର୍ଯ୍ୟନ୍ତ ଟିକେଟ ବିକ୍ରୀ ହେଉଥିଲା । ଏହି ରାସଦଳସହିତ କବି ସମଗ୍ର ଓଡ଼ିଶା ଭ୍ରମଣ କରିବାର ସୁଯୋଗ ପାଇଥିଲେ ।

କବିଚନ୍ଦ୍ର କାଳୀଚରଣଙ୍କ ପ୍ରଚେଷ୍ଟାରେ ରାସଲୀଳା ନୂତନ ରୂପରେଖ ପାଇଥିଲେ ମଧ୍ୟ ତାହାର ନାଟକୀୟ ଧର୍ମ ନଷ୍ଟ ହୋଇପଡ଼ି ନ ଥିଲା । ୧୯୨୭ଠାରୁ ୧୯୩୯ ମସିହାପର୍ଯ୍ୟନ୍ତ ନିରବଚ୍ଛିନ୍ନଭାବେ କଳାପ୍ରେମୀ ଓଡ଼ିଶାବାସୀଙ୍କୁ ରାସ ପରିବେଷଣ କରି ଯଥେଷ୍ଟ ସୁନାମ ଓ ଗୌରବର ଅଧିକାରୀ ହୋଇପାରିଥିଲେ ସେ । ବୟସ ଓ ପରିବେଶର ପ୍ରଭାବରେ ଲେଖକର ଲେଖନୀ ହୁଏ ପରିବର୍ତ୍ତନର ଅନୁସାରୀ । ସେହିପରି କବିଚନ୍ଦ୍ରଙ୍କ ଲେଖନୀରେ ଆସିଥିଲା ପରିବର୍ତ୍ତନ । ରାସ-ଲେଖାରୁ ବିଦାୟ ନେଇ ସାମାଜିକ ନାଟକ ରଚନାପାଇଁ ସେ ନେଇଥିଲେ ଏକ ଦୁଃସାହସିକ ପଦକ୍ଷେପ । ଏଥିପୂର୍ବେ କଟକସ୍ଥ 'ଉଷା' ରଙ୍ଗମଞ୍ଚରେ କେବଳ ବଙ୍ଗଳା ସାମାଜିକ ନାଟକ ମଞ୍ଚସ୍ଥ ହେଉଥାଏ । ଓଡ଼ିଆ ସାମାଜିକ ନାଟକ ମଞ୍ଚସ୍ଥ

କରାଇ ପରୀକ୍ଷା ଓ ନିରୀକ୍ଷାର ସମ୍ମୁଖୀନ ହେବାପାଇଁ କେହି ସାହସ କରୁ ନ ଥାନ୍ତି । ତତ୍ପୂର୍ବରୁ ସ୍ୱର୍ଗତ କୃଷ୍ଣବିହାରୀ ବୋଷଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା 'ବାସନ୍ତି' ରଙ୍ଗମଞ୍ଚ । ସେହି ରଙ୍ଗମଞ୍ଚରେ ତିନି, ଚାରି ମାସ ଅନ୍ତରରେ 'ସେରେଜନାରି, ମୟୂର-ସିଂହାସନ, କୃଷ୍ଣକାନ୍ତେର ଉଇଲ, ଭ୍ରାନ୍ତି, ଲକ୍ଷହୀରା ଓ ଶ୍ରୀକୃଷ୍ଣ ପ୍ରଭୃତି ବଙ୍ଗଳା ନାଟକ ଅନେକ ଦିନପର୍ଯ୍ୟନ୍ତ ମଞ୍ଚସ୍ଥ ହୋଇଥିଲା । କଟକର ପ୍ରବୀଣ ନୃତ୍ୟଶିଳ୍ପୀ ଶ୍ରୀ ସାରଦାପ୍ରସାଦ ଦଳବେହେରା (ସାଧୁବାବୁ) ସେହି ଦଳସହିତ ଥିଲେ ଘନିଷ୍ଠ ଭାବେ ସଂପୃକ୍ତ । ପରେ କୌଣସି କାରଣ ନେଇ ସେ 'ଉଷା'ରେ ଯୋଗ ଦେଇଥିଲେ ।

କିଛି ଦିନପରେ କବିଙ୍କଦ୍ୱାରା ରଚିତ ହେଲା 'କ୍ଷେତ୍ରବାସ' ବା 'ପ୍ରତିଶୋଧ' ନାମକ ଏକ ସାମାଜିକ ନାଟକ । ନାଟକଟି ଅଭିନୀତ ହେଲା ୨।୧୦।୩୭ ତାରିଖରେ କଟକର ଅସ୍ଥାୟୀ ବାଙ୍କାବଜାର ରଙ୍ଗମଞ୍ଚରେ । ସେହି ନୂତନ ପଦକ୍ଷେପଯୋଗୁଁ କବିଙ୍କୁ କଟକବାସୀ ଜଣାଇଥିଲେ ସାଦର ସମ୍ଭାଷଣ । ନାଟକଟିର ସାଙ୍ଗୀତିକ ପ୍ରଯୋଜନା ନାଟ୍ୟପ୍ରିୟ କଟକବାସୀଙ୍କ ମନରେ କରିଥିଲା ଗଭୀର ରେଖାପାତ । ନୈଶ୍ୟ ପ୍ରକୃତିର ନିସ୍ତବ୍ଧତା ଠେଲି ସେତେବେଳେ କଟକର ପ୍ରତିଗଳିକନ୍ଦିରୁ ଭାସିଆସୁଥିଲା ପଥଚାରୀ ତଥା ଗାଡ଼ିବାଲାଙ୍କ ମୁହଁରୁ ସେହି ନାଟକର କେତୋଟି ଗୀତ ।

(୧) "ଟାଣଖରା ସରୁବାଲିରେ          ନିପାଣିଆଁ ଟାଙ୍ଗରା ଭୂଇଁ
ଆଖି ବାଟେ କୁଳୁକୁଳିଆ          ଉଡ଼ିଯାଏ ଏ ବାଟ ଗୁହିଁ ।।୦।।
ତଳ-ତାତି ଉପର-ତାତି          ପେଟ-ତାତି ଫୁଟୁଛି ଛାତି
ଥାଉ-ତେଣେ ଦୟା-ମାୟା          ଆହା ପଦ କାହାର ନାହିଁ ।୧।
ଝାଉଁମରା ଦେହଟା ମୋର          ପାହୁଣ୍ଡକୁ ନାହିଁ ତ ବଳ
ଏ ମୂଳକେ ଗଛ-ବୃଛ          ଆସରାକୁ ନାହିଁ ଛାଇ ।" ଇତ୍ୟାଦି ।

(୨) ମଟିନଇ ମେଘୁଆରାତି ମେଲିଛି ମୁଁ ଦଦରା ନାଆ
ମଲଗଲା ନାହିଁ ମୋ ଡର ନ ଜାଣେ କେ ମୋ ସାହା ।।୦।।
ଗଗନର ପବନ ଦୋଳି          ଦୋଳି ଖେଳେ କି ରଙ୍ଗିଣୀ
ଭାଷା ତା'ର ଅବୁଝା ମୋର          ସପନର ସୁପ୍ତବାଣୀ
ଗୋପନେ ମିଶେ ପ୍ରାଣେ
ଟାଣେ ସେ ତାନେ ତାନେ
କାନ ବୁଝେ ମନ ବୁଝେନା          ଆଖି ଖୋଜେ ତାହାର ରାହା ।୧।
ଦୂରବନ ଫୁଲରୁ ଆସେ          ହସମିଶା ଅଜଣା ବାସ
ଛୁଆଁ ତା'ର ଭୁବନ ଭୁଲା          ହରେ ମୋର ସବୁ ପରାଣ
ଦୁନିଆଁ ବୁଲି ବୁଲେ
ମହୁଆ ଫୁଟିଲ ଫୁଲେ
ଆନମନେ ଅନାଇଥାଏ          ଟାଣିନିଏ ଉଦରା ବାଆ ।"

୧୯୩୯ ପୂର୍ବରୁ ଗୀତ ଓ ନାଟକ ବ୍ୟତୀତ କବିଚନ୍ଦ୍ରଙ୍କର ବହୁ ପୁସ୍ତକ ମଧ୍ୟ ପ୍ରକାଶ ପାଇଥିଲା । ଆକାର-ଦୃଷ୍ଟିରୁ କ୍ଷୁଦ୍ର ହେଲେ ମଧ୍ୟ ସେଗୁଡ଼ିକର ସାହିତ୍ୟିକ ମର୍ଯ୍ୟାଦା ହୋଇପାରିଥିଲା ପ୍ରତିଷ୍ଠିତ । ୧୯୧୬ ମସିହାରେ ସେ ଲେଖିଥିଲେ 'କଳାହାଣ୍ଡିଆ ମେଘ', ଯାହାକି ଶିଶୁସାହିତ୍ୟିକ କାଳୀଚରଣଙ୍କର ଦେଇଥାଏ ସ୍ଥୂଳ ପରିଚୟ । ପଲ୍ଲୀକବି ନନ୍ଦକିଶୋରଙ୍କ ଲେଖାପରି କାଳୀଚରଣଙ୍କର ଏହି ଲେଖା ଆଶାତୀତଭାବେ ହୋଇଥିଲା ଆଦୃତ । ତାହାର କେତୋଟି ପଦ ନିମ୍ନରେ ଉଦ୍ଧାର କରାଗଲା :—

"ଅଇଲାଣି ମେଘ କଳାହାଣ୍ଡିଆ ଲୋ
ବରଷି ଦେଲାଣି ପାଣି,
ସାରୁପତ୍ର ଛତା ଧରିବସିଲେ ଲୋ
ବେଙ୍ଗସଙ୍ଗେ ବେଙ୍ଗରାଣୀ ।

× × ×

ପ୍ରଣ କୁତୂହଳେ ଶବର-କାମିନୀ
ପଗୃରଇ ପ୍ରାଣଧନେ,
ରଜାପୁଅ କହ କିସ କରୁଥିବ
ଆଜ ଏ ବରଷା ଦନେ ?
କଲପି କଳ୍ପନା କହେ ଶବର ଲୋ
କିସ କରୁଥିବେ ଆଉ,
କମ ସଢ଼େଇରେ ଗୃଉଳ-ଭଜା ତ
ଖାଉଥିବେ ଦେଇ ମହୁ ।
ଯେ ପକ୍ଷୀ ଉଡ଼ଇ ଯେତେ ଦୂର ସିନା
ସେ ଜାଣେ ତା'ର ବେଭାର,
ଶବର କି ଜାଣେ ଅଧିକା କଥା ଲୋ
ଖୁଦୁରେ ତା' କାରବାର ।"

୧୯୧୮ ମସିହାରେ କବି ଲେଖିଥିଲେ 'ବରଣଡାଲି—ଏକ ଭକ୍ତିପୂତ ସଂଗୀତ-ଅର୍ଘ୍ୟ । ତାହା ପାଠ କଲେ ପାଠକ-ମନରେ ଗୋଟିଏ ପ୍ରଶ୍ନ ତୋଳି ଉଠେ । ତାହା ହେଉଛି—"ଏହା କଣ କାଳୀଚରଣଙ୍କର ପ୍ରଗଲ୍‌ଭ ଯୁବଲେଖଣୀରୁ ନିସୃତ ?" ରଚନାର ସମୟ ଜାଣିଲାପରେ ମନରୁ ଏହି ପ୍ରଶ୍ନବାଚୀ ଉଭେଇଯାଏ । 'ବଉଳବେଣୀ' କବିଙ୍କର ୧୯୨୦ ମସିହାର ଲେଖା । ଏହା 'ଅ'ଠାରୁ 'କ୍ଷ' ଅକ୍ଷରକ୍ରମରେ ଲିଖିତ । ଏଥିରେ କାଳୀଚରଣ ହୋଇଛନ୍ତି ଜଣେ ଗୁରୁକବି (teacher poet) । ଆଜ ମଧ୍ୟ ସିଂହାବଲୋକନ କଲେ ଜଣାଯାଏ ଯେ କବି କାଳୀଚରଣ କେବେ ହେଲେ ସ୍ୱପ୍ନାଭିଳାଷୀ ପଦ୍ମଭୁକ୍ ହୋଇ ନାହାନ୍ତି । କଠୋର ବାସ୍ତବତାକୁ ଉପେକ୍ଷା କରି କଳ୍ପନାର ଏକ ସ୍ୱର୍ଣ୍ଣିମ ସଂସାର ଗଢ଼ିବାର ସ୍ୱପ୍ନ କେଉଁଠି କେବେ ହେଲେ ଦେଖି ନାହାନ୍ତି ସେ । ଯେହେତୁ ଶିକ୍ଷାବିଭାଗରେ ତାଙ୍କ କର୍ମଜୀବନର ହୋଇଛି ଶୁଭାରମ୍ଭ, ତେଣୁ ସେ ସମ୍ୟକ୍ ଭାବେ ହୃଦୟଙ୍ଗମ କରିଛନ୍ତି ଯେ ସମାଜରେ ସଂସ୍କାର ଆଣିବାପାଇଁ ଶିକ୍ଷା ହେଉଛି ଏକମାତ୍ର ଅମୋଘ ଅସ୍ତ୍ର । ଲୋକେ ଶିକ୍ଷିତ ନ ହେଲେ ସାମାଜିକ ଚେତନା ଆସିବା ଅସମ୍ଭବ । ସେହି ମହତ୍ ଲକ୍ଷ୍ୟକୁ ଆଖିଆଗରେ ରଖି ସେ ଲେଖିଛନ୍ତି 'ବଉଳବେଣୀ' ଯାହାର ରଚନା ସମୟ ବୋଧ ହୁଏ ୧୯୨୦ ମସିହା । ଭାଷା ଖୁବ୍ ସରଳ ହୋଇଛି । ଉଦାହରଣସ୍ୱରୂପ—

"ଅସୁନ୍ଦର କେଉଁ ନର ଗୋ !
ଅଳସ ପଣରେ କାଟି ଦନରାତ ଦେଖାଏ ରୂପ ସୁନ୍ଦର ଗୋ
ଫୁଲ ବଉଳବେଣୀ ।
ଆସିଅଛ କାହିଁପାଇଁ ଗୋ !
ଆଣିଥିଲ କିସ ଯିବ ଯେବେ କିସ ସେଥିକି ଲୋଭ କିପାଇଁ ଗୋ ।
ଫୁଲ ବଉଳବେଣୀ ।

× × × ×

ଜନମ ଲଭି ସଂସାରେ ଗୋ !
ଜଣକର ହେଲେ ଭଲ ତୁ ନକଲୁ, ମନ୍ଦ ପାଷ୍ଣ୍ଡଙ୍କ ଆଶାରେ ଗୋ
ଫୁଲ ବଉଳବେଣୀ ।

× × × ×

ଷଡ଼ବର୍ଗ ଇଚ୍ଛା କଲେ ଗୋ !
ଷଡ଼ ରିପୁଗଣ ଦୂରୁଁ ଜୁହାରଣ ଡାକିଲେ ମିଳିବ ବଳେ ଗୋ । ଫୁ: ବ:

୧୯୨୧ ମସିହାରେ ସମାଜର ଦୁର୍ନୀତିକୁ ଅକ୍ଷେପ କରି ଲେଖିଥିଲେ "ଚରଣ ଚୁଟିଆ ଚମା ।" ଏତଦ୍‌ଭିନ୍ନ 'ଶିଶୁଖେଳା ଗୀତ', 'ବାଘାଧନଟି', 'ପିଲାଙ୍କ କର୍ମସଙ୍ଗୀତ', 'ଫୁଲରେଣୁ', 'କେତୋଟି କଥା', 'ଠକ୍‌କର ବାପା', 'ବାଲବୋଧକ', 'ରତ୍ନମାଳା' ଇତ୍ୟାଦି ଉଚ୍ଚକୋଟିର ଶିଶୁସାହିତ୍ୟ ମଧ୍ୟ ତାଙ୍କର ଅବଦାନ । ୧୯୨୩ ମସିହାରେ ସମାଜ ଓ ସାହିତ୍ୟର ଗଳିତ କ୍ଷତଗୁଡ଼ିକର ଅସ୍ତ୍ରୋପଚାର କରିବାପାଇଁ କବି ଲେଖିଥିଲେ 'ହାଲ ଫେସନ୍', ଯେଉଁଥିରେ କି ଫକୀରମୋହନଙ୍କ ଶୈଳୀ ଅନୁକୃତ ହୋଇଥିଲାପରି ମନେ ହୁଏ । ତାହାର କେତୋଟି ପଦ ହେଉଛି—

"କବି ହେବ ଲେଖିବ ନାହିଁ ନଭେଲ୍ ନାଟକ
ଡେଇଁବ ନାହିଁ କେବେ ଭାଇ ! ସାହିତ୍ୟ-ଫାଟକ ।
ଲେଖ ବସି କେଳା-ଯୁଆଙ୍କ ଗାଁ କଳେଇ ଘୋଡ଼ୀ,
ଏକା ଦିନକେ ହଜାର କପି ଯିବ କାହିଁ ଉଡ଼ି ।
ମୋ କଥାଟି ନ ମାନିଲେ କବିପଣ ଯିବ,
କଲମ କାମୁଡ଼ି ପେଟ ଭୋକରେ ମରିବ ।"

ଏହିପରି ଅନେକ କ୍ଷୁଦ୍ରପୁସ୍ତକ କବି ରଚନା କରିଥିଲେ, ଯାହା ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ଏହି ହେଲା ସଂକ୍ଷେପରେ ନାଟ୍ୟକାର ଓ କବି କାଳୀଚରଣଙ୍କ ଜୀବନର ପ୍ରଥମ ତଥା ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ।

ତାପରେ ୧୯୩୯ ମସିହାର ଶେଷଭାଗକୁ ଓଡ଼ିଶା ଥିଏଟରସ୍‌ର ହେଲା ଶୁଭାରମ୍ଭ । ଓଡ଼ିଆ ସାହିତ୍ୟ ତଥା ରଙ୍ଗମଞ୍ଚ ଇତିହାସରେ ଉନ୍ମୋଚିତ ହେଲା ଏକ ଅଭିନବ ପୃଷ୍ଠା । ନିଚ୍ଛକ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ମୌଳିକତା ରକ୍ଷା କରି କିପରି ନାଟକ ରଚନା କରାଯିବ, ସେଥିପାଇଁ ତାଙ୍କର ସୃଜନେଚ୍ଛୁ ମନ ଅବିକଳ୍ପ ଆଶା ଓ ଆବେଗରେ ଭରିଉଠିଥିଲା । ସମାଲୋଚକଙ୍କ ଭାଷାରେ—

"From 1939 to 1950 a theatre party named 'Orissa Theatre was run by him, which played an important role in the annals of modern stage in the state. His association with the ruler of Mayurbhanj and Raja Saheb of Puri in the late twenties enriched the experience of this budding musician and poet with the practical study of ups and downs of the joys and sorrows in the career of an ambitious writer. Leavring the sevice under blue blooded aristocracy Kabichandra Kalicharan treated a Lonely path of struggle for supermacy in the fields of arts in Orissa with a keen devotion. He fought against heavy odds and brought about a great revolution in the history of stage-play by introducing social dramas and educated girls on the stage.'

(Hindustan standard Aug 17, 1958)

ସେତେବେଳେ କଟକରେ ସ୍ଥାୟୀ ରଙ୍ଗମଞ୍ଚ ନଥାଏ । ତେଣୁ ଶ୍ରୀରାମଚନ୍ଦ୍ର ଭବନର ଉତ୍ତର ପଟେ ସାହିତ୍ୟ ସମାଜ ପକ୍ଷରୁ ତୋଳା ହୋଇଥିବା ସାହିତ୍ୟ ସପ୍ତାହ ମଞ୍ଚରେ ଅଭିନୀତ ହେଲା କବିଙ୍କ ସାମାଜିକ ନାଟକ 'ଗାର୍ଲସ୍କୁଲ୍' । ନୂତନତାର ପ୍ରବର୍ତ୍ତନକୁ ସବୁବେଳେ ରକ୍ଷଣଶୀଳ ସମାଜ ଗ୍ରହଣକରିବାକୁ ଦ୍ୱିଧା-ବୋଧ କରିଥାଏ । ସେହି ଧାରାରେ କଟକ ବାସୀ ଏହି ନାଟକର ନାମ ଶୁଣି ପ୍ରଥମେ ନାସିକା କୁଞ୍ଚନ କରିଥିଲେ । କିନ୍ତୁ ଅଭିନୀତ ହେଲା ପରେପରେ ସେହି ନାସିକା କୁଞ୍ଚନ ରୂପାନ୍ତରିତ ହୋଇଥିଲା ସାଦର ସମ୍ଭାଷଣରେ । ଦୀର୍ଘ ଗ୍ରୀଷ୍ମମାସ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବେ ଏହି ନାଟକଟି ଅଭିନୀତ ହୋଇଥିଲା ପୂର୍ଣ୍ଣ ପ୍ରେକ୍ଷାଳୟରେ । ସେ ଅବଧି କେବଳ କଟକ କାହିଁକି, ଓଡ଼ିଶାର କୌଣସିଠାରେ ଗୋଟିଏ ନାଟକ ଦୁଇ ତିନି ରାତିରୁ ଅଧିକ ଅଭିନୀତ ହେବାର ଦେଖାଶୁଣା ନଥିଲା । ବିଶେଷତଃ ସାମାଜିକ ନାଟକ ପ୍ରତି ଜନତାର ଆଶାନୁରୂପ ଆଦର ନଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଏକ ବ୍ୟବସାୟୀ ରଙ୍ଗମଞ୍ଚରେ ନାୟକ ନାୟିକା ଭୂମିକାରେ ସ୍ତ୍ରୀ ପୁରୁଷ ଓହ୍ଲାଇବା ବୋଧହୁଏ ଏହି ନାଟକରେ ସର୍ବପ୍ରଥମେ ହୋଇଥିଲା ସମ୍ଭବପର । ଏହା ହେଉଛି କବି ନାଟ୍ୟକାର କାଳୀଚରଣଙ୍କର ତତ୍କାଳୀନ ଓଡ଼ିଆ ସମାଜରେ ଏକ ଦୁଃସାହସିକ ପଦକ୍ଷେପ । କିଭରି, 'ଡିସ୍କଭର ସିନ୍' ବ୍ୟବସ୍ଥା ସର୍ବପ୍ରଥମ ଥର ପାଇଁ ସେ ବ୍ୟବହାରକଲେ ସ୍କ୍ରିନ ବଦଳରେ । ପାରମ୍ପରିକ ସ୍ୱଗତ, ଜନାନ୍ତିକେକୁ ନାଟକରୁ ଦେଲେ ବିଦାୟ । ଉଦ୍‌ଘାଟକ ତତ୍କାଳୀନ ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ନାଟକଟି ଦେଖି ସାରିଲା ପରେ କାଳୀଚରଣଙ୍କୁ ଜଣାଇଥିଲେ ଉଚ୍ଛ୍ୱସିତ ସମ୍ଭାଷଣ । ପାରଳା ମହାରାଜା ମଧ୍ୟ ଏକ ସହସ୍ର ମୁଦ୍ରା ପୁରସ୍କାର ଦେଇ ଓଡ଼ିଆ ରଙ୍ଗମଞ୍ଚ ତଥା ନାଟ୍ୟସାହିତ୍ୟରେ ପରୀକ୍ଷା ମୂଳକ ଭାବେ ନୂତନତାର ଅନୁଶୀଳନଯୋଗୁଁ ତାଙ୍କୁ ଜଣାଇଥିଲେ ଅଭିନନ୍ଦନ ।

ସେହି ଅସ୍ଥାୟୀ ରଙ୍ଗମଞ୍ଚରେ କବିଚନ୍ଦ୍ର କାଳୀଚରଣ ଅଳେଚ୍ୟ ନୂତନତାର ପରୀକ୍ଷା ଓ ନିରୀକ୍ଷା କରୁଥାନ୍ତି । ତାଙ୍କର ଏହି ଦୁଃସାହସିକ କାର୍ଯ୍ୟରେ ବାଧା ଦେବାପାଇଁ ସତେ ଯେପରି ପ୍ରକୃତି ଦାଉ ସାଧିଲା । ପ୍ରବଳ ଝଡ଼ ତୋଫାନରେ ସେହି ଘରଟି ଭାଙ୍ଗିପଡ଼ିଲା । ଏହା ସତ୍ତ୍ୱେ ତାଙ୍କର ମାନସିକ ଦୃଢତା ଥିଲା ଅତୁଟ । ତାଙ୍କର ମହଦୁଦ୍ୟମରେ ସେ ଥିଲେ ସର୍ବଦା ଆଶାୟୀ । ନୈରାଶ୍ୟର ତନ୍ଦ୍ରା ତାଙ୍କୁ ସ୍ପର୍ଶକରି ପାରିନଥିଲା ।

ତା'ପରେ ବାଙ୍କାବଜାରର ଗୋଟିଏ ଗୃହରେ ଆରମ୍ଭ ହେଲା 'ଓଡ଼ିଶା ଥିଏଟରସ୍'ର ଦ୍ୱିତୀୟ ପର୍ଯ୍ୟାୟ । ଭାରତ ସରକାରଙ୍କର ତତ୍କାଳୀନ Executive councillor ସାର୍ ଜେ. ପି. ଶ୍ରୀବାସ୍ତବଙ୍କ ଦ୍ୱାରା ସେହି ନୂତନ ରଙ୍ଗମଞ୍ଚ ହୋଇଥିଲା ଉଦ୍‌ଘାଟିତ । ଓଡ଼ିଶାର ନାଟ୍ୟପ୍ରିୟ ଜନତାଙ୍କୁ ମୁଗ୍ଧକରି ୧୯୪୯ ମସିହା ଶେଷପର୍ଯ୍ୟନ୍ତ ଏହି ଥିଏଟର ସଗୌରବେ ଚାଲିଲା । ନାଟ୍ୟକାର ମନୋରଞ୍ଜନ ଦାସଙ୍କର 'ଉପେନ୍ଦ୍ରଭଞ୍ଜ' ଓ ଆଡ୍‌ଭୋକେଟ ନବକୁମାର ଦାସଙ୍କର 'ହା ଅନ୍ନ' ବ୍ୟତୀତ, ଅନ୍ୟସବୁ ଅଭିନୀତ ହୋଇଥିବା ନାଟକ କାଳୀଚରଣଙ୍କ ଦ୍ୱାରା ହୋଇଥିଲା ଲିଖିତ । ତାଙ୍କର ନାଟକ ଗୁଡ଼ିକ ନାଟ୍ୟ ସମ୍ରାଟ ସେକ୍ସପିଅର, ମହାକବି କାଳିଦାସ ଓ ବଙ୍ଗଳାର ପ୍ରସିଦ୍ଧ ନାଟ୍ୟକାର ସ୍ୱର୍ଗତଃ ଗିରିଶଚନ୍ଦ୍ର ଘୋଷଙ୍କର ପ୍ରଭାବରୁ ମୁକ୍ତ ନୁହେଁ । ଓଡ଼ିଆ ନାଟ୍ୟକାର ରାମଶଙ୍କର, କାମପାଳ ମିଶ୍ର ଓ ଭିଖାରି ଚରଣଙ୍କ ନାଟକୀୟ ରୀତି ମଧ୍ୟ ତାଙ୍କୁ ଅଳ୍ପ ବହୁତେ ପ୍ରଭାବିତ କରିପରି ମନେହୁଏ । ଏକ ସ୍ୱତନ୍ତ୍ର ଅଧ୍ୟାୟରେ ଏହାର ଆଲୋଚନା କରାଯାଇଅଛି । କିନ୍ତୁ କାଳୀଚରଣଙ୍କର ନାଟକଗୁଡ଼ିକ ଯେ ସଂସ୍କାର ତଥା ଜାତୀୟତା ବୋଧର ବୈପ୍ଳବିକ ପରିପ୍ରକାଶ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ଶ୍ୱାପଦସଙ୍କୁଳ ଦୁର୍ଗମ ଶିଳା ବନ୍ଧୁର ଦେଶରେ ଶୌର୍ଯ୍ୟ-ତତ୍ପରତାର ପରିଚୟ ଦେଇ ଜଣେ କେହି ନୂତନ ସରଣୀ ଦେଖାଏ । କିନ୍ତୁ କାଳକ୍ରମେ ଅନାୟାସରେ ବହୁ ବ୍ୟକ୍ତି ହୁଅନ୍ତି ସେହି ପଥର ପଥିକ । ସେହିପରି କାଳୀଚରଣ ଧର୍ମପ୍ରେକ୍ଷୀର ଭ୍ରୁକୁଟିକୁ ଭ୍ରୂକ୍ଷେପ ନକରି ଓଡ଼ିଆ ନାଟ୍ୟ ସାହିତ୍ୟରେ ଯେଉଁ ସ୍ୱର୍ଣ୍ଣିମ ସରଣୀ କାଟି ଦେଇଛନ୍ତି, ଓଡ଼ିଆ ନାଟ୍ୟକାରମାନେ ସେହି ପଥରେ ଆଜି ଗତି କରୁଅଛନ୍ତି ଓ ଅନାଗତ କିଛିକାଳ ପାଇଁ ଗତି କରିବେ ମଧ୍ୟ ।

ସଙ୍ଗୀତ ନାଟକକୁ କରେ ରସ ସମୃଦ୍ଧିତ । ଅତ୍ୟାଧୁନିକ ନାଟକରେ ଅବଶ୍ୟ ସଙ୍ଗୀତ ବିଭାଗକୁ ବହୁଅଂଶରେ ଉପେକ୍ଷା କରାଯାଉଅଛି । ଏହା ମଞ୍ଚୀୟର ନାଟ୍ୟ ପ୍ରବୃତ୍ତିକୁ କେତେଦୂର ରସାଣିତ ଓ ରସସିକ୍ତ କରିପାରିବ, ତାହାର ବିଚାର

ରସଗ୍ରାହୀ ଦର୍ଶକଙ୍କ ଉପରେ ନ୍ୟସ୍ତ । ତେବେ ଭାରାକ୍ରାନ୍ତ ମନକୁ ଲଘବ କରିବାପାଇଁ ସଙ୍ଗୀତର ଯେଉଁ ମୋହିନୀ ଶକ୍ତି ଅଛି ତାହାକୁ କେହି କେବେ ଅସ୍ୱୀକାର କରିବେ ନାହିଁ । ନାଟ୍ୟକାର ସାଧାରଣତଃ ସଙ୍ଗୀତଜ୍ଞ ହୋଇନଥାଏ; କିନ୍ତୁ ଓଡ଼ିଆ ନାଟ୍ୟକାର ମାନଙ୍କ ମଧ୍ୟରେ କବି କାଳୀଚରଣ ହେଉଛନ୍ତି ଏହି ଦ୍ୱୈତ ପ୍ରତିଭାର ଅଧିକାରୀ । ନାଟକ ଓ ସଙ୍ଗୀତ ରଚନା ଉଭୟ କ୍ଷେତ୍ରରେ ତାଙ୍କର ପାଟବ ପ୍ରଦର୍ଶିତ ହୋଇଆସିଛି । ଉଚ୍ଚାଙ୍ଗ ସଙ୍ଗୀତ ନାଟକର ମାନୋନ୍ନତି କରିବା ସଙ୍ଗେ ସଙ୍ଗେ ରସସିଦ୍ଧିରେ ହୋଇଥାଏ ସହାୟକ । କାଳୀଚରଣଙ୍କ ନାଟକ ଗୁଡ଼ିକରେ ଯେଉଁ ସଙ୍ଗୀତର ଅବତାରଣା କରାଯାଇଛି ତାହା ଦର୍ଶକ ନିକଟରେ ଅନବଦ୍ୟ ଓ ଅବିସ୍ମରଣୀୟ । କାଳୀଚରଣ ଏକାଧାରରେ ନାଟ୍ୟକାର, ସଙ୍ଗୀତ ଓ ସ୍ୱରଶିଳ୍ପୀ, ନୃତ୍ୟଗୁରୁ, ନାଟ୍ୟ ନିର୍ଦ୍ଦେଶକ ଏବଂ ମଞ୍ଚ ପରିଚାଳକ । ତେଣୁ ତାଙ୍କର ପ୍ରତ୍ୟେକ ନାଟକ ମଞ୍ଚ ସଫଳତା ଅର୍ଜନ କରିପାରିଥିଲା ।

ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟରେ କବିଙ୍କର ନୈପୁଣ୍ୟ ମଧ୍ୟ ସ୍ୱୀକାର୍ଯ୍ୟ । ଓଡ଼ିଶାର ପୁରପଲ୍ଲୀରେ ଯାସ ପରିବେଷଣ କଲା ବେଳଠୁ ସେ ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟର ପ୍ରଚାର ଓ ପ୍ରସାରପାଇଁ ଆପ୍ରାଣ ଉଦ୍ୟମ କରି ଆସିଅଛନ୍ତି । ଚମ୍ପୂ, ଗୀତ-ଗୋବିନ୍ଦ ଓ ଅନ୍ୟାନ୍ୟ ପ୍ରାଚୀନ ଓଡ଼ିଶୀ ସଙ୍ଗୀତକୁ ଲୋକପ୍ରିୟ କରିବା ପାଇଁ ସେ ଯେଉଁ ପଦକ୍ଷେପ ନେଇଛନ୍ତି, ତାହା ଯଥାର୍ଥରେ ପ୍ରଶଂସନୀୟ । 'ସଙ୍ଗୀତ ସାର' ପୁସ୍ତକ ଓ ଅଗଣିତ ଓଡ଼ିଶୀ ସଙ୍ଗୀତ ରଚନା କରି ସେ ସ୍ୱକୀୟ ସିଦ୍ଧହସ୍ତତାର ଚୂଡ଼ାନ୍ତ ପରିଚୟ ଦେଇଅଛନ୍ତି । ୧୯୬୫ ମସିହାରେ ଓଡ଼ିଶାରୁ ମାଡ୍ରାଜକୁ ଯେଉଁ ଓଡ଼ିଶୀ ନୃତ୍ୟ ଦଳ ପଠାଯାଇଥିଲା ତାହାର ନେତୃତ୍ୱ କରିଥିଲେ ନିଜେ କବି କାଳୀଚରଣ । ସେହିବର୍ଷ ଓଡ଼ିଶାର ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ କାଳୀଚରଣଙ୍କ ଲିଖିତ ଏବଂ ନିର୍ଦ୍ଦେଶିତ 'ସାକ୍ଷୀଗୋପାଳ' ନୃତ୍ୟନାଟିକା ପ୍ରଦର୍ଶନ କରାଇବା ପାଇଁ ତାଙ୍କୁ ଦିଲ୍ଲୀ ଯିବାକୁ ପଡ଼ିଥିଲା । ନୃତ୍ୟ ନାଟିକାଟି କେବଳ ଓଡ଼ିଶୀ ଗୀତ ନୃତ୍ୟରେ ସମ୍ବଳିତ । ସ୍ୱର୍ଗତଃ ଡକ୍‌ଟର ଗ୍ରିଅର୍ସନ୍ ଫାବ୍ରି ଇତ୍ୟାଦି ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଦ୍ୱାରା ସେହି ନାଟକଟି ହୋଇଥିଲା ଭୂୟସୀ ପ୍ରଶଂସିତ । ୧୯୫୮ ମସିହାରେ ଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିବା ନୃତ୍ୟ ସେମିନାରରେ ସେ ଓଡ଼ିଶୀ ନୃତ୍ୟ ଉପରେ ଏକ ଗବେଷଣାମୂଳକ ପ୍ରବନ୍ଧ ପାଠକରିଥିଲେ, ଯାହାକି ସଙ୍ଗୀତ ନୃତ୍ୟ ବିଶାରଦମାନଙ୍କ ମନରେ କରିଥିଲା ରେଖାପାତ । ଏହି ନୃତ୍ୟ ପରିବେଷଣ ପରେ ସର୍ବପ୍ରଥମେ ଦିଲ୍ଲୀ ଏବଂ ଦିଲ୍ଲୀ ବାହାରର ପତ୍ର ପତ୍ରିକାମାନ ଓଡ଼ିଶୀ ନୃତ୍ୟର ଶାସ୍ତ୍ରୀୟତା ସ୍ୱୀକାର କରିଥିଲେ । ୧୯୬୭ ମସିହାରେ ଦିଲ୍ଲୀଠାରେ ଅନୁଷ୍ଠିତ ନିଖିଳ ଭାରତ ଗୀତଗୋବିନ୍ଦ ଆଲୋଚନା ଚକ୍ରରେ ସେ ସଭାପତିତ୍ୱ କରି ଏକ ତଥ୍ୟ ସମ୍ବଳିତ ଭାଷଣ ମଧ୍ୟ ଦେଇଥିଲେ । ସେ ୧୯୬୮ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ଉପସଭାପତି ମନୋନୀତ ହୋଇଅଛନ୍ତି । ଓଡ଼ିଶା ବାହାରେ ମଧ୍ୟ ନୃତ୍ୟ ଓ ସଙ୍ଗୀତ ଯୋଗୁଁ କବିଚନ୍ଦ୍ର ସୁପରିଚିତ । ଭାରତର ପ୍ରସିଦ୍ଧା ନର୍ତ୍ତକୀ ଶ୍ରୀମତୀ ଇନ୍ଦ୍ରାଣୀ ରହେମନ୍ ତାଙ୍କର ଶିଷ୍ୟା ଓ ଲିଟର ବ୍ୟାଲେଟ ଟ୍ରୁପ୍ ପରିଚାଳିକା ଓ ସୁଖ୍ୟାତା ନର୍ତ୍ତକୀ ଶ୍ରୀମତୀ ଚୁଲ୍ ବର୍ଦ୍ଧନ କବିଙ୍କର ଏକାଧାରରେ 'ବାନ୍ଧବୀ' ଓ ଶିଷ୍ୟା କହିଲେ ଅତ୍ୟୁକ୍ତି ହେବନାହିଁ ।

୧୯୪୯ ମସିହା ଶେଷଭାଗକୁ କବିଙ୍କର ମାତୃବିୟୋଗ ଘଟିଲା । ଦୀପଶିଖା ନିର୍ବାପିତ ହେବା ପୂର୍ବରୁ ଜଳି ଉଠିଲାପରି କଲିକତା, ଖଡ଼ଗପୁର, ଟାଟା ଇତ୍ୟାଦି ସ୍ଥାନମାନଙ୍କରେ ବହୁ ନାଟକ ପରିବେଷଣ କରି ରାଜ୍ୟ ବାହାରେ ଉଚ୍ଚ ପ୍ରଶଂସିତ ହେବାର ଅବ୍ୟବହିତପରେ ପରିଚାଳନାଗତ ଏବଂ କଟକରେ ମଞ୍ଚର ସ୍ଥାନ ସମ୍ବନ୍ଧେ କେତେକ ବିଭ୍ରାଟ ହେତୁ ଓଡ଼ିଶା ଥିଏଟର୍ସ ଭାଙ୍ଗିଗଲା; କିନ୍ତୁ କବିଙ୍କର ମନୋବଳ ରହିଥିଲା ଅତୁଟ । ୧୯୫୧ ମସିହାରେ ସେ ପାଠ୍ୟପୁସ୍ତକ ରଚନା ଆରମ୍ଭ କଲେ । ତାଙ୍କଦ୍ୱାରା ଲିଖିତ 'ଆମପାଠ', 'ପିଲଙ୍କ ପାଠ,' 'ସରସ ପାଠ,' ସଙ୍ଗୀତ ଓ ହାରମୋନିୟମ୍ ଶିକ୍ଷା 'ପିଲଙ୍କ ସଙ୍ଗୀତ ଶିକ୍ଷା' ଓଡ଼ିଶାର ଶିକ୍ଷାୟତନରେ ହୋଇ ପାଇପାରିଥିଲା ଆଶାନୁରୂପ ଆଦୃତ । 'ଓଡ଼ିଶା ଥିଏଟର୍ସ' ଭାଙ୍ଗି ଯାଇଥିଲେ ମଧ୍ୟ କବି ନାଟକଲେଖା ବନ୍ଦ କରି ନ ଥିଲେ । ୧୯୫୦ ମସିହାପରେ 'ମନକଥା', 'ରକ୍ତମନ୍ଦାର'

'ସନ୍ଧାନ,' 'ଯୁଗେ ଯୁଗେ ଉତ୍କଳ' ଓ 'ସାରଳାଦାସ' ଇତ୍ୟାଦି ନାଟକ ସେ ଲେଖିଥିଲେ । ଏହି ନାଟକଗୁଡ଼ିକ 'ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ଓ ବହୁ ଅସ୍ଥାୟୀ ରଙ୍ଗମଞ୍ଚଦ୍ୱାରା ହୋଇଥିଲା ଅଭିନୀତ । ବର୍ତ୍ତମାନ ସଂକ୍ଷେପରେ ତାଙ୍କ ନାଟକକୃତିର ଆଲୋଚନା କରାଯାଉ ।

ରାସ ହେଉଛି କବିଙ୍କର ନାଟକୀୟ କୃତିର ପ୍ରାଥମିକ ସ୍ୱରୂପ । ନୀଳକଂଠଙ୍କ ମତରେ—"ଚକ୍ରବାଲୈଃ ମଣ୍ଡଳୈଃ ହଲ୍ଲୀଶକକ୍ରୀଡ଼ନଂ ଏକସ୍ୟ ପୁଂସୋ ବହୁଭିଃ ସ୍ତ୍ରୀଭିଃ କ୍ରୀଡ଼ନମେବ ରାସକ୍ରୀଡ଼ା ।" କବି ଏହି ରାସଧର୍ମର ପରମ୍ପରା ରକ୍ଷା କରିଛନ୍ତି । ଭାବ ଓ କାଳୋଚିତ ସ୍ୱରରେ ଗୀତ ରଚନା କରି ଓ ସ୍ୱଳ୍ପବଚନକାର ନିରାକରଣ କରି ସେ ମୋହନ ଗୋସ୍ୱାମୀ ପ୍ରଭୃତିଙ୍କ ରାସରେ ଆଣିଛନ୍ତି ପରିବର୍ତ୍ତନ । 'ବନବିହାର','କୌତୁକ ଚିନ୍ତାମଣି','ବିଦ୍ୟାବଳୀ','ବାଂଶୀ ବିଳାସ', 'ପ୍ରୀତି ସୁଧାକର' ଇତ୍ୟାଦି ଏହାର ଉଦାହରଣ । ଶକଟୀ ରାଜା ବିଶ୍ୱମ୍ଭର ରାଜେନ୍ଦ୍ର ଦେବଙ୍କ ଦ୍ୱାରା ପ୍ରଣୀତ'ବସନ୍ତ ରାହାସ', 'ଶରଦ ରାହାସ'ରେ ଭାବ ଓ ଭାଷାର ପରାକାଷ୍ଠା ହୋଇଛି ପ୍ରଦର୍ଶିତ, ଯାହା କି କବି ନିଜେ ସ୍ୱୀକାର କରି ଲେଖିଛନ୍ତି:—

"ଯଦ୍ୟପି କବିତ୍ୱ ନୋହିଛି ଲଳିତ
ମୋହର ଏ ନାଟକରେ
ହରିନାମାମୃତ ଯୋଗରୁ ପଣ୍ଡିତ-
ବୃନ୍ଦ ଶୁଣିବେ ମୋଦରେ ।"

କିନ୍ତୁ କବିଚନ୍ଦ୍ର ତାଙ୍କ ପ୍ରଣୀତ ରାସରେ ଭାବ ଓ ଭାଷା ଦୃଷ୍ଟିରୁ ପାଣ୍ଡିତ୍ୟପ୍ରଦର୍ଶୀ ମନୋଭାବ ପୋଷଣ କରି ନାହାନ୍ତି । ଉଦାହରଣସ୍ୱରୂପ:—

"ନିତ ନିତ ଯେତେ ମନା କଲି ତୋତେ
ଦିନେ ହେଲେ ନ ଶୁଣିଲୁ,
ବାଳୁତ କାଳୁ ତ ଗୋଠେ ବାହାରିଲୁ
ଏଡ଼େ ଅମାନିଆ ହେଲୁ
ରେ ଗୋବିନ୍ଦ !
ଧିକ ମୋ ଜନନୀ-ସୁଖ
ଧନ ବୋଲି ଦଣ୍ଡେ କୋଳେ ନ ଧରିଲି,
ନ ଚୁମ୍ବିଲି ଚନ୍ଦ୍ରମୁଖ ।
ବଣ-କନ୍ଦରାରେ କଣ୍ଟାବୁଦା ବୁଲି
କଅଁଳ ପାଦଯୋଡ଼ିକ
ଅଛି ପଡ଼ୁଥିବ ଖରା-ବରଷାରେ
ତହିଁରେ ଅସୁର-ଦକ
ରେ ମୋହନ !
ନିତି ମନ ଛନ ଛନ
ଗୋଠ ବାହୁଡ଼ାକୁ ଚାହିଁଥାଏ ଧନ !
ପିଣ୍ଡରେ ନଥାଏ ପ୍ରାଣ ।"
—ବନବିହାର

'କୌତୁକ ଚିନ୍ତାମଣି'ରେ କବି ରାସକୁ ଲୋକପ୍ରିୟ କରିବାପାଇଁ ସାମୟିକ କବିସୂର୍ଯ୍ୟଙ୍କ ରଚନାରୁ ଉଦ୍ଧାର କରି ଅଛନ୍ତି । 'ଗୀତଗୋବିନ୍ଦ'ରେ ସଂସ୍କୃତର ଗୁରୁଲଘୁ ନିୟମର ପୂର୍ଣ୍ଣ ସାମଞ୍ଜସ୍ୟ ରକ୍ଷି, ସେ ଯେପରି ନାଟ୍ୟରୂପ ଦେଇଛନ୍ତି, ତାହା କବିଚନ୍ଦ୍ରଙ୍କର ସଙ୍ଗୀତ ତଥା କଳାପ୍ରାଣତାର ପରମ ପରିଚୟ ଦେଇଥାଏ । ଜୟଦେବଙ୍କର ଅନୁପମ କାବ୍ୟକଳା ପ୍ରକୃତରେ କାଳୀଚରଣଙ୍କ କରଣୀର କାଉଁରୀସ୍ପର୍ଶରେ ହୋଇପାରିଛି ହୃଦ୍ୟ ଓ ସର୍ବବୋଧ ।

'ପ୍ରୀତ ସୁଧାକର'ରେ କବି ଉପେନ୍ଦ୍ରଭଞ୍ଜ, ବନମାଳୀ, ଗୌର ଚରଣ ଇତ୍ୟାଦି ପ୍ରାତଃସ୍ମର କବିମାନଙ୍କର 'ସଙ୍ଗୀତ ସଂଯୋଗ କରି ନାଟକଟିକୁ ସେ ଅଧିକ ରସାନୁସାରି କରି ପାରିଅଛନ୍ତି । 'ବାଁଶରୀ-ବିଳାସ' ଯାହାକି କବିଙ୍କ ଦ୍ୱାରା ବାରିପଦାରେ ୧୯୨୨ ମସିହାରେ ଲିଖିତ ଓ ଅଭିନୀତ ହୋଇଥିଲା, ସେଥିରେ ସର୍ବପ୍ରଥମେ ଓଡ଼ିଶୀ ନୃତ୍ୟର ପ୍ରବର୍ତ୍ତନ କରାଯାଇଥିଲା । କବି କିଶୋର ଚନ୍ଦ୍ରାନନ୍ଦ ଚମ୍ପୂର ଜଣେ ପରମ ଭକ୍ତ । ଚମ୍ପୂକୁ ଘରେ ଘରେ ପରିଚିତ କରାଇବା ମାନସରେ ସେ ତାହାକୁ ନାଟ୍ୟରୂପଦେଇ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ପରିବେଷଣ କରି ସମସ୍ତଙ୍କର ପ୍ରଶଂସା-ଅର୍ଜନ କରିଥିଲେ ।

'ଗାର୍ଲସ୍କୁଲ' ହେଉଛି ପେଷାଦାରୀ ରଙ୍ଗମଞ୍ଚରେ କାଳୀଚରଣଙ୍କର ପ୍ରଥମ ସାମାଜିକ ନାଟକ । ୧୯୪୨ ମସିହା ଫେବୃୟାରୀ ୧୪ ତାରିଖରେ ଓଡ଼ିଶା ଥିଏଟର୍ସରେ ନାଟକଟି ହୋଇଥିଲା ସର୍ବପ୍ରଥମେ ଅଭିନୀତ । ଏଥିରେ ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକ ଯୁବତୀଙ୍କ ଜୀବନର ଏକ ମନୋରମ ଆଲେଖ୍ୟ ହୋଇଛି ପ୍ରସ୍ଫୁଟିତ—ରୂପାୟିତ । ତତ୍କାଳୀନ ସମ୍ବାଦ ପତ୍ର 'New Orissa ଓ 'ଆଶା' ନାଟକଟିର ଭୂୟସୀ ପ୍ରଶଂସାକରି ଲେଖିଥିଲେ:—

(1) "The play was a grand success from the begining to the end and presented a lively pricture of the life of our new fangled youths and school-going girls. There was a large number of spectators for all of whom accommodation could not be provided".—(New Orissa—Fub. 16, 1942)

(୨) "ନାଟକଟି ଆମୂଳଚୂଳ ଉପଭୋଗ୍ୟ । ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକ-ଯୁବତୀଙ୍କ ଜୀବନର ଅବିକଳ ଆଲେଖ୍ୟ ଏଥିରେ ପ୍ରଦତ୍ତ । କେବଳ ଉପଭୋଗ୍ୟ କହିଲେ ଠିକ୍ ହେବ ନାହିଁ, ଏହା ଏକାଧାରରେ ମଧ୍ୟ ଶିକ୍ଷାପ୍ରଦ ।"—
(ଆଶା—ତା ୧୪ । ୨ । ୪୨)

'ଜୟଦେବ' କାଳୀବାବୁଙ୍କର ଅନ୍ୟ ଏକ ପ୍ରସିଦ୍ଧ ନାଟକ । 'ଗୀତଗୋବିନ୍ଦ' ନାଟକର ସଫଳତା କବିଙ୍କୁ ଦେଇଥିଲା ଏହି ନାଟକ ଲେଖିବାପାଇଁ ପ୍ରେରଣା । ସେ ଏଥିରେ ଉଗ୍ରପନ୍ଥୀ ବଙ୍ଗବାସୀଙ୍କର ମତଖଣ୍ଡନକରି ଜୟଦେବଙ୍କୁ ଓଡ଼ିଆ ବୋଲି ସାବ୍ୟସ୍ତ କରିଅଛନ୍ତି । ମିଥିଳାର ପ୍ରସିଦ୍ଧ ଆଳଂକାରିକ କେଶବ ମିଶ୍ର ତାଙ୍କର "ଅଲଙ୍କାରଶେଖର" ନାମକ ଗ୍ରନ୍ଥରେ ଉତ୍କଳ ରାଜାଙ୍କୁ ସମ୍ବୋଧନ କରି କହିଅଛନ୍ତି:—

"କେଂଦୁବିଲ୍ୱେ ଭୂପତେ
ତବସଭା ସଂଭବତାଃ ପଣ୍ଡିତାଃ
ତତ୍ର ଶ୍ରୀ ଜୟଦେବ ପଣ୍ଡିତ
କବିସ୍ତନ୍ ମୂର୍ଦ୍ଧ୍ନି ବନ୍ୟସ୍ୟତେ" ।

ଅନ୍ୟରି ମଧ୍ୟ ଭକ୍ତମାଳାରେ ଉଲ୍ଲେଖ ଅଛି—

"ଜଗନ୍ନାଥ ପୁରୀ ପ୍ରାନ୍ତେ ଦେଶେଚୈବୋତ୍କଳାଭିଧେ
ବିନ୍ଦୁବିଲ୍ୱ ଇତି ଖ୍ୟାତୋ ଗ୍ରାମୋ ବ୍ରାହ୍ମଣ ସଂକୁଳଃ
ତତୋତ୍କଳେ ଆନ୍ତେ ଦ୍ୱିଜୋ ଜୟଦେବ ଇତି ଶ୍ରୁତଃ
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ ॥"

କେବଳ ଜୟଦେବଙ୍କ ଜନ୍ମପୀଠ କେନ୍ଦୁବିଲ୍ୱ ଗ୍ରାମ ବୀରଭୂମ ଜିଲ୍ଲାର କେନ୍ଦୁବିଲ୍ୱ ଗ୍ରାମର ନାମ ସହିତ ସାମଞ୍ଜସ୍ୟଥିବାରୁ ଟାଣି ଓଟାରି ଜୟଦେବଙ୍କୁ ବଙ୍ଗାଳୀ କହିବା ଯେତକ ଅସମୀଚୀନ, ସେତକ ହାସ୍ୟାସ୍ପଦ ମଧ୍ୟ । ଆଲୋଚ୍ୟ ନାଟକଟିର ସଂଳାପ ଓ ଶୈଳୀ ଖୁବ୍ ଉଚ୍ଚ କୋଟିର ହୋଇଛି; କିନ୍ତୁ ଗୀତଗୋବିନ୍ଦରୁ ଉଦ୍ଧୃତାଂଶ ଓ ସଙ୍ଗୀତର ଆତିଶଯ୍ୟ ନାଟକୀୟ ସାବଲୀଳତା କ୍ଷୁର୍ଣ୍ଣ କରିନଥିଲେ ମଧ୍ୟ ଗତିରେ ସାମାନ୍ୟ ଅନ୍ତରାୟ ସୃଷ୍ଟି କଲପରି ମନେ ହୁଏ । ସେ ଯାହା

ହେଉ ନା କାହିଁକି, ନାଟ୍ୟକାର ଏଥିରେ ଜାତି ଓ ସାହିତ୍ୟର ମୌଳିକତା ସଂରକ୍ଷଣ କରିବାପାଇଁ ଯଥାସାଧ୍ୟ ଚେଷ୍ଟା କରିଅଛନ୍ତି ଓ କୃତକାର୍ଯ୍ୟ ହୋଇଅଛନ୍ତି ମଧ୍ୟ । ସମାଲୋଚକଙ୍କ ଭାଷାରେ "ଜୟଦେବ ନାଟକରେ ଖାଲି ଯେ ଜୟଦେବଙ୍କୁ ଓଡ଼ିଆ ବୋଲି ପରିଚିତ କରାଯାଇଛି, ତା ନୁହେଁ; ନାଟକର ଭାଷା, ଭାବ, ଭଙ୍ଗୀ—ସମସ୍ତ ଏକାବେଳକେ ଓଡ଼ିଆର କଳାରେ ପରିପୂର୍ଣ୍ଣ । ଏହି ନାଟକଟି ପ୍ରତ୍ୟେକ ଓଡ଼ିଆର ଗର୍ବର ବିଷୟ ହୋଇ ରହିବ ।" (ନବଭାରତ—୮ । ୫ । ୪୩)

'ଭାତ' କାଳୀବାବୁଙ୍କର ଏକ ସାମାଜିକ ତଥା ସମସ୍ୟାମୂଳକ ନାଟକ । ୧୯୪୩ ମସିହାରେ ଓଡ଼ିଶାରେ ପଡ଼ିଥିବା ଖାଦ୍ୟାଭାବର ନଗ୍ନଚିତ୍ର ଏଥିରେ ପ୍ରଦତ୍ତ । ଆଜି ଯୋଜନାବହୁଳ ଯୁଗରେ ମଧ୍ୟ ଆମ ଦେଶରେ ଏହି ଚିତ୍ର ଅବାସ୍ତବ ନୁହେଁ । ଆମ ଦେଶର କୃଷୀ ମୁଣ୍ଡଝାଳ ତୁଣ୍ଡରେ ମାରି ଫସଲ ଆମଦାନୀ କରେ, ସତ; କିନ୍ତୁ ଦୁଃଖ ତା' ଜୀବନରୁ ଘୁଞ୍ଚେ ନା । ଜମିଦାର ଓ ସାହୁକାରର ଲାଲ ଆଖି ଦେଖି ତା'ର ସ୍ୱାଧୀନତା ହୋଇଯାଏ ସଙ୍କୁଚିତ । ଏହି ପାରମ୍ପରିକ ସତ୍ୟ ମଧ୍ୟ ନାଟକଟିରେ ପ୍ରତିଭାତ । ଭାଷା, ସଙ୍ଗୀତ ଓ ବିଷୟବସ୍ତୁର ଗତି ଓ ପରିଣତି ସୁସଂଯତ ଓ ବଳିଷ୍ଠ ହୋଇଛି । ଏଥିରେ 'ଗୋଟୀ'ନାଟକର ପ୍ରଭାବ ପଡ଼ିଛି ବୋଲି ଅନେକେ କହନ୍ତି; କିନ୍ତୁ ଉଭୟ ନାଟକର ସମସ୍ୟାଗତ ସାମ୍ୟ ଥିଲେ ମଧ୍ୟ ଉପଜୀବ୍ୟ ଉପାଦାନଗତ ଭିନ୍ନତା ଏକାନ୍ତ ସ୍ୱୀକାର୍ଯ୍ୟ । ଏହି ନାଟକଟି ଓଡ଼ିଶା ଥିଏଟର୍‌ସ୍‌ରେ ଧାରାବାହିକ ୧୦୮ ରାତି ଅଭିନୀତ ହୋଇ ଓଡ଼ିଶାରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିପାରିଛି । ସମାଲୋଚକଙ୍କ ଭାଷାରେ—

"The reason for the suceess of 'Bhata' was more for its themetic value than for anything else. The theme developed on the 1943 famine of Orissa which captured the imagination of the audiance. The dialogue was undoubtedly most natural to the characters projected and music and humour quite entertaining."

'ଓଡ଼ିଆ ସାହିତ୍ୟର ଇତିହାସ'ର ପ୍ରଣେତା ଡକ୍ଟର ମାନସିଂହଙ୍କ ମତରେ—"ଯାହାଙ୍କର ଲେଖନୀ ଓଡ଼ିଆ ରଙ୍ଗମଞ୍ଚରେ କଥୋପକଥନର ସ୍ୱାଭାବିକତା ଫେରାଇଆଣିପାରିଲା ଓ କେବଳ ସେହି କାରଣରୁ ହିଁ ଅତି ଶୀଘ୍ର ପୋଷାକି-ନାଟକବଳୀକୁ ରଙ୍ଗମଞ୍ଚରୁ ଅଚିରେ ସମ୍ପୂର୍ଣ୍ଣ ବିତାଡ଼ିତ କରିପାରିଲା, ସେ ହେଉଛନ୍ତି କାଳୀଚରଣ ପଟ୍ଟନାୟକ । ପଟ୍ଟନାୟକ ନାଟ୍ୟକାର କେବଳ ନୁହଁନ୍ତି, ସେ ଜଣେ ସଙ୍ଗୀତଜ୍ଞ ଓ ନିପୁଣ ଡିରେକ୍ଟର୍ । ସେ ପ୍ରାୟ ତିରିଶଟି ନାଟକର ଲେଖକ । ସେମାନଙ୍କ ଭିତରୁ 'ଭାତ'ର ଆଦ୍ୟପ୍ରକାଶ ନିମାଗତଭାବରେ ଏକଶତ ରଜନୀ ଚାଲିଥିଲା, ଯାହା ଓଡ଼ିଶାରେ ସୃଷ୍ଟି କରିଛି ଏକ ରେକର୍ଡ଼ । ପ୍ରାୟ କୋଡ଼ିଏ ବର୍ଷ ଧରି କାଳୀଚରଣ ନିଜର ଏକ ଦଳ ରଖି ଓଡ଼ିଶା ରଙ୍ଗମଞ୍ଚରେ ମୁଖ୍ୟ ସ୍ଥାନ ଅଧିକାର କରିଥିଲେ ଓ ଡିରେକ୍ଟରଭାବରେ ପୁରୁଣା ଅବହେଳିତ 'କଞ୍ଚାମାଲ'ରୁ ସାମ୍ପ୍ରତିକ ଓଡ଼ିଶାର ସକଳ ମୁଖ୍ୟ ଅଭିନେତା ଓ ଅଭିନେତ୍ରୀଙ୍କୁ ତିଆରିକରି ଠିଆକରାଇଦେଲେ । ପୂର୍ବେ ଓଡ଼ିଆ ରଙ୍ଗମଞ୍ଚର ଅଭିନୟ ଥିଲା ଦରବାରୀ ବସ୍ତୁ—ଅତ୍ୟନ୍ତ ଅସ୍ୱାଭାବିକ । କାଳିବାବୁ ହିଁ ସେଠି ସ୍ୱାଭାବିକତାକୁ ତାର ସ୍ୱ-ଅଧିକାର ଫେରାଇଦେଇଛନ୍ତି । ସେ କଥୋପକଥନକୁ ମଧ୍ୟ ସ୍ୱାଭାବିକତା ଆଣିଦେଲେ ରଙ୍ଗମଞ୍ଚରେ ସଙ୍ଗୀତକୁ ଦେଲେ ଏକ ଶକ୍ତିଶାଳୀ ଭୂମିକା । ବସ୍ତୁତଃ କାଳୀବାବୁଙ୍କ ନାଟକାବଳୀ ଶାସ୍ତ୍ରୀୟ ନାଟକୀୟ ଶିଳ୍ପ ପାଇଁ ଯେତେ ମୂଲ୍ୟବାନ୍ ନୁହନ୍ତି, ଯେତେ ସେଗୁଡ଼ିକ ଜନପ୍ରିୟ, ସେଥିରେ ଥିବା ସାଙ୍ଗୀତିକ ଉପାଦାନଯୋଗୁଁ ।" (ପୃ ୩୪୩—୩୪୪) ।

ପ୍ରକୃତରେ କାଳୀଚରଣ ଏହି ନାଟକଜରିଆରେ ଓଡ଼ିଆ ସାହିତ୍ୟକୁ ଯାହା ଦାନ କରିଅଛନ୍ତି, ତାହାଠାରୁ ଅଧିକ ଦାନ କରିଛନ୍ତି ନାଟକଟିରେ ଅବତାରିତ ସଙ୍ଗୀତଜରିଆରେ । ଉଦାହରଣସ୍ୱରୂପ, ଯେତେବେଳେ ଦର୍ଶକ ଶୁଣେ—

"ମରଣର ଚିତା ମନ୍ଥନ କରି ଅକାଳ ମଡ଼ାଏ ଉଠ ରେ ଚେଇଁ
ହାଡ଼-ଚମ ଯେନ କଙ୍କାଳ ଆସି ମରି କି ଡରୁଛ ଜଳିବାପାଇଁ ?
କିଏ କହେ ତୁମେ ଭିକାରୀ ବୋଲି ରେ
ଯାଯାବର ବୋଲି କହୁଛି କିଏ ?

ରାଜା ସାଉକାର ତୁମେ ତ ଗଢ଼ିଛ ଘଡ଼ା ପୋଡ ଆଜ ବସିଛ ଯିଏ ।
ତୁମ କରଣୀରେ ସୁର'ଣା ମୂଳରେ
ଏଇ ଘରଗଢ଼ା ମନେ କି ନାହିଁ ?

× × × × ×

ଚକ ଘୁରିଯିବ, ଚହଲ ପଡ଼ିବ, ଅନ୍ଧାର ହେବ ରେ ଆଲୁଅ ଘର
ହେମ-ସିଂହାସନ ଥରଉଠିବ ରେ, ତୁମେ ଯେବେ ଥରେ ଦେବ ହୁଂକାର
ଦୁନିଆଁ ଆଖିରେ ଆଙ୍ଗୁଠି ହଲାଇ
ବଡ଼ କିଏ ତୁମେ ଦେବ ଦେଖାଇ ।
ଚମକିପଡ଼ ନା ବାଟୋଇ ରେ ଦେଖି ସନ୍ଧୀ-ଜଗୁଆ ଏଇ ନଅର ।" ଇତ୍ୟାଦି ।

ସେତେବେଳେ ତା' ମନରେ ବିଦେଶୀ ଶାସକଙ୍କପ୍ରତି ସ୍ୱତଃ ଘୃଣାର ସଞ୍ଚାର ହୁଏ । ପ୍ରକୃତରେ 'ସ୍ୱାତି' ନାଟକର ରିହର୍ସଲ୍ ସମୟରେ ତତ୍କାଳୀନ ଗୋରାସରକାରଙ୍କ ବିରୁଦ୍ଧରେ ଏଥିରେ ବିଷୋଦ୍‌ଗାରଣ କରାଯାଇଛି ବୋଲି ଅଭିଯୋଗ ହେବାରୁ ରାଜ୍ୟପାଳଙ୍କ ସେକ୍ରେଟାରୀ Mr. R. S. Swan ନିଜେ ଆସି ରଙ୍ଗମଞ୍ଚରେ ତାହାର ଅନୁସନ୍ଧାନ କରିଥିଲେ; କିନ୍ତୁ କିଛି ନ ବୁଝିପାରିବାରୁ ବିଫଳମନୋରଥ ହୋଇ ତାଙ୍କୁ ଫେରିବାକୁ ପଡ଼ିଥିଲା ।

'ଅଭିଯାନ' କାଳୀଚରଣଙ୍କର ଏକ ପ୍ରସିଦ୍ଧ ଐତିହାସିକ ନାଟକ । ଗଜପତି ପୁରୁଷୋତ୍ତମ ଦେବଙ୍କର କାଞ୍ଚି-ଅଭିଯାନଉପରେ ନାଟକର ବିଷୟବସ୍ତୁ ଆଧାରିତ । ଏହାପୂର୍ବରୁ ରାମଶଙ୍କରଙ୍କର 'କାଞ୍ଚି-କାବେରୀ', ଭିକାରି-ଚରଣଙ୍କର 'ରାଜା ପୁରୁଷୋତ୍ତମ ଦେବ' ଓ ଗୋଦାବରୀଶ ମିଶ୍ରଙ୍କର 'ପୁରୁଷୋତ୍ତମ ଦେବ' ନାଟକ ଏହି ବିଷୟବସ୍ତୁକୁ ଭିତ୍ତି କରି ଲିଖିତ ହୋଇଥିଲା । ତେଣୁ ଲେଖକଙ୍କଉପରେ ଏହି ନାଟକଗୁଡ଼ିକର ବିଷୟବସ୍ତୁଗତ ପ୍ରଭାବ ପଡ଼ିଥିବା ଅସମ୍ଭବ ନୁହେଁ । ତେବେ ବିଷୟବସ୍ତୁର ଉପସ୍ଥାପନାରେ କବିଚନ୍ଦ୍ରଙ୍କର ସ୍ୱାତନ୍ତ୍ର୍ୟ ସ୍ପଷ୍ଟ । ଭାଷା ଓ ଭାବର ଛନ୍ଦେ-ଛନ୍ଦେ ଜାତୀୟତା ପରିସ୍ଫୁଟ; କିନ୍ତୁ ଦ୍ୱିତୀୟ ଅଙ୍କ ଚତୁର୍ଥ ଦୃଶ୍ୟରେ ନାଟ୍ୟକାର କାଳିଦାସଙ୍କୁ ଓଡ଼ିଆ ବୋଲି ଯେଉଁ ଯୁକ୍ତି ବାଢ଼ିଛନ୍ତି, ତାହା ବିଶେଷ ବଳିଷ୍ଠ ନୁହେଁ; ବରଂ ନିଜ ଉଗ୍ର ଜାତୀୟବାଦର ପରିଚୟକ । ଏତଦ୍‌ବ୍ୟତୀତ ସଂଳାପଗତ ବଳିଷ୍ଠତା ନାଟକଟିର ସାହିତ୍ୟିକ ମାନ ମଧ୍ୟ ବୃଦ୍ଧି କରିଛି । "ସ୍ୱାଧୀନତା ଦାନର ବସ୍ତୁ ନୁହେଁ—ଦାବୀର ବସ୍ତୁ, ସାଧନାରବସ୍ତୁ", ଏହିପରି ଓଜସ୍ୱିନୀ ସଂଳାପ ପୁରୁଷୋତ୍ତମଙ୍କ ମୁହଁରେ ଦେଇ ନାଟ୍ୟକାର ଓଡ଼ିଆ ଜାତିର ବୀରତ୍ୱ ଓ ପରାକାଷ୍ଠା ପ୍ରତିପାଦନ କରିଅଛନ୍ତି । ପଦ୍ମାବତୀଙ୍କର ପୁରୁଷୋତ୍ତମ ଦେବଙ୍କ ପ୍ରତି ଗଭୀର ପ୍ରୀତି ଓ 'କାବେରୀ ସେପାରି ବାଲି' ଇତ୍ୟାଦି ରୋମାନ୍ଟିକ୍ ସଙ୍ଗୀତର ସଂଯୋଜନା ଐତିହାସିକ ନୀରସତାଭିତରେ ସଞ୍ଚାର କରିଛି ସରସତା । ନାଟକୀୟ ଚରିତ୍ରଗୁଡ଼ିକରେ ବୈଚିତ୍ର୍ୟ ବିଶେଷଭାବେ ପରିଦୃଷ୍ଟ ନ ହେଲେ ମଧ୍ୟ ସେମାନଙ୍କର ମନୋଭାବ ଚିତ୍ରଣ ଅତି ଉଚ୍ଚକୋଟିର ହୋଇଛି । ନାଟ୍ୟକାର ଆଲୋଚ୍ୟ ନାଟକଟିରେ ଦୁଇ ପ୍ରକାର ଦ୍ୱନ୍ଦ୍ୱର କରିଛନ୍ତି ସମାବେଶ । ଉତ୍କଳସହିତ କାଞ୍ଚିର ସଂଘର୍ଷ ଓ ପୁରୁଷୋତ୍ତମଙ୍କର ପଦ୍ମାବତୀଙ୍କସହିତ ପ୍ରଣୟ ବାହ୍ୟ ଓ ଅନ୍ତର୍ଦ୍ୱନ୍ଦ୍ୱର ଉଦାହରଣ । ଗୋଦାବରୀଶଙ୍କର 'ପୁରୁଷୋତ୍ତମ ଦେବ' ନାଟକରେ ପୁରୁଷୋତ୍ତମ ଓ ପଦ୍ମାବତୀଙ୍କ ମଧ୍ୟରେ ଯେଉଁ ପ୍ରେମର ଚିତ୍ର ଦିଆଯାଇଛି, ତାହାର ସମନ୍ୱୟ ରକ୍ଷା କରାଯାଇପାରି ନାହିଁ; କିନ୍ତୁ କବିଚନ୍ଦ୍ରଙ୍କ ନାଟକରେ ଏପ୍ରକାର ଦୋଷ ଦୃଷ୍ଟ ହୁଏ ନାହିଁ । ନାଟକର ସଂଳାପରେ ବାଗାଡ଼ମ୍ବର ଥିଲେ ମଧ୍ୟ, ପ୍ରକାଶଭଙ୍ଗୀର ଚମତ୍କାରିତା, ଭାଷାର ଶୈଳୀ, ବର୍ଣ୍ଣନାର ପରିପାଟୀ ଦର୍ଶକ ତଥା ପାଠକର ପ୍ରତ୍ୟେକ ତନ୍ତ୍ରୀକୁ ଝଂକୃତ କରିବାର କ୍ଷମତା ହରାଇ ନାହିଁ । ଉଦାହରଣସ୍ୱରୂପ, ଯେତେବେଳେ ଦର୍ଶକ ଶୁଣେ—

"ପାଞ୍ଚ ଶ ବରଷ କଥା—
ଏଇ କଙ୍କାଳର ଥିଲା ଯେତେବେଳେ
ରକତ ମାଉଁସ ମଥା ।

ମାନ-ଅପମାନ ବାଧୁଥିଲା ତାକୁ
ବଳ ଥିଲା ଗ୍ରାମ ଠେଲି ଚାଲିବାକୁ
ତାଲ ଖଣ୍ଡାମୁନ ଗାଉଥିଲା ଧନେ—
ଜାତିର ଜୀବନ ଗୀତା—
କାନରେ ପଡ଼ିଲେ ଦେଶଘାଇ ଡାକ
ଡେଇଁପଡ଼ୁ ଥିଲେ କୋଟିଏ ପାଇକ
ଗ୍ରାମ ଠେକ ବଡି କଲାଇ ଏ ଜାତି
ହାତପର ଥିଲେ ଦଳ୍ପା ।

× × ×

ପାଶୋରି କଥାକୁ ଦେବାକୁ ଚେତାଇ
ରକତେ ସେ ତେଜ ଦେବାକୁ ମତାଇ
ଭାଇ ଆଗେ ଆଜ ବାଡ଼ି ମୁଁ ବସିଲି
ଏହି "ଅଭିଯାନ' ଗାଥା" ଇତ୍ୟାଦି—

ସେତେବେଳେ ପ୍ରତିଓଡ଼ିଆଙ୍କ ମନରେ ଏକ ଅପୂର୍ବ ଶିହରଣ ଜାଗିଉଠେ ନାହିଁ କି ? ଏତଦ୍‌ଭିନ୍ନ ନାଟକଟିରେ ଯେଉଁ ହାସ୍ୟରସର ଅବତାରଣା କରାଯାଇଛି, ତାହା ଶସ୍ତା ନ ହୋଇ ହୋଇଛି ସାର୍ଥକ । ପ୍ରତିଦୃଶ୍ୟର ସମାପ୍ତିରେ ସଙ୍ଗୀତ ସଂଯୋଗ କରି ଲେଖକ ଶେଷପର୍ଯ୍ୟନ୍ତ ନାଟକୀୟ ଉତ୍କଣ୍ଠା ରକ୍ଷା କରିଅଛନ୍ତି ।

'ରକ୍ତମାଟି' କାଳୀବାବୁଙ୍କର ଅନ୍ୟ ଏକ ସାର୍ଥକସୃଷ୍ଟି । ପୁଞ୍ଜିପତି ମିଲ୍‌ମାଲିକଙ୍କର କାରସାଦି ନିରୀହ କର୍ମ-ପରାୟଣ ପଲ୍ଲୀବାସୀଙ୍କ ଜୀବନରେ କିପରି ଅନ୍ତରାୟ ସୃଷ୍ଟି କରିଛି ଓ ଯନ୍ତ୍ରଶିଳ୍ପର କରାଳ ଗ୍ରାସ ଗ୍ରାମ୍ୟ ଶିଳ୍ପବିକାଶରେ କିପରି ପ୍ରତିବନ୍ଧକତା ସୃଷ୍ଟି କରିଛି, ଏହି ପାରମ୍ପରିକ ସମସ୍ୟାକୁ କେନ୍ଦ୍ର କରି ନାଟକଟି ଲିଖିତ । ନାଟକଟି ସବୁ ଦୃଷ୍ଟିରୁ ନାଟ୍ୟକଳାର ସୂକ୍ଷ୍ମକୋଟିକୁ ସ୍ପର୍ଶ କରିଛି । ଦୈନନ୍ଦିନ ସମାଜର ନିରାଟ ସତ୍ୟକୁ ଅନୁଭୂତିରସାଣିତ କରିଛନ୍ତି ନାଟ୍ୟକାର । ଯନ୍ତ୍ରଯୁଗର ଆଗମନଫଳରେ ନିରୀହ ପଲ୍ଲୀବାସୀଙ୍କ ସରଳ ସ୍ୱଚ୍ଛନ୍ଦ ଜୀବନ କିପରି ଧ୍ୱଂସାଭିମୁଖୀ ହେଉଛି, ସେବିଷୟରେ ସେ ସମସ୍ତଙ୍କୁ ସତର୍କ କରିଦେଇଛନ୍ତି । କର୍ମୀମାନଙ୍କ ମୁହଁରେ ସେ ଗୁଆଇଛନ୍ତି ଅଗ୍ନିବର୍ଷୀ ସଙ୍ଗୀତ—

"ଆଲୋକ ପଥର ଯାତ୍ରୀ
ଚାଲ-ରେ, ଚାଲ ରେ — (ଆଲୋକ ପଥର ଯାତ୍ରୀ)
ଦଳି ଚାଲ ବୀର, ତମସାଘନ ରାତ୍ରୀ ।
(ଆସୁ) ଝଡ଼, ଝଞ୍ଜା, ବିଜୁଳି-ଚମକ ସିନ୍ଧୁ ଗରଜ ପ୍ରଳୟ-ଧମକ
ହୁଂକା-ରିଉଠୁ ଶତ୍ରୁ ଚମକ ଅଟଳ ଜୀବନ-ତନ୍ତ୍ରୀ ।
ଶତ ବାଧାବିଘ୍ନ ଭେଦ ଆମେ ଗଢ଼ିବୁ ରେ ବାଟବାଟ
ବଜ୍ର ବରଷା ଯେବେ ପଡ଼େ ମାଥେ
ଆକାଶ ପଡ଼ୁ ରେ ଫାଟି
ଯାଉ ରେ ଜୀବନ, ଆସୁ ରେ ମରଣ, ଥାଉ ଏ ରକ୍ତମାଟି
ସତ୍ୟର ଆମେ ସାନ୍ତ୍ରୀ ।"

"ମଣିଷର ବଞ୍ଚିରହିବାଟା ହେଉଛି ତା'ର ହକ୍ ଅଧିକାର—କାହାରି ଦୟା ବା ଅନୁଗ୍ରହସାପେକ୍ଷ ନୁହେଁ। ଲକ୍ଷ୍ୟ ତା'ର ଭିକ୍ଷା ନୁହେଁ—ଦାବୀ"। ଏହା ନାଟକର ପ୍ରଥମ ଅଙ୍କ ଦ୍ୱିତୀୟ ଦୃଶ୍ୟରେ କର୍ମୀମୁହଁରେ ପ୍ରକାଶ କରିଛନ୍ତି ନାଟ୍ୟକାର। କୌଣସି ଦାବୀ ହାସଲ କରିବାକୁ ହେଲେ ମଣିଷକୁ ସହିବାକୁ ପଡ଼ିବ ଅକଥନୀୟ ନିର୍ଯ୍ୟାତନା। "ସ୍ୱାର୍ଥ ତ୍ୟାଗ ନ କଲେ କୌଣସି ଜାତି ମୁଣ୍ଡ ଟେକିପାରେ ନା"—ଏହି ଆଦର୍ଶ ହୋଇଛି ଦ୍ୱିତୀୟ ଅଙ୍କ ପଞ୍ଚମ ଦୃଶ୍ୟରେ ପ୍ରତିଫଳିତ।

'ଅତିବଡ଼ୀ ଜଗନ୍ନାଥଦାସ' କାଳୀବାବୁଙ୍କର ଏକ ପରିଚୟପ୍ରଧାନ ନାଟକ। ଜଗନ୍ନାଥ ଦାସଙ୍କସମ୍ବନ୍ଧରେ ଶୁଣାଯାଉଥିବା ବହୁ କିମ୍ବଦନ୍ତୀଉପରେ ଏହି ନାଟକଟି ଆଧାରିତ। ଜଗନ୍ନାଥ ଦାସଙ୍କର ଜନ୍ମ କେବେ, ତାହା ଏପର୍ଯ୍ୟନ୍ତ ଜଣାପଡ଼ି ନାହିଁ। ଭାଦ୍ର ମାସ ଶୁକ୍ଳ ଅଷ୍ଟମୀ ଦିନ ମଧ୍ୟାହ୍ନ ସମୟରେ ସେ ଜନ୍ମ ଗ୍ରହଣ କରିଥିଲେ ବୋଲି ଦିବାକର ଦାସ ଲେଖିଛନ୍ତି। ମହାମହୋପାଧ୍ୟାୟ ସ୍ୱର୍ଗୀୟ ସଦାଶିବ ମିଶ୍ର ତାଙ୍କ "ଅତିବଡ଼ୀ ଜଗନ୍ନାଥଦାସ ସ୍ୱାମୀ" ଗ୍ରନ୍ଥରେ ୧୯୪୦ ମସିହାରେ ଜଗନ୍ନାଥ ଦାସଙ୍କର ଜନ୍ମ ବୋଲି ସୂଚନା ଦେଇଛନ୍ତି। ସେ ଯାହାହେଉ ନା କାହିଁକି, ଗଜପତି ପ୍ରତାପରୁଦ୍ରଦେବଙ୍କ ସମୟରେ ଦାସ ଆପଣଙ୍କର ଆବିର୍ଭାବ ହୋଇଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ। ତାଙ୍କର'ଅତିବଡ଼ୀ'ଉପାଧିପ୍ରାପ୍ତି, ସାତଲହଡ଼ି ମଠପ୍ରତିଷ୍ଠା ଓ ବହୁ ଅଲୌକିକତାକୁ ନାଟ୍ୟକାର ନାଟକଟିରେ କରିଛନ୍ତି ଅଙ୍ଗୀଭୂତ। ଯେହେତୁ କାଳୀବାବୁ ଏକାଧାରରେ ନାଟ୍ୟକାର ଓ ସଙ୍ଗୀତଜ୍ଞ, ତେଣୁ ସଙ୍ଗୀତର ବହୁଳ ସମାବେଶ ନାଟକଟିରେ ପରିଦୃଷ୍ଟ। ବୋଧ ହୁଏ ନାଟକଟିକୁ ରଙ୍ଗମଞ୍ଚରେ ଅଧିକ ଆକର୍ଷଣୀୟ କରିବାକୁ ଲେଖକ ଏପରି କରିଛନ୍ତି। ଏହା ଆଧୁନିକ ନାଟକଦୃଷ୍ଟିରୁ ଅବଶ୍ୟ ସମାଲୋଚ୍ୟ। ଭାଷା ଚରିତ୍ରୋପଯୋଗୀ ହୋଇଛି। ବିଶେଷ କରି ପଣ୍ଡାମାନଙ୍କ ମୁହଁରେ ପୁରୀର କଥିତଭାଷା ଫୁଟାଇ କାଳୀଚରଣ ନାଟକଟିରେ ଅବତାରଣା କରିଛନ୍ତି ସ୍ୱାଭାବିକ ହାସ୍ୟରସ। ନାଟକଟିର ଶେଷାଂଶ ଖୁବ୍ ହୃଦୟସ୍ପର୍ଶୀ ହୋଇଛି। ଉଗ୍ରପନ୍ଥୀ ବଙ୍ଗବାସୀଙ୍କର ଓଡ଼ିଆଙ୍କପ୍ରତି ଘୃଣା ଓ ବ୍ୟଙ୍ଗୋକ୍ତିର ଚଡ଼ାଉତ୍ତର ଦିଆଯାଇଛି ଏହି ନାଟକଜରିଆରେ। ଏହି ନାଟକରେ ଓଡ଼ିଶାର ରଙ୍ଗମଞ୍ଚରେ ପ୍ରଥମେ 'ଓଡ଼ିଶୀ ନୃତ୍ୟ' ପରିବେଷିତ ହୁଏ। ନାଟ୍ୟକାର ଓଡ଼ିଶାର ରଙ୍ଗମଞ୍ଚରେ ଅଭିନେତ୍ରୀ ଭୂମିକାରେ ପ୍ରଥମେ ନାରୀମାନଙ୍କୁ ଅବତୀର୍ଣ୍ଣ କରାଇଥିଲେ। ଏହି ନାଟକରେ କିନ୍ତୁ ନାଟ୍ୟକାର ପୁରୁଷ-ଭୂମିକାରେ କେତେକ ଅଭିନେତ୍ରୀଙ୍କୁ ମଧ୍ୟ ଅବତୀର୍ଣ୍ଣ କରାଇଥିଲେ।

'ଫଟାଭୂଇଁ' ଏକ ଜାତୀୟତାବ୍ୟଞ୍ଜକ ନାଟକ। ଓଡ଼ିଶାର ଦୀର୍ଘ ଦେଢ଼ ଶହ ବର୍ଷର ଇତିହାସ ଏଥିରେ ଲିପିବଦ୍ଧ। ଇଂରେଜମାନଙ୍କ ଆଗମନଜନିତ ଅବ୍ୟବସ୍ଥା ଓ ଦେଶର ଆର୍ଥନୀତିକ ବିବର୍ତ୍ତନ ଏଥିରେ ହୋଇଉଠିଛି ସ୍ପଷ୍ଟ। ଦେଶର ବାଣିଜ୍ୟ, ଶିଳ୍ପ ଓ ହସ୍ତଶିଳ୍ପ ବିଦେଶୀମାନଙ୍କ ଆଗମନରେ କିପରି ଗୌରବୋଜ୍ଜ୍ୱଳ ପରମ୍ପରା ହରାଇଛି, ତାହା ହିଁ ନାଟ୍ୟକାର ପ୍ରତିପାଦନ କରିଛନ୍ତି ଏହି ନାଟକଟିରେ। ନାଟକଟି ନିରବଚ୍ଛିନ୍ନଭାବେ ଓଡ଼ିଶା ଥିଏଟର୍ସ୍‌ରେ ଶହେ ଦୁଇ ରାତି ଅଭିନୀତ ହୋଇଥିଲା। ଡକ୍ଟର ମହତାବଙ୍କ ଭାଷାରେ—"ଭାରତର ଦୀର୍ଘ ଦେଢ଼ ଶହ ବର୍ଷର ଇତିହାସକୁ କାଳୀଚରଣ ଯେପରିଭାବରେ ନାଟକୋପଯୋଗୀ କରି ଥୋଇଛନ୍ତି, ତାହା ତାଙ୍କପରି ଶିଳ୍ପୀ ବ୍ୟତୀତ ଅନ୍ୟ କେହି ସହଜରେ କରିପାରିବେ ନାହିଁ। 'ଯୁଗପୁରୁଷ'ର କଳ୍ପନାଟି ବିଚିତ୍ର ଓ ତାଙ୍କରିଯୋଗୁଁ ନାଟକଟି ରୋମାଞ୍ଚକର ହୋଇଛି। ଭାଷା, ଶୈଳୀ ଓ ଦୃଶ୍ୟସଜା ବାସ୍ତବିକ ଅତି ଉଚ୍ଚଦରର।" ନାଟକଟିରେ ନଟନଟୀଙ୍କ ମୁଖର ବଚନିକା ପଦ୍ୟମୟୀ। ଏହା ଓଡ଼ିଶା ରଙ୍ଗମଞ୍ଚରେ ଏକ ଅଭିନବ ସର୍ଜ୍ଜନା କହିଲେ ଅତ୍ୟୁକ୍ତି ହେବ ନାହିଁ। ଗ୍ରୁପ୍ୟାଦୃଶ୍ୟ ପରିକଳ୍ପା ମଧ୍ୟ ସେହିପରି ନାଟ୍ୟକାରଙ୍କ ଅଭିନବ କଳ୍ପନା, ଯାହା ଓଡ଼ିଶା ବାହାରେ ମଧ୍ୟ ଅବଧି ସଂଭବପର ହୋଇଥିବା ସନ୍ଦେହ। କାଳୀବାବୁଙ୍କର 'ଚୁମ୍ବନ' ଏକ ସାମାଜିକ ନାଟକ। ଏଥିରେ ସାଙ୍ଗୀତିକ ଆତିଶଯ୍ୟ ଥିଲେ ମଧ୍ୟ ଅଛି ସଂସ୍କାରପାଇଁ ଅଫୁରନ୍ତ ପ୍ରେରଣା। 'ବେକାର' ମଧ୍ୟ କବିଙ୍କର ଅନ୍ୟ ଏକ ସାର୍ଥକ ସୃଷ୍ଟି। ପ୍ଲାଟ୍‌ଫର୍ମରେ ରେଲଷ୍ଟେସନ୍ ଦେଖାଇବା ବୋଧ ହୁଏ ଏହି ନାଟକରେ ସର୍ବପ୍ରଥମ। ଓଡ଼ିଶାର ଅଙ୍ଗହାନି, ପ୍ରବାସୀ ଓଡ଼ିଆର ଦୁଃଖକାହାଣୀ ଏଥିରେ ବିଶେଷଭାବେ ଅଙ୍ଗୀଭୂତ।

"ମାଆ କୋଳଛଡ଼ା ହେଉଣ୍ଡି ଭୁଅରେ ରୁ ପର ଦୁନିଆ ବାହାର
ମାଆ ହାତ ଧରି ବାନ୍ଧି କରିଛି ବାଙ୍ଗ ସେପାଖେ ବିହାର।

ଗଲା କାଟି ତେଣେ ମଥାରେ ମାରୁଛୁ ଆନ୍ଦ୍ର ପାହାର ପାହାର
ଗୁଡରେ ବସି ତୁ କ୍ଷୀର-ଖାଇ ମନ କରୁଛୁ ରେ ବାବୁ ଯାହାର ।”

ଏହିପରି ବହୁ ମାର୍ମିକ ଉକ୍ତିରେ ନାଟକଟି ଓତପ୍ରୋତ । ଏହି ନାଟକଟିରେ ହିନ୍ଦୀ ସଂଗୀତ ଅବତାରଣା କରାଯାଇଛି; ଯାହା କି ତାଙ୍କ ନାଟ୍ୟକୀର୍ତ୍ତି ସୃଷ୍ଟିରେ ସର୍ବପ୍ରଥମ । ପଣ୍ଡିତଙ୍କ ମୁହଁରେ ସଂସ୍କୃତଶ୍ଳୋକର ଅବତାରଣା ପାଣ୍ଡିତ୍ୟମୁଖୀ ହୋଇଛି । କୋରାପୁଟର ଜୟପୁରଠାରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀରେ ଏହି ନାଟକଟି ଉଚ୍ଚପ୍ରଶଂସିତ ହୋଇଥିଲା । ନାଟକ ‘ପରିବର୍ତ୍ତନ’ରେ ପୂର୍ବନାଟକ ତୁଳନାରେ ଦୃଶ୍ୟଗୁଡ଼ିକୁ ସଙ୍କୁଚିତ କରାଯାଉଛି । ଏହା ଓଡ଼ିଆ ନାଟ୍ୟସାହିତ୍ୟରେ ଏକ ଅଭିନବ ପରିପାଟୀର ସୂଚନା । ସମାଜ-ସଂସ୍କାର ଏହି ନାଟକଟିର ହେଉଛି କେନ୍ଦ୍ରୀୟ ଆଦର୍ଶ । ଭାଷା, ସଂଳାପ, ଗତି ଓ ପରିଣତି ନୀତିସମ୍ମତ ହୋଇଛି ।

‘ରକ୍ତମନ୍ଦାର’ କାଳୀବାବୁଙ୍କର ଏକ ଐତିହାସିକ ନାଟକ । ଖୋର୍ଦ୍ଧା ଓ ବାଙ୍କୀର ଲୋକଶ୍ରୁତି ଉପରେ ଏହା ଆଧାରିତ । ବାଙ୍କୀରାଣୀ ‘ଶୁକଦେଈ’ଙ୍କର ଅପୂର୍ବ ବୀରତ୍ୱ ଓ ଆଦର୍ଶବତ୍ତା ଏଥିରେ ସ୍ପଷ୍ଟ ପ୍ରତିଭାତ । ଏହି ବିଷୟବସ୍ତୁକୁ ଭିତ୍ତି କରି ତାଙ୍କର ‘ରାଣୀ ଶୁକଦେଈ’ ଗୀତିନାଟ୍ୟଟି ମଧ୍ୟ ଲିଖିତ, ଆକାଶବାଣୀଦ୍ୱାରା ପ୍ରଚାରିତ ଓ ସର୍ବମୁଖରେ ପ୍ରଶଂସିତ । ନାଟକଟିର ବିଷୟବସ୍ତୁ ନିର୍ବାଚନ, ସଂଳାପ, ସଂଯୋଜନା, ଭାଷା ଓ ପରିବେଶ ସୃଷ୍ଟି ଜୀବନ୍ତ ଓ ମନୋଜ୍ଞ ହୋଇଛି । ୧୯୫୬ ମସିହା ନଭେମ୍ବର ୩୦ତାରିଖ ଦିନ ଅନ୍ନପୂର୍ଣ୍ଣା (ବି. ଗ୍ରୁପ୍) ଥିଏଟର୍ସ ଦ୍ୱାରା ଏହି ନାଟକଟି ହୋଇଥିଲା ସର୍ବପ୍ରଥମେ ଅଭିନୀତ । ‘ଶାରଳାଦାସ’ କାଳୀବାବୁଙ୍କର ହେଉଛି ଏକ ପ୍ରତିଭାପ୍ରଖ୍ୟାପନମୂଳକ ନାଟକ । ସିଦ୍ଧକବି ଶାରଳାଦାସଙ୍କର ଜୀବନୀ ଅଦ୍ୟାବଧି ଓଡ଼ିଆ ସାହିତ୍ୟର ଇତିହାସପୃଷ୍ଠାରେ ସ୍ପଷ୍ଟଭାବେ ଲିପିବଦ୍ଧ ହୋଇ ନାହିଁ । ୧୯୫୪ ମସିହା—ଯେଉଁ ବର୍ଷ ଏ ନାଟକ ଲେଖାହୋଇଥିଲା, ସେତେବେଳେ ଶାରଳାଦାସଙ୍କ ଜୀବନୀ ଉପରେ ସେତେ ଆଲୋକସଂପାତ ହୋଇ ନ ଥିଲା । ତେଣୁ ଖାଣ୍ଟି ଐତିହାସିକ ସତ୍ୟକୁ ନାଟ୍ୟକୀର୍ତ୍ତି ପ୍ରତିଫଳିତଦେବା ହୋଇପାରି ନ ଥିଲା ସମ୍ଭବପର । ଏହା ମଧ୍ୟ ନାଟ୍ୟକାର ମୁଖବନ୍ଧରେ ସ୍ୱୀକାର କରିଅଛନ୍ତି । ଶାରଳାଦାସଙ୍କ ବିଷୟରେ ଥିବା ଲୋକଶ୍ରୁତିକୁ ନାଟକଟିର ଉପଜୀବ୍ୟ ଉପାଦାନରୂପେ ଲେଖକ ଗ୍ରହଣ କରିଥିବାପରି ମନେ ହୁଏ । ସଂଗୀତର ଆଧିକ୍ୟ ସତ୍ତ୍ୱେ ସଂଳାପ ଓ ଭାଷା ନାଟ୍ୟକାରଙ୍କର ସିଦ୍ଧହସ୍ତତାର ଦେଇଅଛି ସ୍ଥୂଳ ପରିଚୟ ।

‘ଚକ୍ରୀ’ନାଟକରେ ନାଟ୍ୟକାର କାଳୀଚରଣ ଭାଷା ଓ ସଂଳାପରେ ଆଶାତୀତ ନୈପୁଣ୍ୟ ହାସଲ କରିଅଛନ୍ତି । ବିଷୟବସ୍ତୁରେ ନୂତନତା ନ ଥିଲେ ମଧ୍ୟ ଉପସ୍ଥାପନାଶୈଳୀ ଦର୍ଶକମନରେ ସଂଚାର କରିଥାଏ ନୂତନତାର ଭ୍ରମ । ସାବଲୀଳ ଭାଷା ଗୁମ୍ଫନ ପାଠକ ମନରେ ଦିଏ ଅପୂର୍ବ ଆନନ୍ଦ ।

ନାଟକଟିରେ ବଙ୍ଗଳାନାଟକ ‘ପାର୍ଥସାରଥି’ର ପ୍ରଭାବ ପଡ଼ିବା କିଛି ଅସ୍ୱାଭାବିକ ନୁହେଁ । ‘ଦଶଭୁଜା’ ଏକ ପୌରାଣିକ ନାଟକ । ଏଥିରେ ‘ଚକ୍ରୀ’ପରି ଅମିତ୍ରାକ୍ଷର ଛନ୍ଦର ବ୍ୟବହାର କରାଯାଇଛି । ମହିଷାସୁରବଧ ହେଉଛି ନାଟକଟିର ବିଷୟବସ୍ତୁ । ନାଟ୍ୟକାରଙ୍କର ‘ହରଣଗୃହ’ ‘ସନ୍ଧାନ’ ‘ଆହୁତି’ ‘ବନମାଳା’ ଇତ୍ୟାଦି ସାମାଜିକ ନାଟକ ହିସାବରେ ଯଥେଷ୍ଟ ପ୍ରସିଦ୍ଧି ଲାଭ କରିଅଛି । ‘ଯୁଗେ ଯୁଗେ ଉତ୍କଳ’ରେ ନାଟ୍ୟକାର ଜନ୍ମଭୂଇଁ ଗୌରବୋଜ୍ଜ୍ୱଳ ଐତିହ୍ୟର ସିଂହାବଲୋକନ କରିଅଛନ୍ତି । ନାଟକଟି ବେଶ୍ ହୃଦ୍ୟ ଓ ସୁଖପାଠ୍ୟ ହୋଇଛି । ହିନ୍ଦୀ ନାଟକ ‘ଭୂଖା’ରେ ଭାରତର ଖାଦ୍ୟାଭାବର ଏକ ନଗ୍ନଚିତ୍ର ଅବତାରଣା କରାଯାଇଛି । ଓଡ଼ିଆ ନାଟ୍ୟକାରଙ୍କ କଲମରୁ ଏହା ବୋଧହୁଏ ସର୍ବପ୍ରଥମେ ହିନ୍ଦୀନାଟକ । ପୂର୍ବତନ ଗଡ଼ଜାତ ନରସିଂହପୁର ବରଗୀମାନଙ୍କର ଅତ୍ୟାଚାରକୁ କେନ୍ଦ୍ରକରି କାଳୀଚରଣଙ୍କର ‘ମାଳତୀ’ ନାଟକଟି ଲିଖିତ । ପକ୍ଷାନ୍ତରେ ଏହାକୁ ବୀରାଙ୍ଗନା ମାଳତୀର ଶୌର୍ଯ୍ୟ ଓ ପତିଭକ୍ତିର ଏକ ଜ୍ୱଳନ୍ତ ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ । କବିଙ୍କର ‘ଅନଙ୍ଗ’ ଗୋଟିଏ ଉଚ୍ଚକୋଟିର କାବ୍ୟନାଟିକା । ବିଷୟବସ୍ତୁ ସମ୍ପୂର୍ଣ୍ଣ କାଳ୍ପନିକ । ଏହି ବିଦେଶୀ କାବ୍ୟନାଟିକାରେ କବିଙ୍କର ଛନ୍ଦ ଯୋଜନା ଓ ଶବ୍ଦବିନ୍ୟାସ ପାଠକପ୍ରାଣରେ ଜଗାଇପାରୁଛି ଅପୂର୍ବ ସ୍ପନ୍ଦନ । ଏଥିରେ ଛନ୍ଦ ଓ ଗନ୍ଧର ହୋଇଛି ରୁଚି ଓ ସୂଚିପୂର୍ଣ୍ଣ ସମାବେଶ । କବିଙ୍କ ନିଜ ଭାଷାରେ କହିବାକୁ ଗଲେ—

"ନନ୍ଦନ୍ତ୍ରୁ ନଗ୍ନି          ହ୍ରସନ୍ତ୍ର ଶଶୀ
ସୁମନ ବସାରେ ବାସ,
ବାଉଲା ମନର          କଲପନାଘେର
'ଅନଙ୍ଗ'ରୂପେ ପ୍ରକାଶ ।"

ଏଥିରେ ମଧୁକର, ଅରବିନ୍ଦ, ବଉଳ, କୋଇଲି ଚନ୍ଦ୍ରମା, ଇନ୍ଦିବର, ବନମାଳୀ, ଅଶୋକ, ପ୍ରଜାପତି, ରତି, ଚୂତ, ହର, ମଦନ ହୋଇଛନ୍ତି ଚରିତ୍ରୀଭୂତ । "ମହାନଦୀ" ମଧ୍ୟ କବିଙ୍କର ଅନ୍ୟ ଏକ ସାମାଜିକ ତଥା ସଂସ୍କାରଧର୍ମୀ ନାଟକ, ଯେଉଁଥିରେ ଆଞ୍ଚଳିକ (ସମ୍ବଲପୁରୀ) ଭାଷା ବ୍ୟବହାର କରି ନାଟ୍ୟକାର ଦେଶ-କାଳ-ପାତ୍ରଗତ ସଂହତି ରକ୍ଷା କରିଅଛନ୍ତି ।

ଯେଉଁ କାରଣରୁ ଉପନ୍ୟାସରୁ କାହାଣୀ ବା କ୍ଷୁଦ୍ରଗଳ୍ପର ଜନ୍ମ, ଠିକ୍ ସେହିକାରଣରୁ ନାଟକରୁ ଏକାଙ୍କିକାର ଜନ୍ମ । ବର୍ତ୍ତମାନ ବସ୍ତୁତାନ୍ତ୍ରିକ ଯୁଗରେ ମଣିଷ ସମୟର ଅଭାବ ଉପଲବ୍ଧି କରୁଛି । ନାଟକ, ମହାନାଟକ ଇତ୍ୟାଦି ପଢ଼ିବାପାଇଁ ତାକୁ ଅବସର କି ଅବକାଶ ମିଳୁନି । ମନୋରଞ୍ଜନପାଇଁ ଦୀର୍ଘ ସମୟ ନ ଦେଇ ସେ ଦେଉଛି ସୀମିତ ସମୟ । ତେଣୁ ଲକ୍ଷ୍ୟର ଏକତା, ଆୟତନର ସ୍ୱଳ୍ପତା ଓ ଘଟଣାର ସଂକ୍ଷିପ୍ତତା ନେଇ ଏକାଙ୍କିକା ଆଜି ହୋଇଛି ସର୍ବସାଧାରଣଙ୍କର ଆଦରଣୀୟ । ଓଡ଼ିଆ ସାହିତ୍ୟରେ ଏକାଙ୍କିକା ଏବକାର ସୃଷ୍ଟି । ଗାଁ ଗହଳରେ ଗୀତିନାଟ୍ୟ, ଲୋକାଭିନୟ ଇତ୍ୟାଦିରୁ ଏହାର ଜନ୍ମ କହିଲେ ଅତ୍ୟୁକ୍ତି ହେବନାହିଁ । ଗତ ତିରିଶ ବର୍ଷମଧ୍ୟରେ ଓଡ଼ିଆ ଏକାଙ୍କିକାର ଜନ୍ମ ଓ ବିକାଶ । କବିଚନ୍ଦ୍ର ମଧ୍ୟ ଏକାଙ୍କିକା ପ୍ରଣୟନରେ ଓଡ଼ିଆ ସାହିତ୍ୟରେ ଆଶାନୁରୂପ ପ୍ରସିଦ୍ଧି ଲାଭ କରିଅଛନ୍ତି । ତାଙ୍କର ଏକାଙ୍କିକା 'ଯୁଗ ସାଧକ'ରେ ବାପୁଜୀଙ୍କ ବିୟୋଗଜନିତ ଦୁଃଖର ଗ୍ଲାନି ହୋଇଛି ପ୍ରତିବିମ୍ବିତ । କାଳୀବାବୁଙ୍କର ଏହା ହେଉଛି ପ୍ରଥମ ହିନ୍ଦୀ ଏକାଙ୍କିକା । 'ଯୁଗଯୋଗୀ' ଓ 'ଜୀବନ ତର୍ପଣ' ତାଙ୍କର ଦୁଇଟି ଉଚ୍ଚକୋଟିର ଏକାଙ୍କିକା, ଯେଉଁଥିରେ ସାମାଜିକ ସମସ୍ୟାର କରାଯାଇଛି ସୁନ୍ଦର ସମାଧାନ । 'ଷଡ଼ରସ'ରେ ସେ 'ଭଙ୍ଗାଗଢ଼ା', 'ଦଲବେହେରା', 'ନୂଆଜୁଆଁ,' 'ପ୍ରତିବନ୍ଧ', 'ପୋଷ୍ୟପୁତ୍ର,' 'କଲଙ୍କକେମା' ଏହି ଛ'ଟି ଏକାଙ୍କିକାର ସନ୍ନିବେଶ କରିଅଛନ୍ତି । 'ପଞ୍ଚ-ରଙ୍ଗ'ରେ 'କକାନାଇଁ', 'ମନ୍ଦିର ପ୍ରବେଶ', 'ଦଲବେହେରା', 'ଦେବତାର ତଳେ', 'ଛତ୍ରପତି' ଏହି ପାଞ୍ଚଟି ଏକାଙ୍କିକାର ସଂଯୋଜନ କରାଯାଇଛି । ତନ୍ମଧ୍ୟରୁ କେତୋଟି ଆକାଶବାଣୀ ଦ୍ୱାରା ମଧ୍ୟ ପ୍ରଚାର ଲାଭ କରିଛି ।

ନାଟକରଚନାପରି ସଙ୍ଗୀତ ରଚନାରେ କବିଚନ୍ଦ୍ରଙ୍କ ଅସାଧାରଣ କବିପ୍ରତିଭାର ଘଟିଛି ଅପୂର୍ବ ସ୍ଫୁରଣ । ଓଡ଼ିଶାରେ କାଳୀଚରଣଙ୍କ ପ୍ରସିଦ୍ଧି ପ୍ରଥମେ ସଙ୍ଗୀତଜ୍ଞ ହିସାବରେ । କବି ଜୀବନର ଉନ୍ମେଷରୁ ସେ ଓଡ଼ିଶୀ ସଙ୍ଗୀତ ଗନ୍ଧାଘରକୁ ଯେଉଁ ଦାନ ଦେଇଆସୁଅଛନ୍ତି, ତାହା ଯଥାର୍ଥରେ ଅନବଦ୍ୟ ଓ ଅନନ୍ୟସାଧାରଣ । ବନମାଳୀ, କବିସୂର୍ଯ୍ୟ ଗୋପାଳକୃଷ୍ଣ ଓ ଗୌରହରିଙ୍କର ରଚନା ତାଙ୍କୁ କବିଜୀବନର ପ୍ରାକ୍‌କାଳରୁ କରିଥିଲା ଯଥେଷ୍ଟ ଅନୁପ୍ରାଣିତ । ଗବେଷଣା ଓ ବିଜ୍ଞାନବୁଦ୍ଧି ପ୍ରତିଭାକୁ ସ୍ପନ୍ଦିତକରି ସେ ସଙ୍ଗୀତ—ବିଶେଷ କରି ଓଡ଼ିଶୀ ସଙ୍ଗୀତକୁ ଯେଉଁ ନୂତନ ଦିଗ୍‌ଦର୍ଶନ ଦେଇଯାଇଛନ୍ତି, ତାହା ଯଥାର୍ଥରେ ପ୍ରଣିଧାନଯୋଗ୍ୟ । କବିଙ୍କ ରଚିତ ସଙ୍ଗୀତାବଳୀ ଯେଉଁ ଗୁରି ଭାଗରେ ଆତ୍ମପ୍ରକାଶ କରିଛି, ତାହାର ପ୍ରଥମ ଭାଗଟେ ସନ୍ନିବେଶିତ ହୋଇଛି କେବଳ ଓଡ଼ିଶୀ ସଙ୍ଗୀତ । ଏଥିରେ କବି ରାଧାକୃଷ୍ଣ ପ୍ରେମ ବର୍ଣ୍ଣନା କରିବା ସଙ୍ଗେ-ସଙ୍ଗେ ଉପସ୍ଥାପନା କରିଛନ୍ତି ନିଜର ଜୀବନ-ଦର୍ଶନ । ଉଦାହରଣସ୍ୱରୂପ—

"ଜଗତେ, ଅନୁଭବ କେ'ନ କରୁ
ନାରଙ୍ଗ ନଫଳୁ କରମେ କାହାର ରୋପିଲା ରସାଳ ତରୁ ॥୦॥
ସ୍ନେହଜଳ ଦେଇ, ଯତନେ ବଢ଼ାଇ, ତୋଳିଧରିଲା ଉପରୁ,
ଅନ୍ତିରେ ପଶି ସେ, ତଣ୍ଟି କାଟିବାରୁ କିଏ କେହି ନ ପାଶୋରୁ ।
ବିପିନରେ ଭୁଲି କଲାପିକି ବୋଲି, କାକ ରେ କେହି ନ ଭଜୁ,
ମଧୁଲୁଟି ଭଲି, ମଧୁ-ମକ୍ଷିକାର ଦଂଶନ କେହି ନ ବାଛୁ ।

( ଊଣେଇଶ )

କବିଚନ୍ଦ୍ର ବୋଲେ, ଭଲ କରୁଁ ଭେଲ, ଶୁଣେ ଯେ ଭାଗ୍ୟଦୋଷରୁ,
ମୋ'ସର ଗମାର, ଧରିବେ ସେ ନର, ଜୀଇ ଥାଉ-ଥାଉ ମରୁ ।''

ଦ୍ୱିତୀୟ ଭାଗଟିରେ କେବଳ ଲଘୁସଙ୍ଗୀତ ଅଙ୍ଗୀଭୂତ । ସଙ୍ଗୀତରେ ଅଛି ଛନ୍ଦର ଖାତ ନିର୍ଦ୍ଦେଶନା । ପ୍ରତି ସଙ୍ଗୀତରେ ଭାବ, ଭାଷା, ସ୍ୱରର ଘଟିଛି ଅପରୂପ ସମାହାର । ଏହି ସଙ୍ଗୀତଗୁଡ଼ିକର ରଚନା ଆଧୁନିକ ରୁଚିସମ୍ପନ୍ନ ହେଲେ ମଧ୍ୟ ଅନୁଭୂତିରସାଣିତ । କବିର ଅନ୍ୟ ଏକ ପ୍ରଧାନ ସମ୍ବଳ ହେଉଛି ସ୍ମୃତି—ଯାହାର ମୂଲ୍ୟ ନିରୂପଣ ଅସମ୍ଭବ । ସ୍ମୃତିକୁ ପୁଞ୍ଜି କରି କଳ୍ପନାବିଳାସୀ କବି ରଚିପାରେ ଏକ ସ୍ୱପ୍ନିମ ସଂସାର । କବିଙ୍କ ଭାଷାରେ—

"ଲେଖି ନାହିଁ କବି ମୂର୍ତ୍ତି ଲେଖନୀ-ଧାରେ
ଦେଖି ନାହିଁ ରୂପ ମନ-ନୟନ ଯା ଯାରେ ।
ଅଜର ନୁହେଁ ସେ କବି !
ଅମର ନୁହେଁ ସେ ଛବି
ମୂର୍ତ୍ତିରୁ ବଳି ସୁନ୍ଦର ଯାହା—'ସ୍ମୃତି' ନାମ ସେ ଯେ ଧରେ
ମୂର୍ତ୍ତି ପାସୋର, ସ୍ମୃତିର-କାଗର, କାଳରଖି ବୁକୁପରେ ।
ସ୍ମୃତି ସମ୍ବଳ ତବ
ଅମୂଲ ସେ ବଇଭବ,
ଗିତ ନିଦହଣ୍ଡି, ଶର ନୀର-ଝରି ଆଖିତଳେ ଥରେ ଥରେ,
ଯଦି ବା ପଲକେ, ଆସି ସେ ଝଲକେ, ଜୀବନ ସେ ମରଣରେ ।
କାଲି ରଖି ପଛପଟେ
ବଣ୍ଟି ଗଲେ ତା' ବାଟେ
ବାଟଫେରି କରି, ପଥୁକୀରେ ରୁ ଯେ ବସାଇ ପାଶୋରି ଘରେ
ଗତ ମଧୁଧାର ଚଖାଇ ରସାଉ ସ୍ମୃତି ଗୋ ! ତେଣୁ କୁହାରେ ।"

କବି କାଳୀଚରଣଙ୍କର ଭଜନ ଓ ଜଣାଣ ଲେଖାରେ ପାରଦର୍ଶିତା ପ୍ରତିପାଦିତ ହୋଇଛି ତାଙ୍କର ପ୍ରତ୍ୟେକ ନାଟକରେ । କବି ଜଗନ୍ନାଥଙ୍କର ପରମ ଭକ୍ତ । ସେହି ଭକ୍ତିଭାବ ବିଚ୍ଛୁରିତ ହୋଇଛି ଗୀତାବଳୀର ତୃତୀୟ ଖଣ୍ଡରେ । ଚତୁର୍ଥ ଖଣ୍ଡରେ ସନ୍ନିବେଶିତ ହୋଇଛି ପଲ୍ଲୀଗୀତ । କବି କାଳୀଚରଣଙ୍କ ଭାଷାରେ—"ସରଳ ତରଳ ମନକଥା ଠୁଳାଇ ଗଢ଼ି ଉଠିଛି ପଲ୍ଲୀଗୀତ । ପାହାଡ଼ୀ ଝରଣାପରି ସେ ସ୍ୱାଧୀନ, ରାଗ-ତାଳର ବାଧାବନ୍ଧନକୁ ପସନ୍ଦ କରିବାର ତର ନ ଥାଏ ତା'ର । ତାକୁ ଅମାନିଆଁ ବୋଲ ଅବା ଅବୋଲକରା କହ, ବାକି ଏ କଥା ସତ ଯେ ସବୁଠାରୁ ସେ ଭରି ଆଦର ପାଏ । ମନକୁ ଲୁଗ୍ରଇବାକୁ ଦାନ୍ତଚିପା କଥାକୁହା ସେ ଜମା ପସନ୍ଦ କରେ ନାହିଁ ।"

ଗୋଟିଏ ଜାତିର ଗୃହ-ଚଳଣୀ, ଚଙ୍ଗ ରଙ୍ଗ, ଆଉ ମନଗହନର ପରିଚୟ ଦିଏ ପଲ୍ଲୀଗୀତ । ଏବେ ପଲ୍ଲୀ ସ୍ୱରଗୀତର ଆଦର ଦିନକୁ ଦିନ ବଢ଼ୁଛି । ତରଳ ମନ, ସରଳ ପଦ, ସହଜଭାବ, ସରସ ସ୍ୱର—ଏତିକ ପଲ୍ଲୀଗୀତର ନିଚିଦିନିଆ ସାଥୀ । ଆଡ଼ମ୍ବରଙ୍କ ଗୃହ ତାର ପସନ୍ଦକୁ ପାଏନାହିଁ ।" 'କବିଚନ୍ଦ୍ର ଗୀତାବଳୀ'ର ଚତୁର୍ଥ ଖଣ୍ଡ ଏହି ପଲ୍ଲୀଗୀତ ବା ସଙ୍ଗୀତର ଏକ ଅପରୂପ ସଞ୍ଚୟନ । କବିଙ୍କର ଗ୍ରାମ୍ୟ ଭାଷା ଓ ରସୋତ୍ତୀର୍ଣ୍ଣ ଭାବସଂଗତ ସଂଗୀତଗୁଡ଼ିକୁ କରିଛି ଅଧିକ କାନ୍ତ-କୋମଳଧର୍ମୀ । ଏହି ସଙ୍ଗୀତରେ କବିଙ୍କର ତ୍ୟାଗପୂତ ଆଦର୍ଶ ମଧ୍ୟ ହୋଇଛି ରୂପାୟିତ । ଉଦାହରଣ ସ୍ୱରୂପ—

"ପରକୁ ଆପଣା କରି ମରେ ଫୁଲ ସୁକୁମାରୀ
ମହୁ ଲୁଟେ ମହୁଆ ଭଅଁ ର,

( ଜୋଡ଼ଏ )

ସ୍ନେହ୍ର ମଳୟ ପବନ,		ଦେଖାଏ ତା ବଡ଼ପଣ
ବାସଟିକ ଲୁଟିନେଇ ତା'ର
ସେଟ ଚଢ଼ ପଣେ ପୁଣି ତୋର
ମର ସେଇ ଫୁଲ ହେଲ		ଦଥିଁ ଗଲା ମାଲା ରେ
ନେଇ ନାହିଁ ଦେଇ ଜୀବ ଗଲ
(ତାର) ଦଆମୂଲ ଦଇବ ତ ଦେଲ ରେ ।"

ଏଇ ହେଲ ସଙ୍ଗୀତଜ୍ଞ କାଳୀଚରଣଙ୍କ କୃତର ସୂକ୍ଷ୍ମ ସୂଚନା । ଟୀକାକାର ଓ ସମ୍ପାଦକଭବେ ମଧ୍ୟ ତାଙ୍କର ପ୍ରସିଦ୍ଧି ସବମୁଖରେ ସ୍ୱୀକୃତ । କବଙ୍କ ପ୍ରଣୀତ 'ଗୀତଚନ୍ଦ୍ର' ଓ 'ଶ୍ରୀଗୀତଗୋବନ୍ଦ' ଏହାର ଉଦାହରଣ । ପ୍ରାଚୀନ ସଚନ୍ତ୍ର ପୋଥିରୁ ଏଗୁଡ଼ିକୁ ଉଦ୍ଧାର କର କବ ଓଡ଼ିଆ ସାହ୍ରିତ୍ୟ ଓ ସଂସ୍କୃତକୁ କରଛନ୍ତ ଶ୍ରୀସମ୍ପନ୍ନ, ଯେଉଁଥିପାଇଁ ସମଗ୍ର ଓଡ଼ିଆ ଜାତ ତାଙ୍କ ନକଟରେ ରହବ ଆଜୀବନ ଋଣୀ ।

ଯୁଗେ ଯୁଗେ ବଳମ କଳମଠାରୁ ତୀକ୍ଷ୍ଣ । ଏହ୍ୱ ତୀକ୍ଷ୍ଣଅସ୍ତ୍ର ସାହାଯ୍ୟରେ ସମାଜରେ ସଂସ୍କୃତ ଆନୟନ ସୁନଶ୍ଚିତ, ଏହା କାଳୀଚରଣଙ୍କର ଦୃଢ଼ ବଶ୍ୱାସ । କବଙ୍କର ପାରବାରକ ଜୀବନ ନରନ୍ଧ୍ର ତମସାଚ୍ଛନ୍ନ; କନ୍ତୁ ତାଙ୍କର "ବସୁଧୈବ କୁଟୁମ୍ବକମ୍" ନୀତ ଏହ୍ୱ ତମସାର ବୁକୁ ଚର କବଙ୍କ ପ୍ରାଣରେ ଯେଉଁ ଆଲୋକ ସଞ୍ଚର କରଛୁ, ସେଥିରେ ସେ ହୋଇଛନ୍ତ ଆତ୍ମବଭୋର । କବଙ୍କ ବ୍ୟକ୍ତତ୍ୱର କାଉଁଚ ସ୍ୱର୍ଣରେ ଯେ ଥରେ ଆସିଛୁ, ସେ ତାଙ୍କର ନଃସ୍ୱାର୍ଥପର ସୌଜନ୍ୟ, ସୌହାର୍ଦ୍ଦ୍ୟ ଓ ସ୍ନେହ୍ରସିକ୍ତ ସମ୍ଭାଷଣକୁ ଅଳଭସ୍ମୃତପଟରେ ନଶ୍ଚୟ ଅଙ୍କିରଖିବ, ଏଥିରେ ସନ୍ଦେହ୍ରର ଅବକାଶ ନାହିଁ । ସମାଲୋଚକଙ୍କ ଭାଷାରେ—

"A staunch believer in socialism and a reformer of high order Kavichandra's plays and poems amply testify his faith and outlook of man and matters. A man of noble taste he considers faith and every pupil of, his own child (though he has been blessed with none unfortunanely) which has made him a loveable personality."

ଆଜ ଓଡ଼ିଶାର ରଙ୍ଗମଞ୍ଚ, ଆକାଶବାଣୀ ତଥା ଅନ୍ୟାନ୍ୟ ଅନୁଷ୍ଠାନରେ ଯେଉଁ ନପୁଣ ଶିଳ୍ପୀମାନେ ସ୍ୱକୀୟ ସଂଗୀତକ ତଥା ଅଭନୟନୈପୁଣ୍ୟ ଯୋଗୁ ପ୍ରଶଂସିତ, ସେମାନଙ୍କ ମଧ୍ୟରୁ ଅର୍ଦ୍ଧାଧିକ ହେଉଛନ୍ତ କବଙ୍କର ଶିଷ୍ୟ । ୧୯୫୪ ମସିହାରେ କବ ଏକ ମୋଟର ଦୁର୍ଘଟଣାର ସମ୍ମୁଖୀନ ହୋଇ ସ୍ୱାଧୀନଭବେ ଯାତାୟାତ କରବାକୁ ଅକ୍ଷମ; କନ୍ତୁ ତାଙ୍କର ଯୁବସୁଲଭ ମନୋଭବ ତାଙ୍କୁ ଆଜ କାହିଁକ ଶେଷନଃଶ୍ୱାସ ପର୍ଯ୍ୟନ୍ତ ଓଡ଼ିଶାର ସଙ୍ଗୀତ ଓ ସାହ୍ରିତ୍ୟକୁ ସମୃଦ୍ଧ କରବାକୁ ଦେଉଥିବ ଅସରନ୍ତ ପ୍ରେରଣା । ୧୯୬୭ ମସିହାରେ ଓଡ଼ିଶା ସାହ୍ରିତ୍ୟ ଏକାଡେମୀ ଦ୍ୱାରା କବ ସମ୍ମାନତ ହୋଇଅଛନ୍ତ । ୧୯୬୮ ମସିହାରେ ସେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ଉପସଭପତ ଭବେ ମନୋନୀତ ହୋଇଅଛନ୍ତ ଏବଂ ଦଲ୍ଲୀ ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ଆଜୀବନ ସମ୍ମାନତ (ଫେଲୋ) ସଭ୍ୟରୂପେ ସମ୍ମାନତ କର ତାଙ୍କର ତଥା ଓଡ଼ିଶାର ଗୌରବ ବୃଦ୍ଧି କରଅଛନ୍ତ ।

ଆଜି କବଚନ୍ଦ୍ର ବୃଦ୍ଧ, କନ୍ତୁ ଓଡ଼ିଶାର ବହୁ ସାଂସ୍କୃତକ ଅନୁଷ୍ଠାନ ସହ୍ରତ ସେ ସଂପୃକ୍ତ । ତାଙ୍କ ମତରେ "କର୍ମ ହିଁ ଜୀବନ—ଆଳସ୍ୟ ହିଁ ମୃତ୍ୟୁ । ନଃସ୍ୱାର୍ଥପର ସେବା ଓ ସାଧନା ମଣିଷକୁ କରେ ଉଚ୍ଚ, ନରାମୟ" ମୁଁ କବଙ୍କର କର୍ମକ୍ଷେତ୍ରରେ ସବଦା ଦେଖିଛୁ Boundless freedom and bold experimentation ଯାହା କ ତୁଳଆରେ ସବୁ ପ୍ରବୀଣ ସ୍ରଷ୍ଟା ଓ ଦ୍ରଷ୍ଟାଙ୍କ କର୍ମକ୍ଷେତ୍ରର ଅପରହାର୍ଯ୍ୟ ଆଭମୁଖ୍ୟ ।

ଅଲଣାହାଟ,
କଟକ

ଶ୍ରୀ ବୀରକଶୋର ଦାସ
ତା ୧୨ । ୭ । ୬୮
ଶ୍ରୀଗୁଣ୍ଡିଚା

# କବିଚନ୍ଦ୍ର ଗ୍ରନ୍ଥାବଳୀ

## ବନବିହାର

### ପ୍ରସ୍ତାବନା

[ ପ୍ରଦୀପ ହସ୍ତରେ ଘେନି ଗୋପୀ ଓ ଗୋପାଳ ବାଳକମାନଙ୍କର ବନ୍ଦାପନା ]

(ଗୀତ)

ଜୟ ଜନରଞ୍ଜନ, କଞ୍ଜନୟନ ଘନ,-
ଅଞ୍ଜନ - ନିଭ - ନଟନାଗର ହେ
ଗୋକୁଳକୁଳଜାକୁଳ-ମନମୋହନ,
ଚନ୍ଦ୍ରବଦନ ଗୁଣସାଗର ହେ ।
ଗୀତ ନିପୁଣ, ନିଧୁବନ ବିଧୁ ମଧୁକର
ନିରୁପମ ତାଣ୍ଡବ ପଣ୍ଡିତ ହେ ।
ଭାନୁସୁତା ପୁଳିନାଙ୍ଗନ ପରିସର,
ରମଣୀନିକର ମଣିମଣ୍ଡିତ ହେ ।
ବଂଶୀଧର ଧରଣୀଧର ଶ୍ରୀଧର
ଅଧରାରୁଣ ନବ ସୁନ୍ଦର ହେ
କୁନ୍ଦରଦନ କମନୀୟ କଳେବର
ବୃନ୍ଦାବିପିନ ପୁରନ୍ଦର ହେ ।

### ପ୍ରଥମ ଅଙ୍କ—ପ୍ରଥମ ଦୃଶ୍ୟ

[ ଅଳିନ୍ଦ—ଅର୍ଦ୍ଧଶାୟିତ ମଧୁମଙ୍ଗଳ—ସୁବଳ ଗାଇ ଗାଇ ପ୍ରବେଶ କଲେ ]

( ଗୀତ )

ସୁବଳ— ବିନା ବାରି ବରଷେ
ଫୁଟେ କି ଶିଶିରେ ଫୁଲ ?
ବିନା ବସନ୍ତ ମିତ !
ଗାଏ କି କଳ-କୋକିଳ ? ।୧।
ଧାରାବରଷା ଝରେ,—ଗୃତକୀ ଆଶା ପୂରେ
ବିନା ଶଶୀମୟୂଖ
ବଞ୍ଚେ କି ଶୁନ୍ତ୍ର ଚକୋର । ୨ ।
କେତେ ଫୁଲଟି ଫୁଟେ,—କେତେ ବାସ ଚହଟେ
ବିନା ଅଳି ସୋହାଗ
କେ ବୁଝେ ଫୁଲର ମୂଲ । ୩ ।

ମଧୁ— ବାଃ-ବାଃ, କି ମଧୁର କଣ୍ଠ ସଜନୀର ? ଦଇବ ଏକାବେଳେ ଏ କଣ୍ଠରେ ଖଣ୍ଡ, ଶାକର, ମହୁ—ସବୁ ଗୋଳି ବୋଳିଦେଇଛି । କି ମିଠା ! ଚଉକଷ ଭୋଜନ ପଡ଼ିଥିଲା ! ତା ଉପରେ ସଖି ରେ ! ଏ ମିଠାରେ ସେ ଭୋଜନଟା 'ମଧୁରେଣ ସମାପୟେତ୍' ହୋଇଗଲା । ଗାଇଲ, ଗାଇଲ ଆଉ ପଦେ । ମହୁକାରେ ଟିକିଏ ନିଦ ଝୁମି-ଝୁମି ଆସୁ ।

ସୁବଳ—(ମଧୁକୁ ଦେଖି) ଏ କିଏ ହୋ ! ମଧୁମଙ୍ଗଳ ? ଅରେ ବାଃ ରେ ରସିକ !

ମଧୁ—ହଁ ସଖି ! ( ନିକଟକୁ ଯାଇ, କାଖକୁ ଠାରି ) ଏଁ ! ହାତରେ ସେ କି ପଦାର୍ଥଟିଏ ଧରିଛ କି ?

ସୁବଳ—ଖଣ୍ଡ, ଶାକର, ଲଡ଼ୁଣୀ,—ତମ ପାଇଁଲାଗି ଆଣିଥିଲି ।

ମଧୁ—କାହିଁକି ? ଆମେ କ'ଣ ରୋଗେଇଛୁଁ କି ? ବାଃ ରେ ସଜନୀ !

ସୁବଳ—(ହସି) ସଜନୀ ! ଭଲ ସମ୍ବୋଧନ ତ ! ସଖା, ପ୍ରେମମୟ ! ଆମ୍ଭର ପ୍ରେମ ମାଦକ ଭାଙ୍ଗନାହିଁ ?

ମଧୂ—ହଁ ହଁ । ମୋଦକର ମାଦକ ମନ୍ଦ ନୁହେଁ । ବିଧାତା ତ ବ୍ରାହ୍ମଣ କରି ଗଢ଼ିଛି । ଭୂରି-ଭୋଜନରେ ଉଦର ବଢ଼ି ଘରଘର । ଠିକଏ ଧରିଧରି ଉଠାଇଲ ଦେଖି ।

ସୁବଲ—କହୋ ! କାହିଁକି ? କ'ଣ ଅଚଳ କି ?

ମଧୂ—ଶ୍ରୀମତୀଙ୍କ ପାକ, ସଖୀମାନଙ୍କ ଆଦର, ସଖା-ମାନଙ୍କ ସୋହାଗ, ସେଥିରେ ପୁଣି ମାଆ ଯଶୋଦାଙ୍କ ପରଷା—ଆଁ' କଲେ ବାହାରକୁ ବାହାରିବ ।' ଆଉ କଅଣ ଚଳିବାକୁ ବଳ ଅଛି ?

ସୁବଲ—ତେବେ କଅଣ ଗୋଠକୁ ଯିବ ନାହିଁ ? ଏଇନେ ଯେ ମାଆ ଯଶୋଦା କାହ୍ନୁକୁ ବେଶ କରିବାକୁ ଏଇଆଡ଼େ ଆସିବେ । ଏଠି ପଡ଼ି ଛଟପଟ ହେଲେ କି ଲାଭ ? କୋଉଠି କୋରଡ଼-ସନ୍ଧି ଖୋଜ ।

ମଧୂ—କି ? ଆମେ କଅଣ ପେଚ୍ଚ ? ଗୋପାଳ ଗର୍ଦ୍ଦଭ !

ସୁବଲ—ମୁଁ କ'ଣ ତା କହିଲି ?

ମଧୂ—ତେବେ ?

ସୁବଲ—କିଛି ନାହିଁ ।

ମଧୂ—ଯାଯା, ଯାଃ । ଆଉ ରଗାଅ ନାହିଁ ମୋତେ । ଗଲ ତୁମେ ଏଠୁ ।

ସୁବଲ—ହଇ ହେ ! ବିଶାଖାକୁ ଦେଖିଛ ?

ମଧୂ—ଏଁ, ବିଶାଖା ? (ଏଣେତେଣେ ଚାହିଁ ଦୃଷ୍ଟି ପଡ଼ିବାରୁ ) ହେଇଟି ତ, ବିଜେ କରୁଛନ୍ତି । (ବିଶାଖା ପ୍ରତି) ବଞ୍ଚିରହ । ବଞ୍ଚିରହ । ବହୁତ ଆୟୁଷ ତମର ବିଶାଖେ !

ବିଶାଖା—( ପ୍ରବେଶ କରି ) ଓହୋ ! ବହୁତ କଇଲଣ ତ ! ଅହା, କାନିଟା ତ ସାନ । ଏତେ କଇଲଣ ରଖିବି କୋଉଠି ମ ? ଆଜିକାଲି ତମ ପାଖେ କାହିଁକି ଜୁହାର ନ ପହଞ୍ଚୁଣୁ କଇଲଣଗୁଡ଼ାକ ଥୁଏଁ ଥୁଏଁ ମିଳିଯାଉଛି ?

ମଧୂ—ନ ହେଲା, ନ ହେଲା, ସଜନୀ ! ଓଲଟା କଥାଟା ହଉ ଏବେ ।

( ଗୀତ )

ଦୂରୁ ଜୁହାର କେତକୀଗୋରି ସଖୀକି
ଚାହିଁଲେ ବରଷି ଯାଏ ଖଣ୍ଡ ଶାକର ।୦।
ନାମରୁ ପୀୟୂଷ ଝରେ, ଦରଶନେ ପେଟ ପୂରେ
କଥା ପଦକ ମୋଦକ ପରି ମଧୂର । ୧ ।
ହୃଦରେ କେତେ ଆଦରେ, ଦୋଡ଼ାଇ ଝୀନ ଚାଦରେ
ଅଣିଛ କି ଛେନାମଣ୍ଡା, ଅଛିଟି ପୂର ? । ୨ ।

ବିଶାଖା—ଥାଉ, ଥାଉ, ନବରଙ୍ଗ ରଖ । ଉଠ, ମୁଁ ଯିବି ।

ମଧୂ—ରଗିଲ କି ରସମୟୀ !

ବିଶାଖା—ବାଟ ଛାଡ଼, ମୁଁ ଯାଏଁ ।

ସୁବଲ—ନା, ନା ଖୋଜୁଥିଲି ମୁଁ ତୁମକୁ ବିଶାଖେ !

ବିଶାଖେ—କାହିଁକି ସୁବଲ ?

ସୁବଲ—ନିଅ । (ମାଳ ଓଢ଼ଣୀ ବଢ଼ାଇଦେଲେ )

ବିଶାଖା—(ହସି) ବୁଝିଲି ସୁବଲ । ତମ ସଖା ଯେମିତି ଚୋର; ତୁମେମାନେ ତାଙ୍କ ସାଙ୍ଗକୁ ଭଲ ଉକେଇତ ସାଥୀଗୁଡ଼ାଏ ଜୁଟି ଯାଇଛ । ଏଖଣ୍ଡି ଫେର୍ ଚୋରାଇ ଅଣିଲେ କେବେ ମ ? ରଜାପୁଅ ବୋଲି ଟେକପଣ ! ତାହିଁରେ ପର ଘରେ ପଶି ଏ ଚୋରି କୋଉଠୁ ଶିଖିଲେ ? କହିବ, ଏଭଳି ଚୋରି ଆଉ ଦିନେ କରିବେ ନାହିଁ । ଦେଇଦେଲେଣି ତ, ଏଇଥରକ ଛାଡ଼ିଦେଲୁଁ । ପୁଣି ଆଉ ଦିନେହେଲେ କଂସଯାଏ କଥା ଯିବ ।

ମଧୂ—ସଜନୀ ! ବିଶାଖେ ! ପୁରୁଷଙ୍କୁ ତ ହେଲେ ଚୋରି ଅପବାଦ ପାରଅଛି; ଏବେ ରଜାଘର ଝିଅମାନେ ମଧ୍ୟ ଚୋରି କରି ଶିଖିଲେଣି । ଏ ଧମକ କାହାକୁ ? ଏଁ ? ବୋଇଲା—ଏ ଧମକ କାହାକୁ ? ମାନେ ମାନେ ନେଇ ଆପଣା ସଲଖ ବାଟ ଦେଖ । ତମ ନେଳୀ ସାରି ନେଇ ଆମ କଳା ସାଙ୍ଗର ହଳଦିଆ ସାରି ଅଣିଦିଅ; ତେବେଯାଇ କାଠି କଚେରୀର ଗଡ଼ିବ ।

ବିଶାଖା—ଏଠି କ'ଣ ପଶାଖେଳ ହଉଚି କି ମଧୂ ?

ସୁବଳ—ମଧୁ, ମଧୁ ! ବଣାଖେ, ଯାଅ ଯାଅ । ମା ଯଶୋଦା କାହ୍ନୁଙ୍କୁ ନେଇ ବେଶ କରିବାକୁ ଏଣେ ଆସିଲେଣି । ସାଙ୍ଗରେ ସଖାମାନେ ଆସୁଛନ୍ତି ।

( ବଣାଖାର ପ୍ରସ୍ଥାନ )

ମଧୁ—ହୁଁଃ, ନିତାନ୍ତ ତେବେ ଉଠିବାକୁ ହେଲା । ( ଉଠିଲେ )

(ଯଶୋଦା, କୃଷ୍ଣ ଓ ସଖାମାନେ ଏବଂ ଫୁଲଗୁଙ୍ଗୁଡ଼ ହସ୍ତେ ପରିଚାରିକା ପ୍ରବେଶ । )

ଶ୍ରୀକୃଷ୍ଣ—ହେଇଟି ମାଆ ! ସୁବଳ, ମଧୁମଙ୍ଗଳ ଦୁହେଁ ମୋତେ ଅନାଇଁ ବସିଛନ୍ତି । ଉଚ୍ଛୁର ହଉଛି । ବେଶ କରିଦେ ମା' ! ଯିବି ।

ଯଶୋଦା—କାହ୍ନୁରେ ! ତୁ ସବୁଦିନେ ତ ଏମିତି ଅଝଟ କଲୁ ।

( ଗୀତ )

ନିତନିତି ଯେତେ ମନାକଲି ତୋତେ
ଦିନେହେଲେ ନ ଶୁଣିଲୁ ,
ବାଳୁତକାଳୁ ତ ଗୋଠେ ବାହାରିଲୁ
ଏଡ଼େ ଅମାନିଆ ହେଲୁ
ରେ ଗୋବିନ୍ଦ !
ଧିକ ମୋ ଜନମ-ସୁଖ ।
ଧନ ବୋଲି ଦଣ୍ଡେ କୋଳେ ନ ଧରିଲି,
ନ ଚୁମ୍ବିଲି ଚନ୍ଦ୍ରମୁଖ ॥ ୧ ॥
ବଣ କନ୍ଦରରେ କଣ୍ଟାବୁଦା ବୁଲି
କଅଁଳ ପାଦ ଯୋଡ଼ିକ
ଥକି ପଡ଼ୁଥିବ ଖରା ବରଷାରେ,
ତହିଁରେ ଅସୁର-ଦଳ
ରେ ମୋହନ !
ନିତି ମନ ଛନଛନ ।
ଗୋଠ-ବାହୁଡ଼ାକୁ ଚାହିଁଥାଏ ଧନ !
ପିଣ୍ଡରେ ନ ଥାଏ ପ୍ରାଣ ॥ ୨ ॥

ଶ୍ରୀକୃଷ୍ଣ—ମୁଁ ବେଶି ବାଟ ଯିବି ନାହିଁ । ବେଗେ ଆସିବି ଯେ, ମନ ଦୁଃଖ କାହିଁକି କରୁଛୁ ମାଆ ?

ସୁବଳ—ମା', ଆମେମାନେ ବରାବର ତାଙ୍କୁ ଜଗି ରହୁଥାଉଁ । କାହ୍ନୁ ଆମର ରାଜା । ଗୋଠର ଗାଈ-ଗୋରୁ ତାଙ୍କୁ ଦଣ୍ଡେ ନ ଦେଖିଲେ ଚରିବେ ନାହିଁ । ତୁମେ କଲ୍ୟାଣ କର ମାଆ ! ଆମେମାନେ ଶୁଭରେ ଫେରିବୁ ।

ଶ୍ରୀକୃଷ୍ଣ—ଆସ ମୋତେ ବେଶ କରିଦିଅ ମାଆ !

( ଗୀତ )

ମନା ମାନ ତୋର କେବେ ବେଶି ଦୂର
ବନକୁ ମୁଁ ଯାଏ ନାହିଁ ଗୋ,
ଏକେ ସୁଶୀତଳ କଦମ୍ବର ତଳ
ତହିଁ ମାଧବୀର ଛାଇ ଗୋ,
ମୂଳେ ଚିକ୍କଣ ପଥର
ଘେରି ବସିଥାନ୍ତି ସଖାଦଳ ଗୋ । ୧ ।
ଫୁଟା ଫୁଲ କୁଞ୍ଜେ, ଯମୁନାକୂଳଆ-
ଶୀତଳ ପବନ ବହେ ଗୋ,
ମଧୁର ମହକ, ଖରାବେଳଯାକ
ବଣବୁଲା ଶ୍ରମ ନାଶେ ଗୋ,
ବଣ, ମୂଳ, ଫଳ, ଫୁଲ,
ଆଣିଦିଅନ୍ତି ଏ ସଖାକୁଳ ଗୋ ॥ ୨ ॥
ତୋ ସ୍ନେହ ଆଦର, କଥା ପାଳି ଆଉ
କାଳନ୍ଦୀକୂଳେ ନ ଯାଏ ଗୋ,
ଅସୁରଙ୍କ ଡରେ, ସବୁବେଳେ ମୁଁ ଯେ
ସଖାଙ୍କ ମେଳରେ ଥାଏ ଗୋ,
ରଜା ମନ୍ତ୍ରୀ ଖେଳୁଥାଉଁ,
ନାଚ ନାଚ ମୁରଲୀ ବଜାଉଁ ଗୋ । ୩ ।
ବେଳ ନ ବୁଡ଼ୁଣୁ, ଗୋଠ ମଣିନେଇ
ମନେପଡ଼େ ତୋର କୋଳ ଗୋ,
ପଳାଇଆସେ ମୁଁ ବଜାଇ ମୁରଲୀ
ନାଚୁଥାନ୍ତି ଗୋରୁପଲ ଗୋ,
ତୋର ଆଶିଷେ ମୋହର,
ବନେ ନ ଲାଗେ କାହାକୁ ଡର ଗୋ ।୪ ।

ଯଶୋଦା—କାହ୍ନୁରେ, ଯେତେ କହିଲେ ତ ମନ ବୁଝେ ନାହିଁ। ସୁବଳ ! ମଧୁମଙ୍ଗଳ ! କାହ୍ନୁ ମୋର ବାଳୁତ, ତମକୁ ଲଗିଲା। ଆ ଧନ !

କୃଷ୍ଣ—ଦିଅ ମା। ବେଶ କରିଦିଅ।

ଯଶୋଦା—( ବେଶ କରୁ କରୁ )

( ଗୀତ )

ଆଯ ରେ କଳାମାଣିକ ସାଜଦିଏ ମୁଁ ॥ ୦ ॥
ପୀତବାସ ରଙ୍ଗଧଡ଼ା ସଜାଡ଼ି ଦିଏ ତୋ ଜୂଡ଼ା
ମୟୂର-ଚନ୍ଦ୍ରିକା-ଚୂଡ଼ା ଦେଖିଥାଏଁ ମୁଁ । ୧ ।
କଟୀରେ ଦେବି କଙ୍କିଣୀ ବାଜୁଥିବ କଣି-କଣି
ଚରଣେ ଘୁଙ୍ଗୁର ନୂପୁର ଖଞ୍ଜିଦିଏ ମୁଁ । ୨ ।
ଭାଲେ ଗୋରଚନା ଟିକା ନାସାରେ ଗଜମୁକୁତା
ବାହୁରେ ମୋତି ବାହୁଟି ବାନ୍ଧିଦିଏ ମୁଁ । ୩ ।
ବଜାଇ ମୁରଲୀ ଥରେ ନାଚଯାଅ ମୋ ଆଗରେ
ଶୁଭେ ଗୋଠବାହୁଡ଼ାକୁ ଚାହିଁଥାଏ ମୁଁ । ୪ ।

କୃଷ୍ଣ—ଅମୃତ୍ଥି ଡେରିବ ମା' !

ଯଶୋଦା—ହଁ ଧନ, ଯା ବୋଲି କପରି କହିବ ରେ କଳାମାଣିକ ! ବେଗେ ଗୋଠରୁ ଆସିବୁ ବାହାରି।

କୃଷ୍ଣ—ମା', ମୋଲଗି ରସାବଳୀ ପଠାଇଦେବ। ପଛେ ଭୋକ କଲେ ଖାଇବ।

ଯଶୋଦା—ହଉ ରେ ଧନ !

କୃଷ୍ଣ—ଆଉ ମୋ ନଟୁ ଭଙ୍ଗିଯାଇଚ୍ଛି ମାଆ ! ଗୋଟିକେତେ ନଟୁ ମୋଲଗି ତିଆରି କରାଇଥିବ।

ଯଶୋଦା—ହଉ ବାପ !

କୃଷ୍ଣ—ମା' ମ ! ଖଣ୍ଡ, ଶାକର, ଲହୁଣୀ ମୋତେ ସୁଖ ଲଗେ।

ମଧୁ—ମା' ଗୋ ! ମୁଁ ତ ସବୁବେଳେ ଭୋକିଲା। ମୋଲଗି ଖଣ୍ଡେ ଛେନା, ଟିକିଏ ଶାକର···

ଯଶୋଦା—(ମଧୁକୁ ଆଦର କରି) ଦେବି। ଦେବି।

କୃଷ୍ଣ—ମା', ଦେଖିଲ। ବାଛୁରିଗୁଡ଼ିକ କେମିତି ମୋ-ଅଡ଼େ ଚାହିଁ ରହିଛନ୍ତି। ମୁଁ ଯାଉଛି ମାଆ !

ଯଶୋଦା—(କୋଳେଇ ଚୁମ୍ବନ ଦେଲେ) ବେଗେ ଆସ ଧନ ! (ପ୍ରସ୍ଥାନ)

(ସଖାମାନେ ଗୀତ ଗାଇ ନାଚ ନାଚ କୃଷ୍ଣଙ୍କୁ ନେଇଗଲେ। )

( ଗୀତ )

ଯମୁନାକୂଳରେ ସଖା, ବାଜବ ମୁରଲୀ
ଢଳ ଢଳ ନାଚ ନାଚ ଆଯ ବନମାଳୀ !
ମାରି କରତାଳି—ରଙ୍ଗେ ଢଳ ଢଳ। ୦ ।
ନାଚବ ମୟୂରୀ ଭୁଲେ ମୟୂର ଆନନ୍ଦେ
ଗାଇବ ମଧୁର ସ୍ୱରେ ମୁରଲୀ ପ୍ରମୋଦେ
ଗୁଣୁ ଗୁଣୁ ନାଦେ—ନାଚ ନାନା ଛନ୍ଦେ।୧।
ରଙ୍ଗିମା ଅଧରେ ଫୁଟୁ ହସ ଦରଦର
ମୋହନ ମୁରଲୀ ଥରେ ପରଶୁ ଅଧର
କୁଞ୍ଜକାନନରେ—ମଧୁ ଗୁଞ୍ଜନରେ। ୨।

## ପ୍ରଥମ ଅଙ୍କ—ଦ୍ୱିତୀୟ ଦୃଶ୍ୟ

**[ଜଟୀଳାଙ୍କ କକ୍ଷ—ଦଧି-ମନ୍ଥନନିରତା ଜଟୀଳା; ପାର୍ଶ୍ୱରେ କୁଟୀଳା—ଗାଉଥିଲା। ]**

( ଗୀତ )

କୁଟୀଳା—ଲଗିଛି ପଛ ଲୋ, ତାକୁ ନନ୍ଦପୁଅ-ନିଶା
ବାଧୁନାହିଁ ଅଉ ସତେ ଗୋପ-ଲୋକହସା। ୦।
କହିଲେ ସକାଳ ହେବ ଆଖି ଲୁହମିଶା
କେ' କେତେ ସହିବ କହ ଏତେ ଜାତି ଦଶା ? ।୧।
ହିତ କହିଲେ ତ ତାକୁ ଲାଗେ ପିତା କଷା
ଆଖିକି ଦିଶିଲୁଁ ଆମେ ସତେ ମୂଷା ମଶା ।୨।

ଜଟୀଳା—କେତେ କାହାକୁ ମନା କରିବି ଲୋ ? ଭୁ ଏତେ କଥାସବୁ କହୁ ଯେ, କାଇଁ ଦିନେ ହେଲେ ତ ଧରାପଡ଼ୁନାହାନ୍ତି ! ସେ କାଳିଆଭୂଆ ନନ୍ଦପୁଅ କ ମନ୍ତ୍ର ଜାଣେ ଲୋ ! ଆଖିପିଛୁଳାକେ ସବୁ ଓଲଟପାଲଟ କରିଦିଏ। ତାକୁ ଫେରି ପାରିବ କିଏ ? ଯଶୋଦା ପୁଣି ଡକାଇ ପଠାଇଲେ ତ;

କ'ଣ ବୋଲି ମନା କରନ୍ତି ? ସକାଳୁ ଗଲା ଯେ ଗଲା ।

କୁଟିଳା—ଗଲା ଯେ ଗଲା କ'ଣ ମ ? ସେ କଅଣ ଖାଲି ବସିଥିବ ? କେତେ ଏଣେତେଣେ ଗୃହ୍ମୁଁଥିବ । କହ୍ନେଇକ କେତେ ଭଙ୍ଗିରେ ଆଖି ଠାରୁଥିବ । ସାଙ୍ଗକୁ ପୁଣି ସେ ଯୋଉ ସଖୀପଲକ ମିଳିଛନ୍ତି ! କହ ନାହିଁ ତାଙ୍କ କଥା, କହ ନାହିଁ । ଶିଙ୍ଗ ଲାଙ୍ଗୁଡ଼ ନାହିଁ ସିନା; ନ ଥାଇ ହେଲେ ଗୋଟିଏ ଗୋଟିଏ ଜନ୍ତୁ ସେମାନେ ।

(କବାଟ ମେଲାଇବା ଶବ୍ଦ )

ଜଟିଳା—ଅଲେ କୁଟି, କିଏ କବାଟ ମେଲେଇଲା ଦେଖିଲୁ । ଆଇଲେ କି ?

କୁଟିଳା—( ନେପଥ୍ୟକୁ ଗୃହିଁ ) ଆଲେ ହଁ ଲେ ! ଘରମଣୀ ବାହୁଡ଼ିଲେ । ନେ, ଗେଲ କରିପକା ଯା—ମୁଁ ଯାଉଛି । ଏଇନେ ଏଠି ଥିଲେ ମୁହଁକୁ ମୁହଁ ବାଜିବ, ପଦକୁ ପଦେ ହବ । ମୋର ଏ ଘରେ କଅଣ ଅଛି ? ତମ ଘର, ତମ ଦୁଆର, ଭଗାରିହସାଟା ସିନା ଖାଇଘର ବୋଲି ବାଧୁଛି । ମୋର କୋଉ ସୁଖ ଅଛି ଯେ !

( ପ୍ରସ୍ଥାନ )

ଜଟିଳା—ଅଲେ କୁଟୀ ! କୁଟୀ ! ଓଃ ! କାହା ଜଞ୍ଜାଳରେ ମରିବି ଏବେ ?

(କୁନ୍ଦଲତା, ଶ୍ରୀମତି ଓ ସଖୀଗଣ ପ୍ରବେଶ )

କୁନ୍ଦ—କ'ଣ ? କାହିଁକି ବ୍ୟସ୍ତ ହଉଥିଲ ମା' ?

ଜଟିଳା—ନାହିଁ, ଏଇ ଘରକଥା । କୁଟିଳାକୁ ଆଉ ପାରିହବ ନାହିଁ । ଆସିଲ ସବୁ ? ଯା ଲଳିତା, ବୋହୂକୁ ଘରକୁ ନେଇ ଯା ।

( ରାଧା ଓ ସଖୀଗଣ ପ୍ରସ୍ଥାନ )

କୁନ୍ଦ—ଯେମିତି କହିଥିଲ; ଠିକ୍ ସେଇଭଳି ସବୁ କାମ କଲି । କହ୍ନାଇର ଯେମିତି ଟିକିଏ ଆଖି ନ ପଡ଼େ, ସେଥିକି ଗୋଡ଼େ ଗୋଡ଼େ ଜଗିଥାଏଁ; ଦଣ୍ଡେ ପାଖଛଡ଼ା କରେ ନାହିଁ । କାହ୍ନୁ ଯେମିତି ଗୋଠକୁ ଗଲା, ରାଧିକାକୁ ନିଜେ ସାଙ୍ଗରେ ନେଇ ଆସିଲି । ପରଘର ଝିଅ ବୋହୂ; ସାବଧାନ ନ ହେଲେ ଚଳିବ କେମିତି ?

ଜଟିଳା—ହଁ ହଁ ସତ । ସେଇଥିଲାଗି ସିନା ତମଠେଇ ମୋର ଏତେ ବିଶ୍ୱାସ । ନୋହିଲେ ଆଉ କିଏ ଆସିଥିଲେ କି ମୁଁ ବୋହୂକୁ ପରଘରକୁ ଛାଡ଼ନ୍ତି ?

କୁନ୍ଦ—ଆଉ ଦେଖିଛ ନା ? ଶ୍ରୀମତୀଙ୍କ ରୂପାରେ ଖୁସି ହୋଇ ଯଶୋଦା ତାଙ୍କୁ ମଣି, ମୁକ୍ତା, ପାଟ ବଧାଇ ଦେଇଛନ୍ତି ।

ଜଟିଳା—ସତେ ! କଅଣ କହୁଛ ? ତମଯୋଗୁଁ ସିନା ଏ ଗୌରବ । ସତୀ, ସାଧ୍ୱୀ ହୋଇ ଥା' ମାଆ, ଯୁଗ-ଯୁଗର କର । କୁନ୍ଦ ! ଆଉ ଟିକିଏ କଥା ଅଛି । ଜାଣ ତ ମା', ମୋର ଗୋଟିଏ ବୋଲି ପୁଅ । ମା' ପ୍ରାଣ ରହୁଛି କି ଯାଉଛି । ଦେବୀ ପୌର୍ଣ୍ଣମାସୀ କହିଛନ୍ତି ଶ୍ରୀମତୀ ସୂର୍ଯ୍ୟପୂଜା କଲେ, ଘର ଧନ, ଜନ ଗୋପଲକ୍ଷ୍ମୀରେ ପୂରିଉଠିବ । ପୁଅ ମୋର ଚିରଜୀବୀ ହୋଇଥିବ । ଲଳିତାକୁ କହିଦଉଛି, ସେ ସାଙ୍ଗରେ ସଖିମାନଙ୍କୁ ନବ । କପିଲା ଗାଈ ଦୁଧ, ଦହି,ଘିଅ,ମିଷ୍ଟାନ୍ନ, ଫୁଲ, ଚନ୍ଦନ ନେଇକରି ଯିବ । ବାକି ମା', ତୁମକୁ ଲାଗିଲା । ରାଧା ଯେମିତି ଏକା ନ ରହେ । ଗୋପପୁରରେ ଭଗାରିହସାକୁ ମୋର ଖାଲି ଡର । ଭଲ ବ୍ରାହ୍ମଣ ଡାକି ପୂଜା କରାଇବ । ଲଳିତା !

(ଲଳିତା ପ୍ରବେଶ)

ଲଳିତା—ମା', ମତେ ଡାକୁଥିଲ ?

ଜଟିଳା—ହଁ ଲୋ ମା' । ରାଧାକୁ ସାଙ୍ଗରେ ନେଇ ସୂର୍ଯ୍ୟପୂଜା କରିବାକୁ ଯାଅ ବାହାରି । ବେଳ ଉଚ୍ଛୁର ହଉଛି । ପୂଜାସାମଗ୍ରୀ ସବୁ ନେଇକରି ଯାଅ । ତମମାନଙ୍କ ଉପରେ ବିଶ୍ୱାସ କରି ମୁଁ ବୋହୂକୁ ସାଙ୍ଗରେ ଛାଡ଼ିଦଉଛି, ରାଧା ତମ ସାଙ୍ଗରେ ଥିଲେ, ମୋର ଆଉ ଦକା ନ ଥାଏ । କୁନ୍ଦଲତା ! ମୁଁ ତେବେ ଗଲି ମା । ଲଳିତା, ପୂଜାବିଧି ସବୁ

ବେଗେ ଆୟୋଜନ କରିପକା । ବେଳ ଯେମିତି ଉଛୁର ନ ହୁଏ ।

କୁନ୍ଦ—ଆପଣ ନିଶ୍ଚିନ୍ତ ରହନ୍ତୁ । ଆମ୍ଭେମାନେ ସେସବୁ ଆୟୋଜନ କରିନବୁଁ ଯେ ।

ଜଟିଳା—ହଉ ମାଆ ।

(ଦଧିଭାଣ୍ଡ ହସ୍ତେ ଏକ ଦିଗେ ପ୍ରସ୍ଥାନ ଓ ସଖିମାନଙ୍କ ଅନ୍ୟ ଦିଗରେ ପ୍ରସ୍ଥାନ । )

## ପ୍ରଥମ ଅଙ୍କ—ତୃତୀୟ ଦୃଶ୍ୟ

[ ବୃନ୍ଦା ଗାଇ ଗାଇ ପ୍ରବେଶ ]

ଫୁଟିଲେ ମଧୁ ମାସେ ଫୁଲ ହସି
କୁଞ୍ଜେ କୁଞ୍ଜେ—ନବ ଫୁଲପୁଞ୍ଜେ—ମଧୁ ଅଳି ଗୁଞ୍ଜେ
ମନ ରଞ୍ଜେ, ରସିଆ । ୦ ।
ବାସ ପ୍ରସାରେ ମନ୍ଦ ସମୀରେ
ଗନ୍ଧ ପ୍ରାଣମୋଦ ଦିଆ,
ଗଗନ, ଭୁବନ, ବନ ଫୁଲ ଗନ୍ଧେ ଭରି
ଫୁଟେ ମଲ୍ଲୀ, କୁନ୍ଦ, ମରୁଆ । ୧ ।

( ପ୍ରସ୍ଥାନ )

(ସୁବଳ, ମଧୁମଙ୍ଗଳ ଓ ଶ୍ରୀକୃଷ୍ଣ କଥା ହେଉ ହେଉ ପ୍ରବେଶ କଲେ )

ସୁବଳ—ତୁମେ ପଚାରୁନା ?

ମଧୁ—କାହିଁକି, ତୁମେ ପଚାରୁନା ?

ସୁବଳ—କାହିଁକି, ତୁମେ ?

ମଧୁ—ଅଚ୍ଛା ହଉ, କାହ୍ନୁ ମ ! ଗୋଟିଏ କଥା ପଚାରିବି ଭାଇ !

କୃଷ୍ଣ—ପଚାର ।

ମଧୁ—କହିବ ନା ?

କୃଷ୍ଣ—ଜାଣିଥିଲେ ସିନା ?

ମଧୁ—ଅଚ୍ଛା କହନା ଭାଇ ! ଚନ୍ଦ୍ରମୁଖଟି ଆଜି କାହିଁକି ଶୁଖିଯାଇଛି ?

ସୁବଳ—ଆଖି ଦିଓଟି ଲୁହ ଛଳଛଳ କାହିଁକି ?

ମଧୁ—ତୁମେ ମାରିବାରେ କୁଆଡ଼େ ଏମିତି ଗୁହଁ ରହୁଚ ?

ସୁବଳ—ଆଉ, କ'ଣ ଦେଖୁଚ ?

କୃଷ୍ଣ—ଏକାବେଳେ ତ ଏତେ କଥାର ଉତ୍ତର ଦେଇ ହେବ ନାହିଁ । ତେବେ, ମୁଁ ଜାଣେ ଏସବୁ କିଛି ତ ନୁହେଁ । କାଇଁ, ମୋ ମୁହଁ କ'ଣ ଶୁଖିଲା ଦିଶୁଚି ? ମୋ ଆଖିରେ ଲୁହ କାଇଁ ? କ'ଣ ଯେ ତୁମ୍ଭେମାନେ ସବୁ କହ, ମୁଁ କିଛି ବୁଝେ ନାଇଁ । ପାଗଳପରି ତମମାନଙ୍କ ମନକୁ କ'ଣ ଯେ କେତେବେଳେ ଆସେ, ଠିକଣା ନାହିଁ । ମୋ ମନରେ ତ ଜମା ଦୁଃଖ ନାହିଁ ଭାଇ !

( ଗୀତ )

ମଧୁ— ଛଇଳ ! ଛଳ ଛାଡ଼ ମୋହନ
ଛଳ ଛଳ କପାଁ କଞ୍ଜନୟନ ? । ୦ ।
ଛନକା ଛାତିରେ ଲାଗିଛି ସତେ,
ଛଟକେ ଲୁଚୁଇ କି ଫଳ ମୋତେ ? । ୧ ।
ଛେଲରୁ ବଳି ତ ନୟନ ଦିକା,
ଛେଦିବ କି ଗୋପୀ ଦମ୍ଭ-ପତାକା । ୨ ।
ଛାଡ଼ନାହିଁ କି ରଜନୀ-ଅଳସ,
ଛବି ଦିଶୁଅଛି ତ କେଡ଼େ ବିରସ । ୩ ।

କୃଷ୍ଣ—ମଧୁ ! ସୁଦାମ ! ମିଛଟାରେ ମୋତେ ଦେଖି ଏତେ କଥା କହୁଚ ସିନା ! ତେଣେ ଦେଖୁନାହଁ ବଣର ଶୋଭା । ଦେଖିଲ, ନବମାଳତୀକି ? ଦେଖିଲ, ସେ ଭ୍ରମରକୁ—ଦେଖୁଚ ନା ?

ସୁବଳ—ଦେଖୁଛୁ ଭାଇ ! ଭରାଯୌବନରେ ନବ-ମାଳତୀଟି ହସୁଚି ।

ମଧୁ—ଭାଇ ମ ! ଭଅଁରଟା ବାକି ପାଗଳ ।

ସୁବଳ—ବଡ଼ ଦୁଷ୍ଟ ସେ । ମନା କଲେ ବି ମାନେ ନାଇଁ ।

ମଧୁ—ଦେଖିଲ, ବିଚରା ଫୁଲକୁମାରୀ ତାକୁ ବରାବର ଦୂରରେ ରଖିବାକୁ ଗୁହୁଁଛି । ତେବେବି ସେ କଳା ଭଅଁରଟା ଗୁଣୁ ଗୁଣୁ ହେଇ ଅଳି କରି ବୁଲୁଛି ।

ସୁବଳ—ହୁଁ, ହେଲେ ଫୁଲ କି ଭୁଲିବାବାଲି ?

ମଧୁ—ନହେଲେ କଅଣ ହବ ? ଶେଷରେ କନ୍ତୁ—
'ଯହିଁକ ଉର—ତହିଁରେ ମର' ।
ସୁବଲ—ବାକ ଫୁଲର ଇଚ୍ଛା ଯେ ଭଅଁରର ନ ବସୁ, ଏଇଆ ନା ?
କୃଷ୍ଣ— ନା ।
ସୁବଲ—କପର ?
ମଧୁ—ନା କଣ କହୁଛ ? ଦେଖୁନା ? ଇଚ୍ଛା ଥିଲେ ସେ ଭଅଁରକୁ ଝୁରନ୍ତା ନାଇଁ ? ଭଅଁର କଥାରେ ମଜନ୍ତା ନାଇଁ ?
ସୁବଲ—ସତ କଥା ତ !
କୃଷ୍ଣ—ତୁମେମାନେ ଜମା ବୁଝିଲ ନାହିଁ ।
ମଧୁ—ଭଅଁରଟା ବଡ଼ ଦୁଷ୍ଟ । ଫୁଲର ତା ସଙ୍ଗ କରିବା ଇଚ୍ଛା ନାହିଁ । ଏଥିରେ ଆଉ ନ ବୁଝିବାର କଅଣ ବାକ ରହିଲା ଭଲା ?
କୃଷ୍ଣ—ମୁଁ ବୁଝେଁ, ଇଚ୍ଛା ଦୁହିଁଙ୍କର ଅଛି ।
ସୁବଲ—ତେବେ ମିଳନ ନାହିଁ କାହିଁକ ?
ମଧୁ—ଆରେ ମୋ କଥା ଶୁଣ । ମୁଁ କହେଁ—
ଭଅଁରଟା ଭାରି ଦୁଷ୍ଟ ।
କୃଷ୍ଣ—ନା ଭାଇ । ଦୋଷଟା ପବନର । ଦୁଷ୍ଟ କହିବ ତ ପବନକୁ କହ ।
ମଧୁ—ସେ କେମିତି ?
କୃଷ୍ଣ—ଦେଖୁନାହିଁ ? ବରାବର ଫୁଲକୁ ଦୋହଲାଉଛି ।
ସୁବଲ—ବୁଝିଲି, ବୁଝିଲି । ଆହା ତେବେ ତ ଭଅଁରର ଭାରି ଦୁଃଖ ହଉଥିବ ? ନା ଭାଇ !
ମଧୁ—କ ? ଫୁଲର କଅଣ କମ୍ କଷ୍ଟ ?
କୃଷ୍ଣ—ତେବେ ଦୋଷୀ କିଏ ହେଲା ? ଦୁଷ୍ଟ ତେବେ କିଏ ?
ସୁବଲ—ନା ନା, ପବନ ।
ମଧୁ—ଭୁଲ ବୁଝିଲ, ଦୁଷ୍ଟ ହେଲା ଜଟୀ ବୁଢ଼ୀ ମାଙ୍କୁଡ଼ୀ ।
ସୁବଲ—ଆରେ, ତା କଥା କ'ଣ ଏଠି ପଡ଼ୁଚ ?
ମଧୁ—ତମ ସଖାଙ୍କୁ ପଚାର ।
ସୁବଲ—ସେ କେମିତି ଦୋଷୀ ?
ମଧୁ—କେଜାଣି । ସଖାଙ୍କୁ ପଚାରୁନା ?
ସୁବଲ—ମ, ଏଠି ତେବେ ଫୁଲ କାଇଁ, କଳା ଭଅଁର କାଇଁ ?
ମଧୁ—କେଜାଣି, ସଖାଙ୍କୁ ପଚାର ।
କୃଷ୍ଣ—ଦେଖ ଦେଖ ସୁବଲ, ତମାଲ ଗଛକୁ ଅନା ।
ସୁବଲ—ହଁ ସଖା, କଳା ଗୋରା ମିଶାମିଶି । ବା, ବା, ଭାରି ସୁନ୍ଦର ତ !
କୃଷ୍ଣ—ଆଉ କିଛି ନାଇଁ ? (ମିରବରେ ଅନାଇଲେ)
ମଧୁ—ଅଛି ଅଛି, ତାଙ୍କୁ ଦିଶୁନାଇଁ । ମୁଁ ଦେଖିଲିଣି ।
(ହେଣ୍ଡି ମାରିବା)
ସୁବଲ—ଉଁଃ, କଅଣ ଦେଖିଲ, କହିଲ ଦେଖି ?
ମଧୁ—ଦେଖିଲ ଯାହା ସଖାଙ୍କୁ ପଚାର ।
ସୁବଲ—ସଖା ତ କହିବେ, ଆଉ ତେବେ ତୁମେ କ'ଣ ଦେଖିଲ ?
ମଧୁ—ଆମେ ତେବେ କହିବୁଁ ? ହଉ ଦିଓଟି ସୁନ୍ଦର କରପଲ୍ଲବ । ନୁହେଁ ସଖା ?
କୃଷ୍ଣ—(ହସି) କହିଯାଅ—
ମଧୁ—ବଡ଼ ଅଧୀର ସେ । ଭାରି ଆକୁଳ । ଦେଖୁଚ ନା ?
କୃଷ୍ଣ—ହୁଁ, କହିଯାଅ—
ମଧୁ—ବଡ଼ ବିକଳ ହଉଚି । ଗୃହେ ମିଳନ । ନାଇଁ ସଖା ?
କୃଷ୍ଣ—କେଜାଣି ? (ମୁହଁ ଗମ୍ଭୀର କରି ଗୃହିଁଲେ)
ମଧୁ—ନାଃ, ତେବେ ଆଉ କିଛି କହିବ ନାଇଁ ।
ସୁବଲ—କାହିଁକ ? କହ, ଯାହା ଦେଖୁଛ ।
ମଧୁ—କହିଲ ତ, କହୁଛି ମୁହଁ ଶୁଖିଗଲା । ଛିଃ, କହି ନ ଥାନ୍ତି ହେଲେ—(ଶ୍ରୀକୃଷ୍ଣଙ୍କୁ ଗୋଲାଇ ଧରି)

(ଗୀତ)

ମୋ ରାଣଟି କାହ୍ନୁ ମୁଖ ସୁଖା ନା ॥
ସଧୀରେ ମୋହନ ସୁରେ
ବଜାଅ ମୁରଲୀ ଥରେ
ବରଜ ଗୁଆଳ ଆଳ ଛାଣ ରଖା ନା । ୧ ।

ଏ ଛଳ ଆଖି ଦେଖିଲେ
ସହିବ କି ଗୁପ୍ତ ଭଲେ ?
ବଧିଲ ଅଧରେ ଦୁଃଖରେଖା ଲେଖାନା । ୨ ।
ଫୁଟାଅ ହସ ସୁମନେ
ଶରଦ - ଚନ୍ଦ୍ରବଦନେ,
ମାରବ ନୟନକୋଣେ, ମାର ମଖା ନା । ୩ ।

(ଦାମ ପ୍ରବେଶ)

ଦାମ—କାହ୍ନୁ ! କେତେ ଖୋଜିଲିଣି ଯେ, ଦେଖାନାଇଁ ।

କୃଷ୍ଣ—କାହିଁକି ଭାଇ ! ମୁଁ ତ ଏଇଠି ଅଛି ।

ଦାମ—ଧନିଷ୍ଠା ରସାବଳୀ ନେଇ ଆସିଛି । ଆଉ଼ର କିଏ କିଏ ଆସିଚନ୍ତି । ସମସ୍ତିଙ୍କି ଏଇଠିକି ଡାକିବ ? ଧନିଷ୍ଠା ଏଣିକି ଆସୁଥିଲେ ।

( ଧନିଷ୍ଠା ରସାବଳୀହସ୍ତେ ପ୍ରବେଶ)

ଦାମ—ହେଇଟି଼ତ, ଧନିଷ୍ଠା । ଆଉ ସମସ୍ତେ କାହାନ୍ତି ? ଡାକିଆଣେ, ଯାଏଁ ।

କୃଷ୍ଣ—ଯାଅ । ଏଇଠି ଆଜି ବସି ଖାଇବା । କିଏ କାହା ଘରୁ କଅଣ ଆଣିଛ, ଆଣ ।

(ଦାମ ପ୍ରସ୍ଥାନ )

ଧନିଷ୍ଠା—କାହ୍ନୁ ! ମାଆ କହିଛନ୍ତି, ବେଗେ ଗୋଠରୁ ଯିବ ବାହାରି, ବେଲବୁଡ଼ପାଏ ରହିବ ନାହିଁ ।

କୃଷ୍ଣ—ମାଆ କଅଣ କରୁଥିଲେ ଧନିଷ୍ଠା ?

ଧନିଷ୍ଠା—ମୋତେ ଏତକ ଦେଇ ଘର ବାହାର ହଉଛନ୍ତି; ସଦାବେଳେ ତ କାହ୍ନୁ କାହ୍ନୁ··· ।

ମଧୁ—ମାଆ ମୋ କଥା କିଛି କହୁ ନ ଥିଲେ ଧନିଷ୍ଠା ? ଅହା, ମୋ ମାଆଟି ଥାଆନ୍ତା କି ?

ଧନିଷ୍ଠା—କି, ତମ ମାଆ କ'ଣ ନାହାନ୍ତି କି ?

ମଧୁ—ହଁ ଅଛନ୍ତି ଯେ, ଥାଇ ନଥିବା ପରି ।

ଧନିଷ୍ଠା—କିପରି ?

ମଧୁ—କାଇଁ ? ଏମିତି ତ ମଧୁ, ମଧୁ ହୁଅନ୍ତି ନାଇଁ । ଅଚ୍ଛା, ମୋଲାଗି ଖଣ୍ଡେ ଭଲ ଛେନା ଦବାକୁ କହିଥିଲି, ଆଣିଛ ନା ?

ଧନିଷ୍ଠା—ଅଲଗା କରି ମାଆ ଦେଇଛନ୍ତି ତମଲାଗି ।

ମଧୁ—ତେବେ ଏଥର ମୁଁ ବି ତ ରଜାପୁଅ ସଙ୍ଗେ ସମାନ । କାହ୍ନୁର ରସାବଳୀ ଯେମିତି ବଡ଼ିଆ, ମୋର ଛେନା ସେମିତି ବଡ଼ିଆ । ତାର ଆସିଛି, ମୋର ତ ଆସିଛି । କମ୍ କ'ଣ ?

ଧନିଷ୍ଠା—କିଏ କମ୍ ବୋଲି କହିଲା କି ?

ମଧୁ—କିଏ କହନ୍ତା କାହିଁକି ? ବାଟ କାଇଁ ?

( ଗୋପ ବାଳକଗଣ ପ୍ରବେଶ )

ଦାମ— (ଗୀତ)

ନିର୍ମଳ ଯମୁନା ବହେ ଧୀରେ ଧୀରେ
ସୁନ୍ଦର ଢେଉ ନାଚ ଖେଳେ ତାଳେ ତାଳେ । ୦ ।
କୁଞ୍ଜେ ପକ୍ଷୀ ଗାଏ ଗୀତ
ଆକୁଳ କରଇ ଚିତ୍ତ
ଦୋହଲ ନାଚଇ ମଲ୍ଲୀ ମଳୟ ସମୀରେ । ୧ ।

ସୁଦାମ—କହାଇ, ବଳରାମ ତମକୁ ଅନାଇଁ ବସିଛନ୍ତି ।

ଦାମ—ଯମୁନାକୂଳରେ ସେ ଯେଉଁ ଚକା ପଥରଟା ନାଇଁ, ତାରି ଉପରେ ଆଜି ବଣଭୋଜି ହବ, ଚାଲ ।

କୃଷ୍ଣ—ଚାଲ ତେବେ ।

ସୁଦାମ—ଖାଇସାରି ଆଜି ରଜାମନ୍ତ୍ରୀ ଖେଳ ଖେଳିବା ।

ମଧୁ—ହଁ ହଁ, ମୁଁ ରଜା ହେବି । ତୁମେ ସବୁ ମୋର ବୋଲକରା । ମୁଁ ଯାହା କହିବି, ଯେମିତି କହିବି, ସେମିତି କରିବ—ଉଠ୍-ନା-ଉଠ୍; ବସ୍-ନା-ବସ୍ ।

ଦାମ—ଧୁତ୍ । ତୁ'ଟା ବାହ୍ମଣ । 'ବାହ୍ମଣ ରଜା, ଝଣ୍ଟ ପରଜା'—କାଳ-କାଳକେ ଯା' ନ ହେଇଛି, ତା' ହବ ? ତୁ' ଯା, କୋଉଠି ଯାଇ ଚୂଡ଼ା ଦହି କଥା ବୁଝ୍ । କାହ୍ନୁ, ଆମରି ଚାଲ ।

କୃଷ୍ଣ—ନାଇଁ ଭାଇ ! ମୁଁ ଆଜି ପୂଜା ପାଇଁ ନାଗେଶ୍ୱର ତୋଳିବାକୁ ଯିବି ।

ଧନିଷ୍ଠା—ମୁଁ ତା'ହେଲେ ନାରାୟଣଙ୍କ ଫୁଲ ଲାଗି ଯାଏଁ । ତୁମେ ଚକାପଥର ପାଖକୁ ଆସିବ ।

କୃଷ୍ଣ—ହଁ ।

( ସଖୀଗଣ ଗୀତ ଗାଇ ଗାଇ
କୃଷ୍ଣଙ୍କୁ ନେଇ ପ୍ରସ୍ଥାନ )
ମଧୁବନେ ବଂଶୀ ବଜାଏ କେ ?
ଗୋପୀମନ ପରାଣ ମଜାଏ କେ ?
ମନ୍ଦ ମୁରଲୀ ତାନେ—
ସତେ ! ପ୍ରାଣ ଝୁରେ
ଧୀରେ ଗାଏ କେ ?

## ପ୍ରଥମ ଅଙ୍କ—ଚତୁର୍ଥ ଦୃଶ୍ୟ

**[ ଉପବନର ଅଂଶ । ଉପବିଷ୍ଟା ମାଳାଗ୍ରନ୍ଥନରତା ଶ୍ରୀମତୀ—ପାର୍ଶ୍ୱେ ଲଳିତା ଓ ବିଶାଖା ] ।**

ଲଳିତା— ( ଗୀତ )

ମନା କରୁଥିଲି ନଣନା ରେ,
ଅପାଙ୍ଗେ ମୋହନେ ଅନାଁନା ରେ ।
କାନନେ ନିରେଖି କାହ୍ନୁ ଛବିକି
ଦେଲୁ ଧନୀ ! ମନ ପରାଣ ବିକି ।
ଛଟକେ ଭୁଲାଇ, ଅଟକାଏ ମନ
କପଟ ସେ, ସୁନାବରନା ରେ ।୧।

ମଣାଇ ଖଣାକୁ ଅଣାଇବାର
ବଣା କରି ଜାଣେ ଶ୍ୟାମ ସୁନ୍ଦର
ମନମୀନ ଶ୍ୟାମ-ନେତ୍ର-ବଉଶୀରେ
ଜଉଳୀଣି ଏ କି ଅଜଣା ରେ ।୨।

ଚତୁର ସ୍ନେହର କରି ନେଲାପରି ସେ
ସରସ ଶ୍ରୀମୁଖ ଭଙ୍ଗି ବିକଶେ
ଲୁଚୁଇଲେ ଶ୍ୟାମ ସୋହାଗ ଲାଳସ
ପଡ଼େ ଜଣା ଅପେ ସୁମନା ରେ ।୩।

ବିଶାଖା—ମୁଁ କଅଣ ତାଙ୍କୁ ସେଇ କଥା କହୁନାହିଁ କି ?

ଲଳିତା—କାହିଁକି ସହି ? ସେଇ କଳାରୂପକୁ ସତେ ନ ଦେଖିଲେ କି ଲୋକେ ଆଉ ବ୍ରଜପୁରରେ ରହି ପାରୁ ନାହାନ୍ତି ? (ଶ୍ରୀମତୀଙ୍କୁ ଦେଖାଇ) ଦେଖିଲୁ ଦେଖିଲୁ, ଫୁଲ କୋଉ ପାଖରୁ ଗୁନ୍ଥା ହଉଛି ଦେଖ୍ ।

ଶ୍ରୀମତୀ—(ଚମକି) କାଇଁ ? ଠିକ୍ ତ ଗୁନ୍ଥୁଛି । କାହିଁକି ମୋତେ ଦୋଷ ଦଉ ସଖୀ ? ମନେ ମନେ କେତେ ଥର ଶପଥ କଲିଣି । ଦମ୍ଭ ଧରି ବସେଁ—ସେ ରୂପ, ସେ ଛବି, ସେ ଛଟା ଭୁଲିଯିବି । ଦେଖିଲେ ହେଲେ, ନ ଦେଖିଲାପରି ରହିବି ।

ବିଶାଖା—ସବୁ ତ କହିଲ, ଝାଣ ତ ହବ, ଦମ୍ଭ ଧରିବା କଥା ସତ, ତା' ମଧ୍ୟ ଜଣାପଡୁଛି । ବାକି ସହି—

( ଗୀତ )

ଯେବେ, ଭାସିଆସିବ ଗୋ ଯମୁନାକୂଳଉଁ
ମୋହନ ମୁରଲୀ ତାନ,
ତୋ ଶ୍ରୁତି ପରଶି ମରମେ ପଶି ଗୋ,
ଭସାଇ ଦେବ ଗୁମାନ ।୧।

ଲଳିତା—ପୁଣି; ରଜନୀ ଅଧରେ ମୁରଲୀ ଅଧୀରେ
ଡାକିଲେ ଶ୍ରୀରାଧା ରାଧା,
ଭୁଲି କୁଳ, ମାନ ହରାଇବ ଜ୍ଞାନ
ମାନିବ କି ରାଧା ବାଧା ? ।୨।

ବିଶାଖା—ଯେବେ, କଳା ନବଘନ ଉଇଁ ଆସିବ ଗୋ !
ଚମକି ଚାହିଁବ ନାହିଁ;
ମାପ ଡାଳେ ଡାଳେ ବରହୀ ନାଚିଲେ
ବିରହେ ନ ହେବ ବାଇ ।୩।

ଉଭୟେ— ରାଇ ! ନ ହେବ ବାଇ,
ଦଗାଦାର ସେ ତ କଳା କହ୍ନାଇ
ଝୁରି କଳା ଗୁଇ ନ ହେବ ବାଇ ॥

ଶ୍ରୀମତୀ—ନାଇଁ ସହି, ଦେଖିବ ନାଇଁ ଏଇଥର । ଆଉ ଲୁହେଁ ।

ଲଳିତା—କ'ଣ ଆଉ ଲୁହେଁ ସଖୀ ? କୋଉ କଥା ? କହିବଟି କହିବଟି ଆଉ ଥରେ ?

ବିଶାଖା—ମୁଁ କହୁଛି, ମୁଁ କହୁଛି—ଗୋଟେ ନୂଆ କଥା । ଶୁଣ—

( ଗୀତ )

ସଜନୀ ରେ ! ଏ କି ଦେଖିଲି ମୁଁ ନୂଆକରି ।୦।
ଗୋବର୍ଦ୍ଧନ ଶିରେ ଆଜ
ଫୁଟିଛି ଦୁନା ପଙ୍କଜ
କାଳନ୍ଦୀରୁ ଶୁଖିଲାଣି ବାରି ।୧।
ଦିବସେ ନୀଳ ଆକାଶେ
କୋଟି କୋଟି ତାରା ହସେ
ପ୍ରଖର ହୋଇଲା ଶଶୀଶିଖ ।୨।

ଶ୍ରୀମତୀ—ଏ ଅସମ୍ଭବ କଥା କାହିଁକି କହ ବିଶାଖେ ?

ଲଳିତା—ନାଇଁ ତ ସଖି ! ଅସମ୍ଭବ କ'ଣ ? ସବୁ ତ ସମ୍ଭବ ।

ଶ୍ରୀମତୀ—ସମ୍ଭବ ! କିପରି ?

ବିଶାଖା—ତମ **କଠିଣ** ସଂକଳ୍ପ କଲା ପରି ।

ଲଳିତା—ଅଚ୍ଛା କହିଲ, ଆଜିଠାରୁ ଆଉ ବନ୍ଧୁଙ୍କୁ ଚାହିଁବ ନାଇଁ ?

ଶ୍ରୀମତୀ—( ଅଳ୍ପ ହସି ) ନାଇଁ ।

ବିଶାଖା—ବଂଶୀ ବାଜିଲେ ?

ଶ୍ରୀମତୀ—ବାଜୁ ।

ଲଳିତା—ଶୁଣିବ ନାଇଁ ତ ?

ଶ୍ରୀମତୀ—ନା ।

ଲଳିତା—ଏ କଥା ସତଟି ?

ଶ୍ରୀମତୀ—ସତ ।

ଲଳିତା—( ହସି ) ଗୀତ—

ସତ କହିଲୁ ତ ସୁନ୍ଦରୀହୀରା ଗୋ !
ପରତେ ମାନକ ଲାଗୁନାହିଁ ।୦।
କୁଞ୍ଜବନପଥେ ଚମକିବୁ ନାହିଁ
ଦେଖିଲେ ଆପଣା କଳା ଛାଇ,
ବାରବାର ଫେରି ଶ୍ୟାମ ପଦଚିହ୍ନ
ଚିହ୍ନିବାକୁ ନ ରହିବୁ ଚାହିଁ ? ।୧।
ନବଘନ ଦେଖି, ଅପଲକ ଆଖି
ଲାଗି ନ ଯିବ କି ପ୍ରିୟସହି,
କଳା କୋଇଲିର କୁହୁତାନ ଶୁଣି
ଉହୁ ବୋଲି ନ ହେବୁ କି ବାଇ ? ।୨।
ନିଶୀଥରେ ଥରେ, ମୁରଲୀ ବାଜିଲେ
ସତେ କି ଗୋ ଛନଛନ ହୋଇ,
ଥରଥର ଆଳି, କାନ ଧରି ଅଳି
ନ କରିବୁ ଶ୍ୟାମବନ୍ଧୁ ପାଇଁ ? ।୩।

ତୁଳସୀ—(ପ୍ରବେଶ) ଶ୍ରୀମତୀ ! ମୁଁ ଯିବି ତେବେ ?

ଲଳିତା—କୋଉଠିକି ଯିବୁ ?

ଶ୍ରୀମତୀ—କେଜାଣି ସଖି, ଜାଣିନାଇଁ ତ !

ଲଳିତା—ତେବେ ?

ଶ୍ରୀମତୀ—କିଛି ନାଇଁ ।

ତୁଳସୀ—ବେଳ ଉଛୁର ହେଲେ ତେଣେ ଜଟିଳା ଗାଳି ଦେବେ । ଆଦୁରି କୁନ୍ଦଲତା ସୂର୍ଯ୍ୟପୂଜା ସାମଗ୍ରୀ ଯୋଗାଡ଼ କରି ସାରି ବନକୁ ଯିବାକୁ ଅନାଇଁ ବସିଛନ୍ତି । ଆଉ ଉଛୁର କାହିଁକି ?

ଶ୍ରୀମତୀ—ତେବେ ଯା ତୁଳସୀ—କସ୍ତୁରୀ ଯାଉ । ଦୁହେଁ ଯାଇ ବଢ଼ିଆ ଆଉ ଏ ମାଳାଟି—
( ଉଠି ମାଳା ଦେବା )

ଲଳିତା—ଏଁ ! ( ବାଧା ଦେଇ ) ସେ ମାଳା ପରା ସୂର୍ଯ୍ୟପୂଜା ଲାଗି ଗୁନ୍ଥୁଛ ଧନୀ ?

ଶ୍ରୀମତୀ—ଚୁଲିଚ୍ଛା ତ ସରିନାଇଁ । ଆଉ ବେଳ ବି ନାଇଁ । ପଠାଉଛି ପରା ମାଳା ଗୁନ୍ଥା ଶେଷ କରିବାକୁ !

ବିଶାଖା—କାହା ପାଖକୁ ଗୋ ? କିଏ ତେବେ ତାକୁ ଶେଷ କରିବ ?

ଶ୍ରୀମତୀ—କେଜାଣି ? ( ହସିଲେ ଟିକିଏ )

ଲଳିତା—ଛଳ ଛାଡ଼, ସଂକଳ୍ପ ରକ୍ଷାକର ।

ଶ୍ରୀମତୀ—କରୁଛି ତ ସଖୀ, କରିବାକୁ ତୁମ୍ଭେମାନେ ସାହା ନ ହେଲେ ଆଉ ଉପାୟ କି ବଳ ? ସଂକଳ୍ପ କରି ତ ଫୁଲ ଗୁନ୍ଥୁଥିଲି ସଖି !

( ଗୀତ )

ପ୍ରିୟସହ୍ବ ! ସକଳପ ମୋର ସେହ୍ବ ଗୋ !
କଳପତରୁର କଳପକ ଫଳ
ମିଳବ ସେ ପଦେ ଧାସ୍ବି ଗୋ ।୧।
କଳା କଣ୍ଠକୁ ଏ ସୁମନ ଶୋଭନ-
ଦଶିବ, ହସିବ ମୋ ଭାଗ୍ୟ ପତନ
ମାନସ-କୁମୁଦ- ଗୁରୁକଳାକର
ସହଜେ କ ଫଳ ପାଇ ଗୋ ? । ୧ ।

## ପ୍ରଥମ ଅଙ୍କ—ପଞ୍ଚମ ଦୃଶ୍ୟ

[ ଶ୍ରୀକୃଷ୍ଣ ଗାଇ ଗାଇ ପ୍ରବେଶ ]

( ଗୀତ )

ଶୈଶବସନ୍ତର ଶେଷ ପରଶେ ଗୋ
ହସେ ଏ କାହା ନୟନ,
ବନ୍ଧୂଲ ଅଧର ଗୁରୁ ରକତମା
ଶେଷାଇଛି କ ଲପନ ?
ଶ୍ରୀଅଙ୍ଗ ସୁବାସେ ମହକେ ଭୁବନ
ଚନ୍ଦ୍ରମୁଖ ଜୋଛନାରେ,
ହସିଉଠେ ସାଗ- ସସାର, ଝଲକେ
ଯମୁନା ଲହଶ-ମାଳେ ।
ସୁରତମୂଳେ କଏ ପ୍ରିୟତମ ବୋଲ
ଡେରଛ ନୟନେ ହସି,
ବଣାର ଝଂକାରେ ଆଳାପିଲ୍ ମଧୁ
ମଂଜୁଳେ ତାର ପରଶି ।

( ମଧୁ ଓ ସୁବଳ ପ୍ରବେଶ—ମଧୁ ଶ୍ରୀକୃଷ୍ଣଙ୍କ ପଛରେ ଲୁଚ ଛିଡ଼ା ହୋଇ ସୁବଳଙ୍କୁ ଠାରବା ଓ ଶ୍ରୀକୃଷ୍ଣଙ୍କ ଗୀତ ବନ୍ଦ ହେବାପରେ— )

ମଧୁ—ତେବେ ସଖା ! ଅମର କ ଆଉ କାନ ନାହିଁ ?

କୃଷ୍ଣ—(ପଛକୁ ଗୁହାଁ) କଏ ? ବନ୍ଧୁ ?

ମଧୁ—ଏକା ନୁହେଁ, ଦୋକା ।

ସୁବଳ—କହନା ସଖା, ଅମର କ ଆଉ କାନ ନାହିଁ ? ମନ ନାହିଁ ?

କୃଷ୍ଣ—କାହିଁକ ଭାଇ ! ମୁଁ ତ ସେକଥା କଛି କହ୍ବ ନାହିଁ ?

ମଧୁ—କହନ୍ତ କ'ଣ ଆଉ ?

ସୁବଳ—କାର୍ଯ୍ୟରେ ତ କଲ ।

କୃଷ୍ଣ—କ'ଣ କଲ ?

ମଧୁ—ଏଇ ଯେ ଗୀତଟି ଗାଇଲ ।

ସୁବଳ—ଆଉ ଅମମାନଙ୍କୁ ଛଳ କର ପାଖରୁ ତଡ଼ଲ ।

ମଧୁ—ଅମର କ'ଣ ଶୁଣିବାକୁ କାନ ନାହିଁ ?

ସୁବଳ—ଅନନ୍ଦ ହେବାକୁ ମନ ନାହିଁ ?

ମଧୁ—ଛିଃ ସଖା ! ଅମମାନଙ୍କ ପାଖରେ ଏତେ ଛଳ କାହିଁକ ?

କୃଷ୍ଣ—ଛଳ ତ ଜମା କରନାହିଁ ଭାଇ ! ତମମାନଙ୍କୁ ଧନଷ୍ଠାହାତେ ଫୁଲ ଦେଇଦେବାକୁ କହ୍ବଦେଇ ଏକା ଏକା ବସିଥିଲ ତ ! ଯାହା ମନକୁ ଆସିଲା, ପଦେ ଗାଇଦେଲ । ଏଥିରେ ଆଉ ଛଳ-କପଟ କୋଉଠି ରହ୍ବଲା, କହ୍ବଲ ଦେଖି ?

ମଧୁ—ନା, ସେ କଥା କ'ଣ ତୁମକୁ ଜମା ଆସେ କ ?

ସୁବଳ—ମନେ ମନେ ଏକା ବସିବସି ଭାବଲେ କ'ଣ ଚଟକା ଫଳ ଫଳେ ?

କୃଷ୍ଣ—ଭାବୁ ତ ନଥିଲ କଛି ।

ମଧୁ—ତେବେ କ'ଣ ଗୋଟିଏ ଅଭିନୟ କରୁଥିଲ ?

କୃଷ୍ଣ—କ ଅଭିନୟ ସଖା ! କାହିଁକ ଏ କଥା କହୁଛ ?

ମଧୁ—ବୋଇଲ—ଦୃଷ୍ଟି ନିଶ୍ଚଳ, ନୟନ ଛଳଛଳ; ଏସବୁ କ ଛଳ ?

ସୁବଳ—ନା ନା ମଧୁ, ଏ ସବୁ ଚମ୍ପାଫୁଲର ମହିମା ।

କୃଷ୍ଣ—କ ଚମ୍ପା ଭାଇ ?

ମଧୁ—କ ଚମ୍ପା ! ଫୁଲ ଚମ୍ପା, ଗଛ ବଡ଼ ବଡ଼— ଧରେ ଫୁଲ କଡ଼ । ଫୁଟେ, ହସେ—ପବନରେ ବାସ ମିଶେ । କଡ଼ରୁ ଗୋଳା—ଝାଣେ ବରସ୍ଥିର ମନମନ୍ଲା । କଛି ବୁଝିଲ ?

କୃଷ୍ଣ—ଯାଃ ।

ସୁବଳ—ନାଇଁ ନାଇଁ, ବୃନ୍ଦା ଯାହା ଦେଇଗଲେ। ହାତରେ ତ ଧରିଛ।
ମଧୂ—କଅଣ ମିଛ କହିଲ ?

( ଗୀତ )

ସତ କହ ଥରେ ନବଘନ ସୁନ୍ଦର ! ।୦।
ଚମ୍ପାଫୁଲ ନିରେଖି
ଚମ୍ପାବରଣୀ ସଖୀ
ନାଚଉଠିଲା କି, ସତେ ଆଖି ଆଗର ? ।୧।
ବାସଫୁଲ ପାଖୁଡ଼ା
ସାଜିବ ଧନୀ ଜୁଡ଼ା
ହେଲେ ସଜ ସଜଡ଼ା, ପରଶି ଶ୍ୟାମ କର ।୨।

ସୁବଳ—କି ସଖା ! ତୁନି ହୋଇ ରହିଲ ଯେ ?
ମଧୂ—ସମ୍ମତିର ଲକ୍ଷଣ ସେଇଟା। ନାଇଁ ସଖା ?
କୃଷ୍ଣ—କେଜାଣି ?
ସୁବଳ—ଫେର୍ ସେଇ କେଜାଣି ?
ମଧୂ—ସଫା ସଫା ଫିଟାଇ କହ। କାହାକୁ ହେଲେ ପଠାଇବା, କି ଆଉ କିଛି ଉପାୟ କରିବା। କେଜାଣି, ହୋଇଥିବ—ଏସବୁ କ'ଣ ହେ ?
କୃଷ୍ଣ—ତେବେ କାହାକୁ ପଠାଇବ କହୁଛ ?
ସୁବଳ—କିଏ ଯିବ ? ଜଟୀ ଆଖିରେ ତ ସମସ୍ତେ ଖଣ୍ଡ ! ମୁଁ ଗଲେ ଯାହା, ମଧୂ ଗଲେ ସେଇଆ। ବୁଢ଼ୀ ସନ୍ଦେହ କରିବ ନିଶ୍ଚେ।
ମଧୂ—ଓଲଟା ଫଳ ଫଳିବ ବାବୁ ! ଝାଡ଼ୁରେ ଝାଡ଼ିଦବ ବୁଢ଼ୀ।
କୃଷ୍ଣ—ତେବେ ବୃନ୍ଦା ?
ମଧୂ—ନାଁ ଧରନା, ନାଁ ଧରନା। ବୁଢ଼ୀ ବୋହୂକୁ ଘରେ ବାନ୍ଧି ରଖିବ।
ସୁବଳ—କାହିଁକି ସଖା ! ମୁରଲୀରେ ଡାକୁନା ?
କୃଷ୍ଣ—ତେବେ ତ ବଡ଼ ଅଡ଼ୁଆ।
ସୁବଳ—ଅଡ଼ୁଆ କ'ଣ ?
ମଧୂ—ବୁଝୁ ନାହଁ ଏଇତକ ? ବ୍ରଜଯାକ ଯେତେ ଗୋପୀ ସମସ୍ତେ ଗୋଠବାଡ଼ିଆ ହୋଇ ଅଡ଼େଇ ହେଇ ଆସିବେ।
କୃଷ୍ଣ—ଶୁଣିଲ ତ ?
ସୁବଳ—ହଁ ହଁ, ଠିକ୍ କଥା।
ମଧୂ—ସେଇଠୁ ଲାଗିବ ଲୀଳା ସଖାଙ୍କର। ନ ହେବା କଥା ସେ।
କୃଷ୍ଣ—ତେବେ ଧନିଷ୍ଠାକୁ ଦେଖ। ସେ କୁନ୍ଦଲତାଙ୍କ ପାଖକୁ ଯାଆନ୍ତୁ।
ସୁବଳ— ହଁ, ବରଂ ସେଇଆ କର।
କୃଷ୍ଣ—କୁନ୍ଦଲତାଙ୍କ କଥାରେ ଜଟୀଲାର ଭାରି ବିଶ୍ୱାସ। ସେ ହେଲେ ଆଉ ଚିନ୍ତା ନାଇଁ। ସୁବଳ, ତୁମେ ଯାଇ ଧନିଷ୍ଠାକୁ ଥରେ ଦେଖିବ କି ?
ମଧୂ—ଆଉ ମୁଁ ମଧ୍ୟ ଯାଏଁ, ଦେଖିବି ଶ୍ରୀମତୀଙ୍କର କେହି ସଖୀ ଯଦି ଫୁଲ ତୋଳି ଆସିଥାନ୍ତି; ଭେଟ ହେଇଗଲେ ସବୁ ଗୋଳମାଳ ଶେଷ। ଏଣେ ତୁମେ ବି ଏଇଥିମଧ୍ୟରେ ନିତ୍ତିଟିଆଟାରେ ଚମ୍ପା-ଫୁଲକୁ ଗୁହିଁ ଗୁହିଁ, କିଛି କାଳ ଗୁଣ ବାହୁନ ବାହୁନ କଟାଇଦବ। କ'ଣ କହୁଛ ସଖା ?

( ନେପଥ୍ୟରୁ ତୁଳସୀର କଣ୍ଠ )

( ଗୀତ )

ନବୀନ ନୀଳଘନ ନିରେଖି ଶିଖୀ ମନ
ନିରତେ ଛନଛନ ନ ହେବ କି, ସଖି ।୦।
ଉଭିଁ ବିଜୁ ଚମକ ଘଡ଼ଘଡ଼ ଧମକ
ଥମକ ଗୁଡ଼ ତାର ଥିବ କି, ସଖି। ୧।

ସୁବଳ—(ନେପଥ୍ୟକୁ ଗୁହିଁ) ମଧୂ, ମଧୂ, ହଜିଲା ବଳଦ ଖୋଜିଲାଠେଇ।
ମଧୂ—ସଖା, ଟିକିଏ ଗମ୍ଭୀର ହେଇ ତୁମେ ବସିଯିବଟି। ଖଣ୍ଡେ ଗଜଗମନୀ ବିଜେ କରୁଛନ୍ତି।
କୃଷ୍ଣ—କିଏ ସଖା ?
ମଧୂ—ଥୟ ଧର। ବର୍ଷା ନ ହଉଣୁ ତ ତମ ନଈ କୂଳ ତେଇଁ ଅଥୟ ! ବଡ଼ ଅଧୀର ତୁମେ। ଅନା, ଅନା ତୁଳସୀ ଆସୁଛନ୍ତି।

କୃଷ୍ଣ—ତୁଳସୀ ! ତେବେ ଗଲ ?
ମଧୁ—ଓଃ, ଟିକିଏ ଥୟ୍ୟ ଧର ଭଲ ଭାଇ !
(ତୁଳସୀ ପ୍ରବେଶ)
( ଗୀତ )
ଯେ ଯାହା ଲାଗି ସଖି ! ପରାଣ ଦିଏ ଢାଳ
ତା ବିନେ ଆନେ ମନ ରୁଚବ କି, ସଖି ? ।୨।
ସୁବଳ—ବାଃ, ବାଃ, (ପଦର ପାଳ ଧରି) ତୁଳସୀ ଆସିଗଲେଣି ତ !
ମଧୁ—ହାତରେ ସେ କଅଣ ଧରିଛ ଧନି ?
ତୁଳସୀ—ଦଉଛି ଦଉଛି, ନିଅ ।
( ମଧୁକୁ ମାଳା ଓ ସୁବଳକୁ ବିଡ଼ିଆ ଦେବା । )
ମଧୁ—(ମାଳା ଧରି) ବାଃ, କି ସୁନ୍ଦର ହାରଗୁଚ୍ଛା ରେ ! କି ମହକ ! ତୁଳସୀ, ଶ୍ରୀମତୀ କ'ଣ ଏ ଫୁଲତକ ସ୍ୱର୍ଗରୁ ତୋଳି ଆଣିଥିଲେ କି ? ଆହା ! କି ମନୋହର ଦିଶୁଛି ।
(ମଧୁ ଗୀତ ଗାଉ ଗାଉ ଶ୍ରୀକୃଷ୍ଣଙ୍କୁ ମାଳା ପ୍ରଦାନ)
( ଗୀତ )
ପ୍ରିୟାକର-ପରଶ ଏ ହାର
ସରାଗ-ପରାଗବୋଳା, ଗଳାମାଳା କର ।୦।
ଛୁଇଁଲେ ଗୁଡ଼ି ସୁମନ—ଛନକା ଗୁଡ଼ ବହନ
ଛଳ ଆଖିଜଳ ଶୁଖି—ତୁଟି ବାଧା ହେବ ସୁଖୀ
ସରସ ଶ୍ରୀମୁଖ ହାସେ ଦିଶିବ ସୁନ୍ଦର । ୧ ।
କୃଷ୍ଣ—ତୁଳସୀ ! ଶ୍ରୀମତୀ କାହାନ୍ତି ?
ତୁଳସୀ—ଶ୍ରୀମତୀଙ୍କ କଥା ଆଉ କାହିଁକି ପଚାରୁଛ ଶ୍ୟାମ ?
କୃଷ୍ଣ—କାହିଁକି ତୁଳସୀ ! ଶ୍ରୀମତୀ କେଉଁଠି କି ?
ତୁଳସୀ—ପୁରରେ ।
ମଧୁ—କାହିଁକି ? ଆଜି କ'ଣ ବନବିଜେ କରିବେ ନାହିଁ କି ?
ତୁଳସୀ—ଆଉ ବନବିଜେ ! ଶ୍ରୀମତୀ ମହାଦୁଃଖରେ ଅଛନ୍ତି ।
କୃଷ୍ଣ—କ'ଣ ହେଲା ତୁଳସୀ ?

ତୁଳସୀ— ( ଗୀତ )
ତବ ବିନେ ସଖୀ ଅଙ୍ଗ ନିରନ୍ତର ହେଲା ବିଭଙ୍ଗ
ନୀରଜ ନୟନୁ ବହେ ଧାର,
ନବ ମାଳତୀର ମାଳା ନ ବଳାଏ ମତ୍ତ ବାଳା
ନିମିଷେ ଅନ୍ତର ନ ସହିଲ
ହେ ମନମୋହନ !
କି କହିବି ସଖୀ ହତଜ୍ଞାନ,
ଚରଣ ନୂପୁର ଘେନି, ସାଜେ ବେଣୀସଜ ମଣି
ଭ୍ରମିଯାଏ ମଥା ଅନୁକ୍ଷଣ ।୧।
ଜଟୀଳା ଆଦେଶେ ରାଈ ଦଧି ମନ୍ଥନକୁ ଯାଇ
ଦଧି-ଭ୍ରମେ ମନ୍ଥେ ଜଳଭାଣ୍ଡ,
ନିରେଖି ଏ ଆନମନ କୁଟୀଳା କରି ସନ୍ଧାନ
ମାତାପାଶେ ଭଣି, ଦେଲା ଦଣ୍ଡ
ହେ ଚନ୍ଦ୍ରବଦନ !
ସଖୀ ବାଧା ଅତି ଅକଳନ,
କଟୂ ଗରଳରୁ ବଳି ଜଟୀଳା କୁଟୀଳା ଗାଳି
ସହିବ କେ ଗୁପ୍ତ କରି ଠାଣ ? ।୨।
ନିରୋଧିଛି ବନଦେଶ ଜଟୀଳା ଦେଲେ ଆଦେଶ
ସୂର୍ଯ୍ୟପୂଜା ହେବ ଅନ୍ତଃପୁରେ,
ବଚନ ବଦନେ ନାହିଁ ଆକୁଳେ ମାନ ଅନାଇଁ
ରହିଛି ସଜନୀ ସକାତରେ
ହେ ଗୁଣସାଗର !
ବିହିତ ଉପାୟ ଥିଲେ କର,
ତବ ପ୍ରୀତି-ପାରାବାରେ ଅକୂଳ ଅଥଳ ନୀରେ
ବୁଡ଼ିଯାଏ ଭେଳା ତ ସଖୀର ।୩।
କୃଷ୍ଣ—( ଅଧୀରେ ) ତୁଳସୀ ! ଏ କ'ଣ ସତ୍ୟ ନା ଛଳନା ?
ତୁଳସୀ—ଛଳ କ'ଣ ଜାଣିନାହିଁ । ମୁଁ ତ ଶ୍ୟାମ ନୁହେଁ । ଅବିଶ୍ୱାସ ହେଲେ, କାହାକୁ ପଠାଇ ଦିଅ । ସେ ଯାଇ ଅବସ୍ଥା ବୁଝିଆସୁ ।
କୃଷ୍ଣ—ବଟୁ, ସୁବଳ, ଉପାୟ କ'ଣ ଭାଇ ?

ସୁବଳ—ଜଟିଳା ପାରିବା ତ ବଡ଼ ବିଷମ ।

ମଧୁ—ସଖା ! ମୁଁ ଯାଇଁ ଆଗ ଉପାୟ ଭାବେଁ । ଦେଖେଁ, ଶ୍ରୀମତୀଙ୍କ ପୁରକୁ ଯିବାର କିଛି ସୁବିଧା ଅଛି କି ନାହିଁ ।

କୃଷ୍ଣ—ତୁଳସୀ ! ରାଧାଙ୍କର ପ୍ରକୃତ ଅବସ୍ଥା କହି ମନ ଶାନ୍ତ କର । ତୁମେ ତ ମୋର ଧୈର୍ଯ୍ୟ ପରୀକ୍ଷା କରୁନାହଁ ?

ମଧୁ—ହଁ ହଁ, ଏ ଖଣ୍ଡିକର ସେ ଗୁଣ ମଧ୍ୟ ଅଛି ସଖା ! ଏମାନେ ଶ୍ରୀମତୀଙ୍କର ସଖୀଟି ! ଅସାଧ୍ୟ କିଛି ନାହିଁ ।

କୃଷ୍ଣ—(ତୁଳସୀର କରଧାରଣପୂର୍ବକ ଗୀତ )

ଦୟାବତୀ, ମତି ମୋହନା ମୋ ମତି ଦହନା !
କରନା ଛଳନା ଗୋ,
ସତେ କି କିଶୋରୀ, ହେଲା ଏତେ ସରି
ବିରଜ ସୁନ୍ଦରୀ ଶୋଭନା ଗୋ ।୧।
ଜୀବ ଯିବ ମୋର, ଭାବି ଭାବି ତାର
ସେ ପରା ଶ୍ୟାମର ସମ୍ବଳ ଗୋ,
ଗଗନ ମୁଁ ସହି ! କଳାକର ସେହି
ତା ଲାଗି ମୁଁ ସିନା ସୁନ୍ଦର ଗୋ ।୨।
କୁଞ୍ଜକାନନ ମୁଁ, ସେ ଶୋଭା-ମଳୟ
ପରଶେ ଫୁଟଇ ସୁମନ ଗୋ,
ସୁମନା ! ବିମନା, ନ ହୁଅ କାମନା-
ପୂରାଅ, ହେବ ତୁ ମୋ ଆନ ଗୋ ।୩।

ମଧୁ—ସଖା ! ଅଳ୍ପ କଥାରେ ଏଡ଼କ ଅଧୀର ହେଲେ ଚଳିବଟି ?

ସୁବଳ—ମୋତେ ତ କାହିଁକି କଥାଟା କେମିତି କେମିତି ଲାଗୁଛି ।

ମଧୁ—ବୁଝିଲ ସଖା ! ତେମେ ଏଇ ଯୋଉ ଅଳ୍ପକେ ତରଳି ପଡ଼ ! ଲୁହାକୁ ଜାଣି—ଗୋପୀମାନେ ଦେଇଥା'ନ୍ତି ପାଣି ।

ସୁବଳ—ତୁଳସୀ ! ତୁମେ ଯାହା କହିଲ ସତ ହୋଇପାରେ । ବାକି ସତ କଥା କହୁଛ ନା ?

ତୁଳସୀ—ସତ ମିଛ ଗୋଟାଏ କଅଣ ? ବେଗେ ଉପାୟ କର !

କୃଷ୍ଣ—ତୁଳସୀ ! ତେବେ କ'ଣ ଶ୍ରୀମତୀ ଆଉ ବନକୁ ଆସିବେ ନାହିଁ ?

ତୁଳସୀ—କିପରି ଆଉ ?

ସୁବଳ—ସଖା ? ମୁଁ ଯିବି କି ? ଅବସ୍ଥା ଦେଖି ବୁଝି-ଆସିବି ।

କୃଷ୍ଣ—ତୁମ ଦୟା ।

ତୁଳସୀ—(ହସି) ଶ୍ୟାମବନ୍ଧୁ ! ପୁରୁଷ ପରା ତୁମେ ! ଏତିକି ଧୈର୍ଯ୍ୟ ତୁମର ତେବେ ?

ମଧୁ—ଦେଖିଲ ସଖା ! ମୁଁ ଜାଣେ ପରା ! ଖାଲି ଶିଂଘ ଲାଙ୍ଗୁଡ଼ ନାହିଁ ସିନା ! ନୋହିଲେ କେତେ ମନୁଷ୍ୟକୁ ଯେ ଏମାନେ ଫୋଡ଼ପକାନ୍ତେଣି, ତା'ର ସୀମା ନାହିଁ ।

କୃଷ୍ଣ—ତୁଳସୀ ! କେତେ ଛଳନା ତୁମ୍ଭମାନଙ୍କୁ ଆସେ ?

ତୁଳସୀ—ତୁମେ ପରା ଗୁରୁ ।

କୃଷ୍ଣ—ସଖୀ ତେବେ କ'ଣ କରୁଥିଲେ ?

ତୁଳସୀ—ମୋତେ କହିଥିଲେ, ସଙ୍କେତ ବୁଝି ବେଗେ ଫେରି ସମ୍ବାଦ ଦେବାକୁ ।

କୃଷ୍ଣ—( ଗଳାରୁ ମାଳା କାଢ଼ି ) ତୁଳସୀ, ଏ ଋଣ ପରିଶୋଧ କରିବାର ଶକ୍ତି ମୋର ନାହିଁ ।
( ତୁଳସୀକୁ ଦେଲେ )

ତୁଳସୀ—ଶ୍ୟାମବନ୍ଧୁ ! ଏଇ ଅନୁଗ୍ରହ ତୁଳସୀ ପାଇଁ ଯଥେଷ୍ଟ । ( ମାଳା ମସ୍ତକରେ ଛୁଆଁଇବା )

ମଧୁ—ସୁବଳ ! କହିଲ ଦେଖି, ଏଇସବୁ ଦେଖିଲେ ମନ କଅଣ ହୁଏ ! ସଖାଙ୍କର ଆମ୍ଭେମାନେ କି ଉପକାରୀ ଅବା ନୋହୁଁ ? ଯିଏନେହେଲେ, ଏତେ କାମ କରି ଖିଲେ ପାନକୁ ଅମେ ପାତ୍ର ନୋହିଲୁ ।

ସୁବଳ—ସତ କଥା, ସତ କଥା ।

କୃଷ୍ଣ—ତୁମେ ତେବେ କଅଣ ଗୃହ ବଟୁ ?

ତୁଳସୀ—ମୋହନ ! ଏ କଳିଆ ବ୍ରାହ୍ମଣ ଆଉ ଆମ ଶିରୀ ଦେଖିପାରିଲା ନାହିଁ । ଆମ ଛୁଇ ଦେଖିଲେ

ତ'ାର ନାହ ଡେଇଁଲା । ମୋତେ ସଂକେତ ଦେଲ; ମୁଁ ଯାଏଁ । ତେଣେ ଶ୍ରୀମତୀ ଅନାଇଁ ବସିଥିବେ ।

କୃଷ୍ଣ—ଜଣାଇବ ସହ ! ରାଧାକୁଣ୍ଡ ପାଖେ ମୁଁ ଅପେକ୍ଷାରେ ଥିବ ।

ତୁଳସୀ—ମୁଁ ଗଲ ତେବେ ।

ମଧୁ—ହଁ, ବଜେ କର । ସଖାଙ୍କୁ ଯେତେ କନ୍ଦାଇଲ । ଫେର୍ ଗାରଡ଼ି ମନ୍ତ୍ରରେ ଫୁଙ୍କି ଟିକିଏ ହସାଇ ନ ଦେଲେ ଚଳୁଛି ? ବୁଝିଲ ସୁବଳ ! କହ୍ନେଇଟି ଆମର କଣ୍ଢେଇ; ନାଚୁଆ ହେଲେ ଏଇମାନେ । ଯେତେ ଢଙ୍ଗରେ ନଚାଇବେ, ସଖା ଆମର ସେତେ ଢଙ୍ଗରେ ନାଚିବାକୁ ତିଆର ।

ତୁଳସୀ—ଶ୍ୟାମସୁନ୍ଦର ! ଏତେ ନବରଙ୍ଗ ମୁଁ ଶୁଣିପାରେ ନାଇଁ । ମୁଁ ବଦାୟ ନଏଁ ।

( ଶୈବ୍ୟା ପ୍ରବେଶ )

ଶୈବ୍ୟା—କ ଗୋ ତୁଳସୀ ! ମୁଁ ବହୁତ ଖୋଜି ଖୋଜି ଥକିଲଣି । ସାରା ବନ ତୁମକୁ ଖୋଜୁଛି । ଭେଟ ପାଉ ନ ଥିଲି । ଭାଗ୍ୟେ ଏଠିକି ଅଇଲି ବୋଲି ସିନା !

ତୁଳସୀ—କାହିଁକି ଶୈବ୍ୟା ? ମୁଁ ତ ବୃନ୍ଦାଙ୍କୁ ଖୋଜି ଖୋଜି ଆସି ଏଠି ପହଞ୍ଚିଲି ।

ଶୈବ୍ୟା—ଶ୍ରୀମତୀ କାହାନ୍ତି ?

ତୁଳସୀ—କାହିଁକି ?

ମଧୁ—( ସୁବଳ ପ୍ରତି ) ସୁବଳ ! ଗୋପରେ ଏଇ ଗୋପିକାଗୁଡ଼ାଙ୍କର ପେଟ ଭିତରେ ଗାଡ଼ିଏ ଲେଖାଏଁ ଗୋବର । କେତେ କପଟ ! ଓଃ !

ଶୈବ୍ୟା—ଚନ୍ଦ୍ରାବଳୀ କାଳୀପୂଜା କରୁଛନ୍ତି । ସେଥିପାଇଁ ଶ୍ରୀମତୀଙ୍କୁ ନିମନ୍ତ୍ରଣ କରି ପଠାଇଛନ୍ତି । ମୁଁ ତାଙ୍କୁ ଖୋଜି ବାହାରିଛି । ଶ୍ରୀମତୀ କୋଉଠି ଥିବେ ?

ତୁଳସୀ—ଆହା, ଶ୍ରୀମତୀ ତ ବୃନ୍ଦାଙ୍କୁ ଖୋଜୁଛନ୍ତି । ଅଜି ଶ୍ୟାମା ସଖୀଙ୍କର ଅମ୍ବିକାପୂଜା । ସେ ଶ୍ରୀମତୀଙ୍କୁ ଡାକି ନେଇଛନ୍ତି । ଲଳିତା ମୋତେ ପୂଜା ପାଇଁ ଫୁଲ, ଫଳ ନେବାକୁ ବୃନ୍ଦାଙ୍କ ପାଖକୁ ପଠାଇଥିଲେ । ମୁଁ ଯାଏଁ ସଖି ! ଆଉ କିଛି ମନେ କରିବ ନାଇଁ ।

(ପ୍ରସ୍ଥାନ)

ମଧୁ—( କାନରେ ) ସୁବଳ ! କେହି କାହାକୁ ଊଣା ନୁହେଁ ଭାଇ ! ସମସ୍ତଙ୍କର ଶିଂଘ ଉଠିଛି । ଫଟା ନୁହେଁ—ଗୋଟା ।

ସୁବଳ—ଆଉ, ସବୁ ଶିଂଘ ଗୁଡ଼ିକ ଗୁଡ଼ିକ ହାତ ଲମ୍ବା ।

କୃଷ୍ଣ—ଶୈବ୍ୟା ! ଚନ୍ଦ୍ରାବଳୀ କିପରି ଅଛନ୍ତି ?

ଶୈବ୍ୟା—ସେ କଥା କାହିଁକି ଶ୍ୟାମ ?

କୃଷ୍ଣ—ଏ କି କଥା ଶୈବ୍ୟା ? ସଖାମାନେ ଥାଆନ୍ତି, ତେଣେ ମାଆଙ୍କର ଗୋଠକୁ ଛାଡ଼ିବାକୁ ମନା—ଏଥିଲାଗି ଯାଇପାରିନାଇଁ ସିନା ! କୋଉଠି ଅଛନ୍ତି ଚନ୍ଦ୍ରାବଳୀ ?

ଶୈବ୍ୟା—ଚନ୍ଦ୍ରାବଳୀଙ୍କ ଶାଶୁ ତାଙ୍କୁ ଘରେ ଜଗି ରଖିଥିଲେ । ଏଇ ପୂଜା ଛଳ କରି ଆଜି ମୁଁ ତାଙ୍କୁ ବନକୁ ନେଇ ଆସିଛି ।

ସୁବଳ—ମଧୁ ! ଶୁଣୁଛ ?

ମଧୁ—ଫାଲେ ଫାଲେ ବାଣ୍ଟି ହେଇଯିବେ ।

କୃଷ୍ଣ—ସଖି ! ଚନ୍ଦ୍ରାବଳୀ କ'ଣ ଏଇନେ ତେବେ ପୂଜାରେ ବ୍ୟସ୍ତ ?

ଶୈବ୍ୟା—ହଁ କାହ୍ନୁ ! ବ୍ୟସ୍ତ ସତ । ପୂଜାରେ ନୁହେଁ, ଦେବତା ପ୍ରସନ୍ନ ହେଲେ ତ ପୂଜା ? ମୁଁ ପରା ସଙ୍କେତ-ହାର ନେଇ ଦେବତାଙ୍କୁ ପ୍ରସନ୍ନ କରାଇବାକୁ ଆସିଛି ।

( ଗୁଞ୍ଜାମାଳ କାଢ଼ି କୃଷ୍ଣଙ୍କ ଗଳାରେ ଦେଲେ )

ମଧୁ—ବାଃ ବାଃ ସଖା ! ଭଲ ମାନିଲ ଏକା !

ସୁବଳ—ପ୍ରସନ୍ନ ହେଲେ ତ ଦେବତା ?

ଶୈବ୍ୟା—ପଥର, ପଥର ।

ମଧୁ—କଉ ପଥରବା କ'ଣ ? ଧନଷ୍ଠା କଥା ମନେ ଅଛି ନା ?

କୃଷ୍ଣ—ଓହୋ ! ଭଲ ମନେ କରିଦେଲ ସଖା ! ସଖୀ, ଚନ୍ଦ୍ରାବଳୀଙ୍କ ବିରହ ବ୍ୟାକୁଳ ଥାଇ, ଆଉ ତାଙ୍କ

ଫିକେଟରେ ଅଧୀର ହୋଇ ମୁଁ ସେ କଥା ସବୁ ଭୁଲି ଯାଇଥିଲି । ଶୁଣିଛ ନା ଶୈବ୍ୟା ? କଂସ କେତେଗୁଡ଼ିଏ ଗୋରୁରଖିର ଗୋପଙ୍କୁ ପଠାଇଛି । ବସୁଦେବ ଖବର ଦେବାରୁ ପିତା ମୋତେ ଧନିଷ୍ଠା ହାତେ କହିପଠାଇଛନ୍ତି, ଚେତେଣେ ଜଗିବାକୁ ହେବ ।

ଶୈବ୍ୟା—ତେବେ କ'ଣ କରିବ ଶ୍ୟାମ ?

କୃଷ୍ଣ—କ'ଣ କରିବ ଆଉ ? ସେଠାରୁ ବାହୁଡ଼ି, ବେଳହେଲେ ସଖୀଙ୍କ ସଙ୍ଗେ ଥରେ ସାକ୍ଷାତ କରି ଆସିବି । ଶୈବ୍ୟା ! ଏ ଦୁଃଖ ବଡ଼ ବାଧିଲା ମୋତେ । ପାଇଲି ରତ୍ନ ସେ ହରାଇ ବସିଲି । କି ଦୁର୍ଭାଗ୍ୟ !

ମଧୁ—ସଖା ! ଆପଣା କାମ ତ ପୁଣି ଦେଖିବାକୁ ହେବ ।

ସୁବଳ—ନୁହେଁ କ'ଣ ?

ଶୈବ୍ୟା—ଏଇ କଥା ଜଣାଇବି ସିନା ?

କୃଷ୍ଣ—ହଁ ସଖି ! ମୁଁ ବେଗେ ଯାଏଁ । କାର୍ଯ୍ୟ ଶେଷ କରି ସମୟ ଥିଲେ ଥରେ ସଖୀଙ୍କର ସଙ୍ଗ-ସୁଖ ଲଭି କରି ନିଜକୁ ଭାଗ୍ୟବାନ୍ ମଣିବି ।

ଶୈବ୍ୟା—ତେବେ ମୁଁ ଆସୁଛି ।

(ପ୍ରସ୍ଥାନ)

ମଧୁ—(ଚଲାଇ) ବଜେ କର, ବଜେ କର ।

ସୁବଳ—ମଧୁର ବୁଦ୍ଧି ତ ଖୁବ୍ ସରୁ ଦେଖୁଛି ?

ମଧୁ—ନୁହେଁ ଆଉ କ'ଣ ! ଫୋଡ଼ହେଇଯିବ ! ତମ ଦେହ ଦେଖିଲି । କୋଉଠି ବୁଦ୍ଧିମୁନ ବାଜ ଖଣ୍ଡିଆ ଖାବରା ହେଇଯାଇନାହିଁ ତ ?

ସୁବଳ—ବାକ ସଖା ବ କମ ନୁହନ୍ତି ।

ମଧୁ—ହଁ, ବଡ଼ ସୁନ୍ଦର ମୁହଁ ଶୁଖେଇ ଆସେ । ଆସ ଆସ, ତୁମକୁ ଗୁଡ଼ଦେଇ ଆସେଁ ।

(ଶ୍ରୀକୃଷ୍ଣଙ୍କୁ ଟାଣିଟାଣି ନେଇଯିବା)

କୃଷ୍ଣ—କେଉଁଠିକି ଯେ ଏତେ ଟଣାଓଟରା ଲଗିଛି ?

ମଧୁ—ମେଇଠିକି······

( ଗୀତ )

ଫୁଟିଥିବ ଯେଉଁଠି ସଖା !
ସୁନା ଗଛେ ହୀରର ଫୁଲ,
ମୋତିମାଳେ ପାଖୁଡ଼ା ବେଢ଼ା
ଝରୁଥିବ ମାଳା କେଶର ।୦।
ସରଗର ଫୁଲବନ—ବାସନା ଚୋରାଇ ପବନ,
ଛୁଉଁଥିବ ଯୋଡ଼ା ଗୁନ୍ତ, ଗାଉଥିବ କଳା କୋକିଳ ॥

( ଗାଇ ଗାଇ ଶ୍ରୀକୃଷ୍ଣଙ୍କୁ ନେଇ ପ୍ରସ୍ଥାନ )

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟ

**[ ରାଧାକୁଣ୍ଡ ନିକଟସ୍ଥ କୁଞ୍ଜ ସମ୍ମୁଖ-ପଥ । ଶ୍ରୀକୃଷ୍ଣଙ୍କୁ ନେଇ ମଧୁ ଓ ସୁବଳ ପ୍ରବେଶ ]**

ମଧୁ— (ଗୀତ)

ବଜାଅ ବଂଶୀ, ମୋହନ ବଂଶୀ,
ବାସ କୁସୁମେ ହରି ଉଠୁ ବିକଶି ।୦।
ଯମୁନା ବଂଶୀତାନେ ତାଳେ ତାଳେ ନାଚିବ,
ମଳୟ ଫୁଲରେଣୁ କୁଞ୍ଜେ-କୁଞ୍ଜେ ସିଞ୍ଚିବ
ବରହୀ ପୁଚ୍ଛ ଟେକି ନାଚି ନାଚି ବଞ୍ଚିବ
ବରଜ ନାଗରୀ, ରସସାଗରୀ, ଚଳି ଆସିବ
ସରୋଜ ସୁନ୍ଦର ମୁଖ ମଞ୍ଜୁଳ ହସେ ସାଜିବ
ଗୋରୀ ସୁକେଶୀ—ପ୍ରେମେ ଉଲ୍ଲସି ।୧।

ମଧୁ—ସଖା ! ଠିକଣା ଥାନରେ ଏବେ ପହଁଞ୍ଚେଇ ଦେଲି । ଏଇଠି ତୁମେ ଟିକିଏ ତ୍ରିଭଙ୍ଗି ଠାଣିରେ ଚଳଚଳ ସଜଫୁଟା ପଦ୍ମପାଖୁଡ଼ା ପରି ଏ ଛଳ ନୟନ କୋଣରେ ଅଧଅଧ ହସ ଫୁଟାଇ ଶିଖ । ହାଣିଲ, ହାଣିଲ ସଖା ! ଟିକିଏ ତମ ନୟନ-କଟାରୀ—ଯେ ବଳେ ଗୋପୀଙ୍କୁ ଘରୁ ଆଣୁଛ ଓଟାରି । ଦେଖେଁ ନା ସଖା ! ମୋ ଭୋଖଟା ଯଦି ବା ପେଟରୁ ଟାଣିଓଟାରି ହେଇ ବାହାରି ଯାଇପାରେ । ମୋତେ ହେଲେ ରକ୍ଷା ମିଳିବ ।

କୃଷ୍ଣ—ବଟୁ, ସବୁବେଳେ ତ ତୁମେ ଭୋଖ ଭୋଖ ହେଲ । କଥା କ'ଣ ? ତମ ପେଟରେ ଏମିତି କେତେ ଭୋଖ ଅଛି ହେ ?

ମଧୁ—ଆଃ, ବୁଝିଲ ନାହିଁ ସଖା ? ଏ କ'ଣ ଗୋପାଳଙ୍କ ଭୋକ କି ? ଏ ସବୁ ବ୍ରହ୍ମଅଗ୍ନି ! ସବୁବେଳେ ଦପ୍‌ଦପ୍ !

ସୁବଳ—(ଶ୍ରୀକୃଷ୍ଣଙ୍କୁ ଶିଳା ଉପରେ ବସାଇ) କହୁଛ, ଗୋପୀମାନଙ୍କର ବିଳମ୍ବ ଥିଲା ପରି ଲାଗୁଛି । ବସିବଟି, ମୁଁ ଆଜି ତମକୁ ବନଫୁଲରେ ବେଶ କରିଦିଏଁ ।

ମଧୂ—ଫୁଲ-ମୁକୁଟ ମୁଁ ଆଜି ପିନ୍ଧାଇଦେବି ।

ସୁବଳ—ସତେ, ଗୋଟାଏ ବାଦୁଆଟାଏ ଇଏ ! କାହିଁ କେତେ ଫୁଲ ତୋଳିଚୁ, ଦେଖେଁ ?

ମଧୂ—ଆରେ ଫୁଲ ! ସଖା, ଗୁଲିବଟି ଲଳିତା-କୁଞ୍ଜକୁ । ମୁଁ ସେଇଠୁ ଫୁଲ ତୋଳି ସାଙ୍ଗେ ସାଙ୍ଗେ ସଜାଇ ଦେବି ତୁମକୁ ।

ସୁବଳ—ଆଉ ଲଳିତାକୁଞ୍ଜ ? ରାଧାକୁଣ୍ଡ ପାଖେ ଯେତେ କୁଞ୍ଜ ଅଛି, ସବୁ ବୁଲିଚ ମୁଁ ବାବୁ ! କିଛି ବାକି ନାହିଁ । ହଁ, କହି ନ ପାରେଁ—ବିଶାଖା-କୁଞ୍ଜରେ ଯେବେ କିଛି ଫୁଲ ଥାଏ ।

କୃଷ୍ଣ—ଆଚ୍ଛା ସଖା ! ମୋତେ ବେଶ କରିବାକୁ ଏତେ ଉତ୍କଣ୍ଠିତ କାହିଁକି ?

ମଧୂ—ସତ କଥା ତ ! ଫୁଲରେ କ'ଣ ସଖା ବେଶ ହୁଅନ୍ତି ? ମୁଁ ତ ମନେକରେଁ ସଖାଙ୍କ ଶ୍ରୀଅଙ୍ଗ ଲାଗି ଫୁଲର କୁସୁମପଣିଆଁ ଫୁଟେ । ଫୁଲ ନାଁଟା ସାର୍ଥକ ହୁଏ ।

ସୁବଳ—ବେଶରେ କ'ଣ ସତରେ ସଖାଙ୍କର ମନ ଅଛି ?

ମଧୂ—ସଖାଙ୍କର ବେଶ ତ ଆକାଶରେ, ଯମୁନାର ଲହରୀରେ, କୋଇଲିର କଣ୍ଠରେ, କାହାର ଗୃହାଣୀରେ ଆଉ ଖର ନିଃଶ୍ୱାସରେ ରହିଚ । ଏ ଗଛତୋଳା ଫୁଲରେ କି ତାଙ୍କ ମନ ମାନେ ? ନାହିଁ ସଖା !

କୃଷ୍ଣ—ବଟୁ, ପରିହାସର ପୁଣି ତ ବେଳ ଅଛି ?

ମଧୂ—ସଖା, କହୁଥିବଟି ଏଇଥର ! କେତେ ଦଣ୍ଡ, କେଇ ପହରବେଳେ—ଦିନ କି ରାତି—ସଞ୍ଜ କି ସକାଳ—କେତେବେଳେ ମୁଁ ତୁମକୁ ପରିହାସ କରିବି । 'ସତ', ଏଇ କଥାଟା ସବୁ ତମ ଅଭିଧାନରେ ପରିହାସକୁ ବୁଝାଏ ? କାହିଁ, ନନା ତ ମୋତେ ଏକଥା ପଢ଼ାଇ ନ ଥିଲେ । କହୁଥାଅ, କହୁଥାଅ ( କାନ ମୋଡ଼ି ହୋଇ ) ଏଇଥର ଗୁରୁକାନ ଛୁଇଁ ହେଉ ରଖିବ ।

ସୁବଳ—ନା ମଧୁ, ସଖା ବିଗିଡ଼ିଯିବେ ଯେ—ବିଳମ୍ବ କାହିଁକି ହେଲା, ଦେଖିଲେ ସିନା ହୁଅନ୍ତା ।

ମଧୂ—କାହିଁକି ବାବୁ ! ଫୁଙ୍କ, ବଇଁଶୀ ଫୁଙ୍କ ?

ସୁବଳ—ସଖା ! ଏଇଟା କଥା ଜମା ଶୁଣ ନାହିଁ । ତୁମେ ଥାଅ, ମୁଁ ଯାଇଁ ଦେଖେଁ, ଯେବେ ବାଟରେ କାହାର ଦେଖା ପାଏଁ······ ।

କୃଷ୍ଣ—ହଁ, ଯାଅ ସଖା ! ଥରେ ଦେଖ ।

ମଧୂ—ସୁବଳ, ତୁମେ ତେବେ ଆସ । ମୁଁ ସଖାଙ୍କୁ ନେଇ ରାଧାକୁଣ୍ଡତୀରରେ କୁଞ୍ଜତକ ବୁଲେଇ ଚଲେଇ ଟିକିଏ ତାଙ୍କ ମନଟା ବହଲେଇ ଦିଏଁ । ଫେର୍ ସୁବିଧା ହେଲେ ମୁଁ ମଧ ତୁମକୁ ଭେଟିବି ଯେ ! ଆସ ସଖା ! ଆସ ।

( ଶ୍ରୀକୃଷ୍ଣଙ୍କୁ ଉଠାଇ ସଙ୍ଗରେ ନେଇଯିବା )

ସୁବଳ—ମୁଁ ତେବେ······ ।

( ଅନ୍ୟଦିଗେ ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

**[ ଉଦ୍ୟାନର ଅଂଶ—ଉତ୍କଣ୍ଠିତା ଶ୍ରୀମତୀ,—ପାର୍ଶ୍ୱରେ ଲଳିତା, ବିଶାଖାଦି ସଖୀଗଣ । ]**

ଶ୍ରୀମତୀ— ( ଗୀତ )

ନାହିଁ ନ ଥିବ ମୋ ସମ ସହି !
ଜୀବ ଧରି କେହି ଦୁଃଖ ସହି ।
ଗଲ ତ ମୁଁ ସରି, ହରି ଆଶ କରି,
ସହି ନୁହେଁ ପଥ ଚାହିଁ ଚାହିଁ
ଗୋ ପ୍ରିୟସହି !
(କାହିଁ) ସଜନୀ ତ ଏବେ ଫେରିନାହିଁ ।୧।

ନୀଳଘନ ଯମୁନାକୁ ଚୁହିଁ
ଛୁଇ ଦେଖି ହେବ ପରା ବାଇ ?
ନାହିଁ ଭାଷିଲେ କି, ଭାସି ନ ଯିବ କି
ଭାଷି ନ ଥିବ କି, ସେ ଦେନାଇଁ
ଗୋ ପ୍ରିୟସହି !
(କେତେ) ଛନ୍ଦ ନ ଜାଣନ୍ତି ଭାବଗ୍ରାହୀ ।୨।

ଲଳିତା—ରାଧେ ! ତମ ମନରୁ କଅଣ କେଭେଁ ଏ ସନ୍ଦେହ ଛୁଟିବ ନାହିଁ ? ବନ୍ଧୁଙ୍କୁ କଅଣ ଆଜଯାଏ ଚିହ୍ନି ନାହିଁ ? ଆହୁରି ବାକି ଅଛି ?

ବିଶାଖା—ତୁଳସୀ ତ ଫେରିନାହିଁ, କେଜାଣି ଅବା ସଖାଙ୍କ ମେଳରେ ଥିବେ । ସଙ୍କେତ ଦେବାକୁ ବିଳମ୍ବ ହୋଇଥିବ । ମିଛରେ ମନରେ ବାର କଳ୍ପନା ଆଣିବା ତ ଭଲ ନୁହେଁ ସଖି !

ଶ୍ରୀମତୀ—ବୁଝୁଚ ସହି, ସବୁ ବୁଝୁଚ । ମୁଁ ବୁଝିଲି ଯେ, ବାକି ମନ ତ ବୁଝୁ ନାହିଁ । ଶଠ ସେ; କେଜାଣି କି ଛଳରେ ତୁଳସୀ କି ଠକିଥିବେ । ନୋହିଲେ ଏତେବେଳ ଯାଏଁ ଫେରିଲା ନାହିଁ କାହିଁକି ?

ଲଳିତା—ଛି ଛି, ଏକଥା କ'ଣ ସମ୍ଭବ ? ତାଙ୍କଠାରେ ଏତେ ସନ୍ଦେହ କାହିଁକି ?

( ଗୀତ )

ସାର ସରସ ମୁଖ ଶୁଖାଅନା ରେ ।।୦।।
ଖଣି-ନୀଳମଣିକି ମଣି ତୁଚ୍ଛ କଣିକି
କପଟ ବାଣୀ ଆଉ ଜଳପନା ରେ । ୧ ।
ସଚରାଜ ଲଭି ଭୃଙ୍ଗ ଲୋଡ଼େ କି ଆନ ସଙ୍ଗ
ନ କର ମନେ ଆନ କଳପନା ରେ । ୨ ।
ସଖୀ ଅସିଲେ ଫେରି ପୁଲକେ ଯିବୁ ପୂରି
ଶ୍ୟାମସୁନ୍ଦର ତୋର କଣା ସିନା ରେ । ୩ ।
ବରଜ ଏ ସନ୍ଦେହ ସରଜ ଶ୍ୟାମ-ସ୍ନେହ
ଲୁଚିଛି ପଛେ କିଏ ଫେଣ ଅନା ରେ । ୪ ।

( ତୁଳସୀ ପଛରେ ଗୁଞ୍ଜମାଳାହସ୍ତେ ପ୍ରବେଶ ଓ ଲଳିତା ଗାଇ ଗାଇ ମାଳା ଆଣି ଶ୍ରୀମତୀଙ୍କ ଗଳାରେ ଦେବା । ).

ଶ୍ରୀମତୀ—(ଚମକି) କିଏ ?

ତୁଳସୀ—(ହସି) ବନ୍ଧୁ ।

(ଶ୍ରୀମତୀ ଲେଉଟି ଚୁହିଁ ହସି ତଳକୁ ମୁହଁ କଲେ)

ବିଶାଖା—ଏଥର ଟିକିଏ ହସିବ ନାହିଁ ଧନ ?

( ଗୀତ )

ସହି ! କାମନା ଫଳ ଏବେ ପାଇଲୁଟି ?
ମଥା ଅଳପ ପୋତି ହସି ଚୁହିଁଲୁଟି ।୦।
ଫୁଲତୋଳା କଳପଣା ପୂରିଛି ଟିକି ନବୀନା !
ହୃଦ ପ୍ରେମାନନ୍ଦରେ ଭସାଇଲୁ ଟି । ୧ ।
ନ କହିଲେ ହେଲେ ସତ ମନ ଚିହ୍ନା ପଡ଼ିଲା ତ
ଲାଜେ ଚୁହିଁ ନୟନ ଖସାଇଲୁଟି । ୨ ।

ଲଳିତା—ଥାଉ ଥାଉ ମ ସହି ! ବଳେଇ ପଡ଼ିଲାଣି । ସହିଙ୍କ ଆଉ ତୋ ପରିହାସ ଶୁଣିବାକୁ ତର ଅଛି ନା ? ସେ ପରା ତରତର ।

ବିଶାଖା—ହଁ, ହାଣି ଶିଖିଲାଣି ହସି ତ ନୟନଶର ।

ଶ୍ରୀମତୀ—ଯାଃ; ମତେ ଆଉ ରଖେଇଦବ ନାହିଁ ତମେମାନେ ।

ଲଳିତା—ମଲା, ଆମେ ତ ସେଇଆ କହୁଚୁଁ, ତମକୁ ଆଉ ଏଠି ରଖେଇଦବୁ କେମିତି ? ଆଉ ବେଳ ଅଛି ନା ବଳ ଅଛି ?

ବିଶାଖା—ଛାଡ଼ିଲ ସେ କଥା । ତୁଳସୀ କି ପଚାର, କେମିତି କ'ଣ ହେଲା—କ'ଣ ଦେଖିଲା ।

ଶ୍ରୀମତୀ—(ତୁଳସୀ ପ୍ରତି) ବନ୍ଧୁଙ୍କୁ ଭେଟିଲୁ ତ ?

ବିଶାଖା—ମଲା, ଏଥିରେ ଆହୁରି 'ବ ତମର ସନ୍ଦେହ ଅଛି, ନା ?

ଲଳିତା—ନାହିଁ ମ । ସନ୍ଦେହ ନୁହେଁ । ଜାଣିଶୁଣି ଥରକୁ ଥର ଶୁଣିବାକୁ ସେମିତି ଟିକିଏ ମନ ହୁଏ ।

ବିଶାଖା—ହଁ-ହଁ ।

"ତୃପତ ନୁହଇ ଚିତ୍ତ ଗୋ ମିତ" ।

ଶ୍ରୀମତୀ—( ଉଠି ତୁଳସୀ ନିକଟକୁ ଯାଇ )—

( ଗୀତ )

ଗୋଷ୍ଠଚନ୍ଦ୍ରମାଙ୍କୁ  ଆମ୍ବ ବୋଲ ରେ ସହି !
କହିଦେଲୁ  କକ ରେ ?
ଏତକ ବେଳୁ ମୋ ତନୁ ଥରଲାଣି, ଦେଖିନାହିଁ
ମୁଖ ଆହୁର  ଆଖିରେ ॥୦॥
କ ବୁଦ୍ଧି କରବ, କୁଟୀଳା ମର୍କଟୀମୁଖୀ
ଅଛୁ ପୁରରେ ।
ଅଗଣାକୁ ଗଲେ ଦେଇ ଅପବାଦ
ମାର ତାଳ ଆସି ନାଚବ ଦୁଆରେ ।୧।
କ କରୁଥିଲେ ତୁହ୍ନ ଗଲାବେଳକୁ
ଥିଲେ କେଉଁ  ଠାବରେ ।
କ ବୋଇଲୁ କସ ପଗୃଚଲେ ତୋତେ
କହୁ କନା ଗୃଲ ଯିବା ରହସ୍ୟରେ ।୨।
( ଗୋପାଳକୃଷ୍ଣ )

ଲଳତା—ଗ୍ଧେ,  "ଚେଇଁ  ଶୋଇଥିବ ଯିଏ, ତାକୁ ଉଠାଇବ  କଏ  ?"  ହାତଶଙ୍ଖା ତ ଦର୍ପଣ । ତୁଳସୀର ହସ ହସ ମୁହଁରୁ  ବାରପାରୁ ନାହଁ ଯେ ପୁଣି  ପଗୃରୁଚ, ବନ୍ଧୁ  କ'ଣ  କରୁଥିଲେ  ?  ମୁଁ ଏଇଠି  ତମ  ପାଖେ  ପାଖେ  ଅଛୁ  ସତ, ବାକ ମୋତେ ଜଳଜଳ ଦଶୁଚ ।

( ଗୀତ )

ଧୀର  ସମୀରେ  ବସି  ଡାକୁଛୁ  ତୋ  ନାଁ'ରେ ॥
ପ୍ରାଣେଶ୍ୱରୀ  ଗ୍ଧିକେ,  ଶ୍ରୀମତୀ  ଗାନ୍ଧର୍ବିକେ
ବୋଲ  ହଜ  ଯାଉଛୁ  ତା  ଚେତନା ରେ । ୧ ।
ତୋଳ  କୁସୁମ ବାଳା, ତୋ  ବେଶ  ପାଇଁ  ମାଳା-
ଗୁନ୍ଥି  ସେ  ରଖିଅଛୁ  ଚନ୍ଦ୍ରବଦନା  ରେ । ୨ ।
( ଗୋପାଳକୃଷ୍ଣ )

ବଶାଖା—ତୁନ  ହୁଅମ ସହି !  ତୋ  କଥାରେ  କ'ଣ ଗ୍ଧଙ୍କ ମନ  ମାନବ ? ତୁଳସୀ  ମୁହଁରୁ  କଥାଟା ଶୁଣିଲେ  ତୁଟବ ସିନା !  କହୁନାଉଁ  କାହିଁକ ମ ?

ତୁଳସୀ—ମୁଁ  ଗଲାବେଳକୁ  ଶ୍ୟାମ  ଯମୁନାକୂଳେ । ପାଖରେ ମଧୁ, ସୁବଳ ଦୁହେଁ ।  ବୃନ୍ଦା ଚମ୍ପାଫୁଲ ଯୋଡ଼ିଏ ଦେଇଥିଲେ ଯେ, ବନ୍ଧୁ  ତାକୁ  ଗୃହିଁ ଅଧୀର । ମୋତେ ଦେଖି ଆଉ  ସମ୍ଭାଳ  ନ ପାର ସାଙ୍ଗେ  ସାଙ୍ଗେ  ଆମ ସଖୀଙ୍କ  କଥା  ପଗୃରଲେ । ସେ ମନେକଲେ  ମୋ  ସାଙ୍ଗରେ ସଖୀ  ଆସିଥିବେ ପର  !

ଲଳତା—ଶୁଣିଲ ଗୋ ? ମୁଁ କଣ  କହୁଥିଲ  ?

ବଶାଖା—(ଗୀତ)

ସେ  ତ ନଟର ନାଗର  ରସସାଗର ଗୋ !
ଗ୍ଧା-ପୀରତକ  ବାଇ ।

ଲଳତା—ଏ ତ  ଗଣବଣା  ଏଣୀ ଚକତ ଆଖିରେ
ରହିଥାଏ  ପଥ  ଗୃହିଁ ॥୧॥

ଶ୍ରୀମତୀ—( ଗୀତରେ  ବାଧାଦେଇ  ଲଳତାକୁ ଠେଲିଦେଲେ ) ଫେର୍ ସେଇ କଥା  ?

ତୁଳସୀ—ନାଇଁମ ସହି ! ମୋଠାରୁ ତମ  ଆସି ନ ଥିବା କଥା ଶୁଣି ସାଙ୍ଗେ  ସାଙ୍ଗେ  ଚନ୍ଦ୍ରମୁଖଟି  ଝାଉଁଳ ଆସିଲା । ମୁଁ  ସେଇଠୁ ବଢ଼ିଆ ଅଉ ହାର ଦେଇ ସବୁକଥା  ଜଣାଇ  ଆସିବାକୁ ବାହାରଚ, ଏତକ ବେଳକୁ ଶୈବ୍ୟା  ଆସି  ପହଞ୍ଚିଗଲା······

ଶ୍ରୀମତୀ—(ଚମକ) ଶୈବ୍ୟା !

ତୁଳସୀ—ହଁ ସଖି ! ଚନ୍ଦ୍ରାବଳୀଙ୍କ ସଖୀ ଶୈବ୍ୟା ଆସି ମତେ ତମ କଥା  ପଗୃରଲା ।  ମୁଁ  ତା  ଗୃତୁରୀ ବାରପାର  ଠକଦେଲି ।

ଶ୍ରୀମତୀ—(ଦୁଃଖରେ)  ତେବେ ମୁଁ  କଅଣ  କହୁଥିଲ ଲଳତା  ?

ଲଳତା—କାହିଁକ ସହି ? ଏଇଥିରୁ କଅଣ ଶ୍ୟାମ-ସ୍ନେହ ବୁଝିଲ ନାଇଁ ?

ଶ୍ରୀମତୀ—(ଦୀର୍ଘଶ୍ୱାସ ପକାଇ) ବୁଝିଲ ସଖି !

( ଗୀତ )

ଶ୍ୟାମ-ସ୍ନେହ-ସମ୍ପତ୍ତି ବିପତ୍ତି ଉତ୍ପତ୍ତି
ଖ୍ୟାତି ଆଣଇ ନିତି ନିତି,
ଜାତି କୁଳବରତ ନିତି ବାରନାହିଁ ତ
ସାଥି ମୋ କି ଅପକାରତି ଗୋ,
ପ୍ରିୟସହି !
ଭଲ ମୋ ଘରେ ଦିଶୁନାହିଁ, ଶାଶୁ-ଗଞ୍ଜଣା ନିତି ସହି ।୧।
ଗୁପ୍ତ ପଥର ପଟେ କର ଚଳିବ କେତେ
ଝୁରି ମୁଁ ହେବି ନିକି ବାଇ ଗୋ,
ପ୍ରିୟସହି !

ନେପଥ୍ୟ—"ପର୍ବତେ ବୃଷଭ ସୁଲଭ" ।

ବିଶାଖା—ଶୁଣ, ଶୁଣ ରାଧେ ! ଦାଣ୍ଡରେ ଜଉତିଷ କ'ଣ କହିଗଲା !

ଲଳିତା—କ'ଣ ମ ?

ବିଶାଖା—କହିଲା ପରା, "ବୃଷଭ ସୁଲଭ" ।

ଶ୍ରୀମତୀ—କ'ଣ ହେଲା ବିଶାଖା ?

ବିଶାଖା—ହବ କ'ଣ ଆଉ ? ଶୁଭ ଲକ୍ଷଣ ଦିଶୁଚି । ତମ ମନରୁ ସନ୍ଦେହ ଛାଡ଼ । ଶୁଣିଲ ନାହିଁ, କ'ଣ ଜ୍ୟୋତିଷ କହିଲା ?

ଶ୍ରୀମତୀ—କ'ଣ କହିଲା ?

ବିଶାଖା—କହିଲା ପରା, "ବୃଷଭ ସୁଲଭ" । ବୁଝିଲ ନାହିଁ ? ବୃଷଭ ବୋଇଲେ ଶ୍ରେଷ୍ଠ ପୁରୁଷକୁ ବୁଝାଏ । ଶ୍ରେଷ୍ଠ ପୁରୁଷ କିଏ ଜାଣିଲ ନା ? —ଶ୍ରୀକୃଷ୍ଣ ।

ଶ୍ରୀମତୀ—(ଚମକି) ଏ କ'ଣ ସହି ?

ଲଳିତା—କ'ଣ ହେଲା ରାଧେ ?

ଶ୍ରୀମତୀ—ବାମ ବାହୁଟା ମୋର କାହିଁକି ଥରଉଠିଲା ? ବାଁ ଆଖିଟା ନାଚୁଚି ।

ବିଶାଖା—ତେବେ ରହି ! ଖବୁଚ କ'ଣ ମ ଆଉ ?

ତୁଳସୀ—ରାଧେ ! ମିଛେ ମିଛେ ମନକୁ ଅଦମ୍ଭ କର ନାହିଁ ।

( ଧନିଷ୍ଠା ପ୍ରବେଶ )

ଲଳିତା—ହେଇଟି ତ ଧନିଷ୍ଠା ଆସିଲେଣି ।

ଶ୍ରୀମତୀ—ଧନିଷ୍ଠେ ! କୋଉଠୁ ଆସୁଚ ସଖି !

ଧନିଷ୍ଠା—ବୃନ୍ଦାବନରୁ ।

ଶ୍ରୀମତୀ—ମାଧବ-ସୁଷମା କିପରି ?

ଧନିଷ୍ଠା—ମାଧବ ?

ବିଶାଖା—ସହି ! କ'ଣ ବୁଝିଲଟିକି ? ମାଧବ ଅର୍ଥରେ ବସନ୍ତ ବୋଲି ବୁଝ ।

ଧନିଷ୍ଠା—ଓହୋ ! ଏକଥା ମୁଁ ତ ବୁଝି ନ ଥିଲି ।

( ଗୀତ )

ସଖି ! ମାଧବ-ସୁଷମା
ପରଶିଛୁ ବୃନ୍ଦାବନ ସୀମା ଗୋ ।୦।
ରାଧାକୁଣ୍ଡ ତଟ ଯମୁନା ନିକଟ
ତହିଁରେ ଶୀତଳ କୁଞ୍ଜ ଗୋ ।
ମାଧବ ବିହାର ଅତି ମନୋହର
ମହକେ ସୁମନପୁଞ୍ଜ ଗୋ ।୧।
ବିକଚ ପ୍ରସୂନ ଶୋଭା କି ଲୋଭନ
ଗାଏ ପିକ କୁହୁ-କୁହୁ ଗୋ ।
ଯୁବତୀ ନବୀନା ବଲ୍ଲରୀ-ଶୋଭନା
ଚମକି ଭାଷଇ ଉହୁ ଗୋ ।୨।
ନିକୁଞ୍ଜ କାନନେ ଗୁରୁ ଭ୍ରମରବନେ
ଝିଙ୍କାରି ଲଳିତ ତାନ ଗୋ ।
ବିରହ-ଗୀତିକା ଗାଏ ବସି ଏକା
କଳା ଖଞ୍ଜରୀଟ ମ୍ଲାନ ଗୋ ।୩।
ବନ୍ଧୂଲି ଅଧର ମକରନ୍ଦଧାର
କୃଷ୍ଣ ଅଳି କରେ ଆଶ ଗୋ ।
ବିବିଧ ସୁମନେ ଛାଡ଼ି ଆନ ମନେ
ଭ୍ରମେ ବିକଳ ମାନସ ଗୋ ।୪।

ଶ୍ରୀମତୀ—ବେଣୁଧରଙ୍କ ଶୋଭା କିପରି ଦେଖିଲ ?

ଧନିଷ୍ଠା—ସେ ତ ଗୋଷ୍ଠରେ ଅଛନ୍ତି ।

ବିଶାଖା—ନାହିଁ ମ, ସଖୀ ଆମର କ'ଣ ତା କହିଲେ ?

ଧନିଷ୍ଠା—ଆଉ ?

(ଗୀତ)

ଲଳିତା—କି ବୋଇଲେ କିସ ବୁଝି ଗୋ ସଜନି !
କି ବୋଇଲେ କିସ ବୁଝି ।
ଧନିଷ୍ଠା—ବେଣୁଧର ବୋଲି କୃଷ୍ଣଙ୍କୁ ବୁଝିଲି
ଏଥିରେ କିସ ଅସଜ ? । ୦ ।

ଲଳିତା—ବେଣୁପିଣ୍ଡ ବଂଶତରୁ ଗୋ ସଜନି !
ବେଣୁପିଣ୍ଡ ବଂଶତରୁ ।
ଧନିଷ୍ଠା—ବଂଶତରୁ ଧରି ଗୋବର୍ଦ୍ଧନ ଗିରି
ଶୋଭଇ ଅତି ସୁଗୁରୁ । ୧ ।
ଶ୍ରୀମତୀ—ସେହି ଗୋବବର ଶୋଭା ଗୋ ସଜନି !
ସେହି ଗୋବବର ଶୋଭା ।
ବସନ୍ତ ସୁଷମା ଲଭି ତା ଗରମା
ହୋଇଛୁ କି ମନଲୋଭା ? ।୨।
ଧନିଷ୍ଠା—ଗିରିମାଟି ଧାତୁ ଚିତ୍ର ଗୋ ସଜନି !
ଗିରିମାଟି ଧାତୁ ଚିତ୍ର ।
ମାଧବ-ବକଚ ସୁମନମାଳାରେ
ଶୋଭଇ ଅତି ବଚିତ୍ର । ୩ ।
ବାସବ-ଦର୍ପଦଳନ ଗୋ ସଜନି !
ବାସବ-ଦର୍ପ-ଦଳନ ।
ଭୃଙ୍ଗ ବିରାଜିତ ଶୃଙ୍ଗ ସୁଶୋଭିତ
ତାଂ ଶିରି କିବା କଳନ ! । ୪ ।

ବିଶାଖା—ଶୁଣିଲୁ ତ ରାଧେ ! ଆଉ ବିଳମ୍ବରେ ଲାଭ କ'ଣ ? ଧନିଷ୍ଠାଙ୍କଠାରୁ ବେଣୁଧରଙ୍କର ଶୋଭା ବର୍ଣ୍ଣନା ଶୁଣି ମନ ଅଧୀର ହଉନାହିଁ ?

ଶ୍ରୀମତୀ—ଟିସ ଶୋଭା-ଦର୍ଶନ ଛାଡ଼ି ଏଣେ କୁଆଡ଼େ ଆସିଥିଲ ଧନିଷ୍ଠା ?

ଧନିଷ୍ଠା—ଏଇଠିକି ଆସିଥିଲି । ମନେ କଲି ଶୋଭା-ସୁନ୍ଦରୀ ଶ୍ରୀମତୀଙ୍କ ବିନା ବେଣୁଧରଙ୍କ ଶିରି ତୁଚ୍ଛ ସିନା ! ଯାଏଁ ସଖୀଙ୍କି ସଂବାଦ ଦିଏଁ ।

( କୁନ୍ଦଲତା ପ୍ରବେଶ )

କୁନ୍ଦଲତା—ଶ୍ରୀମତୀ, ଜଟିଳା ଗାଳିଦେଲେ କ'ଣ ସୁନ୍ଦର ହବ ? କେତେ ବେଳ ହେଲାଣି ? ପୂଜାଭୋଗ, ଫୁଲ ଚନ୍ଦନ ଯାହା ଯେମିତି ଲୋଡ଼ା, ସବୁ ସଜଡ଼ା ସରିଚି । ସୂର୍ଯ୍ୟପୂଜା କରି ଯିବାକୁ କଅଣ ଆଜ ମନ ନାହିଁ ? ଚାଲ ସହି !

ଶ୍ରୀମତୀ—(ଗୀତ)
ନାହିଁ ତ ମୋର ମଠ ରେ ପ୍ରିୟ ସଜନି,
କାହିଁକି ଏ କପଟ ରେ ? । ୦ ।
ଅନାଇଁ ପଥ ତୋର ଥିଲି ଅତି ଆତୁର
ଗୃତଙ୍କୀ ମିରଧାର ରଙ୍କରତନ ମୋର ।୧।

( ପଡ଼ )

ଲଳିତା—କୁଞ୍ଜପଥେ ଚଳ ମଞ୍ଜୁହାସିନି,
ସୁନ୍ଦରି ! କୋଟି କାମମୋହିନି !
ଶରଦ ଶଶୀଜିତ ସୁନ୍ଦରାନନି !
କୁନ୍ଦହାସିନି ! ପ୍ରାଣସଙ୍ଗିନି ରେ ।

( ଶ୍ରୀମତୀଙ୍କୁ ଘେନି ସମସ୍ତେ ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

### ବ୍ରଜପଥ

**[ ଗୋପବାଳାମାନଙ୍କର ଜଳକୁମ୍ଭ ହସ୍ତେ ଗାଇ ଗାଇ ନୃତ୍ୟ କରୁ କରୁ ପ୍ରବେଶ ।]**

ସଖୀଗଣ—ବ୍ରଜରସିଆ ! ମନତୋଷିଆ ମନ୍ଦେ ହସି ଆ ବନରଜା ।
ଶ୍ରୀମତୀ ରାଣୀ ପ୍ରେମେ ମଦୁଆ ଗୋପୀଗଣେ, ଯା ପ୍ରେମେ ମଜ୍ଜା ।
ତୋ ବିନା କାହିଁ ଯମୁନା ବହେ, ତୋ ବିନା କାହିଁ କୁଞ୍ଜ ସଜ୍ଜା ?
କୁଞ୍ଜବନେ ନାନା ରଙ୍ଗେ ରସି, ବେଣୁ ବଜା, ଯା ମନ ମଜ୍ଜା ।

( ଗୋପବାଳାଗଣ ଗୀତନୃତ୍ୟ ସହ ପ୍ରସ୍ଥାନ )

## ଚତୁର୍ଥ ଦୃଶ୍ୟ

[ ମଦନରଣ-ବାଟିକା ନିକଟସ୍ଥ ବନଦେଶ—ଅଦୂରେ ସୂର୍ଯ୍ୟବେଦିକା । ଶ୍ରୀମତୀ, ଲଳିତା, ବିଶାଖା, ଧନିଷ୍ଠା, କୁନ୍ଦଲତା ଓ ତୁଳସୀ ପ୍ରଭୃତି ପ୍ରବେଶ । ]

( ସଖୀଗଣଙ୍କ ଗୀତ )

କୁଞ୍ଜରଗମନ ଆଲୀ,
ଧୀରେ ଧୀରେ ଗୁରୁଚରଣ ଚଳ ଗୋ !
ବିଜେ କର କୁଞ୍ଜେ ନବବାଳ ! ସଜନି ଗୋ । ୦ ।
ଏ ରସ ଦେଖ ସଜନି,
ମୋତି ହାର କାହିଁ ଖଞ୍ଜିଛୁ ଆଣି ଗୋ,
ଧମ୍ମି ମଥାର ଅଳକାମଣି, ସଜନି ଗୋ । ୧ ।
ମଧୁ ହସେ ମଧୁବନ,
ସରସେ ଫୁଟି ଏ ବାସ ସୁମନ ଗୋ,
ଆଉ ନିରସ ନ କର ମନ, ସଜନି ଗୋ । ୨ ।
ଶ୍ୟାମପ୍ରେମେ ଜରଜର,
କୁଞ୍ଜ-ଭେଟକୁ ନକର ଅଧୀର ଗୋ,
ବେଶ ସାଜିବାକୁ କାହିଁ ଡର, ସଜନି ଗୋ । ୩ ।
ନ ହୁଅ ଗୋ ଛନଛନ,
ଦେଖ ଅନୁକୂଳ ବହେ ପବନ ଗୋ,
ଜାଣ ଶ୍ୟାମ ତୋର କର୍ଣ୍ଣାଜନ, ସଜନି ଗୋ । ୪ ।

ଶ୍ରୀମତୀ—କାହିଁ, କେହି ତ ନାହିଁ ଲଳିତେ !

ଲଳିତା—ଆଉ କିଏ ଥାଆନ୍ତା ସହି ! ଆମେମାନେ ସମସ୍ତେ ତ ଅଛୁଁ । ଆଉ କାହାକୁ ପୁଣି ଖୋଜୁଚ ମ ?

ଶ୍ରୀମତୀ—ବୃନ୍ଦା ତ କାହିଁ ଆସିଲେ ନାହିଁ ?

ବିଶାଖା—ନା ।

ଧନିଷ୍ଠା—ଆସିବାର ଆଉ କି ଦରକାର ?

ଶ୍ରୀମତୀ—ତେବେ କ'ଣ······

ବିଶାଖା—କାହିଁକି ମିଛଟାରେ ମନରେ ସନ୍ଦେହ କରୁଚ ସଖି ? ଆସିବାବେଳେ କ'ଣ ଦେଖିନାହିଁ ?

ଶ୍ରୀମତୀ—କ'ଣ ବିଶାଖେ ? କାହିଁ କ'ଣ ? କାହାକୁ ଦେଖିଲ ସହି ?

ବିଶାଖା—ନାହିଁ ଗୋ, ଆସିବାବେଳେ ବାଟରେ ଦଧି-ପସରା ଧରି ସଧବା ଜଣେ ଗଲା । ସେ କାଳି ଗାଈଠୁ ବାଛୁରୀଟି ଦୁଧ ପିଉଥିଲା । ସବୁ ଶୁଭ ସୂଚକ ଦେଖି ମଧ୍ୟ ଆହୁରି ସନ୍ଦେହ କରୁଚ ?

ଶ୍ରୀମତୀ—ଦେଖ, ଦେଖ ସହି ! ମୁଁ ଜାଣେ ପରା ! ତୁମେମାନେ କ'ଣ ତାଙ୍କୁ ଚିହ୍ନିନାହଁ ? ସେ କେଡେଁ ସରଳ ଦୁହନ୍ତି । ଭିତରେ ଖାଲି ଗରଳ-ଭରା ! ଦେଖ, ଦେଖ—

ଲଳିତା—କାହିଁ, କ'ଣ ଦେଖିଲ ସହି ?

ଶ୍ରୀମତୀ—ଦେଖୁନାହଁ ? ମୟୂରଚୂଡ଼ା ଦିଶୁନାହିଁ ! ଦେଖିଲୁ, ଶ୍ୟାମ ଅଙ୍ଗରେ ସେ କିଏ ଜଡ଼ିରହିଚି ? ନାହିଁ ସଖି ! ମୁଁ, ମୁଁ ଆଉ ଯିବି ନାହିଁ ।

( ପଛକୁ ଘୁଞ୍ଚିଲେ )

( ଗୀତ )

ଦେଖ ଦେଖ ସଜନି ଏ ଯୁଗଳ - ମାଧୁରୀ ଗୋ,
ମିଳି ଘନେ ଜଡ଼ିଛି କି ଅଚଳ ବିଜୁଳି ଗୋ ।
କି ସୁନ୍ଦର ଶିଖିପୁଚ୍ଛ ଚୂଡ଼ା ବନଫୁଲ ଗୋ,
ଢଳ ଢଳ ନାଚେ କଳା ମୋ ନୟନ କାଳ ଗୋ ।
ହସେ ମୋତେ ଅନାଇଁ,
ପରିହାସେ କଥା କହେ କି ସେହି ?
ଯେ ଯାହା କହିବ କହୁ,
ନ ଯିବି ଯମୁନା ଆଉ ।
ବୁଝିଲିଣି କପଟ ନଟୀଆ (ସହି ରେ)
ବାରବାର ସହି ସହି, ଏ ଛାତି ପଥର ସହି !
ଚିହ୍ନିଛି ମୁଁ ସେ ନଟକୁଟିଆ (ସହି ରେ) ।

ବିଶାଖା—ଦେଖୁଚ ଧନିଷ୍ଠା ! ତମାଳମୂଳରେ ଘୂଇ ମାଡ଼ିଚି, ଉପରେ ମୟୂର ନାଚୁଚି । ତାକୁ ଦେଖି ଆମ ସଖୀଙ୍କର ଏ ଅବସ୍ଥା ।

ଧନିଷ୍ଠା—ଏ କ'ଣ ରଙ୍ଗ ! ତମାଳ ଦେଖି କୃଷ୍ଣଭ୍ରମ !

ଶ୍ରୀମତୀ—ଦେଖିଲ ଦେଖିଲ । ଏ ପୁଣି କିଏ ? ଆହା, କି ସୁନ୍ଦର !

ଧନିଷ୍ଠା—କ'ଣ ଏଡ଼େ ସୁନ୍ଦର ଦିଶିଲା ସଖି ?

ଶ୍ରୀମନ୍ତୀ—ମଲ୍, ଆଖି ଆଗରେ ଦେଖୁନାହଁ ?

ଧନଷ୍ଠା—ଦେଖୁଚି ତ । ମାଧବୀଫୁଲ ପେନ୍ଥା ପେନ୍ଥା ହୋଇ ଝୁଲୁଚି । ନୂଆ ବସନ୍ତ ଚୂଳି ଆମ୍ବଗଛର ପତ୍ର-ଗୁଡ଼ିକ ସୁରଙ୍ଗ ପତାକା ଉଡ଼ାଉଚି । କୋଇଲି କୁହୁକୁହୁ ଗାଉଚି । ଏ ବୃନ୍ଦାବନର ଗୃହଆଡ଼ଯାକ ସଭିଁଏ ବସନ୍ତ-ସଜ ପିନ୍ଧିଚନ୍ତି । ଆଉ ତ କିଛି ନାହିଁ ।

ଶ୍ରୀମନ୍ତୀ—ଆଉ କିଛି ନାହିଁ ?

ଧନଷ୍ଠା—ନାହିଁ ତ !

ଶ୍ରୀମନ୍ତୀ—ତେବେ ତୁ ଆଖି ମୁଦିଦେ ପରା ! ଦିଶୁନାହିଁ ? ସେ କି ସୁନ୍ଦର ନୃତ୍ୟ ? ଗୃହଆଡ଼େ ବୁଲି ଦେଖିଲୁ ଏ କିଏ ସେ ନାଚେ ? ଏକା ନୁହେଁ—ସାଙ୍ଗରେ ପୁଣି ଆଉ ସେ ଜଣକ କିଏ ?

( ନିଶ୍ଚଳ ନୟନରେ ସେହି ଆଡ଼କୁ ଅନାଇଁ ରହିଲେ )

ଧନଷ୍ଠା—ବିଶାଖେ ! ପୁଣି ଏ କ'ଣ ହେଲା ? କ'ଣ କେଉଁଠି ଦେଖିଲେ ମ ? କାହିଁ, ଆମକୁ କିଛି ତ ଦିଶୁନାହିଁ ?

ଲଳିତା—( ଗୀତ )

ନୟନେ ନାଚଇ ପରା
ନବୀନ ଘନସୁନ୍ଦର
କି ଅବା କରିଥିବ ସେ
କେଜାଣି କେତେ ହୃଦର । ୦ ।

ଯହିଁ ଗୃହେଁ ତହିଁ ଶ୍ୟାମ ଦିଶଇ
ଚମକେ ନିରେଖି ଆପଣା ଭୁଲି,
ଲତା ତରୁ ନାଚଇ, ମଣେ ନାଗରୀ, ନାଗର । ୧ ।

ଶ୍ରୀମନ୍ତୀ—(ଗୀତରେ ବାଧା ଦେଇ) ରହନା ଲଳିତା, ଶୁଣ୍, ଶୁଣ୍, ଶୁଭୁନାଇଁ ? ଏତେବେଳେ ତୋତେ କଥା କହିବାକୁ ବେଳ ମିଳିଲା ? ଶୁଣିଲୁ ନା ? କେଡ଼େ ସୁନ୍ଦର ସେ ମୁରଲୀ । ଯମୁନାର ଲହରୀ ପହଁରି, କଦମ୍ବବନରୁ ଫୁଲବାସ ହରି, ଧୀରେ ଧୀରେ ଭାସିଆସେ । ସହି ମ ! ଭାଗ୍ୟବାନ ସିନା ମଳୟ ! କି ମଧୁର ତାନ ବହିଆଣୁଚି ସେ । ତେବେ କ'ଣ ମୋ ସଙ୍ଗେ ତାଙ୍କର ସ୍ନେହ ପ୍ରୀତି ସବୁ ଛଳ ? ସହି ! ଶୁଣୁଚୁ ନା, ଶୁଭୁଚି ତ ? ଏତେବେଳେ କେଡ଼େ ମଧୁର ସେ ମୁରଲୀସ୍ୱର ।

( ଗୀତ )

କଦମ୍ବବନେ ବଂଶୀ ବାଜିଲା ରେ ସଜନି !
ରାଧା ଦମ୍ଭ-ଶିଖରୀ ଭାଜିଲା ରେ । ୦ ।

ତୋ ବିନା, ପ୍ରତିକାର ଆନ କେ ନାହିଁ ମୋର
ବିବେକ-ରତନ ମୋ ହଜିଲା ରେ ।୧।

କଡ଼ା ମୋତେ ସରଣୀ ଆରେ ପ୍ରାଣମିତଣି !
ନୋହିଲେ ଜୀବନ ବରଜିଲା ରେ ।୨।

( ଗୋପାଳକୃଷ୍ଣ )

ଲଳିତା—କାହିଁ ସହି ?

ଶ୍ରୀମନ୍ତୀ—ନା ନା, ଓଃ ମୋର ଭ୍ରମ ! ଏ ତ ନୂପୁର ।

( ଗୀତ )

ପାରିଲି ଦୂରୁ ବାରି ରେ
ଶଠ ନାଗର ଗୃଲି ମୁଁ । ୦ ।
ଗୃହିଁ ମୋତେ ତରକେ, ଲୁଚିଗଲେ ଛଟକେ,
ନୂପୁର ଅନୁସରି ରେ । ୧ ।
ଚହଲାଇ ଦେଲା ସିନା, କିଙ୍କିଣୀ ଝଣାଝଣା
ମୋ ଶ୍ରୁତିତଟ ପୂରି ରେ । ୨ ।

ବିଶାଖା—କ'ଣ ସତେ ଇଏ ହେଲା ମ ? କାହିଁ, କେହି ତ ନାହାନ୍ତି ! କ'ଣ ଏମିତି ତାଙ୍କ କାନକୁ ଶୁଭିଲା ମ ? ଲଳିତା, ତୁମ ଗୀତ ଶୁଣି କ'ଣ ଏମିତି ହେଲେ ସେ ? ଗୃଲ, ଗୃଲ, ଆଉ ଉଚ୍ଛୁର କଲେ ଭଲ ନୁହେଁ । ସହୀ କ'ଣ ବାଇ ହେଲେ କି ?

ଲଳିତା—( ଗୀତ )

ବାଇ ହୋଇନାହିଁ, ବାଇ ହେବ ସହୀ
ଶ୍ୟାମସୁନ୍ଦର ମନ୍ତର ଲଗି—
ଅନୁରାଗୀ, ବଇରାଗୀ ।୦।

କେହୁ ଦେଖ ଗୁହିଁ     କେହୁ ଝିଶୁନାହିଁ
କାହିଁ ମଞ୍ଜୁଳ ଏ ବନଦେଶେ ।
ଦେଖେ ଆଖିଭରି,     ଯାଏ ନୃତ୍ୟ କରି
ହରି ଚଞ୍ଚଳ ପୀରତି ମାଗି । ୧ ।

ଶ୍ରୀମତୀ—ମାନବୁ ତ ନାହିଁ । ଲତାକନ୍ଦରେ ଅନା । କହନା ଦେଖି, କିଏ ସେ ନିଭଙ୍ଗରୂଳିଆ, କାଇଁଚ-ମାଳିଆ, ପୀତଦୁକୂଳିଆ ! ନାଇଁ କରୁଥିଲୁ ପରା ? ସବୁବେଳେ ମୋତେ ଛଳେଇ କହୁ ? ଏଇଥର ?

( ଗୀତ )

ସହି, ଅନା ଅନା—
ରୂପ ନ ଦିଶେ କି ତୋର ଚହ୍ଲା ଚହ୍ଲା । ୦ ।
କିଏ ସେ ମାଧବୀ ଲତାତଳେ,
(ସହି) ବନଫୁଲମାଳା ଖେଳା ଗଳେ,
ଲଳିତ ତାନେ କେ (ମୋ ପରାଣ ବନ୍ଧୁ ରେ)
ଲଳିତ ତାନେ କେ ମୁରଲୀ ବଜାଏ
ସ୍ୱର ନ ଲାଗେ କି ଶୁଣାଶୁଣା ? । ୧ ।

ତୁଳସୀ—ଏ ତ ଏତିକବେଳୁ ଏ ଅବସ୍ଥା; ଆଉ ତ ଅଛୁ ।

କୁନ୍ଦଲତା—ଶ୍ରୀମତୀ ! କ'ଣ ଦେଖି କ'ଣ ମଣୁଚ ? ତୁମେ ପରା ସୂର୍ଯ୍ୟପୂଜା କରିବାକୁ ଆସିଚ ? ଚାଲ ସହି, ଉଚ୍ଛୁର ହେଲେ ତେଣେ ଜଟିଳା ଗାଳଦେବେ ଯେ !

ଶ୍ରୀମତୀ—କୁନ୍ଦଲତେ ! ମୁଁ ପରା ସେତିକବେଳୁ ଜାଣେ । ଏ ଶଠଙ୍କର ନୃତ୍ୟ ଦେଖି, ମୋତେ ଦୂରରେ ରଖିଦେଇ, ଦେଖୁଚ ନା, ସେମାନଙ୍କ ନୃତ୍ୟ ? ଦେଖୁଚ ନା ସେମାନଙ୍କ ଆନନ୍ଦ ?

ଲଳିତା—ସହି, ଏଣେ ଦେଖିଲଣି ? ଆମେମାନେ ଆସୁ ଆସୁ କାମରଣବାଟିକା କୁଞ୍ଜର ସୂର୍ଯ୍ୟବେଦିକା ପାଖେ ପହଞ୍ଚିଗଲେଣି । ଆସ ସହି ! ନିର୍ବିଘ୍ନରେ କୃଷ୍ଣପ୍ରାପ୍ତି ପାଇଁ ସୂର୍ଯ୍ୟଙ୍କୁ ପ୍ରଣାମ କର ।

( ସମସ୍ତେ ପ୍ରଣାମ କଲେ )

କୁନ୍ଦଲତା—( କରଯୋଡ଼ି ) ହେ ଦେବ ! ହେ ଅନ୍ତର୍ଯ୍ୟାମୀ ! ଦୟା କର ।

ଲଳିତା—ତୁଳସୀ, ଧନିଷ୍ଠା ସଙ୍ଗରେ ତେବେ ଏଇଠି ପୂଜାସାମଗ୍ରୀ ରଖି ଥାଅ, କିଛି ଫୁଲଫଳ ସଂଗ୍ରହ କରିଥିବ, ଆମେମାନେ ଆସୁଁ ।

ତୁଳସୀ—ହଉ ।

ବିଶାଖା—ରାଧେ ! ଆଉ ବିଳମ୍ବ କାହିଁକି ?

ଲଳିତା—(ଗୀତ)

ଯିବା ପରି ପରାଣସଙ୍ଗିନୀ ଉଠିଆ ରେ
ଦିଶୁଥିବ ଶ୍ୟାମ ବାମ ପାଶ ପଡ଼ିଆ ରେ ।୦।
ବ୍ରଜ ହାଟ ବାଟ ହେଲଣି ନିଘଞ୍ଚଟ
ଜଗିଥିବେ ବ୍ରଜବଧୂ ନିକୁଞ୍ଜ ଦୁଆରେ ।୧।

( ଗୋପାଳକୃଷ୍ଣ )

## ପଞ୍ଚମ ଦୃଶ୍ୟ

**[ ବନପଥ—ସୁବଳ ଓ ମଧୁ ପ୍ରବେଶ କଲେ ]**

ମଧୁ—ଏତେବେଳ ହେଲଣି, କାହାରି ତ କାଇଁ ଦେଖା-ଦର୍ଶନ ନାଇଁ ! ଜଟୀ ବୁଢ଼ୀ ଫେର୍ କ'ଣ କିଛି ଗୋଳମାଳ କଲା କି ?

ସୁବଳ—ତାଙ୍କ ସଖୀମାନେ ବି ଦେଖାଯାଉ ନାହାନ୍ତି ତ !

ମଧୁ—କେମିତି ଦେଖାଦେବେ ? ଏତେବେଳେ ପରା ସଖା ଆମର ଉଚ୍ଛନ୍ନ ?

ସୁବଳ—ବଟୁ ? ଅନା ଅନା, କିଏ ଦି'ଜଣ ଆସିବାପରି ଦିଶୁଚି । ୟାଙ୍କଠାରୁ ସବୁ ଖବର ମିଳିଯିବ ।

ମଧୁ—(ଗୁହିଁ) ହଁ, ତୁଳସୀ ପରା, ଟିକିଏ ଲୁଚିଯିବା ! ସୁବଳ, ଏ ପାଖକୁ ଆ । (ଦୌଡ଼ି ପଳାଇଲେ)

( ତୁଳସୀ ଓ ଧନିଷ୍ଠାର ପ୍ରବେଶ )

ତୁଳସୀ—କେଜାଣି ଫେର୍ କଣ ମ ?

ଧନିଷ୍ଠା—ନାଇଁ, ଶୈବ୍ୟା ଥିଲା ବୋଲି ଡର ଲାଗୁଚି ।

ତୁଳସୀ—ଅସମ୍ଭବ । ଦେଖିବୁ ନାଇଁ, ସେ ତେଣେ ଅଧୀର ହେଉଥିବେ ।

( ମଧୁ ଓ ସୁବଳ ପୁନଃ ପ୍ରବେଶ )

ମଧୁ—ଆଉ ତମ ସଖୀ ଏଣେ ?
ତୁଳସୀ—ମଲ, ଏଇଟା କଏ ମ ?
ମଧୁ—ସେହ ଗୋ, ସହ ଗୋ, ପିଲ୍ଲବନ ସାଙ୍ଗ ମୁହିଁ ଗୋ ।
ତୁଳସୀ—ଯା, ଯାଃ, ଫେର୍ ଏ ତୁଣ୍ଡ କଅଣ କହୁଚି ? ମଲ, ଏ ବଣଭିତରକୁ ପୁରୁଷଗୁଡ଼ାକ କୋଉଠୁ ଆସିଲେ ମ ?

ମଧୁ— (ଗୀତ)

ମଧୁକର ମଧୁ ବିନା ଲଭେ କି ଗୋ ବଞ୍ଚିବ
ଶଶୀ ବିନା କଣି ଅଙ୍ଗେ ଶିଶିର କେ ସିଞ୍ଚିବ ? ।୦।
ଦରହାସୀ ହସ ବିନା ଦୁଃଖ କି ଯିବ ନଶାନା
ମିଳନ ବିନା ମୋହନ-ମୂରଲୀ କି ବାଜିବ ? । ୧ ।

ତୁଳସୀ—ସୁବଳ, ମୁଁ ମନେ କରିଥିଲି ତୁମେ—
ମଧୁ—ହଁ, ତୁମେ ଗୋଟିକିଯାକ ସରୁ ତୁଳସୀ । ସେଇଠୁ ?
ତୁଳସୀ—ଯାଃ, ଏଠୁ ଗଲେ ରକ୍ଷା ।
ସୁବଳ—ଉହୁଁ, ଯିବ କୁଆଡ଼େ ?
ତୁଳସୀ—ମନ ଯୁଆଡ଼େ । ତମର କ'ଣ ଥାଏ ?
ମଧୁ—କଷ୍ଟ ନାହିଁ ଯେ, ହାତରେ ସେତକ କ'ଣ ?
ତୁଳସୀ—କାହିଁକି ? ସୂର୍ଯ୍ୟପୂଜା-ଭୋଗ ।
ସୁବଳ—ତେବେ ଶ୍ରୀମତୀ ?
ଧନିଷ୍ଠା—ତମର କାହିଁକି ଏତେ ଖୋଜା ?
ସୁବଳ—ମୋର ତ ନୁହେଁ, ତାଙ୍କର ।
(ମଧୁକୁ ଠାରିବା)
ମଧୁ—ଉହୁଁ, ମୋର ତ ନୁହେଁ, ତାଙ୍କର ।
(ସୁବଳକୁ ଠାରି)
ଧନିଷ୍ଠା—ପରିହାସ କରିବାକୁ କ'ଣ ଆଉ କେହି ମିଳିଲେ ନାହିଁ ?
ମଧୁ—ହଁ, ମିଳନ୍ତେ ନାହିଁ କାହିଁକି ? କଡ଼ାଏ କଉଡ଼ିକ ଗଣ୍ଡେଟି ? ଗଉଡୁଣୀ କଅଣ ଗୋପରେ ଅଭାବ ଅଛନ୍ତି ?

ତୁଳସୀ—ଓହୋ ରେ ରସିକ ! ଖୁବ ବଡ଼ି ବଡ଼ି କଥା କହୁଚ ତ ?
ମଧୁ—ସୁବଳ, ସୁବଳ ! ମାପିବଟି ମତେ ଖୁଇ, କେତେ ହାତ ହେଲିଣି ?
ସୁବଳ—ଥାଉ ଥାଉ ସଖା ! ସଖୀ ବଗିଡ଼ିଯିବେ ଯେ...
ମଧୁ—କିଏ ବଗାଡୁଚି ? ଶ୍ରୀମତୀ କାହାନ୍ତି ? —ଏତିକ ପଚାରୁ ପଚାରୁ ତ ଖପା ।
ସୁବଳ—ସତ କଥା ତ ! ଶ୍ରୀମତୀ ବନର ଈଶ୍ୱରୀ । ତାଙ୍କର ଅନୁଗତ ପ୍ରଜାମାନେ ସମ୍ବାଦ ପଚାରିଲେ ଉତ୍ତର ଦେବ ନାହିଁ—ଏ କ'ଣ ସୁନ୍ଦର କଥା ତୁଳସୀ ?
ଧନିଷ୍ଠା—ତୁମେ ଆଗେ କହିଲ, ତୁମ ସଖା କାହାନ୍ତି ?
ସୁବଳ—କୁଞ୍ଜବନରେ ।
ତୁଳସୀ—କୋଉ କୁଞ୍ଜରେ ?
ମଧୁ—ଯୋଉ କୁଞ୍ଜରେ ହଉ, ଜାଣିରଖ ଶୈବ୍ୟା ପାଖରେ ନାହିଁ ।
ଧନିଷ୍ଠା—ମୁଁ କ'ଣ ସେ କଥା ପଚାରିଲି ?
ସୁବଳ—ନ ପଚାରିଲେ ପଚାରିଥାଆନ୍ତ । ବନ୍ଧୁ ଆମର ସେଇଟା ଆଗରୁ କହିଦେଲେ । କି ବନ୍ଧୁ ?
ମଧୁ—କହିଲ ତ ! ଲଥା ପକାଇବ କାହିଁକି ?
ତୁଳସୀ—ସେ କଥା ମୁଁ ବୁଝୁନାହିଁ । କହ ଠିକ୍ କରି, କୋଉ କୁଞ୍ଜରେ ?
ମଧୁ—ତୁମେ ଜାଣିଚ ଯେ ।
ସୁବଳ—ଏଥର କହ ଶ୍ରୀମତୀ କୋଉଠି ?
ତୁଳସୀ—ସେ ମଧୁ କୁଞ୍ଜଆଡ଼କୁ ଗଲେ ।
ମଧୁ—କୋଉ କୁଞ୍ଜଆଡ଼କୁ ଗୋ ?
ତୁଳସୀ—ତୁମେ ଜାଣିଚ ଯେ ।
ସୁବଳ—କି ମଧୁ ! ଥଣ୍ଡା ?
ମଧୁ—ଆରେ ମାଗିଆଣିବା ବୁଦ୍ଧି !
ତୁଳସୀ—ତୁମେ ଦୁହେଁ ଗଲ ଏଠୁ ?
ମଧୁ—ଭୋଗରେ ଆମର ଭାଗ ନାହିଁ କି ?

ଧନିଷ୍ଠା—ଭୋଗ ତ ହେଉନାହିଁ । ଏ ତ ଅମୁଣିଆ ।

ମଧୁ—ଆମେ ତ ବାମୁଣିଆଁ ।

ତୁଳସୀ—ଓଃ, ଯା ଭଲ ବାବୁ ! ତମୁକୁ ଜୁହାର କରୁଚ, ଗଲ ବାବୁ !

ମଧୁ—'ନିର୍ବିଘ୍ନରେ ବନ୍ଧୁ ପ୍ରାପ୍ତିରସ୍ତୁ' । ଗଲ ତେବେ, ମନେ କରୁଥିବ; ପାସୋର ଦବ ନାହିଁ ସଜନ ! ଆଜ୍ଞ ପଦେ—ପଦେ କଥା :—

( ଗୀତ )

ଆଜ୍ଞ ନୟନରେ ଥରେ ଯାଇ ଥା' ଅନାଇଁ
ସହି ! ପାସୋରିବ ନାହିଁ (ଧନ ! ମୋତେ ମନୁ) ।୦।

ଯମୁନାସୁଅରେ ମୋର ଦୁଃଖ ଯାଉ ଭସି,
ସେ ଆଖି ଛଟକ ଝୁର ହୋଇଗଲ ବାଇ (ସହି !) ।୧।

ଅଜଡ଼ ପେଟକୁ ତୁ ମୋ ମରିଚ କର୍ପୂର,
(ଖାଲ) ସଜଡ଼ା ବଡ଼ଆ ଖିଲେ ଦେଇ ଯାଆ ସହି ! (ମନୁ)।୨

ତୁଳସୀ—ବାଟ ଛାଡ଼, ମୁଁ ଯାଏଁ । କାହା ମୁହଁ ସକାଳୁ ଗୃହିଁଚ କେଜାଣି । ଏଇଟା ହାବୁଡ଼େ ପଡ଼ ମଲ ମଣିଷ । (ଧନିଷ୍ଠାପ୍ରତି) ଆସ ।

(ତୁଳସୀ ଓ ଧନିଷ୍ଠା ପ୍ରସ୍ଥାନ)

ମଧୁ—ସଖା, ମୋ ମୁହଁ ତ ନୁହେଁ ଆଉ ?

ସୁବଳ—ଚାଲ ଚାଲ, ଘର ଦୁଷ୍ଟ ହେଲଣି ତୁମେ ।

( ଅନ୍ୟ ଦିଗେ ପ୍ରସ୍ଥାନ )

---

## ଷଷ୍ଠ ଦୃଶ୍ୟ

ବନ

( ବୃନ୍ଦା ଗାଇ ଗାଇ ପ୍ରବେଶ )

ବସନ୍ତେ, ସେ ଛବି ହସେ ମରମେ,
—ଛବିଟି ହସେ ମରମେ ।୦।
ଆକାଶ ଅଙ୍ଗେ, ବାୟୁ ତରଙ୍ଗେ
ଯମୁନା ନୀରେ ଭରମେ ।୧।
କୁଞ୍ଜ କାନନେ, ଫୁଲ ଆନନେ
ଥମକି ନାଚେ ସରମେ ।୨।

( ପ୍ରସ୍ଥାନ )

( ଶ୍ରୀମତି, ଲଳିତା, ବିଶାଖାଦି ସଖୀଗଣ ପ୍ରବେଶ )

ଶ୍ରୀମତି—ମିଛ କଥା ।

ଲଳିତା—ଦେଖିବ ନାଇଁ ସତ କି ମିଛ ।

ବିଶାଖା—ନାଇଁ, ମିଛ ନୁହେଁ, ଦେଖୁନା' ହେଇଟି ପରା ବୃନ୍ଦା ଆସୁଛନ୍ତି ?

ଶ୍ରୀମତି—ବୃନ୍ଦା ? କାହାନ୍ତି ?

ଲଳିତା—(ନେପଥ୍ୟକୁ ଦେଖାଇ) ଦେଖୁନାହଁ ? ସେ ନିଶ୍ଚୟ ବୃନ୍ଦାବନଚନ୍ଦ୍ରଙ୍କର ସମ୍ବାଦ ନେଇ ଆସୁଥିବେ ।

ଶ୍ରୀମତି—ସେ କାହିଁକି ସମ୍ବାଦ ଦେବେ ?

ବିଶାଖା—ଦେଖିବ ନାଇଁ ?

( ଦୁଇଟି ନୀଳକମଳ ହସ୍ତେ ବୃନ୍ଦା ପ୍ରବେଶ )

ଲଳିତା—କିଗୋ ବୃନ୍ଦେ ! ହାତରେ ସେ କଅଣ ?

ବୃନ୍ଦା—( ଶ୍ରୀମତିଙ୍କ କରରେ ଦେଇ) ଶ୍ରୀମତିଙ୍କ କରରେ ଦେଲି । (ଗୀତ)

ଦେଲି ପରା କରେ ତୋଳି ନୀଳ କମଳକୁ,
ସୁନ୍ଦର ଦିଶିବ ସିନା ଭ୍ରମରୀ ଖେଳକୁ ।୦।

ମାନସ କାଳନ୍ଦୀ ସୋହାଗ ଜଳରେ,
ଫେରୁଥିଲି ସଖୀ ପୀରତି ଦଳରେ,
ପରଶ ବାସନା ମିଶା ସରସ ଦଳକୁ ।୧।

ବିଶାଖା—ଏତିକରେ କ'ଣ କାମ ସରିଗଲା ବୃନ୍ଦେ ?

ବୃନ୍ଦା—ତେବେ କ'ଣ ଆଉ ଯେ ?

ଶ୍ରୀମତି—ବୃନ୍ଦେ ! କୋଉଠୁ ଆସୁଚ ସଖି !

ବୃନ୍ଦା—ଶ୍ରୀକୃଷ୍ଣଙ୍କ ନିକଟରୁ ।

ଶ୍ରୀମତି—ସେ କେଉଁଠି ଅଛନ୍ତି ?

ବୃନ୍ଦା—ତୁମରି କୁଣ୍ଡ ନିକଟ ବନରେ ।

ଶ୍ରୀମତି—କ'ଣ କରୁଛନ୍ତି ସହି !

ବୃନ୍ଦା—ନୃତ୍ୟ ଶିକ୍ଷା କରୁଥିଲେ ।

ଶ୍ରୀମତି—ନୃତ୍ୟଶିକ୍ଷା !

ବୃନ୍ଦା—ହଁ ସହି, ନୃତ୍ୟଶିକ୍ଷା ।

ଶ୍ରୀମତି—ତେବେ ଗୁରୁ କିଏ ?

ବୃନ୍ଦା—ଗୁରୁ ତ ଜଣେ ନୁହେ ।

ଶ୍ରୀମତୀ—ତେବେ କେତେ ଜଣ ?

ବୃନ୍ଦା—କେତେ ଜଣ ବୋଲି କପରି କହିବି ରାଧେ ! ଗଣିହେବ ନାହିଁ । ତୁମ କୁଞ୍ଜ ନିକଟର ପ୍ରତି ତରୁ, ଲତା ତାଙ୍କର ଗୁରୁ । ସମସ୍ତେ ମୋହିନୀମୂର୍ତ୍ତି ଧରିଚନ୍ତି । ଚତୁର୍ଦ୍ଦିଗରେ ସେଇ ମୋହିନୀରୂପର ଗୁରୁ ଛଟା—କିଏ ଯେ କି ଭଙ୍ଗୀରେ ତାଙ୍କୁ ନୃତ୍ୟ ଶିଖାଉଚି, କହି ହେବ ନାହିଁ । ବିବିଧ ଛନ୍ଦ, ବିବିଧ ଢଙ୍ଗରେ ସେ ନୃତ୍ୟ । ଶ୍ୟାମସୁନ୍ଦରଙ୍କ ଆଖି ଝଲସି ପଡ଼ୁଚି । ସେ କେବଳ ନର୍ତ୍ତକୀ ପଛରେ ନୃତ୍ୟ କରି ବୁଲୁଚନ୍ତି । ବୁଝୁଚ ନା ରାଧେ ! କାହାର ଏ ମୋହିନୀମୂର୍ତ୍ତି ପ୍ରତି ତରୁ-ଲତାରେ ପ୍ରତିଫଳିତ ହେଉଚି !

ଶ୍ରୀମତୀ—ବୁଝିଲି ବୃନ୍ଦେ, ଏ ମୂର୍ତ୍ତି ଯାହାର । ପଦ୍ମା ସଖୀର ସୌରଭରେ ଶ୍ୟାମ ମୁଗ୍‌ଧ । ଶୈବ୍ୟା-ପବନ ପାଇ ତା'ର ପରିମଳ ଏଣେତେଣେ ଉଡ଼ି ପଡ଼ୁଚି । ସେଇ ସୁଗନ୍ଧ ଆଘ୍ରାଣୀ ଆକୁଳ ଘନଶ୍ୟାମ ପଛେ ପଛେ ବୁଲୁଚନ୍ତି ।

ବୃନ୍ଦା—ଭୁଲ୍ ବୁଝିଲ ରାଧିକେ ! ଏ ମୂର୍ତ୍ତି ଶ୍ରୀମତୀଙ୍କର; ଶତ ସହସ୍ର ପ୍ରତିବିମ୍ବ ଘନଶ୍ୟାମଙ୍କର ମାନସ-ମୁକୁରରେ ଫୁଟି ନୟନ ଆଗରେ ପ୍ରତି ତରୁଲତାରେ ପ୍ରତିଫଳିତ ହେଉଚି । ନିଜେ ନାଚୁଚି ଆଉ ନଚାଉଚି ଶ୍ୟାମଙ୍କର ପ୍ରତ୍ୟେକ ଅଙ୍ଗକୁ ।

ଶ୍ରୀମତୀ—ତେବେ ଶୈବ୍ୟାବାୟୁର ବଳ କ୍ଷୀଣ ହେଲା କପରି ? ମିଛ କହୁଚ ବୃନ୍ଦେ !

ବୃନ୍ଦା—ମିଛ ତ ନୁହେଁ ଶ୍ରୀମତୀ । ଜାଣିଥିବ, ଇନ୍ଦ୍ର ଯାବତ ବଳପ୍ରୟୋଗ କରି ପବନ ସହିତ ବର୍ଷା କଲାବେଳେ ସେ ଗର୍ବ ରହିଚି କି ? ଶୈବ୍ୟାବାୟୁ କିବା ଛାର । ଘନଶ୍ୟାମଙ୍କର ବାଗ୍‌ବଞ୍ଚନା ଶର-ବଳରେ ନଶୈବ୍ୟାବାୟୁ ଚନ୍ଦ୍ରାବଳୀଙ୍କ ସହିତ ଏକାବେଳେ ଗୌରୀ-ତୀର୍ଥରେ ।

ଶ୍ରୀମତୀ—ଛାଡ଼ ସେ କଥା ବୃନ୍ଦେ ! ଆମର ସେ ବାୟୁ ଅବା ଗନ୍ଧରେ କ'ଣ ଯାଏ ଆସେ ? ଚାଲ ଲଳିତେ ! ଶ୍ୟାମକୁଣ୍ଡ ନିକଟକୁ ଯାଇ ପାତାଳ-ଗଙ୍ଗାରେ ସ୍ନାନ ସାରି ସୂର୍ଯ୍ୟପୂଜା କରି ବେଗେ ଘରକୁ ବାହୁଡ଼ିବା, ନୋହିଲେ ଶାଶୁଙ୍କ କଥା କ'ଣ ଜାଣ ନାହିଁ ?

ଲଳିତା—ଚାଲ ତେବେ ସଖି !

ଶ୍ରୀମତୀ—ବୃନ୍ଦେ, ତୁମେ କେଉଁଠିକି ଯିବ ?

ବୃନ୍ଦା—ତୁମର ପାଦପଦ୍ମ ନିକଟକୁ ।

ଶ୍ରୀମତୀ—ଏ କପରି କଥା ? କାହିଁକି ?

ବୃନ୍ଦା—ଶ୍ରୀମତୀ ! ତୁମେ ବୃନ୍ଦାବନେଶ୍ୱରୀ ! ତୁମ ରାଜ୍ୟର ସମ୍ବାଦ ଦେବାକୁ ।

ଶ୍ରୀମତୀ—କି ସମ୍ବାଦ ?

ବୃନ୍ଦା—ବନସ୍ଥଳୀ ମାଧବ ବିଭବରେ ବିଭୂଷିତ । ଉତ୍କଣ୍ଠିତ ପ୍ରାଣରେ ବନେଶ୍ୱରୀଙ୍କର କୃପାକଟାକ୍ଷ ମାତ୍ର ତାଙ୍କର ଅଭିଳାଷ ।

କୁନ୍ଦଲତା—ବୃନ୍ଦେ ! ଚିରଦିନ ତୁମର ଏ କପଟ ଦୂତୀ-ପଣିଆ ଛାଡ଼ିଲା ନାହିଁ ? ଜଟିଳା ମୋ ସାଙ୍ଗେ ଶ୍ରୀମତୀଙ୍କୁ ପଠାଇଚନ୍ତି । ତାଙ୍କର ଶ୍ରୀକୃଷ୍ଣଙ୍କୁ ଭାରି ଡର; ଯେପରି ଶ୍ରୀମତୀ ଶ୍ରୀକୃଷ୍ଣଙ୍କର ଆଖିରେ ନ ପଡ଼ନ୍ତି । ସେଥିଲାଗି ସେ ବାରବାର ସାବଧାନ କରାଇଚନ୍ତି । ପାତାଳ-ଗଙ୍ଗାରେ ସ୍ନାନ ସାରି ଗୁପ୍ତରେ ତାଙ୍କୁ ସୂର୍ଯ୍ୟବେଦୀ ପାଖରେ ପୂଜା କରିବାକୁ ନେବି । ସେଠାରେ ଯଦି କୌଣସି କୃଷ୍ଣ ଗନ୍ଧ ପାଏ, ତେବେ ମାନସଗଙ୍ଗାରେ ସ୍ନାନ ସାରି ପୂଜା କରିବାକୁ ଯିବେ । ଜଟିଳା ମୋତେ ବଡ଼ ବିଶ୍ୱାସ କରନ୍ତି । ମୁଁ ତାଙ୍କ କଥାରୁ ବାହାର ହେବି କପରି ?

ବୃନ୍ଦା—କୁନ୍ଦଲତେ ! ମାନସଗଙ୍ଗା ବା ପାତାଳଗଙ୍ଗାକୁ ଯିବ କାହିଁକି ? ମୁଁ ଗୋଟିଏ ସୁନ୍ଦର ଉପାୟ କହୁଚି, ଶୁଣ—

( ଗୀତ )

ଧାଉଁଛି ମଦନ-ବିଷ ସଖୀ ଅପଘନ
ନୟନ ମେଲିବି ଆଉ ଅଛି କି ସେ ଟାଣ ?
ଆରେ ପରାଣବନ୍ଧୁ ରେ,
ଦମ୍ଭ ଅଭିମାନ ଭାସେ କନ୍ଦର୍ପ-ସିନ୍ଧୁରେ ।୧।

ଘଡ଼କେ ଚମକ ଚାହେଁ ତମାଳ ତରୁକୁ
ନଚାଇ ନଚାଇ କାମ-କମାଣ ଭ୍ରୂରୁକୁ
ଆରେ ପରାଣବନ୍ଧୁ ରେ,
କଜ୍ଜ୍ୱଳରେଖା ମିଶିଛି ଲୋତକ-ସିନ୍ଧୁରେ ।୨।

ଲଳିତା—ସେ ଯାହା ହେଉ ବୃନ୍ଦାବତେ ! କୃଷ୍ଣ ତୁମର ଦେବର, ତାଙ୍କୁ ଏତେ ଡର ତୁମର କାହିଁକି ? ଆମେମାନେ ଯାଇ ଆମ କୁଣ୍ଡରେ ଗାଧୋଇବୁ । ସେ ଆମର କ'ଣ କରିବେ ?

ବିଶାଖା—ଗଉଡ଼ ସେ; ଗୋରୁ ଜଗନ୍ତୁ ଯାଇ । ତାଙ୍କର ସେଠି କ'ଣ କାମ ?

ବୃନ୍ଦା—ଭୟ ଛାଡ଼ ସହି ! ମୁଁ ଆଗରୁ ଯାଇ ସବୁ ବିପଦର ବାଟ ଜଗି ଦଉଛି । ଚାଲ ସହି !

( ଗୀତ )

ଚାଲ ସଜନୀରେ କାହାକୁ ଡର,
କି କରିବ ହରି ତୋର ।।୦।।

ନବ ବାରିଦ ଉଦିଲେ
ମୟୂରୀ କି ଡରେ ଭଲେ,
ମଳୟ ପରଶ ଡରି
କୁସୁମ କି ଥରଥର ? ।୧।

ରୁଚି କି ଡରେ ମିଳନ
ରାତି କି ଚନ୍ଦ୍ରକିରଣ
ଚୁମ୍ବନ କି ଡରି ରହେ
ପ୍ରୀତିକି କରି ଜୁହାର ? ।୨।

( ସମସ୍ତଙ୍କର ପ୍ରସ୍ଥାନ )

---

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

( ବୃନ୍ଦା ଗାଇ ଗାଇ ପ୍ରବେଶ )

ମଧୁପ ! ସୁମନର ପରାଣ-ବନ୍ଧୁ
ଭୁଲାଇ ନାଗରୀ ମନ ପ୍ରେମପାଶେ ଛନ୍ଦୁ ।୦।
ତୋତେ ନ ଦେଖିଲେ ଥରେ, ଫୁଲ ହୃଦୟ ଥରେ
ପଡ଼ିଲେ ନୟନେ ତୋର, ପରାଣକୁ ବାନ୍ଧୁ ।୧।

( ବୃନ୍ଦା ପ୍ରସ୍ଥାନ; ମଧୁ ଓ କୃଷ୍ଣ ପ୍ରବେଶ )

ମଧୁ—ଅସମ୍ଭବ ।

କୃଷ୍ଣ—କାହିଁକି ?

ମଧୁ—କାହିଁକି ବୋଲି ପଚାରୁଥିଲେ ତ ବ୍ରହ୍ମାଙ୍କ ନନା ମଧ୍ୟ ଜବାବ ଦେଇପାରିବେ ନାହିଁ । ଆଉ ମୁଁ କି ବା ଛାର ?

କୃଷ୍ଣ—ତୁମେ ଦେଖିଚ ତ ?

ମଧୁ—ହଁ ଦେଖିଚି ।

କୃଷ୍ଣ—ତେବେ ?

ମଧୁ—ଆଉ ତେବେ, ଏବେ କଅଣ ?

କୃଷ୍ଣ—ତେବେ କିପରି ରୂପ, କିପରି ଛଟା, କିପରି ମାଧୁରୀ, ଏତକ କହିପାରିବ ନାହିଁ ?

ମଧୁ—କହିଲି ତ ।

କୃଷ୍ଣ—କଅଣ କହିଲ ?

ମଧୁ—ଥରେ ତ ଶୁଣିଲ, କେତେ ସେଇ କଥା ଫେଟେଇ ଫେଟେଇ ପଚାରୁଥାଅ ହେ ?

କୃଷ୍ଣ—ଆଚ୍ଛା ସଖା, ତୁମେ ଟିକିକୁ ଏମିତି ବିଗିଡ଼ଯାଅ କାହିଁକି ?

ମଧୁ—ସେଇଟା ଏକା ଆମର ନୁହେଁ, ବଂଶର ଦୋଷ ।

କୃଷ୍ଣ—ହଉ, ଏଇଥରକ କହ, ଆଉ ତୁମକୁ କେବେ ମୁଁ ପଚାରିବି ନାହିଁ ।

ମଧୁ—କିଛି ଅଧିକ ଆଉ ମୋଠାରୁ ଆଶା କରୁଚ କି ସଖା ? ଯଦି ତା ଥାଏ, ତେବେ ଆଗରୁ ମୁଁ କହିଦଉଚି, ତୁମ ମନଟି ମରିଯିବ, ମୁହଁଟି ଯେମିତି ଶୁଖିଥିଲା, ସେମିତି ଶୁଖିଥିବ; ଲାଭ କିଛି ହେବ ନାହିଁ ।

କୃଷ୍ଣ—ତଥାପି ?

ମଧୂ—ବେଶ, ଶୁଣ । ସେ ରୂପ—ରୂପଭରା । ସେ ଗୃହାଣୀ—ଆଖିଭରା । ସେ ଛଟା, ସେ ଭଙ୍ଗି, ସେ ଗୃଲ,—ସବୁ କୁହୁକ ।

କୃଷ୍ଣ—ଏ କ'ଣ କହୁଚ ଭାଇ ?

ମଧୂ—ଜାଣେ ତ ସଖା ! ଏତକରେ ମନ ମାନବ ନାହିଁ; ତେବେ ମୋତେ ପଠାଅ କାହିଁକ ? ଯାହା ଦେଖିଲ, ଯେମିତ ଦେଖିଲ, ତାହା କହିଲ— ସେମିତ କହିଲ । ତୁମ ଆଖି ଲଗାଇ ତ ମୁଁ ଯାଇ ନ ଥିଲ ? ମୁଁ ଯାଇଥିଲ ମୋ ଆଖି ନେଇ । ଯାହା ଦିଶିଲ, ଠିକ୍ ସେଇଆ କହିଲ । ଏବେ ତୁମ କାନ ମନକୁ ଖାପ ନ ଖାଇବ, କ'ଣ ମୋର ଦୋଷ ?

କୃଷ୍ଣ—ନାଇଁ, ଦୋଷ ବୋଲ କଏ କହିଲା ?

ମଧୂ—ନାଇଁ ରେ ବାବୁ, ଗୋବର ଗୋଟେଇବାକୁ କହିନାହିଁ, ଖାଲ ଚୋକେଇଟା ମୋ ଆଡ଼କୁ ଫିଙ୍ଗିଦେଇଚ ।

କୃଷ୍ଣ—ଯାଃ, ବଟୁ ! ତୁମର ଏଇ କଥା ନ ଗଲା ।

ମଧୂ—କହିଲ ତ ଭାଇ ! ଆସୁଛନ୍ତ, ଆସୁଥିଲେ, ଆସିବେ ।

କୃଷ୍ଣ—କେଉଁଠି ଭେଟିଲ ତୁମେ ?

ମଧୂ—"ମଦନରଣବାଟି କୁଞ୍ଜ" ପାଖେ ।

(ସୁବଳ ଦୌଡ଼ିଆସି ମଧୂ କାନରେ କହିଲା)

କୃଷ୍ଣ—କ'ଣ, କ'ଣ ସଖା ?

ମଧୂ— (ଗୀତ)

ବନ ପଥେ ସେଇ ଫୁଲ ଫୁଟିଛି
ସୋହାଗ ପାଖୁଡ଼ା ଫିଟି ଫିଟି ଆସେ
ତାହାର ସୁବାସେ ବାଗ ଭରିଛି ।୦।

ନବ ବସନ୍ତର ପରଶ ଲଗିଛି,
ଆଉ କ ନବୀନା ନ ହସି ରହୁଛି ?
ପତର କୋଣରୁ ସରମେ ସରମେ
ମନଭ୍ରମର ଅଳ ଚନ୍ଦୁ ଝୁରୁଛି ।୧।

କୃଷ୍ଣ—ଯାଃ, ବଟୁ ! ଏଇ ପରିହାସ ଗଲା ନାହିଁ ତମର ?

ମଧୂ—ସଖା, ମୋ କଥା ମାନ, ଟିକଏ ଅଣଆଡ଼ୁଆ ହୋଇ ଆସ । ତା'ପରେ—

ସୁବଳ—ସତ କଥା । କାଲେ—

ମଧୂ—ଶିକାର କାଲେ ତମ ଗ୍ଭଇ ଦେଖି ତେଣେ ଛୁ— ଏଠି ବସି ବଜୋଉଥିବ ଭୁଁ । ଗୃଲ ଗୃଲ ।

( ଶ୍ରୀକୃଷ୍ଣଙ୍କୁ ଘେନ ପ୍ରସ୍ଥାନ )

( ବୃନ୍ଦା ଗାଇ ଗାଇ ପ୍ରବେଶ )

ଲୁଚ ଯା'ରେ ଛପି ଛପି ମଧୁପ ଅଳ ॥
ଦେଖିଦେଲେ ଥରେ ଫୁଲ ତୋତେ ରେ
ଚର୍ଚ୍ଚେ ପଡ଼ିବ ଜଳ ।୧।
ମଳୟ ସମୀର ବାସଗ୍ଭେର ରେ
ଝୁଲାଇବ ଭଲ ଭଲ ।୨।
ଲୁଚ ଲୁଚ ଧୀରେ ଫୁଲ ଅଧରେ
ପରଶି କରୁଥା କେଳ ।୩।

(ପ୍ରସ୍ଥାନ)

(ଲଳତା, ବିଶାଖାଦି ସଖୀଗଣସହ ଶ୍ରୀମତୀଙ୍କ ପ୍ରବେଶ)

ବିଶାଖା—ସହି ! ଫୁଲଡୋଳାର ଫଳ କଅଣ ପାଇନାହିଁ ? ଆହୁର ଫୁଲଡୋଳାରେ ମନ ? ଦେବତା ପ୍ରସନ୍ନ ହେଲେଣି ମ ।

ଶ୍ରୀମତୀ—କ'ଣ ସହି ?

ଲଳତା—କେଜାଣି ? ନ ଦେଖିଲ ପରି ତ ହଉଚ ।

( ଗୀତ )

ନବମାଳତୀ, ଉଡ଼ିଗଲା ତୋ ପ୍ରୀତସାଥୀ ।୦।
ଗ୍ଭେରି ମଳୟରେ ଭାସି, ଆସିଥିଲା ହସି ହସି
ନୟନକୋଣରେ ଦୂରୁଁ ପରଶି ବାସ ଗ୍ଭତ ।୧।
ଆଣିଥିଲା ଅଧହସ, ଗ୍ଭଣି ପ୍ରୀତସୁଧାରସ,
ହସାଇ କ ନାହିଁ ତୋତେ, କାମ ନଜରେ ମାତ ।୨।

କୁନ୍ଦଲତା—ମଲା ମୋର, "ତେଇଁ ଶୋଇଥିବ ଯିଏ, ତାକୁ ଉଠାଇବ କଏ ?"

ଶ୍ରୀମତୀ—ନାଇଁ ସହି ! ସତ କହୁଚ । ମୁଁ କଛୁ ଜାଣି ନାହିଁ ।

ବିଶାଖା—ଦେଖିନାହିଁ ?
ଶ୍ରୀମତୀ—ନାହିଁ ତ ।
ବିଶାଖା—କୁଞ୍ଜକୋଣକୁ ଗୃହିଁ ନାହିଁ ? କିଏ ସେ ଗୃହିଁ ଗୃଲିଗଲେ, ଦେଖିନାହିଁ ?
ଶ୍ରୀମତୀ—ନାହିଁ ମ ସହି ! ମିଛ କାହିଁକି କହିବି ?
ଲଳିତା—(ଗୀତ)

ଦାମିନୀ ଝଲକଲା, (ସଜନି ସତେ)
କୁଞ୍ଜକାନନ ପଟେ, ନାଚ ଥରେ ଛପିଲା ।୦।
ପଡ଼ିଲା ନୟନେ ଥରେ
ମୟୂର-ଚନ୍ଦ୍ରିକା ଥରେ
ଶ୍ରୀଅଙ୍ଗ ସୁବାସେ ଆହା, ଦିଗବିଦିଗ ଭରିଲା ।୧।
ଭେଟିଛୁ କି ନାହିଁ ଆଖି
ସତ କହ ପ୍ରାଣସଖି !
ଅଧର ବନ୍ଧୁଲି ଗ୍ରର, ଶୋଭାଶିରୀ ଲୁଟିଲା ।୨।

( କୃଷ୍ଣ, ମଧୁ ଓ ସୁବଳଙ୍କ ପୁନଃ ପ୍ରବେଶ )

ମଧୁ—ଆଠିକାଠାକର ମୁହଁକୁ ସୋଳଷଠାକର ଲାଜ ଥିବା ତ ଦରକାର ।
କୃଷ୍ଣ—କିଏ ଏମାନେ ସଖା ?
ସୁବଳ—କିଏ ତୁମେମାନେ ?
ଶ୍ରୀମତୀ—ଠକ୍କୁର, ଏମାନେ କିଏ ସଖି ?
ଲଳିତା—ତୁମେମାନେ କିଏ ?
ମଧୁ—ଚିହ୍ନ ନାହିଁ ଧନ ! ଆଖିଆଗରେ ଏ ଯେଉଁ କଳା ଭଅଁରଟିକୁ ଦେଖୁଚ, ସେ ଏଇ କୁଞ୍ଜବନର ରଜା, ତାଙ୍କୁ ଚିହ୍ନ ନାହିଁ ?
ଲଳିତା—ତାଙ୍କୁ ଚିହ୍ନିଚ, ତୁମମାନଙ୍କୁ ମଧ ଚିହ୍ନିଚ । ହେଲେ ସେ ଭ୍ରମର ଏଠାରେ କାହିଁକି ?
ଶ୍ରୀମତୀ—କହ ତାଙ୍କୁ, ଭ୍ରମରୀ ପାଖକୁ ଯାଆନ୍ତୁ ।
କୃଷ୍ଣ—ଆସିଚ ତ, କୁସୁମର ସୌରଭ ନ ପାଇଲେ ଭ୍ରମରର ବନବୁଲା ଯେ ଅସମ୍ଭବ, ଏ କଥା ମଧ ଶିଖିବାକୁ ଥିଲା ?
ମଧୁ—ଓଃ, ସେଥିରୁ କି ମିଳିବ ହୋ ! କହିବଟି, ଏ ବନରେ ତୁମମାନଙ୍କର କ'ଣ କାମ ? ହାତରେ ସେ କ'ଣ ?
ଲଳିତା—କାହିଁକି ? ଫୁଲ, ଦିଶୁନାହିଁ ?
ସୁବଳ—ଆଣିଲ କେଉଁଠୁ ?
ଲଳିତା—ଏଇ ବୃନ୍ଦାବନରୁ ।
ସୁବଳ—କିପରି ?
ବିଶାଖା—ତୋଳି କରି, ହାତରେ, ଏଇ ଆଙ୍ଗୁଠିରେ ।
ଲଳିତା—କୋଉଠି ବା ଅଙ୍କୁଡ଼ିରେ ଟାଣି ଆଣିବାକୁ ପଡ଼େ ।
ମଧୁ—ମନ୍ଦ ନୁହେଁ । ଗୃେର ମୁହେଁ ମୁହେଁ ସ୍ୱୀକାର । ଏ ଜବରଦସ୍ତି ଗୃେରପଣିଆ ତ ମୁଁ କୋଉଠି ଦେଖି ନଥିଲି କି ଶୁଣି ନଥିଲି ।
ବିଶାଖା—ଜବରଦସ୍ତି ଯାହା କହିଲ ମଧୁ, ସେ କଥା ସତ, ବାକି ଗୃେର କଥାଟା ମିଛ ।
ଲଳିତା—ଆଜନ୍ମରୁ ଏଇ ବୃନ୍ଦାବନରେ ଏଇମିତି ନିତି ନିତି ଆମେମାନେ ଫୁଲ ତୋଳୁଁ । ଗୃେର ବୋଲି ତ କେବେ କାଳେ ଜାଣିନାହିଁ ?
ସୁବଳ—କେମିତି ଜାଣନ୍ତ ? ଧରା ତ ପଡ଼ି ନ ଥିଲ ?
ମଧୁ—ଗୃେର ଘର କ'ଣ ସବୁ ଦିନ ଅନ୍ଧାର କି ଧନମଣି ? କେବେ ତ ପୁଣି ଏଇପରି ପୂନିଅଁ ଉଦେ ହୁଏ, ଲୋକେ ଏଇମିତି ଧରାପଡ଼ନ୍ତି ।
ଲଳିତା—ଚିରଦିନ ଅମେ ଯାହା ଭୋଗ କରି ଆସୁଚୁଁ, ଆଜି ବି ସେଇ ଅଧିକାର ରହିଚ ଆମର । ନିଜର ପଦାର୍ଥ ଆମେ ନେଇପାରୁଁ, ଫିଙ୍ଗିପାରୁଁ, ମନ-ହେଲେ ଯମୁନାପାଣିରେ ଭସାଇ ଦେଇପାରୁଁ । ସେ ଆମର ଇଚ୍ଛା । ଅନ୍ୟ ଲୋକର କିଛି କଥା କହିବାର ଅଧିକାର ନାହିଁ ।
ସୁବଳ—ଅବଶ୍ୟ ଅଛି ।
ଲଳିତା—କିପରି ?
ସୁବଳ—ତୁମେ ପରର ପଦାର୍ଥ ଗୃେର କରଚ । ଏ ବନ-ରାଜ୍ୟ ତୁମର ନୁହେ ।

ଲଳିତା—ନୁହେ ତ କାହାର ?

ସୁବଳ—ଅନ୍ୟର ।

ବିଶାଖା—କେବେ ନୁହେ ।

ମଧୂ—ତେବେ କ'ଣ ତୁମ ନିଜର ?

ବିଶାଖା—ହଁ, ନିଜର ।

ସୁବଳ—ହଁ ହଁ, କାହିଁକି ନୁହେ ? ରାଜି ଖୁସିରେ ହୋଇପାରେ ।

ମଧୂ—ନିଅ ବାବୁ, ସଖା ! ଏଣିକି ତୁମେ ଏ ସଖୀଙ୍କର ନିଜର, ଆମେ ଜାଣୁ ଏ ବନ ତୁମର; ଏ ଗୋପାଳୁଣୀମାନଙ୍କର ନୁହେ । ଏବେ ସେମାନେ ଦାବି କଲେଣି,—ଏ ବନଟା ତାଙ୍କ ନିଜର । ତୁମେ ତାଙ୍କର ନିଜର ନ ହେଲେ ଏ ବନଟା ତାଙ୍କର ହେଲା କିପରି ?

ସୁବଳ—ତେବେ ସଖା, ତୁମର ଆମ୍ଭମାନଙ୍କୁ ଅପମାନ ଦେବାର ଇଚ୍ଛା ?

ମଧୂ—କାହିଁକି, ସେଇ କଥାଟା ଆଗରୁ କହିଦେଲ ନାହିଁ ?—କି ସଖା, ଏ ବନ ଦିନେ ମୋର ଥିଲା ବୋଲି ଯାହା ଜାଣିଥିଲ—ଭୁଲିଯାଅ ସେ କଥା । ଏଣିକି ତୁମେ ପରର ହେଲ, ଆଉ ଏ ବନରେ ଆମର ଅଧିକାର ନାହିଁ । ଚାଲ ଭାଇ, ସୁବଳ ! ଏଥର ଆପଣା ସଳଖ ବାଟ ଦେଖି ।

ସୁବଳ—କହ୍ନାଇ ! ତୁନି ହୋଇ ରହିଲ ଯେ ? ବଟୁ ଯାହା କହିଲେ ତା ଯେବେ ସତ, ତେବେ ଆମ୍ଭମାନଙ୍କୁ ଆଉ ଦିନେ ଏ ବନ ଶାସନ କରିବାକୁ କହିବ ନାହିଁ । ଆମ୍ଭମାନଙ୍କର ତ ଫେର୍ ଗୋଟାଏ ଲଜ୍ଜା ଅଛି । ତୁମେ ଏ ବନ ସହିତ କେବେ ଆପଣାକୁ ମଧ୍ୟ ପରହାତ କରିଦେଇ ସାରିଚ, ଏ କଥା ଆମ୍ଭଙ୍କୁ କହିଦେଲ ନାହିଁ କାହିଁକି ?

କୃଷ୍ଣ—କି ଆଶ୍ଚର୍ଯ୍ୟ କଥା ! ଏ ଷୋଳକୋଶ ବୃନ୍ଦାବନ କାମଦେବଙ୍କର । ତାଙ୍କର ଆଦେଶ ଅନୁସାରେ ବ୍ରହ୍ମଚାରୀ ହୋଇ ରାଜ୍ୟ ଶାସନ ମୁଁ କରି ଆସୁଚି, କେତେ କାଳରୁ ଏମାନେ ଏଭଳି ସ୍ୱୈର କରୁଥିବାର ମୁଁ ଶୁଣିଚି । ବହୁ କଷ୍ଟରେ ଧରା ପଡ଼ିଚନ୍ତି, ଆଜି ଏମାନଙ୍କର ବିହିତ ଦଣ୍ଡ ଆବଶ୍ୟକ ।

ଲଳିତା—ଦଣ୍ଡ ! ରାଜ୍ୟ ଆମର, ତୁମେ କିଏ ହେ ? କାହିଁକି ବା ଏ ଅବଳାମାନଙ୍କର ଚିର ବିହାର-ସ୍ଥଳୀକୁ ଆସି ଆମ ସଖୀଙ୍କର ମିଳନପୂଜାରେ ବିଘ୍ନ ଘଟାଉଚ ? ଏ ରାଜ୍ୟ ତ ତୁମର ନୁହେ । ଦଣ୍ଡ ଦେବ ନା ଦଣ୍ଡ ପାଇବ ।

ବିଶାଖା—ଆମ ସଖୀ ଶ୍ରୀମତୀ ବୃନ୍ଦାବନର ଈଶ୍ୱରୀ । ତାଙ୍କର ଆଦେଶ, ତୁମେ ବେଗେ ଏଠାରୁ ବାହାରି-ଯାଅ । କୁଳନାରୀମାନଙ୍କ ପକ୍ଷେ ପରପୁରୁଷ ଦର୍ଶନ ଅନୁଚିତ । ଏ କଥା କଅଣ ଜାଣିନାହିଁ ?

କୃଷ୍ଣ—ଅସମ୍ଭବ ! ବୃନ୍ଦାବନର ରଜା ମୁଁ । ବ୍ରହ୍ମଚାରୀ-ପକ୍ଷେ ପରସ୍ତ୍ରୀ ଦର୍ଶନ ନିତାନ୍ତ ଅନ୍ୟାୟ । ତୁମେମାନେ ଏ ବନରେ ପ୍ରବେଶ କରିବା ତ ଅନୁଚିତ । ତହିଁପରେ ତୁମେମାନେ ସ୍ୱୈର କରିବାକୁ ମଧ୍ୟ ତ୍ରୁଟି କରିନାହିଁ । ତୁମେମାନେ ସ୍ୱାଧୀନ ହୋଇ ଏପରି ବୁଲୁଥିବାରୁ ବୋଧହୁଏ ଲଜ୍ଜା ତୁମର ସୀମା ଛୁଇଁନାହିଁ । କୁଳଲଳନା ବୋଲି ଯାହାର ଗର୍ବ—ତାଙ୍କର ଏ ଢଙ୍ଗରଙ୍ଗ ଦେଖି ମୋତେ ବରଂ ଲଜ୍ଜା ଲାଗୁଚି ।

ଲଳିତା—ଧୀଟ ! ଲଜ୍ଜା ପୁଣି ତମର ଅଛି ? ଶୁଣି ଖୁବ୍ ଖୁସି ହେଲି, ରାଜ୍ୟ ଆମର, ଆମେ ହେଲୁ ସ୍ୱୈର ! ଆଉ ହେ ଭଣ୍ଡ ବ୍ରହ୍ମଚାରୀ, ତୁମେ ହେଲ ସାଧୂ ! କେବେ ହେ ? ତୁମ ସ୍ୱୈରପଣିଆ ଅଜଣା କାହାକୁ ? (ଗୀତ)

ଆକାଶଶୋଭି ନୀଳିମା, ଶ୍ରୀଅଙ୍ଗେ କରିଛ ଜମା,
ନୀଳ କମଳର ସବୁ ଶିରୀ,
ସ୍ୱୈର କରିଛ କି ନାହିଁ, ସତ କହିବ କହ୍ନାଇ !
ଚରଣେ ସରୋଜ ରଙ୍ଗ ଧରି,
ଆହେ ନଟବର !

ସରଗୁଁ କୁସୁମ ବାସ ଆଣି
ଅଙ୍ଗରେ ମାଖିଛ ନୀଳମଣି ।
ସାଇତିଥିଲ କି କେବେ, ଏ ସମ୍ପତ୍ତି କାହା ଠାବେ
ମାଗି ଆଣିଛ କି ପାତି କାନ ? ।୧।

ସେ ଦିନ ଯମୁନାକୂଳେ, ଗୋପୀଙ୍କ ବସନ ହେଲେ
ଚୋରି କଲ କିସ ମନେ ଭାଳ,
ଜଳଗ୍ନ କୁମାରୀଗଣ, ସାକ୍ଷୀ ଅଛନ୍ତି, ସେ ଧନ,
ନ ଦେଲ କରିଲେ ଯେତେ ଅଳ,
ଆହେ ଦଗାଦାର !
ବନରାଜା ବୋଲାଅ କି ମୁଖେ ?
ବ୍ରହ୍ମଚାରୀ ବୋଲି କହିଲା କେ ?
ତୁରଙ୍ଗମ ବ୍ରହ୍ମଚର୍ଯ୍ୟ, ଆଚରି ଭୋଗୁଛ ରାଜ୍ୟ
ବନେ ବନେ ବୁଲି ମନ ସୁଖେ ।୨।

ଲୁଚାଇ ହେଲ ଯେତେକ, ଅଙ୍ଗେ ମିଶାଇ ସେତକ
ନାହିଁ ଜପକର ନାହିଁ ସୀମା,
ମୟୂର ପକ୍ଷୀ ମାତର, ଚନ୍ଦ୍ରିକା ଚୋରାଇ ତାର
ମଥାରେ ଖଞ୍ଜିଛ କି ଗରିମା,
ଆହେ ଦଗାଦାର !
ନ ଅଣ୍ଟିଲା ବାଉଁଶ କଣିକା
ଲତା ପତ୍ର କଥା ତ ଅଧିକା ।
ଗୋରୁ ଚରାଇ ବନରେ, ସେତକ ଲୁଟିଲ ଘରେ
ପରମବି ତୁମ୍ଭର ଜୀବିକା ।୩।

ମଧୁ—ସଖା ! ଏମାନଙ୍କର ମୁହଁ ତ ବେଳକୁ ବେଳ ବଢ଼ିଯାଉଚି ! ସେ ତୁମଙ୍କୁ ତାଙ୍କ ନଜର ମଣି, ଏ କଥା କହିପାରନ୍ତି ଅବା ତୁମେ ସହିପାର, ଆମମାନଙ୍କୁ ବିଦାୟ ଦିଅ ।

ସୁବଳ—ବିନା ବାଧାରେ ଏମାନଙ୍କର ଚୋରି କେହି ନ ଧରିବାରୁ ସାହସ ବଢ଼ିଯାଉଚି । ସଖା ! ଏମାନଙ୍କୁ ଉଚିତ ଦଣ୍ଡ ନ ଦେଲେ ଆମମାନଙ୍କୁ ତୁମ ସଙ୍ଗ ଛାଡ଼ିବାକୁ କହ ।

ବିଶାଖା—ଇଶ୍, ଭାରି ବଡ଼ି ବଡ଼ି କଥା କହୁଚ ତ ?

ମଧୁ—ତୁମକୁ ଡରକରି କହିବେ ନାଇଁ ! ଚୋରର ପୁଣି ମୁହଁ ଟାଣ, ନା ?

ବିଶାଖା—ଚୋର ? କିଏ ଚୋର ? ତୁମେ ନା ଆମେ ?

ମଧୁ—ଆମର ରାଜ୍ୟ । ଆମର ବୃନ୍ଦାବନ । ରାଜା ଶ୍ରୀମାନ୍ ଶ୍ୟାମଚନ୍ଦ୍ର । ଆମ୍ଭେମାନେ ତାଙ୍କର ପାତ୍ରମନ୍ତ୍ରୀ । ଚୋରଣୀ ତୁମ୍ଭେମାନେ । ଅନେକ ଦିନୁ ଶୁଣିଲୁଣି, ପଲେ ଗଉଡୁଣୀ ଏ ବନର ସର୍ବସ୍ୱ ଲୁଟୁଚନ୍ତି । ସଖା ଆମର ଆଜନ୍ମ ବ୍ରହ୍ମଚାରୀ । ସେ ରମଣୀମୁଖ ଦେଖିବେ ନାହିଁ ବୋଲି ତମମାନଙ୍କୁ ଅନୁଗ୍ରହ କରି ଛାଡ଼ିଦେଉଥିଲେ । କଥା ଏଣିକି ବଳି ଗଲା । ବନର ପଶୁପକ୍ଷୀ ପର୍ଯ୍ୟନ୍ତ ତୁମ ନାମରେ ଅଭିଯୋଗ କଲେ । ନିତାନ୍ତ ସହି ନ ପାରି ଆଜି ଆମ୍ଭେମାନେ ବାଧ୍ୟ କରି ସଖାଙ୍କୁ ଏଠାକୁ ଆଣିଲୁଁ । ତୁମେମାନେ ଦୋଷୀ । ଦୋଷ ଗୋଟିଏ ନୁହେଁ । ବ୍ରହ୍ମଚାରୀଙ୍କ ଉପରେ ବିଘ୍ନ, ପୁଣି ରାଜ୍ୟର ଯଥାସର୍ବସ୍ୱ ଚୋରି । ରାଜ୍ୟର ପ୍ରଜାମାନେ ତୁମ୍ଭର ଏ କାର୍ଯ୍ୟରେ ଅସନ୍ତୁଷ୍ଟ ।

ବିଶାଖା—ଓଃ, ସର୍ବସ୍ୱ ? କିଏ ତୁମ ରାଜ୍ୟର ପ୍ରଜା ? କାହାର କ'ଣ ଆମ୍ଭେମାନେ ନେଲୁ ହେ ?

କୃଷ୍ଣ—ହଁ, ସର୍ବସ୍ୱ । କାହାର କ'ଣ ବା ତୁମେମାନେ ନେଇ ନାହିଁ ? କହିଣ ବନ୍ଧୁ !

ମଧୁ—ହଁ—

( ଗୀତ )

ପଦେ କଶଳୟ ଶୋଭାର ସମ୍ବଳ
ଲୁଚାଇଅଛ କି ନାହିଁ ?
ହଂସ ମତ୍ତକରୀ ଗମନ ଚାତୁରୀ
ଗଢ଼ିଛ ତ ଗତ ଠାଣି !
ଗୋ ଧନ ! ସତ ମିଛ ଆଜି ଯାଅ ମାନ ।
ଚୋରମୁଖେ ପୁଣି କଣ୍ଟୁବାଣୀ ଗୋ ଧନ ! ॥୧॥

ସ୍ୱର୍ଗ ରମ୍ଭା କରି- ଶୁଣୁ ଉରୁଦେଶେ
ଲୁଚାଇଅଛ କି ନାହିଁ ?
ସିଂହକଟୀ ଚୋରି- କରି ନିଜ କଟୀ-
ଶୋଭା ବଢ଼ାଅ କପାଇଁ—ଗୋ ସହି !
ଅଙ୍ଗେ କମଳ ମୁକୁଳ ବହି ।
ସାରା ବୃନ୍ଦାବନ ବନ ଦହି ॥ ୨ ॥
ବେଲ, କରିକୁମ୍ଭ ନ ଛାଡ଼ୁଛ ତୁମ୍ଭେ
ଅଶୋକ କଳିକା ଶୋଭା ।
କରତଳେ କପାଁ ଲୁଚାଇ ରଖିଛ
ଫୁଲ୍ଲ ଅରବିନ୍ଦ ଆଭା—ଗୋ ଗନ୍ଧ,
ସାଜ କୁସୁମ କି ମନ-ଲୋଭା ।
ଚୋରି ନୁହେଁ କି ଏସବୁ ଅବା ? ॥ ୩ ॥
ସଫରୀ, ଚକୋରୀ, ମୃଗୁଣୀ ନୟନ
ନୟନରେ ଅଛ ରଖି,
ଯମୁନା ଲହରୀ କେଶେ ଲୁଚାଇଛ
କି ଆଉ ରଖିଛ ବାକି, ଗୋ ସଖି !
ନୃତ୍ୟ ଛାଡ଼ିଲେଣି ଏବେ ଶିଖୀ ।
ପିକକଣ୍ଠ ତ ଯାଉଛି ଶୁଖି ॥ ୪ ॥
ବନ୍ଧୁଲ ଝଟକ ଶଶୀର ଛଟକ
ଅଙ୍ଗରେ, ମୁଖରେ ଜମା ।
କହୁଥିଲେ ଖଣ୍ଡେ ପୁରାଣ ହୋଇବ
ଏ ତୁମ୍ଭ ଚୋରି-ମହିମା—ଗୋ ବାମା !
ବନୁ ଲୁଚୁଛ ସବୁ ସୁଷମା ।
କେତେ କାଳ ପାଉଥିବ କ୍ଷମା ? ॥ ୫ ॥

ଶ୍ରୀମତୀ—ଲଳିତେ ! ଏମାନଙ୍କର କଥା ଶୁଣୁଛ ତ ? ମୋତେ ଏସବୁ ଭଲ ଲାଗୁନାହିଁ । ଏଠାରୁ ଗଲେ ରକ୍ଷା । ମୁଁ ଯାଏଁ ଚେଳବ ।

(ପ୍ରସ୍ଥାନୋଦ୍ୟତ)

କୃଷ୍ଣ—( ଶ୍ରୀମତୀଙ୍କ କାନି ଟାଣିଧରି ) ଅସମ୍ଭବ, କେଉଁଠାକୁ ଯିବ ? ଚୋରି କରି, ଧରାପଡ଼ି ପୁଣି ପଳାଇବାର ଚେଷ୍ଟା ! ବିନା ଦଣ୍ଡରେ ମୁକ୍ତି ଅସମ୍ଭବ ଧନି !

ଶ୍ରୀମତୀ—କାହାର କଅଣ ଚୋରି କଲି ? ମୁଁ ତ କିଛି ବୁଝି ପାରୁନାହିଁ ?

କୃଷ୍ଣ—ବୁଝିଲ ନାହିଁ ? ଏଇ ଯେ ବୃନ୍ଦାବନ—ମୁଁ ବନାଧୀପ । ତୁମେମାନେ ପ୍ରତିଦିନ ଏହିଠାରେ ଅତ୍ୟାଚାର ଆରମ୍ଭ କରିଦେଇଛ ।

ଲଳିତା—ଏ କ'ଣ ଶ୍ୟାମ ! ତୁମର ସାହସ ତ କମ୍ ନୁହେଁ ! ବନ ମଧ୍ୟରେ ରାଜନନ୍ଦିନୀ ସହିତ ଏ କି ବ୍ୟବହାର ?

( ଗୀତ )

ରହ ଦୂରେ, ଯାଅ ଦୂରେ
ଶଠ ଲମ୍ପଟ ନଟକୁଟିଆ !
ପର ରମଣୀର ପଣତ ଟାଣୁଛ
ପଡ଼ିଛ ତ ବଡ଼ ହଟିଆ । ୦ ।
ଦିନୁ ଦିନୁ ସତେ ସାହସ ବଢ଼ିଲା
ଛଡ଼ାଇ ଦେବି ମୁଁ ଏ ବଢ଼ାଇ
ବାଳୁତ ବୋଲି କେ ଦୟା ବହିବାରୁ
ଛଳେ ହେଲେ ଡର ଭୟ ନାହିଁ । ୧ ।
( ଛି ଛି ନିର୍ଲ୍ଲଜ ମୁଖେ ଲାଜ ନାହିଁ )
ଆଦର କରିବେ ଶୁଣିଲେ କି ନନ୍ଦ
ଏ ଗୁଣକୁ ଶଠ ନଟିଆ । ୨ ।

( କୃଷ୍ଣଙ୍କ ହାତ ଛଡ଼ାଇବାବେଳେ ତାଙ୍କ ଅଜାଣତରେ ବଂଶୀଟି ଖସିପଡ଼ିଲା । ଶ୍ରୀମତୀ ତାହା ଲୁଚାଇ ଗୋଟାଇ ନେଲେ । )

ବିଶାଖା—ଲମ୍ପଟ, ଲଜ୍ଜା କଅଣ ତୁମକୁ ଏକାବେଳକେ ଛୁଇଁନାହିଁ ? କି ଆଶ୍ଚର୍ଯ୍ୟ କଥା ! ଯଦି ତୁମେ ନିଜ ମୁହଁରେ ରାଜା ବୋଲି କହୁଛ, ତୁମ ରାଜ-ଧର୍ମରେ କଅଣ କୁଳନାରୀପ୍ରତି ଏହିପରି ଅତ୍ୟାଚାର କରିବା ଉଚିତ ବୋଲି ଲେଖାଅଛି ? ଛି, ଛି !

ମଧୁ—ବଡ଼ ଅସହ୍ୟ । ଗୋଟି ଗୋଟି କରି ଲତା-ବନ୍ଧନରେ ବାନ୍ଧି ରାଧାକୁଣ୍ଡ ନିକଟକୁ ନେଇ ଚାଲ, ଯେଉଁଠି ଏମାନଙ୍କର ବିଚାର ହେବ ।

ଲଳିତା—ଓଃ, ଚମକପଡ଼ିଲା । ରାଜ୍ୟ ! ରାଜା ! ପୁଣି ବିଚାର ! ବିଚାର ତ କୁଳନାରୀ କାନ ଟାଣିବା, ଅବଳାଙ୍କ ପଥ ଜଗିବା ! ଧନ୍ୟ ରାଜା, ଧନ୍ୟ ମନ୍ତ୍ରୀ !

କୃଷ୍ଣ—ବୁଝିଲ ନାହିଁ, ଏ ଯେ ଅତନୁର ରାଜ୍ୟ । ଏଇଭଳି ବିଚାର କେବଳ ମୋପକ୍ଷେ ସମ୍ଭବ ।

ମଧୁ—ବିଚାର ଅବିଚାର ବୁଝିବାର କ୍ଷମତା ତୁମ୍ଭର ନାହିଁ ନାରୀ ! ଇଚ୍ଛା ଅନୁସାରେ ଦୋଷୀଙ୍କୁ ଦଣ୍ଡ ଦେବାର ଆମର ପୂରା ଅଧିକାର ଅଛି । ରାଜା ସେ । ( ଶ୍ରୀକୃଷ୍ଣଙ୍କୁ ଦେଖାଇ )

ବିଶାଖା—ରାଜା, କି ରାଜା ହେ ! କେଉଁ ଦେଶର ?

ସୁବଳ—ଏହି ବୃନ୍ଦାବନର ।

ବିଶାଖା—ନାମ ତ କହିଲ ବୃନ୍ଦାବନ । ଆମ ସଖୀ ଏ ବନ ବସାଇଛନ୍ତି ।

ମଧୁ—କେଉଁ ସଖୀ ଗୋ ?

ଲଳିତା—ଆମ ସଖୀ ବୃନ୍ଦାଙ୍କ ନାମ ଅନୁସାରେ ଏ ବନର ନାମ ବୃନ୍ଦାବନ;—ଅଧିକାରିଣୀ ଶ୍ରୀମତୀ । ତୁମେ କି ଅଧିକାରରେ ଆମ ସଖୀଙ୍କ ମିତ୍ର-ପୂଜାରେ ବିଘ୍ନ ଘଟାଉଛ ? ରାଜ୍ୟ ତ ତୁମର ନୁହେଁ । ତୁମେ ଚୋର । ତୁମ ସଖା ବଡ଼ଚୋର । ଚୋରି କରି ତୁମ ସଖା ପୁଣି ରାଜା ବୋଲାଉଛନ୍ତି ?

ବିଶାଖା—କହ ଦେଖି, ବୃନ୍ଦାବନ ତ ବୃନ୍ଦାବନ, ଛୁର ଘାସବୁଦାଟିଏ ହେଲେ ତୁମେ ରୋଇଛ କି ?

ଲଳିତା—ଚକ୍ରବର୍ତ୍ତୀ କନ୍ଦର୍ପ ମୂର୍ଖ ନୁହନ୍ତି । ସେ ଆମ ବିହାର ଲଗି ଏ ବନ ଆମ୍ଭମାନଙ୍କୁ ଛୁଡ଼ିଦେଇ ଅଛନ୍ତି । ତୁମେ ଶ୍ୟାମ ! ବନର ରକ୍ଷକ ବୋଲି ମିଛ ବଡ଼େଇ କରୁଛ । ଟିକିଏ ହେଲେ ଲଜ୍ଜା ନାହିଁ ? ଛି !

ବିଶାଖା—ନିର୍ଲଜ୍ଜ ଜଣିଆର ତ ଟିକିଏ ପୁଣି ମାତ୍ରା ଅଛି ?

ମଧୁ—ହିଁ, ନୁହେଁ କଅଣ ? ଅଡ଼େଇ ଟୋପାରେ ପରା ମାତ୍ରାଏ ହୁଏ । ମଧୁ ବଇଦ ମୋତେ ଥରେ ବତେଇଥିଲେ ଏଇ ରସମୟୀ ସଖୀଙ୍କର ରସ-ଜ୍ୱର ହେଲେ ରସାୟନର ବ୍ୟବସ୍ଥା କରିବାକୁ ।

ଲଳିତା—ତୁନି ହୁଅ ବଟୁ ! ଯାଅ ଏଠାରୁ ପଶୁପାଳକ, ବନରେ ଗୋରୁ ଚରାଇବ ଯାଅ ।

ବିଶାଖା—କି ଆଶ୍ଚର୍ଯ୍ୟ କଥା ? ତୁମେ ବନରେ ଗୋରୁ ଚରାଇ ନୂଆ ଗଛ, ଲତା ପତ୍ର, କଅଁଳ ଘାସର ବଂଶ ଶେଷ କରୁଛ । ଆଉ ଏଣେ ବନର ପାଳକ, ବନର ରକ୍ଷକ, ବନର ରାଜା ବୋଲି କହି-ହଉଛ !

ଲଳିତା—ଆମମାନଙ୍କୁ ନିଷେଧ କରିବାକୁ କିଏ ହେ ତୁମେମାନେ ?

ମଧୁ—ସଖା ! ଆଦେଶ ଦିଅ ନା, ଲତା-ଦଉଡ଼ି ଆଣି ଗୋଟି ଗୋଟି କରି ବାନ୍ଧିନେବି ।

କୁନ୍ଦଲତା—ଶ୍ୟାମସୁନ୍ଦର, ଏତେ କଥା କାହିଁକି ? ତୁମେ ତ ଜାଣ, ଶ୍ରୀମତୀଙ୍କ ସୂର୍ଯ୍ୟପୂଜାଲଗି ଫୁଲ ଫଳ ନିତି ଆବଶ୍ୟକ । ତେବେ ଯଦିବା ତୁମର ରାଜ୍ୟ ହେଲା, ବାଟ ଓଗାଳିବା ତ ଉଚିତ ନ ଥିଲା ।

କୃଷ୍ଣ—କାହିଁକି ? କହିଥିଲେ ତ ମୁଁ ଆଗରୁ ନିଜେ ଫୁଲ ତୋଳି ଯୋଗାଇ ଦେଇଥାନ୍ତି । ନିକହି ନିପୋଛି ଏ ଅନଧିକାର ଚର୍ଚ୍ଚା କଲ କାହିଁକି ?

ମଧୁ—ହଁ, ସେଇ କଥା ପଚାରିବଟି ?

କୁନ୍ଦଲତା—ଦିଅ ତେବେ କୃଷ୍ଣ ! ତୁମେ ନିଜେ ଫୁଲ ତୋଳି ଦିଅ ।

କୃଷ୍ଣ—ଦେବି, ନିଅ । (ଫୁଲ ତୋଳୁ ତୋଳୁ କୁନ୍ଦଲତା ରାଧା କୃଷ୍ଣଙ୍କ କାନ ଗଇଣ୍ଠେଇବା) ନିଅ ରାଈ ! ଏଇ ଫୁଲରେ ମିତ୍ରପୂଜା କର । ନିଶ୍ଚେ ଅଭୀଷ୍ଟ ସିଦ୍ଧି ହେବ ।

ଲଳିତା—(କାନଗଣ୍ଠି ଧରି) କୁନ୍ଦଲତେ ! ଏ ତୁମରି କାର୍ଣ୍ଣି ନୁହେଁ କି ? କାହିଁକି, ତୁମର ଇଚ୍ଛା ଥିଲେ ନିଜର ଦେବର ଶ୍ରୀକୃଷ୍ଣଙ୍କ ସଙ୍ଗେ କାନ ଗଇଣ୍ଠେଇ ଦଉନାହିଁ । ଶ୍ରୀମତୀ କୁଳନାରୀ । ତାଙ୍କ ପ୍ରତି—

କୁନ୍ଦଲତା—କାହିଁ ? ମୁଁ ତ କିଛି ଜାଣିନାହିଁ ?

କୃଷ୍ଣ—ତାଙ୍କର ଦୋଷ ନୁହେଁ ଲଳିତେ !

ଲଳିତା—(ବାଧା ଦେଇ) ଥାଉ ଥାଉ । ଜଣାଅଛି ତୁମ କଥା । ତମର କାଠ ବାଉଁଶ, ପଥରଙ୍କ ସଙ୍ଗେ ଭାବ । ଆଦର କରିବାକୁ ଇଚ୍ଛା ଥିଲେ, ଆନନ୍ଦ ପାଇବାକୁ ମନ ଥିଲେ, ସେ କଦମ୍ବମୂଳକୁ ଯାଅ । ଚକା ପଥର ଉପରେ ଖଣ୍ଡିଆ କଣାକଣା ବାଉଁଶ ଖଣ୍ଡିକ ଧରି ବସ । ଉଠ, ଘୁଞ୍ଚ । ହାତ ଛାଡ଼ । ( ହାତ ଛଡ଼ାଇବା )

କୃଷ୍ଣ—(ଚମକି) ଆରେ ମୋ ବଂଶୀ ?

ସୁବଳ—ଏଁ, ବଂଶୀ ? କୁଆଡ଼େ ଗଲା ? ଆମେ ତ ଜାଣିନାହୁଁ ।

ମଧୁ—ଏଇମାନେ, ଏଇମାନେ । ଚୋରଣୀଗୁଡ଼ାକ । ସ୍ତ୍ରୀଙ୍କୁ କି ବିଶ୍ୱାସ ? ସଖା, ଉପଯୁକ୍ତ ଦଣ୍ଡଦେବା ଉଚିତ । ଆଉ ଦୟାମାୟା ନାହିଁ ।

ବିଶାଖା—କହୁଛ ! ସେ ଛଳ ଛାଡ଼ । ବଂଶୀ କୋଉଠେଇ ହଜାଇଥିବ, ତୁମେ ନିଜେ ସେ କଥା ଜାଣ । ଏଠି ଖୋଜିଲେ ଲାଭ ନାହିଁ । ଶୈବ୍ୟା ଅବା ପାଇ କରି ନେଇଥିବ । ଯାଅ, ସେଠି ଖୋଜ ।

ଲଳିତା—ଜାଣ ଶ୍ୟାମ ! ମୁଁ ଲଳିତା, ମୋ ଆଗରେ ବାୟୁ ମଧ୍ୟ ଶ୍ରୀମତୀଙ୍କ ଅଙ୍ଗ ଛୁଇଁପାରେ ନାହିଁ । ତୁମେ କେଡ଼େ ନିର୍ଲଜ୍ଜ ! ଶ୍ରୀମତୀ ସୂର୍ଯ୍ୟପୂଜା କରି ନାହାନ୍ତି, ତୁମେ ତାଙ୍କୁ ଛୁଇଁଦେଲ ?

ମଧୁ—ସଖା ! ତମରି ଗୁଣରୁ ସବୁ ଗଲା ! ଫୁଲ ଗଲା, ଫଳ ଗଲା, ରାଜ୍ୟ ଗଲା, ଶେଷକୁ ବଂଶୀଖଣ୍ଡିକ ବି ଗଲା । ଏମାନଙ୍କୁ ଏତେ ଦୟାମାୟା କାହିଁକି ହେ ?

ଲଳିତା—ଚାଲ ସଖି ! ରାଧାକୁଣ୍ଡକୁ ଚାଲ । ଛୁଇଁ ସାରିଲେଣି ତ ! ବେଗେ ଗାଧୋଇ ସୂର୍ଯ୍ୟପୂଜା କରିବା ।

( ଶ୍ରୀମତୀଙ୍କ ସହ ସଖିମାନେ ପ୍ରସ୍ଥାନ )

କୃଷ୍ଣ—ବନ୍ଧୁ, କଅଣ କରିବା ? ଚାହୁଁ ଚାହୁଁ ଏମାନେ ତ ଚାଲିଗଲେ ।

ମଧୁ—ଗଲେ ? ଯିବେ କେଉଁଠିକି ମ ? ରାଧାକୁଣ୍ଡକୁ ତ ଗାଧୋଇ ଗଲେ । ଦେଖିବା ସେଇଠି । ଗୋଟି ଗୋଟି କରି ଧରି ଖୋଜ, ତାପରେ ଛାଡ଼ିବା କି ?

ସୁବଳ—ହଁ, ସଖା ! ଚାଲ, ଏଥିକି ଏଡ଼େ ମନଦୁଃଖ କାହିଁକି ସେ ?

ମଧୁ— ( ଗୀତ )

ମୋହନ, ଚନ୍ଦ୍ରବଦନ, କହ ଧନ ! କହ ଧନ ।୦।
କି ଚୋରି ଲାଗି ଭାବନା, ତୋର ଏ କାଳଆସୁନା,
ଶୁଖିଯାଏ ଚାରୁଲପନ । ୧ ।
ନିଖିଳ ମାଧୁରୀ ତୁଳ ଏ ତୋ ନୟନଯୁଗଳ
ନିରବଧି ପୂରିଛି ବନ । ୨ ।

( ଶ୍ରୀକୃଷ୍ଣଙ୍କୁ ଘେନି ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ବୃନ୍ଦା ଗାଇ ଗାଇ ପ୍ରବେଶ )

ଶ୍ୟାମ-ବଂଶୀ ବାଜେ ଯେବେ ଗୋ, ମରମେ—
ନୟନେ କଜ୍ଜଳ ଘେନା,
ଅଧା ରହେ ଧନେ ଧନେ । ୧ ।
ଛଳ ଆଖି ନୀରଧାରେ
ବାଧା ଦେବ କେ ଗୋ ଘରେ,
ସୁନ୍ଦର-ହୃଦୟ-ଛନ୍ଦରେ, ମାତି ଗୋ !
ନାହିଁ ଅନ୍ତେ ରାତି ଗୋ,
ଶ୍ୟାମ ସଙ୍ଗେ ସାଥି ଗୋ,
ଧଇର୍ଯ୍ୟ ଧରିବ ବୋଲି,
ଭାବେଁ କେତେ ମନେ ମନେ । ୨ ।

ନାନ୍ଦ—ବୃନ୍ଦେ ! ବଡ଼ ଆନନ୍ଦରେ ଗୀତ ଗାଇ ଗାଇ ବୁଲୁଛ ଯେ ? ତେଣେ ଶ୍ରୀମତୀଙ୍କ ସୂର୍ଯ୍ୟପୂଜା କେତେ ଦୂର ଗଲାଣି ?

ବୃନ୍ଦା—ପ୍ରାୟ ସେମାନେ ରାଧାକୁଣ୍ଡ ନିକଟରେ ପହଞ୍ଚିବେଣି ।

ନାନ୍ଦ—ଶ୍ୟାମସୁନ୍ଦର ତେବେ କେଉଁଠି ? ସେ କ'ଣ ରାଧାକୁଣ୍ଡଠାରେ ?

ବୃନ୍ଦା—ଶୁଣିଲ ତ ବଂଶୀ ବଜାଇ ବସିଛନ୍ତି ।

ନାନ୍ଦ—କିପରି ?

ବୃନ୍ଦା—ପଥରେ ଶ୍ରୀମତୀଙ୍କ ସହିତ ଭେଟ । ସେତିକ-ବେଳେ ବଟେର ଶ୍ୟାମଚନ୍ଦ୍ର ବଂଶୀଟି ବଜାଇଛନ୍ତି । ସଖିମାନେ ପାଇଛନ୍ତି ।

ନାନ୍ଦ—ତେବେ ତ ଲୀଳା ଆଜି ବଡ଼ ମଧୁମୟ ହେବ ।

ବୃନ୍ଦା—ଚାଲ, ଲୁଚିରହି ସେ ଲୀଳା ଦେଖିବା ।

ନାନ୍ଦ—ମୁଁ ତ ବାହାରିଛି ସେଇଥିଲାଗି । ସୂର୍ଯ୍ୟ-ବେଦୀ ପାଖେ ତେବେ ଆଉ କିଏ ?

ବୃନ୍ଦା—ଧନିଷ୍ଠା ଥିଲେ, ମୁଁ ତାଙ୍କୁ ପୂଜାଭୋଗ, ଫୁଲ ସବୁ ରଖିବାକୁ ଦେଇ, କହି ଆସିଛି ।

ନାନ୍ଦ—ମୁଁ ତେବେ ଆସୁଛି । ଲୀଳାକୁଞ୍ଜ ପାଖେ ଦେଖାହେବ ।

ବୃନ୍ଦା—ହଉ । ( ନାନ୍ଦ ପ୍ରସ୍ଥାନ )

( ଗୀତ )

ଶ୍ୟାମ ସମ କେହି ଦିଶୁନାହିଁ ଗୋ ସହି !
ଶ୍ୟାମ ବିନା ହେବ ସିନା ବାଇ ଗୋ । ୦ ।
ଧନୀ ତା ବାଙ୍କ ଚାହାଣି ତ୍ରିଭଙ୍ଗ ନାଟଠାଣି
ବରଡ଼ିବ ସତେ କେହି ଚାହିଁ ଗୋ । ୧ ।
କୋଟିଏ କାମର ଶୋଭା ଶ୍ରୀମୁଖ କି ମନ-ଲୋଭା
ଲଭିବ ଯେ ଥିବ ସିନା ବାହି ଗୋ । ୨ ।

---

## ତୃତୀୟ ଦୃଶ୍ୟ

[ ଲଳିତା, ଶ୍ରୀମତୀ ଓ ସଖୀମାନେ—ପଥ ଜଗି ଶ୍ରୀକୃଷ୍ଣ ଦଣ୍ଡାୟମାନ । ]

ଲଳିତା— ( ଗୀତ )

ମୋହନ ଲାଜ ମାନ ଗଲା କେଣିକି ?
ରହ ଦୂରେ-ଯାଅ ଦୂରେ ପଥେ ରହିଛ କାହିଁକି
କୁଳବଧୂ ଜାଣ ନାହିଁ କି ? । ୦ ।
ବଙ୍କା ତୁମେ ନାମ ବଙ୍କା—ବଙ୍କା ତ୍ରିଭଙ୍ଗ ବଙ୍କା
ବାଙ୍କଚାହାଣିଟି ବଙ୍କା—ବଙ୍କା ଭ୍ରୂରୁ ଚୂଡ଼ା ବଙ୍କା
ବଙ୍କା ଠଙ୍ଗ ଚୂଡ଼ା ବଙ୍କା ! ପୀରତି-ପଥଟି ବଙ୍କା ।
ବଙ୍କା କଥା—ଦିଅ ପାଣିକି । ୧ ।

କୃଷ୍ଣ—ଲଳିତେ ! ଯାହା ଇଚ୍ଛା ତାହା କହିଯାଅ । ମୁଁ ସେଥିରେ ଡରି ଯାଉନାହିଁ । ମୋର ବଂଶୀ ନ ପାଇଲେ ମୁଁ ବସନ, ଭୂଷଣ ହରଣ କରି କୁଞ୍ଜ କାରାଗାରରେ ବନ୍ଦିନୀ କରି ରଖିବ । ଏ କଥା ନିଶ୍ଚୟ କରି ଜାଣ ।

କୁନ୍ଦଲତା—ଶ୍ୟାମସୁନ୍ଦର ! ବଂଶୀ କଅଣ ଶ୍ରୀମତୀଙ୍କ ପାଖରେ ଅଛି ?

( ତୁଳସୀ ଆଡ଼କୁ ଠାରିଦେଲେ )

କୃଷ୍ଣ—ତୁଳସୀ ! ତୁମେ ମୋ ବଂଶୀ ହରଣ କରିଛ । ଦିଅ ।

ତୁଳସୀ—ମୁଁ ରଖିଛି ? ମୋ ପାଖରେ ଦେଖ । ବିଶାଖାଙ୍କୁ ପଚାର ।

କୃଷ୍ଣ—ମୁଁ ବ୍ରହ୍ମଚାରୀ । ବନ ମଧ୍ୟରେ ରମଣୀମାନେ ମିଳି ମୋ ଉପରେ ବିଘ୍ନ ଘଟାଉଛ । ଚାଲ, ତୁମମାନଙ୍କୁ ଚକ୍ରବର୍ତ୍ତୀ ମଦନଙ୍କ ହସ୍ତରେ ଅର୍ପଣ କରିବ ।

ବିଶାଖା—ବଂଶୀ ଛଳକରି ତୁମେ ପର ରମଣୀଙ୍କ ଉପରେ ବାଧା ଦେବାକୁ ଏଠାକୁ ଆସିଛ ? ଶୈବ୍ୟା ତ ତମ ବଂଶୀ ହରଣ କରିଛନ୍ତି, ତୁଳସୀ ଦେଖିଛନ୍ତି । ଏଠି କାହିଁକି ଏ ନବରଙ୍ଗ ? ଯାଅ ଲମ୍ପଟ, ବାଟ ଛାଡ଼ ।

ତୁଳସୀ—ସୂର୍ଯ୍ୟପୂଜା ଲାଗି ଆମେମାନେ ଗାଧୋଇ କରି ଆସିଛୁଁ । ଛୁଅଁନା କହୁଛି । କଥା ଭଲ ହେବ ନାହିଁ ।

(ଲଳିତାଙ୍କ ଆଡ଼କୁ ଠାରି)

କୃଷ୍ଣ—ଲଳିତେ ! ତୁମେ ମୋ ବଂଶୀ ହରଣ କରିଛ, ତୁମକୁ ସମୁଚିତ ଦଣ୍ଡ ଦେବ । ତେବେ ଯାଇଁ ମୋ ବଂଶୀ ମିଳିବ ।

ଲଳିତା—ଧିଃ ! ମୁଁ ଲଳିତା । ମୋତେ ତୁମେ ଭଲ କରି ଜାଣ । ମୋ ପାଖରେ ବଂଶୀ ଯଦି ନ ଥାଏ, ତେବେ ତୁମର ଏ ଅତ୍ୟାଚାରର ସମୁଚିତ ପୁରସ୍କାର ପାଇବ ।

କୃଷ୍ଣ—ସେ କଥା ମୁଁ ଶୁଣିବି ନାହିଁ । ମୋ ବଂଶୀ ତୁମ ପାଖରେ ଅଛି । ନୋହିଲେ କେଉଁଠି ଅଛି ତୁମେ ନିଶ୍ଚୟ ଜାଣ । ଏଥିରେ ଅଦୌ ଭୁଲ ନାହିଁ ।

ବିଶାଖା—କୃଷ୍ଣ, ଦାତାପଣରେ ତ ପତାକା ବାନ୍ଧିଛ । ତୁମର ସେ ବଂଶୀ ବଡ଼ ଧନ । ସେ ଧନ ମିଳିଲେ ଅବା କେହି ସନ୍ଧାନ କରିଦେଲେ, କଅଣ ଦେବ ଆଗ କହିଲ ?

କୃଷ୍ଣ—ଯେ ମୋ ବଂଶୀର ସନ୍ଧାନ କହିଦେବ, ମୁଁ ତାକୁ ଅଙ୍ଗର ମଣିମାଳା, ଚୁମ୍ବକ ରତ୍ନ ଆଉ କରମର୍ଦ୍ଦନ ଫଳ ପୁରସ୍କାର ଦେବି । ଆଉ ଯେ ହରଣ କରିଥିବ ତାର ବସନ, ଭୂଷଣ ଇତ୍ୟାଦି ଲୁଟି ନେଇ କାମକୁଞ୍ଜ-କାରାଗାରରେ ବନ୍ଦିନୀ କରି ରଖିବି ।

ବିଶାଖା—ହିଁ ହିଁ, ଏକଥା ଯେ ବ୍ରଜରାଜସୁତଙ୍କୁ ସାଜିଲା ।

କୁନ୍ଦଲତା—ଯେବେ ସତ କହୁଥିବ କାହ୍ନୁ, ଜାଣିଥାଅ ବଂଶୀ ତୁମ ହାତରେ ।

( ଲଳିତାଙ୍କ ଆଡ଼କୁ ଠାରିଦେଲେ )

କୃଷ୍ଣ—ଲଳିତେ ! ତୁମେ ମୋ ବଂଶୀ ହରଣ କରିଛ । ଦିଅ, ନ ହେଲେ ମୋର ପ୍ରତିଜ୍ଞା ଅନୁସାରେ ଉଚିତ ଦଣ୍ଡ ପାଇବ ।

ଲଳିତା—ଲମ୍ପଟ, ମୁଁ ପିଲା ନୁହେଁ । ଏ ଧମକ ଅନ୍ୟ ଗୋପୀଙ୍କୁ ଦେଖାଅ ।

( ଗୀତ )

‘ ଯାଇଛି ତ ଯାଉ, ଗଲାଣି ତ ଯାଉ ।
ଗଲା ଧନ ଯାଉ
ପୋଡ଼ା ମୁରଲୀ ନ ମିଳୁ ଆଉ (ଶ୍ୟାମ)
ଏବେ ତ ଶୁଝିଲା ବାଉଁଶ କଣିକା
ଦେହିଯାକ ପୁଣି କଣା
ସ୍ୱର କି କଠୋର ବାଜିଲେ କରଇ
ନିଜଗତ ବୃଦ୍ଧି ବଣା । ୧ ।
ସବୁରି ଭଲକୁ ବାଉଁଶ ଖଣ୍ଡିକୁ
ଦଇବ ନେଲା ଛଡ଼ାଇ,
ଛଦାମେ ନଟହେବ ରାଜାପୁଅ ହୋଇ
ଭାଳୁଛ ପୁଣି କାହାଇ ? । ୨ ।
ଚନ୍ଦ୍ରାମଣି ଘର ଚରଣେ ନଚୁଇଁ
ଆମେ ରାଣ୍ଡ ସହଚରୀ,
ଘରର କଣିକାକୁ ଲୋଭ କରି, କହ
କାହିଁକି କରନ୍ତୁ ଚୋରି ? । ୩ ।

(ଗୀତ ମଝିରେ ଶ୍ରୀମତୀ ବଂଶୀ ଘେନି ପ୍ରସ୍ଥାନ)

ବିଶାଖା—ଯୁବରାଜ ! ମିଛରେ କାହିଁକି ଅବଳାଙ୍କୁ ଆକ୍ରମଣ ? ଲଳିତା କ'ଣ ତୁମ ବଂଶୀ ନେଇଛନ୍ତି ? ତୁମ ବଂଶୀ ଯେବେ ସତରେ ହଜିଛି, ମଲ୍ଲି ଆଉ ଭୃଙ୍ଗୀ ବୋଲି ଆମର ବଣୁଆ ଜାତିର ଯୋଡ଼ିଏ ସଖୀ ଅଛନ୍ତି । ମୁଁ ତାଙ୍କୁ କହିଲେ ସେ ଖଣ୍ଡେ ଛାଡ଼ ପାଞ୍ଚ ଖଣ୍ଡ ସେମିତି ବାଉଁଶ କଣି ଆଣିଦେବେ ।

କୁନ୍ଦଲତା—ଶ୍ୟାମ, ବଂଶୀ କ'ଣ ଏଠି ଅଛି ? ଯେ ନେଇଛି ସେ ତ ଏଠି ନାହିଁ ।

କୃଷ୍ଣ—ଆରେ, କାଇଁ ? ଶ୍ରୀମତୀ କାହାନ୍ତି ?

( ଚଉଆଡ଼େ ଚାହିଁଲେ )

ତୁଳସୀ—କେଜାଣି ! ଆମେ ଜାଣିଛୁ ?

କୃଷ୍ଣ—ଲଳିତେ ! ତୁମେ ତାଙ୍କୁ କୋଉଠି ଲୁଚାଇ ରଖିଛ, କୁହ ?

ଲଳିତା—ମୁଁ ଜାଣିନାହିଁ ! ମୁଁ ତ ଏଠି ତୁମ ପାଖେ ପାଖେ ଅଛି । ମୁଁ କ'ଣ କୁଆଡ଼େ ଯାଇଛି ଯେ ମୋତେ କହୁଛ ?

ତୁଳସୀ—କେଜାଣି ? ସୂର୍ଯ୍ୟପୂଜା କରିବାକୁ ଅବା ଯାଇଥିବେ ।

ବିଶାଖା—ଘରକୁ ଗିବେଣି ମ ।

ଲଳିତା—ହିଁ ହିଁ, ସତ କଥା । ତୁମ୍ଭଙ୍କର ଯୋଉ ଅତ୍ୟାଚାର, ସେଥିରେ ସେ ଘରକୁ ପଳାଇ

ଜଟୀଲାଙ୍କ ଆଗେ ସବୁକଥା କହିବାର ମଧ୍ୟ ଅସମ୍ଭବ ନୁହେ ।

କୃଷ୍ଣ—ସେ ସବୁ ଥାଉ । ରାଣ୍ଡ କାହାନ୍ତି, କହ । ନୋହିଲେ ସମସ୍ତେ ଉଚିତ ଦଣ୍ଡ ପାଇବ ।

କୁନ୍ଦଲତା—କେଜାଣି କୃଷ୍ଣ, ଧନ ତୁମର ହଜିଛି ସିନା । ଆମେ କାହିଁକି ଖୋଜିବୁଁ ? ତୁମେ ଯାଇ ନିଜେ ଖୋଜ୍ ନାହିଁ ।

କୃଷ୍ଣ—ଲଳିତେ ! ମୁଁ ଗଲି, ଦେଖିବ । ଯଦି ବଂଶୀ ମିଳେ ତ ଭଲ, ନୋହିଲେ ଆସି ତୁମରଠାରୁ ଆଦାୟ କରିବ । ଏକଥା ନିଶ୍ଚୟ ବୋଲି ଜାଣ ।

( ପ୍ରସ୍ଥାନ )

ଲଳିତା—(ହସି) ଜାଣିଛି । ବଂଶୀ ଯାହା ଲାଗି, ତାକୁ ପାଇ ଆଗେ ବୋଧହୁଅ । ଆସ ସଖି ! ରାଧା-କୁଣ୍ଡକୁ ଆସ, ବେଗେ ଗାଧୋଇ ସୂର୍ଯ୍ୟପୂଜା କରିବା ।

( ଏକ ବାଟରେ କୃଷ୍ଣ, ଅନ୍ୟ ବାଟରେ ସଖୀମାନେ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

**[ ବୃନ୍ଦା ଗାଇଗାଇ ପ୍ରବେଶ କଲେ ବଂଶୀହସ୍ତେ ତନ୍ମୟ ଭାବେ । ]**

( ଗୀତ )

ଏ ମୁରଲି ! ମନେ ପଡ଼ୁ ନାହିଁକି ତୋର—
ସୁଧା ଅଧର ?
ଭୁଲି କି ରହିଲୁ ସୁଖେ ସତେ ସେ
ମୋହନ ସ୍ୱର ? । ୦ ।
ନ ଡାକିଲେ ରାଧା ରାଧା
ନ ହେବ କି ପ୍ରାଣେ ବାଧା
ତୋ ବିନା ବରଜବଧୂ
ବଞ୍ଚିବ କି ପ୍ରାଣବନ୍ଧୁ !
ଫୁଟିବ କି ସରମ ମୁଖେ
ହାସ ମଧୁର ? । ୧ ।
ଗୋଠବାହୁଡ଼ାକୁ ଚାହିଁ
ଯଶୋଦା ହେବେ ତ ବାଇ
ଭୁଲି କି ଓଡ଼ଣାଟଣା
ଯନ୍ତ୍ରଣା ନ ହେବ ବଣା ?
କୁଞ୍ଜପଥ ଭେଟିକୁ ସତତ
ନ ହେବ ଅଧୀର । ୨ ।

(ବଂଶୀ ଧରି) ସତେ ଆଜ ବୃନ୍ଦାର ଭାଗ୍ୟ ହସିଛି । ତୋର ଶ୍ରୀଅଙ୍ଗ ପରଶରେ, ସେ ସୁଖ ମିଶି ରହିଛି । ଡାକ ବଂଶୀ, ଡାକ ଥରେ । ଥରେ ସେଇ ଯମୁନାର ଛଳଛଳ ତରତର ତରଙ୍ଗ ପରଶି, ସେଇ ଯେ ମଳୟର ଶୃଢ଼ୁ ସୁବାସ ଭାସି ଭାସି ଆସେ—ଗାଅ ଥରେ ମୁରଲି ସେଇ ମଧୁର କଣ୍ଠରେ, "ଜୟ ରାଧେ, ଶ୍ରୀରାଧେ, ବୃନ୍ଦାବନ-ବିଳାସିନୀ ରାଧେ"। ଦେଖି ଧୈର୍ଯ୍ୟ ଧରୁ ବିନୋଦିନୀ । ଘନଶ୍ୟାମଙ୍କର ଆଦରର ଧନ ମୁରଲି ! ଡାକ ଦେଖି, ଡାକ ଥରେ, ଅଭିମାନିନୀର ମାନଭଞ୍ଜନ କର, ଅଭିସାରିଣୀକି ପାଗଳିନୀ କର, ସୋହାଗିନୀକୁ ଆଦରିଣୀ କର । ଗାଅ ଥରେ ମୁରଲି, "ଜୟ ରାଧେ, ଶ୍ରୀରାଧେ ବୃନ୍ଦାବନ-ବିଳାସିନୀ ରାଧେ ।" ( ସ୍ୱରରେ ଗାଇଲେ)

ବଟୁ—(ତନ୍ମୟଭାବେ ପ୍ରବେଶ) ଆହା ହା ! ପ୍ରାଣ ପୁଲକି ଉଠିଲା । ଦେଇ ଫେର୍ ହରିନେଲ ବୃନ୍ଦେ ! ଶୁଣାଅ, ଶୁଣାଅ, ଆଉ ଥରେ ସେଇ ମଧୁର କଣ୍ଠରେ—

ବୃନ୍ଦା—କିଏ ? ବଟୁ !

ବଟୁ—ହଁ, ବୃନ୍ଦେ ! ଆଉ ଥରେ, ଆଉ ଥରେ ଶୁଣାଅ ।

ବୃନ୍ଦା—କଣ ଶୁଣିଲ ? କ'ଣ ଶୁଣାଇବ ବଟୁ ?

ବଟୁ—ଶୁଣିଛି, ଅନେକ ଶୁଣିଛି । କାନରେ ଶୁଣିଛି, ମନରେ ଶୁଣିଛି । ପୁଣି କାନମନ ଏକାଠି କରି ଶୁଣିଛି । କାହିଁ ? ଆଶା ତ ମେଣ୍ଟିଲା ନାହିଁ ? ଶୁଣାଅ ବୃନ୍ଦେ । ଗାଅ ସଖି !

( ଗୀତ )

ଗାଅ, ଗାଅ ସେଇ ରାଧା ରାଧା । ୦ ।
ଜୟ ବୃନ୍ଦାବନେଶ୍ୱରୀ ରସମୟୀ ରାଧା
ମୋହନ ମନମୋହିନୀ ସରଗର ସେଇ
ସୁଖ-ସୁଧା । ୧ ।
ଶ୍ୟାମ ବାମ-ବିହାରିଣୀ ମଧୁରହାସିନୀ,
ଗାଇ ସେଇ ନାମ ଥରେ ହର ମୋର
ମରମର ବାଧା । ୨ ।

ବୃନ୍ଦା—ଭସାଇ ଦେଲ ଯେ ମଧୁ ! କେଉଁଠୁ ଆସିଲ, କାହିଁକି ବା ଆସିଲ ?

ମଧୁ—ତେବେ, କଣ ଅପରାଧ କଲି ?

ବୃନ୍ଦା—କଲ ନାହିଁ ? ଏ କଥା ପୁଣି ପଚାରିବାକୁ ଥିଲା ବନ୍ଧୁ ?

ମଧୁ—କଣ କଲି ?

ବୃନ୍ଦା—କେତେ ଦୂରରେ ଥିଲି, ଦେଖୁଥିଲି ସେ ଯୁଗଳଛବି । କି ମଧୁର ! କି ଲଳିତ ! ବଡ଼ ଚୋର ତୁମେ—ବଡ଼ଚୋର । ମୋର ସବୁ ଭାବ, ସବୁ ସୋହାଗ ଚୋରାଇ ନେଲ । ବଡ଼ ଚୋର ତୁମେ, ବଡ଼ ଚୋର ।

ମଧୁ—ଚୋର ମୁଁ ନା ତୁମେ ? ବୃନ୍ଦେ ! ଏଇ ଯେ ବୃନ୍ଦାବନର ସାରଧନ ଚୋରାଇ ଧରିଛ, ହରିର ଶିର ଲୁଟିନେଇଛ, କଙ୍ଗାଳମାର ଧନ ଲୁଚାଇ ରଖିଛ—ଏଇ ଧନ ଗୁଡ଼ ସଖା ଯେ ତେଣେ ଅତି ଅଧୀର । କିଏ ତେବେ ଚୋର ?

ବୃନ୍ଦା—ମାନବି ନାହିଁ, ମାନବି ନାହିଁ । ସହଜେ ତ ଦେବି ନାହିଁ । ଦେଖିବ, ବଂଶୀଧାରୀଙ୍କ ବଂଶୀ ଛଡ଼ା ସାଜେ କି ନାହିଁ । ଏ ମୁରଲୀ ଆଉ କାହା ହାତେ ବାଜେ କି ନାହିଁ । ବନ୍ଧୁ ! ମୁଁ ଏହା ଶ୍ରୀମତୀଙ୍କ ନିକଟରୁ ପାଇଛି । ଚୋରାଇ ନାହିଁ ତ; କିନ୍ତୁ—କିନ୍ତୁ ମୋ ଆଖିଆଗରୁ ସେ ଯୁଗଳ-ଛବିଟି କାଢ଼ିନେଲା କିଏ ? ତୁମେ, ତୁମେ ତ ନେଲ ?

ମଧୁ—ତୁମେ ତେବେ ଆମ ଧନ ଦିଅ । ମୁଁ ଯେବେ ତୁମ ଧନ ନେଇଛି ବୋଲି କହୁଛ, ଆସ ବୃନ୍ଦେ ! ଦେବି, ଆସ, କଳ୍ପନା ନୁହେଁ—ସତ୍ୟ ! ଦେଖିବ ଆସ କେଡ଼େ ସୁନ୍ଦର ସେ ଛବି ।

ବୃନ୍ଦା—ଯିବି ତେବେ ?

ମଧୁ—ଆସ ଆସ ସନ୍ଧି !

( ଗୀତ )

ଦେଖିବ ଦେଖିବ ଆସ ସରଗର ହାସ
ନବ ନୀଳଘନେ ସଖି, ବିଜୁଳି ବିଳାସ ଗୋ,
ତମାଳ କୋମଳ ତନୁ ସୁନା ଲତା ଘେରି
କେତକୀ ଭ୍ରମର ବେନି ଶୋଭି ମନହାରି ଗୋ ।୧।
ଶୋଭି ଶିର ଲୁଟିଛି ରେ
ମଞ୍ଜୁଳେ ବହେ ମନ୍ଦ ମଳୟ
ଶୋଭି ଶିର ଲୁଟିଛି ରେ
କୁଞ୍ଜେ କୁଞ୍ଜେ ଗନ୍ଧ ବହଇ (ଶୋଭି)
କୋଟି କାମରୂପ ସତେ ହାରି ତ ମାନିଛି ଗୋ ।୧।

(ମଧୁ ଗାଇ ଗାଇ ପ୍ରସ୍ଥାନ, ବୃନ୍ଦା ଅନୁଗାମିନୀ ହେଲେ)

---

## ପଞ୍ଚମ ଦୃଶ୍ୟ

( କୁଞ୍ଜଦ୍ୱାରେ ଶ୍ରୀମତୀଙ୍କ କାନ ଧରି ଶ୍ରୀକୃଷ୍ଣ )

ଶ୍ରୀମତୀ— (ଗୀତ)

ଛି ଛି ଅଞ୍ଚଳ ଛାଡ଼ ଶ୍ୟାମ !
କପଟ ଲାଜହୀନ ଲମ୍ପଟଶେଖର !
ବୁଡ଼ାଇଲ ବ୍ରଜପୁରୀ କୁଳବତୀ ଧାମ । ୧ ।

କୃଷ୍ଣ—ଶ୍ରୀମତୀ ! ତୁମେ ବୃନ୍ଦାବନେଶ୍ୱରୀ । ଜଣେ ସାମାନ୍ୟ ପ୍ରଜାର ଆଶା ପୂରଣ କରିବାକୁ ଏଡ଼େ କୁଣ୍ଠିତା କାହିଁକି ? ଆସ, ରାଜରାଜେଶ୍ୱରି ! ଆଜ ଏ ବନଫୁଲରେ ଶ୍ରୀଅଙ୍ଗ ସଜାଇ ଦିଏଁ । ଆଦେଶ ଦିଅ ଧନି ! ଏ କୁସୁମ ଉପହାର ଗ୍ରହଣ କର ।

ଶ୍ରୀମତୀ—ଛାଡ଼ ଶ୍ୟାମ ! କେହି ସଖୀ ଯଦି ତୁମର ଏ ବ୍ୟବହାର ଦେଖେ, ଆଉ ବାକି ରହିବଟି ? ବ୍ରଜ-ବଜାରରେ ମୋର ଦଶା କଅଣ ନ ହେବ ?

(ହାତ ଛଡ଼ାଇଲେ)

କୃଷ୍ଣ—ଥରେ ମାତ୍ର ଅନୁମତି ଦିଅ ରାଣି ! ମନର ଏ ଏକାନ୍ତ ବାସନା ପୂରଣ କର । ସଜାଇ ଦିଏଁ ଆଜି—

(ହାତ ଧରି ଗୀତ)

ଶରଦ ଶଶୀ ନିରେଖି ଗଗନେ,
ଚକୋର ଫେରେ କି ନିରାଶ ମନେ ଗୋ
କଳପ ଲତାକୁ ସେବି ଗୋ
କଳପକ କାଳ କଟିଯିବ ସତେ
ଫଳ ଲାଗି ଭାବି ଭାବି ଗୋ । ୧ ।
ବିକଚ କମଳଦଳ ସରସ
ମଧୁପାନେ ଭୃଙ୍ଗ ହେବ ନିରାଶ ଗୋ
କହ ରାଜରାଜେଶ୍ୱରୀ ଗୋ !
ବିମୁଖ ହେଲେ ମୁଁ ତବ ରାଜଧର୍ମେ
ଲାଜ ନୁହେଁ କି କିଶୋରୀ ଗୋ । ୨ ।

( ହଠାତ୍ ଲଳିତାଙ୍କ ପ୍ରବେଶ । କାନ୍ଧ ଛାଡ଼ି ଶ୍ରୀକୃଷ୍ଣ ମୁହଁ ପୋତି ଛିଡ଼ାହେଲେ )

ଲଳିତା—ଏ କି ଆଶ୍ଚର୍ଯ୍ୟ କଥା ? ରାଇ ! ଆମ୍ଭମାନଙ୍କୁ ଛାଡ଼ିଦେଇ ତୁମେ ଏକା କପରି ଏଠାକୁ ଆସିଛ ? ଶ୍ୟାମ ! କି ନିର୍ଲଜ ତୁମେ ? ତୁମର ଆଉ ଏ ଗୁଣଟା ଛାଡ଼ି ଗଲାନାହିଁ, ଏ କଅଣ ? ତୁମେ ଆମ ଶ୍ରୀମତୀଙ୍କ ପାଖରେ କାହିଁକି ? ଅବଳା ସେ, ଏକୁଟିଆ ଦେଖି ବାଟ ଜଗି ରହିଅଛ ? ଚାଲ, ଆଜି ଯଶୋଦାଙ୍କ ପାଖକୁ ।

କୃଷ୍ଣ—ଲଳିତେ ! ଜାଣ ତ ବଂଶୀ ମୋର ପ୍ରାଣ । ଶ୍ରୀମତୀ ମୋ ବଂଶୀଟି ଚୋରାଇ ଆଣି କୁଞ୍ଜରେ ଲୁଚଥିଲେ । ଖୋଜି ଖୋଜି ଏବେ ଧରାପଡ଼ିଛନ୍ତି । ମୁଁ ତାଙ୍କୁ ସେଇ ବଂଶୀ ମାଗୁଥିଲି । ଆଉ ତ କିଛି ନୁହେଁ । ଏଥିରେ ମୋର ଦୋଷ କଅଣ, କହିଲ ?

ଲଳିତା—ଶ୍ରୀମତୀ ! ଏକଥା ବ୍ରଜରେ ଶୁଣିଲେ ଆଉ ତୁମ ମହତ ରହିବ ଟି ? ଏକାକୀ କୁଞ୍ଜବନରେ ଲୀଳା ଲାଗିଛି, ନା ? ଜଟିଳା, କୁଟିଳାଙ୍କୁ କହି ଏଇଥର ତୁମର ବଣବୁଲା, ସୂର୍ଯ୍ୟପୂଜା ସବୁ ବନ୍ଦ କରି ଦେଉଛି । ତୁମର ତ ଦେଖୁଛି ଭାରି ସାହସ ! ଏକା ପଳାଇ ଆସି ଏଠି ପହୁଞ୍ଚିଛ ? ଟିକିଏ ଲାଜ ନାହିଁ ? ଆସ, ମୋ ସାଙ୍ଗରେ ପୁରକୁ ଆସ ।

(ଶ୍ରୀମତୀଙ୍କୁ ନେଇ ପ୍ରସ୍ଥାନୋଦ୍ୟତ)

କୃଷ୍ଣ—(ବାଟ ଓଗାଳି) ତେବେ ମୋ ବଂଶୀ ? ବଂଶୀ ନ ଦେଲେ ତ ମୁଁ ଛାଡ଼ିବି ନାହିଁ ।

ଲଳିତା—ଯାଅ ଧୃଷ୍ଟ ! ଲଳିତା ସାଙ୍ଗରେ ପୁଣି ଖେଳୁଛ ?

( ବୃନ୍ଦା ଓ ଅନ୍ୟ ସଖିମାନଙ୍କର ପ୍ରବେଶ )

ବୃନ୍ଦା—କ'ଣ ଲଳିତା ! ଏ କି ଗୋଳମାଳ ?

ଲଳିତା—ଆସିଲଣି ତ ସମସ୍ତେ । ଦେଖ, ଶ୍ରୀମତୀ ସୂର୍ଯ୍ୟ-ପୂଜା କରିବାକୁ ଆସି ଏଠି ଏକୁଟିଆ ପହୁଞ୍ଚିଛନ୍ତି । ପାଖରେ ପୁଣି ଏ ଧୃଷ୍ଟ ।

ବୃନ୍ଦା—ସତେ ଶ୍ୟାମ ! ଏ କି ଲୀଳା ତୁମର ? ବନ ମଧ୍ୟରେ ଲଜ୍ଜାଶୀଳା କୁଳବଧୂକୁ ଦେଖି ହଟହଟା କରିବାକୁ ସାହସ କରୁଛ ?

କୃଷ୍ଣ—ବୃନ୍ଦେ, ଶ୍ରୀମତୀ ମୋ ବଂଶୀ ଚୋରାଇ ଆଣି କୁଞ୍ଜରେ ଲୁଚିଥିଲେ । ଖୋଜି ଖୋଜି ଏବେ ଧରାପଡ଼ିଛନ୍ତି । ମୋ ବଂଶୀ ନ ପାଇଲେ ମୁଁ ଭଲା ଛାଡ଼ିବି କପରି କହିଲ ?

ବୃନ୍ଦା—ବଂଶୀ ? ବଂଶୀ ତୁମ ହାତଛଡ଼ା ହେଲା କେମିତି ?

କୃଷ୍ଣ—କେଜାଣି ? ମୁଁ ଜାଣିନାହିଁ ।

ବୃନ୍ଦା—ତେବେ ଶ୍ରୀମତୀ ନେଇଛନ୍ତି ବୋଲି କପରି ଜାଣିଲ ?

ଶ୍ରୀକୃଷ୍ଣ—ମୁଁ ଜାଣିପାରୁଛି ସେ ଚୋରିକରି ନେଇ ପଳାଇ ଆସିଛନ୍ତି ।

( ପବନଦ୍ୱାରା ବଂଶୀ ବାଜିଉଠିଲା—ବୃନ୍ଦା ଇତସ୍ତତଃ ହେଲାବେଳେ କାଖରୁ ବଂଶୀ ଖସିପଡ଼ିଲା ଓ ବୃନ୍ଦା ଲାଜରେ ଛିଡ଼ାହେଲେ)

ଲଳିତା—କି ଧୃଷ୍ଟ ! ବଂଶୀ ପରା ଶ୍ରୀମତୀ ନେଇଥିଲେ ? ଏବେ ଏ କଅଣ ?

କୁନ୍ଦଲତା—ଶ୍ୟାମ, ବଂଶୀ ତ ମିଳିଲା । ବାକି ତୁମେ ଯେଉଁ ସତ୍ୟ କରିଥିଲ—ଯେ ବଂଶୀ ନେଇଥିବ ତାକୁ ଦଣ୍ଡ ଦେବ ବୋଲି, ଏବେ ବୃନ୍ଦାଙ୍କୁ ଦଣ୍ଡ ଦିଅ ।

ବୃନ୍ଦା—ମୁଁ ତ ବଂଶୀ ଚୋରିକରି ନାହିଁ । ଏ ବଂଶୀ ଶୈବ୍ୟା ହାତରେ ଥିଲା । ଗୋଟିଏ ମାଙ୍କଡ଼ ତାକୁ ଛଡ଼ାଇ ଆଣି ନନ୍ଦୀମୁଖୀଙ୍କ ଆଗରେ ପକାଇ ଦେଲା ।

ବିଶାଖା—ସେଥିରୁ କି ମିଳିବ ଆମର ? ସେ ତାଙ୍କୁ ଦଣ୍ଡ ଦିଅନ୍ତୁ ଅବା ନ ଦିଅନ୍ତୁ । ଚାଲ ଲଳିତେ, ଶ୍ରୀମତୀଙ୍କୁ ନେଇ ଚାଲ । ଆଉ ଦିନେ ଏ ବନକୁ ଆସିବା ନାହିଁ ।

ଲଳିତା—ଏ କିପରି କଥା ? ଲମ୍ପଟ ! ତୁମେ ଯେ ରାଜନନ୍ଦିନୀ ଶ୍ରୀମତୀଙ୍କୁ ଚୋରୁଣୀ ଅପବାଦ ଦେଉଥିଲ, ପୁଣି ଏତେବେଳଯାଏ ପଥରୋଧ କରିଅଛ,—ଏ ଅତ୍ୟାଚାରର ପ୍ରାୟଶ୍ଚିତ୍ତ କର । ଶ୍ରୀମତୀଙ୍କୁ କ୍ଷମା ମାଗ,—ମାଗ ।

ଶ୍ରୀକୃଷ୍ଣ—(ନୀରବରେ ଛିଡ଼ାହେଲେ)

ବିଶାଖା—ଶ୍ୟାମ ! ଆଉ ବିଳମ୍ବ କାହିଁକି ? ମାଗ, ଶ୍ରୀମତୀଙ୍କୁ କ୍ଷମା ମାଗ ।

ଶ୍ରୀକୃଷ୍ଣ—( ପୂର୍ବବତ୍ )

ବିଶାଖା—ମାଗ ।

( ଶ୍ରୀକୃଷ୍ଣ କ୍ଷମା ମାଗିବାବେଳେ ଶ୍ରୀମତୀ ହାତ ଧରି ପକାଇବା ଓ ବୃନ୍ଦା ହସି ଦୁହିଁଙ୍କ ମିଳନ ସଜାଇବା ବେଳେ ସଖୀମାନେ ଗୀତ ଗାଇଲେ )

( ଗୀତ )

ଏବେ ସହି ସାଜିଲା ଭୁବନ
ଶ୍ୟାମ ବାମେ ରାଈ
କିବା ଶୋଭା ସହି, ସାଜିଲା ଭୁବନ ।୦।
କୁଞ୍ଜ ଭବନ ହସେ ଦରଦର,
ମଞ୍ଜୁ ପବନ ବହେ ଧୀର ଧୀର
ନୀପବନ, ଉପବନ କି ଶୋଭନ !
ସରଗ ବରଷେ ସରସ ସୁମନ । ୧ ।

(ପଟ୍ଟପତନ)



# ସୂଚନା

'କୌତୁକ ଚନ୍ଦ୍ରାମଣି' ବିଷୟଗତ ଭାବେ ପୁରାଣାନ୍ତର୍ଗତ ହେଲେହେଁ ନାମତଃ ସେଭଳି ନୁହେଁ । କେବଳ ନବକୌତୁକୀ ରସିକଶେଖର ଶ୍ୟାମସୁନ୍ଦରଙ୍କର କୌତୁକାବଦ୍ଧ ବିଷୟ-ପ୍ରାଧାନ୍ୟ ହେତୁ ନାଟକଟିର ଏଭଳି ନାମକରଣ କରାଯାଇଅଛି ।

ପ୍ରେମଗର୍ବିଣୀ ଚନ୍ଦ୍ରାବଳୀଙ୍କ ସହଚରୀ ପଦ୍ମାଙ୍କର ଶ୍ରୀକୃଷ୍ଣଙ୍କୁ ଚନ୍ଦ୍ରାବଳୀଙ୍କ ସହିତ ମିଳନ ଲାଗି ବିବିଧ କୂଟ ଚେଷ୍ଟା ଆଉ ଅନ୍ୟପକ୍ଷରେ ଭକ୍ତପ୍ରବର କୃଷ୍ଣସଖା ମଧୁମଙ୍ଗଳଙ୍କର ପଦ୍ମାଙ୍କ ପ୍ରୟାସ ବ୍ୟର୍ଥ କରିବା କାରଣ କପଟ ନୀତି ପ୍ରୟୋଗ ହିଁ ଏହି ନାଟ୍ୟାଭିନୟର ବିଶେଷତ୍ୱ ।

ନୂତନ ଓ ପୁରାତନ ବିବିଧ ରାଗରାଗିଣୀର ସଙ୍ଗୀତରେ ନାଟକଟି ପୂର୍ଣ୍ଣ । ଏକସ୍ୱରର ଦୁଇଟି ସଙ୍ଗୀତ ନାଟକରେ ଦିଆଯାଇ ନାହିଁ । କେହି ଏହା ଅଭିନୟ କରିବାକୁ କୌଣସି ବିଷୟରେ ସାହାଯ୍ୟ ଆବଶ୍ୟକ କଲେ ମୁଁ ଆନନ୍ଦର ସହିତ ସାଧ୍ୟମତେ ତାଙ୍କୁ ଉତ୍ସାହିତ କରିବାକୁ ପ୍ରସ୍ତୁତ ଅଛି ।

ମୋର ରାସଦଳ ପୁରୀ ଏବଂ କଟକରେ ଅଭିନୟ କରୁଥିବାବେଳେ ଏହି ନାଟକର ଅଭିନୟ ସଂଦର୍ଶନ କରି ସର୍ବସାଧାରଣ ପରମପ୍ରୀତି ଲାଭ କରିଥିଲେ ।

**କାଳୀଚରଣ**

୭-୩-୨୭

# ପରିଚୟ

## ପୁରୁଷବର୍ଗ

ଶ୍ରୀକୃଷ୍ଣ, ମଧୁମଙ୍ଗଳ, ସୁବଳ, ସୁଦାମ, ଦାମ, ଅଭିମନ୍ୟୁ (ଶ୍ରୀମତୀଙ୍କ ସ୍ୱାମୀ)
ଗୋବର୍ଦ୍ଧନ ମଲ୍ଲ ( ଚନ୍ଦ୍ରାବଳୀଙ୍କ ସ୍ୱାମୀ )

## ସ୍ତ୍ରୀବର୍ଗ

ଶ୍ରୀମତୀ, ଲଳିତା, ବିଶାଖା, ତୁଳସୀ, ବୃନ୍ଦା, କୁଟିଳା, ଚନ୍ଦ୍ରାବଳୀ, ପଦ୍ମା ଓ ଶୈବ୍ୟା ( ଚନ୍ଦ୍ରାବଳୀଙ୍କ ସଖୀଦ୍ୱୟ ) ପୌର୍ଣ୍ଣମାସୀ ଓ ରସମଞ୍ଜରୀ ।



# କୌତୁକ ଚିନ୍ତାମଣି

( ନାଟକ )

## ପ୍ରସ୍ତାବନା

### କୁଞ୍ଜଦୋଳାରେ ଶ୍ରୀକୃଷ୍ଣ

( ଗୋପବାଳାଗଣଙ୍କ ନୃତ୍ୟସହ ଗୀତ )

ସଖି ରେ, ଚାହାଁ ନବକିଶୋର ସୁଷମା ରେ
ସରସେ ବସନ୍ତ ହସେ     ସୁରସେ ଧରା ବିକଶେ
ନିଖିଳ ମାଧୁରୀ ତୁଳ ଶରଦ ଚନ୍ଦ୍ରମଣ୍ଡଳ
ବିହରେ କି ଧରାଧାମେ, ଚାରୁ କାମ ଗରିମା ।

( ପଦ )

କୁନ୍ଦ ନିନ୍ଦେ ଚାରୁ ଦନ୍ତପନ୍ତି ଯାର
ମୀନକେତନ-ଧନୁ ଭଙ୍ଗି ଭ୍ରୂରୁ କି ଚାରୁ
ଅଙ୍ଗ ମହକେ ପାରିଜାତ ସୁମନହାର
ସଙ୍ଗ ଲୋଡ଼ଇ ଯତି-ମାନସ ସୁରବର ରେ ।

---

### ପ୍ରଥମ ଅଙ୍କ— ପ୍ରଥମ ଦୃଶ୍ୟ

[ ସୂର୍ଯ୍ୟୋଦୟର ପୂର୍ବ—ବ୍ରଜ ବନପଥରେ ଏକାକୀ ମଧୂମଙ୍ଗଳ ]

( ଗୀତ )

କା' ନିକୁଞ୍ଜେ ପୁହାଇ ରାତି
ଆସିଲ ରଙ୍ଗେ ନାଗର ଗୋ ?
ଡାକିଦେଲା କି କଜ୍ଜଳପାଖି
ଫୁଲଶେଯ ଭୁଲି ରସସାଗର ! ।୦।

ହା ! ହୁତାଶ ବିରହତାପ ଗିରିଷମେ ସହି ସହିବ !
ବୁକୁଟି ଫାଟେ, ମନ ଉଗୁଟେ
ପାତୁଛି ଆଶା-ଅଞ୍ଚଳ ଗୋ । ୧ ॥

ଘନ ବରଷା ଗହଳ ଧାରା ଅନ୍ଧକାର ଚନ୍ଦ୍ରିକା
ବିଜୁଳି ଠାରେ ବିରହ ଆଖି
ନେ' କୋଳେ ନେ' ପାଗଳ ଗୋ ।୨।

ଶରତ ଚାନ୍ଦେ ରଜନୀଗନ୍ଧା ମେଲୁଛି ସ୍ମୃତି ମାନିନୀ,
ଖୋଲୁଛି ହାର ଦେ' ଅଙ୍କିଦେ'
ଗଣ୍ଡେ ଚୁମ୍ବ ଆଦର ଗୋ । ୩ ।

( ଶ୍ରୀକୃଷ୍ଣ ପ୍ରବେଶ )

କୃଷ୍ଣ—କି ସଖା ! ଆଜି ସକାଳୁ ସକାଳୁ ଯେ କବିତ୍ୱ ଫୁଟିପଡ଼ୁଛି ?

ମଧୂ—ଭାବ କିଛି କିଛି ବୁଝୁଛ ଭଲ ?

କୃଷ୍ଣ—ଆହା, ବେଶ୍ ଭାବ, ବେଶ୍ ଭାଷା, ବେଶ୍ ସ୍ୱର; ଆଉ ସବୁଠୁ ବେଶ୍ କଣ୍ଠଟି ।

ମଧୂ—ହଁ ! ଲଡ଼ୁ ଭୋଜନକୁ ବେଶ୍ ମଜବୁତ୍ !

କୃଷ୍ଣ—ନା, ନା, ପରିହାସ ନୁହେଁ ସଖା ? ସୁନ୍ଦର ଗୀତଟି ।

ମଧୂ—ମନ ମାନୁଛି ତେବେ, ନା ?

କୃଷ୍ଣ—ତମ ଗୀତରେ ପୁଣି କେବେ ମନ ନମାନେ ?

( ଗୀତ )

ସୁନ୍ଦର ମଧୂସମୟ, କି ରସମୟ !
କୁଞ୍ଜରେ ଗୁଞ୍ଜରେ     ଅଳିକୁଳ ରଙ୍ଗେ
ପ୍ରଫୁଲ୍ଲ ଫୁଲ ନିଚୟ ।
ତବ ଗୀତ ତାନେ     ଫୁଲଶର ହାଣେ
ପୀରତି ଚନ୍ଦ୍ର ଉଦୟ ।
କାନେ ସୁଧା ଢାଳେ     ଗୀତ ତାଳେ ତାଳେ
ପରଶି ଅଙ୍ଗେ ମଳୟ ।

ମଧୁ—ହଁ ! ଏ କଥା ନକହ୍ନି ଅବା ତମର ଗତି କ'ଣ ?
ଏ ପରା ତମର କାର୍ତ୍ତିକୁସୁମର ସୁଗନ୍ଧମାଳା ?
ଯାଙ୍କୁ ନକଲେ ହାର୍, ଯେ—ଗାଣ୍ଠି ମାଇଲେ ମଳି, ଗାଣ୍ଠିକି ମାଇଲେ ମଳି ।

କୃଷ୍ଣ—ତମର ଏ ଦ୍ୱିବିଧ, ନିର୍ବିଧ ଅର୍ଥ ବୁଝିବାକୁ ମୋର ବଳ ନାହିଁ । ସୁନ୍ଦର ଗୀତଟି ଆଦର କରିବା କ'ଣ ତେବେ ପାପ ?

ମଧୁ—ନାଃ—ସୁନ୍ଦର ପଦାର୍ଥର ଆଦର ନ କରେ କିଏ ?

କୃଷ୍ଣ—ହଁ, ସେଇ କଥା କହିଲ ?

ମଧୁ—କହିଲି ପରା, ସୁନ୍ଦର ପଦାର୍ଥର ଆଦର ସମସ୍ତେ କରନ୍ତି—ତମରିପରି ଖଣ୍ଡେଅଧେ ଗୋଠଖଣ୍ଡି ଆଙ୍କ ଛଡ଼ା ।

କୃଷ୍ଣ—ଦେଖ ! ସତ କହିଲଠୁଁ ଫେର୍ ଗୋଟାଏ କ'ଣ କେଁ ବାହାରିଲଣି ।

ମଧୁ—ହଁ ! କେଁ ? ମୋର ନା ତମର ?

କୃଷ୍ଣ—ମୋର କପର ?

ମଧୁ—ଯେ ଭୋରରେ କପର ?

କୃଷ୍ଣ—ଧବଳୀଟା କାଲଠାରୁ ହଜିଲଣି, କଅଣ ଜାଣି-ନାହିଁ ?

ମଧୁ—ନା ! ମୁଁ କେମନ୍ତେ ଜାଣନ୍ତି ? ମୁଁ ଜାଣେ ତୁମେ ଧବଳୀକୁ ଖୋଜୁ ନ ଥିଲ ଯେ, ରାତିଟି ସାରା ଶ୍ୟାମଳୀ କୁଞ୍ଜରେ ଉଜାଗର ।

କୃଷ୍ଣ—ଛିଃ ! ତମର ଖାଲି ସବୁଦିନେ ଏଇ ପରିହାସ ଗଲା ନାହିଁ ।

ମଧୁ—ମନ୍ଦ ନୁହେଁ । କଥା କହିବାରେ, ଆଉ ମୁହଁ ଶୁଖାଇବାରେ ତମକୁ ଆଉ କିଏ ପାରିବ କି ସଖା !

କୃଷ୍ଣ—କାହିଁକି ?

ମଧୁ—କାହିଁକି ? ଗାଈ ଖୋଜିଲେ ଲୋକଙ୍କର ଯେ ଅବସ୍ଥା ହୁଏ କାହିଁକି ?

( ଗୀତ )

ପୀତପଟ ! ସତଟି କହ
ପଡ଼ିଛ ତ ଧରା ଏତେ ଦିନେ ହେ । ୦ ।
ଗାଈ ପଛେ ବୁଲୁ ତ ଥିଲ,
ଦିଲଛି କେ ଗଳାର ହାର ?
ଗଣ୍ଡେ ଏ ସିନ୍ଦୂର ଦିଶେ କି ସୁନ୍ଦର
ପଡ଼ିଛ ତ ହୃଦରିଆ ଜଣେ ହେ ।୧।
କହ ଏହା କାହା ବସନ,
କେଉଁ ଗାଈ ଦେଲା ଏମାନ ?
ନଖ-କ୍ଷତପରି ଏ କିସ ଦିଶୁଛି
କଳା ତନୁକୁ'ତ ଭଲ ମାନେ ହେ ।୨।

କୃଷ୍ଣ—ଛି ସଖା, ଏତେ ଦୋଷ ଦେଲେ ମୁଁ ଚଳିପାରିବ ନା ?

ମଧୁ—କାହିଁକି ସଖା ! ଯେବେ ଏ କଥା ଜାଣ—ମନ ଖୋଲି କରି ସତକଥାଟା ଗାଳିପକାଇଲ ନାହିଁ ?

( ପଛରୁ ପଦ୍ମା ପ୍ରବେଶ )

ପଦ୍ମା—ଶ୍ୟାମବନ୍ଧୁ !

କୃଷ୍ଣ—(ଚମକି) କିଏ ବୃନ୍ଦେ ?

ପଦ୍ମା—ବେଶ୍, ଏଥର ସବୁ ଓଲଟିପଡ଼ିବ । ନା ଶ୍ୟାମ ଭଲ କରି ଦେଖ, ଚିହ୍ନ—ମୁଁ ପଦ୍ମା । ଠିକିଏ ନିଦ ଛାଡ଼ୁ । (ଏକଦୃଷ୍ଟିରେ ଗୁହିଁ ରହିଲେ)

କୃଷ୍ଣ—ଯାଃ ! ତମର ଏଇ ଦୁଷ୍ଟାମି ଗଲାନାହିଁ । ପଛରୁ ଆସି ଡାକିଦେଲ, ମୁଁ ମନେ କଲି, ବୃନ୍ଦା । ଏତେ ଭୋରରୁ କଣରି ?

ପଦ୍ମା—ମୁଁ ତ ଠିକ୍ ସେଇ କଥାଟି ପଚାରିବାକୁ ଯାଉଥିଲି ।

କୃଷ୍ଣ—ମୁଁ ବଡ଼ ବ୍ୟସ୍ତ ଅଛି ପଦ୍ମା ! ବିଳମ୍ବ ହେଲେ ଭାରି ଅସୁବିଧା ହେବ । ଗୁଲ, କଥାବାର୍ତ୍ତା ହୋଇ ଯିବା । (ପ୍ରସ୍ଥାନୋଦ୍ୟତ)

ପଦ୍ମା—ଯିବାର କିଛି ଦର୍କାର ନାହିଁ—ପଦେ କଥା ।

କୃଷ୍ଣ—କ'ଣ ?

ପଦ୍ମା—କହିପାରିବ କି ସରଳ ଭାବରେ—କୋଉଠୁ ଏ ଆଗମନଟା ?

କୃଷ୍ଣ—(ଟିକିଏ ଇତସ୍ତତଃ ହୋଇ)

ପଦ୍ମା—ମ, ମ, ଏତେବେଳଯାଏ କିଛି ହେଲେ ଗୋଟାଏ ଫିକର ବାହାର ହୋଇପାରୁନାହିଁ ପରା ? ଆଚ୍ଛା, ଭାବିକରି କହ ।

କୃଷ୍ଣ—ନା, ଭାବିବାର ତ କିଛି ନାହିଁ ।

ମଧୁ—ରାତି ସାରା ସଖା ଆଉ ମୁଁ—ଦୁହେଁ, ଶ୍ୟାମଳୀଟା ହଜିଥିଲା ଯେ ଖୋଜିବୁଲୁଛୁଁ ।

ପଦ୍ମା—(ରାଗି) ଜାଣେ ବନ୍ଧୁ, ତୁମେ ତୁମ ସଖାଙ୍କଠାରୁ ଆଉ ପଣକେ ବେଶି, ତୁନ ହୁଅ ।

କୃଷ୍ଣ—ନା ନା, ସେଇ କାରଣରୁ ମୁଁ କାଲି ତମ ସଖୀଙ୍କ କୁଞ୍ଜକୁ ଯାଇପାରି ନାହିଁ । ସେ ବୋଧହୁଏ ରୁଷିଥିବେ । ତାଙ୍କୁ ବୁଝାଇ କରି ଟିକିଏ ମୋ' ଲାଗି କହିବ ।

ପଦ୍ମା—ବାଃ, ବାଃ, ସୁନ୍ଦର !

କୃଷ୍ଣ—ମୋ କଥା କ'ଣ ମିଛ ମଣିଲ କି ସଖି ?

ପଦ୍ମା—ଏତ ଆହୁରି ସୁନ୍ଦର କଥା ! ମିଛ ମଣିବି ? କାହା କଥାକୁ ? ମିଛ ମଣିବାର ବାଟ କାହିଁ ? ଯାହାର ଶଏକେ ଛ'କୋଡ଼ି ମିଛ, ଯାହାର ଭିତର ବାହାର ଦୁଇଟା, ତାଙ୍କ କଥାକୁ ମିଛ ମଣିବି ? ଛି, ଛି !

ମଧୁ—ନାଇଁ ପଦ୍ମା, ସଖାଙ୍କୁ ଅବିଶ୍ୱାସ କର ନାହିଁ ।

ପଦ୍ମା—କରୁନାହିଁ ତ, ବିଶ୍ୱାସ କରିବାକୁ ତ ଅନେକ କାରଣ ଅଛି ।

କୃଷ୍ଣ—ପଦ୍ମା, ନିଜପର ଜଗତଟାକୁ ମଣୁଛ କାହିଁକି ? ମୋ ଜୀବନଟା ଅବିଶ୍ୱାସରେ ଗଢ଼ା ନୁହେଁ ।

ପଦ୍ମା—ଶ୍ୟାମ, ଆହୁରି କଥା କହିବାକୁ ମୁହଁ ଅଛି ? ସାହସ ଅଛି ? କି ନିଷ୍ଠୁର ତୁମେ ! ଅବିଶ୍ୱାସୀ ମୁଁ ; ନା ତୁମେ ? ଅବିଶ୍ୱାସୀ ମୁଁ ହୋଇଥିଲେ ଆଜ ପଦ୍ମାକୁ ତମ ପଥ ଅନାଇଁ ବସିରହିବାର ଦେଖନ୍ତ ନାହିଁ । ଅବିଶ୍ୱାସୀ ହୋଇଥିଲେ ଆକାଶର ତାରା, ଚନ୍ଦ୍ର ସରଳା ଚନ୍ଦ୍ରାବଳୀର ଆଖିଲୁହ ଦେଖୁ ନ ଥାନ୍ତେ । ମଳୟ, ପାଣ୍ଡୁର ଗଣ୍ଡର ଲୁହ ଶୁଖାଉ ନ ଥାନ୍ତା । ଶ୍ୟାମ, ଯାହା ହେବାର ଥିଲା, ହେଲା । ମୁଁ କାହାରିକୁ ଦୋଷ ଦେଉନାହିଁ । ବାକି ତମକୁ ଗୋଟିଏ କଥା କହୁଛି ।

( ଗୀତ )

ଘନଶ୍ୟାମ ! ଏ ଶପଥ କର—
 କରିବାକୁ ଥିଲେ ହରିବର
ଆଶାର ନାବରେ ବସାଇ, ସାଗରେ
 ଭସାଇବ ନାହିଁ ଦଗାଦାର
 ହେ ନଟବର !
 ଶୋଭା ଦଶୁଅଛି କି ଏ ବେଭାର ? । ୧ ।

ରାଧା ବନେ ଯେବେ ଆନେ ମନ
 ଦେବ ନାହିଁ ସତେ ତୁମ୍ଭ ମନ
ଛଳ କରି ବାଳାମଣିଙ୍କ ଏଣିକି
 କୁଞ୍ଜଭେଟ ନ କରିବ ପଣ
 ହେ ନଟବର !
 ମିଛ କହି ଲଭୁଛ କି ବଡ଼ପଣ ? । ୨ ।

କୃଷ୍ଣ—ପଦ୍ମା, ତୁମେ ବୁଝୁନାହଁ ମୋର ଅବସ୍ଥା···

ମଧୁ—ଦେଖୁନାହଁ ସଖା ପୂର୍ବଦିଗକୁ—ଲୋକେ ତମର ଏଭଳି ଏକାନ୍ତ ମିଳନଟାକୁ ଏଠି ଦେଖିଲେ କଣ ମନେ କରିବେ ? ଛିଃ ।

କୃଷ୍ଣ—ତେବେ ମୁଁ ଆସୁଛି ପଦ୍ମା,ପରେ ଦେଖାହେବ ।
( ମଧୁ ସହ ପ୍ରସ୍ଥାନୋଦ୍ୟତ )

ପଦ୍ମା—ଶ୍ୟାମ, ଆଉ ପଦେ କଥା ।

କୃଷ୍ଣ—କ୍ଷମା କର ପଦ୍ମା, ବେଳ ନାହିଁ । ପଛେ···
( ଶୀଘ୍ର ପ୍ରସ୍ଥାନ)

ପଦ୍ମା—( କିଛିକାଳ ଅନାଇଁ ଦୀର୍ଘ-ନିଃଶ୍ୱାସ ସହ ) ବେଳ ନାହିଁ ? ପଛେ ? ଚାଲିଗଲ ? ଚନ୍ଦ୍ରାବଳୀ ଏଣେ ଲୁହ ଝରାଉଥାନ୍ତୁ । ଆଉ ?—ତୁମେ— ନିଷ୍ଠୁର ! (ଅର୍ଦ୍ଧୋକ୍ତି) ହଉ କାହ୍ନୁ, ଦେଖିବି ତେବେ କିଏ ଚତୁର ? ତୁମେ ନା ପଦ୍ମା । ମନେ କର- ନାହିଁ ପଦ୍ମା ତୁନହୋଇ ରହି ତୁମ କଥାଗୁଡ଼ାକ

ଭୁଟିଲା ନାହିଁ—ଆରବରେ ସେ ଏ ଅପମାନ ସହୁଥିବ। ସହି ସହି ପଦ୍ମାର ଛାତି ଭ୍ରମଲାଗି ପଥର ହୋଇଛି—ଭ୍ରମର ଏ ଛଳନା ଆଜି ସେହି ପଦ୍ମାର ପଥର-ଛାତିରେ ଗାର ହେଲା। (ପ୍ରସ୍ଥାନ)

———

## ଦ୍ୱିତୀୟ ଦୃଶ୍ୟ

[ ପ୍ରଥମ ପ୍ରହର ହେବା ଶେଷ ପ୍ରାୟ । ଗ୍ରାମ୍ୟପଥ । ଶାଗକାହସ୍ତେ ଶବରୀ ଗାଇଗାଇ ପ୍ରବେଶ ]

**(ଗୀତ)**

ବରଜ ନବ ନାଗର ଗୋ ଆସ ଆସ ବେଗ କର
ଆଣିଅଛି ଶାଗ କେ ନେବ ଚତୁର ! ଲତାମଣ୍ଡପକୁ ଶିର—
ଏ ପଡ଼ା ଶାଗ, ପଢ଼େ ରାମ କୃଷ୍ଣ ହର । ୧ ।

ନାଗର ମନମୋହନ ଗୋ, ନାଗରୀ-କଣ୍ଠରତନ
ପୀରତି ମନ୍ତ୍ର ପଢ଼ଇ ଥରକେ ରଖିଥା' କର ଯତନ—
ଆଦର ଧନ, ସୁନା-ମାଟି ଆସି ଚହ୍ଲ । ୨ ।

( ଜଳଘଟହସ୍ତେ କୁଟିଳା ଏକବାଟରୁ ଅନ୍ୟବାଟକୁ ଯାଉଥିବା ଦେଖି )

ଶବରୀ—ହଇଗୋ ମା, ଗୋକୁଳକୁ ବାଟ ଏଇଟା ନା ?

( କୁଟିଳାଙ୍କ ନିକଟକୁ ଗଲା )

କୁଟିଳା—( ନଶୁଣିବାପରି, ଗୁହିଁଦେଇ ଯିବା )

ଶବରୀ—ଅଗୋ ମା, ଗୋକୁଳକୁ ଯିବା ବାଟ କିଏ କହିବ ?

କୁଟିଳା—କି ଗରବ ଲୋ ! ମୁଁ କଅଣ ତୋର ଖାଏ ନା ଧାରେ ? ସେତେ ବୋଇଲ ମୁଁ ମୋର ଭୁନହୋଇ ଯିବ, ପାଟି ଫିଟେଇବାକୁ ହେଲା । ମୋ ତୁଣ୍ଡ ଫିଟିଲେ ତ କହିଲ କଲେଣି । ଆଉ ଏସବୁ କଅଣ ତମର ଭଲପଣିଆ ? କାହିଁକି କଲେ ! ମତେ ଏକା କଅଣ ପାଇଲୁ ବାଟ ପଚାରିବା ପାଇଁ ? ସେ ହେଲେ ଗଲେ—ଆଇଲେ ମୋତେ କଥା ପଦେ ପଚାର୍ ନଦେଲେ ଆଉ ଚଳୁନାହିଁ ! ଛି, ତମ ଗରବମୁହଁରେ ନିଆଁ ।

ଶବରୀ—ରାଗୁଛ କାହିଁକି ମା ? ମୁଁ ବାଟ ଜାଣିନାହିଁ ବୋଲି, ପଚାରନ୍ତି ନାହିଁ କ'ଣ ଇମିତି ? ଏଥିକି ଏତେ ରାଗ କାହିଁକି ଲୋ ମା ?

କୁଟିଳା—ହଇଲୋ, କ'ଣ କହିଲୁ ? ରାଗ କାହିଁକି ? ମୋତେ କାହିଁକି ତୁ ପଚାରିଲୁ ? ମୁଁ କଅଣ ତୋତେ ମାଗୁଥିଲି ନା ଯାଚୁଥିଲି ? ବ୍ରଜବାଟରେ କେତେ ମରଦ ମାଇପି ଯା-ଆସ କରୁଛନ୍ତି, ଆଉ କେହି ତୋ ଆଖିରେ ପଡ଼ଲେ ନାହିଁ ? ମୁଁ ଥିଲି ? ଉଠ୍, ଉଠ୍, ମୁଁ ପାଣି ନେଇ ଯାଏଁ ।

ଶବରୀ—ହଉ ମା, ଦୋଷ କରିଛି, ରାଗ ନାହିଁ, ବାଟ କହିଦିଅ ।

କୁଟିଳା—ପୁଣି ସେଇ କଥା ? ଗୋକୁଳ ଗାଁକୁ ବାଟ ଦେଖିନାହୁଁ ? ଆସିଛୁ, କୁଆଡ଼େ ? ଯା ! ଯା ! ବାଟ ତୋ ମୁହଁସଲଖ । ମଲୁନାହିଁ ପୋଡ଼ାମୁହିଁ; ଫେର୍ ମୋତେ ପଚାରୁଛୁ ବାଟ ? କାହିଁକି ଲୋ ? ତୋ ଆଖିକି ମୁଁ କ'ଣପରି ଦିଶିଲି କି ?

( ପ୍ରସ୍ଥାନ )

ଶବରୀ—କି ଆଚମ୍ବିତ କଥା ! ଏ ମାଇକିନିଆଟା କି କଳିଭୁଣ୍ଡେଇ ଲୋ ? ଟିକିକେ ଚିଡ଼ିଯାଉଛି !

( ପଦ୍ମା ପ୍ରବେଶ )

ପଦ୍ମା—ତୁ କିଏ ଲୋ ?

ଶବରୀ—ମୁଁ ଜଣେ ଶବରୀ, ଡର ମାଡୁଛି ମା, ତମ ସାଙ୍ଗେ କଥା ହବାକୁ ।

ପଦ୍ମା—କାହିଁକି, କ'ଣ ହେଲା କି ?

ଶବରୀ—ଏଇନେ ଜଣେ କିଏ ଗଲା, ମୁଁ ଗୋକୁଳ ଗାଁକୁ ବାଟ ଦେଖିନାହିଁ, ତାକୁ ପଚାରିଲି ଯେ ମୋ ସାତପୁରୁଷ ଉଦ୍ଧେଇ ଗାଳିଦେଲା । ମା ଲୋ ! ଏମିତି ଖଣ୍ଡାଖାଇ ତ ମୁଁ ମୋ ଜନମକେ ଦେଖି ନାହିଁ ।

ପଦ୍ମା—ତୁ କଅଣ ଗୋକୁଳକୁ ଯିବୁ ?

ଶବରୀ—ହଁ, ମା ।

ପଦ୍ମା—କାହିଁକି ? କ'ଣ କାମ ତୋର ?

ଶବରୀ—ଏଇ ଶାରୀଟି ବିକିବି ।
ପଦ୍ମା—ଏ କ'ଣ ପଢ଼ାଶାରୀ ?
ଶବରୀ—ହଁ ମା, ବହୁତ ଶିଖିଛି ।
ପଦ୍ମା—ଯାହା କହିଲେ ତା' ପଢ଼ିବ ?
ଶବରୀ—ହଁ, ସବୁ ପଢ଼ିଯିବ ।
ପଦ୍ମା—ଅଚ୍ଛା ମୁଁ ଏଇଟି କିଣିବି । ବାକି ଗୋଟିଏ କଥା । ତୁ ଯାକୁ ପଦେ କଥା ପଢ଼ାଇ ଆଣିଲେ, ରଖିବି ।
ଶବରୀ—ହଉ, କହ ତେବେ ।
ପଦ୍ମା—"ଶ୍ରୀରାଧେ ନ କର ଗୋ ରୋଷ,
ଶ୍ୟାମ ତୁମର ଚିରଦାସ ।"
ଶବରୀ—ଏଇ ପଦକ ତ ? ଘଡ଼ିକେ ପଢ଼ିଯିବ ।
ପଦ୍ମା—ତେବେ ଏଇ ମୁଦିଟି ବଇନା ନେ, ଚାଲ ମୁଁ ତୋତେ ଆମ କୁଞ୍ଜ ଦେଖାଇଦେବି । ତୁ ଶାରୀକୁ ପଢ଼ାଇ ଆଣିଲେ ଯାହା ଯାହା କରିବାକୁ ହବ କହିବି । ଫଳେ ବହୁତ ପୁରସ୍କାର ପାଇବୁ ।
(ମୁଦି ଦେଲେ)
ଶବରୀ—ଚାଲ ତେବେ ମା, ମୁଁ ତୁମ ସଙ୍ଗରେ ଯାଏଁ ।
(ପଞ୍ଜୁରୀ ଉଠାଇ ଆଣିବାକୁ ଯିବା ।)
ପଦ୍ମା—(ସ୍ୱଗତ) କାହାକୁ ଆଉ ଶବରୀ ପଚାରିଲା ? ସେ ତେବେ କୁଟିଳା ହୋଇଥିବ । କଥାଟା ଏଠି ଘାଣ୍ଟିବା ଭଲ ନୁହେଁ ।
(ଆଗରେ ପଦ୍ମା ପଛେ ପଛେ ଶବରୀ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

(ବୃଷଭାନୁପୁର-ଉଦ୍ୟାନ—ଏକାକିନୀ ଶ୍ରୀମତୀ ମର୍ମର ବେଦିକାରେ ଫୁଲ ଗୁନ୍ଥୁଥିଲେ)

ଶ୍ରୀମତୀ— (ଗୀତ)

ନ ସରେ ମୋ ଦିନ, ଦୀନବନ୍ଧୁ ଲାଗି
ଦୀନ ଚାତକିନୀ ଏ ଦିବା ରଜନୀ
ବସିଛି ପଥ ଜଗି—ଦୀନବନ୍ଧୁ !
କୁଞ୍ଜବନ ତେଜି କୁଞ୍ଜବିନୋଦିଆ
କପଟଶେଖର କଲେ ଯା ନିର୍ଦ୍ଦୟା,
ଗୁଞ୍ଜ ଗୁଞ୍ଜମାଳ ଗୁନ୍ଥି ଥିଲି ନିଆ
କିଏ ହୋଇବ ଲାଗି—ଦୀନବନ୍ଧୁ !

(କବି ଅଜ୍ଞାତ)

ଶ୍ରୀରାଧା—ଦିନ ପରେ ସଞ୍ଜ ହୁଏ । ରାତି ଆସେ; ପୁଣି ଦିନ ହୁଏ । ସକାଳ ସୂର୍ଯ୍ୟର ସେଇ ହସହସ ମୁହଁଟି କେତେ ଦୂରରେ—ଆଉ ଏଣେ ତଳେ କେତେ ଦୂରରେ, କାହିଁ ପଙ୍କ ଭିତରେ—କି ଆଶାରେ ଥାଏ ସେ କମଳିନୀଟି ! ବୁଝେ ସେ ସକାଳ ହେଲା । ପ୍ରଭାତ ପବନ କେତେ ମନକଥା, କେତେ ଦୂରରୁ ବହିଆଣି ବିରହିଣୀକି ଟିକିଏ ଆଶ୍ୱାସନା ଦେଲା । ଫୁଟିଉଠିଲା ପଦ୍ମ ମୁଖରେ ସରସ ହାସରେଖା । ବିରହିଣୀ କି ଉତ୍କଣ୍ଠାରେ, କି ଦୁଃଖରେ ତା'ର ସେ ସାରା ରାତିଟି କାଟି ପହିଲି ରବିର ପହିଲି କିରଣକୁ ଅନାଇଁ, ପ୍ରଥମ ନିଃଶ୍ୱାସ ପକାଏ—ବୁଝ କି ତୁମେ ବନ୍ଧୁ ! ବୁଝ କି ତୁମେ ଶ୍ୟାମ, ସେ ନିଃଶ୍ୱାସ କେତେ ଦୂରରୁ ଆସେ,—କେତେ ଦୂରକୁ ଯାଏ ? ନା, ମୋର ମନେହୁଏ, ଦିନ ଆସନ୍ତା,—ଦିନକ ଲାଗି ହେଉ ପଛେ,—ସେ ଦିନ ଅଭାଗିନୀ ରାଧା ଆଜି ରାଧା ହୋଇ ଥାଆନ୍ତା ନାହିଁ । ତୁମେ ଶଠ, ଆଜି ସେ ମୋହନ ହୋଇ ନ ଥାନ୍ତ । ବାଜୁ ନ ଥାନ୍ତା ଆଜି ସେ ନିଷ୍ଠୁର ବଂଶୀ । ସେଇ କୁଞ୍ଜ—ସେଇ ବୃନ୍ଦ—ସେଇ ମଳୟ,—ଯାହା ଅଛି ଆଉ ଆଜି ଯାହାଲାଗି ଶ୍ରୀମତୀ ପାଗଳିନୀ, କଳଙ୍କିନୀ—ସେସବୁ ଥା'ନ୍ତା । ବାକି ତୁମେ ବନ୍ଧୁ, ସେଦିନ ଶ୍ରୀମତୀ ହୋଇଥା'ନ୍ତ—ରାଧିକା ଶ୍ୟାମ ହୋଇ ତମର ଧୈର୍ଯ୍ୟ ପରୀକ୍ଷା କରନ୍ତା । ଦେଖନ୍ତ ତୁମେ ବଂଶୀର ଗୁଣ । ଶ୍ୟାମ, ଏ ଭାଗ୍ୟ କଅଣ ସମ୍ଭବ, ଏଭଳି ଦିନ କ'ଣ ସତେ ଆସିବ ?

(ଗୀତ)

ଭରା ଫୁଲକୁଞ୍ଜେ ବନେ ଜହ୍ନମା ରାତିରେ
ହୁଅନ୍ତ ମୁଁ ବନମାଳୀ
ମୁରଲୀ କରରେ, (ଶ୍ୟାମ) ।୦।

କଣୋଣ୍ଣ ପାଲଟି ଶ୍ୟାମ ଥାଆନ୍ତ ମନ୍ଦରେ
କୁଟିଳା ନଣନ୍ଦ ଶାଶୁ ଜଟିଳା ଦାଉରେ ।୧।

ମାଳ ତନୁ ଦେଖି ମୋର ନୁହନ୍ତ କି ଝୁରି
ଦେଖନ୍ତ ମନରେ କେତେ ଠାଣ ପାର ଧରି ।୨।

( ଗୀତ ମଧ୍ୟରେ ଲଳିତା ଓ ବିଶାଖା ପ୍ରବେଶ ହୋଇ ଶ୍ରୀମତୀଙ୍କ ଭାବ ଲକ୍ଷ୍ୟ କରୁଥିଲେ । ଗୀତ ଶେଷ ପରେ ଲଳିତା ନିକଟକୁ ଆସି ପଛରୁ ଶ୍ରୀମତୀଙ୍କ ଆକ୍ଷି ମୁଦିଧରିଲେ । ବିଶାଖା ଏକ ପାର୍ଶ୍ୱରେ ଦଣ୍ଡାୟମାନା )

ଶ୍ରୀମତୀ—(ଚମକି) କିଏ ?

ବିଶାଖା—କେଜାଣି ?

ଶ୍ରୀମତୀ—ହିଁ, ଏଥର ଜାଣିଲି ଯେ ।

ବିଶାଖା—କିଏ କହିଲ ଦେଖି !

ଶ୍ରୀମତୀ— ( ଗୀତ )

ବସନ୍ତ ଆସିଲେ ସଖି, କୁସୁମ ନ ଫୁଟିବ କି ? । ୦ ।
ମଳୟ ପରଶେ ସୁଖୀ କଳିକା ନ ହୋଇବ କି ? । ୧ ।
ଛନ୍ଦିଛ କର ପରଶେ ଛାଡ଼ ଗୋ ଛାଡ଼ ସୁମୁଖି ! । ୨ ।

ଲଳିତା—(ଆକ୍ଷି ଛାଡ଼ି) କ'ଣ ଏକା ଏକା ବସି ଗାଉଥିଲ ସହି ! ସତ କହିବଟି ?

ଶ୍ରୀମତୀ—ନାଇଁମ, ଏକୁଟିଆ ବସି ବସି ସୁଖ ଲାଗିଲା ନାଇଁ । ଏଣୁତେଣୁ କେତେ କଥା କ'ଣ ମନେ ପଡ଼ିଲା ଯେ—

ବିଶାଖା—କ'ଣ ମନେ ପଡ଼ିଲା ?

ଲଳିତା—ମ, ମ, ଏଇତକ ବୁଦ୍ଧି ହେଲାନାଇଁ ତୋର ? ଏଣୁ ବୋଲନ୍ତେ ଶ୍ୟାମ, ତେଣୁ ବୋଇଲେ ବଂଶୀ; ଏଇଆ । ଏଥର ବୁଝିଲୁ ?

ବିଶାଖା—କି ଗୋ ! ଏଇଆ ନା ?

( ଗୀତ )

ଦକ୍ଷିଣ ବାମ ନୟନେ ଗୋ ସଜନି !
ଦକ୍ଷିଣ ବାମ ନୟନେ
ଦେଖୁଥିଲୁ ସତେ ସଜନୀ କହିଲି
ମୁରଲୀ ଆଉ ମୋହନେ । ୧ ।
ରସ-ସିନ୍ଧୁ ପ୍ରେମ-ଇନ୍ଦୁ ଗୋ ସଜନି !
ରସ-ସିନ୍ଧୁ ପ୍ରେମ-ଇନ୍ଦୁ,
ଅନ୍ତରେ ବାହାରେ ନାଚିଲି କି ଧନ !
ସତ କହ ପ୍ରାଣବନ୍ଧୁ ? । ୨ ।

ଶ୍ରୀମତୀ—ଯା, ଲଳିତାଟି ସେ, ତା କଥା ଭଲ ପଚାରୁଛ ? ଶୁଖିଲା ବାଲିରେ ପଡ଼ି ସେ ପଦ୍ମ ଫୁଟେଇଦେବ ! ତାକୁ ଫେର୍ କଥାରେ ପାରିବ କିଏ ?

( ମଧୁ ତରତର ହୋଇ ପ୍ରବେଶ )

ମଧୁ—(ରାଗିଲପରି) ଲଳିତେ ! ବ୍ରହ୍ମଶାପକୁ ମଧ୍ୟ ଡର ନାହିଁ ତୁମର ?

ଲଳିତା—କ'ଣ ହେଲା ବନ୍ଧୁ ?

ମଧୁ—ଜାଣ ତ, ଏ ଝକମକ ପଇତାର କରାମତି ?

( ପଇତା ଦେଖାଇଲେ )

ଲଳିତା—କଥା କ'ଣ ହେ ?

ମଧୁ—ଶୁଣିଛ ନା ? ଆମରି ଏଇ ବ୍ରାହ୍ମଣେ ରୁଷିଲେ ମାଟିକେ ଭସ୍ମ କରିପକାନ୍ତି ?

ବିଶାଖା—ଆଚ୍ଛା କଥା ତ ! କଥା ନାହିଁ କି ବାର୍ତ୍ତା ନାହିଁ । ଅଦିନ ମେଘପରି କୁଆଡ଼ୁ ଉଡ଼ିଆସିଲ, ମନ ଇଚ୍ଛାରେ ତ ଗଲ ଅଜାଡ଼ୁଛୁ ପାଣି । ଭଲ ଲୋକ ଏ ! (ହସିଲେ)

ଲଳିତା—ଆହେ କ'ଣ ହେଲା, କଥାଟା କହିଲେ ସିନା ଜାଣନ୍ତୁ ।

ମଧୁ—ଆମେ ରାଗିଛୁଁ । (ଗମ୍ଭୀର ଭାବ)

ବିଶାଖା—ସେ ତ ହାତଗଙ୍କା ଦରପଣ ! ତୁମ ରଙ୍ଗ-ଢଙ୍ଗ ସେକଥା କହୁଛି ।

ଲଳିତା—କାହିଁକି ରାଗିଛ ? ନ କହିଲେ ଜଣାପଡ଼ିବ କେମିତି ?

ମଧୂ—କାହିଁକି ? ଲଡ଼୍ଡୁ-ଲଡ଼୍ଡୁ, ଗୋଲ-ଗୋଲ, ତାରଲାଗି ଏତେ ଗୋଳ ।

ବିଶାଖା—କ'ଣ ଲଡ୍ଡୁ, ଲଡ୍ଡୁ ହନଉତି ଲଗିଛି ହେ ?

ମଧୂ—ତନବଦନ ଓଳକର ପୋଚରୀ ଯୋଳଦନ୍ତ କଥା କହିଲେ ସିନା ଜାଣନ୍ତ ? ତୁମେ କ ବୁଝିବ ଲଡ଼ୁର ଗୁଣ ? ଲଡ୍ଡୁ, ଲଡ୍ଡୁ, ସେଇ ଗୋଲାକାର ବ୍ରହ୍ମାଣ୍ଡ ।

[ ଶ୍ଳୋକଃ ]

ଲଡ଼୍ଡୁ ସ୍ନିଗ୍ଧରୂପଂପୂର୍ଣ୍ଣେନ୍ଦୁ ସ୍ୱରୂପଂ ଲଡ଼୍ଡୁ ଜଗନ୍ମୋହନଂ
ଲଡ଼୍ଡୁ ଗ୍ରାସକର କ୍ଷୁଧା ଅପହର ଲଡ଼୍ଡୁ ଚନ୍ଦ୍ରୋନ୍ମାଦନଂ ।
ସଦ୍ୟ ଖଣ୍ଡସିଦ୍ଧ ଲଡ଼୍ଡୁ ସଙ୍ଗକର ଲଡ଼୍ଡୁ ଗୁରୁଣାଂ ଗୁରୁ
ଲଡ଼୍ଡୁ ଘ୍ରାଣେ କେବେ ତୁଣ୍ଡ ଲାଳ ଦ୍ରବେ
ଲଡ଼୍ଡୁ ସୁଧାରେ ଦୂରୁ ।
ରେ, ରେ, ଚିତ୍ତ ! ସଦା ନବସୁର କଦା
ଯାବତ୍ ଅଛୁ ଭୂତଳେ
ଜଳ୍ପ ଜଳ୍ପ ମୁଖେ ତଳ୍ପେ ଗଳ୍ପେ ସୁଖେ
ଲଡ଼୍ଡୁଲଡ୍ଡୁ ତିବର୍ଣ୍ଣଦ୍ୱୟଂ ।
ପ୍ରାତଃ ଯଃ ସ୍ମରେ ନିତ୍ୟ ଲଡ଼୍ଡୁ ଲଡ଼୍ଡୁକ୍ଷରଦ୍ୱୟଂ
ଆପଦସ୍ତସ୍ୟ ନଶ୍ୟନ୍ତି ନାଗୁଆ ପଣ୍ଡିତାଃଯଥା ।

( ଲଳିତା କାନରେ ଶ୍ରୀମନ୍ତ କ'ଣ କହିଲେ )

ବିଶାଖା—ଓହୋ ! ସରସିବ ଏ ବ୍ରାହ୍ମଣ ବଟୁରା ।

ଲଳିତା—ବଟୁ, ଲଡ଼୍ଡୁ କ'ଣ ଏଠି ଫଳୁଛି ?

ମଧୂ—ସୂର୍ଯ୍ୟପୂଜାର ତ ଫଳ ସେ । ଫଳୁନାହିଁ ତ କ'ଣ ? ଆଜ ଏତେବେଳଯାଏ ଆମକୁ ଖବର ହିଆହୋଇ ନାହିଁ । କାହିଁକି ? ଶ୍ରୀମନ୍ତ କାଲଠାରୁ ବୃଷଭାନୁଙ୍କ ପୁରକୁ ଆସିଲେଣି, ଆମେ ସେକଥା ଜାଣନ୍ତୁ କପରି ?

ବିଶାଖା—ଏବେ ଜାଣିଲ କପରି ?

ମଧୂ—ଗନ୍ଧ ବାରି । ସେ ଆମ ପେଟର ବ୍ରହ୍ମତେଜ ।

ଲଳିତା—ତେବେ ତ ହେଉଛି । ଏଥର ଜାଣିଲ ତ ? ଦେଖ ଆମର ମନର ଟାଣ । ସେଇ ବଳରେ ତମକୁ ଟାଣିଆଣିଲୁ କମିତି ?

ମଧୂ—ତେବେ ସୂର୍ଯ୍ୟପୂଜାର କିଛି ଆୟୋଜନ ଦେଖୁନାହିଁ ଯେ !

ଲଳିତା—ତୁମର ସେଥିରେ କ'ଣ ଥାଏ ? ତୁମେ ତ ଲଡ଼ୁ ଖାଇବ ? ଗୋଟିଏ କାମ କରିବ ଯେବେ ପେଟେ କଣ ହ' ପେଟେ ଲଡ଼ୁ ମିଳିବ ।

ମଧୂ—ସତ୍ୟ ?

ଲଳିତା—ସତ୍ୟ ।

ମଧୂ—ତେବେ କହ ?

ଲଳିତା—ତୁମେ ସୂର୍ଯ୍ୟପୂଜା ସାରି ଖଣ୍ଡେ ପତ୍ର ନେଇ ତୁମ ସଖାଙ୍କୁ ଦେଇପାରିବ ?—ଖୁବ୍ ଗୁପ୍ତରେ । କେହି ଜାଣିବେ ନାହିଁ, ବୁଝିଲ ?

ମଧୂ—ହିଁ ବୁଝିଲି ଯେ, ମୁଁ ତ ପାରିବ ନାହିଁ !

ଲଳିତା—କାହିଁକି ?

ମଧୂ—ଏଇ ଯେ କହିଲ କେହି ଜାଣିବେ ନାହିଁ । ଏଁ— ତୁମେ ଦବ—ତୁମେ ଜାଣିବ, ତା'ପରେ ଦେଖ ଯେ—ଯେ ଲେଖିବେ—ସେ ଜାଣିଲେ, ଗଲାନ୍ତୁରୁ ଏ ସଖୀ ଖଣ୍ଡିକ ଜାଣିଲେ, ତା ପଛକୁ ମୁଁ ତ ସହଜେ ଜାଣିଲି, ଫେର୍ ସଖା ତ ଜାଣିବେ । ଦୁଇ, ତିନ, ଚାରି, ପାଞ୍ଚ, କ ଆଠ, କ ଏଗାର ଜଣ ନ ଜାଣିଲେ ତ ମୋର ଏ କାମ ନୁହେଁ ।

ଲଳିତା—ଆହେ ! ଏମାନେ ତ ଦେବେ ନେବେ, ଏମାନେ ନ ଜାଣିବେ କପରି ? ଏମାନଙ୍କ ଛଡ଼ା ଆଉ କେହି ଜାଣିବେ ନାହିଁ । ଭଲ ଓଲୁ ବ୍ରାହ୍ମଣ ଏ !

ମଧୂ—ନା, ମୁଁ ତ ଜମା ସେକଥା ନୁହେଁ । ତୁମେ କ'ଣ ଏ କଥା କହୁଛ ?—ଏଇ କେତେ ଜଣଙ୍କ ଛଡ଼ା ଖୁବ୍ ଗୁପ୍ତରେ ଦେବ ବୋଲି ?

ବିଶାଖା—ଏବେ ତ ସବୁ ବୁଝିଲ ?

ମଧୂ—ବୁଝିଲି !

ବିଶାଖା—ପାରିବ ନା ?

ମଧୂ—ଖୁବ୍ ଖୁବ୍, ଏ ଆଉ ଏମିତି କ ଟାଣ କଥାଟେ ଯେ ?

ଲଳିତା—ତେବେ ଚାଲ ବେଗେ ପୂଜା ସାରି ଯିବା ।
( ଶ୍ରୀମତୀଙ୍କ ପ୍ରତି ) ଉଠ, ଆସ ସଖି !

( ଶ୍ରୀମତୀଙ୍କୁ ଉଠାଉ ଉଠାଉ ଗୀତ )

( ଗୀତ )

ପ୍ରାଣସଜନି, ଉଇଁଲେ ଆଶା-ଦିନମଣି କି ଗୋ !
କୁସୁମ ଫୁଟିଆସେ, ମନ ମଦିର ବାସେ
ଆଶା-ବାତ ପରଶେ ନାଶେ ବେଦନା କି ସେ
ଗୃହିଁ ବସିଥା ଧନି, ସରଣୀ କି ଗୋ ।୧।

ଆସିବେ ମନଚୋର; ଅଳି ନଟନାଗର
ଚୁମ୍ବି ଫୁଲ ଅଧର ହସିବେ ଦରଦର
ନେବେ ପୀରତି-ମଧୁ ଘୁଣି କି ଗୋ ।୨।

ମଧୁ—ବାଃ, ବାଃ, ଏ ଗୀତରେ ତ ମୋର ଅଧିକ
ପେଟ ଭରିପୂର୍ ! ଲଡୁକୁ ଆଉ ଥାନ କାହିଁ ?
( ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

( ଅଭିମନ୍ୟୁଙ୍କ କକ୍ଷ ସମ୍ମୁଖ—ଦ୍ୱି ପ୍ରହର—ପତହସ୍ତେ ପଦ୍ମା ଓ ଶାରିକା ହସ୍ତେ ଶବରୀ କଥାବାର୍ତ୍ତା ହେଉ ହେଉ ପ୍ରବେଶ )

ପଦ୍ମା—ମନେ ରହିଲା ନା ?

ଶବରୀ—ହଁ, ଏଇତକ ଆଉ ମନେ ରହିବନି ନାହିଁ !

ପଦ୍ମା—ମୁଁ ଏ ପଟଖଣ୍ଡିକ ନେଇ ବୃନ୍ଦାବନକୁ ଯିବି, ତୁ କାମ ସାରି ଯମୁନାକୂଳକୁ ଆସିଲେ ଦେଖାହେବ । (ପ୍ରସ୍ଥାନ)

ଶବରୀ—ମା ଲୋ, ଯୋଉ କଲବୁଣ୍ଡେଇ ! କେଜାଣି କ'ଣ ହେଉଛି ? ସେଦିନ ତ ଯାହାର ହାବୁଡ଼େ ପଡ଼ି କେତେ ଗାଳି ଶୁଣିଛି, ଆଜି ପୁଣି ତାରି ପାଖକୁ ଆସିଲି । ଭଲ ଦେଖାଯାଉ, କେଉଁ ପାଣି କେଉଁଠିକି ବୁହେ । କେମିତି ଡାକିବି ? ଏ ଉଦୁଉଦିଆ ଦି'ପହରରେ କ'ଣ ସେ ସହଜେ ଶୁଣିବ ! ଗୀତ ଗାଏଁ କେଜାଣି ଶୁଣି ବାହାରି ପଡ଼ିବ ଅବା ।

( ଗୀତ )

ବୁଲି ବନେ ବନେ ବାଛି ମନେ ମନେ
ଆଣିଛି ସୁମନେ ଏ ଶାଗଣ୍ଡ
(ମୁଁ ଗୋ) ବରଜନାଗରୀ ରସସାଗରୀ କି
ଚମ୍ପକଗୋରୀଙ୍କ ଭେଟିବି କି,
ହୋଇବି ସୁଦିନ ସତେ ଆଜ ଦିନ
ମନ ଆଶା ମୋର ପୂରିବ କି । ୧ ।

( ଗୃହ ଅଭ୍ୟନ୍ତରରୁ କୁଟିଳା ପ୍ରବେଶ )

କୁଟିଳା—( ନିଦରୁ ଉଠି ) ଓଃ, ଶୁଆଇ ବସେଇ ଦେବ ନାହିଁ ଆଉ ! ଖରା ନାହିଁ, ତରା ନାହିଁ ସବୁବେଳେ ଏଗୁଡ଼ାକ ଗୀତ ଗାଇ ବୁଲିଲେ ? ମଲ, ମାଗିଖାଇଙ୍କର ପୁଣି ଗୀତ-ସଉକ କେତେ ଲୋ ମା ? ଏ ଉଦୁଉଦିଆ ଖରାବେଳେ କାଉ କୋଇଲି ଶୋଷରେ ମରିଯାଉଛନ୍ତି ! ଏଥିରେ ପୁଣି ଘରୁ ବାହାରି ଦାଣ୍ଡରେ ବୁଲି ଗୀତ ! ତଣ୍ଟି ଶୁଖିଯାଉନାହିଁ ? ହଇଲୋ ? ଏଠି କାହିଁକି ଠିଆ ହୋଇ ରଡ଼ିମରୁଛୁ ?

ଶବରୀ—ମା, ତୁମରି ନାଆଁ ଶୁଣି ମୁଁ ଆସିଛି ।

କୁଟିଳା—ମୋ ନାଆଁ ? କାହିଁକି ଲୋ ? ଏ ବ୍ରଜରେ କ'ଣ ଆଉ କେହି ନାହାନ୍ତି ?

ଶବରୀ—ଅଛନ୍ତି ମା, କେତେ ଅଛନ୍ତି । ସବୁ ନିମ୍ବ କ'ଣ ଚନ୍ଦନ ହୁଏ ? ସତ କହୁଛି ମା, ମୁଁ କୁଟିଳାଙ୍କ ପାଖକୁ ଆସିଛି । ତୁମେ ସେଇନା ମା ?

କୁଟିଳା—ହେଲେ ହେଇଥିବି, ନ ହେଲେ ନ ହେଇଥିବି । ମୁଁ ତ ସେଇ ମନିଷ, ମୋର କ'ଣ ଚଉବାହା ଦେଖିଲୁ—ନା ଶିଙ୍ଘ ଉଠିବାର ଦେଖିଲୁ ? ମୋ ପାଖକୁ ଆସିଛୁ କାହିଁକି ? ଯିଏ ହେଲେ ଆଉ ମୋତେ ନ ପଚାରିଲେ ଚଳୁନାହିଁ ? ନା, ତୁ ଯା । ଆଉ ଏତେ କଥା କହି ମୋତେ ବିରକ୍ତ କରନା, ଗଲୁ ।

ଶବରୀ—ଯିବ ମା, ବରକତ କାହିଁକି କରିବ ? ମୁଁ ପରା ତମ ଗୁଣ ଗୁଣି ଅସିଛି, ଏଇ ଶାଗ୍ରଟି ତମକୁ ଭେଟି ଦବାକୁ ?

କୁଟିଳା—(ହସି) ଓହୋ ! ଭେଟିବୁ, ଏଇ ଶାଗ୍ରଟି ? ବାଃ, ବେଶ୍ ସୁନ୍ଦର ତ ? ତୋ ଘର କେଉଁଠି ? ଏ ଶାଗ୍ରଟି କେଉଁଠୁ ପାଇଲୁ ?

ଶବରୀ—ବୃନ୍ଦାବନରୁ ମା !

କୁଟିଳା—ପଡ଼ାଶାଗ୍ର ନା ?

ଶବରୀ—ହଁ ମା, ଦେଖିବ ନାହିଁ ?

କୁଟିଳା—କ'ଣ ନବୁ ?

ଶବରୀ—ନେବ ଫେର୍ କ'ଣ ମା ? ମୁଁ ପରା ଭେଟି ଆଣିଛୁ ? ଗାଇଜଯାକ ତମ ନାଁ ପଡ଼ୁଛି । ସମସ୍ତେ ପ୍ରଶଂସା କରୁଛନ୍ତି । ମୁଁ ସେଥିପାଇଁ ମୋ ହାତରେ ଯାହା ହେଲା ତମ ନାଁ ଶୁଣି ଭେଟିବାକୁ ଅସିଲି ମା, ନେବ ଫେର୍ କଣ ?

କୁଟିଳା—ଆଣ ତେବେ ଝିଅ, ଘରକୁ ଆ, ଖରା ଟିକିଏ ଯାଉ, ଯିବୁ । ଆହା, ଏଡ଼େ ଖରାରେ କାହିଁକି ଆସିଲୁ ? କି ମିଠା ତୋ କଣ୍ଠି ଝିଅ ! ଆହା ! ଗୋଟିଏ ଗୀତ ଗାଇଲୁ, ଗାଇଲୁ ମା ? ମୋତେ ବଡ଼ ସୁଖ ଲାଗିଲା ମା ! ଆ—ଗାଇ ଗାଇ ଆ । ତୋତେ ମୋ ଭାଇଙ୍କ ପାଖକୁ ନେଇଯିବ । ସେ ବଡ଼ ଆଦର କରିବେ ।

ଶବରୀ—ହଉ ମା, ମୋ ଗୀତରେ ଯେବେ ଏଡ଼େ ଶରଧା, ଗାଉଛି ତେବେ ।

( ଶବରୀ ପୂର୍ବ ଗୀତ ଗାଉ ଗାଉ ଉଭୟେ ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

[ ଯମୁନାତଟ—ସନ୍ଧ୍ୟାଗମ ]

( ପଦ୍ମା ପଦ୍ମହସ୍ତେ ଗୀତ ଗାଇ ଫୁଲ ତୋଳୁଥିବା )

ପଦ୍ମା— ( ଗୀତ )

କିଏ କହୁଥିଲା କାହ୍ନୁ ଲଗାଅ ପୀରତି
ବରଜ ଅବଳାକୁଳ ମରମ କରତି
ଶଠ ନାଗର ହେ, ଏ କି ବେଭାର ହେ ? ।୧।
କିଏ କହୁଥିଲା ବସି, ବଜାଅ ବଇଁଶୀ
ଯମୁନାତଟରେ ନିତ ହେଲେ ଅଧନିଶି
ମନ ଦହିବାକୁ, ମତି ମୋହିବାକୁ ? ।୨।
ମନେ ଯେବେ ଦଗାଦାର ! ଏ କପଟ ଥିଲା
କର ଧରି କିଏ ତୁମ୍ଭ ପୀରତି ମାଗିଲା
ବାଙ୍କଚୂଳିଆ ହେ; ନିପମୂଳିଆ ହେ ।୩।

ପଦ୍ମା—ଆଉ ତ ଅସିବାବେଳ ନାହିଁ, ଏ ବାଟେ ଜଣେ ହେଲେ କାହାର ଦେଖାନାହିଁ । କାହାକୁ ପଚାରିବି ଶଠ କାହାନ୍ତି ବୋଲି ? କିପରି ଏ ପଥ ଦେବ ? ତେବେ କ'ଣ ବୃଷଭାନୁପୁର ନିକଟ ବନରେ ରହିଛନ୍ତି ? କେଜାଣି, ଶ୍ରୀମତୀ ତ ସେଠି ଅଛନ୍ତି (ନେପଥ୍ୟେ ଗୀତ ଶବ୍ଦ ଶୁଣି) କିଏ ଜଣେ ଆସୁଛି (ଲକ୍ଷ୍ୟ କରି) 'ଏ ତ ମଧୁମଙ୍ଗଳ ! ଓଃ ଗୀତର ଲହରୀ ଖାଲି ଭାଙ୍ଗିପଡ଼ୁଛି ! ଟିକିଏ ଦୂରୁ ଛିଡ଼ା ହୋଇଥାଏଁ । ରହସ୍ୟଟା ଭିତରେ ଭିତରେ ଜଣାପଡ଼ିବ 'କି ନାହିଁ ଦେଖାଯାଉ ।

( ଅନ୍ୟଦିଗେ ଶୀଘ୍ର ପ୍ରସ୍ଥାନ—
ମଧୁମଙ୍ଗଳ ପ୍ରବେଶ )

ମଧୁ— ( ଗୀତ )

ସୁନୀଳ ଯମୁନା ବହେ ଧୀରେ
ସୁନେଳ ରବିଛବି ଖେଳେ ନୀରେ ॥୦॥
ବହେ ପୁଣି ସମୀର,
ପରଶି ସରସ ଫୁଲ ଦୃରୁ ଅଧର,

ବାସେ   ବୋଲା   ଶଙ୍ଖର
ଫୁଲେ ଫୁଲେ ବୁଲେ ଦଗାଦାର
ପନ୍ନଗ-ଗ୍ଲେର
କୁଳବଧୂ ମନ ହରେ ସଞ୍ଜ-କୁଞ୍ଜରେ । ୧ ।

ନାଃ—ଯମୁନାକୁ ଛାଡ଼ି ଯିବା ଠିକ୍ ହଉ ନାହିଁ । ସନ୍ଧ୍ୟା ଆସି ହେଲା । କି ସୁନ୍ଦର ଯମୁନା ପାଣି ! ସନ୍ଧ୍ୟାଟା ଏଇଠି ବଢ଼େଇଦିଏଁ । ସଖୀଙ୍କୁ ଏ ପତ୍ର ଦେଲେ ପୁଣି ପେଟେ ଥୁଆ ! ଆହା, ହା, କି ଚମତ୍କାର ଦୃଶ୍ୟ ! ଏଣେ ସୂର୍ଯ୍ୟ ମା-କୋଳକୁ ଯିବାକୁ ତରତର, ତେଣେ ଯମୁନା ଶୀତଳପବନ ପରଶରେ ଲହରୀରେ ଯେପରି ଠାରି ଡାକେ । ଯାଏଁ, ଯମୁନା ଛାଡ଼ି ଫେର୍ ଅନ୍ୟ କେଉଁଠିକି କାହିଁକି ନିତ୍ୟକର୍ମ ବଢ଼ାଇବାକୁ ଯିବି ? ପତ୍ର ଖଣ୍ଡିକ ଏଇ ଗଛସନ୍ଧିରେ ଥାଉ, ଲୁଗା ବି ଥାଉ, ଆସିଲେ ନେବା, ଯିବା, ସଖୀଙ୍କୁ ଦେବା, ତଉକଷ ଭୋଜନ ମାରିବା । ଦିନଟା ବଡ଼ ସୁ ରୁଖୁ ରୁରେ ଗଲା ଆଜି । ଆଃ ! ଭୋଜନଟା ପଛକୁ ଏ ଶୀତଳ ପବନଟି, କି ଆରାମ ! ବାଃ ବାଃ, ବହିଆ, ବହିଆ, ବସନ୍ତ ପବନ, ବହି ଆ ।

( ଲୁଗା ଓ ପତ୍ର ରଖି ଗୀତ ଗାଇ ଗାଇ ପ୍ରସ୍ଥାନ )

ସମୀର ରେ, ମନ ଜାଣି ଧୀରେ ବହି ଆ
ଯମୁନା ଲହରୀ ମେଳେ ଭାସି ଭାସି ଆ
ଶ୍ୟାମର ମୁରଲୀସ୍ୱର   ଦୂର ବନୁ ଅପହର
ବିରହୀ ଅଙ୍ଗେ ଚନ୍ଦନ ଗୋଳି ବୋଳି ଆ ।୧।
ପରଶି କୁସୁମବଣୀ   ଉଡ଼ାଇ ମଥାଓଢ଼ଣୀ
ଆସିବେ ଗୋ ଧନମଣି କାନେ କହି ଆ ।୨।

( ପଦ୍ମା ତରତର ହୋଇ ପ୍ରବେଶ )

ପଦ୍ମା—ମନ୍ତ୍ର ଖୋଜୁଥିଲି ଯାହା ଗୋ ସଙ୍ଗାତ ବଇଦ କହିଲା ତାହା । ଚିଠି ଖଣ୍ଡିକ କ'ଣ ? କିଏ ଦେଇଛି ? ତେବେ ଶ୍ୟାମ ବୃଷଭାନୁପୁର ପାଖେ ନାହାନ୍ତି । ଆଚ୍ଛା, ଦେଖେଁ ଚିଠିରେ କ'ଣ ଲେଖାଥିବ—

( ତରତର ହୋଇ ପତ୍ର ପଢ଼ିଲେ )

**ସ**ଜ ସରୋଜ ଫୁଟା ଶିଖ ହେର,
**ଦା**ରୁଣ ବସନ୍ତ ହେଲା ବଇର ।
**ସେ** କି ସମ୍ଭବ ଯୁବତୀ ସ୍ୱଭବ ?
**ବ**ହ୍ନେବ ଭଳେ ପଦ୍ମସୌରଭ ।
**କୀ**ର୍ତ୍ତି-ଅକୀର୍ତ୍ତି ନାହିଁ ତା ବଗୁର,
**ରା**କା ରଜନୀ କିବା ଅନ୍ଧକାର ।
**ଧି**କ ଯୁବତୀ ଜନମ ଜଗତେ,
**କା**ହିଁ ଜୀବନେ ଶାନ୍ତି ତାର ସତେ ?

—ବୁଝିଛି, କିଏ ଡାଳେ ଡାଳେ ଗଲେ ପଦ୍ମା ପତରେ ପତରେ ଯିବା ଲୋକ । ଚିଠି ଲେଖା ହୋଇଛି, ନାଁ ଲେଖାନାହିଁ । ବାକି ପ୍ରତି ଧାଡ଼ିର ମୂଳ ଅକ୍ଷରରୁ, ହୁଁ କ'ଣ ହେଲା—"ସଦା ସେବକୀ ରାଧିକା"—ଏତିକି ବାହାରୁଛି । ହୁଁ, ଏପରି ଚିଠି ଢେର୍ ଢେର୍ ଦେଖିଛି । ପଦ୍ମା ପାଖେ ପୁଣି ଚାତୁରୀ ! ବେଶ୍, ଏ ଚାତୁରୀର ଠିକ୍ ପୁରସ୍କାର ଦେବି । ଚନ୍ଦ୍ରାବଳୀଙ୍କର ଏ ଚିଠିଖଣ୍ଡି ଏଠି ରଖି ଏ ଖଣ୍ଡି ନେଇଯାଏଁ । ଦେଖାଯାଉ, ଏଥର କି ଫଳ ଫଳୁଛି ।

( ନିଜ ପତ୍ର ରଖି ଅନ୍ୟ ପତ୍ର ଗ୍ରହଣ କରି )

ଯାଏଁ, ଲୁଚି ରହି ମଧୁର ଗତିବିଧି ଦେଖେଁ । ସେ ଏ ପତ୍ରକୁ ଏତେ ସନ୍ଦେହ କରିବ କାହିଁକି ? ଖୋଲିବ ତ ନାହିଁ, ଏ କଥା ସତ ! ପେଟୁ ବ୍ରାହ୍ମଣର କ'ଣ ଏତେ କଥାକୁ ନଜର ଅଛି ? ଚିଠି ନା ଚିଠି । ସାଉ କହୁଛି—ନା ପାଚିଲା ଧାନରେ ମଇ ଦଉଛି ! ବ୍ରାହ୍ମଣ ପେଟେ ଗିଳିଲେ ବୋଧ ।   ( ପ୍ରସ୍ଥାନ )

( ମଧୁ ପ୍ରବେଶ )

ମଧୁ—ଆଃ କି ଆରାମ, କି ଶୀତଳ ! କହ୍ନାଇ, ସବୁ ତୋରି ଖେଳ ସିନା ! ଯମୁନା ଲହରୀ ଖେଳାଏ, ପବନ ବହେ, ଫୁଲ ଫୁଟେ, ସବୁ ତୋ'ରି ଲାଗି ସିନା ! କଳାକାହ୍ନୁ ! ଜନ୍ମେ ଜନ୍ମେ ଏ ଅନୁଗ୍ରହ ଥାଉ, ମଧୁର ଏଇ କାମନା, ମଧୁର ଏଇ ମାତ୍ର

ଆଶା, ତୋ'ର ସ୍ନେହ, ତୋ'ର ଆଦର, ତୋ'ର ଦୟା, ତୋ'ର ମାୟାରେ ଦିନ ଯାଉ ।

( ଗୀତ )

ଶ୍ୟାମ ସଙ୍ଗେ ଦିନ ଯାଉ ରେ
ଶ୍ୟାମ ନାମ ମନ ଗାଉ ।୦।
ସୁନ୍ଦରଶ୍ୟାମଳ ଲୋଲ କଳେବର ଚଞ୍ଚଳ ନେତ୍ର ତ୍ରିଭଙ୍ଗ
କୁଞ୍ଜପଟେ ନିତି ସଙ୍ଗେ ମନୋହର
ନୃତ୍ୟଭଙ୍ଗୀ ଦେଖୁଥାଉ ରେ ।୧।
ଚନ୍ଦ୍ରକ ମଞ୍ଜୁଳ ଚୂଳ ବିଲୋଡ଼ିତ ଅଙ୍ଗଗନ୍ଧ ପରକାଶେ
ଅଧରେ ମନୋହର ମୁରଲୀତାନ ମନ
କାନେ କାନେ ଶୁଣୁଥାଉ ରେ ।୨।

---

## ଦ୍ୱିତୀୟ ଅଙ୍କ— ପ୍ରଥମ ଦୃଶ୍ୟ

( ତରୁତଳେ ଶାଖା ଧରି ସ୍ଫଟିକ ବେଦିରେ ଦଣ୍ଡାୟମାନ ଶ୍ରୀକୃଷ୍ଣ )

( ଗୀତ )

ସତେ ଟି ରେ ନବକିଶୋର ! କେଉଁ ଗୁଣେ ହେବ ସରି
ଶ୍ୟାମର ଏ ଶ୍ୟାମ କଳେବର,
ଏକେ ତିନିଭଙ୍ଗୀ ବଙ୍କା ବଙ୍କା ଚୂଳ ଚୂଡ଼ା ବଙ୍କା
ଝଟିକ ବିଜୁଳୀ ତୋତେ ଛୁଇଁର ରେ ରସମଞ୍ଜୁଳା !
କି ଦେଖି ସେ ହୃଦୟ ବଳିଲା ?
ଅଞ୍ଜନବୋଳା ଖଞ୍ଜନ- ନୟନ କି ଭାବ ମନ
କୁରୂପ ମୋହନେ ବିଳସିଲା ? । ୧ ।
ନିଖିଳ ଉପମା ଖଣି ସକଳ ଶୋଭାକୁ ଆଣି
ବିଧାତା କି ଗଢ଼ିଛି ମାନସେ !
ଲାଗିନାହିଁ କର ତାର କମନୀୟ ଅଙ୍ଗେ ତୋର
ଡର ଅବା ମଉଳେ ପରଶେ ରେ ନୀଳକୁନ୍ତଳା !
କୋଟି ରତି ନଖ-ପଦ୍ମଲୀଳା ।
କରୁଣା ତୋର ଏ ସିନା ସରଳା ନବନବୀନା !
ଅନ୍ତରେ ଯା ଶ୍ୟାମ କରେ ଖେଳା ।୨।

କୃଷ୍ଣ—ତେବେ କ'ଣ ବଂଶୀ ? ତା' କ'ଣ ଆଉ କେହି ବଜାଉ ନାହାନ୍ତି ? ସ୍ୱର୍ଗର ବୀଣାଠାରୁ କ'ଣ ଶ୍ୟାମର ବଂଶୀ ବେଶି ମଧୁର ? ଅସମ୍ଭବ ! କାହିଁ ଦିନେ ହେଲେ ତ ସେ ସ୍ୱରରେ ମୁଁ ମୁଗ୍ଧ ହୋଇ ନାହିଁ । ନା, ନା, ରୂପ ନୁହେଁ, ଗୁଣ ନୁହେଁ, ବଂଶୀ ନୁହେଁ । ପ୍ରାଣେଶ୍ୱରୀ ! ଶ୍ୟାମର ଏପରି କ'ଣ ଅଛି, ଯାହା ତୁମର ସେ ତରଳ ନୟନକୁ ସୁନ୍ଦର ଦିଶୁଛି ! ( ନିଜର ପ୍ରତିବିମ୍ବ ଦେଖି ) ଏଇ ସ୍ଫଟିକ ବେଦିରେ ଦିଶେ ଗୋଟିଏ ଶ୍ୟାମ ଅଙ୍ଗର ପ୍ରତିବିମ୍ବ ! ଦେଖିଛି, ଦେଖୁଛି, କାଇଁ କେବେ ହେଲେ ତ ଏଥିରୁ ମୁଁ କୌଣସି ମାଧୁରୀ ପାଏ ନାହିଁ । ପ୍ରିୟେ ! ହୃଦୟେଶ୍ୱରି, ତୁମେ ମଜିଛ, ତୁମେ ଭୁଲିଛ, ସତ୍ୟ—ବାକି ଶ୍ୟାମର ରୂପ-ଗୁଣରେ ନୁହେଁ । ସେ ତୁମ୍ଭର ସରଳତାରେ, ତୁମ୍ଭର ନିଜ ଗୁଣର ମାଧୁରୀରେ, ଚକିତାକୁରଙ୍ଗୀ ମୁଗ୍ଧାକୁରଙ୍ଗୀ ନିଜ ନାଭିର କସ୍ତୁରୀଗନ୍ଧରେ ଆକୁଳ । ବନେ ବନେ ସେ ଗନ୍ଧ ଖୋଜିବୁଲେ । ଜାଣେ ନାହିଁ, ସେ ଗନ୍ଧ ଯେ ତାର ନିଜର ଅଙ୍ଗେ ଅଙ୍ଗେ ରହିଛି । ଠିକ୍ ଏଇ କଥା ଘଟିଛି ଶ୍ରୀମତି ! କାହିଁ ? ଯେତେ ବାର ଦେଖେଁ ଶ୍ୟାମରୂପରେ ତ ମୋର ସେପରି ମନ ଭୁଲୁନାହିଁ । ଇଚ୍ଛା ହୁଏ ଶ୍ରୀମତି, ଥରେ ତୁମର ସେ ତୃଷାର୍ତ୍ତ ନୟନରେ ଯଦି ଶ୍ୟାମର ଏ ରୂପ ଦେଖିପାରନ୍ତି, ବୁଝନ୍ତି ତେବେ କାହିଁକି ଶ୍ରୀମତି ଉନ୍ମାଦିନୀ, କାହିଁକି ମୁଗ୍ଧା, କାହିଁକି ଉତ୍କଣ୍ଠିତା ?

( ନୀରବରେ ପୁଣି ନିଜ ରୂପକୁ ଚାହିଁରହିଲେ ଧୀରେ ଧୀରେ ମଧୁମଙ୍ଗଳ ପଶ୍ଚାଦ୍ଦେଶରୁ ପ୍ରବେଶ )

ମଧୁ—( କିଛିକାଳ ଶ୍ରୀକୃଷ୍ଣଙ୍କ ଭାବ ଲକ୍ଷ୍ୟ କରି ) ଆଚ୍ଛା ଭାଇ ? ଆମମାନଙ୍କୁ କନ୍ଦାଇଲେ କ'ଣ ତମକୁ ହସ ଲାଗେ ? ଆମ ଦୁଃଖରେ କ'ଣ ତମର ଆନନ୍ଦ ?

କୃଷ୍ଣ—ବଟୁ, କେତେବେଳେ ସଖା ! ତମର ଦୁଃଖ ହେଲେ ପୁଣି ମୋର ଆନନ୍ଦ ? ଏ କଥା କିଏ କହିଲା ? ତୁମେମାନେ ପରା କୃଷ୍ଣର ପ୍ରାଣ ?

ମଧୂ—ଠେର୍, ଠେର୍, ଶୁଣିଛୁ ଭାଇ ! ମିଠାକଥା କହି ଆଉ ମନ ଭୁଲାନା । ଏଇଟା ତ ଅନେକ ଦିନର ପୁରୁଣା କଥା । ଅଜାଙ୍କ ପୂଜା-କୋଥଳୀରେ ଥିଲା । ଆଉ ଯଦି କିଛି ନୂଆ କଥା ମୁଖସ୍ଥ ଥାଏ, କହ ।

କୃଷ୍ଣ—ଏ କଥା କାହିଁକି କହିଲ ସଖା ?

ମଧୂ—ସଖା, ମୁଁ ଗୋଟିଏ କଥା କହିବି, ବିଶ୍ୱାସ କରିବ ?

କୃଷ୍ଣ—ତୁମ କଥାରେ ଫେର୍ କେବେ ଅବିଶ୍ୱାସ ?

ମଧୂ—ନା, ଅସମ୍ଭବ । ସେଇଟା କହିବା ମୋର ଅବଶ୍ୟ ଭୁଲ୍ । ତମେ ସୁନାପୁଅ । ତେବେ ଶୁଣ । ମୁଁ ଏଇବାଟେ ଆସୁ ଆସୁ ଦେଖିଲି ଗୋବର୍ଦ୍ଧନଟା ଯାଇ ଯମୁନାରେ ଭାସୁଛି । ତା'ପରେ ହୋଇଛି କ'ଣ ଜାଣିଛ ନା ?

କୃଷ୍ଣ—ଯାଃ—

ମଧୂ—ଶୁଣ ନା—ନଈ ନ ଦେଖୁଣୁ ତ ଲଙ୍ଗଳା ! ଶୁଣ, ଆଗେ କଥାଟା ଶୁଣ । ମୋ କଥାରେ ଫେର୍ ଅବିଶ୍ୱାସ ?

କୃଷ୍ଣ—ନା—କହ ।

ମଧୂ—ତା'ପରେ କ'ଣ ହୋଇଛି···(ମୁଣ୍ଡକୁଣ୍ଡାଇ)

କୃଷ୍ଣ—କ'ଣ ହୋଇଛି ?

ମଧୂ—ଓହୋ, ରହନା, ଭାବି କରି କହୁଛି, ମନେ ପଡୁ । ଦେଖିଥିଲେ ସିନା ? ଭାବେଁ—ହାଁ । କ'ଣ ହେଇଛି; ଏଇ, ଏଇ, ହଁ ଠିକ୍ ମନେ ପଡ଼ୁଛି ଏଇଥର । ଉଁଃ, ପାଞ୍ଚଟା କି ଏଗାରଟା କଦମ୍ବ ଗଛରେ ଫୁଲ ଫୁଟିଛି—ସେଥିରେ ଗୋଟାଏ ଦୋଳି ଲାଗିଛି, କାଳନ୍ଦୀ ହ୍ରଦଟା ପଡ଼ି ତା ଉପରେ ଝୁଲୁଛି ।

କୃଷ୍ଣ—ଯାଃ—

ମଧୂ—ଶାଶୁ, ନଣନ୍ଦ, ବୋହୂ, ଝିଅ, ମା । କାହିଁକି ? ଆମ କଥାଟା କ'ଣ ମିଛ ?

କୃଷ୍ଣ—ଏଗୁଡ଼ାକ ନିହାତି ଅସମ୍ଭବ କଥା କହିଲ ।

ମଧୂ—ହୁଁ, ଆମେ କହିଲାବେଳକୁ ଏସବୁ ଅସମ୍ଭବ । ଆଉ ତୁମେ ଯେ ଏଇନେ କହିଲ ଆମେ କାନ୍ଦିଲେ ତୁମେ ହସ ନାହିଁ । ଆମେମାନେ ତୁମ୍ଭର ପ୍ରାଣ ।

କୃଷ୍ଣ—ଏ କଥା କ'ଣ ମିଛ ?

ମଧୂ—ମିଛ, ମିଛ, ମିଛ, କଞ୍ଚା ମିଛ । ଥରେ, ଦି'ଥର, ଦଶ ଥର, ଶହେ ଥର, କୋଡ଼ିଏ ଥର, ଏଗାର ଥର ଉଁଃ, ଏତିକିବେଳକୁ ହେଲେ ଅଙ୍କଗୁରି ମନେ ପଡ଼ୁଛି ?

କୃଷ୍ଣ—(ହସି) ମନେ ନ ପଡ଼ୁ । ଭଲ ହୋଇଛି । କହିବଟି କାହିଁକି ଏଡ଼େ ଅଭିମାନଟା ?

ମଧୂ—କାହିଁକି ? ତୁମର ଏ ନୂଆ ନୂଆ ଢଙ୍ଗ ଦେଖି ।

କୃଷ୍ଣ—ନୂଆ ଢଙ୍ଗ କ'ଣ ଦେଖିଲ ସଖା ?

ମଧୂ—କହିପାରୁନାହିଁ ସଖା, ବାକି ତମର ଏ ଗୃହାଣି, ତମର ଏ ରୂପ, ଏ ଭଙ୍ଗି ସବୁ ଯେମିତି ନୂଆ । ଆଉ ସବୁଥିରେ ଯେମିତି ଗୋଟାଏ କ'ଣ ଅଭାବ ମିଶି ରହିଛି । କାହିଁକି, ଯେପରି ତୁମେ ଭାରି ଉତ୍କଣ୍ଠିତ । କିଛି ଗୋଟେ ପଦାର୍ଥ ପାଇଁ ଯେପରି ବଡ଼ ଲୋଭ କରି ଗୁହାଁରିହଛ । ଆଖି, ମନ ଯେପରି ଆଉ କିଛି ଆଶା କରୁଛି ।

( ଗୀତ )

ଛଇଳ ନବଘନ, ନାଗର ନବଘନ, ସୁନ୍ଦର ନବଘନ
କି ମନ ଭାବନା ହେ ଶ୍ୟାମ ?

ଲୋଟି ଦେଉଛ କି କେହି ସୋହାଗ ସଲିଳେ ଧୋଇ,
ମରମ ବ୍ୟଥା ଗୋଳାଇ କହନା ହେ ଶ୍ୟାମ । ୧ ।

ଗିରି ଗୋବର୍ଦ୍ଧନକୂଳେ କି ଛବି ନିରେଖି ଭୋଳେ,
କି ଭାବେ ବିଭୋଳେ ମତି ମୋହନା ହେ ଶ୍ୟାମ ? ।୨।

କୃଷ୍ଣ—(ହସି, ମଧୁକୁ କୁଣ୍ଢେଇ) ସଖା, ବନ୍ଧୁ, ଯେତେ ଦୁଃଖ ଥାଉ ସବୁ ପାସୋରାଇ ଦିଅ ତୁମେ । ଆହା ! ତୁମେ ନ ଥିଲେ କୃଷ୍ଣର ପ୍ରାଣ ଖାଲି ଗୋଟାଏ ମରୁଭୂମି ହୋଇଥାନ୍ତା ।

ମଧୂ—ରଖ, ରଖ, ପ୍ରଶଂସା; ଶଗଡ଼ର ଅଖ ଛିଣ୍ଡି-ପଡ଼ିବଟି ! ମଧୁ କଣି ପିଲାଟି ନୁହଁ । ତୁମ କଅଁଳ

କୁହାରେ ଭୁଲିଯାଉ ନାହିଁ । ଅସଲ ମରମ ଆଗେ ଫିଟା ।

କୃଷ୍ଣ—ସତ କହିବି ଯେବେ, ବିଶ୍ୱାସଯିବ ତ ?

ମଧୂ—ସତ ବୋଲି ବିଶ୍ୱାସ ହେଲେ କଥାକୁ ବିଶ୍ୱାସଯିବ । ଏ କଥା ସତ କହୁଛୁ ।

କୃଷ୍ଣ—ମୋ ନିଜ କଥା, ଦିଶୁଛିନା ସଖା ? ସ୍ଫଟିକ ବେଦିକୁ ଅନାଅଁ, ଦେଖିଲି ଏ ରୂପ ?

ମଧୂ—(ଗୃହିଁ) ହଁ, ଏଇଟା ସତ କଥା । ଥରେ ତ କହିଛୁ ସେଇ କଥାଟା । ଶୁଖିଲି ମୁହଁ, ଛଳଛଳ ଆଖି ଏ ରୂପକୁ ଏକା ଅମାନିଆଁ ଦିଶୁଛି ସଖା !

କୃଷ୍ଣ—ଯାଃ, ପରିହାସ ତ କରିବ !

ମଧୂ—ପରିହାସ !

କୃଷ୍ଣ—ନୁହେଁ ?

ମଧୂ—ନା ସଖା—

( ଗୀତ )

କିରଣ ବିନା କାହିଁ ଚନ୍ଦ୍ର କି ସୁନ୍ଦର ?
କୋଇଲି ଆଗମ ବିନା ଶୋଭି କି ବସନ୍ତର ? ।୦।
ନବୀନା ସରସ ମୁଖ ବିନା କି ରସିକ ସୁଖ,
ବିନା ଅଳି ସୋହାଗ ଲଭେ କି କୁସୁମର ? ।୧।

କୃଷ୍ଣ—ସଖା, ତୁମ ଆଗରେ କଥା କହି ବଳିଯିବ ଫେର୍ କିଏ ? ସତ କହୁଛୁ ସଖା ! ଭାବୁଥିଲି ଶ୍ରୀମତୀଙ୍କର ସ୍ନେହ, ସୋହାଗ । ଏ ରୂପ, ଏ କଳା ଛବି, ଏଥିରେ ଭୁଲିବାର କ'ଣ ଅଛି ? ଝୁରିବାର କ'ଣ ଅଛି, ଭାବିବାର କ'ଣ ଅଛି, ଦେଖି କହିଲ ?

ମଧୂ—ବାସ୍ତବିକ୍ ସଖା ! ଏତେବେଳକେ ସତ କହିଲ । ମୁଁ ବି ଦେଖୁଛି, ଏ ରୂପ ଦେଖି ଭୁଲିବାର କିଛି ନାହିଁ, ଏ ରୂପ ଛାଡ଼ି ଝୁରିବାର କିଛି ନାହିଁ, ଏ ରୂପ ଭିନ୍ନ ଭାବିବାର କିଛି ନାହିଁ ।

କୃଷ୍ଣ—ପୁଣି ତ ପରିହାସ କଲ ? ଯେବେ ମୁଁ ଆଉ କିଛି କହିବି ନାହିଁ ।

ମଧୂ—ଚୁପ୍ ସଖା, ମୋ ରାଣଟି; ମୁହଁ ଶୁଖାନା । ଆଚ୍ଛା, କହ, ମୁଁ ଏଥର ମନଦେଇ ଶୁଣିବି ।

କୃଷ୍ଣ—ମୁଁ ପଚାରେଁ ସଖା ! ଦେଖୁଛ ତ ସବୁ । ଏଥିରେ ବା କି ବିଶେଷତ୍ୱ ଅଛି ? ଏଇ ରୂପ ଲାଗି, ଏଇ ଶ୍ୟାମ ଲାଗି ସରଳା ଶ୍ରୀମତୀ କି ନିନ୍ଦା, କି ଅପମାନ, କି ଲାଞ୍ଛନା ସହୁନାହାନ୍ତି ସତେ ? କାହିଁକି ବା ସେ ଏତେ ମୁଗ୍‌ଧା ? କି ସ୍ନେହ ! କି ଉତ୍କଣ୍ଠା, କି ପ୍ରେମ ତାଙ୍କର !

ଶ୍ରୀକୃଷ୍ଣ— ( ଗୀତ )

କୁନ୍ଦମନ୍ଦହାସିନୀ ନବକିଶୋରୀ କି
କେଉଁ ଗୁଣେ ସର ମୁଁ ସୁରସୁନ୍ଦରୀ କି ? ।୦।
ସର୍ବ-ଶର୍ବରୀର ସର୍ବସମ୍ପଦ ସେ
କୃଷ୍ଣଚନ୍ଦ୍ର କେଉଁ ଅଂଶ ନିକି ?
କାନ୍ତି ମନୋହର, ଶାନ୍ତି-ନିକେତନ
ଅନୁପମ ଶ୍ୟାମ-ସଖୀ । ୧ ।
ସୁନ୍ଦର ଦେବ-ସୁବାଞ୍ଛିତ ଚଞ୍ଚଳ-
ନେତ୍ରଭଙ୍ଗି ନବରଙ୍ଗିମା କି
ଅନ୍ତରେ ଅନ୍ତରେ ନିରେଖି ନିରନ୍ତରେ
ନେତ୍ର ତୃପ୍ତ ହେବ କି ? । ୧ ।

ମଧୂ—( ଗୀତ ମଧ୍ୟରେ ସ୍ୱଗତଃ ) ଠିକ୍ ବେଳ ମିଳିଛି । ଏତିକିବେଳେ ପଦ୍ମଖଣ୍ଡି ଧରାଇଦେଲେ ସଖା ସବୁ ଦୁଃଖ ଭୁଲିଯିବେ । ( ଗୀତ ପରେ ପ୍ରକାଶ୍ୟେ ) ସଖା, ଗଲି, ଗଲି, ଗଲି ସବୁ ଭୁଲିଗଲି । କହିବଟି ସଖା, ମୁଁ କାହିଁକି ଆସିଥିଲି ? ଉଃ, ଭୁଲିଗଲି । କାହିଁକି ମୁଁ ଆସିଥିଲିଟି ?

କୃଷ୍ଣ—ମୋତେ ସୁଖ ପାଅ ବୋଲି ।

ମଧୂ—ନା—ତା' ତ ନୁହେଁ ?

କୃଷ୍ଣ—ତେବେ ?

ମଧୂ—ମୁଁ ତ ଜଗତରେ ସୁଖ ପାଏଁ ଗୋଟିକୁ ।

କୃଷ୍ଣ—କିଏ ସେ ?

ମଧୂ—( ପେଟକୁ ଠାରି ) ଉଁ, ଉଁ ।

କୃଷ୍ଣ—ତେବେ ମୋ'ଠାରେ ଚମର ଭାର ଦୟା, ସେଇଥିଲାଗି ଆସିଥିଲ ।

ମଧୂ—ନା—ତା ବି ନୁହେଁ । ଦୟ୍ଯା ମଧ ମୋର ଜଣକୁ ।
କୃଷ୍ଣ—କାହାକୁ ତେବେ ?
ମଧୂ—( ହାତରେ ଠାରି ) ଲଡ୍ଡୁ, ଲଡ୍ଡୁ ।
କୃଷ୍ଣ—(ହସି) କପରି ହେ ?
ମଧୂ—ଦୟ୍ଯାକରି ପେଟରେ ଜାଗା ଦିଅଁ ।
କୃଷ୍ଣ—ତେବେ କାହିଁକି ଆସିଥିଲ, କପରି କହିବ ?
ମଧୂ—(ଅଣ୍ଟା ଖୋଜି) ପାଇଲି ପାଇଲି । ଆସିବଟି ସଖା, ମୋତେ ଆଗେ ପେଟେ ଭୋଜନ ଦିଅ, ତା'ପରେ କଥାବାର୍ତ୍ତା ।
କୃଷ୍ଣ—କାହିଁକି ସଖା ? ହଠାତ୍ ଭୋଜନଟା ମନେ ପଡ଼ିଗଲା ?
ମଧୂ—(ଚିଠି ଖଣ୍ଡିକ କାଢ଼ି ଦେଖାଇ) ଭୋଜନର ଯୋଗାଡ଼ ଆଣିଛି ଯେ, ଏ କ'ଣ ଦେଖିଲ ? ଜାଣ, ଏ କ'ଣ ?
କୃଷ୍ଣ—ଶ୍ରୀମତୀଙ୍କର ଶ୍ରୀକରଲିପି ।
ମଧୂ—ଉଁ ହୁଁ; ଖାଲି ସେତିକି କି ?
ମଧୂ— ( ଗୀତ )

ଗୁରୁ ପତ୍ରରେ ଯେ ଭାବ, ଭଙ୍ଗି, ଭାଷା ବୋଲା,
ରସସାଗରମଥନ-ନବନୀତ-ଶାକର-କର୍ପୂର-ଦଳା ।୦।
କେତକୀ ପାଖୁଡ଼ା ନୁହେଁ ଆହେ ଶ୍ୟାମ !
କେତକୀବରନା ବାଳା
କଜ୍ଜ୍ୱଳରେଖାରେ ଲେଖା ନୁହେଁ, ତବ—
ବିନେ ବିଶିଲାଣି କଳା ।୧।
ମୁଦ ନୁହେଁ ପଦ, ମୋଦ ଅଣୁମାନ
ପଦ୍ମମୁଖେ ନାହିଁ ଖେଳା
ମୁଦ୍ଧ ହୋଇଲାନ ଶ୍ୟାମରବିକର
ନ କରିବାରୁଟି ଲୀଳା । ୨ ।
ମାରଜନଯୂନମାରଚରେ କଜ୍ଜ୍ୱଳ-
ରେଖାଟି ବିରହେ ଗୋଳା
ଲେଖଟି ଶୁଟିଛି ଖର ନିଶ୍ୱାସରେ
ନିରେଖ ଚକ୍‌କଣ କଳା । ୩ ।

( ଗୀତ ଗାଇ ଗାଇ ଶ୍ରୀକୃଷ୍ଣଙ୍କୁ ଘେନି ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( କୁଟିଳା ଗୀତ ଗାଇ ଗାଇ ପ୍ରବେଶ )

ଏତେଦିନେ ପାଇଛି ଭେଦ,ମଣିଷର ପୁଣି ଏତିକି ଛନ୍ଦ ?
ବଣବୁଲି କାହ୍ନୁ-ପୀରତି, ଗୁଡ଼ଯିବ ଗୃହମାଗତି
ଗୋ ନଥିବ ଗତି
ବରଜ ବଜାରେ ଅପବାଦ ଢୋଲ
ବାଜୁଛି କାହାକୁ ମାଡ଼ିବ ବିଦ ? ॥
ଦିନେ ଧରା ପଡ଼ ତ ଥିଲୁ, ହାବୁଡ଼ରୁ ଖସି ତୁ ଗଲୁ
ଗୋ ଗୃତୁସି କଲୁ
କାହ୍ନୁଆ ଆଖିରେ ଧୂଳି ଦେଇ ମୋର
ଭାଇଆଗେ କରି ଦେଇଛୁ ଗଧ । ୨ ।

କୁଟିଳା—କି ଲୋ ? ତୋର ତ ସବୁଦିନେ; ମୋର ଏକାଦିନେ । ରକତ-ମାଉଁସ ମନିଷଶରୀର ବହି ପୁଣି ଏତିକି ଛନ୍ଦ ? ଏତିକି କପଟ ? ମା' ଲୋ ! ରଜାଘର ଝିଅ, ଗେଲବସର ହଉ ହଉ ଦିନ ସରୁନାହିଁ ! ଭାଇ କର୍ମରେ ମୋର କି ହଟହଟା ହୋଇବ ଲେଖିଥିଲା ? ବଣର ଶାଗଟା, ସେଇଟା ପୁଣି କହୁଛି କ'ଣ ନା "ଶ୍ରୀମତୀ ନ କର ଗୋ ରୋଷ; ଶ୍ୟାମ ତୁମ୍ଭର ଶରଦାସ" । ଘରବୋହୂ ! କି ଅଲାଜୁକୀ ? ଇଜ୍ଜତ ମହତ ନାହିଁ ? କାହ୍ନୁ ବଇଁଶୀ ବାଜଲେ—ଗଲା, ତା କଥା ସଇଲା ! କେତେ ଖଞ୍ଜରେ, କେତେ ଛଟକରେ ସେ ବଣକୁ ଯିବ ! ମୁଁ ଯେବେ କହିଲି, ସମସ୍ତଙ୍କ ପାଖରେ ଦୋଷୀ ହେଲି । ମୋ'ରି ତୁଣ୍ଡ ଦୁଶିଲା । ଏବେ ବଣପକ୍ଷୀଟାକୁ କିଏ ମନା କରିବ ? ଯାହା ଯାହା ଦେଖିଲି, କହିଲି । ଶବଗାକ ଚଡ଼ୁଥିଲି । ସେ ବିସ୍ମୁର ତ ମୋର ଉପକାରରେ ଅଛି । ଭାଇକୁ ଡାକେଁ, ଆଜ ବାପଘର ଗେଲବସରପଣିଆଁ ଛଡ଼େଇଦେବ ଯେ ! ଘରକୁ ଆଣି ସବୁ ଛଟକ ଭାଙ୍ଗି ନ ଦେଇଚି ଯେବେ, ମୋ ନାଁ କୁଟିଳା ନୁହିଁ । ଭାଇ !

( ଅଭିମନ୍ୟୁ ପ୍ରବେଶ )

ଅଭିମନ୍ୟୁ—କାହିଁକି ମୋତେ ଖୋଜୁଥିଲୁ ?

କୁଟିଳା—କାହିଁକି ? ଆମ ଗୁଣବନ୍ତି ବୋହୂର ଗୁଣ ଶୁଣେଇବାକୁ ।

ଅଭିମନ୍ୟୁ—କି ଗୁଣ ଫେର୍ ? ସେ ତ ବାପଘରେ ।

କୁଟିଳା—ସେତିକ ତ ଆମର ଭୁଲ ହେଉଛି । କେତେ ଥର ତ ମୋ କଥାକୁ ମିଛ ବୋଲି ଉଡ଼ାଇ ଦେଇଛ । ଏବେ ବଣପକ୍ଷୀଟା କ'ଣ ମିଛ କହିଲି ?

ଅଭିମନ୍ୟୁ—କଣ କହୁଛୁ ?

କୁଟିଳା—କେଜାଣି, କ'ଣ କହୁଛୁ । ମୁଁ କହିଲେ ମୋ ତୁଣ୍ଡ ଦୁଶିବ । ନିଜେ ଆସ, ଶୁଣ ବୋହୂର ଗୁଣ । ଶାରୀ କହୁଛି "ଶ୍ରୀମତି ନିକର ଗୋ ରୋଷ, ଶ୍ୟାମ ଭ୍ରମରର ଚରଦାସ"—ବୁଝିଲ ?

ଅଭିମନ୍ୟୁ—ଏଁ ?

କୁଟିଳା—ଚାଲ ଶୁଣିବ । ବୋହୂକୁ ଆଜ ଏଇନେ ବାପଘରୁ ଆଣି ଘରେ ବନ୍ଦକର; ନୋହିଲେ ମହତ ସରିବ । ଆଉ ବାକି ରହିବ କିଛି ? ବଣ-ପକ୍ଷୀ ତା'ର କଳଙ୍କ ଗାଉଛନ୍ତି । ଚାଲ, ଶୁଣିବ ଚାଲ ।

ଅଭିମନ୍ୟୁ—ଚାଲ୍ ନା ଦେଖି ଶୁଣେଁ । ଦଉଛି ଆଜ ।

( ଉଭୟଙ୍କ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

( ବୃଷଭାନୁପୁର ପୁଷ୍ପବାଟିକା—
ଶ୍ରୀମତି, ଲଳିତା ଓ ବିଶାଖା )

ଲଳିତା— ( ଗୀତ )

ନିଶାନା, ମନମୋହନେ ଭୂଷନା ରେ ।୦।
ଆସିବେ ରସିକରାଜ ସାଜ ଆଜ ନବ ସାଜ
ଅଭିମାନେ ଆଉ ବସନା ରେ ।୧।
କଞ୍ଜନୟନ ଗୁଛୁ-ଚନ୍ଦ୍ରବଦନ ଛବି
ସଞ୍ଜ ଆଗମ ସରି ଆଜ ନ ହିଅ ମୁଦି
ଖଞ୍ଜନ-ମୀନ-ନିଭ ଅଞ୍ଜନ ଆଖି ସଖି !
କୁଞ୍ଜେ ପୂରିବ ତୋର ସଙ୍ଗେ ମନବାସନା ରେ ।୧।
ଆତୁର ନ ହୁଅ ବାଳା, ଗଡ଼ଯାଇନାହିଁ ବେଳା
ନୀରଧାରେ ଗଣ୍ଡ ଭସାନା ରେ ।୩।

ରାଧିକା—ଲଳିତେ ! ପରିଷ୍କାର ଆକାଶ, ତହିଁରେ ନିର୍ମଳ ଚନ୍ଦ୍ର, ସୁନ୍ଦର ବସନ୍ତ ପବନ, ଫୁଟା ଫୁଲର ବାସ, କେହି ହେଲେ ତ ମନକୁ ଭଲ ଲାଗୁନାହିଁ ।

ବିଶାଖା—ଜଣକ ଲାଗି, ସବୁ ଅଛି ସହି, କିଛି ନାହିଁ ।

ରାଧିକା—ନାଇଁ ସହି ! ସତେ ମନଭିତରେ କିଏ ଯେମିତି କହିଦଉଛି, ଆଉ ଆଶା ନାହିଁ । ଅଭାଗିନୀ ରାଧିକାର ଦୁର୍ଦ୍ଦିନ ପାଖେଇ ଆସିଲାଣି ।

ଲଳିତା—ସହି, କ'ଣ ନୂଆ ଅନୁଭବ କଲ ? ଏମିତି କେତେ ଥର ତ ଅଙ୍ଗେ ନିଭେଇଛେଁ ।

ରାଧିକା—ସେକଥା ସତ । ହେଲେ, ଆଜ କାହିଁକି ମନଟା ବଡ଼ ଘାଣ୍ଟି ହେଉଛି । ବ୍ରଜପୁରରେ ଆଉ କିଛି ଘଟିଲା କି ? ମୋତେ ଖାଲି କୁଟିଳାର ମୁହଁ ଦିଶୁଛି ।

ବିଶାଖା—ସେଗୁଡ଼ାକ କିଛି ନୁହେଁ; ମନ ସୁଖ ନଥିବାବେଳେ ଏଣୁତେଣୁ କେତେ ଜାତି କଳପଣା ମନକୁ ଆସେ । ସେସବୁ କ'ଣ ସତ ?

ଲଳିତା—ଆସୁଥିବେ ଅବା, ତାଙ୍କ କଥା କ'ଣ ?

ବିଶାଖା—କିଏ ଜାଣେ ? ବାଟରେ ଯେବେ ଧରା-ପଡ଼ିଗଲେ, ସରଳ କଥା । ଜାଣ ତ ପଦ୍ମା, ଶୈବ୍ୟାଙ୍କ କଥା ! ସେଥିରେ ପୁଣି ଆମେମାନେ କେହି ବ୍ରଜରେ ନାହୁଁ ।

ରାଧିକା—ବନ୍ଧୁ କ'ଣ ପଦ ଦେଇ ନ ଥିବେ ?

ଲଳିତା—ନା, ନା, ସେ ସନ୍ଦେହ ତାଙ୍କଠାରେ କରିବାର ନୁହେଁ । ପ୍ରାଣ ଗଲେ ମଧ୍ୟ ଏହା ଅସମ୍ଭବ ।

ରାଧିକା—ତେବେ ଏତେବେଳଯାଏ ଦେଖାନାହିଁ କାହିଁକି ?

ବିଶାଖା—ଆସୁଥିବେ ଅବା—

ଲଳିତା—କି କୋଉଠି ଲୁଚି ରହି ରହସ୍ୟ ଦେଖୁଥିବେ ।

ବିଶାଖା—ସେ କଥାକୁ ମଧ୍ୟ ଉଣା ନୁହନ୍ତି ସେ ?

(ରାଧିକା ହଠାତ୍ ଉଠିଯାଇ କାନେଇବାପରି ଠିଆ ହେଲେ; ଲଳିତା ଓ ବିଶାଖା ଉଠିଯାଇ ଧରିଲେ )

ଲଳିତା—ଏ କ'ଣ ସଖି ? କ'ଣ ଦେଖିଲ ?

ରାଧିକା—(ହାତଠାରି ଦୂରକୁ ଦେଖାଇବାପରି) ଶୁଣିଲୁ ଶୁଣିଲୁ, ଦୂରରେ—ଖୁବ ଦୂରରୁ ଟିକିଏ ଟିକିଏ ବଂଶୀଧ୍ୱନି ଭାସି ଭାସି ଆସେ ପରି ! କାନେଇ ଶୁଣିଲୁ ।

(ସମସ୍ତେ ନୀରବରେ ଶୁଣିଲେ)

ବିଶାଖା—କାଇଁ ବଂଶୀ ତ ନୁହେଁ ।

ଲଳିତା—ଝିଙ୍କାରି—

( ଗୀତ )

ଆରେ କର୍ପୂରଦଳା ସୁନାବରନା
କି ଶୁଣି କସ କରୁ କଳନା ? ॥
ଯାଇ ଯାଙ୍କ ସେବାରେ କର ଆଦର (ସଜନି !)
ଗୁନ୍ଥି ରଖିଥାଅ ହାର ମାଳି ଅତର
ଆସିବେ ନବଘନ ନ ହୁଅ ଛନଛନ
ଛଳ ନୟନୁ ବନ ନ ଢାଳ ଆଉ ଧନ !
ବାଜବ ସେ ମୁରଲୀ ରାଧା ରଖ ଜୀବନ (ବନ୍ଧୁଆ ରେ)
ପୂରିବ ସିନା ମନକାମନା । ୧ ।

ରାଧିକା—( ଦୀର୍ଘନିଃଶ୍ୱାସ ପକାଇ ହତାଶଭାବେ ବସି-ପଡ଼ିଲେ) ନାଃ, ଆଉ ସେ ଆଶା ନାହିଁ ।

ବିଶାଖା—ଅନା, ଅନା, ସଖି ! ଏ କ'ଣ ହେଲା ! ହଠାତ୍ ଚନ୍ଦ୍ର ତାରା ଲୁଚିଗଲେ । ଏ କଳାମେଘ ଗୁହ୍ମି ଗୁହ୍ମି କୋଉଠୁଁ, ମାଡ଼ି ଆସିଲା ସତେ ?

ରାଧିକା—ଲଳିତେ, ( ଚମକି ) ଏ କ'ଣ ହେଲା ? ଗର୍ଜନ !—ଦୁର୍ଦ୍ଦିନର ଆଗମ ଏସବୁ ସିନା ?

(ଦେହ ଦେଖାଇ) ଦେଖ ସଖି, ବିନ୍ଦୁ ପଡ଼ିଲାଣି ! ଏ ସବୁ କ'ଣ ହେଉଛି ?

ଲଳିତା—ଡରନାହିଁ ସହି ! ଏ ପରା ଶ୍ୟାମଘନ ? ସୁଧା ବରଷେ । ଭୟ କାହିଁକି ରାଇ ? ଜାଣିନାହିଁ ମେଘ । ତମକୁ ଦେଖିନାହିଁ ସେ ।

( ଗୀତ )

ନୀରଦ, ଗରଜି ମରୁଛୁ କେତେ
ଅରଜନାହୁଁ ତ ମୋ ବନ୍ଧୁ ଲଳିତ ଭାବବିଭବୁଁ କାନ୍ତେ ॥
ଦେଖିନାହୁଁ ମୋର ବାଳା ପୟୋଧର
ଉପରେ ମୁକୁତା ହାର
କେଉଁ ବୁଦ୍ଧିବଳେ ଧରାଧରଚୂଳେ
ଲମ୍ବାଉ ସଲିଳଧାର । ୧ ।
ତ୍ରିଭୁବନେ ସରି ଅଛି କି କଣୋଗ୍ରୀ
ଭ୍ରୂରୁ ଖେଳିବା ଦଣ୍ଡକୁ
ଫୁଲୁଅଛୁ କେତେ ଦେଖାଇ ନିରତେ
ଇନ୍ଦ୍ରକୋଦଣ୍ଡ ଖଣ୍ଡକୁ ? । ୨ ।
କ୍ଷଣପ୍ରଭାକେଳି ଝୁରିକୁ ସଙ୍ଗାଳି
କରି ଫୁଲୁଅଛୁ ଯାହା
ନୀଳଚେଳାଚ୍ଛନ୍ନ ବାଳା ଅପଘନ
ଛବିକି ଅଳପ ଗୁହାଁ । ୩ ।
କରିଅଛୁ କେତେ ଭରସା ନବତେ
କରକାବଳୀ ବରଷା
ଦେଖୁଛୁ ତ କୁନ୍ଦ-ଦରହାସୀ ମନ୍ଦ
ସୁନ୍ଦର ମଧୁରହସା । ୪ ।
ଅସିତ ଗୁଣରେ ମିଶି ତ ମୋ ତୁଲ୍ୟ
କେନ୍ହ ନୋହେ କି ଶ୍ୱଶୁରୁ
ମୋ ଧନ କୁନ୍ତଳପାଶ ଇନ୍ଦ୍ରନୀଳ-
ମୟୂ ଗୁମରରୁ ଗୁରୁ । ୫ ।

( କବିସୂର୍ଯ୍ୟ )

( ରସମଞ୍ଜରୀ ପ୍ରବେଶ )

ରସ—ଲଳିତେ ! ରାତି କେତେ ହେଲାଣି; ତେଣେ ଅବସ୍ଥା କ'ଣ ବୁଝିଲଣି ନା ?

ବିଶାଖା—କ'ଣ ରସମଞ୍ଜରୀ ?

ରସ—କହିବାକୁ କିଛି ଆଉ ନାହିଁ । ବେଳ ନାହିଁ—କାଳ ନାହିଁ ।

ରାଧିକା—ରସ, କପଟ କର ନାହିଁ । କଥାଟା ଫିଟାଇ କହ ।

ରସ—କହିବି ଶୁଣିବ, ପୁରକୁ ଆସ । ଗୋବର-ଗଦାରେ ପଦ୍ମ ଫୁଟିବାପରି ଆମର ଅବସ୍ଥା ହୋଇଛି ।

ଲଳିତା—କଥାଟା ଫିଟାଇ କହ । ବଡ଼ ସନ୍ଦେହ ଲାଗୁଛି ଯେ !

ରସ—କହିବି କ'ଣ ? ବୁଝିଲ ନାହିଁ କିଛି ? ଯାବଟରୁ ନେବାକୁ ଆସିଛନ୍ତି ।

( ଗୀତ )

ଜାଣୁ ଜାଣୁ ମଣି କଣିକ ପାଣିକ
ପାଣିରେ ଦେଲେ ଭସାଇ
ଅଙ୍କକରେ ଚନ୍ଦ୍ର ଚୋଳଦେଲେ
କହ କି ଫଳ ଆଉ ଦିଶଇ
ରେ ସଜନି, କରମେ ଯା ଥିଲା ହେଲା !
ବୁଦ୍ଧି ହୁଡ଼, ବୁଡ଼ ଅଥଳ ଜଳରେ
ସାହା ବିନେ ଜୀବ ଗଲା ।୧।
ବୃଷଭାନୁଜେମା ପଦ୍ମିନୀ ପାଇଁ କି
ନଥିଲା କି ଆଉ ଘର ?
ବାଛି ବାଛି ସାର ମିଳିଲା ପର ଗୋ,
ଗୋପର ଗୋପାଳ ଛାର
ରେ ସଜନି, ସେ କି ଜାଣେ ଗଉରବ ?
ଗୋପପୁର ବୁଲି ଦହି ଦୁଧ ବିକି
ଅରଜନ ତ ଗରବ ।୨।

ରାଧିକା—ଶୁଣିଲ ନା ଲଳିତେ ? ଆଗରୁ ପରା ମୋତେ ସୂଚନା ଦିଶୁଥିଲା । ମନ କାହିଁକି ସଞ୍ଜବେଳରୁ ବିକଳ ହେଉଥିଲା ।

ଲଳିତା—ମ, ଯା କଣ ହୁଅନ୍ତା ନାହିଁ ? କେତେ ଦିନ ହେଲା ଆସିଲଣି; ଘରବୋହୂକୁ କ'ଣ କେହି ଘରକୁ ନଅନ୍ତେ ନାହିଁ ?

ବିଶାଖା—ତା ବୋଲି କ'ଣ ଏଇ ମେଘ ଅନ୍ଧାର ରାତିରେ ଆସିବାକୁ ଥିଲା ? ଆଉ କାଲ ସକାଳ ନାହିଁ ?

ଲଳିତା—ହଁ, ଏଥିପାଇଁ କଣ ହେଲା ଯେ ?

ରାଧିକା—ହବ କଣ ଆଉ ? ଗୋପପୁରରେ କିଛି ବିଶେଷ କଥା ଘଟିଛି । ନୋହିଲେ ବନ୍ଧୁ ଆସି ନ ଥାନ୍ତେ କାହିଁକି ? ଏ ଘଟଣା ପୁଣି ଘଟନ୍ତା କାହିଁକି ?

ରସ—ଶୁଣ ରାଧିକେ ! ମୁଁ ଖବର ନେଇ ଆସିବାର କେହି ଜାଣିନାହାନ୍ତି । ଏଠି ଅଛି ବୋଲି ଜାଣିଲେ ପୁଣି କି ଘଟଣା ହେବ, ଠିକଣା ନାହିଁ । ବେଗେ ଉଠିଆସ ।

ରାଧିକା—(ଛଳଛଳ ଆଖିରେ) ଲଳିତେ ! (ସଜଳ ନୟନରେ ଗୃହିଁ ଲୁହ ପୋଛିଲେ )

ଲଳିତା— ( ଗୀତ )

ସାର ସରସ ରସସାଗରୀ ନାଗରୀ,
ବାରିଜାକ୍ଷୀ ନୟନୁ ବାରି ଝରନା ଗୋରୀ ।୦।
କେ କି କରିବ ତାର, ଯାର ଶ୍ୟାମସୁନ୍ଦର
ଧନ, ଧଇର୍ଯ୍ୟ ଧର, ଚଳ ଗୋ ଚଳ ପୁର;
ଚଳାପାଙ୍ଗୀ କିଶୋରୀ । ୧ ।
( ଗାଇ ଗାଇ ସମସ୍ତେ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

( ବ୍ରଜପଥ—ଗୋପବାଳାଗଣଙ୍କର ନୃତ୍ୟ )

( ଗୀତ )

ନୂପୁର ରୁମୁଝୁମୁ ବାଜେ
ନାଗରୀ ବ୍ରଜନାରୀ ଅନୁରାଗେ ତନୁ ମାଜେ ଗୋ ।।୦।।
ହସ ଫୁଟେ ଆଖିକୋଣେ
ଫୁଲେ ତନୁ ଫୁଲବାଣେ
ନରହେ ମନ ଘରେ ଛନ୍ଦଛନ୍ଦ ମୁରଲୀ ତାନେ
ବାନ୍ଧି କାଛିଲା ଧଟା ଝିନିବାସ ନାନା ସାଜେ ଗୋ ।

---

## ପଞ୍ଚମ ଦୃଶ୍ୟ

( ବନାନ୍ତ—ସୁବଳ ଫୁଲ ତୋଳୁଥିଲେ )

ସୁବଳ— ( ଗୀତ )

ବସନ୍ତେ, ବନକୁଞ୍ଜ ଫୁଲବାସେ ହସଇ
କୋକିଳ କୁହୁ ଝଙ୍କାରେ, ମନପ୍ରାଣ ହରଇ ॥
ଧୀରେ ଧୀରେ ଧୀରେ ବହେ ସମୀର
ଝର ଝର ଝରେ ଫୁଲକେଶର
ଗୁଣୁ ଗୁଣୁ ଗୁଣୁ ମଧୁଆ ଅଳଟି ରସେ ରସଇ ।

ସୁଦାମ—(ପ୍ରବେଶ ହୋଇ) ଗଲା, ଏଠି ବସି ଭେଁ-ଭେଁ ହେଲେ ତ ସରଗକୁ ନିଶୁଣୀ ଲଗିବ !

ସୁବଳ—କାହିଁକି ? ଏତେ ଖୋପା କାହିଁକି ?

ସୁଦାମ—ତେଣେ ସାରା ବନ ତମକୁ ଖୋଜାପଡ଼ୁଛି । ମଣିଷ ବୁଲି ବୁଲି ଥକିଗଲାଣି ! ତୁମେ ତମର ଏଠି ବସି ଗୀତ ଗାଉଥା ।

ସୁବଳ—ଯାଇ ଅବା କ'ଣ କରନ୍ତି ?

ସୁଦାମ—ଗିଳନ୍ତି, ଗିଳନ୍ତି, ଆମ ପେଟକୁ ଉପକାର କରିବ କି ? ସଖା ଅନେଇଁ ବସିଛନ୍ତି । ବଳରାମ ଖୋଜୁଛନ୍ତି ।

ସୁବଳ—ଏଠି ଗୁଡ଼ାଏ ଭଲ ଫୁଲ ଫୁଟିଥିଲା ଯେ, ଦେଖି ଆଉ ମନ ଗୁଡ଼ଲା ନାହିଁ । ବୋଇଲି ତୋଳି-ନିଏଁ ସଖାଙ୍କ ପାଇଁ ।

ସୁଦାମ—ସେ କାମ ତ ହବ । ଆସ, ଖାଇସାରି ସେଇଠି ଗୁନ୍ଥୁଥା । କିଏ ମନା କରୁଛି ? ଅଖିଆରେ ଭେଁ-ଭେଁ ହେଲେ, ପେଟ ଗରମ ହେବ ଯେ ! ଆସ ।

( ନେପଥ୍ୟେ ଗୀତ )

ଅସମ ମୋହ ବିଷମ ଛଳ ଏ କେ' କାହ୍ନୁ ଶିଖାଇଲା ?
ଯାଚୁଥିଲି କେ'ବା ପୀରତି-ରତନ
ମନେ ଯଦି ଏତେ ଥିଲା ?
ବସନ୍ତ ସୁବାସବାସିତ କାନନେ
କହିଥିଲ କି ଏ ପ୍ରେମଜଳ ଦାନେ ?
କହିଁ ବା ବାଜିଲା ମୋହନ ମୁରଲୀ
ମନେ ଯଦି କାହ୍ନୁ କପଟ ଥିଲା ?

ସୁଦାମ—ଆସ ନା ?

ସୁବଳ—(କାନେଇଁ) ରହ ନା, କିଏ ଆସୁଛି, ଦେଖି-ଥିବା ।

ସୁଦାମ—ତୁମେ ତେବେ ଥାଅ, ମୁଁ ଯାଉଛି । ପେଟେ କ'ଣ ଗିଳିଛ, ତମ ପେଟକୁ ଭୋକ ନାହିଁ ବୋଲି ଆମ ପେଟକୁ କ'ଣ ଭୋକ ନାହିଁ ? କିଏ କ'ଣ ଗାଇଲା, କିଏ ଗଲା, ଆସିଲା, ଛିଙ୍କିଲା, କାଶିଲା, ଆମର କି ଥାଏ ହେ ?

ସୁବଳ—ହଁ, ରହ ରହ, ଶୁଣନ୍ତୁଅ ଟିକିଏ ।

(ଏକପାଖକୁ ନେଇଗଲେ)

ପଦ୍ମା— (ଗୀତ ଗାଇ ଗାଇ ପ୍ରବେଶ )

ଅସମ ମୋହ ବିଷମ ଛଳ ଏ କେ' କାହ୍ନୁ ଶିଖାଇଲା ॥

( ଗୀତର ପୁନରାବୃତ୍ତି )

ପଦ୍ମା—ଧରିଚ ଠିକ୍ । ଏଇଥର ଶ୍ରୀମତୀଙ୍କୁ ଠିକ୍ ଦଣ୍ଡ ମିଳିବ । କାହ୍ନୁ ! ଦେଖାଯାଉ, କିଏ ଚତୁର । ମନେ ଅଛି ମୋର ସେ ଦିନ କଥା । ପଦ୍ମା ଏତେ ବେଗେ ଭୁଲିଯାଉ ନାହିଁ । ଶ୍ରୀମତୀଙ୍କ ଚଢିଖଣ୍ଡି ସେଇ ଗଛରେ ରଖିଦେଇଥିଲି । ସେ ଖଣ୍ଡିକ କେହି ପାଇ ତାଙ୍କ ହାତକୁ ଫେରିଗଲା କି ନାହିଁ ଜଣାନାହିଁ । ସେଇତକ ହେଲେ ପୁଣି ଖଣ୍ଡେ ନାଟ ଲାଗିବ । ଦେଖେଁ, କ'ଣ ହେଲା; ଚଢିଖଣ୍ଡି ଅଛି କି ନାହିଁ । (ପ୍ରସ୍ଥାନ)

( ସୁବଳ ସୁଦାମ ପୁନଃ ପ୍ରବେଶ )

ସୁବଳ—ସୁଦାମ, ଶୁଣିଲ ? ଆମ ସଖାଙ୍କ କଥା ପୁଣି । ରହିଲ ବୋଲି ଏତକ ଶୁଣିଲେଁ । ଏଥି ଭିତରେ କିଛି ନା କିଛି ଗୋଳମାଳ ଅଛି । ଶ୍ରୀମତୀ କ'ଣ ବାପଘରୁ ଆସିଲେଣି ?

ସୁଦାମ—ମୁ ଜାଣିନାହିଁ ।

ସୁବଳ—ସଖା କିଛି କହୁ ନ ଥିଲେ ?

ସୁଦାମ—ମୁଁ ଶୁଣିନାହିଁ ।

( ପଦହସ୍ତେ ବିଶାଖା ପ୍ରବେଶ )

ବିଶାଖା—ସୁବଳ !

ସୁବଳ—ବିଶାଖେ ! ତୁମେ କପରି ? ଶ୍ରୀମତୀ କ'ଣ ଫେରିଲେଣି ?

ବିଶାଖା—ଫେରିବେ କ'ଣ ? ଟଣାହେଇ ଆସିଛନ୍ତି । ସେସବୁ ଶୁଣିବ ପଛେ, କହ ଦେଖି, ବନ୍ଧୁ କାହାନ୍ତି ?

ସୁଦାମ—ସଖାଙ୍କ ପାଖେ ଥିବେ ।

ବିଶାଖା—ଆଚ୍ଛା, ତୁମେ ଜାଣ (ଚିଠି ଦେଖାଇ) ଏ ଚିଠି କଥା କିଛି ?

ସୁବଳ—ନାଇଁ ତ, କ ଚିଠି ସେ ?

ବିଶାଖା—ଏ ଖଣ୍ଡି ବନ୍ଧୁଙ୍କ ହାତେ ଶ୍ରୀମତୀ ତମ ସଖାଙ୍କ ପାଖକୁ ପଠାଇଥିଲେ । ସ୍ୱାକୁ ମୁଁ ବାଟରେ ଗୋଟାଏ ଗଛଡ଼ାଳରୁ ପାଇଲି । ଏ ଖଣ୍ଡି ସେଠାକୁ ଗଲା କପରି ?

ସୁବଳ—କହିପାରିବ ନାହିଁ । ବାକି, ଏଇନେ ପଦ୍ମା ଏଇ ବାଟେ ଗଲା । ଖଣ୍ଡେ ଚିଠି କଥା କ'ଣ କହୁଥିଲା ସେ ।

ବିଶାଖା—ତମକୁ କହିଲା ?

ସୁବଳ—ନା, ତା ମନେ ମନେ କହୁହେଉଥିଲା, ମୁଁ ଛପିରହି ଶୁଣିଲି ।

ବିଶାଖା—ପଦ୍ମା ! ତେବେ ତ ସରିଲା । ତୁମେ ଏଇନେ କୁଆଡ଼େ ଯିବ ?

ସୁବଳ—ସଖାଙ୍କ ପାଖକୁ ।

ବିଶାଖା—ସେ କେଉଁଠି ଅଛନ୍ତି ?

ସୁଦାମ—ବନଭୋଜ ହେବ, ବଳରାମ ଆଉ ସଖାମାନେ ସମସ୍ତେ ଏକାଠି ଅଛନ୍ତି ।

ବିଶାଖା—ତେବେ ଏଇନେ ସେ କଥା ନୁହେଁ । ମୁଁ ପୁଣି କୁଟିଳା ହାଉରୁ ଲୁଚି ଖସିଆସିଛି । ବେଳ ଉଚ୍ଛୁର ହେବ । ପରେ ଦେଖା—

ସୁବଳ—ମୁଁ କ'ଣ ବନ୍ଧୁଙ୍କୁ ଏ ଚିଠି କଥା ପଚାରିବ ?

ବିଶାଖା—ନା ନା, ଥାଉ । ମୁଁ ଆଗ ବୁଝେଁ, କଥାଟା କ'ଣ ଘଟିଛି । ପଦ୍ମା କେଉଁଆଡ଼କୁ ଗଲା ?

ସୁବଳ—(ଠାରି) ଏଇ ପାଖକୁ ।

ବିଶାଖା—ମୁଁ ତା ପଛେ ପଛେ ଯାଏଁ । ଦେଖେଁ, କାଳନାଗୁଣୀ କ'ଣ କପଟ ଖେଳୁଛି ।

( ପ୍ରସ୍ଥାନୋଦ୍ୟତା )

ଏସବୁ କଥା ଏଇନେ କାହାକୁ କିଛି କହିବ ନାହିଁ । ତୁମେ ତେବେ ଯାଅ, ମୁଁ ପଦ୍ମା ପଛେ ପଛେ ଯାଇ ଦେଖେଁ ।

ସୁବଳ—ସୁଦାମ ! ଦେଖୁଛ ନା ? ଏଥିରେ ଗୋଟାଏ କିଛି ବଡ଼ ଗୋଳମାଳ ଅଛି ।

ସୁଦାମ—ଆସ ନା ଆଗେ । ସବୁ ବଳେ ଜଣାପଡ଼ିବ ନାହିଁ ? ଆସ—ଆସ ।

( ଉଭୟେ ପ୍ରସ୍ଥାନ )

ବିଶାଖା—ତେବେ କ'ଣ କାହ୍ନୁ ଏସବୁ କଥା କିଛି ଜାଣନ୍ତି ନାହିଁ ? ପଦ୍ମାର ଛଳନା ଏ ? କେଜାଣି ? ତେଣେ ଯେ ସଖୀର ଆଉ ଦେହ ମନ—କିଛି ନାହିଁ । ଧନ ଦୁଇଟାରେ ତ ସୁନାଲତା ଝାଉଁଳିଗଲାଣି । କାହ୍ନୁ ! ତମଲାଗି କି କଳଙ୍କ, କି ଅପମାନ, କି ଅପବାଦ ନ ସହୁଛି ସଖୀ ? ଏବେ ପୁଣି ଘରେ ବନ୍ଦୀ । ତେବେକେ ଆଉର ବାକି ଅଛି ?

( ଗୀତ )

ଆଉ କି ଅଛି ସହିବାକୁ ସଖୀକି ମୋର
ସହି ସହି ସଖୀର ଛାତି ପରା ପଥର । ୦ ।
ମାର, କଳଙ୍କ ଲଗାର
ମିଛି ଗଳାର ହାର—
ହେଲା, ରଜନୀ ଧନ ଗଲା, ଗଲା ଜୀବନ
ଶ୍ୟାମ ଲାଗି ମାତର ।

( ଗାଇ ଗାଇ ପ୍ରସ୍ଥାନ )

---

## ଷଷ୍ଠ ଦୃଶ୍ୟ

( ଯମୁନାତଟେ ବିଷାଦ ମନେ ଶ୍ୟାମ )

କୃଷ୍ଣ— ( ଗୀତ )

ଉଦିତ ଶରଦ-ପୂର୍ଣ୍ଣ-ଶଶଧର ଚକୋରେ ଦିଏ ପରଶ,
ବିକଚ-କମଳ-ମଧୁ-ପାନେ ଭୃଙ୍ଗ ହୁଏ କି ସତେ ନିରଶ
ରେ କିଶୋର, ଭାଗ୍ୟ ସିନା ବଳବନ୍ତ !
କଳପଲତାର କଳପକ ସେବା-
ଫଳେ କି ଫଳ ଏମନ୍ତ ରେ ।୧।
ଦିନ ଦିନ ମନ-ଭାବ ଭାବ ମନେ ଚକ୍ରୁଶ ଚିହ୍ନଟିଗୋର !
ମୋ ଆନମାନ ମାନି ନିବନବିନା କରୁ ଯେ ଭଙ୍ଗିଭୃଷି
ରେ କିଶୋର, ଛାର କଥା ଏ ଜୀବନ ।
ମୃତପିଣ୍ଡଭସ୍ମରେଣୁ ଲୋଡ଼ୁଥିବ
ତୋ ଚରଣ ଦରଶନ ରେ ।୨।

( କିଛିକ୍ଷଣ ନୀରବ ରହି ଖରନିଶ୍ୱାସ ସହ )

କୃଷ୍ଣ—କିଛି ତ ବୁଝିହୁଏ ନାହିଁ ? ଜଟିଳା, କୁଟିଳା କ'ଣ କିଛି ଗଣ୍ଡଗୋଳ କରିଛନ୍ତି ? ନୋହିଲେ ଶ୍ରୀମତୀ ଯାବଟକୁ ଆସି, ଆଜି କାହିଁକି ଆମ ପୁରକୁ ଯାଇନାହାନ୍ତି ? କାହାକୁ ପଠାଇ ବୁଝିବି ? କେହି ତ ଦେଖାଯାଉ ନାହାନ୍ତି ।

( ସବେଗେ ମଧୁ ପ୍ରବେଶ )

ମଧୁ—ସଖା ! ଏଠି ଶୁଖିଲା ମୁହଁଟି ଦେଖାଇ, ନଈ, ଗଛ, ପାହାଡ଼କୁ ଅନାଇଁ ବସିଥାଅ; ଆଉ ଆମକୁ ଖୋଜେଇ ମାରୁଥାଅ ।

କୃଷ୍ଣ—ମୁଁ ମଧ ତମକୁ ଖୋଜିମରୁଛି ବନ୍ଧୁ !

ମଧୁ—ହଁ, ଏ ତ ସତ କଥାରୁ ଫାଳେ ।

କୃଷ୍ଣ—ନାଇଁ ସଖା, ସବୁବେଳେ ମୋ' କଥାରେ ଏତେ ଅବିଶ୍ୱାସ କାହିଁକି କର ?

ମଧୁ—ଓଃ, ତେବେ ବେଳେ ବେଳେ କରୁଥିବ ? ଅଚ୍ଛା, ସେ କେତେ କେତେ ବେଳଟା ଭଲ କେବେ ହେବ ?

କୃଷ୍ଣ—ଶୁଣ ଅଛି ସଖା ! ମନେ ମନେ ଠିକ୍ ତୁମର କଥା ଭାବିଲାବେଳକୁ ତୁମେ ଆସିଗଲ ।

ମଧୁ—ଯେବେ ସତରେ ଖୋଜୁଥିଲ ମୁଁ ଶୁଣିବି, ତୁମେ ଆଗେ ମୁଁ ଯାହା ପଚାରିବି ସତ କହିବ ନା ?

କୃଷ୍ଣ—କହିବି ?

ମଧୁ—ଆଚ୍ଛା, ଆଜି ଏକୁଟିଆରେ, ଖସିଆସି ମୁହଁ ଶୁଖାଇ ଏଠି ଏମିତି ବସିଥିଲ କାହିଁକି ?

କୃଷ୍ଣ—କାଇଁ, ମୋ ମୁହଁ କ'ଣ ଶୁଖିଲା ଦିଶୁଛି ?

ମଧୁ—ଏଠି ତ ଦର୍ପଣ ନାହିଁ ! ଯମୁନାକୁ ଚାଲ, ନୀଳଜଳ-ଦର୍ପଣରେ ନିଜେ ଦେଖ ।

କୃଷ୍ଣ—ହୋଇଥିବ । ତୁମେ କ'ଣ ଜାଣିନାହଁ ସଖା ! ମୁଁ ଆଜି ଖାଇନାହିଁ ?

ମଧୁ—ଠିକଏ ଠିକଏ ସୁରକ ପାଇଛି । କାରଣ କ'ଣ ?

କୃଷ୍ଣ—ଆଜି କାହିଁକି କିଛି ସୁଖ ଲାଗିଲା ନାହିଁ ।

ମଧୁ—ମୁଁ ମଧ ସେଇଟା ଅନୁଭବ କରୁଛି । ବାକି କାହିଁକି ଯେ କ'ଣ ହେଉଛି, ବୁଝିପାରୁନାହିଁ ।

କୃଷ୍ଣ—କିଛି ବୁଝିପାରୁନାହଁ ?

ମଧୁ—ନାଇଁ ସଖା, ସତେ କିଛି ବୁଝିପାରିଲି ନାହିଁ ।

କୃଷ୍ଣ—ଆଚ୍ଛା କହିପାରିବ, ଆଜି କିଏ ପାକ କରିଛି ?

ମଧୁ—କାହିଁକି ? ଶ୍ରୀମତୀ ?

କୃଷ୍ଣ—ନା—

ମଧୁ—ନା—ଫେର କେମିତି ?

କୃଷ୍ଣ—ସେ ଆଜି ଆସିନାହାନ୍ତି ।

ମଧୁ—ଶ୍ରୀମତୀଙ୍କର ପାକ ନୁହେଁ ତେବେ ? ଅସମ୍ଭବ !

କୃଷ୍ଣ—ଅସମ୍ଭବ କାହିଁକି ? ମୁଁ କହୁଛି ସତ୍ୟ ।

ମଧୁ—କାହିଁକି ?

କୃଷ୍ଣ—ମୁଁ କପର ଜାଣିଲି ?

ମଧୁ—ଜଟିଳାର କି କୁଟିଳାର ରୋଗ ଏ; ଆଉ କିଛି ନୁହେଁ ।

କୃଷ୍ଣ—କ'ଣ ଯେ ହେଉଛି କିଛି ବୁଝିହେଉ ନାହିଁ ।

ମଧୁ—ତେବେ ତ ଶ୍ରୀମତୀ ବଡ଼ ଅଧୀର ହେଉଥିବେ । ହଁ ସଖା ! ଭଲ ମନେପଡ଼ିଲା, ଆଜି ଏତେବେଳ-ଯାଏଁ ସୂର୍ଯ୍ୟପୂଜାକୁ ଆସିନାହାନ୍ତି ।

କୃଷ୍ଣ—ସୂର୍ଯ୍ୟପୂଜା ହୋଇନାହିଁ ?

ମଧୁ—ନା, ଆଉ ହେବ କେମିତ ? ମୁଁ ଜାଣନ୍ତି ନାହିଁ ?

କୃଷ୍ଣ—( ସଖେଦେ ) ସଖା, ମୋ'ଲାଗି ସିନା ଶ୍ରୀମତୀଙ୍କର ଏସବୁ ବିପଦ ! ନଶ୍ଚେ କିଛୁ ନା କିଛୁ ଘଟିଛି । ଯଦି କିଛୁ ହୋଇଥାଏ, କ'ଣ କରାଯିବ ସଖା ? ଉପାୟ କ'ଣ ? କୃଷ୍ଣର ଗତି କ'ଣ ?

( ଗୀତ )

ସୁନାବରନା ସଜନୀ ବିନା ଆଉ ମୋହନ ଗତି ଅଛି ନା ?
ଶୀତଳ-ବାରି ବରଷା ବିନା
ଶିଶିରେ କାହିଁ ଫୁଟେ ନଳିନୀ ?
ନୟନମୀର ସମ୍ବଳ ମୋର
ଖର ନିଃଶ୍ୱାସ ଜୀବନସାର
ନବୀଣ ଆଶି, ବିଷାଦ ମାଖି ଭରସା ଶେଷେ ନୀଳଯମୁନା ॥

ମଧୁ—( କୃଷ୍ଣଙ୍କ ଲୁହ ପୋଛୁ ) ସଖା ! ନବୁଝି ନସୁଝି ଏତିକ ଅସ୍ଥିର ହେଉଛ ! ଛି, ଦେଖିବା, ବୁଝିବା କ'ଣ ହେଉଛି । ଉପାୟ ଭାବିବା । ତୁମେ ଏପରି ଅଧୀର ହୋଇପଡ଼ିଲେ ଆମ୍ଭମାନଙ୍କର ବୁଦ୍ଧି ସୁଦ୍ଧି ହଜିଯିବ ଯେ !

କୃଷ୍ଣ—(ଖରନିଃଶ୍ୱାସ ପକାଇ) ବୁଝିଛି ସଖା, ମୋ'ର- ଲାଗି ସରଳା ଦଣ୍ଡ ଭୋଗୁଥିବେ । ଧନ୍ୟ କିଶୋରୀଙ୍କ ସ୍ନେହ, ଧନ୍ୟ ଧୈର୍ଯ୍ୟ !

ମଧୁ—(ନେପଥ୍ୟକୁ ଚାହିଁ) ସଖା ! ତୁଳସୀ ଆସୁଛନ୍ତି ।

କୃଷ୍ଣ—(ଉଠିପଡ଼ି) ତୁଳସୀ ? କାହିଁକି ? (ନେପଥ୍ୟକୁ ଚାହିଁଲେ )

(ଖାଦ୍ୟଦ୍ରବ୍ୟହସ୍ତେ ତୁଳସୀ ପ୍ରବେଶ)

ମଧୁ—ତୁଳସୀ, ଅସମୟରେ କିପରି ?

ତୁଳସୀ—ଆତୁରର ପୁଣି ସମୟ ଅସମୟ କ'ଣ ?

କୃଷ୍ଣ—ତୁଳସୀ, ଶ୍ରୀମତୀ କେଉଁଠି ? ସେ କ'ଣ ?

ତୁଳସୀ—ଚନ୍ଦ୍ରକାନ୍ତ ।

କୃଷ୍ଣ—ଆଜି କ'ଣ ମୋତେ ଉପବାସ ରଖିବାକୁ ସଖୀଙ୍କର ଇଚ୍ଛା ?

ତୁଳସୀ—ତମକୁ ଉପବାସ ରଖିବାର ଇଚ୍ଛା ନୁହେଁ ଯେ, ସଖୀ ନିଜେ ଜଳଗ୍ରହଣ କରିନାହାନ୍ତି ।

ମଧୁ—କାହିଁକି ତୁଳସୀ ?

ତୁଳସୀ—ବନ୍ଧୁ, ସେ ତ ଅନେକ କଥା—ଖଣ୍ଡେ ପୁରାଣ ।

ମଧୁ—ନନ୍ଦାଳୟକୁ ଯାଇନାହାନ୍ତି, ସୂର୍ଯ୍ୟପୂଜା ମଧ୍ୟ ହୋଇନାହିଁ,—ଏ ସବୁ କ'ଣ ? ସଖୀଙ୍କର ବିନ- ଗୋଷ୍ଠୀକରେ କି ଅବସ୍ଥା ତ ଦେଖୁଛ ! ଆମେମାନେ ଏଇନେ ସେଇଆ କଥାବାର୍ତ୍ତା ହେଉଥିଲୁ । ତୁମେ ଯୋଗକୁ ଆସିଗଲ, ନୋହିଲେ ମୁଁ ଯାଇଥାନ୍ତି ।

ତୁଳସୀ—ଯାଇନାହଁ ଭଲ କରିଛ । ଦୈବ ରଖିଲା । କୁଟିଳା ତାଙ୍କୁ ଘରେ ବନ୍ଦକରି ବାଟ ଜଗି ବସିଛି । ଶ୍ୟାମସୁନ୍ଦରଙ୍କର ଅଧରାମୃତ ନ ପାଇ, ପୁଣି ଏପର୍ଯ୍ୟନ୍ତ ସେ ଜଳଗ୍ରହଣ କରି ନାହାନ୍ତି ।

କୃଷ୍ଣ—(ସବିଷାଦେ) କାହିଁକି ତୁଳସୀ ! ଏ କ'ଣ ସତ ?

( ଗୀତ )

କରୁଣାମୟୀ ମୋର ପ୍ରିୟ ସଜନୀ,
କପଟ କର ନାହିଁ ଧରୁଛି ପାଣି ଗୋ ଗଜଗମନି !
ପିଣ୍ଡରେ ପ୍ରାଣ ଦିଅ ମୀନନୟନି ଗୋ । ୧ ।
ପ୍ରାଣ ବିନେ କି ଶ୍ୟାମ ପିଣ୍ଡ ରହିବ
ଧନୀ ଗଞ୍ଜଣା ପୁଣି କାନ ଶୁଣିବ ଗୋ ଛାତି ସହିବ
ଏ ବାରତା ସଜନୀ ଆଗେ କହିବ ଗୋ । ୨ ।

ମଧୁ—ସଖା ! ଛି, ଏ କ'ଣ ? କଥାଟା ଆଗେ ବୁଝ । ତୁମେ ଅଧୀର ହେଲେ ଏମାନଙ୍କୁ ଧୈର୍ଯ୍ୟ ଦେବ କିଏ ? (ତୁଳସୀ ପ୍ରତି) ତୁଳସୀ, ଚନ୍ଦ୍ରକାନ୍ତ ଦିଅ, ମୁଁ ରଖେ (ମିଷ୍ଟାନ୍ନ ନେଇ ରଖିବା) କ'ଣ, କଥା ଭଲକରି କହିବଟି ।

ତୁଳସୀ—ବନ୍ଧୁ ! ସବୁ ଅସମ୍ଭବ କଥା ଆମର କପାଳକୁ ଘଟୁଛି । କୁଟିଳାକୁ ଜଣେ ଶବରୀ କିଏ ଶାଗଟିଏ ଦେଇଛି । ସେ ଶାଗଟା କହୁଛି—

"ଶ୍ରୀମତୀ ନିକର ଗୋ ବେଷ
ଶ୍ୟାମ ଭ୍ରମର ଚିରଦାସ ।"

କୃଷ୍ଣ—(ସାଶ୍ଚର୍ଯ୍ୟେ) ଉଁ, ଏ କିପରି କଥା ସଖା !
ମଧୁ—ରହ ଶୁଣ, ଏ ନିଷ୍ଟପ୍ଟ କାହାର କୂଟବୁଦ୍ଧିରୁ ବାହାରିଛି । ତୁଳସୀ ! ସେ ଶାଖା କେଉଁଠି ଅଛି ?
ତୁଳସୀ—ଘରେ ଭାଇଙ୍କି ଶୁଣାଇଁ ବଡ଼-ବଡ଼ ଶ୍ରୀମତୀଙ୍କୁ ବୃଷଭାନୁପୁରରୁ ଅଣାଇ ଲଗିଛୁ ନାଟ ?
କୃଷ୍ଣ—ବଡ଼-ବଡ଼ ଶ୍ରୀମତୀଙ୍କୁ ଅଣାହେଲା ?
ତୁଳସୀ—ହଁ ଶ୍ୟାମ ! ସେ ଦିନ ଶ୍ରୀମତୀ ମଧୁମଙ୍ଗଳଙ୍କ ହାତରେ ତମ ପାଖକୁ ସଙ୍କେତ ଦେଇ ଅନାଇଁ ବସିଥିଲେ ।
କୃଷ୍ଣ—ମୋ ପାଖକୁ—ସଙ୍କେତ ? ମଧୁମଙ୍ଗଳଙ୍କ ହାତେ ?
ତୁଳସୀ—ହଁ ଶ୍ୟାମ ! ସଙ୍କେତ ଦେଇ ପଥ ଜଗି-ବସିଥିଲେ । ତୁମେ ତୁମ୍ଭର ଶଠ-ସ୍ୱଭାବ ମଧ୍ୟ ଖେଳିବାକୁ ଭୁଲିନାହଁ । ଠିକ୍ ସେତିକିବେଳେ ମୁଣ୍ଡରେ ଏ ବଜ୍ର !
କୃଷ୍ଣ—(ମଧୁପ୍ରତି ସାଶ୍ଚର୍ଯ୍ୟେ) ସଖା ! ଏସବୁ କ'ଣ ?
ମଧୁ—କାହିଁକି ସଖା ! ସେଦିନ ସଞ୍ଜବେଳେ ମୁଁ ଯେ ତମକୁ ପତ୍ର ଦେଲି···
କୃଷ୍ଣ—ସେଦିନ ସଞ୍ଜବେଳେ ? ସେ ପତ୍ର ତ ଚନ୍ଦ୍ରାବଳୀଙ୍କର । ତୁମେ କିପରି ପାଇଲ, ପଚାରିବି ମନେ କରିଥିଲି; ବାକି ପଚାରି ପାରିନାହିଁ ।
ମଧୁ—କି ? ଚନ୍ଦ୍ରାବଳୀଙ୍କର ? ମୋତେ ତ ଶ୍ରୀମତୀ ଦେଇଥିଲେ, ମୁଁ ନିଜେ ଆଣିଛି । ତୁମକୁ ଏଇ ହାତରେ ଦେଇଛି ! କାହାକୁ ଅବିଶ୍ୱାସ କରିବି ? କିପରି ମିଛ ମାନିବି ? ତୁମେ ପୁଣି କହୁଛ ପତ୍ର ଶ୍ରୀମତୀଙ୍କର ନୁହେଁ—ଚନ୍ଦ୍ରାବଳୀଙ୍କର ! କି ଆଶ୍ଚର୍ଯ୍ୟ !
କୃଷ୍ଣ—ସଖା ! ଏସବୁ ଶୁଣି ମୋତେ ସ୍ୱପ୍ନ ଦେଖିବାପରି ଲାଗୁଛି । ମୁଁ ତ କିଛି ବୁଝିପାରୁନାହିଁ ?
ମଧୁ—ମୁଁ ପତ୍ର ଯମୁନାକୂଳରେ ଗୋଟିଏ ଗଛଡ଼ାଳରେ ରଖି ସନ୍ଧ୍ୟା ସାରି ସଖାଙ୍କୁ ଭେଟିଲି । ସେଇଠୁ ତ ପତ୍ର ଦେଲି; ଏତିକିଭିତରେ କ'ଣ କିଏ ହରଣଚୁରି କରି ବଦଳେଇ ଦେଇଛି ?

କୃଷ୍ଣ—ହୋଇଥିବ—ବାକି ସଖା ! ଏ ସବୁ କାହାର ନଟକୂଟ ?
ମଧୁ—ମୁଁ ତ ମନେ କରୁଛି ଏସବୁ ନଟକୂଟର ମୂଳ କାରଣ ସେଇ ପଦ୍ମା । ମନେ ଅଛି ନା ସଖା ! ସେଦିନ ପଦ୍ମାର କଥାବାର୍ତ୍ତା ?
କୃଷ୍ଣ—ଅସମ୍ଭବ ନୁହେଁ । କିପରି ଯେ କ'ଣ ଘଟିଛି, କ'ଣ କରାଯିବ ? ଏଣେ ଶ୍ରୀମତୀଙ୍କର ଅବସ୍ଥା ତ ଶୁଣିଲ ? ମୋତେ ତ ଆଉ ବୁଦ୍ଧି ଦିଶୁନାହିଁ ।
ତୁଳସୀ—ଯେବେ ସେ ଶଠିଖଣ୍ଡ ପୁଣି କୁଟିଳା ହାବୁଡ଼େ ପଡ଼େ, ତେବେ ନିଆଁରେ ଘିଅ ଢଳା ହେବ ସିନା ?
କୃଷ୍ଣ—ଶୁଣୁଛ ତ ସଖା ? ମୋର ଲାଗି ସିନା ଶ୍ରୀମତୀଙ୍କର ଏ କଷ୍ଟ ? ସଖା, କୃଷ୍ଣର ଜୀବନରେ ଆଉ କି ସୁଖ ? ପଦ୍ମାର କି କୂଟବୁଦ୍ଧି ସତେ ?
ମଧୁ—ଭାବନାହିଁ ସଖା କିଛି; ଏ ରୋଗର ତୁମେ ବଇଦ ନୁହଁ; ମୁଁ ଠିକ୍ ଔଷଧ ଦେବି । ଏକା ବାଡ଼ିକେ ଡିନିପକ୍ଷୀ ଶିକାର କରିବି । ଯାଏଁ, ପୌର୍ଣ୍ଣମାସୀଙ୍କ ସଙ୍ଗେ ଟିକିଏ ପରାମର୍ଶ କରିନିଏଁ । ତୁମେ ନିଶ୍ଚିନ୍ତରେ ଥାଅ । ମୁଁ ପୁଣି ତମ ସଙ୍ଗେ ଦେଖା କରିବି ଯେ ? କାହ୍ନୁ, ଏ ଶୁଣିଲ ମୁହଁ ଗୁହଁଲେ କି ବଞ୍ଚିରୁ ଘୁଡ଼ି ରହିବ ? କାହା ଲାଗି ଏ ଜୀବନ ଭାଇ ! କାହାଲାଗି ଆମ ଗୌରବ ସଖା ! ସବୁ ତ ଏଇ କାଳିଆସୁନା !

( ଗୀତ )

ସବୁ ସୁଖ ରେ କାଳିଆସୁନା ! ତୋହଲାଗି ସିନା ରେ ॥
ସଜ ସରୋରୁହ ଝାଉଁଳି ପଡ଼ିବ,
ପିଣ୍ଡରେ ପରାଣ ସତେ ଆଉ ଥିବ ?
ଅନ୍ଧ ବୃନ୍ଦାବନ ତୋର ହାସ ବିନେ
ତ୍ରିଭୁବନ ହେବ ଶୂନା ରେ । ୧ ।

ସଚଳ ଯମୁନା ହୋଇବ ଅଚଳ
ନୀରବ ହୋଇବେ ବହଙ୍ଗମକୁଳ
ଲୁଚିବ ବସନ୍ତ ଗିରିକନ୍ଦରରେ
ଝୁରି ତୋ ସବିଗ ବିନା ରେ । ୨ ।

( ପ୍ରସ୍ଥାନ )

( ଶ୍ରୀକୃଷ୍ଣ ଭାବିତ ହେବାପରି ନୀରବ ରହିଲେ)

ତୁଳସୀ—ଶ୍ୟାମସୁନ୍ଦର ! ଭାବି ଆଉ ଫଳ କ'ଣ ? ତେଣେ ସଖୀ ପରି ଜଳ ଗ୍ରହଣ କରି ନାହାନ୍ତି । ହେଲା କଲେ ଭେଲା ବୁଡ଼ିବ ସିନା ? ଆଉ ମଠ କରି ନାହିଁ । ଉପାୟ ଭାବି ରାଈଙ୍କି ଉଦ୍ଧାର କରି, ମାନ ରଖ ।

କୃଷ୍ଣ—( ଅଧୀରଭାବେ ) ତୁଳସୀ, ଆଉ କଷ୍ଟ ଦିଅ ନାହିଁ । ଆଉ ଯେ ଧୈର୍ଯ୍ୟ ନାହିଁ ସଖି !

ତୁଳସୀ—ରାଈ କହିଛନ୍ତି—ଶ୍ୟାମ, ତାଙ୍କର ଯାହା ହେବାର ହେଉ ପଛକେ ତୁମ ମନରେ ଯେପରି କଷ୍ଟ ନହୁଏ । ତୁମ ଆଖିରୁ ଯେପରି ଲୁହ ନଝରେ । ଏକଥା ଦେଖିଲେ, ଶୁଣିଲେ ସହିବ ଦୁଃଖ ଶହେ-ଗୁଣ ବଢ଼ିଯିବ ସିନା ?

କୃଷ୍ଣ—ଶ୍ରୀମତୀ ତେବେ ବର୍ତ୍ତମାନ କଣ କରୁଥିଲେ ସଖି ?

ତୁଳସୀ—କରିବେ କ'ଣ ଆଉ ? ଅଛି ବା କ'ଣ ? କିଏ ଆଉ ଭରସା ? ସବୁ ତ ସରିଛି ।

( ଗୀତ )

ବଞ୍ଚିରହିଛି କିଶୋରୀ ଜୀବନେ ମାତର,
ନୀରଜ ନୟନୁ ନୀର ବହେ ଝରଝର
ନିଶି ବାସର ହେ
ହେଲି ଅସର ହେ ।୧।
କି ବୋଇଲେ କିସ ବୁଝେ କିସ ପୁଣି କହେ
ନବଘନ ଆକାଶରେ ଦେଖି ଶୁହିଁରହେ
ସଖୀ ନିଜ ଘୁଇ
ଗୁହିଁ ଚମକଇ ।୨।

( ଲୁହ ପୋଛିଲେ )

କୃଷ୍ଣ—ତୁଳସୀ ! ଓଃ, କି ଦୁଃଖ ! ଘୁରି ଶ୍ୟାମଲାଗି ରାଈଙ୍କର କି ଅବସ୍ଥା, କି ଦଣ୍ଡ ! ସୁକୁମାରୀ କି କଷ୍ଟ ନ ସହିଲେ ? ଏତେ ଦୁଃଖରେ ହେଲେ ଶ୍ୟାମ ତାଙ୍କର ମନେ ଅଛି ?

( ଗୀତ )

ତଥାପି ଅଛି ସ୍ନେହରେ ଗୁଣମଣିର ମୋର ( ସତେ )
କହ ଦୟାବତୀକ ତା ବିନା କି ଗତିକ
ମୂରୁଛି ସ୍ନେହ ତାର ରେ । ୧ ।
ଜୀବ ଗଲେ ରେ ସଖି, ଋଣ ସୁଝି ହେବ କି
କାଞ୍ଚିତେ ଶ୍ୟାମ ତାର ରେ । ୨ ।

(ପଟ୍ଟକ୍ଷେପ)

---

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

( ବନପଥ—ବିଷାଦମୀ ଲଳିତା ଗୀତ ଗାଇ ଗାଇ ପ୍ରବେଶ )

ଲଳିତା— ( ଗୀତ )

ବନ୍ଧୁ, ଆଉ କି ଅଛି ସେ କିଶୋରୀ ?
ଯମୁନା ପୁଳିନ (କୁଞ୍ଜକାନନ) ନବଘନ ଶ୍ୟାମ
କାଳ ହେଲି କଳା ବାଁଶରୀ
ଆସ ବନ୍ଧୁ ହେ, ଥରେ ଦେଖି ଯା,
ଆସ ଶ୍ୟାମ ହେ, ଥରେ ଦେଖି ଯା
ସେଇ ଶତ ଶତଦଳ-ନନ୍ଦ-
ଆନନ ଶିଶିରସିକ୍ତ ଦେଖି ଯା
ସେଇ ସଜଫୁଟା ମଲ୍ଲୀ ସୁବାସ-
ପାଖୁଡ଼ା ଝାଉଁଳ ପଡ଼ିଛି ଦେଖି ଯା
(ତୁମେ) ପ୍ରେମିକ ପରାଣ ପରା ନଟବର !
ପ୍ରେମିକା-ପ୍ରୀତିଟି ହୃଦୟର ହାର
ଆଜ କି ସେସବୁ ଭୁଲିଲ ବନ୍ଧୁ ?
ସତେ କି ସେସବୁ ଭୁଲିଲ ବନ୍ଧୁ ?
ତବ ଲାଗି ଶ୍ୟାମ ଗଲି କୁଳମାନ
ନ ପାଶିଲି ସହି ପାସୋରି ।

( ମଧୁମଙ୍ଗଳ ପ୍ରବେଶ )

ମଧୁ—ବାଃ, ବେଶ, ଲଳିତା ଆସିଗଲେଣି ତ ! ମୋର ତେଣେ ପୌର୍ଣ୍ଣମାସୀଙ୍କ ପାଖେ ଟିକିଏ ବିଳମ୍ବ ହୋଇଗଲା । ବେଶି ବେଳ ହେଲା ଆସିନାହଁ ତ ? (ହଠାତ୍ ମୁହଁକୁ ଚାହିଁ) ଓଃ, ଏ କ'ଣ ? ଆଖି ତମର ଲୁହ ଛଳଛଳ କାହିଁକି ? ମୁହଁ ଶୁଖିଲା କାହିଁକି ? ଛିଃ, ଏସବୁ କ'ଣ ? କେତେବେଳେ କଥା ଅବା ନ ହୋଇଛି ! ଏଇ ଛାର କଥାରେ ଭାବନା ?

ଲଳିତା—(ଦୀର୍ଘନିଃଶ୍ୱାସ ପକାଇ) ଭାବନା କିଛି ନୁହେଁ ବଟୁ ! ଥରେ ଯାଇ ଯେବେ ଶ୍ରୀମତୀଙ୍କୁ ଏତେବେଳେ ଦେଖନ୍ତ···

ମଧୁ—(ବାଧାଦେଇ) ଥାଉ ଥାଉ ଲଳିତେ, ଆଉ ସେ କଥା କହ ନାହିଁ । ମୁଁ ଯାହା କହୁଛି, କର । ଖୁବ୍ ସାବଧାନରେ ଯେପରି ଏସବୁ କାମ ହୁଏ ।

ଲଳିତା—କ'ଣ କରିବି ବଟୁ ?

ମଧୁ—(ଦୁଇଖଣ୍ଡ ପତ୍ର କାଢ଼ି, ବାଛି ଖଣ୍ଡିଏ ଦେଇ ) ନିଅ ଏ ପତ୍ରଖଣ୍ଡି; ଖୋଲିବାର କିଛି ଦର୍କାର ନାହିଁ । ଯାକୁ ଏଭଳି ଜାଗାରେ ପୁରରେ ରଖି ଦେଇଥିବ, ଯେପରି କୁଟିଳା ଏ ପତ୍ର ଦେଖେ ।

ଲଳିତା—କୁଟିଳା ? ( ଚମକି ଉଠିଲେ )

ମଧୁ—ଶୁଣ, ଆଗେ କଥାଟା ଶୁଣ । କୁଟିଳା ଏ ପତ୍ର ପାଇଲେ ନିଶ୍ଚେ ଅଭିମନ୍ୟୁ ଜାଣିବେ । ତା'ପରେ ଯାହା ହେବ, କରାଯିବ । ତୁମେ ବେଗେ ଯାଅ; ଉଚ୍ଚୁର କର ନାହିଁ । ଏଇଲାଗେ ଯେମିତି ଏସବୁ କାମ ହୋଇଯାଏ ।

ଲଳିତା—ଯିବି ତେବେ ? (ପତ୍ର ଗ୍ରହଣ କରି ପ୍ରସ୍ଥାନ)

ମଧୁ—ହଁ ଚାଲିଯାଅ । ଯାଃ, ଗୋଟିଏ କାମ ଗଲା, ଆଉ ଶୈବ୍ୟା ଆସିଲେ ବଟୁର କୌଶଳ ଫଳିବ । ବହୁତ ବେଳୁ ଆସି ଶୁଣିଛି । ଏମାନଙ୍କର ଶ୍ରୀମତୀଙ୍କଠାରେ କି ସ୍ନେହ ! କି ମାୟା ! ଲଳିତା ଗୀତ ଗାଉଥିଲା, ଇଚ୍ଛା ହେଲା ନାହିଁ ମଝିରେ ପହଞ୍ଚି ରସଭଙ୍ଗ କରିବି । ଏଣେ କାହ୍ନୁ ଆମର ତ କମ୍ ନୁହନ୍ତି । କେତେବେଳେ ଜ୍ଞାନ-ଅଛି, କେବେ ପୁଣି ପାଗଳ ! ଭକ୍ତର ହରି, ପ୍ରେମର ହରି, ସ୍ନେହର ହରି ସୋହାଗରେ ବନ୍ଧା । ମଜାଉଛି, ପୁଣି ମଜ୍ଜିଛି । ନିଜେ ନିଜକୁ ଭୁଲିଯାଉଛି । ନୋହିଲେ କମଳନୟନ ନୀର-ଛଳଛଳ ହୁଅନ୍ତା କାହିଁକି ? ଏଣେ ଶ୍ରୀମତୀ ପାଗଳମ୍ମା; ତେଣେ ଚନ୍ଦ୍ରାବଳୀ ଗରବଣୀ, ଆଉ ମଝିରେ ତ ଏ ମଧୁଆ ବ୍ରାହ୍ମଣର ପ୍ରାଣର ପ୍ରାଣ ସେଇ ନଟକୁଟିଆ ଶ୍ୟାମ ନଟବର । ଆହା ହା !

( ଗୀତ )

କମନୀୟ ଶ୍ୟାମଳ ମୂରତି ମନୋହର
ସୁନ୍ଦର ବନଫୁଲ ସାଜେ
ରତନବିମଣ୍ଡିତ ନୂପୁର କି ମଞ୍ଜୁଳ !
ରଙ୍ଗ ଚରଣଯୁଗ ରାଜେ ।
ଚନ୍ଦ୍ରବଦନହିତ ମନ୍ଦ ମୁରଲୀଧର
ଅଧର ସୁକୋମଳ ଭାତି
ଭଙ୍ଗୀ ତ୍ରିବଙ୍କିମ ନିରେଖି ନିରନ୍ତର
କୋଟି ମଦନ ମରେ ଲାଜେ ।

( ଶୈବ୍ୟା ପ୍ରବେଶ )

ଶୈବ୍ୟା—ହଁ, ଆମକୁ ଆସିବାକୁ ଡାକଦେଇ ଏଠିବସି ଭେଁ ଭେଁ ହଉଥା' ।

ମଧୁ—ସଖି, ତମ ପଥ ଜଗିବସି ରସର ଆଳାପ କରୁଥିଲି ।

ଶୈବ୍ୟା—ହଁ, ରସର ଆଳାପ ? ଆହା, କି ରସମୟ ରେ ?

ମଧୁ—ସେ କଥା କ'ଣ ମିଛ ମଣିଲ କି ରସଦାନି ? ଦୁଧ, ଦହି, ସର—ସବୁ ରସ-ମସଲାର ରସ ଯେ ଏଇ ଗର୍ଭରେ ଭରା । ଚିପୁଡ଼ିଲେ ଜାଣନ୍ତ କି ?

ଶୈବ୍ୟା—ଥାଉ ଥାଉ ସେ ରସକଥା, କାହିଁକି ଡାକିଥିଲ, କହ ?

ମଧୁ—କାହିଁକି ? ଏଇତକ ବୁଝିଲ ନାହିଁ ? ଏଥିରେ ତ ଏମିତି କିଛି କଠିନ ଶବ୍ଦ ବାଘରା ହୋଇନାହିଁ—

( ଗୀତ )

କେତେ କାଳୁ ଭେଟ ନ ଥିଲା ସତେ ସୁନାବରନ !
ଛଇଳୀ ରେ ନବ ଛଟକେ ପେଟ କିଣିଲୁ ଧନ !
ବଚନ ମଧୁର ରସ ଗୋ ଛଣାପଣା ସୁନ୍ଦର !
ହସ ଖଣ୍ଡି ଚୋର ଜନ୍ମିଲ ଫାଳେ ଚୂପୁଡ଼ା ସର ।
ଭୋକଲା ପେଟକୁ କଥା ଗୋ ଚୋର ପୂର ଭୋଜନ
ଶୋଷିଲା ଜନକୁ ଗୃହାଣୀ ସତେ ଅମୃତପାନ !
ଅନା ଅନା ଗୋରୁନୟନା ! ବାରେ ସରୁବଚନା
କେତେ କାଳର ଏ ଶରଧା ଭାଙ୍ଗନାହିଁ ନଗନା !

ଶୈବ୍ୟା—ଯାଃ, ମୁଁ ଯାଉଛୁ ତେବେ । ତୁମ ପରିହାସ ଶୁଣିବାକୁ ମୁଁ ଆସିନାହିଁ ।

( ପ୍ରସ୍ଥାନୋଦ୍ୟତ )

ମଧୁ—ଏ ଗୋ ରସମୟି ! ଶୁଣ, ଶୁଣ, ଗୌରଚନ୍ଦ୍ରିକା ନ ହେଲେ ପାଠଟା ଶୁଦ୍ଧ ହେବ କେମିତି ? ଶୁଣ ।

ଶୈବ୍ୟା—ପରିହାସ କର ନାହିଁ, କଥା କ'ଣ କହ ?

ମଧୁ—ନିତାନ୍ତ ତେବେ ଶୁଣିବ ?

( ଗୀତ )

ସଜନି ! ଯାଅ ପୁରକୁ ସାଜ
ବଜେ କରିବେ ଗୋ ମୋହନରାଜ ।
କୁଞ୍ଜ କରିଛନ୍ତି କଳାକହ୍ନାଇଁ
ଚନ୍ଦ୍ରାବଳୀ ସଙ୍ଗ ଲଭିବା ପାଇଁ । ୧ ।
ଗୋଳି ରଖିଥାଅ ଚୂଆଚନ୍ଦନ (ଗୋ)
କର୍ପୂର ମିଶାଇ କରି ଯତନ । ୨ ।

ଶୈବ୍ୟା—ମଧୁ, ଥରେ ପରା ତମଙ୍କୁ କହିଲି ରହସ୍ୟ କରିବ ନାହିଁ ବୋଲି ?

ମଧୁ—ନାଇଁ ଗୋ ଧନ ! ରହସ୍ୟ ନୁହେଁ, ସତ । ତୁମେ ଗୋଟିଏ କାମ କରିବ ନା ?

ଶୈବ୍ୟା—ପୁଣି କ'ଣ ବାହାରିଲାଣି ।

ମଧୁ—(ଚିଠି କାଢ଼ି) ଏ ଚିଠିଖଣ୍ଡି ନିଅ, ଚନ୍ଦ୍ରାବଳୀଙ୍କ ପୁରରେ ଏମିତି ଥାନରେ ରଖିଦେବ ଯେମିତି ଚିଠିଟି ଗୋବର୍ଦ୍ଧନମଲ୍ଲ ଦେଖିବେ । ଚିଠି ପାଇ ସେ ନିଶ୍ଚେ କାଲି ରାତିରେ ଘରୁ ବାହାର ଆସିବେ । ସଖା ଆମର ସେତିକିବେଳେ ପୁରରେ ଚନ୍ଦ୍ରାବଳୀଙ୍କ ସହିତ ସାକ୍ଷାତର ଅଭିଳାଷ ରଖି ମୋତେ ଏ ପତ୍ର ତୁମକୁ ଦେବାକୁ କହିଛନ୍ତି ।

ଶୈବ୍ୟା—( ପତ୍ର ନେଇ ) ଆଉ ତ କିଛି ଏଥିରେ ନାହିଁ ?

ମଧୁ—ଠକିବାକୁ କ'ଣ ଆଉ କେଉଁଠି ଜାଗା ମୋତେ ମିଳନ୍ତା ନାହିଁ ? ଏହିସବୁ କ'ଣ ଠକିବା କଥା ?

ଶୈବ୍ୟା—ତେବେ ମୁଁ ଯାଉଚି ।

ମଧୁ—ବେଗେ ଯାଅ, ଏଇନେ ଏ କାମ ସାର, ଯେପରି ସଖା ନିରାଶ ନ ହୁଅନ୍ତି । ମୁଁ ନିଶ୍ଚିନ୍ତରେ ଗଲି । ତେଣେ ତାଙ୍କୁ ଏସବୁ ସମ୍ବାଦ ଦେବି ।

ଶୈବ୍ୟା—ହଁ, ଏ କଥା ମୋତେ ଲାଗିଲା । ତୁମେ ଯାଅ, ତୁମ ସଖାଙ୍କୁ ଖବର ଦବ ।

( ମଧୁ ପ୍ରସ୍ଥାନ )

( ଗୀତ )

ଏତେଦିନେ ସଖୀ ମୋର,
ମନେ ପଡ଼ିଲା କି ମନଚୋର ହେ ?
ଆଖି ଆଖି ଦେଖା ଚେଣିକି ଥାଉ ଗୋ
ସପନ ହୋଇଲା ଭେଟ ହେ
ଦୂରବନେ କେବେ ରଜନୀ-ଅଧରେ
ମୁରଲୀ କରେ ଉଚାଟ ହେ । ୧ ।
ହେ ନବକିଶୋର, ଏତେଦିନେ ସତେ
ତରିଲିଛୁ କି ଅନ୍ତର ହେ
ଅମାନିଶି ପିବ ଶଶୀ କି ଉଇଁବ
ପୋଛିବ ସଜନୀ ନୀର ହେ । ୨ ।

---

## ଦ୍ୱିତୀୟ ଦୃଶ୍ୟ

( ଉଦ୍ୟାନ—ଶ୍ରୀମତୀ, ଲଳିତା, ବିଶାଖା, ରସମଞ୍ଜରୀ । ବିଷାଦ ମନେ ଶ୍ରୀମତୀ ବସିଥିଲେ; ଲଳିତା ଧୈର୍ଯ୍ୟ ଦେଉଥିଲେ )

ହେ ସଖି, ମାନମୟି ! ଦୁଃଖ ତେଜି ମିଳିବେ ମନଚୋରି;
ଉଦିବେ ନବ ଜଳଦରୁଚି ଶ୍ୟାମଘନ ଶୋଭନ
ବରଷି ଘନରସ ସରସଧାରି;
କୁଞ୍ଜପଟେ ଗୁଞ୍ଜରିବ ମଞ୍ଜୁ ମଧୁସଞ୍ଚରେ
ସେହି ମୋହନ ମୁରଲୀ ମନୋହାରି ।
ବନ୍ଧ ଅଳକାର ପାରିଜାତ ଫୁଲ ସୌରଭ-
ଗନ୍ଧେ ଭରି ବୃନ୍ଦାବନ ସାରା
ଯୁଗଳ ସେହି ଯମୁନାତଟେ; ରଞ୍ଜିବେ ଗୋ ସୁନ୍ଦରି
ଝଲସି ଉଠି ମନନୟନତାରା ।

( କୁଟିଳାର ପ୍ରବେଶ )

କୁଟିଳା—ଯେତେ ମନାକଲେ ଗୀତ ନ ଗାଇଲେ ଆଉ ଘର ଶାନ୍ତି ହଉନାହିଁ ? ଧନ୍ୟ ଲୋ ତମ ଗୁଣ, ଟିକିଏ ହେଲେ ଲାଜ ମହତ ନାହିଁ ? ମନାକରିଥିଲି ପରା ଘରୁ ଆସିବାକୁ । ଏଠିକି ଫେର୍ ଆସିଛ କାହିଁକି ? ଗୀତ ଗଡ଼ମଡ଼ିବାକୁ ?

ଶ୍ରୀମତୀ—ଗୀତ, କି ଗୀତ ? କିଏ ଗାଉଥିଲା ?

କୁଟିଳା—ଜୁନିହୁଅ । ଜଣାପଡ଼ୁଛି ସବୁ ଗୁଣ ଯେ ! ପୁଣି ପଚାରି ହଉଛୁ କିଏ ଗୀତ ଗାଉଥିଲା ? ଦଇବ ମୋତେ ରଜାଘର ଝିଅ କରିନାହିଁ ବୋଲି କ'ଣ କାନ ଦେଇନାହିଁ ? ଓହୋ ? କି ବହିଲା ମୁହଁ !

ଲଳିତା—ଗୀତ ତ ନୁହେଁ, ଶ୍ଲୋକପାଠ କରୁଥିଲୁଁ ।

କୁଟିଳା—ଶୋଲଖ ? ମୁଁ ତ ଆଉ ଏଡ଼େ ଯୋଗ୍ୟର ନୁହେଁ ଯେ ଶୋଲଖ ପଢ଼ିବି ! ଏଠିକି ଆସି କି ଶୋଲଖ ପଢ଼ୁଥିଲ ?

ବିଶାଖା—ସୂର୍ଯ୍ୟପୂଜା ହବ ପରା ?

କୁଟିଳା—ସୂରୁଯପୂଜା ? କାହିଁକି, ଘରେ କଲେ କ'ଣ ହୁଅନ୍ତା ନାହିଁ ? ସୂରୁଯଦେବତାଙ୍କୁ କ'ଣ ଘରେ ଡାକିଲେ ସେ ଆଉ ଶୁଣିବେ ନାହିଁ ?

ଲଳିତା—ସେଠି ବେଦୀ କେମନ୍ତେ ହବ ? ହୋମ କେମନ୍ତେ ହବ ? ସୂର୍ଯ୍ୟ କି ସେଠିକି ଦିଶିବେ ?

କୁଟିଳା—ପାରିବ ନାହିଁ ଲୋ ମା' ତମକୁ । ଶହେ ଥର କହୁଛି—ହାରିଲି, ହାରିଲି । ମୋର ଆଉ କାମ ନାହିଁ, ଦାମ ନାହିଁ ? କିଏ ମୋର ତମ ସାଙ୍ଗେ ବକବକ ହଉଥିବ ? କ'ଣ କରୁଛ କରୁଥା' ।

(ରାଗି ପ୍ରସ୍ଥାନ)

ଲଳିତା—ଗଲା ଚଣ୍ଡୀ, ତାକୁ ଗୁହାଁଲେ ତ ଗୁହ ଥରେ ।

ବିଶାଖା—ତା'ର ତ ବାହାଘର ଲାଗିଛି ! ଏଣୁ ଆସି ଥରେ ଧମକ ଦେଇଗଲା—ତେଣୁ ଆସି ଥରେ ଆଖି ତରାଟି ଗୁହାଁଦଉଛି ।

ଶ୍ରୀମତୀ—ସଖି ରେ, କେତେ ଦିନ ଆଉ ? କେତେକାଳ ସହୁଥିବି ? ଏ ଜୀବନ ଯିବାର କ'ଣ କିଛି ଉପାୟ ତମମାନଙ୍କୁ ଦିଶୁନାହିଁ ?

ଲଳିତା—ଛିଃ, ଅମଙ୍ଗଳ କଥାଗୁଡ଼ିକ ମୁହଁରେ ଆଣନ୍ତି ? କାଲି ଭିତରେ ଯାହାର ଉପାୟ ହେଇଯିବ ଯେ !

ଶ୍ରୀମତୀ—ମୋତେ ମୋ ଦୁଃଖ ବେଶି ବାଧୁନାହିଁ ସଖି ! ତୁଳସୀ କହୁଥିଲା, ସବୁ ଶୁଣିଛ ତ ? କାହା ଦୁଃଖ ସହିବି ସହି ?

( ଗୀତ )

ନୀଳକମଳ ଶ୍ରୀମୁଖ ଶୁଖିଛି
ଝାଞ୍ଜି ପବନ ମଞ୍ଜିରେ ଲାଗିଛି ଗୋ
ଦୁଃଖକୁ ସହିବି ସହି ରେ !
ଜୀବ ଥାଉ ଯାହା ଶୁଣିଲି ମୁଁ ଏହା
ବହି ଗଲେ ଥିଲି ଲିହି ରେ । ୧ ।
ଶୁଖିଛି କି ସତେ ଯମୁନାନୀର,
ନ ମିଳିଲା ପରା ଆଉ ଗରଳ ଗୋ
ଅଭାଗିନୀ ଜୀବେ ଅଛି ଗୋ
ନୀଳମଣି ଦୁଃଖ ଶୁଣିବା ଆଗରୁ
ମତି ଯାହା ନ ଫାଟିଛି ଗୋ । ୨ ।

ଲଳିତା—ଛିଃ ଗଧେ ! କହିଲ ପରା, ତା'ର ବ୍ୟବସ୍ଥା କରାଯାଉଛି । ଦେଖିବ ନାହିଁ; ଦିନେ ଦି'ଦିନରେ ପୁଣି ଶୁଭଶଣୀ ଉଇଁବେ । ବିରହ ବିନା କେବେ ମିଳନ ସୁନ୍ଦର କି ସଖି ? ରାତି ନ ଥିଲେ ଲୋକେ ଚନ୍ଦ୍ରର ମାଧୁରୀ ବୁଝନ୍ତେ କାହିଁକି ? ବର୍ଷା ବିନା କେବେ ବିଜୁଳିର ଛଟକ ସାଜିବ କି ? ଚାଲ ସଖି, ଘରକୁ ଚାଲ । କୁଟିଳା ପୁଣି କ'ଣ ମନ୍ତ୍ରଣା କରିବସିବଣି ! ସୂର୍ଯ୍ୟପୂଜା ସାରି ବେଗେ ଯିବା । ଆସ ସହି, ଭାବନା ଛାଡ଼ । ଛିଃ, ଆଉ ମନଦୁଃଖ କର ନାହିଁ । (ଉଠାଇଲେ)

ବିଶାଖା— (ଗୀତ)

ଦେଖିନାହିଁ କାହିଁ ସହି ! ତାରା ଦିନେ ଆସେ ଖରା
ବଜ୍ର ଦିନେ ବିଜୁଳି କି ଆକାଶେ କରଛି ଖେଳା ?
ବିରହ ମାରି ନ ବହି
ମିଳନ କି ଆସେ କାହିଁ ?
ଦୁଃଖ ବିନେ ହସମୁଖ କେବେ କି ଦିଶିବ ତୋରା ?

---

## ତୃତୀୟ ଦୃଶ୍ୟ

( କକ୍ଷ—ପତ୍ରହସ୍ତେ କୁଟିଳା )

କୁଟିଳା—(ପତ୍ରକୁ ଏକ ଦୃଷ୍ଟିରେ ଚାହିଁ) କ'ଣ ଲେଖା ହୋଇଛି ? ( ଅଟକେଇ ଅଟକେଇ ପଢ଼ିଲେ ) 'କାଲି ରାତି ଦ୍ୱିତୀୟ ପ୍ରହରରେ ଦଧିଗ୍ରାମର ଭଗ୍ନ ଶିବ-ମନ୍ଦିରରେ ଯେପରି ହେଉ ସାକ୍ଷାତ୍ ହେବ, ଅପେକ୍ଷାରେ ଥିବି'—ଓହୋ ? ସାତ ତାଳ ପଙ୍କ ଭିତରୁ ତ ବାହାରିବ ଲୋ ! ପାପ ପୁଣି ଲୁଚିବ ? ମୋତେ ସିନା ତେମେ ସବୁ ମନେ ମନେ ଲୁଚେଇ ଥା; ଦଇବ ତ ଦେଖେଇଦବ । ଏ ଚିଠି ସେଇ କଳାମୁହାଁ କାହ୍ନୁଆ ଦେଇଛି—ଆମ ଗୁଣବନ୍ତି ସତୀ ସାବିତ୍ରୀ ବୋହୂଙ୍କ ପାଖକୁ । ଏଠି କିଏ କେମିତି ଭୁଲ୍‌ରେ ପକାଇ ଦେଇଛି । ଗୁରିବାଟ ତ ବନ୍ଦ; ଏବେ ତ ଆଉ ଯମୁନାଯିବା ନାହିଁ, ସୂର୍ଯ୍ୟପୂଜା ନାହିଁ—ଚାଲିଲା ଏଣିକି ଚିଠିପତ୍ରରେ । ହଁ ଲୋ ମା', ରାଜାଘର ଝିଅ, ପୁରାଣ ସ୍ମୃତିହୁଡ଼ିରେ, ପାଠ-ଶାଠରେ ଯୋଗ୍ୟ । ଆମେ ସିନା ମୂରୁଖ । ହେଲେ ଏଖଣ୍ଡିକ କ'ଣ ଆମ ଆଖିରୁ ଯିବ ? କେଉଁଠୁ ସିଖିଆଣିଆ ? ନାଁ ଗାଁ କିଛି ଲେଖିନାହିଁ । ଘରନିଆଁ ବୋଲି ଅଣ୍ଟିରେ ପୂରେଇଲେ କ'ଣ ପୋଡ଼ିଯିବ ନାହିଁ ? ଯାଏଁ, ଏଇନେ ଏୟାକୁ ଭାଇକି ଦେଖାଏଁ । କି ଲୋ ! ମତେ ଲୁଚେଇମରୁଛ ଯେ ଦଇବ ହେଇ ତ ଜଣେ ଅଛି ? ଧରମ ଦେଖଉଛି ଲୋ, ଧରମ ଦେଖଉଛି ।

( ପ୍ରସ୍ଥାନ )

(ବିପରୀତ ଦିଗରୁ ତୁଳସୀ, ରସମଞ୍ଜରୀ ଦୁହେଁ ପ୍ରବେଶ)

ରସ—ମୁଁ ଦେଖିଛି ପରା, ଆଗେ ଚିଠିଖଣ୍ଡି ପଢ଼ିଲି ।

ତୁଳସୀ—କ'ଣ ଲେଖାଥିଲା ?

ରସ—କାଲି ରାତିକି ଦଧିଗ୍ରାମରେ ସେ ଭଙ୍ଗା ମହାଦେବ ଦେଉଳରେ ଦେଖାହେବାକୁ ।

ତୁଳସୀ—ବେଶ୍, ତା'ପରେ କ'ଣ ହେଲା ?

ରସ—ସେଇଠୁ ତ ଗୋଟାକ ସାତଟା ହେଲା । ଦେଖି-ଥିଲେ ଜାଣନ୍ତୁ ସିନା । ଓଃ ! ସେ ଯୋଡ଼ି ଆଖିମାନ ବାହାର କରି କଡ଼ମଡ଼ି ହେଲା, ମୁଁ ବୋଇଲି ମଶାଣିଚଣ୍ଡୀ ଉଭାହେଲା କି ? (ହସିଲେ)

ତୁଳସୀ—(ହସି) ହାବୁଡ଼େ ତ ପଡ଼ନାହିଁ ?

ରସ—ଆଲୋ ମାଆ ଲୋ ! ହାବୁଡ଼େ ପଡ଼ିଥିଲେ ତ ସାଙ୍ଗେ ସାଙ୍ଗେ ଭେଟଣା ହୋଇଯାଇଥାନ୍ତା ?

ତୁଳସୀ—ଗଲା କୁଆଡ଼େ ଫେର୍ ? ଭାଇଙ୍କ ପାଖକୁ ପରା ?

ରସ—ହଁ, ଭାଇଙ୍କି ଚିଠି ନ ଦେଖାଇଲେ ଫଳ କ'ଣ ?

ତୁଳସୀ—ଏୟା ଭିତରେ ରହସ୍ୟ କ'ଣ ଅଛି କହିଲୁ ଦେଖି ?

ରସ—ରହସ୍ୟ-ଫହସ୍ୟ ମୁଁ କି ଜାଣେ ? କାହ୍ନୁ କହ ପୁଣି ଆମେ ବୁଝିବା କ'ଣ ?

ତୁଳସୀ—ସାଙ୍ଗକୁ ତ ଫେର୍ ମଧୂ ବ୍ରାହ୍ମଣ ! ଚୂଡ଼ାକୁ ଦନ୍ତ ।

ରସ—ସେ ଯୋଡ଼ା ଠିକ୍ ସେ ।

ତୁଳସୀ—(ନେପଥ୍ୟକୁ ଚାହିଁ) ବାହାର ଆ, ବାହାର ଆ, ଭାଇଙ୍କି ସଙ୍ଗରେ ନେଇ କୁଟିଳା ପୁଣି ଏଣେ ଆସିଲାଣି ।

ରସ—ଏଣିକ ?

ତୁଳସୀ—ହଁ ମ, ବଣୁନାଇଁ (ଟାଣି ନେଇ ପ୍ରସ୍ଥାନ)

( ଅଭିମନ୍ୟୁ ଓ କୁଟିଳାର ପ୍ରବେଶ )

ଅଭିମନ୍ୟୁ—କେଉଁଠି ?

କୁଟିଳା—ଏଇଠି ଥିଲା । ଚରଚର ହୋଇ ନଉନଉ କଏ ଫକେଇ ଦେଇଚ୍ଛି, କ ଛାଡ଼ିଯାଇଚ୍ଛି । ବୋହୂ, ଆମର ଚିଠି ପାଇଛନ୍ତି କ ନାହିଁ କେଜାଣି ? ପାଇକରି ଅବା ଭୁଲ୍‌ରେ ଏଠି ପଡ଼ିଚ୍ଛି ।

ଅଭିମନ୍ୟୁ—ପଢ଼ିବୁଟି ଆଉ ଥରେ । ମୁଁ ଟିକଏ ଭଲ କରି ଶୁଣେ ।

କୁଟିଳା—(ପୁନଃ ପତ୍ରପାଠ) ଶୁଣିଲ ଏଥର ? ଏ ଚିଠିକ କାହ୍ନୁଆ ଛଡ଼ା ଆଉ କଏ ଲେଖିଚ୍ଛି ?

ଅଭିମନ୍ୟୁ—ଏଠିକ ଆସିଲା କେମିତି ? କଏ ଆଣିଲା ?

କୁଟିଳା—କଏ ଆଣିଲା ଏଇନେ ମାନବେ ? ଭଲ ବୁଦ୍ଧି ତମର ! ସେଇଥିକ ତ ଏତେ ଦଶା !

ଅଭିମନ୍ୟୁ—ତୁ କେମିତି ପାଇଲୁ ?

କୁଟିଳା—କେମିତି ପାଇଲି ? ଆଖି ତ ମୋର ଫୁଟି-ଯାଇନ ? ଏହି ବାଟେ ଯାଉ ଯାଉ ଦିଶିଲା !

ଅଭିମନ୍ୟୁ—ତେବେ କାଲି ରାତିକ କଣ, ଆଜ୍ଞା କ'ଣ କରିବା କହିଲୁ ? କେମିତି ହେଲେ ଟାଙ୍କେ ଅଚ୍ଛା କରି ଦେବା ?

କୁଟିଳା—କାହିଁକି ? ତେମେ ନଜେ ଯାଉନା' ? ଆଗରୁ ଯାଇ ସେଇ ଭଙ୍ଗା ଦେଉଳ ଭିତରେ କେଉଁଠି ଠାଏ ଲୁଚି ରହିଥିବ । ଆମ ବଡ଼ ଠେଙ୍ଗାଟା ନେଇଥିବ । ଯେମିତି ହାବୁଡ଼େ ପଡ଼ିବ ମନଇଚ୍ଛା ଦବ ଯେ, ଯେମିତି ଆଣ୍ଠୁଗଣ୍ଠି ଭାଙ୍ଗିଯାଇଥିବ ଏକାବେଳକେ ।

ଅଭିମନ୍ୟୁ—ହଁ, ସେଇଆ । ମୁଁ ତେବେ ଆଗରୁ ଯାଇ ସେଠି ଲୁଚି ରହିଥିବ । ତୁ ଆ, ଚିଠିଟା ଆ'ଣ । ଆସିବୁଟି ମୋ ସାଥିରେ । ଏଥର ତ ଗୋଟେ ଯୋଗ ମିଳିଚ୍ଛି !

କୁଟିଳା—ଯୋଗ ! ଏ ଯୋଗ ଛାଡ଼ିଲେ ତ ଗଲା ।

( ଆଗେ ଅଭିମନ୍ୟୁ ପଶ୍ଚାତ୍ କୁଟିଳା ପ୍ରସ୍ଥାନ )

---

## ତୃତୀୟ ଅଙ୍କ—ଚତୁର୍ଥ ଦୃଶ୍ୟ

( ଚନ୍ଦ୍ରାବଳୀପୁର—ପଦ୍ମା ଫୁଲ ଗୁନ୍ଥୁଥିଲେ, ସମ୍ମୁଖରେ ଫୁଲଗୁଙ୍ଗୁଡ଼ )

ପଦ୍ମା— (ଗୀତ)

ଶଠ ନାଗର ସେ ନଟବର,
କୂଟ-କପଟ ଛାଡ଼ିବ ହାର,
ସାରା ନିଶି ଜଗି ବସିଚ୍ଛି ଅଭାଗୀ
ହୋନ ଗଲା ଗଣି କରଗାର, ସଜମାର
ସାର ହେଲା ସିନା ନେତ୍ରମାର ।
ଜାତି କୁଳଶୀଳ ବଳ ଦେଇ,
ବଞ୍ଚିଅଚ୍ଛି ଶ୍ୟାମ ଗୁଣ ଗାଇ,
କଣ୍ଠ କରି ଖଣ୍ଡ, କପଟିମୁକୁଟ,
ଲୁଚିଲେ କା ପୁରେ ଦଗା ଦେଇ, ପ୍ରିୟସଖି
ପଥ ଚାହିଁ ହେଲିଣି ତ ବାଇ ।

( ଶୈବ୍ୟାର ପ୍ରବେଶ )

ପଦ୍ମା—ପାଇଲୁ ?

ଶୈବ୍ୟା—ନାଃ, ଦେଖିଲି ତ ନାହିଁ ।

ପଦ୍ମା—ତେବେ କ'ଣ ହେଲା ?

ଶୈବ୍ୟା—ଯାଇ କରି ନେବେଣି ।

ପଦ୍ମା—କୋଉଠି ରଖିଦେଇଥିଲୁ ?

ଶୈବ୍ୟା—ଶୋଇବା ପଲଙ୍କ ପାଖେ ।

ପଦ୍ମା—କଅଣ ଲେଖା ହୋଇଥିଲା ଭଲା ପଢ଼ିଛୁ ?
ଶୈବ୍ୟା—ମୁଁ ଆଉ କେତେବେଳେ ପଢ଼ିଲି ?
ପଦ୍ମା—ମୋତେ ହେଲେ ପଚାରିଲୁ ନାହିଁ ? କଅଣ ଲେଖା ହୋଇଥିଲା, ମଧୁମଙ୍ଗଳଟି ସେ ! କ'ଣ, କପଟ ଖେଳିଥିବ !
ଶୈବ୍ୟା—କପଟ ଆଉ କ'ଣ ?
ପଦ୍ମା—ତୁ କ'ଣ ବୁଝିଛୁ ?
ଶୈବ୍ୟା—(ନେପଥ୍ୟକୁ ଚାହିଁ) ଆସୁଛନ୍ତି, ଏଣିକି ଆସୁଛନ୍ତି । (ଫୁଲଗୁଚ୍ଛଟା ଧରି) ଆ, ଆ, ଉଠି ଆସିବୁଟି ଟିକିଏ ।
ପଦ୍ମା—ହିଁ, ହାତରେ ତ ସେଇ ଚିଠିଖଣ୍ଡିକ କ କ'ଣ ?
( ନେପଥ୍ୟକୁ ଦୃଷ୍ଟି ଦେଇ ଉଭୟେ ପ୍ରସ୍ଥାନ )
( ପତ୍ରହସ୍ତେ ଗୋବର୍ଦ୍ଧନ ମଲ୍ଲ ପ୍ରବେଶ )
ଗୋବର୍ଦ୍ଧନ—କିଏ ଲେଖିଛି ? ବାରଲୋକେ ତ ବାରକଥା କହୁଛନ୍ତି । କାହା କଥାକୁ ବିଶ୍ୱାସ ଯିବ ? କାହାକୁ ଅବା ଅବିଶ୍ୱାସ କରିବ ? ପ୍ରକୃତ କଥାଟା ବାହାର କରିବାକୁ କେତେ ଥର ଚେଷ୍ଟା କରୁଛି, କିଛି ବୁଝି ହେଉ ନାହିଁ । ଏ ଚିଠିଖଣ୍ଡ କାହ୍ନୁ ହାତଲେଖା ପରି ତ ଜଣାପଡ଼ୁଛି । ଦଧିଗ୍ରାମର ଭଙ୍ଗା ଦେଉଳରେ ରାତ୍ରଅଧବେଳକୁ ପହଞ୍ଚିବାକୁ ଲେଖା । ଏ ଖଣ୍ଡ ଏଠିକି ଆଣିଲା ଅବା କିଏ ? ପଦ୍ମ ବା ଚନ୍ଦ୍ରାବଳୀଙ୍କ ପାଖକୁ ପଠାଇଥିଲେ, ଏଠିକି ଆସିଲା କେମିତି ? ଏ କ'ଣ ପଦ୍ମା କି ଶୈବ୍ୟାଙ୍କ କାରି ? କେଜାଣି ? ଆଚ୍ଛା, ଏଇଥର ତେବେ ଗୋଟାଏ ପରୀକ୍ଷା କରିବାର ସୁଯୋଗ ମିଳିଛି । ଏ ପଟ ଛାଡ଼ିବା କଥା ନୁହେଁ । କାହ୍ନୁ ସେଠି ଅନେଇଁ ବସିଥିବା ଯେବେ ସତ, ମୁଁ ତେବେ ଖଣ୍ଡେ ଶାଢ଼ୀ ପିନ୍ଧି ଯିବି, ଦେଖିବି କ'ଣ ଘଟଣା ଘଟେ । ଏ କଥା ସତ ହୋଇଥିଲେ ଏଇ-ଥରକେ ତତ୍ତ୍ୱ ଦେଇଆସିବି । ନନ୍ଦ ଯଶୋଦାଙ୍କୁ ଜଣାଇଁ ଏଇ ଥର ଗୋପରେ ଗୋଟାଏ ଚହଳ ପକାଇ ନଦେଲେ ନଚଳେ । ଆଚ୍ଛା ଦେଖେଁ, ଚନ୍ଦ୍ରାବଳୀଙ୍କର ଗୀତଗତ । ତାଙ୍କଠାରୁ କିଛି ସନ୍ଧାନ ମିଳିବ କି ନାହିଁ ।
( ପ୍ରସ୍ଥାନ )
( ଶୈବ୍ୟା ଓ ପଦ୍ମା ପ୍ରବେଶ )
ଶୈବ୍ୟା—ଶୁଣିଲୁ ତ ?
ପଦ୍ମା—ତେବେ ଚିଠି ପାଇଲେଣି । କାଲି ରାତିକି ସ୍ୱାଙ୍କ କଣ୍ଠ । ଗୋବର୍ଦ୍ଧନ ମଲ୍ଲ ସେ ଭଙ୍ଗା ଦେଉଳକୁ ଯିବେ । କାହ୍ନୁ କ'ଣ ସେତିକିବେଳେ ଆସିବାକୁ କହିଛନ୍ତି ?
ଶୈବ୍ୟା—ମଧୁମଙ୍ଗଳ ତ ମୋତେ ସେଇ କଥା କହିଲେ ।
ପଦ୍ମା—ତୁ ଗଲୁ, ଗଲୁ—ଦେଖିବୁ କୁଆଡ଼େ ଗଲେ । ଚନ୍ଦ୍ରାବଳୀଙ୍କି ଏସବୁ ବେଗେ କହିଦେବୁ, ସାବଧାନ କରିଦେବୁ ।
ଶୈବ୍ୟା—ହଉ । ( ଶୈବ୍ୟା ପ୍ରସ୍ଥାନ )
ପଦ୍ମା—ସତେ କ'ଣ କୃଷ୍ଣ ଆସିବେ ? କେଜାଣି; କପଟିଆ ତ ! କ'ଣ ମନେ ହୋଇଥିବ, ଭାବ ଭାବ ଚନ୍ଦ୍ରାବଳୀପୁରକୁ ଆସିବାକୁ ଗୋଟାଏ ଉପାୟ ପାଞ୍ଚୁଛନ୍ତି; ମନ୍ତ୍ରୀ ଏଥିର ହୋଇଥିବେ ବଟୁ । ଧନ୍ୟ ଧନ୍ୟ କାହ୍ନୁ !

( ଗୀତ )

କଳାକାହ୍ନୁ କେତେ ଛନ୍ଦ ଅଛି ସତେ ଜଣା !
ଯୁବତୀ କେ ବରତବ ନ ହୋଇବ ବଣା ?
କେତେବେଳେ କିସ କରୁ କେ କରେ କଳନା ।
କିସ ମନେ ଭାକୁ ବସି କେ ବୁଝେ ଛଳନା ?
(ପ୍ର .

---

## ପଞ୍ଚମ ଦୃଶ୍ୟ

( ବନପଥ—ମଧୁ ଓ ଶ୍ରୀକୃଷ୍ଣ ପ୍ରବେଶ )

ମଧୁ— ( ଗୀତ )
ଆଉ ଏ ଦୁଃଖ କାହିଁକି ? କହ୍ଲାଇଁ !
ଝୁରି ଝୁରି ହେବ ସତେ ବାଇ କି ?

ଚନ୍ଦ୍ରାବଳୀ ଅଙ୍କରଙ୍କ ସଜାଡ଼ିଥିବେ ପଲଙ୍କ
ସଜ ହୋଇଥାଅ ପଥ ଗୁହ୍ନିକି । ୧ ।
ଆସିବେ ଗୋ ରସବନ୍ତ ବେଳ ବୁଡ଼ି ହେଲେ ସ୍ୱନ୍ତ
କହିଥିଲ ସତେ ମନେ ନାହିଁକି । ୨ ।

( ସୁବଳ ପ୍ରବେଶ କଲେ )

ସୁବଳ—ବନ୍ଧୁ ! ସଖୀଙ୍କର ପରତେ ନାହିଁ, ତୁମେ ଗଲ ଆଜ ଥରେ ଦେଖିବ କାମ କେତେଦୂର ଆଗେଇଲାଣି ।

ମଧୁ—ସବୁ ବୁଝିସୁଝି ଆସିଛୁ ଭାଇ ! ଚଉପିଠି ସଲଖ । ଖାଲି ତୁ ବାଜିଲେ ଦୂବ-ବରକୋଳି ପତରରେ ବନ୍ଦାଣ ।

ସୁବଳ—ଶୁଣିଲ ତ ସଖା ! ସଜ ହୋଇପଡ଼ିବନି ।

ମଧୁ—ହେବେ କ'ଣ ମ ? କରି ହଅନା ତୁମେ ! ( କୃଷ୍ଣଙ୍କ ପ୍ରତି ) ସଖା ! ତୁମେ ବହୁତ କରିଛ, ପଥର ପରବତ ଟେକିଛ, ପୂତନା ମାରିଛ, ଷଣ୍ଢ, ବକା ମାରିଛ; ସବୁ କରିଛ । ବାକି ଏଥର ବନ୍ଧୁ ଯୋଡ଼ି ବାହାଘର ଲଗେଇଛୁ, ଏମିତି ବାଜା ଆଉ କୋଉଠି ବାଜି ନ ଥିବ ।

କୃଷ୍ଣ—ସଖା ! ଏ ପାଖେ କୁଟିଳା, ସେ ପାଖେ ପଦ୍ମା, କାହା କଥା ଊଣା ? ଜଣେ ନିଆଁ—ଜଣେ ପବନ; ଜଣେ ପାଣି—ଜଣେ ଢେଉ ।

ମଧୁ—ଆଉ ଏଣେ ? ଜଣେ ତୁମେ—ଜଣେ ମୁଁ, ଜଣେ କୋଇଲି—ଜଣେ କୁହୁ; ଜଣେ ବାଣ—ଜଣେ ତୂ ।

କୃଷ୍ଣ—ନାଇଁ ସଖା ! ସେ ଦୁହେଁଯାକ କପଟରେ ଗଢ଼ା । ତୁମେ ସିନା ସବୁ ବ୍ୟବସ୍ଥା କରି ଆସିଛ ବୋଲି କହୁଛ, ନହେବାଯାଏ କି ବିଶ୍ୱାସ ?

( ଗୀତ )

(ମୋର) ପରତେ ଅଛୁ କି ସତେ ପୂରିବ କାମନା
ବାରବାର ଦଗା ସହିଛୁ । ଘୋଷା ।
କି ନ କରିଛୁ କୁଟିଳା, ବୁଡ଼ାଇଛୁ ମୋର ଭେଳା
ପାରିବ ମୂରୁଛୁ ? । ୧ ।
ସଞ୍ଜ ସକାଳ ମୋ ନାହିଁ, ରହିଥାଏ ପଥ ଗୁହିଁ
ମିର ଝୁରିଇଛୁ, ବାରବାର ଦଗା ସହିଛୁ । ୨ ।

ସୁବଳ—ବନ୍ଧୁ ! ସଖୀଙ୍କର ତ ସନ୍ଦେହ ଗଲା ନାହିଁ ।

ମଧୁ—(ନେପଥ୍ୟକୁ ଗୁହିଁ) ଦମ୍ଭ ଧର, ଦମ୍ଭ ଧର, ଶୁଙ୍ଘିଲ ଶୁଙ୍ଘିଲ; ବାସୁନାହିଁ ?

କୃଷ୍ଣ—କ'ଣ ସଖା !

ମଧୁ—ଫୁଲ ଫୁଟିଲାଣି ପରା ? ବାସନା ବାରିପାରୁନାହଁ ? ( ଅନାଁ ) ମୁଁ ପାଗ୍ରେଟି ଆଣୁଛି ।

( ବେଗେ ପ୍ରସ୍ଥାନ )

ସୁବଳ—ପଦ୍ମା ଆସୁଛନ୍ତି ସଖା !

କୃଷ୍ଣ—ପଦ୍ମା ! ତା କଥା କ'ଣ ? କି ବୁଦ୍ଧି, କି ଛନ୍ଦ ପୁଣି ଖେଳିଥିବ ସେ ।

ସୁବଳ—ଏଥର ଆଉ ପୁଣି କ'ଣ ?

( ମଧୁ ଓ ପଦ୍ମା ପ୍ରବେଶ )

ମଧୁ—ଆ'ଛ, ଆ'ଛ, ନିଅ । ଏ ଶୁଖିଲାମୁହାଁକୁ ନିଅ, ରସକାନରେ ଥରେ ଆଖିରସ ପୋଛିଦେବନି ।

ପଦ୍ମା—ନଟବର ! ଆଉ କେତେବେଳେ ବିଜେ କରିବ ?

କୃଷ୍ଣ—ପଦ୍ମା, କପଟ ତ କରୁନାହଁ ?

ପଦ୍ମା—ନିଜପରି ଜଗତଟାକୁ ମଣୁଛ କି ?

ମଧୁ—ସଖା ! ପଦେ କହିଥିଲି, ଶୁଝିଗଲା ନା ?

ପଦ୍ମା—ପଦ ପାଇଛନ୍ତି । ଠିକବେଳକୁ ସେ ଆସିବେ ।

ମଧୁ—ସଖା, ଏବେ ପରତେ ହେଲା ତ ?

ସୁବଳ—ଯାଅ,ସଖା ! ପଦ୍ମାକୁ ସଙ୍ଗରେ ନେଇ ଯାଅ ।

ପଦ୍ମା—ଘନଶ୍ୟାମ ! ଆସ, ପଥରେ ବିଳମ୍ବ ଅଛି, ତେଣେ ସଖୀ ଅଧୀରା ।

ମଧୁ—ଏଣେ ଏ ସଖୀ ମଧ୍ୟ ଅଧୀରା । ଯାଅ ସଖା, ଗଲ । ଆମର ବି ବିଗୁର ଅଛି । ଆଉ ଲାଜ, ଦୁଃଖ କାହିଁକି ?

ମଧୂ— ( ଗୀତ )

ଫୁଟାଅ ସରସ ହସ ଶ୍ରୀମୁଖେ ଶ୍ୟାମସୁନ୍ଦର !
ଦେଖିବ ଦେଖିବ ଭଲ ଫଳନ୍ତି ମଧୁ ହୃନ୍ଦର ॥
ଅଧରେ ମୁରଲୀ ଧର ଚନ୍ଦ୍ରାବଳୀ ମନ ହର
ଫୁଟିଛି ଏଥର ଫୁଲ ବାସୁଛି ବଣ କନ୍ଦର ।୧।

( କୃଷ୍ଣ ଓ ପଦ୍ମାଙ୍କର ପ୍ରସ୍ଥାନ )

ସୁବଳ—ଏ' ତ ଗଲେ, ଏଥର ଲାଗିଲା ଆମକୁ କାମ ।

ମଧୂ—ହଁ ସୁବଳ, ତୁମେ ମଶାଲଟା ଠିକ୍ କରିଛ ନା ?

ସୁବଳ—ହଁ ।

ମଧୂ—ସବୁ ସାଥୀଙ୍କି ଖବର ଦେଇଛ ?

ସୁବଳ—ସେଇତକ କରିନାହିଁ ।

ମଧୂ—ଆଜି ଭୂତ ଧରିବ କେମିତି ? ଦୁ'ଜଣ ଯିବା—ଡର ମାଡ଼ିବ ନାହିଁ ?

ସୁବଳ—ତେବେ କ'ଣ ଯିବ ? ସମସ୍ତିଙ୍କି କହିବ ?

ମଧୂ—କହିବ କ'ଣ, ଡାକ ଆଣିବ ତ ? ଏକାଠି ସାଙ୍ଗରେ ଆଣି ଦଧିଗ୍ରାମଠିକି ଯିବା ।

( କୃଷ୍ଣଙ୍କର ପୁନଃ ପ୍ରବେଶ )

ସୁବଳ—ଏ କ'ଣ ? ସଖା ବାହୁଡ଼ିଲେ କାହିଁକି ?

ମଧୂ—( ଚୁର୍କି ) କି ସଖା ! ବରଡ଼ି ଚୁର୍କିଲ କି ?

କୃଷ୍ଣ—ନାଇଁ ସଖା ! ଗୋଟାଏ କଥା ତମ ସାଙ୍ଗେ ପରାମର୍ଶ କରିବାକୁ ଆସିଲି ।

ମଧୂ—( ଏକମନ ହେବାପରି ଭଙ୍ଗୀରେ ) ବେଶ୍ ଭଲ ।

କୃଷ୍ଣ—ସଖା ! ତୁମେ ଯେଉଁ ଫନ୍ଦ ଖେଳିଛ, ସେଥିରେ ଶ୍ରୀମତୀଙ୍କ ମନ୍ଦିରରେ ଯେଉଁ ଅବସ୍ଥା, ଚନ୍ଦ୍ରାବଳୀଙ୍କ ପୁରରେ ମଧ୍ୟ ସେଇଆ । ଚନ୍ଦ୍ରାବଳୀଙ୍କ ପୁରକୁ ଯିବାକୁ ତୁମେମାନେ ସମସ୍ତେ କହିଲ; ବାକି ମନେକଲ ସଖା ! କାହାଲାଗି ଏ କୁଟକପଟ ? କାହାଲାଗି ଏ ଦୁଃଖ ? ସେ କ'ଣ ଚନ୍ଦ୍ରାବଳୀଙ୍କ ପାଇଁ ? ଯେତେ ଯାହା ହେଲେ ପ୍ରାଣ କାହିଁକି ଶ୍ରୀମତୀଙ୍କ ମିଳନ ଚାହେଁ ।

ମଧୂ—ତେବେ ଶ୍ରୀମତୀଙ୍କ ପୁରକୁ ଯାଅ ନା ସଖା ! ଆଶା ନଥିବ ତୁମେ ତାଙ୍କ ପୁରକୁ ଯିବ ବୋଲି । ହଠାତ୍ ତୁମର ଏ ମିଳନଟା ବଡ଼ ମଧୁମୟ, ବଡ଼ ବିଚିତ୍ର, ବଡ଼ ସୁନ୍ଦର ହେବ ସଖା !

ସୁବଳ—ସଖା ! ସେଇଆ କର, ସେଇଆ କର ।

ମଧୂ—ଆଚ୍ଛା, ସଖା ! ତେଣେ ପଦ୍ମା ?

କୃଷ୍ଣ—ଚନ୍ଦ୍ରାବଳୀଙ୍କ ଲାଗି ଫୁଲ ଗୁନ୍ଥି ଥିଲି, ଛାଡ଼ିଆସିଲି ନେଇକରି ପଛରେ ଯିବ ବୋଲି କହି ଆସିଛି ।

ମଧୂ—ଓହୋ ! ନ ଜାଣିକରି ତମକୁ କପଟିଆ ବୋଲି ଲୋକେ କହନ୍ତି କି ? ଦେଖିଲ ପରା, ତୁମେ ଆମର ସାଢ଼େ ତିନି କଡ଼ାରେ ଗଣ୍ଡାଏ ।

କୃଷ୍ଣ—( ହସି ) ଆଉ ତୁମେ ?

ମଧୂ—ତୁମ ପବନ ବାଜି ।

କୃଷ୍ଣ—ହଁ ।

ମଧୂ—ହଁ ।

ସୁବଳ—ଭଲ ସଖା ! ଏ ହୁଁ-ହାଁରୁ କ'ଣ ମିଳିବ ? ତୁମେ ତୁମ କାମରେ ଯାଅ । ଆମେ ପୁଣି ଆମ କାମରେ ଯିବୁ ନା, ଏଠି ଥାଇ କି ଲାଭ ?

ମଧୂ—ତେବେ ଭଲ ସଖା ! ସୁବଳର ଆମର ଭାରି କର୍ତ୍ତବ୍ୟଜ୍ଞାନ ତ ! ବାଃ, ଏମିତି ଜଣେ ସାଙ୍ଗକୁ ନ ଥିଲେ ଆଉ ପକ୍ଷୀ ଝାଡ଼ିବ କିଏ ? (ଯାଉ ଯାଉ)

ସୁବଳ—ହଁ, ନୋହିଲେ ଦହି-ଚୂଡ଼ା କରେଇବ କିମିତି ? ( ପ୍ରସ୍ଥାନ )

---

## ଷଷ୍ଠ ଦୃଶ୍ୟ

( ଚନ୍ଦ୍ରାବଳୀପୁର—ଚନ୍ଦ୍ରାବଳୀ ବେଶ ହେଉଥିଲେ; ଶୈବ୍ୟା ବେଶ କରି ଦେଉଥିଲେ )

( ଗୀତ )

ଯେନ ହାର ତୁରିଅନା, ରେ ସଜନି !
ଆସିଲେ ନାଗର ପ୍ରାନ୍ତ ନ ଦେଲେ ତୁ
ଆଦ୍ୟ ମାଗିବେ ନଖନା ।୧।
ଏ ଗୁରୁଖିବା କେତକୀ, ରେ ସଜନି !
କାମ ଖରଶାଣ କରିତ ପରା ଏ
ଧୈର୍ଯ୍ୟ ଧରିବେ କେତେ କି ?

ଚନ୍ଦ୍ରାବଳୀ—( ଚମକି ) ରାତି କେତେ ହବ ସଖି !

ଶୈବ୍ୟା—ରାତି ? ( ଆକାଶକୁ ଚାହିଁ ) ସପ୍ତଋଷିଙ୍କି ଅନାଅଁ, ରାତି ତିନି ପହର ହବ ।

ଚନ୍ଦ୍ରାବଳୀ—( ପୁଣି ଚମକି ) ଶୁଣ ଶୁଣ, ବଂଶୀ ଶୁଭିଲା କି ?

ଶୈବ୍ୟା—ନାଇଁ ତ, କଜଳପାଟୀ ।

ଚନ୍ଦ୍ରାବଳୀ—କଜଳପାଟୀ ? (ଫୁଲ ଛିଣ୍ଡାଇ) ତେବେ ଆଉ କାହିଁକି ? ଆସ ସଖି ! ଫୁଲସଜ କାଢ଼ିଦିଅ । କର୍ପୂର ଚନ୍ଦନ ଫିଙ୍ଗିଦିଅ । ଆଉ କ'ଣ ହବ ?

ଶୈବ୍ୟା—ପଦ୍ମା ତ ଫେରିନାହିଁ ।

ଚନ୍ଦ୍ରାବଳୀ—ପଦ୍ମା କ'ଣ କହିଲାଟି ?

ଶୈବ୍ୟା—କହିଲା ପରା ବନ୍ଧୁ ପଛରେ ଆସୁଛନ୍ତି ।

ଚନ୍ଦ୍ରାବଳୀ—ପଦ୍ମା କଅଣ କପଟ କଲା ମୋତେ ?

ଶୈବ୍ୟା—ନା ନାଃ ।

ଚନ୍ଦ୍ରାବଳୀ—ତେବେ ବନ୍ଧୁ ପଦ୍ମାର ସେଥର କୂଟକପଟ ଖେଳରେ ତା ଉପରେ ରାଗି ନାହାନ୍ତି ? ତା'ଲାଗି ଅବା ମୋତେ ଦାଉ ସାଧିଥିବେ । ଶ୍ୟାମ ତ ! ଛଳନାର ଅନ୍ତ ନାହିଁ ।

ଶୈବ୍ୟା—କେଜାଣି କ'ଣ ହେଲା ।

( ପଦ୍ମା ପ୍ରବେଶ )

ପଦ୍ମା—( ଦୀର୍ଘ ନିଃଶ୍ୱାସ ପକାଇ ) ନାଇଁ ସହି ! ଭେଟ ତ ନାହିଁ ।

ଚନ୍ଦ୍ରାବଳୀ—ଭେଟ ନାହିଁ ?

ପଦ୍ମା—ନାଃ ।

ଚନ୍ଦ୍ରାବଳୀ—ତେବେ ତୋତେ କ'ଣ କହିଥିଲେ ?

ପଦ୍ମା—ଆସୁଥିଲେ ତ । ବାଟରେ କହିଲେ ଚାଲ ପଦ୍ମା, ମୁଁ ଚନ୍ଦ୍ରାବଳୀଙ୍କ ଲାଗି ଗୁନ୍ଥା ହାରଟା ଛାଡ଼ିଆସିଲି; ନେଇକରି ଆସୁଛି ।

ଚନ୍ଦ୍ରାବଳୀ—ତୁ କ'ଣ ସେ ଶଠଙ୍କୁ ଚହ୍ନି ନାହୁଁ ? ସାଙ୍ଗରେ ଘେନି ନଆସି ପୁଣି ଛାଡ଼ିଆସିଲୁ କାହିଁକି ?

ପଦ୍ମା—ସେ ତ ଆଗରୁ ଆସିବାକୁ ରାଜି ଥାଇ ମୋ ଯିବାବାଟକୁ ଚକାଇ ବସିଥିଲେ । ଅବିଶ୍ୱାସ କରିବାର କିଛି ତ କାରଣ ନଥିଲା—କାହିଁକି ସନ୍ଦେହ କରନ୍ତି ।

ଚନ୍ଦ୍ରାବଳୀ—କି ଅବା ତୋ କପଟ ବୁଦ୍ଧିରେ ସେ ରାଗିଛନ୍ତି ?

ପଦ୍ମା—କପଟ ବୁଦ୍ଧି କ'ଣ ?

ଚନ୍ଦ୍ରାବଳୀ—ସେଇ ଶାଗ କଥା, ଶଠି କଥା ।

ପଦ୍ମା—ଓଃ; ସେସବୁ କ'ଣ ଆଜଯାଏ ଅଛି ? ଥିଲେ ମଧ୍ୟ ମୁଁ କରିଛି ବୋଲି ସେ ଜାଣି ନାହାନ୍ତି ତ ।

ଚନ୍ଦ୍ରାବଳୀ—( ଦୀର୍ଘନିଃଶ୍ୱାସ ପକାଇ ) ତେବେ ଆଉ ଆଶା ନାହିଁ ପଦ୍ମା, ତାଙ୍କୁ ପଥରେ ଛାଡ଼ିଆସି ଭୁଲ୍ କଲୁ ତୁ । ( ତଳକୁ ଚାହିଁଲେ )

ଶୈବ୍ୟା—ଚାଲ ସଖି ! କି ମିଳିବ ଆଉ ଗଲା କଥାରୁ ? ତମକୁ ପହଡ଼ ଘରେ ଛାଡ଼ି ମୁଁ ଥରେ ଯାଇ ଦେଖେଁ, ଶଠ କୁଆଡ଼େ ଗଲେ ?

ପଦ୍ମା—ଅଧୀର ହୁଅ ନାହିଁ ସଖି ! ଯେପରି ହେଉ ମୁଁ ଭେଟ କରାଇଦେବି । ତୁମେ ଟିକିଏ ଧୈର୍ଯ୍ୟ ଧର, ଚାଲ । ( ଚନ୍ଦ୍ରାବଳୀଙ୍କି ଉଠାଇଲେ )

( ଗୀତ )

ନବନାଗରି ରେ ପ୍ରିୟ ସହି ମୋର !
ଆଣିଦେବି କଣ୍ଠେ ତୋର ଗଳାହାର,
ମନୁ ଚିନ୍ତା ତେଜ ସଖି, ଧୈର୍ଯ୍ୟ ଧର
ମିଳାଇବି ମୁକର ମୁଁ ମନଚୋରେ,
ଘେନ ଘେନ ମୋ ଗିର ଗୋ,
ପରାଣ ସଜନି ମୋର ।୧।

( ସର୍ବେ ପ୍ରସ୍ଥାନ )

## ସପ୍ତମ ଦୃଶ୍ୟ

( ଦଧିଗ୍ରାମ—ଭଗ୍ନ ଶିବମନ୍ଦିର;
ସୁଦାମ ଗାଇ ଗାଇ ପ୍ରବେଶ )

( ଗୀତ )

ହରି ବୋଲ ଭାଇ ଗୋବିନ୍ଦ ବୋଲ .
ଭସିଲା ପଥର ବୁଡ଼ିଲା ସୋଲ
ଆଜି ଭାଇ ଶକତ ମଜା ସତିକଯାକ ଲଗିବ ଗେଲ ।
ଭୂତଛଡ଼ା ଝଡ଼ା ମନ୍ତର
ମଧୁ ନନା ଜାଣେ ଯନ୍ତର
ଧାଇଁ ଆସ ବରଜପୁଏ ଦେଖି ଯିବ ଏ ନୂଆ ଖେଳ ।୨।

( ଏକ ଦିଗରୁ ମଧୁମଙ୍ଗଳ ଶୀଘ୍ର
ପ୍ରବେଶ କରି ସୁଦାମକୁ ଧମକାଇ )

ମଧୁ—ଚୁପ୍ ଚୁପ୍ ଗଧ, ତତେ କିଏ କହିଲା ଏଠି ପାଟି କରି ହୁରି ପକେଇବାକୁ ? ଚାଲ ଚାଲ, ପଳା । ଭୂତ ଆସୁଛି । ଟୋକା ଟିଖଣ୍ଡେ ! ପ୍ରତାପ କେଡ଼େ ? ଏକୁଟିଆ ଏଠିକି ଆସି ଡେଇଁବୁଲୁଛି ! ଆଉ ସମସ୍ତେ କାହାନ୍ତି ? ଚାଲ ଚାଲ !

ସୁଦାମ—ଆଉ ସମସ୍ତେ ସେ ବଣସନ୍ଧିରେ ଲୁଚିଛନ୍ତି ।

ମଧୁ—ଆଉ ତୁ ଏଠି ଏକା କ'ଣ କରୁଥିଲୁ ? ଭୂତ ଛଡ଼ାଉଥିଲୁ ? ଓଲୁ ! ଚାଲ୍, ପଳା । ଦିବ ଯେ ଭୂତ ଆସି ଟାଆକୁକରି ଗିଳି ।

( ଉଭୟେ ପ୍ରସ୍ଥାନ )

ସୁବଳ—( ପ୍ରବେଶ କରି ) କାହିଁ, କେହି ତ ନାହିଁ ଏଠି ? ମଧୁ କାହିଁ ! ଏତେବେଳ ଯାଏ କାହାରି ସୁର-ଶବଦ ନାହିଁ । ଏସବୁ କ'ଣ ଅସିନାହାନ୍ତି ?

( ଚତୁର୍ଦ୍ଦିଗ ଅନ୍ୱେଷଣ । ଅନ୍ୟଦିଗରୁ ମଧୁ
ହାତ ଠାରି ଡାକିଲେ ଓ ସୁବଳର ପ୍ରସ୍ଥାନ)

( ଅଭିମନ୍ୟୁ ଶ୍ରୀକୃଷ୍ଣବେଶରେ ପ୍ରବେଶ )

ଅଭିମନ୍ୟୁ—( ଚୁରିଆଡ଼କୁ ଚାହିଁ ) ଭଲ ହୋଇଛି, ମୁଁ ଟିକିଏ ଆଗରୁ ଆସି ପହଞ୍ଚିଯାଇଚି । କାହ୍ନୁ ଆସିନାହିଁ । ( ବାହାଙ୍ଗି ଦେଖାଇ ) ଆଜି ତାରି ଦିନେ କି ମୋର ଦିନେ । ଯାଏଁ, ଲୁଚି ରହିଥାଏଁ । ରାଧିକା ଆସନ୍ତୁ । ମୁଁ ତ କୃଷ୍ଣପରି ବେଶ ହୋଇ ଆସିଚି । ଦେଖେଁ, ଶ୍ରୀମତି ମୋତେ ଦେଖି କୃଷ୍ଣ ବୋଲି ମଣି କିଭଳି ସ୍ନେହ ଆଦର କରନ୍ତି । ତା'ପରେ ସିନା ପରୀକ୍ଷା ? ଆଜି ତ ଚିହ୍ନାଚିହ୍ନି !

(ଅନ୍ତରାଳକୁ ପ୍ରସ୍ଥାନ)

(ସୁବଳ ପ୍ରବେଶ)

ସୁବଳ—ଖଣ୍ଡେ ଶିକାର ଆସିଗଲା, ବାକି ଖଣ୍ଡେ ଆସିଲେ ସିନା ? ଯାଏଁ, ବନ୍ଧୁଙ୍କୁ ଖବର ଦିଏଁ ?

( ପ୍ରସ୍ଥାନ )

( ଗୋବର୍ଦ୍ଧନ ମଲ୍ଲର ସ୍ତ୍ରୀବେଶରେ ପ୍ରବେଶ )

ଗୋବର୍ଦ୍ଧନ—କାହ୍ନୁ କଅଣ ଆସିନାହିଁ ? ଅନେଇଁ ବସିବାକୁ ପଡ଼ିବ । ଅନ୍ଧାରଟା ତ ହୋଇଛି । କୁଆଡ଼େ ଦେଖିବ ଆଉ ? କେଜାଣି ଅବା କୋଉଠି ଚନ୍ଦ୍ରାବଳୀଙ୍କି ଚାହିଁ ବସିଥିବ । ଦେଖି, ଖୋଜେଁ । ଆଜି ନବରଙ୍ଗ ଗୁଡ଼ିଯିବ ଯେ ! ଆଗେ ଦେଖେଁ; କାହ୍ନୁ ମୋତେ ଚନ୍ଦ୍ରାବଳୀ ଭାବି କିଭଳି ପ୍ରେମାଳାପଟା କରୁଛି । ହଠାତ୍ କିଛି କରିବା ଭଲ ନୁହେଁ । ଆଗେ ତା'ର ବ୍ୟବହାରଟା ଦେଖାଯାଉ । ( ପ୍ରସ୍ଥାନ )

( ମଧୁ ଓ ସୁବଳ ଦୁହେଁ ଧୀରେ
ଧୀରେ ଆସି ଉଣ୍ଡିଲେ )

ମଧୁ—(ଗୁନ୍‌ଗୁନ୍) ଦୁହେଁ ଗଲେଣି ।

ସୁବଳ—ହଁ ।

ମଧୁ—ଆସ, ଆସ ତେବେ । (ଉଭୟେ ପ୍ରସ୍ଥାନ)

( ଅଭିମନ୍ୟୁ ଓ ଗୋବର୍ଦ୍ଧନମଲ୍ଲ ପ୍ରବେଶ )

ଅଭିମନ୍ୟୁ—କେତେ ଦିନ ହେଲା ତମକୁ ଅନାଇ ପଥ ଜଗି ବସିରହିଛି; କେତେ ଖବର ଦେଇଛି, ଦେଖାନାହିଁ । ଏତେଦିନକେ ପ୍ରଭୁ ମୋ ଗୁହାରି ଶୁଣିଲେ । ଆସ ପ୍ରିୟେ, ମାନ ତ୍ୟାଗକର ।

(ହାତ ଧରି ଗୋବର୍ଦ୍ଧନଙ୍କୁ ଘେନି ଆସୁ ଆସୁ )
ଅଭିମାନିନି, ଦାସର ଦୋଷ ଧରି ନାହିଁ । ବହୁତ ଦିନର ଏ ଆଶା ଅପୂରଣ ରଖ ନାହିଁ ପ୍ରିୟେ !

( ଚୁମ୍ବନ ଦେବାକୁ ଉଦ୍ୟତ )

ଗୋବର୍ଦ୍ଧନ—(ଝାଣି ହୋଇ ଦୂରକୁ ଯାଇ ) ଛୁ ଶ୍ୟାମ, କିଏ ଯେବେ ଆସେ, ତେବେ ଆଉ ?—

ଅଭିମନ୍ୟୁ—( କଥାରେ ବାଧାଦେଇ ) ଏଠି କେହି ନାହିଁ ସଖି ! ବିଶେଷତଃ ଏ ଗାଡ଼ ଅଧରେ ଏ ଭଙ୍ଗା ଦେଉଳକୁ କିଏ କାହିଁକି ଆସିବ ? ଏଠି ତ ପୁଣି ଭୂତଡର ! ଆସ ଧନି ! ମନୋବାଞ୍ଛା ପୂରଣ କର ସଖି !

( ପୁଣି ଝାଣି ମୁଣ୍ଡରେ ହାତ ଦେବାବେଳକୁ )

ଗୋବର୍ଦ୍ଧନ—ଚନ୍ଦ୍ରାବଳୀର ବଡ଼ ଭାଗ୍ୟ ଶ୍ୟାମ, ତୁମେ ତାକୁ ମନେ ରଖିଛ ।

ଅଭିମନ୍ୟୁ—( ଆଶ୍ଚର୍ଯ୍ୟ ) ଏ କଅଣ ଶୁଣିଲି ? ଚନ୍ଦ୍ରାବଳୀ ! ଦେଖେଁ ( ମୁଖରେ ହସ୍ତଦେଇ ନିକଟକୁ ଆଣିବାବେଳକୁ ଦାଢ଼ିରେ ହାତ ବାଜିଯିବାରୁ ଚମକି ) ଏଁ ?

( ମଧୁ ଇତ୍ୟାଦି ସମସ୍ତେ ପ୍ରବେଶ )

ସମସ୍ତେ—ଭୂତ ଭୂତ, ଅରେ ଭୂତ ରେ ! ବାଡ଼ା, ବାଡ଼ା, ବାଡ଼ା ।

ମଧୁ—(ଗୋବର୍ଦ୍ଧନ ମୁହଁରୁ ଓଢ଼ଣା ଝାଣିଆଣି) ଏଁ ? ଏ କିଏ ? ଏ ତ ଭୂତ ନୁହେଁ ରେ ବାବା ! ମନିଷଭୂତ ! ଏ ତ ଆମ ଗୋବର୍ଦ୍ଧନ ମଲ୍ଲେ ! ଆରେ ତୁମେ ଏଠି କାହିଁକି ?

ସୁବଳ—(ଅଭିମନ୍ୟୁଙ୍କୁ ଚାହିଁ) ଆଉ ଏ କିଏ ? ଆମ କାହ୍ନୁପରି ବେଶ ହୋଇ ଏଠି ଏତେ ରାତିରେ କମିତି ? ବନ୍ଧୁ ! ବହୁତ ଆଣିବଟି । ମୁହଁଟା ଟିକିଏ ଦେଖେଁ ! ଚହ୍ନିଲି, ଚହ୍ନିଲି ।

ମଧୁ—ଏ ତ ଆମ ଅଭିମନ୍ୟୁ; ଏଥିରେ ଆଉ କ'ଣ କିଛି ଖଞ୍ଜ ଅଛି ନା !

ସମସ୍ତେ—ବାଃ, ବାଃ, ବଡ଼ ରସିକ ହ'ଜଣ ତ ! ତୁମେ ହିଁ ଏବେ ଭୂତ ହୋଇ ଆମକୁ ସବୁ ଏତେକାଳଯାଏ ଡରାଉଥିଲ ?

( ସମସ୍ତେ ନାଚି ନାଚି ତାଳମାରି ଗୀତ )

( ଗୀତ )

ଧାଇଁ ଆସ ଧାଇଁ ଆସ ରେ ଦେଖିବ ନୂଆ ଭୂତ
କାଳ ହୋଇଲା ଏଣିକି ମରଦ ହେଲେ ମାଇପି
ଘୁଡ଼ି ପଳାଇବା ଚାଲ ଦେଶ ରେ । ୧ ।
ମଣିଷ ହୋଇଛି ଭୂତ ପଥର ଗାଉଛି ଗୀତ
ବଣପଶୁ ମୋଡ଼ିଲେଣି କେଶ ରେ । ୨ ।

( ସମସ୍ତେ ଉପହାସ କରୁ କରୁ ଅଭିମନ୍ୟୁ ଏବଂ ଗୋବର୍ଦ୍ଧନ ଦୁଇ ଦିଗେ ପ୍ରସ୍ଥାନ—ଗୋପବାଳକ ଗଣ ଗାଇ ଗାଇ ତାଳମାରି ପ୍ରସ୍ଥାନ)

---

## ଚତୁର୍ଥ ଅଙ୍କ

### ପ୍ରଥମ ଦୃଶ୍ୟ

( ଶ୍ରୀମତୀଙ୍କ ପୁର—ଲଳିତା ଶ୍ରୀମତୀଙ୍କି ଘେନି ଗୀତ ଗାଇ ଗାଇ ପ୍ରବେଶ )

କଞ୍ଜନୟନା, ଧନି କୁଞ୍ଜରଗମନା ରେ !
ଲଳିତ-ଅଙ୍ଗୀ ଶୋଭନା, ପୂରୁବ ଗଗନେ ଅନା
ଉଇଁ ଆସିଲେ ଭାଗ୍ୟ-ତପନ, ସ୍ୱପନା ରେ ।୧।
ଆଜ ଗୋ ରାଜିବ ଶଶୀ, ବାଜିବ ସାଜ ବଇଁଶୀ
କୁଞ୍ଜ କାନନେ ସଙ୍ଗେ ମୋହନ-ମୋହନାରେ । ୨ ।

(ଶ୍ରୀମତୀଙ୍କି ନେଇ ଲଳିତା ଅନ୍ୟଦିଗେ ପ୍ରସ୍ଥାନ)
(ଅଭିମନ୍ୟୁ ଓ ପୌର୍ଣ୍ଣମାସୀ ପ୍ରବେଶ)

ଅଭିମନ୍ୟୁ—(ଶଙ୍କିତଭାବେ) ବଡ଼ ଲଜ୍ଜା ଦେବି ! ବଡ଼ ଲଜ୍ଜା !

ପୌର୍ଣ୍ଣମାସୀ—କିଜେ ତ ଭିଆଇଛ ।

ଅଭିମନ୍ୟୁ—ଘଟଣା ଯେପରି ଘଟିଛି—ଆପଣ କ'ଣ ଜାଣନ୍ତି ନାହିଁ ? ସେ କ୍ଷେତ୍ରରେ ଆଉ କ'ଣ କରନ୍ତି ?

ପୌର୍ଣ୍ଣମାସୀ—ମୁଁ ସବୁ ଜାଣିଛି, ସବୁ ଶୁଣିଛି । ତୁମେ ବୁଝିସୁଝି କାମ କରନାହିଁ ।

ଅଭିମନ୍ୟୁ—କୁଟିଳା ମୋତେ ସେ ଶଠି ପାଇ ଦେବାରୁ ସିନା ମୋର ପରୀକ୍ଷା କରିବାକୁ ମନ ହେଲା ।

ପୌର୍ଣ୍ଣମାସୀ—ସେ ଶଠି କେଉଁଠାରୁ ପାଇଲା ?

ଅଭିମନ୍ୟୁ—ମୁଁ ଜାଣିନାହିଁ ।

ପୌର୍ଣ୍ଣମାସୀ—କୁଟିଳା ତ ଘରେ ଥିବେ, ଯାଇ ଡାକିଆଣ । ଦେଖି, ମୁଁ ଥରେ ତାଙ୍କୁ ସବୁ ପଚାରେଁ ।

ଅଭିମନ୍ୟୁ—ଯେ ଆଜ୍ଞା ଦେବ ! (ପ୍ରସ୍ଥାନ)

ପୌର୍ଣ୍ଣମାସୀ—କୁଟିଳା ହିଁ ସବୁ ଅନର୍ଥର ମୂଳ । ଆଉ ମଧ୍ୟ ଗୋଟିଏ କଥା, କୁଟିଳା ନ ଥିଲେ ଭଗବାନ ଶ୍ରୀକୃଷ୍ଣଙ୍କର ଏ ବ୍ରଜଲୀଳା ଏତେ ମଧୁମୟ ହୁଅନ୍ତା କିପରି ? ଲୀଳାମୟଙ୍କର ଏ ମଧ୍ୟ ଏକ ଇଚ୍ଛା । ଶ୍ରୀମତୀ କଳଙ୍କିନୀ ଅପବାଦ ପାଉ ନ ଥିଲେ ଶ୍ରୀକୃଷ୍ଣଙ୍କର ଏ ପ୍ରେମ-ଖେଳା ଦେଖିବାର ସୌଭାଗ୍ୟ ଆମର ହୁଅନ୍ତା କିପରି ?

(ନେପଥ୍ୟକୁ ଅନାଇଁ)

ହେଇଟି ତ କୁଟିଳା ଆସୁଛି ! ଓଃ ! ବାପୁଙ୍କର ପିତାମାତା ନାମ ରଖିଥିଲେ କୁଟିଳା । ଦେହଟା ସାରା ସନ୍ଦେହରେ ଗଢ଼ା । ଆଖିରେ କୁଟୀଳତା, ପ୍ରାଣରେ ଈର୍ଷା ! ତଥାପି କୁଟିଳାପ୍ରତି ଗୋଟିଏ ଆଦର ଆସେ । ତା'ରଯୋଗୁ ସବୁ ଲୀଳାଖେଳା । ଜଗତରେ ଯେତେ ଅପଦାର୍ଥ ହେଉ ପଛକେ କେହି ଅଦର୍କାରୀ ନୁହେଁ । କୁଟିଳା ଆଉ ତାର କୁଟୀଳତା ତାର ପ୍ରମାଣ ।

( କୁଟିଳା ଓ ଅଭିମନ୍ୟୁ ପ୍ରବେଶ, ପୌର୍ଣ୍ଣମାସୀଙ୍କି ପ୍ରଣାମ କଲେ )

ପୌର୍ଣ୍ଣମାସୀ—କି ଗୋ କୁଟିଳେ ! ଅଭିମନ୍ୟୁଙ୍କୁ ଯେ ପଦ ଦେଖେଇଥିଲ ସେ ଖଣ୍ଡି କେଉଁଠୁ ପାଇଲ ?

କୁଟିଳା—ମୋ ଶୋଇଲାଘର ଠଣାରେ ଥୁଆ ହୋଇଥିଲା

ପୌର୍ଣ୍ଣମାସୀ—କିଏ ସେଠିକି ତାକୁ ଆଣିଲା ?

କୁଟିଳା—ମୁଁ ଜାଣିନାହିଁ ।

ପୌର୍ଣ୍ଣମାସୀ—ଅଭିମନ୍ୟୁ ! ଶୁଣୁଛ ତ ? ଏସବୁ ଦୈବୀମାୟା । ନୋହିଲେ କୁଟିଳାଙ୍କ ଘରକୁ ଏ ପଦ ଆଣିଲା କିଏ ? ତୁମେ ତ ଜାଣ, ସଖୀମାନେ ସମସ୍ତେ ଯାଙ୍କ ଘରକୁ ଆସିବାକୁ ଡରନ୍ତି ।

ଅଭିମନ୍ୟୁ—ହଁ, ସେକଥା ସତ ।

ପୌର୍ଣ୍ଣମାସୀ—କୁଟିଳେ ! ଶଠି କାହାର ବୋଲି ତୁମେ ଜାଣିଲ ?

କୁଟିଳା—ମୁଁ ମନେ କଲି, କାହ୍ନୁ ଆମ ବୋହୂ ପାଖକୁ ଲେଖିଛନ୍ତି ।

ପୌର୍ଣ୍ଣମାସୀ—କାହାର ନାଁ-ଗାଁ କିଛି ଭଲା ଲେଖାଥିଲା ।

କୁଟିଳା—ନାଃ ।

ପୌର୍ଣ୍ଣମାସୀ—ତେବେ ? ପଚାରିବଟି ଅଭିମନ୍ୟୁ, କାହିଁକି ତାଙ୍କର ଶ୍ରୀମତୀଙ୍କଠାରେ ଏଭଳି ସନ୍ଦେହ ହେଲା ?

ଅଭିମନ୍ୟୁ—ମୋତେ ତ କୁଟିଳା ସେଇ କଥା କହିଲା ।

ପୌର୍ଣ୍ଣମାସୀ—ତୁମେ ମଧ୍ୟ କଥାଟା ବୁଝିଲ ନାହିଁ ? ଶ୍ରୀମତୀ ପରମାସତୀ । କେତେ ଥର ଏ ପ୍ରମାଣ ପାଇ ମଧ୍ୟ କୁଟିଳା କଥାରେ ବିଶ୍ୱାସ ଗଲ ? ଛି, ଛି; ଆଚ୍ଛା ! ଶ୍ରୀମତୀଙ୍କ ସୂର୍ଯ୍ୟପୂଜା ବନ୍ଦ ହେଲା କାହିଁକି ?

ଅଭିମନ୍ୟୁ—ମୁଁ ନୁହେଁ, ମୁଁ କରିନାହିଁ, ସେଇ କୁଟିଳା, କୁଟିଳା ।

ପୌର୍ଣ୍ଣମାସୀ—କି ଗୋ ! ଏ ପୁଣି କ'ଣ ?

କୁଟିଳା—ବୋହୂ ବାପଘରକୁ ଗଲାବେଳେ ଜଣେ ଶବରୀ ମୋତେ ଗୋଟିଏ ଶାପ ଦେଇଥିଲା । ଅଦ୍ୟାପି ସେଇଟା ଅଛି । ଶାପ ପଡ଼ୁଛି—ଶ୍ରୀମତୀ ନକର ଗୋ ଦ୍ୱେଷ,···

ପୌର୍ଣ୍ଣମାସୀ—(ବାଧା ଦେଇ) ବୁଝିଲି, ଏଇତକ ବୁଦ୍ଧି ହେଲା ନାହିଁ ? ବଣର ପକ୍ଷୀ ! ସେ ଏକଥା କପରି କହିଲା, ସେ କ'ଣ ଜାଣେ ?

କୁଟିଳା—ମୁଁ କେମିତି ଜାଣିଲି ? ସେ ତ ପଢ଼ୁଛି !

ପୌର୍ଣ୍ଣମାସୀ—ଦେଖି, ଆଉ ଗୋଟାଏ ଶାସ୍ତ୍ର ଆଣିଲି ? ସେ ଭଲ ଏଇପରି ପଢ଼ୁ !

ଅଭିମନ୍ୟୁ—ତା କେମିତି ହେବ ?

ପୌର୍ଣ୍ଣମାସୀ—ତେବେ ଏଇତକ ବୁଝିଲ ନାହିଁ ? କୁଟିଳେ ! ଘୋର ଅପରାଧ କରିଛ ତୁମେ । ତମକୁ ଯେ ଶ୍ରୀମତୀ କ୍ଷମା ଦେଇଛନ୍ତି, ଏଇ ଯଥେଷ୍ଟ । ହେଲେ କ'ଣ ହେବ ? ସୂର୍ଯ୍ୟପୂଜାରେ ତୁମେ ବିଘ୍ନ ଘଟାଇଛ । ଆଜି ତାର ପ୍ରତିକାର ନକଲେ ତୁମେ ତ ନରକରେ ପଡ଼ିବ ନିଶ୍ଚୟ, ପୁଣି ତମ ଭାଇଙ୍କର ଆଉ ଗତିଗୋବ ରହିବ ନାହିଁ । ଛିଃ, କି ଅନ୍ୟାୟ କଲ ?

ଅଭିମନ୍ୟୁ—(ପାଦ ଧରି) ଦେବି ! ମୁଁ କିଛି ଜାଣିନାହିଁ । ମୋର ଦୋଷ ନାହିଁ, ସବୁ ଏଇ କୁଟିଳା ।

ପୌର୍ଣ୍ଣମାସୀ—( ଉଠାଇ ) ଉଠ, ଉଠ; ଅଭିମନ୍ୟୁ ! ମୁଁ ସବୁ ବୁଝିଛି, କେବଳ କୁଟିଳା ! ତୁମରି ଯୋଗୁଁ ସବୁ ସରିବ ।

କୁଟିଳା—(ପାଦ ଧରି କାନ୍ଦିବା ପରି ) ଦେବି ! ମୋର କି ଗତି ହେବ ? କାନ ମୋଡ଼ି ହଉଛି, ଆଉ ବନେ ବୋହୂକୁ ଅବିଶ୍ୱାସ କରିବ ନାହିଁ ।

ପୌର୍ଣ୍ଣମାସୀ—ଉଠ ଉଠ; ଗୋଟିଏ କାମ କର । ଆଜି ଶ୍ରୀମତୀଙ୍କୁ ସୂର୍ଯ୍ୟପୂଜାକୁ ଛାଡ଼ । ସଙ୍ଗରେ ତୁମେ ନିଜେ ଯିବ । ଦନ୍ତରେ ତୃଣ ଧରି ସୂର୍ଯ୍ୟପୂଜା-ବେଳେ ସୂର୍ଯ୍ୟଦେବତାଙ୍କୁ କ୍ଷମା ମାଗିବ । ସେ ତୃପ୍ତ ହେଲେ ତମରି ଆଉ ତମ ଭାଇଙ୍କର ମଙ୍ଗଳ ହେବ । କ'ଣ କହୁଛ ଅଭିମନ୍ୟୁ ?

ଅଭିମନ୍ୟୁ—ଓଃ, କି ଦୁର୍ବୁଦ୍ଧି ମୋତେ ଘୋଟିଲା ? ଦେବି ! ଏଇ କୁଟିଳାଯୋଗୁଁ ମୋର ସବୁ ସରିଲା ।

କୁଟିଳା—ଦେବି ! ମୁଁ ଏଇନେ ଯାଉଛି । ସଖୀମାନଙ୍କୁ କହିବ, ସୂର୍ଯ୍ୟପୂଜାକୁ ଯିବାକୁ ବାହାରିବେ ।

ପୌର୍ଣ୍ଣମାସୀ—ଯାଅ, ଏଇକ୍ଷଣି ଯାଅ, ମୁଁ ମଧ୍ୟ ଶ୍ରୀମତୀଙ୍କି ବୁଝାଇ କହିବି । ସତି ସେ, ସତୀର ଅପମାନରେ ଆଉ ଘର ରହିବ ନାହିଁ । ତୁମେ ଶ୍ରୀମତୀଙ୍କ ପାଖକୁ ଚାଲ, ମୁଁ ତାଙ୍କୁ ତମଲାଗି ବୁଝାଇ କହେଁ, ଦେଖେଁ !

କୁଟିଳା—ଦେବି ! ପଦେ ମୋଲାଗି ଆପଣ ନ କହିଲେ ମରିଯିବି ।

ଅଭିମନ୍ୟୁ—ଏଁ ! ଏତେବେଳକୁ ଏ କଥା ! ନିଜେ ତ ମରିବୁ, ମୋତେ ମାରିବୁ ।

(ସର୍ବେ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ପଥ—ଗୋପବାଳକଗଣଙ୍କ ନୃତ୍ୟ ଓ ଗୀତ )

ଆଜି ଭାଇ !! ଘୋର ମଜା ଭୂତ ପଡ଼ୁଛି ଧରା
ଦେଶଟାଯାକ ହୁରି ପଡ଼ୁଛି ଲାଗିଛି ଧରାପରା ।୦।
କୁଞ୍ଜେ ନୂଆ ଫୁଲ ଫୁଟିବ
ସଞ୍ଜେ ଆସି କିଏ ଦେଖିବ
ଲହରୀରେ ଭାସିଯାଉଛି ଯମୁନା ନଈ ସାରା ।୧।

---

## ତୃତୀୟ ଦୃଶ୍ୟ

( କାମରଣବାଟୀ କୁଞ୍ଜ ନିକଟସ୍ଥ ସୂର୍ଯ୍ୟବେଦିକା—ଉପବିଷ୍ଟା ଶ୍ରୀମତୀ, ଲଳିତା, ବିଶାଖାଦି ସଖୀଗଣ; ଏକପାର୍ଶ୍ୱେ ମଧୁମଙ୍ଗଳ ପୂଜାଦ୍ରବ୍ୟ ସଜାଉଥିଲେ ଓ କୁଟିଳା ଦନ୍ତରେ ତୃଣ ଧରି କରଯୋଡ଼ି ବସିଥିଲେ । )

କୁଟିଳା—କେତେ ବେଳଯାଏ ମୋତେ ଆଉ ଏମିତି ବସେଇଥିବ ମ ? ଏତେବେଳଯାଏ କଅଣ ସୂରୁଯ ଦେବତା ଶୁଣି ନଥିବେ ?

ଲଳିତା—ବଟୁ ! କେତେବେଳ ହେଲାଣି ? କୁଟିଳାଙ୍କୁ ବେଳ ହେବଣି, ତୁମେ ଟିକିଏ ବେଗେ ବେଗେ ଆସ । କାମ ସାର ଭଲା ।

ମଧୁ—ଉଁ, ସେ ପୂଜା ତେବେ ନ କରନ୍ତୁ । ପୂଜା-ଜିନିଷ ସଜଡ଼ା ହେଇନାହିଁ । ଫୁଲ ତ ଆସିନାହିଁ । ମାଲୁଣୀ କାହିଁ ?

ବିଶାଖା—ନାଇଁ ନାଇଁ, କେମିତି ହେଲେ ଆଗେ ତାଙ୍କ ପୂଜା ବଢ଼ାଇଦିଅ । ଶ୍ରୀମତୀଙ୍କ ପୂଜା ପଛେ ପରେ ହେବ । ସେ ତ ବେଳ ସମ୍ଭାଳି ପାରନ୍ତି ନାହିଁ !

ମଧୁ—ଏତେବେଳଗେ କଅଣ ବେଳ ହେଲାଣି ?

କୁଟିଳା—କାହିଁକି ନ କହିବ ? ପରିହାସ କରିବାକୁ ତ ବେଳ ପଡ଼ିଛି; କର ।

ମଧୁ—ହଉ ତେବେ । ମୁଁ ଉ-ଠ କରି ପୂଜା ବଢ଼େଇ ଦଉଛି । ପାପପୁଣ୍ୟ ବାକି ତମକୁ ଲାଗେ ।

କୁଟିଳା—ନାଇଁ ନାଇଁ ରେ ବାବୁ ! କେତେ ଉତ୍ତର କରୁଛ, କର । ମୁଁ ତୁନି ହେଇ ବସୁଛି । କି ଦଣ୍ଡରେ ମୋତେ ଦଇବ ପକାଇଲା ?

( ମାଲୁଣୀ ପ୍ରବେଶ )

ଲଳିତା—ବାଃ, ତୋର କ'ଣ ଆଜି ନିଦ ଭାଙ୍ଗ ନ ଥାଏ ? ସବୁ ଦିନ ଯାହା, ଆଜି ସେଇଆ ? ତତେ କେତେବେଳୁ ଖବର ଗଲାଣି ?

ମାଲୁଣୀ—ଆସୁଛି ତ । ବୋଝେ ଫୁଲ; ଫେର୍ ତୋଳି ଗୁନ୍ଥି ଆଣିବି ତ ? ଜଣକର ତ ନୁହେଁ, ଦି'ଦି ଜଣଙ୍କର ପୂଜା, ସେଥିରେ ପୁଣି ସୁବଳ ଗୁଡ଼ାଏ ଫୁଲ ତୋଳି ମୋ ବୋଝରେ ଭରିକରି ଦେଇଛନ୍ତି । ଯୋଉ ଭାରି, ଖାଲି ବେକ ଭାଙ୍ଗି ପକଉଛି । ଠେକଲେ ଜାଣନ୍ତି ସିନା । ଓଃ, କି ଭାରି ଲେ ମା ! ( ବୋଝ ଥୋଇଲା )

ମଧୁ—ବାଃ-ବାଃ, କୁଟିଳାଙ୍କର କର୍ମ ତ ବଡ଼ ସଲଖ । ହଁ ହଁ, ମନଗୁଣେ ଫଳ । ମାଲୁଣୀ ସଙ୍ଗେ ସଙ୍ଗେ ଆମି ପହୁଞ୍ଚିଗଲା । ଏସବୁ ତଟକା ଫଳ କ'ଣ ସହଜେ ଫଳେ ? ଆସ ଆସ ତେବେ, ମୁହଁରୁ ଉଚ୍ଚାରଣ କାଢ଼ । ହାତ ଯୋଡ଼ ଆଗେ ମନ୍ତ୍ର ପଢ଼ ।

କୁଟିଳା—( ଅଳ୍ପ ଘୁଙ୍ଘୁ ) କହ, ପଢ଼ୁଛି ।

ମଧୁ—ହୁଁ, ହାତଯୋଡ଼ ଉପରକୁ ଗୁହଁ, ମନେ ମନେ ସୂର୍ଯ୍ୟଙ୍କୁ ନ କର, କହ···ଓଁ ସୂର୍ଯ୍ୟ ସହସ୍ରାଂଶୋ ତେଜୋରାଶେ ଜଗତ୍ପତେ; କହ ।

କୁଟିଳା—ଓଁ ସୂର୍ଯ୍ୟ ସଶାଶୁ, କଅଣ କହିଲ ବ୍ରାହ୍ମଣ-ପୁଅ ଭାଇନା ? ହେଲା ନା ?

ମଧୁ—(ହସି) ହଁ ହେଲା ହେଲା । ଖୁବ୍ ହେଲା; କହି ଯା ।

କୁଟିଳା—ଟିକିଏ ଗୋଟି ଗୋଟି କରି କହ ଭଲା; ଏକାଥରକେ ସବୁ ମନେ ରହୁନାହିଁ ।

ମଧୁ—ହଉ, କହ ଓଁ ସୂର୍ଯ୍ୟସହସ୍ରାଂଶୋ

କୁଟିଳା—ଓଁ ସୂର୍ଯ୍ୟ, ସଶାଶୁ, ହେଲା ନା ?

ମଧୁ—ହଁ ଏଇଥର ଠିକ୍ ହେଲା, ତେଜୋରାଶେ ଜଗତ୍ପତେ ।

କୁଟିଳା—ତେଜରାଣି ଜଗ—କଅଣ କହିଲ ବ୍ରାହ୍ମଣ-ପୁଅ ?

ମଧୁ—ହଁ କହିଯାଅ, ତେଜୋରାଶେ ।

କୁଟିଳା—ମୋଲଗି ତୁମେ ପଢ଼ିଦେଲେ କ'ଣ ହବ ନାହିଁ ?

ଲଳିତା—ହଁ, ସେଇଆ କର ବଟୁ ।

ମଧୁ—ନାଇଁ, ହେଇଗଲା ଯେ । ଦିଅ, ଦାନ୍ତରେ ତୃଣ ଧର । ମନେ ମନେ ଦେବତାଙ୍କୁ କ୍ଷମା ମାଗ—ଆଜି ଦିନେ ସନ୍ଧିବନ୍ଦା କରିବି ନାହିଁ—କହ ।

କୁଟିଳା—(ଦାନ୍ତରେ ତୃଣ ଧରି ମୁଣ୍ଡ ଆ ମାରିବା)

ମଧୁ—ଫଲ ଆଞ୍ଜୁଳି ଦିଅ ।

ମାଲୁଣୀ- ଫୁଲ ଆଞ୍ଜୁଳି ହାତରେ ଦେଲା )

କୁଟିଳା— ୀ ଦେଇ ପ୍ରଣାମକରଣ)

ମଧୁ—ହଁ, ଏଥର ସରିଲା । ଏଣିକି ତମ ପାଇଁ ଯାହା ଯେମିତି କରିବାକୁ ହେବ, ମୁଁ କରିନେବି, ଯାଅ । ହଁ; ଦକ୍ଷିଣା ଦେଇ ଘରକୁ ଯାଅ ବାହାରି । ପୁଣି ଶ୍ରୀମତୀଙ୍କ ପୂଜାପାଠ ବଢ଼େଇବାକୁ ହେବ ।

କୁଟିଳା—ଓଃ, କି ଲାଜ ଲୋ ମା ! ଦକ୍ଷିଣା ମୁଁ ତ ଆଣି ନାହିଁ । (ପ୍ରକାଶ୍ୟେ) ଦକ୍ଷିଣା ଘରଠାରେ ଦେବି; ହବ ନାହିଁ ?

ମଧୂ—ସେଇଟା କ'ଣ ଅଉ ସୁନ୍ଦର କଥା ? ପୂଜା-ପାଠରେ ଦକ୍ଷିଣାଟା ସାଙ୍ଗେ ସାଙ୍ଗେ ମିଳିବାର କଥା; ନୋହିଲେ ଫଳ ହୁଏ ନାହିଁ । ତୁରନ୍ତ ଦାନ ମହାପୁଣ୍ୟ କି ?

ବିଶାଖା—ହଉ ହଉ, ସେ ପଛେ ଘରଠାରେ ଦେବେ, ତୁମେ ତାଙ୍କ କାମ ବଢ଼େଇ ଦିଅ ।

ମଧୂ—ତେବେ ତୁମେ ଯାଅ କୁଟିଳେ ! ଘରକୁ ଯାଅ । ଡେରି ହେବଣି ପରା !

( କୁଟିଳା ମୁଣ୍ଡିଆ ମାରି ପ୍ରସ୍ଥାନ )

ଲଳିତା—(ଶ୍ରୀମତୀଙ୍କି) ସଖି ! ଆଉ ବିଳମ୍ବ କାହିଁକି ? ଯାଅ, ସୂର୍ଯ୍ୟଙ୍କୁ ପୁଷ୍ପାଞ୍ଜଳି ଦିଅ ।

(ମାଲୁଣୀ ଫୁଲ ଆଣିବାକୁ ଗଲାବେଳକୁ ମଧୂ ବାଧାଦେବା )

ମଧୂ—ଥାଉ ଥାଉ, ଆଜି କେତେଦିନ ପରେ ଏଠି ସୂର୍ଯ୍ୟପୂଜା, ସବୁ ତ ଆଜି ପୁଣି ନୂଆ ।

( ଶ୍ରୀମତୀ ନିଜେ ଫୁଲ ଆଣି ଅଞ୍ଜଳି ଦିଅନ୍ତୁ )

ରାଧା—( ନିଜେ ଉଠି ଫୁଲଟୋକେଇ ଭିତରେ ହାତବଢ଼ାଇ ଫୁଲ ଆଣିବାବେଳକୁ ଶ୍ରୀକୃଷ୍ଣ କର ଧରିଲେ) ଓଃ ! (ଶ୍ରୀମତୀ ସାଶ୍ଚର୍ଯ୍ୟେ) ଏଁ, ଏଁ କ'ଣ ? ଏ କିଏ ? ରକ୍ଷାକର, ରକ୍ଷାକର ସଖି !

ସମସ୍ତେ—କ'ଣ ହେଲା ? କ'ଣ ହେଲା ?

ରାଧା—ଫୁଲଟୋକାଇରୁ କିଏ ମୋ ହାତ ଟାଣିଧରିଛି ।

ଲଳିତା—କି ଲୋ ! ଏ ମାଲୁଣୀ ତ ଭଲ ଜଣେ ! ଟୋକେଇରେ କ'ଣ ଯନ୍ତ୍ର କରିଛୁ କି ? ସଖୀଙ୍କ ହାତରୁ ଛାଡୁନାହିଁ ? (ଫୁଲଆଡ଼େଇ ଚାହିଁ) ଓଃ ଏ ତ ନୀଳକମଳ, ଏ ଅଦିନେ କେମିତି ଫୁଟିଲା ମ ?

ରାଧିକା—(ହାତଛଡ଼ାଇ) ସଖି ! ରକ୍ଷାକର ମୋତେ ।

( ଶ୍ରୀକୃଷ୍ଣ ହାତଧରି ଉପରକୁ ଆସିଲେ ଓ ଶ୍ରୀମତୀ ଲଜ୍ଜାବନତମୁଖେ ଦଣ୍ଡାୟମାନା )

ଲଳିତା—ଭଲ ଜଣେ ଲୋ ତୁ ମାଲୁଣି !

ମାଲୁଣୀ—କାହିଁ, ମୁଁ ତ କିଛି ଜାଣିନାହିଁ !

ବିଶାଖା—ହଁ ଲୋ, ଅଜଣା ଗୁଉଳ ଘିଅ ଖାଉଛୁ ! ଏସବୁ କଅଣ ? ଟୋକେଇରେ ତ ଫୁଲ, ଫୁଲତଳେ ଏ କିଏ ?

ମଧୂ—ସେ ପରା ଭଙ୍ଗା ଦେଉଳ ଭୂତ । ମଶାଲଟା ଜାଳିବ କି ? ଭଲ କରି ଦେଖିବ ?

ମାଲୁଣୀ—ତମ ନବରଙ୍ଗଙ୍କୁ ମୁଁ ପାରେନାହିଁ । ମୁଁ ଯାଏଁ, ତେଣେ ଗୌରୀତୀର୍ଥରେ ଚନ୍ଦ୍ରାବଳୀଙ୍କ କାଳୀପୂଜାକୁ ଫୁଲ ଦେବାକୁ ହେବ ।

( ହସି ପ୍ରସ୍ଥାନ )

କୃଷ୍ଣ—ଅଭିମାନିନି ପ୍ରିୟେ ! ଏତେ ଦିନପରେ ତମର ଏ ମଧୁର ପରଶରେ ପ୍ରାଣ ପୁଲକ ଉଠୁଛି । ଏସବୁ ସଖା ବଟୁଙ୍କ ଦୟାରୁ, ତାଙ୍କର କୌଶଳରୁ ଆଜି ପୁଣି ସୂର୍ଯ୍ୟପୂଜାଠାରେ ଏ ମିଳନ ।

ମଧୂ—ହିଁହିଁ ସଖା ! ମଧୂ ଖାଲି ତମ ମୁହଁ-ବାହାବାରେ ଭୁଲିବା ଜୀବ ନୁହ; ପେଟ—ପେଟ ।

ବିଶାଖା—ସେ କଥା ଆଉ କ'ଣ ବୁଝାଯିବ ନାହିଁ ?

ମଧୂ—ଜାଣେ ଜାଣେ ।

( ଗୀତ )

ତୁଚ୍ଛ ଦହିପାଣିକି ଏଡ଼େ ଟେକ !
ହାଲିଇ କହୁଛ ସରୁ ବେକ,
ଯମୁନା ନଈରେ ପାଣି ଥିବାଯାଏ
ପଶରା ମୁଣ୍ଡରେ କି ସଳଖ !
ତମ ଦିଆନିଆ କଥା ଜଣାଅଛି
ବାସି ଛେନା ଦିଅ ବାଛି ବାଛି,
ପୋଚରା ଲହୁଣୀ ଦିଅ ଦିନେ ଦିନେ
ଭଣଭଣ ଉଡ଼େ ପଣେ ମାଛି ।

( ପଦ୍ମା ପ୍ରବେଶ )

ଲଳିତା—କି ଗୋ ପଦ୍ମା ! ତମେ କୁଆଡ଼େ ?

ପଦ୍ମା—ଚନ୍ଦ୍ରାବଳୀ ପଠାଇଛନ୍ତି ।

ବିଶାଖା—କଅଣ ଶାରିକ ପଢ଼ାଇବାକୁ ?

ପଦ୍ମା—ଗୌରୀତୀର୍ଥରେ ଆଜ ଚନ୍ଦ୍ରାବଳୀ କାଳୀପୂଜା କରୁଛନ୍ତି । ଶ୍ୟାମ, ଶ୍ରୀମତୀ ଆଉ ସଖୀମାନଙ୍କୁ ନିମନ୍ତ୍ରଣ କରି ଆସିଛୁ ।

ଲଳିତା—ଶ୍ୟାମ ? ଶ୍ରୀମତୀ ? ଆଉ ସଖୀମାନଙ୍କୁ ମଧ୍ୟ ?

ମଧୂ—ଆଉ ଏ ବଟୁଙ୍କୁ ?

ପଦ୍ମା—ହଁ ।

ମଧୂ—ଏଁ, ତାଙ୍କୁ ମଧ୍ୟ ? ବାଃ, ବାଃ, ବାଃ ।

ଲଳିତା—ହଁ, ଶ୍ୟାମ ଯିବେ—ଚଣ୍ଡି ପଢ଼ିବେ, ଆଉ ଶ୍ରୀମତୀ ଶାଢ଼ୀ ପଢ଼ାଇବେ, ମଧୂ ତ ଭୂତ ଛଡ଼ାଇବ ।

କୃଷ୍ଣ—ଆଉ ଆଉ ଲଳିତେ । ଆଉ ସେ ସବୁ କାହିଁକି ?

ମଧୂ—ହଁ, ହଁ, ସଖୀ ଲାଜରେ ପାଣି ପଡ଼ିଗଲେଣି, ଆଉ ଆଉ ।

କୃଷ୍ଣ—ଆସ ରାଣ୍ଡ, ଆଜ ଏ ଆନନ୍ଦ ବନରେ ଚନ୍ଦ୍ରାବଳୀଙ୍କ ନିମନ୍ତ୍ରଣ ରକ୍ଷାକର । ତୁମେ ଆଗରେ ଚାଲ ପଦ୍ମା ! ମୁଁ ଆଜ ଦୁହିଁଙ୍କର ମାନ-ମିଳନ କରାଇ ଦେଉଛି । ଯାଅ । ଆନନ୍ଦରେ ଦୁଃଖ କାହିଁକି ?

ମଧୂ—ନା, ନାଃ ।

ସଖିମାନେ— ( ଗୀତ )

ବହିଲାଣି ଦେଖ ମିଠ ଦକ୍ଷିଣ ବାଆ
ଯମୁନାରେ ଉଜାଣି ଭାସେ ପ୍ରେମ-ନାଆ;

ମଧୂ—ଯମୁନାରେ ଉଜାଣି ଭାସେ ଗୋ ପ୍ରେମ-ନାଆ ।

ସଖୀ— କୁହୁ କହୁ ଗାଏ ପିକ, ଫୁଲବନରେ
ଛଇଳୀ ଛଟକେ ହସେ ଅଧ ଅଧରେ;

ମଧୂ—ରସିରସି ହସିହସି ଗୀତଟି ଗାଆ ।୧।

---

## ଚତୁର୍ଥ ଦୃଶ୍ୟ

( ପଥ—ଗାଇ ଗାଇ ପୌର୍ଣ୍ଣମାସୀ ପ୍ରବେଶ )

( ଗୀତ )

ସେଇ ସରସିଜ ରଙ୍ଗ ବରଣ
କୁଞ୍ଜ ଆଜ ତ ରଞ୍ଜିବ
ସେଇ ନଟବର ମୋହନ ମୁରଲୀ
ସଞ୍ଜରେ ସତେ ଗୁଞ୍ଜିବ ।
ସେଇ, ଗୁରୁ ଚରଣତଳ—ଲାଲ ନଳୀନଦଳ—
ନାଚିତ ଝଲମଲ ରାଜେ
ସେଇ, ନୂପୁର ମନୋହର ନୃତ୍ୟଭଙ୍ଗୀ ରସେ—
କମ୍ପିତ ରୁମୁଝୁମୁ ବାଜେ ॥
ଅଧରେ ମନୋହର ମୁରଲୀ
ବନେ ବନେ ବାଜେ—ମନେ ବାଜେ
ସେଇ, କାନର ଭିତରେ ପଶି ମରମ ପରଶି,
ବେଣୁ ବାଜେ—ମନେ ବାଜେ
ମନ୍ଦ ମୁରଲୀ ବନେ ବାଜେ—ମନେ ବାଜେ
ରାଧା ରାଧା ରାଧା ରାଧା ବାଜେ—କାନେ ବାଜେ ॥
ବାମେ ସୁବଦନୀ ଧନୀ ଚନ୍ଦ୍ରବଦନୀ ଗୋ
ମନ୍ଦ ମଧୁହସ ସାଜିବ
ଅନ୍ଧ ନୟନ ମନ, ଚନ୍ଦ୍ରିତ ନିଶି ବନ
ସୁରସେ ପ୍ରାଣ ମଜ୍ଜିବ ।୧।

( ତୁଳସୀ ପ୍ରବେଶ କରି ପ୍ରଣାମ କଲେ )

ପୌର୍ଣ୍ଣମାସୀ—କିଏ ତୁଳସି !

ତୁଳସୀ—ହଁ ଦେବି ବୃନ୍ଦା ସମ୍ବାଦ ଦେଇଛନ୍ତି ।

ପୌର୍ଣ୍ଣମାସୀ—କି ସମ୍ବାଦ ତୁଳସି !

ତୁଳସୀ—ଗୌରୀତୀର୍ଥ ନିକଟକୁ ଯିବାକୁ । ବୃନ୍ଦା ତେଣେ କୁଞ୍ଜମଣ୍ଡଳିରେ ରହିଲେ । ମୋତେ ଆପଣଙ୍କ ନିକଟକୁ ପଠାଇଛନ୍ତି ।

ପୌର୍ଣ୍ଣମାସୀ—ମୁଁ ତ ବାହାରିଥିଲି । ଚନ୍ଦ୍ରାବଳୀ କେଉଁଠି ? ଗୌରୀତୀର୍ଥରେ ?

ତୁଳସୀ—ହଁ ଦେବି ।

ପୌର୍ଣ୍ଣମାସୀ—ତେବେ ଆଜର ଏ ମିଳନ ଆଉ କେବେ କେହି ଦେଖିନାହିଁ, କି ଦେଖିବ ନାହିଁ । ଏକ ପାର୍ଶ୍ୱରେ ରାଣ୍ଡ, ଶ୍ୟାମ-ବିନୋଦିନୀ—ଅନ୍ୟ ପାର୍ଶ୍ୱରେ ଚନ୍ଦ୍ରାବଳୀ, ପ୍ରେମଗରବିଣୀ । ଏକ ବୃନ୍ତର ଦୁଇ ପାର୍ଶ୍ୱରେ ଯୋଡ଼ିଏ କମଳ ନେଇ ଶ୍ୟାମ ଖେଳା କରିବେ । ଚାଲ ତୁଳସୀ, ଆଉ ବିଳମ୍ବ କାହିଁକି ? ଚାଲ । (ଉଭୟ ପ୍ରସ୍ଥାନ)

---

# ଉପସଂହାର

## ଦୃଶ୍ୟ—କୁଞ୍ଜଦୋଳା

( ବାମେ ରାଈ, ମଧ୍ୟେ ଶ୍ୟାମ, ଦକ୍ଷିଣେ ଚନ୍ଦ୍ରାବଳୀ;
ସଖୀଗଣ ଗୀତନୃତ୍ୟ ସହ ଦୋଳାଉଥିଲେ )

( ଗୀତ )

ରାଈ ମନୋହାରୀ, ପ୍ରେମେ ଥର ଥର
ଚୋର ଆଖିଭର ଚାହାଁ ଫେର ।
ଥରେ ନୟନ କୋଣରେ କର ନନ୍ଦଲାଲ
ମନଚୋର ।୦।

ରସରଙ୍ଗିନୀ ରେ, ବ୍ରଜରାଜ-ତନୁଜ ଗିରିଧାରୀ
ମନ ନୟନ ପୂରାଇ ଧନ ! ନିରେଖ
ନ ହୁଅ ଆଉ ପାର ।୧।

ତେଜ ଲାଜ ଆଜ ଗଜରାଜଗମନ-ସୁକୁମାର !
ହସି ବାମେ ରାଜ ଫୁଟୁ ଆଜ ବୃନ୍ଦାବନ ଶିର ।୨।

ଗାଉ ଗଗନ ଭୁବନ ଜୟ ରାଧାରମଣ ବନଚାରୀ
ଛାନେ ଯମୁନା ଉଜାଣି ବହୁ ଚଉଦିଗେ
ଉଠୁ ହସି ପୁରୀ ।୩।

**ଯ ବ ନି କା**



## ରାସ ସମ୍ବନ୍ଧରେ ପଦେ-ଅଧେ—

ଲେଖିବାକୁ ମୋତେ କେହି କେହି ଅନୁରୋଧ କଲେ, ମାତ୍ର ଏହା ବାସ୍ତବ ଭୂମିକା ବା ମୁଖବନ୍ଧ ନୁହେଁ; ଏଣୁ ନଚାନ୍ତ ଲେଖିବାକୁଯାଇ "ରାସ ସମ୍ବନ୍ଧରେ ପଦେ-ଅଧେ" ବୋଲି ଆଖ୍ୟା ଦେଲି ।

ମୁଁ ଭକ୍ତ ନୁହେ—ସାଧକ ନୁହେ—ସେବକଯୋଗ୍ୟ ନୁହେ କିମ୍ବା ସେଭଳି ହେବାର ଆଶା ମଧ୍ୟ ମୋର ନାହିଁ । ସମସ୍ତେ ସାଧାରଣତଃ ସେହି ଶ୍ୟାମ ନଟବରଙ୍କ ଗୁଣଗାନ କରିଥାନ୍ତି—ହେଲାରେ କହି ବା ବାଉଳା ହୋଇ କହି—ମୁଁ ଏଥିମଧ୍ୟରୁ ଗୋଟାଏ କଥା କରୁଛି ।

'ବିଦ୍ୟାବଳୀ' ବିଷୟଟି ପ୍ରଭୁଙ୍କର କୃପାବିକାଶ ମାତ୍ର । ରାସଦଳ ବା ରାସ କହି ଆଜିକାଲି ଘରେ ଘରେ; କେବେ ଚନ୍ଦ୍ରାବଳୀ ରାଧିକା ମୋଡ଼ି ଆଜି କାଟମାଳର ପକ୍ଷାଘାତ । କଳଙ୍କିତ ଚରିତ୍ରଚିତ୍ରଣ କରି କିଭଳି ସ୍ଥାନରେ—କେତେ ଊର୍ଦ୍ଧ୍ୱରେ ଅବା କେତେ ନିମ୍ନରେ, ଶ୍ରୀ ଶ୍ରୀ ରାଧାଗୋବିନ୍ଦଙ୍କ ସ୍ଥାନ ଥୋକେ ଗଢ଼ିଦେଲେଣି, ତାହା ଦେଖିଲେ ବାସ୍ତବିକ ମନରେ ଘୋର ଦୁଃଖ ଆସେ । ଭକ୍ତର ମହତ୍ତ୍ୱ, ଭକ୍ତର ବିଶେଷତ୍ୱ, ଭକ୍ତର ଗୁରୁତ୍ୱ ଫୁଟାଇବାକୁ ଭକ୍ତାଧୀନ ଭଗବାନ ନ କରିଛନ୍ତି କ'ଣ ? 'ବିଦ୍ୟାବଳୀ' ନାଟକର ବିଷୟବସ୍ତୁ ସେହି ଭକ୍ତପ୍ରାଣ ହରିଙ୍କର ଏକ ଲୀଳାପ୍ରକାଶ ମାତ୍ର ।

ବର୍ତ୍ତମାନ ଏ ଗୀତିନାଟ୍ୟ ନେଇ ପଦଅଧକରେ ଶେଷ କରେଁ । ନାନାପ୍ରକାର ରାଗିଣୀର ନୂଆ ଓ ପୁରୁଣା ଗୀତରେ ଏହାର ଅଙ୍ଗ ପୂର୍ଣ୍ଣ । ନିଖୁଣ ଓଡ଼ିଆଭାଷାରେ ଏହାକୁ ଗଢ଼ିବାକୁ ଚେଷ୍ଟାର ତ୍ରୁଟି କରିନାହିଁ । ଚରିତ୍ରଚିତ୍ରଣର ବିଶେଷତ୍ୱ ବିବେଚନାର ଭାର ଶ୍ରଦ୍ଧେୟ ପାଠକପାଠିକାଙ୍କ ଉପରେ ନ୍ୟସ୍ତ କଲି । ଏହାର ଅଭିନୟ ଲାଗି କେହି ଆଗ୍ରହାନ୍ୱିତ ହେଲେ ଆବଶ୍ୟକମତେ ମୋଠାରୁ ସାହାଯ୍ୟ ନେଇପାରନ୍ତି । ମୁଁ ସାଧ୍ୟାନୁସାରେ ତାହା କରିବାକୁ ପ୍ରସ୍ତୁତ ଅଛି ।

ଶ୍ରୀମାନ୍ କାଳୀଚରଣ ଦାସ ମୋର ପୂର୍ବ-ପରିଚିତ । କଟକରେ ମୋର ରାସଦଳଦ୍ୱାରା ଏହି ଗୀତିନାଟ୍ୟଟିର ଅଭିନୟ ଦେଖି ସେ ଏ ପୁସ୍ତକର ମୁଦ୍ରଣ ଲାଗି ମୋତେ ଅନୁରୋଧ କଲେ । ଏହି ଏକ ସହସ୍ର ପୁସ୍ତକର ମୁଦ୍ରଣ ଲାଗି ମୁଁ ତାଙ୍କୁ ସାଦରେ ଅନୁମତି ଦେଲି ।

ତା ୨୦ । ୨ । ୧୯୩୨
କଟକ

ଶ୍ରୀ କାଳୀଚରଣ ପଟ୍ଟନାୟକ

## କୁଶୀଲବଗଣ

### ପୁରୁଷବର୍ଗ

ଶ୍ରୀକୃଷ୍ଣ, ମଧୁମଙ୍ଗଳ, ସୁଦାମ, ଅଭିମନ୍ୟୁ (ଶ୍ରୀମତୀଙ୍କ ସ୍ୱାମୀ)

### ସ୍ତ୍ରୀବର୍ଗ

ଶ୍ରୀମତୀ, ପୌର୍ଣ୍ଣମାସୀ ( ଭଗବତୀ ), ଜଟିଳା ( ଅଭିମନ୍ୟୁ ଜନନୀ ), କୁଟିଳା (ଜଟିଳାଙ୍କ କନ୍ୟା), ବୃନ୍ଦା, ଲଳିତା, ବିଶାଖା ଇତ୍ୟାଦି ସଖୀଗଣ ।
ବିଦ୍ୟାବଳୀ ( ରମଣୀବେଶୀ ଶ୍ରୀକୃଷ୍ଣ )

# ଵିଦଧାଵଳୀ

( ନାଟକ )

## ପ୍ରସ୍ତାବନା

( ଗୋପୀଗଣ ପ୍ରବେଶ )

( ଗୀତ )

କୁସୁମ ନାଗର ! ଆସ ଗୋ
ମଳୟ ସୁନ୍ଦର ମଣ୍ଡିଲ ମଧୁବନ
ପାଖୁଡ଼ା ଫିଟାଇ, ବାସ ଚହଟାଇ, ନାଗଶ୍ର ବସଇ
ତୋ ପଥ ଅନାଇଁ, ଚୁମ୍ବ ସୁବଦନ । ୦ ।
ବିରହ ଗାନେ ବିରହ ତାନେ
ବିରହ ଧାମେ ବିରହ ମାନେ
ଗାଇ, ବାଇ, କୁଞ୍ଜବନ ତୁ ବଣ ଗୁଇ,
କୁସୁମ ହେଉ ବାଇ ।
ନିହାର ବାର ନୟନୁ ଝରେ
ତପତ ବକ୍ଷେ ହେଲି ଅଜାଡ଼
ମରମେ ସରମ ଭରମ ଚରମ
କରମ ଆଦର ହୁଏ ସବୁ ଝୁରି ।
ଆଉ ନୟନରେ, ଗୃହିଁ ଯାଅ ଥରେ,
ତୋ ଲାଗି ସାଜନ୍ତୁ ବେଶ କ ଯତନ ॥

---

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( ଯମୁନାତଟ—କଦମ୍ବ ତରୁତଳେ ଏକାକୀ ଶ୍ରୀକୃଷ୍ଣ )

ଶ୍ରୀକୃଷ୍ଣ— ( ଗୀତ )
ବାଜରେ, ସପତ ସ୍ୱରେ,
ଯମୁନା ତୀରେ, ମୋହନ ମୁରଲୀ
ତାନରେ, ଥରେ ଅଧୀରେ,
ନଦ୍ଦ ହ'କୂଳ ପଡ଼ୁ ଉଛୁଳି । ୦ ।
ପରଶି ପ୍ରେମିକା ମନ
କର ଉଛନ୍ନ, ପ୍ରେମ ଚୁମ୍ବନେ
ଡାକ ତୁ ଫୁଲ ନିକୁଞ୍ଜେ,
ଏ ଫୁଲ ସଙ୍ଗେ, ନାମ ଉଚ୍ଚାରି ।୧।
କହ ଯା'—ନବ ନବୀନା,
ଶ୍ୟାମ ତୋ ବିନା, ସରେ କଣୋଷ୍ଣ
କରୁଣା, ନ କର ଊଣା,
ମୁଁ ପଗ୍ କଣା, ସେବକ ସରି । ୨ ।

କେତେ ବେଳ ତ ହେଲାଣି, ସଖାମାନଙ୍କର କାହାରି କାହିଁକି ଦେଖାନାହିଁ ? କ'ଣ ହେଲା ? ମୁଁ ଏଠି ଅଛି ବୋଲି କ'ଣ ସେମାନେ ଜାଣିପାରିଲେ ନାହିଁ ? କେଜାଣି, ଖୋଜ ହେଉଥିବେ । ବଜାଏଁ ଥରେ ବଂଶୀ, ଶୁଣି ଅବା ଆସିବେ । ନିକଟରେ ତ କେହି ଥିବାପରି ଜଣାପଡ଼ୁନାହିଁ । ଗୋଠ ନେଇ କ'ଣ ଦୂରକୁ ଗଲେ ବାହାରି ? ( ବଂଶୀବାଦନ )

( ମଧୁମଙ୍ଗଳ ଗାଇ ଗାଇ ପ୍ରବେଶ )

ମଧୁ— ( ଗୀତ )
ବଂଶୀ ବଜାଏ ବସି କେ ବନ୍ଧୁଆ ଫୁଲବନେ । ୦ ।
କେ କରେ ମନ ଚୋରି—ଅଧରେ ବଂଶୀ ଧରି
ରାଧା ରାଧା ବୋଲି କେ ସଙ୍ଗେ ଡାକେ କୁଞ୍ଜକୋଣେ ?
ରୂପେ କଳା ମୋହନ, କରେ ମନ ମୋହନ
କୁଳବଧୂ ଭୁଲାଏ ସତେ ସେ ମୁରଲୀ ତାନେ । ୦ ।

(ଶ୍ରୀକୃଷ୍ଣ ସହର୍ଷେ ଉଠି ଯାଇ ବଟୁଙ୍କୁ କୁଣ୍ଢାଇ ନେଲେ)

ଶ୍ରୀକୃଷ୍ଣ—ଏତେ ବେଳଯାଏ କୁଆଡ଼େ ଥିଲ ସଖା ? ମୁଁ ତମକୁ କେତେ ଖୋଜୁଛି; ତୁମେ ତମର ମନ-ସୁଖେ ଗାଇ-ଗାଇ ନାଚ-ନାଚ ବୁଲୁଥାଅ ।

ମଧୁ—କିଏ କହିଲା ! ଇସ୍ସ୍ ରାମଚନ୍ଦ୍ରଃ ! ମୁଁ ତ ତୁମକୁ ଗାଳି ଦେଇ ଦେଇ ଆସୁଛି ।

ଶ୍ରୀକୃଷ୍ଣ—ଗାଳି ଦେଉଥିଲ ? ମୋତେ ଏକା ବଡ଼ ସୁଖ ଲାଗିଲା ।

ମଧୁ—ହଁ, ଲାଗିନଥିବ ଆଉ କଅଣ ? ଗଉଡୁଣୀଙ୍କ ଖୁଆ-ପାହାର ପରି ?

ଶ୍ରୀକୃଷ୍ଣ—ସେ କ'ଣ କମ୍ ମିଠା କି ମଧୁ ?

ମଧୁ—ମିଠା ନହେଲେ ମାଆ ଯଶୋଦା ଆଦରରେ ଲହୁଣୀ ଖାଇବାର ଦେଲେ ଥୁ-କରି ଦେଇ ତୁମେ ପୋଚରି ଖୁଆପେଡ଼ା ଚୋରି କରନ୍ତ ?

ଶ୍ରୀକୃଷ୍ଣ—ହଁ, ଏଇଥିରୁ ବୁଝୁନାହଁ ସଖା, ତୁମ ଗାଳିଟା ମୋତେ ସୁଖ ଲାଗେ କି ନାହିଁ ?

ମଧୁ—ତୁମକୁ ଲାଗୁ ନଲାଗୁ, ମତେ ଏକା ଘାରି ଚଢ଼ି ମାରୁଛି ତୁମକୁ ।

ଶ୍ରୀକୃଷ୍ଣ—କାହିଁକି ସଖା ?

ମଧୁ—ସବୁବେଳେ ବଇଁଶୀ ଧଇଲେ ଗୋଟିଏ କଅଣ ରାଧା ରାଧା ହେ ? ଚିଡ଼ା ଲାଗୁନାହିଁ ?

ଶ୍ରୀକୃଷ୍ଣ—ସର ଖାଇବା ତମକୁ ଚିଡ଼ା ଲାଗେ ?

ମଧୁ—ଲାଗିବ, ନିଶ୍ଚେ ଲାଗିବ, ନିତି ଦେଲେ···

ଶ୍ରୀକୃଷ୍ଣ—ଲାଗିବ ?

ମଧୁ—ହଁ ସଖା, ପରଖି ଦେଖ ।

ଶ୍ରୀକୃଷ୍ଣ—କେଜାଣି ?

ମଧୁ—ହନେ ନାଲିଁ ଅଧେ ନାହିଁ, ବଇଁଶୀ ଧଇଲେ କଅଣ ସେଇ ନାଁ'ଟା ବାହାରପଡ଼େ ? କୁଳବଧୂ ସେ । କହିଲ ଦେଖି, ତାଙ୍କର ମହତ ରହିବଟି ? ଅଃ, ଯୁଆକୁଇ ପରା କହନ୍ତି ପ୍ରେମ । ସବୁବେଳେ ସେଇ ରାଧା ରାଧା ରାଧା ରାଧା ! କଓ, ଏ କ'ଣ ? ମନସ୍ତ ମୁହଁ ଆଗେ ଥୋବରା ହେଇଯିବ, ବଇଁଶୀ ଘୋଷରା ହେଇଯିବ । ମୋତେ ତ ଶୁଣି ଶୁଣି ଘ'ର ଚିଡ଼ା ଲାଗିଗଲଣି । ଏମିତି କି ବଇଁଶୀ ଖଣ୍ଡିକ, କଦଟରେ ପଡ଼ିଲେ ଯମୁନାରେ ଭସାଇଦେବ, ଆଉ ମୁଣ୍ଡ ଥିବ ନା ବଥେଇବ ?

ନାଃ—ଆଉ ଗୋଟିଏ କିଛି ନାଁ ଧର ତୁମେ ଏଣିକି ବଇଁଶୀ ନ ଫୁଙ୍କିଲେ ଚଳିବ ନାହିଁ ।

ଶ୍ରୀକୃଷ୍ଣ—ଆଉ ଗୋଟାଏ ନାଁ ? କ'ଣ କହିଲ ସଖା !

ମଧୁ—ଯାହା କହିଲ ସେଇଆ ।

ଶ୍ରୀକୃଷ୍ଣ—ରାଧା ବିନା ଆଉ ପୁଣି କି ନାମ ଅଛି ?— ଯାହା କୃଷ୍ଣର କଳାମେଘରେ ଚନ୍ଦ୍ରକିରଣ ଫୁଟାଇବ ସଖା ?

( ଗୀତ )

ରାଧା ନାମ ସୁଧାଧାରା—ମୋହନ-ଦୁଃଖ-ପାସୋରା
ଏ କଳାମେଘ କୋଣରେ ସେ ପରା ମୋ ଧ୍ରୁବତାରା ।୦

ଶୁଣିଲା ତରୁ ଏ ଶ୍ୟାମ ସେହି ତ ବସନ୍ତଶ୍ରେରା
ପୁଲକେ ପଲକେ ହସେ ଲାଗି ସେ ପରଶ ସାରା ।୧ ।

ମୁ ରୁଛି ପରାଣେ ପିଣ୍ଡ ଥିବ କି ଲବେ ତା ଗୁରା
ତା ବିନା ତିନି ଭୁବନ ଦିଶଇ ବିଷ-ପସରା । ୨ ।

ମଧୁ—( ଗୀତରେ ବାଧା ଦେଇ ) ଥାଉ, ଥାଉ ସଖା ! ଶୁଣିଲି ଶୁଣିଲି, ଯେତେ ଶୁଣେ ତେତେ ନୂଆ— ଏଇମିତି ତ ସଖା ! ମୋ କାନକୁ ତମ ଗୀତ ଯେମିତି ସବୁବେଳେ ନୂଆ—ତମକୁ ରାଧା ନାମ ସେମିତି ସବୁବେଳେ ନୂଆ ହେଉଥିବ ସିନା ! ପ୍ରେମିକ ! ଚହ୍ନି ଚହ୍ନି ତେବେବେଳେ ତମକୁ ଚହ୍ନିବାକୁ ମନ ହୁଏ !

( ଗୀତ )

ସେଇ ହସଟି ଫୁଟେ ଟିର ଏ କୁସୁମ ବନେ
ସେଇ ବାସ ଚହଟେ ଟିର ଏ ମଧୁ ପବନେ ।
ତେବେ ମନଟି ଗୁହେଁ
ଆଖି ଅନାଇଁ ରହେ
ହିଶେ ସେ ରୂପ ନୂଆ ଟିର ଏ ପୋଡ଼ା ନୟନେ ।୧।
ଚହ୍ନି ଚହ୍ନଇ ନାହିଁ
ପାଶେ ପାଇ ଖୋଜଇ
କିଏ ତୁମେ ହେ ସଖା ଟିର ଏ ଭେଟି ସପନେ ? ।୨।

ଶ୍ରୀକୃଷ୍ଣ—ସଖା,ବନ୍ଧୁ, ତମ ଗୀତ ଶୁଣିଲେ ମନ ଆନନ୍ଦ ହୁଏ ସତ; ବାକ ବଡ଼ ଦୁଃଖ ଲଗିଲା ।

ମଧୁ—କାହିଁକ ସଖା ?

ଶ୍ରୀକୃଷ୍ଣ—ଛି ସଖା, ଏମିତ ଗୀତ ଗାଇବ ନାହିଁ, ମୁଁ ପରା ତମର ସେଇ ସଖା ? ସେଇ କାହ୍ନୁ ? ଚିରଦିନ ତମର ସ୍ନେହ-ଆଦରରେ ବନ୍ଧା ?

ମଧୁ—ନଟବର ! ଛଳନା ଥାଉ । ବନ୍ଧା ତୁମେ ? କିଏ ତମକୁ ବାନ୍ଧିପାରିବ ? ନିଜେ ଇଚ୍ଛା କରିଛ, ଧରା ଦେଇଛ । ନୋହିଲେ ବାନ୍ଧିବ କିଏ ? ଧରିବ କିଏ ତମକୁ ଶ୍ୟାମ ?

ଶ୍ରୀକୃଷ୍ଣ—ନା ସଖା, ବୁଝିଲ ଭୁଲ । ତମର ପ୍ରେମ, ତମର ସ୍ନେହ, ତମର ଆଦର ମୋତେ ବାନ୍ଧି-ରଖିଛି, କିଣିରଖିଛି । ଧରା ନ ଦେଇ ମୋର ଗତି କାହିଁ ?

( ଗୀତ )

ବାନ୍ଧିଛ ମୋତେ ହେ ବନ୍ଧୁ ! କି କଠିନ ବନ୍ଧନେ ?
ଏ ଡୋରି ଲଗଇ ମୋତେ ବୋଳା ସତେ ଚନ୍ଦନେ ।୦।

ଥିଲେ ମୁଁ ଦୂରେ ହେ ସଖା !
ତୁମେ ପ୍ରୀତି - ଜାଲ ଲଖା
ଚିର ମୁଁ ପଡ଼ଇ ଧରା ପ୍ରେମ-ଅନ୍ଧ ନୟନେ । ।
ନାହିଁ ମୋ ଶକତି ଗତି
ଲଭିବ ସତେ ମୁକତି
ଛୁଟାଇ ପଳାଇଯିବ କାହିଁ ଦୂରେ ଜୀବନେ ।୨।

( ନେପଥ୍ୟେ ଘଣ୍ଟି-ଘଣ୍ଟା ଶିଙ୍ଗାଧ୍ୱନି )

ମଧୁ—( କାନେଇଁ ) ସଖା, ହେଇଟି ସମସ୍ତେ ଗୋଠରୁ ବାହୁଡ଼ଲେଣି; ଶୁଣୁନ ନା ? ଘଣ୍ଟି-ଘଣ୍ଟା ଶୁଭୁଛି ?

ଶ୍ରୀକୃଷ୍ଣ—(ଶୁଣି) ହଁ ସଖା, ମୋତେ ଖୋଜୁଥିବେ । ବାକ ସଖା ! ମୁଁ ଯାହାକୁ ଖୋଜେଁ ?

( ଆକୁଳ ଦୃଷ୍ଟିପାତ )

ମଧୁ—ଆଉ ବେଳ ନାହିଁ ସଖା ! ମୁଁ ଯାଇ ସଙ୍କେତ ଦେଇଆସିବ । ଆସ, ଘରକୁ ଯିବା ।

ଶ୍ରୀକୃଷ୍ଣ—(ବାଁଆଖି ଧରି) ଏ କଅଣ ସଖା, ବାଁ ଆଖିଟା ମୋର ଡେଇଁଉଠିଲା କାହିଁକି ? ପ୍ରେମମୟୀଙ୍କ ମିଳନରେ କିଛି ବାଧା ଘଟିବ କି ?

ମଧୁ—ନାଇଁ ସଖା, ବାଧା କଅଣ ? ବଡ଼ ଜୋର୍‌ରେ ସେଇ ବୁଢ଼ୀ ମାଙ୍କୁଡ଼ୀ, ନୋଇଲେ ସେ ଖଣ୍ଡାଖାଣ୍ଡି କୁଟିଳା,—ଦେଖାଯିବ, ଗୋଟେ କିଛି ଉପାୟ କରିବା ନାହିଁ ଯେ ଏଇଥିକି ଏତେ ଭାବନା ?

( ଗୀତ )

ଏ ଛାର କଥାକୁ କାହ୍ନୁ, ଚନ୍ଦ୍ରମୁଖ ଶୁଖାନା ରେ
କମଳନୟନ କୋଣେ ଶିଶିର ବିନ୍ଦୁ ଦେଖାନା ରେ ।୦।
କୁମୁଦିନୀ ଶଶୀ ସହ କିଶୋରୀ କିଶୋର ରେ
କେ କରିବ ଭିନ୍ନ ଭିନ୍ନ ? ଗଣ୍ଡେ ନୀର ମଖାନା ରେ ।୧।
କ୍ଷୀର ନୀର ଏ ପୀରତି ବନ୍ଧା ପ୍ରେମବନ୍ଧନେ
ବିରହ ବିନା କଷଟି ବନ୍ଧୁ, ପରଖେ ପ୍ରୀତି-ସୁନା ରେ ।୩।

( ଶ୍ରୀକୃଷ୍ଣଙ୍କୁ ଘେନି ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ଜଟିଳ—କୁଟିଳା ପ୍ରବେଶ )

କୁଟିଳା— ( ଗୀତ )

କେତେ କିଏ କହିବ କହ ଏ ପୋଡ଼ାମୁହିଁ କି ?
ଲାଜ ହୋଇ ଟିକିଏ ନାହିଁ ସେ ଏଡ଼େ ନିଲଜୀ କି ।୦।
ବରଜରେ ବାଜୁଛି ନାଗରୀ
କଳଙ୍କିନୀ ରାଧା ବୋଲି ଶୁଭୁ ନାହିଁକି ?
ଶୁଣି କାନ ଫାଟିଗଲାଣି ଏ ଗୁପତ ସହେ କି ? । ୧ ।
ନନ୍ଦପୁଅ ଅସଲ ନାଟୁଆ
ବୃନ୍ଦାବନେ ନାଚ ବୁଲେ ନାମ ଗାଇକି
ବଇଁଶୀକି ଶୁଣିଲେ କାନେ ଏ ବାଇ ହେଲା କି ?୨।
ଯମୁନାକୁ ପାଣିକି ତ ଯାଏ
କେତେ ତରକରେ କାହ୍ନୁ ଭେଟ ପାଇଁକି
ମିଳିଛନ୍ତି ସାଙ୍ଗକୁ ସାଥୀ ଏ ସଖୀ ତାହିଁକି ? ୩ ।

ଏଇଥର ପଡ଼ିଛୁ ପଟ
ଭାଙ୍ଗିଯିବ ପୀରତି ହାଟ ଆଉ ନାହିଁକି
ଦେଖିବ ମୁଁ କେଡ଼େ ଚତୁରୀ ସେ ମୋହେ ବଳିକି ? ।

( ଜଟିଳା ପ୍ରବେଶ )

ଜଟିଳା—ଆଲୋ କୁଟି, କଅଣ ହେଲା ?

କୁଟିଳା—କଅଣ ଆଉ ହ'ବା ? ସବୁ କଲ ଆପଲା । ଏଥର ବାଟ ଜଗ ।

ଜଟିଳା—ଯଶୋଦା କଅଣ କହିଲେ ?

କୁଟିଳା—ଆଉ କହିବାକୁ ପୁଣି ମୁହଁ ଅଛି ?

ଜଟିଳା—ତୁ ସବୁ ବୁଝାଇ କହିଲୁଟି ?

କୁଟିଳା—ହଁ, ମୁଁ କହିଲି, ଜନେଅଧେ କଥା ସିନା । ଦୁର୍ବାସା ଋଷି କହିଦେଲେ ବୋଲି କ'ଣ ହୋଇଗଲା ? ଆଜି ସେ କହିଲେ ଶ୍ରୀମତୀଙ୍କ ହାତରନ୍ଧା ଯେ ଖାଇବ ସେ ଚିରାୟୁ ହବ, କାଲି ଆସି କହିବେ ଶ୍ରୀମତୀଙ୍କର ବର ଅମର ହବ । ତେବେ କଥାଟା କ'ଣ ହବ ? କାହା ଘରବୋହୂ ନଇତ ଏଇମିତି ପରଘରକୁ ଯାଇ ରାନ୍ଧିବାଢ଼ି ଦଉଚ ଭଲ ? ରଜାଘର ବୋଲି ସିନା ତୁମେ ଏମିତି କରୁଚ ? ତୁମେ ଆଉ ମନଦୁଃଖ କର ନାହିଁ, ଦାଣ୍ଡଲୋକଙ୍କୁ ଏ କଥା ବଡ଼ ଅସୁନ୍ଦର ଦିଶୁଚି । ଆମେ ଆଉ ବାଟ ଚାଲିପାରିଲୁ ନାହିଁ । ଯେବେ ଆମ ବୋହୂ ରନ୍ଧାରେ କାହ୍ନୁଙ୍କର ଏତେ ଶରଧା; ଧନିଷ୍ଠାକୁ ପଠାଉଥିବ, ସେ ନିତି ଡିନଓଳି ଆମ ଘରଠୁ ତାଙ୍କ ଠା' ଦରବ ନେଇ ଆସୁଥିବ ।

ଜଟିଳା—ଯଶୋଦା ରାଗ ହେଇନାହାନ୍ତି ତ ?

କୁଟିଳା—ହେଲେ ଏବେ ! ତାଙ୍କ ରାଇଜରେ ନ ରହିବା । ସବୁ ଯାଉ ମହତ ଥାଉ, ମହତ ଗଲେ ନ ମିଳଇ ଆଉ ।

ଜଟିଳା—ନାଇଁମ, ମୁଁ ସେ କଥା କହୁନାହିଁ ଯେ; ଶୁଣି ପୁଣି ତ କ'ଣ କହିଥିବେ ?

କୁଟିଳା—କ'ଣ କହିବେ ? ମୁହଁ ଶୁଖିଗଲା, ତୁନି ହେଇ ରହିଲେ ।

ଜଟିଳା—ଦୁଃଖ କରିଥିବେ ।

କୁଟିଳା—କଲେ କରିଥିବେ, କଅଣ ହବ ଏଥିକି ? ମୁଣ୍ଡକାଟ ?

ଜଟିଳା—ତୁ ତେବେ ଯା; ଯମୁନା ଯିବା, ସୂର୍ଯ୍ୟପୂଜା ସବୁ ତା'ର ବନ୍ଦ କରିଦବୁ । ଦାଣ୍ଡଦୁଆର ଏରୁଣ୍ଡି ଯେମିତି ବୋହୂ ନଡଏଁ । ସଖିଗୁଡ଼ାଙ୍କ କଥା କେବେ ବିଶ୍ୱାସ ଯିବୁ ନାହିଁ । ସେଗୁଡ଼ା ସବୁ ଅନର୍ଥର ଗୋଡ଼ ।

କୁଟିଳା—ସବୁ ଆଡ଼େ, ସେଇ କାହ୍ନୁ ଆଡ଼େ । ତାକୁ ଉପାୟ ନାହିଁ । ନଜେଇନ୍ଦ୍ର ତ ହାରିଗଲା—ବଡ଼ ମାୟାବୀ ସେ ।

ଜଟିଳା—ନାଇଁ ନାଇଁ, ବୋହୂକୁ ତ ଦାଣ୍ଡ ଏରୁଣ୍ଡି ବନ୍ଧ ମଡ଼େଇ ଦବୁନି ଗଲି । ତୁ ଜଗିଥିବୁ, ଏଣେ ମୁଁ ଜଗିଥିବି ।

କୁଟିଳା—ଜଗିବ ଯେ, ସବୁ କରିବ, ବାଳ ପଛକୁ କାହା କଥାରେ ତୁ ଭଳିଯିବୁ—ଦୋଷୀ ହେବି ମୁଁ । ସ୍ତ୍ରୀ ଯେମିତି ନହୁଏ । ସେଇ ବୋହୂକୁ ଜଗୁ ଜଗୁ ତ ମୋର ଦାଣ୍ଡରେ ହାଟରେ ଦୋଷ, ସମସ୍ତେ କହିଲେ କଲେହଇ ।

ଜଟିଳା—ନାଇଁ ନାଇଁ, ସେଥିରୁ କି ମିଳିବ ? ଦାଣ୍ଡ-ଲୋକେ ଯୋଉ ଆମ ଘର ଭରତି କରିଦଉଥିଲେ, ଏବେ ନ ଦେବେ । ମୁଁ ଯେମିତି କହିଲି, ଏଇନେ ଯାଇ ସବୁ ସେମିତି କର । ଯାଃ ।

( ଉଭୟେ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

( ଉଦ୍ୟାନର ଅଂଶ—ଶ୍ରୀମତୀ ନବସ୍ଖୀମାନେ
ସୂର୍ଯ୍ୟପୂଜା ଲାଗି ଫୁଲ ଗୁନ୍ଥୁଥିଲେ )

( ଗୀତ )

ମଲ୍ଲୀମାଳ ଶ୍ୟାମଙ୍କୁ ଦେବ, ମନ ତୋଷିବ ।
ଗ୍ରୀଷମ ହୋଇଲେ ଚୂଆଚନ୍ଦନ ମୁଁ ଲେପିବ । ୦ ।
ତା ଅଙ୍ଗରୁ ସ୍ୱେଦବାରି ଯେବେ ପଡ଼ୁଥିବ ଝରି
ମୋ ଦୃଷ୍ଟି ପଡ଼ନ୍ତେ କାନପଣନ୍ତରେ ପୋଛିବ ।୧।
ସେ ଯେବେ କରିବେ ମାନ ଭଙ୍ଗି ଭୁଞ୍ଜାଇବ ପାନ
ତାଙ୍କୁ କରି ହୃଦହାର ହରି ସେବା କରିବ । ୨ ।
(୯ ବନମାଳୀ)

ଲଳିତା—(ପ୍ରବେଶ କରି) ସଖି ! ମାଳାଗୁନ୍ଥା କ'ଣ ଆଜି ସରିବ ନାହିଁ ପରି ?

ଶ୍ରୀମତୀ—( ଟିକିଏ ଅଧଅଧ ହସି ) ନାହିଁ, ସରିଲାଣି ତ ଆସି ।

ଲଳିତା—କେତେବେଳ ହେଲାଣି ?

ଶ୍ରୀମତୀ—କେତେ ହବ ?

ଲଳିତା—ମୁଣ୍ଡ ଉପରେ ସୂର୍ଯ୍ୟଙ୍କୁ ଚାହୁଁ ନା ? ସୂର୍ଯ୍ୟ-ପୂଜାକୁ ଯିବାକୁ କ'ଣ ବେଳ ହେଇନାହିଁ ?

ଶ୍ରୀମତୀ—କାହିଁ ? ତମର ସବୁ କାମ ସରିଲାଣି ନା ?

ଲଳିତା—ଆମ କାମ ସବୁ ସରିଛି; ଆମର ଆଉ କି କାମ ଅଛି ? ତୁଳସୀ ଫୁଲ ନେଇଆସିଲେ, ହେଲା । ( ନେପଥ୍ୟକୁ ଚାହିଁ ) ହେଇଟି ତ ଆସୁଛନ୍ତି ।

( ତୁଳସୀ ପ୍ରବେଶ )

ତୁଳସୀ—ମ ମ, ତମର ତ ଖୁସିଗପ ସରିବାକୁ ନାହିଁ, ଯିବ ଆଉ କେତେବେଳେ ମ ? ମତେ କାହିଁକି ଇମିତି ତରତର କଲ ?

ଶ୍ରୀମତୀ—ଯିବା ତେବେ ?

( ଆଡ଼ଆଖିରେ ତୁଳସୀକୁ ଚାହିଁଲେ )

ଲଳିତା—ମ, ଆଜି ତ' କଅଣ ସ୍ୱେ ଆଉ ଜାତିଏ କଥା ?

(ଗୀତ )

କାହିଁକି ରେ ଧନ ! ନାହିଁ କି ମନ ?
ଏ ନୁହେଁ ତ ଅଭିମାନ ନାଗରରତନ । ୦ ।
ଅଳପ ଅପାଙ୍ଗେ ଚାଳ କହୁ ଯିବା କି ନା ଅଳି
ଅଧହସି ଧୀରେ ଗୂଳ ଆଉ୍‍ନୟନ । ୨ ।
ଅମୀୟ ହେଲା ବହଳ ମଣିଲୁ କି ରେ ଗରଳ ?
ବାଜିଲେ ବେଣୁ ତୁ ନହେବୁ କି ଉଚ୍ଛନ୍ନ ।୨।
ଗୂରୁ ଗୁରୁଜନ ଥିଲେ କଜ୍ଜ୍ୱଳ ରଞ୍ଜନ ଛଳେ
ଲୁଚାଇବୁ ନାହିଁ କି ତୋ ନୟନବନ ? ।୩।

( ବିଶାଖା ଲେଖାହସ୍ତେ ପ୍ରବେଶ )

ବିଶାଖା—(ଶ୍ରୀମତୀଙ୍କ ପ୍ରତି) ଦେଖିଲି ସଖି !

ଲଳିତା—(ଅନାଇ ହସି) ମଲା ଯା, ସ୍ୱା ଭିତରେ ତ ଫେର୍ କଅଣ କଥା ଅଛି । ଆଉ ଆମେ କହୁଛୁଁ ଗୃଳ ବୋଲି ଯେ, ସେ କି ସେଥିରେ ଅଛନ୍ତି ? କୁଆଡ଼େ ଯାଇଥିଲି ବିଶାଖେ ? କଅଣ ଦେଖିଲି ?

ବିଶାଖା—( ଚାହିଁ ହସି ଠାରିଦେବା )

ଲଳିତା—ହୁଁ, ଆମକୁ ଲୁଚାଇ ଲୁଚାଇ ଭିତରେ ଭିତରେ ଏତେ ସୂକ୍ଷ୍ମ କରିଲଣିଟି ? ଆଉ ଯିବାକୁ ଏମିତି କୁନ୍ଥୋଉଥିଲ ଯେ, ଦେଖି ତାଟକା ଲାଗିଲା ।

ରାଧା—(ହସି) ନାହିଁମ ସଖି, ଆଜି କାହିଁକି ମନଟା ଗୋଳେଇଯାଣି ହେଲା । ମନେ ହେଲା ବନ୍ଧୁ ଦର୍ଶନ ଦେବେ ନାହିଁ କି ? ବିଶାଖାକୁ ପଠାଇଥିଲି ସଙ୍କେତ ବୁଝି ଆସିବାକୁ ।

ବିଶାଖା—ସତ୍ୟ ମ, ତାଙ୍କର ତ ବି ଏଇ ଦଶା । ମନଟି ସୁଖ ନାହିଁ, ତୁମେ ଆଉ ବିଳମ୍ବ କର ନାହିଁ ।

ରାଧା—ବନ୍ଧୁ କଅଣ କରୁଥିଲେ ? କଅଣ କହିଲେ ସତ୍ୟ ? କୋଉଠି ଅଛନ୍ତି ?

ବିଶାଖା— ( ଗୀତ )

ନନ୍ଦନସୂନ-ଇନ୍ଦୀବର ଇନ୍ଦୁ ତୋ ଲାଗି
ଯୋଗୀ ହୋଇଗଲାପରି ବସୁଛି ଭଙ୍ଗି ।୦।
ଶ୍ରୀଅଙ୍ଗରେ ବିନ୍ୟସି ଛନ୍ଦ ଦେବତା ଋଷି
ବୃଜ ଈକ୍ଷଣ ହେଉଥିଲେ ଓଳଗି ।୧।
ଚିତ୍ରେ ଚିନ୍ତି ତୋ ରୂପ ତୋ ନାମ କରି ଜପ
ନିଭୃତ ନିକୁଞ୍ଜରେ ଅଛନ୍ତି ଜଗି ।୨।
କି ବୋଲି କହିବି ମୁଁ ବିଜେକଲେ ଜାଣିମୁ
ସାଜ ସଜ ଏ ବେଶ ହୁଅ ଉଲଗି ।୩।
ଦେଇଛନ୍ତି ଶ୍ରୀକର- ଲେଖ ଦେଖ ସତ୍ୱର
ଉଠ ମଠ ନ କର ପରାଣସଙ୍ଗି ! ।୪।

( ୰ ଗୋପାଳକୃଷ୍ଣ )

( ପତ୍ର ପ୍ରଦାନ; ରାଧାଙ୍କ ପତ୍ରପାଠ )

ଲଳିତା—କ'ଣ ? କ'ଣ ଲେଖିଛନ୍ତି ସହି ?

ରାଧା—( ଲଳିତାଙ୍କୁ ପତ୍ର ବଢ଼ାଇ ଚାହିଁରହିଲେ ) ପଢ଼ ସହି !

ଲଳିତା—( ପତ୍ରପାଠ )

ବୃନ୍ଦାବନେଶ୍ୱରୀ ନବୀନା କିଶୋରୀ
ତୁମକୁ ଧାନ ଚିଠାଉ
ମାନମୀରତନ ଏହି ନିବେଦନ
ଦିବ୍ୟଚିତ୍ରେ ଘେନା ହେଉ
ରେ କିଶୋରି !
ତୋ ସରଣୀ ଅଛି ଚାହିଁ,
ଥାଉ ଦୂରେ ତୋର ରୂପ ଦେଖିବାର
ସୁଖୀ ମୁଁ ନିରେଖି ଛାଇ ।
ଦଣ୍ଡିକ ଦଣ୍ଡ ସମ ସତେ ଶ୍ୟାମରି
ସୁମନା ! ତୋ ବିନା ଘେନ,
ଚାତକ ତୋଷିବ ବାରି ବିନା କେବେ
ଶୁଷ୍କ ଘନ ଗରଜନ
ରେ ନବୀନ,
ଧିକ ବିଧାତା ଭିଆଣ,
ଅପଲକ ଯାହା ନ କଲା ନୟନ
ହେଲାବେଳେ ଦରଶନ ।

ରାଧା—( ଲଳିତା ପ୍ରତି ) ଶୁଣିଲ ତ ଲଳିତେ ?

ଲଳିତା—ଖାଲି ଶୁଣିଲି ନାହିଁ ତ ପଢ଼ିଲି, ଦେଖିଲି । ଆଗରୁ ତ ମୁଁ ଡାକୁଛି; ଏତେବେଳଯାଏ ମିଛଟାରେ ମନ ଖରାପ କରି ବସିରହିଛ କାହିଁକି ଭଲା ? ସବୁବେଳେ କେତେ ପରଖୁଥାଅ ମ ?

ବିଶାଖା—ରାଈ ! ଆଉ ଉଛୁର କର ନାହିଁ, ବେଗେ ଆସ ।

( ଦୂରରୁ ବଂଶୀଧ୍ୱନି )

ଶ୍ରୀମତୀ—( ଚମକି ଉଠି ) ଏ କ'ଣ ସହି ! କ'ଣ ଶୁଭିଲା ?

ଲଳିତା—କ'ଣ ଶୁଭିଲା ଜାଣିପାରୁନାହିଁ ? ତମରି ପଥ ଅନାଇଁ, ବିଳମ୍ବ ଦେଖି ଏ ମୁରଲୀର ଆତୁର ଡାକ । ଆହା-ହା ! ରାଈ, ଭାରି ନିଷ୍ଠୁର ତୁମେ ।

ରାଧା—( ପୁଣି କାନେଇ ) ହଁ ସହି ! ବଂଶୀ ତ, କଅଣ କରିବି ସହି ?

ବିଶାଖା—ଚାଲ ରାଈ, ବେଗେ ବେଶ ବଢ଼ାଅ ।

ରାଧା—ବେଶ ହେବ ? ତରି କାହିଁ ସହି ? ଶୁଣ ଶୁଣ ଘନଘନ ବାଜେ । ଆଉ ଦିନେ ସେମିତି ଶାଶୂ ନଣନ୍ଦଙ୍କ ପାଖେ ବସିଥିଲି—ଏଇ ଦଶା । ଚାଲ ସହି, ଥାଉ ମୋର ସୂର୍ଯ୍ୟପୂଜା, ଥାଉ ମୋର ବେଶ । ( ଉତ୍କଣ୍ଠିତ ଭାବେ )

( ଗୀତ )

ଶ୍ୟାମସୁନ୍ଦର ମୁରଲୀ ନିନାଦ ଜାତି ନେବ ମଣିଲି ।୦।
ଗୁରୁଜନ ସଙ୍ଗେ କଥା ପରସଙ୍ଗେ
ବସିଥିଲି କି ଚମକି ପଡ଼ିଲି ।୧।
ପୂରିଲା ପୁଲକ ଦେହ ଗୋଟାଯାକ
ବିନା ଶୀତରେ ମୁଁ କେତେ ଥରିଲି ।୨।
କାହିଁ ଗଲା ମନ ବୁଡ଼ିଗଲା ଜ୍ଞାନ
ବେନି ନୟନ ମୁଁ ବୁଜି ରହିଲି ।୩।

( ୰ ଗୋପାଳକୃଷ୍ଣ )

( ପୁଣି ବଂଶୀଧ୍ୱନି )

ଲଳିତା—ଶୁଣ, ଶୁଣ, ପୁଣି ବାଜିଲା—ରାଧେ, ରାଧେ, ରାଧେ ! ଜାତିକୁଳ, ଦମ୍ଭ ଅଭିମାନ, ମାନ ମହତ୍ତ୍ୱ ଯମୁନାର ନୀଳ ଜଳର ଖରସୁଅରେ ଭସାଇ-ଦେଇ—ସଖି ଶୁଣ, ମନଦେଇ ଶୁଣ, ବଂଶୀ ଡାକେ "ରାଧେ, ରାଧେ, ରାଧେ !"

( ସଖିଗଣ ଗୀତ )

ରାଧା ବୋଲି ବଂଶୀ ବାଜେ—
ଶୁଣ ଲୋ ଶୁଣ ବରଜନାରୀ !
ଚାଲ ଚାଲ କୁଞ୍ଜେ ଚାଲ—
ଆଉ କେ ରହେ ଧୈର୍ଯ୍ୟ ଧରି ? । ୦ ।
କି ଆକୁଳେ ଡାକେ ମୁରଲୀ
ଏକା ବସିଥିବ ସିନା ବଂଶୀଧାରୀ
ଚିତ୍ତ ସତେ ସହିବ କି ସହି !
ଶୁଣ ଶୁଣ ଲୋ କିଶୋରି !

( ଶ୍ରୀମତୀଙ୍କୁ ଯେବେ ପ୍ରସ୍ଥାନ କରିବାବେଳକୁ କୁଟିଳା ପ୍ରବେଶ ହୋଇ କହୁଥିବେ )

କୁଟିଳା—କୁଆଡ଼େ ? କୁଆଡ଼େ ? ସଞ୍ଜ ସାବନ୍ତୀ କୁଆଡ଼କୁ ବଜେ କରୁଚନ୍ତି କି ?

ଲଳିତା—କ'ଣ ଇମିତି କଥାରେ ସବୁବେଳେ କହୁଛ ମ ?

କୁଟିଳା—କାହିଁକି ? କ'ଣ କହିଲି କି, ବାଧିଗଲା ? ସେ ଗୋପଦାଣ୍ଡରେ ନାଗରୀ ବାଜୁଚ ଯେ ହେଲା ନାହିଁ, କୁଟିଳା କଥାଟା ବାଧିଗଲା ?

ବିଶାଖା—କ'ଣ ଗୋପଦାଣ୍ଡରେ ନାଗରୀ ବାଜୁଛି ? ଆମକୁ ତ କେହି ଶୁଭୁନାହିଁ ।

କୁଟିଳା—ହଁ ଲୋ, କାହିଁକି ଶୁଭିବ ତମକୁ ? ଯମୁନା-କୂଳରେ, ବଣ ଭିତରେ କାହ୍ନୁଆ ବଂଶୀ ବାଜିଲେ ଶୁଭୁଚ ନା ? ସେତେବେଳକୁ ତ ଉଛନ୍ନ ହେଇ ଦଉଡ଼ୁଚ; ଗୋପଦାଣ୍ଡ ତ ପାଖରେ, ଶୁଭୁନାହିଁ ? ଆଲୋ ଲୁଣ୍ଡିବାଇଦ ତ ସହସ୍ରେ କୋଶ ! ଶୁଭୁନାହିଁ କେମିତି ମ ? ନଳଗାରୁରିକ ! ବଡ଼ଘର-ଝିଅ ! ପାଠଶାଠ, ପୁରାଣ ସ୍ମୃର୍ତ୍ତୀରେ ନିର୍ବାଣ ! ହଁ ଲୋ ମା, ଲୋଡ଼ା ନାହିଁ ଆମର ସେ ବଡ଼ପଣିଆ ।

ରାଧା—ଯାହା ମନକୁ ଆସୁଛି ତା କହିବାକୁ ଟିକିଏ-ହେଲେ କୁଣ୍ଠିତ ହଉ ନ ?

କୁଟିଳା—ହଁ ମ, ଜାଣିଛି । ସେ ପାଠୁଆ ସଂସ୍କୃତ ରଖ୍ । ମୋ ଆଖିରେ ଧୂଳି ଦବାକୁ ବସିଲେ କ'ଣ ହବ ? ଦଇବ ଦେଖୁଚ ତ ?

ରାଧା—ଆମେ ତ ସୂର୍ଯ୍ୟପୂଜାକୁ ଯାଉଛୁଁ; ତମକୁ ତ କହୁଛୁ କହୁନାହୁଁ । ତୁମେ ଏଠି କାହିଁକି ଆସି ଝାଡ଼ହଉଛ ଯେ ?

ବିଶାଖା—ଜଣ-ଜଣଙ୍କର ପ୍ରକୃତି ସେ ।

ଲଳିତା—କଣ୍ଟାବାଡ଼ରେ କାନ ପକେଇ କଳି କରିବା କଥା ।

କୁଟିଳା—କ'ଣ କହିଲୁ, କଳି ମୁଁ ଭିଆଣେ କଲି ? ହଉ ଚାଲ ଚାଲ, ଘରକୁ ଚାଲ ସବୁ ।

ଲଳିତା—ଆମେ ସୂର୍ଯ୍ୟପୂଜା କରିବାକୁ ଯାଉଛୁଁ ।

କୁଟିଳା—ରଖ ତମ ସୂରୁଜପୂଜା—ମୁଁ ସବୁ ଜାଣିଚି, ଆଉ ଆମର ସୂରୁଜ-ଫୂରୁଜ ପୂଜା ହବ ନାହିଁ । ବୋହୂ ଆମର ଏରୁଣ୍ଡି ବନ୍ଧ ଡେଇଁବାକୁ ମନା ।

ଲଳିତା—ମନା ? କିଏ ମନା କରିଛି ?

କୁଟିଳା—ଚାଲ ଆଗେ ଘରକୁ; ମାଆ ମନା କରିଛି । ଦାଣ୍ଡ ହାଟରେ ନାଁ-ଗାଁ ପକାଇ ପୁଣି ମୁହଁଟାଣ ଦେଖ ! ଚାଲ୍, ଘରକୁ ଚାଲ ?

( ବିରସ ମନେ ଶ୍ରୀମତୀ ସଖୀଗଣସହ ପ୍ରସ୍ଥାନ; କୁଟିଳାର ଅନୁଗମନ )

---

## ଚତୁର୍ଥ ଦୃଶ୍ୟ

( ବ୍ରଜପଥ—ବୃନ୍ଦା ଗାଇ ଗାଇ ପ୍ରବେଶ )

ଧୀରେ ଭାସିଆସେ ମୁରଲୀର ତାନ
ହରିଲାଣି ଗୋପପୁର ଆଭିଜାତ୍ୟ-ମାନ । ୦ ।
ପହଁରି ଯମୁନା ବାରି କଦମ୍ବବନେ ବିହରି
ପୂରିଲାଣି ଦିଗଭରି ବିରହ ଗାନ । ୧ ।

ହରିଲ ଯୁବତୀମନ ପାରିବ କିଏ ବରିତ
କଠୋର କାଳିଆ ଜାଡ ମାରଇ ବାଣ । ୨ ।
( ବିଷଣ୍ଣ ମନେ ଲଳିତା ପ୍ରବେଶ )

ଲଳିତା—ଗାଆ ନାହିଁ ବୃନ୍ଦେ, ଆଉ କାହ୍ନୁଗୁଣ ଗାଆ ନାହିଁ । କାହ୍ନୁ ନାଁ ପକାଅ ନାହିଁ—ଗଲଣି ସରି ସେ କାଳ ।

ବୃନ୍ଦା—ଏ କି କଥା ଲଳିତେ ? ହଠାତ୍ ଆସି ଏମିତି କହିଲ ଯେ ଚମକି ପଡ଼ିଲି ।

ଲଳିତା—ନାହିଁ ବୃନ୍ଦେ, ଚମକିବା କଥା କହୁ ନାହିଁ । ସତ କଥା । କାହ୍ନୁ ନାଁ ପଡ଼ିଲେ ଏଣିକି ପର୍ବତ ଟଳୁଛି, କାଳିନ୍ଦୀ ଶୁଖିଯାଉଛି, ମଳୟ ପବନ ଗରମ ଲଗୁଛି ! ସବୁ ବିପରୀତ ହେଲଣି ।

ବୃନ୍ଦା—ମୁଁ ତ କିଛି ବୁଝିପାରୁନାହିଁ । କ'ଣ ଏମିତି ସବୁ କହୁଚ ?

ଲଳିତା—ଶୁଣିନାହଁ କିଛି ?

ବୃନ୍ଦା—ନା ।

ଲଳିତା— ( ଗୀତ )

ସରିଲଣି ସବୁ ଆଶା ଦେଖ ଯା କିଶୋରୀ ଦଶା
ବ୍ରଜପୁରେ ହେଲା କଳଙ୍କିନୀ,
କୁଟିଳା କୁଟିଳ ବୁଦ୍ଧି ଭିଆଇଛି ଏବେ ସିଦ୍ଧି
ସଖି ମୋର ଲୋଟୁଛି ଅବନୀ
ରେ ପ୍ରାଣ-ମିତଣି !
ସୁନା ଶିରୀ ଚୂନା ହୋଇଲଣି,
ନନ୍ଦପୁର ପାଣିଘାଟ ସୂର୍ଯ୍ୟପୂଜାକୁ ଆକଟ
କରିଛନ୍ତି ମାତା ସ୍ୱତା ବେନି ।
କଟୂ ଭଷା କେ ସହିବ ମର୍ମ୍ମରେ ଦହିବ ନ ହେବ
କୁଟିଳା ଫଣିନୀ ଯା କହୁଛି,
ନନ୍ଦ'ଜ ଜୀବନ ବୋଲି ଶୁଣି ଯା ବଜ୍ରରହିଲି
ପିଣ୍ଡରେ ଯା ପରାଣ ରହିଛି
ରେ ପ୍ରାଣ-ମିତଣି !
କାହ୍ନୁ ଦୁଃଖ ବେଶୀ ତ ବାଧୁଛି,
ସଖୀ ଶ୍ରୀକର-ରନ୍ଧନ ନୋହିଲେ ଆଉ ଭୋଜନ
ସତେ କି ସେ ଶ୍ୟାମର ବଢ଼ୁଛି ?

ବୃନ୍ଦା—ଲଳିତେ,ଏ କଥା କ'ଣ ଯଶୋଦା ଜାଣିଲେଣି ?

ଲଳିତା—ତାଙ୍କୁ ତ କୁଟିଳା ଯାଇ ଶ୍ରୀମତୀଙ୍କ ଯିବାପାଇଁ ମନା କରିଆସିଛି ବୋଲି ଶୁଣିଲି । ମା' ଝିଅ ଦୁହେଁ ତାଙ୍କୁ ଜଗିବସିଛନ୍ତି । ବଡ଼କଷ୍ଟରେ ମୁଁ ବାହାରି ଆସିଲି ତମକୁ ଆଉ ଦେବୀ ପୌର୍ଣ୍ଣମାସୀଙ୍କୁ ଜଣାଇବ ବୋଲି ।

ବୃନ୍ଦା—ଭଗବତୀଙ୍କ ସଙ୍ଗେ ଦେଖା ହୋଇଗଲାଣି ?

ଲଳିତା—ନା ।

ବୃନ୍ଦା—ତୁମେ ଏଥିକି ଭାବନା କରୁଛ କି ଲଳିତେ ? ସେ ଶୁଣିଲେ ଗୋଟାଏ କିଛି ପ୍ରତିକାର କରିବେ ।

ଲଳିତା—( ନେପଥ୍ୟକୁ ଦୃଷ୍ଟିଦେଇ ) ଶୁଣିଲ ଲଳିତେ ! ଏ କିଏ ଗାଏ ?

ବୃନ୍ଦା—ଦେବୀ ଭଗବତୀଙ୍କ କଣ୍ଠପରି ଶୁଭୁଛି ତ । ବୋଧହୁଏ ସେ ଏଣିକି ଆସୁଛନ୍ତି ।

ଲଳିତା—କେଜାଣି !

ବୃନ୍ଦା—ଚାଲ ତେବେ ଦେଖିବା, ଏଣିକି ଆସୁଛନ୍ତି କି ଆଉ କୁଆଡ଼େ ଗଲେ । ( ଉଭୟେ ପ୍ରସ୍ଥାନ )

( ଗାଇ ଗାଇ ଦେବୀ ପୌର୍ଣ୍ଣମାସୀ ପ୍ରବେଶ )

( ଗୀତ )

ଜୟ ନାରାୟଣ କଞ୍ଜନୟନ ରଞ୍ଜନ ରୂପଧାରୀ
ଅଞ୍ଜନ ଘନ ଗଞ୍ଜି ବରନ କୁଞ୍ଜକାନନ-ଚାରୀ ।
ତରଣି ତୁମ୍ଭେ, ଏ ଭବବାରିଧି
ଯଶୋଦା ହୃଦ ରଙ୍କନିଧି
ତୋ ମାୟାର ଖେଳା ନାହିଁ ଅବଧି
ଗୋପିନୀ ମନୋହାରୀ !
( ଲଳିତା ଆସି ବୃନ୍ଦା ପ୍ରଣାମ କଲେ )

ପୌର୍ଣ୍ଣମାସୀ—କି ଗୋ, ଦୁହେଁ ଏଣେ କୁଆଡ଼େ ?

ବୃନ୍ଦା—ଶ୍ରୀମତୀଙ୍କର ବଡ଼ ବିପଦ ଦେବି !

ପୌର୍ଣ୍ଣମାସୀ—କି ବିପଦ ?

ଲଳିତା—ହଠାତ୍ ଆଜ ସକାଳୁ ମା' ଝିଅ ଦୁହେଁ ବିଜୟ କରି ଯଶୋଦାଙ୍କ ପାଖକୁ ଯାଇ ଶ୍ରୀମତୀଙ୍କର ନନ୍ଦରାଜାଙ୍କ ଘରକୁ ଯିବା ବନ୍ଦ କରି ଆସିଛନ୍ତି ।

ଶ୍ରୀମତୀଙ୍କର ଆଉ ଜ୍ଞାନ-ଗୋଚର ନାହିଁ; କ'ଣ କରିବାକୁ ହେବ ଦେବି !

ପୌର୍ଣ୍ଣମାସୀ—କୁଟିଳା ଏସବୁ ଭିଆଣ କରିଥିବ ପରା ?

ବୃନ୍ଦା—ଆଉ ପୁଣି କିଏ ?

ଲଳିତା—ସେ ଯାହା କଟୁକଥା କହୁଛି, ଶୁଣି ସହୁ ନାହିଁ ଦେବି ! ସେଗୁଡ଼ାକ ଶୁଣିବାଠାରୁ ଯମୁନା-ପାଣିରେ ବୁଡ଼ିମରିବା ଭଲ ।

ପୌର୍ଣ୍ଣମାସୀ—ଏତେ ଅଧୀର ହୁଅ ନାହିଁ । ଜଟିଳା କୁଟିଳା ଅନେକ ବାର ଏମିତି କଲେଣି । ସବୁଥର ଅପମାନ ପାଉଛନ୍ତି, ତେବେବେଳେ ଚେତୁ ନାହାନ୍ତି । ଏଇଥର ତାଙ୍କୁ ଉପଯୁକ୍ତ ଶିକ୍ଷା ନ ଦେଲେ ହେବ ନାହିଁ । ତୁମେ ଯାଅ ଶ୍ରୀମତୀଙ୍କୁ କହିବ, ମୁଁ ଭାବଚନ୍ତ ଗୋଟାଏ ବ୍ୟବସ୍ଥା କରୁଛି । ଶୀଘ୍ର ତାଙ୍କ ସଙ୍ଗେ ସାକ୍ଷାତ କରିବି ।

ବୃନ୍ଦା—ତେବେ ଆମେମାନେ ଯାଉଛୁଁ । ଶ୍ରୀମତୀଙ୍କୁ ସମ୍ବାଦ ଦେଇ ଟିକିଏ ସାନ୍ତ୍ୱନା ଦେବୁଁ ।

ପୌର୍ଣ୍ଣମାସୀ—ହଁ, ତେଣେ ଶ୍ରୀମତୀ ଅଧୀର ହେଉଥିବେ, ତୁମେମାନେ ଶୀଘ୍ର ଯାଅ ।

(ବୃନ୍ଦା ଓ ଲଳିତା ପ୍ରସ୍ଥାନ)

ପୌର୍ଣ୍ଣମାସୀ—ପୁଣି ଏ ଏକ ଲୀଳା ! ଏଥର ଗୋଟାଏ ବିଶେଷ ଉପାୟ କରି ଜଟିଳା କୁଟିଳାଙ୍କୁ ଉପଯୁକ୍ତ ଶିକ୍ଷା ନଦେଲେ ଚଳିବ ନାହିଁ ! କାହ୍ନୁ ଏ ସମ୍ବାଦ ପାଇଲେଣି ବୋଧହୁଏ । ମର୍ତ୍ତ୍ୟକୁ ଆସି ତାଙ୍କର ମଧ୍ୟ ସୁଖଦୁଃଖ ଅନୁଭୂତି ଲୀଳା ଆସିଯାଇଛି । ଶ୍ରୀମତୀଙ୍କ ଅଦର୍ଶନରେ ଶ୍ୟାମ ବ୍ୟଥିତ ଥିବେ ନିଶ୍ଚୟ । ଗୁରୁଆଡ଼େ ମାୟା । ତୋର ଏ ମାୟା ଲୀଳା ଅନ୍ତ କରେ କିଏ ?

( ଗୀତ )

ମୋହନ ମନ୍ତ୍ରେ, ଯନ୍ତ୍ରେ ତନ୍ତ୍ରେ, ହଗ ହଗନ୍ତେ—
ଭରିଛି ହୃଦର । ୦ ।
କେ' କରେ ମାୟା-ମୋହର ଅନ୍ତ ?
ତୁ ପରା ବୋଲାଉ ନାମେ ଅନନ୍ତ ।
ନିତି ନବ ନବ ଲଳିତ ଭାବ, ବାଉ ସୁନ୍ଦର !

( ଧନିଷ୍ଠା ପ୍ରବେଶ )

ପୌର୍ଣ୍ଣମାସୀ—ଧନିଷ୍ଠା ! ତୁମେ କୁଆଡ଼େ ?

ଧନିଷ୍ଠା—ଆପଣଙ୍କୁ ଖୋଜି ଆସିଛି । ନନ୍ଦରାଣୀ ପ୍ରଣାମ ଜଣାଇ ଆପଣଙ୍କ ଦର୍ଶନକୁ ଅନାଇଁ ବସିଛନ୍ତି ।

ପୌର୍ଣ୍ଣମାସୀ—ନନ୍ଦରାଣୀ କେଉଁଠି ଅଛନ୍ତି ? ସବୁ ମଙ୍ଗଳ ତ ?

ଧନିଷ୍ଠା—ଦେବୀ ଅନ୍ତଃପୁରରେ, ମନ ଭଲ ନାହିଁ । ଶୁଣିଲି ଜଟିଳା, କୁଟିଳା ହାତରେ ଶ୍ରୀମତୀ ଆଉ ନନ୍ଦପୁରକୁ ଯିବେ ନାହିଁ ବୋଲି ମନା କରି ପଠାଇଛନ୍ତି । ଆଜି କାହ୍ନୁଙ୍କର ଭୋଜନ ମଧ୍ୟ ସୁଖରେ ହଡ଼ିନାହିଁ ।

ପୌର୍ଣ୍ଣମାସୀ—ଏ କିପରି କଥା ?

ଧନିଷ୍ଠା—ଘଟିଛି ତ । କାହିଁକି ଯେ ଏମିତି ହେଲା ମୁଁ ଜାଣିନାହିଁ । ଆସିଲେ ସବୁ ବୁଝାପଡ଼ିବ ।

ପୌର୍ଣ୍ଣମାସୀ—ଏଥିପାଇଁ ଏତେ ଚିନ୍ତା କାହିଁକି ? ଚାଲ ତେବେ, ମୁଁ ଗାର୍ଗୀଙ୍କ ସଙ୍ଗେ ପରାମର୍ଶ କରି ନନ୍ଦରାଣୀଙ୍କି ଭେଟିବି । ତୁମେ ଆଗରେ ଚାଲ ।

( ଧନିଷ୍ଠା ପ୍ରସ୍ଥାନ )

ପୌର୍ଣ୍ଣମାସୀ—ଦେଖିଲି କୁଟିଳାର ବିଷ ସମସ୍ତଙ୍କୁ ଘାରିଛି । ଏ ବିଷର ବିଷ ଔଷଧ ନ ହେଲେ ନଚଳେ ।

( ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

[ ଯମୁନାତଟ—ବିଷାଦମନେ ଶ୍ରୀକୃଷ୍ଣ ]

ଶ୍ରୀକୃଷ୍ଣ— ( ଗୀତ )

କାହିଁ, ଶରଦ-ଚନ୍ଦ୍ରଲପନା ମୀନନୟନା, ପ୍ରାଣବନ୍ଧୁ ?
ମତ୍ତ ମଧୁକର ଚିତ୍ତ-ତୋଷଦାୟୀ
ନୂତନ ନିତି ରସହାସୀ ମୋ ରସସିନ୍ଧୁ ॥
ନଖାନା ରେ ! ହେଉଛି ବାଇ
ତୋ ବିନା ମୋହନା ଗତି କେ ନାହିଁ ।
ତୋ ସରଣି ଗୁହିଁ ଗୁହିଁ,
ଥାଏ ମୁଁ ସଚେତ ଗୁଇ ।
ସୁମନ କି ସମୀରଣ କେ ଦେବ ଦେଖାଇ ଗୋ,
ଜୀବ ବଦଳେ ମୋର ଜୀବବନ୍ଧୁ ! ୧

ଶ୍ୟାମର ସକଳ ଅପରାଧ କ୍ଷମା କରି ଥରେ ଦେଖା ଦିଅ ପ୍ରାଣେଶ୍ୱର ! ଆଉ କେବେହେଲେ ସେ ସରଳ କୋମଳ ପ୍ରାଣରେ କୌଣସି କାରଣରୁ ବାଧା ଦେବ ନାହିଁ । ଅଭିମାନିନୀ ପ୍ରିୟେ ! ଆସ, ଆସ, ଦେଖାଦିଅ । ଯମୁନାର କୁଳୁଗୀତ, ମଳୟର ସୁବାସ, କୋଇଲର ପଞ୍ଚମ ତାନ, ସବୁଥିରେ ଯେପରି କ ଏକ ବିଷାକ୍ତ ଦ୍ରବ୍ୟ ବୋଳା— ସମସ୍ତେ ମଳିନ, ସମସ୍ତେ ଯେପରି ଶ୍ରୀହୀନ । ଏକା ଶ୍ରୀମତୀଙ୍କ ଲାଗି ସିନା ! ଦେଖାଦିଅ ବୃନ୍ଦାବନେଶ୍ୱରି !

( ଗୀତ )

ଦୟାବତୀ ଦୟା ବହି ଦରଶନ ଦିଅ
ପ୍ରୀତିଦାନେ ଶ୍ୟାମ ଜୀବ ନେଲେ ପଛେ ନିଅ । ୦ ।

ସାରା ବୃନ୍ଦାବନ ଶିର ତୋ' ବିନାରେ ହତଶିର
କଥା ପଦେ କହି ସହି, କଥା ପଦେ କହ
ଦରଶନ ଦିଅ ଗୋ ଧନ ! ଦରଶନ ଦିଅ । ୧ ।

( ଅଶ୍ରୁ ମୁଞ୍ଚନ କରି ପ୍ରସ୍ଥାନ )

( ବୃନ୍ଦା ପ୍ରବେଶ )

ବୃନ୍ଦା—ଥରେ ଏତେବେଳେ ଦେଖିଲେ, କିଏ କହିବ ଏ ସେଇ ଶ୍ୟାମ ? କିଏ କହିବ, ଏ ସେଇ ଗୋବର୍ଦ୍ଧନଧର ବୋଲି ? କିଏ ବା ବିଶ୍ୱାସ କରିବ ଏ ସେହି ବାଙ୍କଚୂଳିଆ ଶ୍ୟାମ ନଟବର, ଯା'ର ମନ୍ଦ ମୁରଲୀର ମଧୁର ତାନରେ ଗୋପର ଗୋପୀ ମନ ଟାଣିହୁଏ ! କୁଳବତୀ ଶ୍ରୀମତୀ ଶାଶୁ-ନଣନ୍ଦର କଟୂକ୍ତି, ଅପବାଦ, କଳଙ୍କ ସବୁ ପଛକୁ ପକାଇ, ଦିବାନିଶି ଭୁଲି, ସେଇ ତାନରେ ସଂକେତ-କୁଞ୍ଜକୁ ଧାଇଁ ଧାଇଁ ଆସେ ? କିଏ କହିବ ଏ ସେଇ ନଟବର; ଯାର ବାଙ୍କ-ଶିଖୀଚୂଳ ଶୋଭାଲାଗି ସାରା ବୃନ୍ଦାବନ ପାଗଳ ! ପ୍ରେମଲାଗି, ପ୍ରେମିକାଲାଗି ଆଜି ନିଜେ ଶ୍ୟାମ ପାଗଳ । ଭାଗ୍ୟବତୀ ରାଧେ ! ଥରେ ଆସି ଯଦି ଏତେବେଳେ ପ୍ରେମ-କାଙ୍ଗାଳ ଘନଶ୍ୟାମଙ୍କୁ ଦେଖନ୍ତ ଧନ ! ଜାଣନ୍ତ, ଶ୍ୟାମ ବାସ୍ତବରେ କାହାର କିଣା ? କିଏ ଶ୍ୟାମଙ୍କୁ ଟାଣି ରଖିଛି ? କାହାର ବଶ ଶ୍ୟାମ !

( ଗୀତ )

ନଟନାଗର ପଡ଼ିଛି ପ୍ରେମେ ବନ୍ଧା
ଗୋପ ଗୁଆଳୀ ଆଳୀଙ୍କ ପ୍ରୀତି-ଫାନ୍ଦରେ ଛନ୍ଦା ।
ଆହା ନୟନୁ ଝରଇ ନୀରଧାର
କାହା ଗ୍ଲାନି ସହିବ ଏ କହ ଶ୍ୟାମନାଗର !
ମନମୋହନ ମୁରଲୀ କିଏ ନେଲା
ଶ୍ୟାମ ନାଗର ତ୍ରିଭଙ୍ଗଠାଣି କେଣିକି ଗଲା ?
କାହିଁ ଲୁଚିଇଲା କାହ୍ନୁ ବାଙ୍କ-ଚାହାଣି
ଚାହିଁ ମରିଯାଏ କିନା ଧନ ମୋ ନୀଳମଣି ॥

( ଲଳିତା ଓ କୃଷ୍ଣ ପ୍ରବେଶ )

ଲଳିତା—ହେଇଟି ତ ହଜିଲା ବଳଦ ଖୋଜିଲାଠେଇଁ ।

ବୃନ୍ଦା—କ'ଣ ଲଳିତେ ?

ଲଳିତା—ତୁମେ ଆନନ୍ଦରେ ବୁଲ, ତେଣେ ଶ୍ୟାମ ଆଉ ମୁଁ ଦୁହେଁ ତମକୁ ଖୋଜୁଛୁଁ ।

ବୃନ୍ଦା—କଅଣ ହେଇଚି ପ୍ରିୟେ, ଶ୍ୟାମ ! ମୁହଁ ଶୁଖି ଯାଇଛି କଥା କହୁନ । ଏମିତି କ'ଣ ହେଇଛି ?

( ନିରେଖି ଚାହିଁ )

( ଗୀତ )

ବୃନ୍ଦା—ଝାଉଁଳିଛି ମୁଖମଣ୍ଡଳ
ନାହିଁ ଅଧରେ ହାସ ।

କୃଷ୍ଣ—ବରଷା ନଶିରେ କାହିଁ ଗୋ !
ଆଉ ଶଶୀ ବିକାଶ ?

ବୃନ୍ଦା—କି ହେଲା ହେ ରଙ୍କମାଣିକ,
କହ କହ ଫିଟାଇ ?

କୃଷ୍ଣ—କି କହିବି ମଣି ହାରିଛି—
ଫଣୀ, ମୋ ଗତି କାହିଁ ।

ଲଳିତା—କି ନ ଜାଣ ବୃନ୍ଦେ ଆଉ କି
ବେଳ ସମ୍ଭବ ସମ୍ଭ !
ନିରେଖିଲେ ଧନି ବଦନ
କେମ୍ନ ଧରିବ ଦେହି ?
ଶ୍ରୀକୃଷ୍ଣ—ଜୀବନ ତେଜିବା ଉପାୟ
କହ ପ୍ରିୟ ସଜନ !
ଜୀବନେ ଥାଉଁ ଯା ଶୁଣିଲି
ଧନି ବିଷାଦମୁହିଁ ।
ବୃନ୍ଦା—ଚିନ୍ତା ଛାଡ଼ ଚିନ୍ତାମଣି ହେ !
ଚିତ୍ତ କର ସରସ
ଶ୍ରୀକୃଷ୍ଣ—ଧନି ଶୁଦ୍ଧବାଣୀ ଅମୃତ
ଥରେ କାନେ ବରଷ ।
ବୃନ୍ଦା—ଆସ ସଙ୍ଗେ ନଟନାଗର,
ଦେବି ଉପାୟ କହି,
ଶ୍ରୀକୃଷ୍ଣ—ଜାଣ ମୁଁ ଜୀବନସାର ଗୋ,
କିଣା ତୋ ପାଖେ ସହି !

ଲଳିତା—ବୃନ୍ଦେ, ସତ କହୁଛି ଏ ପରିହାସର ବେଳ ନୁହେଁ । ଚାଲ ସଖି, ଉପାୟ କର ।

ବୃନ୍ଦା—ଲଳିତେ ! ମୁଁ ଶ୍ୟାମଙ୍କୁ ଖୋଜୁଥିଲି, କିପରି କ'ଣ କରିବାକୁ ହେବ ସବୁ ସ୍ଥିର କରିସାରିଛି । ଭଗବତୀଙ୍କ ସଙ୍ଗେ ପରାମର୍ଶ ସରିଛି । ତୁମ୍ଭମାନଙ୍କୁ ଉପଦେଶ ଦେବାକୁ ଦେବୀ ମୋତେ କହିଥିଲେ । ଚାଲ, ଆଉ ଚିନ୍ତା କର ନାହିଁ । ମୁଁ ଉପାୟ ବତାଇ ଦେଉଚି ।

( ଗୀତ )

ଆସ ନବ ନଟବର ! ଏ ତ ପୀରତି-ବେଭାର
ବିଷମ ପୀରତି ପାଳିବାର ।
ବିରହ ବିନା କି ବନ୍ଧୁ, ମଧୁର ମିଳନ ମଧୁ
ରସିକ ସେ, ଜାଣେ ଯେ ବେଭାର ।
ଚିନ୍ତାମଣି ! ଚିନ୍ତା ତେଜ, ବେଗେ ବିଜେ କର
ଘନଶ୍ୟାମ, ଶୁଖା' ନା ମୁଖ ଧନମଣି ମୋର । ୧ ।
ଆସିବ ଭରି ବସନ୍ତ ହସିବ ଦିଗ-ଦିଗନ୍ତ
ଭାଷିବ କୋଇଲି କୁହୁ-କୁହୁ ।
ବିରହ-କାତର ଧନି ଆସିବେ ଗୋ ସୁବଦନୀ
ଚମକି ବୋଲିବେ ଉହୁ, ଉହୁ
ବାଜିବ ମୁରଲୀ ପୁଣି ସାଜ ମାଳବାହୁ
ଘନଶ୍ୟାମ ! ଶୁଖା'ନା ମୁଖ, ଦୁଃଖ-ନଶି ପାହୁ । ୨ ।
( ବେଗେ ପ୍ରସ୍ଥାନ )

( ପଟକ୍ଷେପ )

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ସୁଦାମ, ବିଷାଦ ମନେ ଶ୍ରୀକୃଷ୍ଣ )

ଶ୍ରୀକୃଷ୍ଣ— ( ଗୀତ )

ବନ୍ଧୁଆ, କାହିଁ ରେ ମୋ ଦୁଃଖପାଶୋରି
ତା ବିନେ ଭୁବନେ ଜୀବନ, ବହନ ଭାର-
ବୃନ୍ଦାବନ କାରି । ୦ ।
କଞ୍ଜ-କୁଞ୍ଜ ରମଣୀୟ ଗନ୍ଧ ଝର,
ଅଙ୍ଗବାସ ମନୋହାରି ।
ମନବିହାରିଣୀ, ରସରଙ୍ଗିନୀ ମୋ
ଶ୍ୟାମ-ମେଘ ଶୁଭତାରି ।
ଲୁପ୍ତ, ଶୁପ୍ତ ହୃଦ ଗୁପ୍ତରତ୍ନ କିଣି
କଣ୍ଠ ଚୁମ୍ବି ମଣିମାଳା ।
ସତେ କି ଆଉ କି ଜୀବନସଙ୍ଗୀକି ?
ଭେଟିବି ପ୍ରେମ-ପସରା ।

ସୁଦାମ—ସଖା, ବିପଦବେଳେ ଅଧୀର ହେବା କଅଣ ତୁମରି ପରି ମହତ ଲୋକଙ୍କୁ ସାଜେ ? ବଟୁ ଭଗବତୀଙ୍କ ପୁରରୁ ଫେରିଲେ ସବୁ ଜଣା-ପଡ଼ିଯିବ । ସେ ଗୋଟାଏ ଉପାୟ ନକରି ଫେରୁଛି ?

ଶ୍ରୀକୃଷ୍ଣ—ସୁଦାମ, ଉପାୟ କରି ଫେରିବା ପରି ଏଥର ଦିଶୁନାହିଁ । ଏଥର ସବୁ ବାଟ ବନ୍ଦ ।

ସୁଦାମ—କୋଉ ଥର ଆଉ ସବୁ ବାଟ ବନ୍ଦ ନ ଥାଏ ?

( ମଧୁ ମୁଖ ଶୁଖାଇ ପ୍ରବେଶ )

ଶ୍ରୀକୃଷ୍ଣ—(ଅଧୀରଭାବେ ମଧୁଙ୍କୁ କୁଣ୍ଢାଇ) ସଖା ! କ'ଣ ହେଲା ?

ମଧୁ—ନାହିଁ ସଖା, ଆଉ ମୋତେ ପଚାର ନାହିଁ ସେକଥା ।

ଶ୍ରୀକୃଷ୍ଣ—କାହିଁକି ବନ୍ଧୁ ?

ମଧୁ—ପଚାରିଲେ ଆହୁରି ତମର ମନ ଦୁଃଖ ହେବ ସିନା, ଫଳ କିଛି ନାହିଁ ।

ଶ୍ରୀକୃଷ୍ଣ—ତେବେ କ'ଣ ସଖା ?—

ମଧୁ—( କଥାରେ ବାଧାଦେଇ ) ଆଉ ତେବେ କ'ଣ ସଖା ? ସେ ଆଶା ଛାଡ଼ ?

ଶ୍ରୀକୃଷ୍ଣ—ଛାଡ଼ିବି ? କାହା ଆଶା ସଖା ?

ମଧୁ—ଶ୍ରୀମତୀଙ୍କର ମିଳନ ଆଶା ।

ଶ୍ରୀକୃଷ୍ଣ—( କରୁଣଭାବେ ) ଏଁ ।

ମଧୁ—ହଁ ।

ଶ୍ରୀକୃଷ୍ଣ— ( ଗୀତ )

( ସେଇ ) କିଶୋରୀ ଆଶାରେ,
ଏ ଛାର ସଂସାରେ ପୋଡ଼ା ଜୀବନ ମୁଁ ଧରିଛି
ଆଶାପଥ ଚାହିଁ, ବାଲିବନ୍ଧ ଦେଇ;
ସାଗର ଜିଣିବ ବସିଛି । ୦ ।
ସେଇ, ରଙ୍ଗ ଚରଣତଳ, ଅଳକତ ଝଳମଳ;
ଶତ ସଜ ସରସିଜ ଲାଜେ ।
ପୁଣି ରୁମୁଝୁମ ଝୁମୁରୁମୁ, ନୂପୁର ମନୋହର;
ଅହରହ କାନେ ମୋର ବାଜେ ।
କିବା ଶୟନେ-ସପନେ ମୋର ନୟନେ ନୟନେ
ସେଇ କିଶୋରୀ ମୂରତି ନିତି ସାଜେ,
ମନ ମାଜେ ।
ସେଇ ସୁନ୍ଦର ଛବି ବନକୁଞ୍ଜେ, ନିତି ରାଜେ ।
ସେଇ ଆଦର ମଧୁର ସ୍ୱର କୋଇଲି କଣ୍ଠେ
ଫୁଟେ ଲାଜେ, ମନ ମାଜେ ।
ତା'ର ନୟନଛଟା ଶ୍ୟାମ ଗଗନରେ
କୋଟି କୋଟି ତାରକା ଫୁଟାଏ ।
ଚନ୍ଦ୍ରବଦନ ଛବି, ମୁଁ ରହିଛି କି ବଞ୍ଚିବି ?
ଆଶାରେ ପ୍ରାଣ ବାନ୍ଧିଛି ।

ସୁଦାମ—ଛି ବନ୍ଧୁ, ସତ କଥା କହୁନ ? ସଖାଙ୍କର କି ଅବସ୍ଥା ତ ଦେଖୁଛ, ଏଥିରେ ପୁଣି ତମର ପରିହାସ କରିବାକୁ ମନ ହଉଛି ?

ମଧୁ—ପରିହାସ ତ ନୁହେଁ ।

( ଗୀତ )

ଘନଶ୍ୟାମ, ସୁନ୍ଦର ଶ୍ରୀମୁଖ ସୁଖାନା,
ଏତେ ସରିକି ହେବ ଜାଣି ମୁଁ ଥିଲି କି ?
ନୀରଜ ନୟନେ ନୀର ତୁ ମଖାନା । ପଦ ।
ବହୁଛି ଅନୁକୂଳ ମଧୁ ମନ୍ଦ ପବନ,
ବିରସ ନ କର ତୁ ସରସ ଚନ୍ଦ୍ରବଦନ;
ବୁଝି ଅଇଲି ଭେଦ ଆଉ କି ଭାବନା ?

ସୁଦାମ—ସଖା ! ଶୁଣିଲ ନା, ବନ୍ଧୁଙ୍କ କଥାରେ ଗୋଡ଼ ପକେଇ ଗଣିଲେ ଜମାରୁ ସାତକୋଡ଼ି ମିଛ ।

ମଧୁ—ହିଁ, ନୁହେଁ କଅଣ ? ତମକୁ ଗଣିବାକୁ ଦିନରାତ୍ର ହୋଇ ବାଇଶି ଘଣ୍ଟା ଲାଗିଥିବ !

ଶ୍ରୀକୃଷ୍ଣ—ସଖା ! କଅଣ କଥାଟା କହ ?

ମଧୁ—କଥାଟେ କହିବି ? ହଉ କହୁଚି ଶୁଣ—କଥାଟାଏ କହୁଁ, କଥାଟାଏ କହୁଁ; କିସ କଥା, ବେଙ୍ଗୁଲି ମଥା ।

ଶ୍ରୀକୃଷ୍ଣ—ଛି, ଛି, ଛି ସଖା ! ପରିହାସ କରୁ ନାହିଁ; କ'ଣ ହେଲା କହ ?

ସୁଦାମ—ମଧୁ, ଅବସ୍ଥା ଦେଖି ବ୍ୟବସ୍ଥା କଲେ ସିନା ହୁଏ ।

ମଧୁ—ବ୍ୟବସ୍ଥା ? କରିଆସିଲି ପରା । ଭଗବତୀଙ୍କ ସଙ୍ଗେ ଦେଖାହେଲା, ସେତେବେଳକୁ ବୃନ୍ଦା ମଧ୍ୟ ଥିଲେ ।

ଭଗବାନ୍ତି ତାଙ୍କୁ ଉପଯୁକ୍ତ ଉପଦେଶ ଦେଇ ପଠାଇଛନ୍ତି । କାଲି ଭିତରେ ପୁଣି ସବୁ ବଦଳିଯିବ ।

ସୁଦାମ—ସବୁ ବଦଳିଯିବ ?

ମଧୁ—ଏଥରକ ଏକଦମ୍ ନାକଘୋଷରୁ ବଦଳ ।

ଶ୍ରୀକୃଷ୍ଣ—ସଖା, କେମିତି କଣ ହେଲା କିଛି କହିବ ନାହିଁ ?

ମଧୁ—କହିବ ଯେ, ତୁମେ ଆଗେ ଏଇନେ ଗାର୍ଗୀଙ୍କ ଘରକୁ ଚାଲ । ସେଇଠି ତମକୁ ରଖେଇଦେଇ ମୋତେ ପୁଣି ଶ୍ରୀମତୀଙ୍କ ସଖିପଲଙ୍କ ସାଙ୍ଗେ ଦେଖାକରିବାକୁ ଯିବାକୁ ହେବ । ବେଗେ ଆସ ନା ।

ଶ୍ରୀକୃଷ୍ଣ—ସଖା ! ସତେ କଅଣ ଶ୍ୟାମର ଏ ଜୀବନ ରହିବ ? ସତେ ଭାଗ୍ୟଶଶୀ ଉଇଁବେ ?

( ଗୀତ )

ଉଇଁବେ ଶଶୀ ହସି କି
ସତେ ଶ୍ୟାମ ଗଗନେ । ୦ ।
ହେବ ଭାଗ୍ୟ ମୋହର
ଲଭି କିରଣ ତାର
ମଜ୍ଜିବ ନାହିଁ ମନେ ରେ ।
ଶ୍ରେଷ୍ଠ ମଳୟ ବାସେ
ଗୋରୀ ଚନ୍ଦ୍ରର ପାଶେ
ବସିବ, ଆଉ ଦିନେ ରେ ।

---

## ଦ୍ୱିତୀୟ ଦୃଶ୍ୟ

ଅଳିନ୍ଦ

( ଜଟିଳା, କୁଟିଳା ଓ ବିଶାଖା )

ଜଟିଳା—ଆଲୋ କୁଟି, ଏ କ'ଣ କହୁଚ ଲୋ ? ମୋର ତ ଘର ବୁଡ଼ିଲା, କୋଉଠି ଇମିତି ହେଇ ?

ବିଶାଖା—କୋଉଠି ଆଉ କଣ ? ଶ୍ରୀମତୀ କ'ଣ ଆଉ କୁଆଡ଼େ ପଦାକୁ ଯାଉଚନ୍ତି ? ବଗିଚାକୁ ତ ବୁଲି ଯାଇଥିଲେ । ସାପଟା ତା ମଣି ରଖିଦେଇ ବୁଲି ବାହାରିଚ, ସଖି ତା ମଣି ଦେଖିପାରି ଯେବେ ଆସିଲାବେଳକୁ କୋଉଠି ଥିଲା ଆସି କାମୁଡ଼ି ଦେଇଚ । ସାଙ୍ଗେ ସାଙ୍ଗେ ଚେତା ବୁଡ଼ିଯାଇଥିଲା, ମୁଁ ବିଷ ଦବାଇବା ମନ୍ତ୍ର ଜାଣିଥିଲି ବୋଲି ଚେତାକରି ସଖିମାନଙ୍କ ପାଖରେ ଗୁଡ଼ିଆସିଚ । ବିଷ ସେଇ ମନ୍ତ୍ରବଳରେ ମଥା ଉପରକୁ ଉଠି-ପାରିନାହିଁ, ନୋହିଲେ ଏତେବେଳକୁ ଏ ସଂସାର ତ ସୁଧାଶୂନ୍ୟ ହୁଅନ୍ତାଣି । ଦେବ ! ବେଗେ କିଛି ଉପାୟ କର, ନୋହିଲେ ଭେଳା ବୁଡ଼ିଲା ।

ଜଟିଳା—ଆଲୋ କୁଟି ! ମୋତେ କିଛି ବୁଦ୍ଧି ବାଟ ଦିଶୁନାହିଁ । କଣ କରିବ ଲୋ ? ସତେ କ'ଣ ବୋହୂ ମୋର ଆଉ ବଞ୍ଚିବ ? ମୋର ତ ସବୁ ସମ୍ପତ୍ତି ସଇଲା !

କୁଟିଳା—କ'ଣ କରିବା ଆଉ ? କୋଉଠୁ ହେଲେ ଗୁଣିଆଁ ଡକାଇବା ଚାଲ । ହଟହଣ୍ଡା କପାଳ ତ; ସେ ଆଗେ ବଗିଚାକୁ ସଞ୍ଜ-ଅନ୍ଧାରରେ ଗଲେ କାହିଁକି ?

ବିଶାଖା—ତୁମେ ମନାକଲ ଦିନରୁ ତ ସେ ଘରୁ ବାହାରନ୍ତି ନାହିଁ, ଆଜ ଯୋଗ କଡ଼ାଉଚ ତାଙ୍କୁ । ଦିନେ ନାହିଁ, କାଲେ ନାହିଁ, ସଞ୍ଜବେଳଟାରେ ବଗିଚାକୁ ବାହାରିଚନ୍ତି । ବାହାରିବା ସଙ୍ଗେ ସଙ୍ଗେ ତ ଏ ଦଣ୍ଡ ।

ଜଟିଳା—ଆଲୋ କୁଟି, ଆଉ ସେକଥା ଶୁଣିଲେ କି ଫଳ ? ଚାଲ, ଆଗେ କେମିତି କାହାକୁ ଡାକ ବିଷ ଝଡ଼ା ଲୋ ! ବୋହୂ ଦେହ ରହୁ ।

କୁଟିଳା—କାହାକୁ ଡାକିବା କହ, ମୁଁ କ'ଣ ମନା କଲି ?

ବିଶାଖା—ଆଗେ ଚାଲ, ଶ୍ରୀମତୀଙ୍କୁ ଦେଖ, ସେଇଠି ଯାହା ହେବ କରିବା ସିନା ! ବିଳମ୍ବ କର ନାହିଁ ଆଉ ।

ଜଟିଳା—ଚାଲ ଚାଲ,

( ଜଟିଳା ଓ ବିଶାଖା ପ୍ରସ୍ଥାନ କଲାବେଳକୁ ଅଭିମନ୍ୟୁ ପ୍ରବେଶ । )

କୁଟିଳା– ହେଉଛି ତ ଭାଇ ।
ବିଶାଖା—ଭଲ ହେଲା, ଖୋଜୁଥିଲୁଁ ତ ।
ଅଭିମନ୍ୟୁ—କାହିଁକି ?
ଜଟିଳା—ଆଉ କାହିଁକି ବୋଲି କ'ଣ ପଚାରୁଚୁ ? ମୋ ଘର ବୁଡ଼ିଯାଉଚି ।
ଅଭିମନ୍ୟୁ—କଥା କ'ଣ କହିଲେ ସିନା ଜାଣିବି ।
କୁଟିଳା—ସେ ଆଉ କ'ଣ କହିବ ? ଚାଲ, ନିଜେ ଦେଖିବ—ବୋହୂକୁ ସାପ କାମୁଡ଼ିଛି ।
ଅଭିମନ୍ୟୁ—ଏଁ ? ସାପ ? କି ସାପ ? କୋଉଠି ?
କୁଟିଳା—ଯୋଗ ସେ, ଯୋଗ କଟିଯାଉଚି ! ଅନେ କାଳେ ନାଇଁ, ଆଜ ସଞ୍ଜବେଳେ ବଗିଚାକୁ ବୁଲିଗଲେ । ସେଠି ·ପରା ସାପଟାଏ ମଣି ରଖି ଚରି ବୁଲୁଥିଲା । ସେଇ ମଣି ଆଣିବାବେଳକୁ ଧାଇଁ ଚୋଟ ମାରିଚି ।
ବିଶାଖା—ମୁଁ ଗୋଟେ ମନ୍ତ୍ର ଜାଣିଥିଲି, ସେଥିରେ ବିଷ ଉପରକୁ ଉଠିବାଟା କିଛିକାଳ ପାଇଁ ବନ୍ଦ କରି ଦେଇଚି । ମଥାକୁ ବିଷ ଉଠିପାରିନାହିଁ । ବାକି ବେଶୀ ବେଳ ସମ୍ଭାଳି ହେବ ନାହିଁ । ବେଗେ କାହାକୁ ଡାକି ସାପବିଷ ନ ଝଡ଼ାଇଲେ ଆଉ ଉପାୟ ରହିବ ନାହିଁ ।
ଅଭିମନ୍ୟୁ—ମୋତେ ଏବେ କେତେଦିନ ହବ ସେମିତି ଅମଙ୍ଗଳ ସୂଚକଗୁଡ଼ା ଦିଶୁଥିଲା । ଖାଇବା ଅନ୍ନ ମୋତେ ଅରୁଚି ଲାଗୁଥିଲା । ତା'ର ଫଳ ଫଳିଲା । ଆଲୋ କୁଟି ! ମୋର ତ ଜ୍ଞାନ ବଣା ହେଲା ପରି ଲାଗୁଚି । କ'ଣ କରିବା ? ମା' କ'ଣ କହୁଚି ?
ଜଟିଳା—ମୋର ତ ଘରଣିର ବୁଡ଼ୁଚି ରେ ଧନ ! କାହା ମୁହଁକୁ ଅନାଇଁ ବଞ୍ଚିବି ? କ'ଣ କରିବି ? ମୁଁ ଯାଉଚି ବୋହୂକୁ ସମ୍ଭାଳିବି । ତୁ ଭଲ ଗୁଣିଆ ଦେଖି କାହାକୁ ଡାକିଆଣିବୁ ଯା । କୁଟି ! ତୁ ଟିକିଏ ଗଲୁ ମା' !
କୁଟିଳା—ହଁ ଯିବିନାଇଁ କ'ଣ ? ନଗଲେ ଚଳୁଚି ?
ଜଟିଳା—ଆ ବିଶାଖା, ବୋହୂ ପାଖକୁ ଚାଲ । ଭଗବନ୍ତଙ୍କୁ ଖବର ଦିଅ ।
ଅଭିମନ୍ୟୁ—ମୁଁ ତେବେ ଗଲି, ବେଗେ ଦେଖେଁ କାହାକୁ ।

( ଉଭୟେ ଉଭୟ ଦିଗେ ପ୍ରସ୍ଥାନ )

( ବୃନ୍ଦା ପ୍ରବେଶ )

ବୃନ୍ଦା— ( ଗୀତ )

ହୃଦର ଚୋର ନବକିଶୋର
କେ ବୁଝିବ ଲୀଳା ସତେ ନଟନାଗର ?
କେବେ ବଜୁଳି ଛଟକ
ଗଗନେ ଶଶୀ ଝଟକ,
କି ଥାଏ ତୋ ମନେ କାହ୍ନୁ
କେ କରେ କଳନା ତାର ।
କେବେ ତୁ ଖେଳାଉ ରଙ୍ଗେ
ଭସାଉ ପ୍ରେମ - ତରଙ୍ଗେ,
ଉଜାଣି ବହେ ଯମୁନା
ବହଇ ସମୀର ଧୀର ।

( ନେପଥ୍ୟକୁ ଚାହିଁ ) କିଏ ଏ ? ଏଡ଼େ ତରତର ହୋଇ କୁଆଡ଼େ ଯାଉଛି ? ଲଳିତା ହବ ପରା ! ( ତାଳିମାରି ଡାକିବା )

( ଲଳିତା ଶୀଘ୍ର ଜଳଘଟହସ୍ତେ ପ୍ରବେଶ )

ଲଳିତା—କି ଗୋ ବୃନ୍ଦେ ! ତୁମେ କେତେବେଳୁ ଆସିଲଣି ?
ବୃନ୍ଦା—ଏଇନେ ତ ଆସୁଛି । ଖବର କ'ଣ ?
ଲଳିତା—ଆମର ତ ଲାଗିଛି ଏଣେ ଲୀଳା ! ବିଶାଖାକୁ ପଠାଇଛୁଁ ଜଟିଳାକୁ ଖବର ଦେବାକୁ । ଖବର ପାଇ ବୁଢ଼ୀ ପୁଣି ଆସି ପହଞ୍ଚିବେ । ତା ଆଗରୁ ଆମେ ଛିଆର ଥିଲେ ତ ।
ବୃନ୍ଦା—ଏ କ'ଣ ?
ଲଳିତା—ପାଣି ନଉଚି ପରା ? ଶ୍ରୀମତୀ ମୋହ ଗଲେ ଜଳଛିଟା ଦିଆହବ ।

ବୃନ୍ଦା—ଭଲ ଲୀଳା ଲଗିଲ୍ !

ଲଳିତା—ଲଗୁ ଲଗୁ, କ'ଣ ହଉଚ ଦେଖ ! ତୁମେ କ'ଣ ସଖୀଙ୍କ ପାଖକୁ ଯିବ ?

ବୃନ୍ଦା—ହଁ, ସେଇଥିଲାଗି ତ ଆସିଛୁ । ଚାଲ, ତାଙ୍କୁ ଦେଖି, ଦେବୀ ଭଗବତୀଙ୍କ ସମ୍ବାଦ ଦେବାକୁ ମୋତେ ଦେବୀ ଆଦେଶ ଦେଇଯାଇଛନ୍ତି । କାହ୍ନୁଙ୍କୁ ମଧ୍ୟ ଖବର ଦେବ ।

ଲଳିତା—ତେବେ ତୁମେ ଆସୁଥା' । ଏକା ସାଙ୍ଗରେ ଗଲାବେଳକୁ କାଲେ ମାଆ ଝିଅଙ୍କ ହାବୁଡ଼େ ପଡ଼ିବା ଟି ! କ'ଣ ନାଇଁ କ'ଣ ଭାବିବେ । ତୁମେ ପଛରେ ଆସୁଥା—ମୁଁ ଗଲି ।

( ପ୍ରସ୍ଥାନ )

ବୃନ୍ଦା—ହସେଇ ଜାଣୁ, କନ୍ଦେଇ ଜାଣୁ କାହ୍ନୁ ! ଭଲ ଲୀଳା ଲଗିଲ୍ ।

( ଗୀତ )

ବସିଛୁ ପ୍ରେମହାଟ ଗୋପପୁରେ ଏଥର
ଦିବସ ରଜନୀ ବସି କର ପ୍ରେମ-କାରବାର । ୦ ।
ଏ ହାଟେ ଯେ ପ୍ରେମିକା
ବିନା ଧନରେ ବିକା
କାମିନୀ ମନରଙ୍କା ଛଡ଼ାଏ ସେ ନଟବର
ସହିବ ସହଜେ କେ ପ୍ରୀତ କର ପଥର ?

( ଗାଇ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

[ ଯମୁନାତଟ ]

ଶ୍ରୀକୃଷ୍ଣ— ( ଗୀତ )

ଆରେ ରାଧାପ୍ୟାରୀ ଡାକନା ବଂଶୀ ଥରେ
ଡାକନା ବଂଶୀ ଥରେ
ମୋର ମନ ଅଧୀରେ ଥରେ ।୦।
କୁସୁମ କୁଞ୍ଜେ କୁଞ୍ଜେ ରାଧା ନାମେ ଫୁଟନା
ଯମୁନା ରାଧା ନାମେ ଆଉ ତୁ ଉଚ୍ଛୁଳନା
ସମୀର ସଙ୍ଗେ ସଙ୍ଗେ ରାଧା ନାମେ ବହନା
ବିରହ-ବହ୍ନି ତୁ, ଦହ ଧୀରେ ଧୀରେ ।

( ମଧୁ ଓ ସୁଦାମ ପ୍ରବେଶ )

ମଧୁ—ସଖା ! କେତେ ଥର ଭଲ ତମକୁ କହିବାଇଁ, ଏଇମିତି ଗୀତ ଗାଇବ ନାଇଁ ବୋଲି; ଅକାରଣରେ ମନଟା ଦୁଃଖ କରି ବସି, ମୁହଁ ଶୁଖାଇ, ବଣଟାସାରା ଜୀବଜନ୍ତୁ, ଗଛଲତା କନ୍ଦେଇ ଲଗିଛୁ ଗୋଟେ ପାଲି !

ସୁଦାମ—କୋଉ କଥାଟେ ଏମିତି ହେଇଚ ଯେ ତୁମେ ଏମିତି ମନଦୁଃଖ କରିବ ?

ଶ୍ରୀକୃଷ୍ଣ—କ'ଣ ଆଉ ହେବାକୁ ବାକି ଅଛି ? କୃଷ୍ଣର ପ୍ରାଣର ପ୍ରାଣ ଶ୍ରୀମତୀଙ୍କର କି ଅବସ୍ଥା ତ ସବୁ ଶୁଣିଛ । ଯାହାପାଇଁ ବଂଶୀ ଆନନ୍ଦ, ଯାହା ଯୋଗୁ ବୃନ୍ଦାବନ ? ସବୁର ମୂଳରେ ତ ସେହି ମହାଭାବମୟୀ ଶ୍ରୀମତୀ । ଚନ୍ଦ୍ର ବିନା ଆକାଶ, ବାସ ବିନା କୁସୁମ, ମଳୟ ବିନା ବସନ୍ତ—କେବେ ସୁନ୍ଦର କି ଭାଇ ?

ମଧୁ—କହୁଥିଲି ! କଥାଟା ସତ ଯେ, ବାକି ମନକୁ ଆସିଲା ନାହିଁ ।

ଶ୍ରୀକୃଷ୍ଣ—କାହିଁକି ? ମୁଁ କ'ଣ ଭୁଲ କହିଲି ?

ମଧୁ—ଭୁଲ୍ ନୁହେଁ ? ଦେଖିଲ ଦେଖି କୁଞ୍ଜକୁ, ଲତାକୁ, ଯମୁନାକୁ—ସୁଖରେ କିଏ ଅଛି ? ସବୁଆଡ଼ରେ ଯେମିତି ଚଟଲ ଝାଞ୍ଜି-ପବନ ବାଜି ଶୁଖିଲା । କାହାର ଯେମିତି ଜୀବନ ନାହିଁ, ପ୍ରାଣ ନାହିଁ; ଖାଲି ମଳପିଣ୍ଡ ।

ଶ୍ରୀକୃଷ୍ଣ—ଠିକ୍ କହୁଛ ଭାଇ, ମଳ ପିଣ୍ଡ—ଶ୍ୟାମର ଏ ମଳପିଣ୍ଡ ଏକା ଖାଲି ସେଇ ଶ୍ରୀମତୀଙ୍କ ବିହୀନରେ । ଭଲ କରି ବୁଝିଲେ ଦେଖିବ ଭାଇ, ଶ୍ୟାମର ଏ କେବଳ ମଳପିଣ୍ଡ—

( ଗୀତ )

ପିଣ୍ଡ ମୁଁ ପଡ଼ୁଛୁ ବନ୍ଧୁ
ପ୍ରାଣ ମୋର ସେତ୍ତଟି । ୦ ।
ମୁଁ ବସନ୍ତ ସେ ଗୋ ହାସ
ମୁଁ କୁସୁମ ସେ ଗୋ ବାସ
ପିକ ମୁଁ ସେ କୁହୁତାନ
ଗୁଣ ଗାଉଥାଇଟି । ୧ ।
ମୁଁ ଚନ୍ଦ୍ରମା ସେ ଗୋ କର
ତା ଲଗି ମୋର ଆଦର
ଯା ଦେଖ ମୋର ସୁନ୍ଦର
ସବୁ ତାର ଛୁଇଟି । ୨ ।

( ଗୋପ ବାଳକଗଣ ପ୍ରବେଶ )

ପ୍ରଥମ—ହୁଁ ! ଆମେ ଖୋଜହଉଛୁଁ ସେ ପାଇବୁ କାହୁଁ ? ଓନକ ଓନହେଁ ତ ଏଇଠି ।

ସୁଦାମ—କ'ଣ ଓନକ ଓନହେଁ ?

ପ୍ରଥମ—କଅଣ ? ବାଟଲୋକନାଥେ, କ'ଣୀ-ବଣ୍ଟେନାଥେ, ହବସହଦେବେ—ଓନଜଣପାକ ଠୂଳ ହେଇ କାହା ଘର-ଭଙ୍ଗା ବଗ୍ରର ପଡ଼ୁଛୁ ?

ଶ୍ରୀକୃଷ୍ଣ—ଏସବୁ କ'ଣ କହୁଛ ଭାଇ ?

ପ୍ରଥମ—କାହ୍ନୁ ! ତୁମେ ଏସବୁ କ'ଣ ବୁଝିବ ? ଘାଇଲା ଜାଣେ କ ବନ୍ଧାଲ ଜାଣେ—ସବୁଠୋଉ ଏ ମଧୂଆ ବାହୁଣ୍ଟା ଖାଇ-ନନ୍ଦାଟେ, ଯା କଥାରେ ତ ତୁମେ ଟ୍ଳେଟା କଣା ବହେଁ ମାନ୍ତପାଇନ ?

ପ୍ରଥମ—ହଇ ରେ ଗୋପାଳ ଗର୍ଦ୍ଦଭ ! ମଧୂଆ ଖାଇ-ନନ୍ଦକ ? ଆଉ ତୁ ?

ପ୍ରଥମ—ନୁହେଁ ? ଖାଇବୁ ପିଇବୁ, ଫେଡ଼ ଉଡ଼ିବୁ ପେଟ ପୂରିଲା ନାହିଁ ? ସବୁବେଳେ ପେଟ, ପେଟ । ପେଟ-ଗୃଖଣ୍ଡକ ଲଗି ତୁ କ'ଣ ନକରଯାଉ ଭଲ ? ଆଉ ଓନଭଙ୍ଗିଆ କାହ୍ନୁ ଆମର ତ ଟ୍ଳେଟାପର ।

ସୁଦାମ କଥା ବାକ—ସେଇଟା କଣା । ଦ'ଆଖି ଗୁଡ଼ ଗୃର ଆଖି ହେଲେ ବ ତାକୁ ଦୁଶିବ ନାହିଁ । ସବୁ ବୁଝିଥିବ—କଣାଟା ପର ଗୃହିଁ ରହିଥିବ ।

ଦ୍ୱିତୀୟ—ସେ ଖଣ୍ଡକ ଚୂପୁସି ଚୂପୁସି; ଘର ଗୋଡମାରୁ, ମଉନମୁହାଁ ବଷ-ପିମ୍ପୁଡ଼ ସେ ।

ମଧୂ—କ ରେ, ଆଜ ପୋଚରା ଘୋଳ ପେଟରେ ଫୁଟୁଚ କ ? କଥାଗୁଡ଼ାକ ତ ଘର ଆବୁଖାବୁ ହେଇ ବାହାରପଡ଼ୁଚ । କଥା କଅଣ ?

ପ୍ରଥମ—ତୁମେ ଆଗ କହିଲ, କାହା ଘରଭଙ୍ଗା ଚମର ବଗ୍ରର ପଡ଼ିଥିଲ ?

ଶ୍ରୀକୃଷ୍ଣ—କଚ୍ଛ ତ ନୁହେଁ ଭାଇ !

ପ୍ରଥମ—ଯୁଆଡ଼େ ଦେଖ ଓନହେଁ । ଘଣି ବନଛୁ । ଘରଭଙ୍ଗା ବଗ୍ରର ଛଡ଼ା ଚମର ଆଉ କ'ଣ ଅଛୁ ? ତେଣେ ଭଗବତୀ କାହ୍ନୁଙ୍କୁ ଖୋଜହଉଛନ୍ତି । ମୋର ଉପରେ ପଡ଼ିଲା ପାଳି—ମୁଁ ତ ଖୋଜ ଖୋଜ ଆକଟା ହେଲିଣି; ଭେଟ କାହିଁ ?

ପ୍ରଥମ—ଆଖି ମଳ ମଳ ଦେଖ—ହେଇଟି ଭେଟ ।

ଶ୍ରୀକୃଷ୍ଣ—ପୌର୍ଣ୍ଣମାସୀ ମୋତେ ଖୋଜୁଛନ୍ତି ? କାହିଁକ ?

ମଧୂ—କାହିଁକ ? ଜାଣିପାରୁନାହିଁ ? ଔଷଧ, ଔଷଧ ଦେବେ, ରୋଗ ଭଲ ହେଇଯିବ । ମୁଁ ପରା ଚମକୁ କହୁଛୁ, ଗାର୍ଗୀଙ୍କ ଘରକୁ ଯିବାକୁ ପଡ଼ିବ । ତୁମେ କ'ଣ ଶୁଣିବାବାଲା ? ଆରେ ବାବୁ, ଚମର ହିତକୁ ତ ଖୋଜାପଡ଼ଚ, ଗୃଲ ।

( ଗୀତ )

ଗୃଲ ଗୃଲ ଗୃଲ ବେଗେ ଗୃଲ ଶ୍ୟାମସୁନ୍ଦର !
ହେଳା କଲେ ବୁଡ଼ିବ ଭେଳା ମଠ ନ କର ।୦।
ଶୁଖାନା ତୁ ଚନ୍ଦ୍ରବଦନ, ଗ୍ଲୁରୁ ଲପନ
ମଣି-ଓଣକ୍ଷେ ଉଦଲେ ହସି, ରଙ୍ଗ ତପନ,
ନର୍ମଳ କର ।

## ଚତୁର୍ଥ ଦୃଶ୍ୟ

[ ଶ୍ରୀମତୀଙ୍କ କକ୍ଷ—ଶାୟିତା ଶ୍ରୀମତୀ, ପାର୍ଶ୍ୱରେ ସେବାରତା ସଖୀଗଣ । ଜଟିଳା ଶ୍ରୀମତୀଙ୍କୁ କୋଳକୁ ଆଉଜାଇ ବସିଥିଲେ—କୁଟିଳା ଦଣ୍ଡାୟମାନା ]

ଜଟିଳା—ଦେହ କ'ଣ ବେଶି ଲାଗୁଚି ?

ରାଧା—(ବ୍ୟସ୍ତ ହୋଇ) ବଞ୍ଚିବାର ଆଶା ଛାଡ଼ନ୍ତୁ । ଆଉ ବଞ୍ଚିବି ନାହିଁ !

ଜଟିଳା—ଛି, ମା' ! ଏମିତି କଥା ମୁହଁରେ ଧରନ୍ତି ? ଥୟ ହୁଅ । ପୁଅକୁ ଅଭିମନ୍ୟୁ ପାଖକୁ ପଠେଇଚି । ସେ ସାପବିଷଝଡ଼ା ମନ୍ତ୍ର ଭଲ କରି ଜାଣେ, ଦଣ୍ଡକରେ ଉଡ଼େଇଦବ । ଆଲୋ କୁଟି, ଦେଖିଲୁ, କାହିଁକି ଏତେ ଉଚ୍ଛୁର ହେଲା ?

ରାଧା—ନାହିଁ ମା', ହବ ନାହିଁ, କେହି ଆସିବେ ନାହିଁ । କାହାରି ଆସିବା ଦରକାର ନାହିଁ । ଉଃ, ଦେହ ଜଳିଯାଉଚି । ଛାତି ଶୁଖିଆସୁଚି । ପାଣି, ପାଣି ଦିଅ ମତେ । ବିଞ୍ଚି ଦିଅ ।

ଜଟିଳା—ଆଲୋ କୁଟି ! ମଲା, ତତେ କ'ଣ ଶୁଭେ ନାହିଁ ? ଯା ଲୋ, ଦେଖି ଯା । ମୋର ତ ସମ୍ପତ୍ତି ସରୁଚି ଲୋ ! ଏଠଇ ତୁ ଅନେଇଁ ଥାଇ କ'ଣ କରିବୁ ? ଯା, ଭାଇ ଯାଇଥିଲା ଡାକି, ଅଭିମନ୍ୟୁ ଏତେ ବେଳଯାଏ କ'ଣ କଲା ଦେଖିବୁ ।

ରାଧା—ନାହିଁ ନାହିଁ ଯିବା ଦରକାର ନାହିଁ, ସେମିତି ହେଲେ ମୋତେ ଆଗରୁ ମାରିଦିଅ । ମୁଁ କୁଳବତୀ; ପତି ମୋର ଗତି । ପରପୁରୁଷ ଦେହ ଛୁଇଁବି ନାହିଁ । ମରିବି ପଛେ ସେ ଭଲ, ଅନ୍ୟ ପୁରୁଷ କେହି ମୋତେ ଛୁଇଁବେ ନାହିଁ । ଏ କଥା ସତ୍ୟ, ସତ୍ୟ, ସତ୍ୟ । ମରିଯିବି ପଛେ ମୋର ପତିବ୍ରତା ବ୍ରତ ଭାଙ୍ଗିବି ନାହିଁ ।

( ବୃନ୍ଦା ପ୍ରବେଶ )

ବୃନ୍ଦା—( ଜଟିଳାଙ୍କୁ ) ଏ କ'ଣ ହେଲା ଦେବି ?

ଜଟିଳା—କହିବି ଆଉ କ'ଣ ? ମୋର ତ ଘର ବୁଡ଼ିଚି । ଦଇବ ମୋ କର୍ମରେ କି ଦଣ୍ଡ ଲେଖିଥିଲା ? ଦେଖୁଚ ତ, ପୋଡ଼ା ଭୁଜଙ୍ଗରେ କ'ଣ ଆଉ କହିବି ?

ବୃନ୍ଦା—ମୁଁ ସବୁ ଶୁଣିଲିଣି । ଶୁଣି କରି ପରା ଧାଇଁ ଆସିଲି । ଫେର୍ କ'ଣ କରୁଚ ? କାହାକୁ ହେଲେ ଡାକଲେ ହ'ନ୍ତା । ଏମିତି ବସିରହିଲେ କ'ଣ ଭଲ ହବ ? ବେଳକୁ ବେଳ ବିଷ ଚଢ଼ିଯିବ ନା !

କୁଟିଳା—ସେ କ'ଣ ମଙ୍ଗୁଚନ୍ତି ? ମା' ଯେତେ କହିଲା ସେ ଅଭିମନ୍ୟୁକୁ ହେଲେ ଡାକି ଦେଖାଇବା, ମନା କଲେ ।

ବୃନ୍ଦା—କାହିଁକି ? ସେ ଆସନ୍ତୁ, ଦେଖନ୍ତୁ । ତାଙ୍କୁ ତ ବିଷଝଡ଼ା ଆସେ ।

ରାଧା—ନାହିଁ ବୃନ୍ଦେ, ମୋତେ ସେ କଥା କହ ନାହିଁ । ମରିବି ପଛେ ପରପୁରୁଷ ଅଙ୍ଗ ଛୁଇଁ ବ୍ରତ ହରାଇବି ନାହିଁ ।

ଜଟିଳା—ଏଥିରେ ତ କିଛି ଦୋଷ ନାହିଁ ମାଆ ! ମନ୍ତ୍ର ଔଷଧି ଯେ ଜାଣିଥିବ ତାର ଜାତି, ଅଜାତି, ସ୍ତ୍ରୀ ପୁରୁଷ ବାରଣ କ'ଣ ? ବିପଦବେଳେ ଚଣ୍ଡାଳ ହେଲେ ମଧ୍ୟ ବାରିବାର ନୁହେଁ; ଏଗୁଡ଼ାକ ଧରିବାର ନୁହେଁ ।

ରାଧା—ନାହିଁ ଦେବି ! ଆପଣଙ୍କ ପାଦ ଧରୁଚି, ଆପଣଙ୍କୁ ମୋ ରାଣ, ସେ କଥା କହନ୍ତୁ ନାହିଁ ।

ଲଳିତା—ଦେବି, ଆପଣ ଥରେ ଭଗବତୀଙ୍କ ପାଖକୁ ଯାନ୍ତୁ । ତାଙ୍କୁ କହିଲେ ସେ ନିଶ୍ଚେ ଗୋଟେ କିଛି ଉପାୟ କରିବେ । ସବୁ କଥା ଜଣାଇଁ ତାଙ୍କୁ ନଇଲେ ଏଠିକି ଘେନ ଆସନ୍ତୁ ।

ବୃନ୍ଦା—କୃଷ୍ଣଙ୍କୁ ଡାକଲେ ହୁଅନ୍ତା ନାହିଁ ? ତାଙ୍କଠାରୁ ଆଉ ବେଶି କିଏ ଜାଣେ ? ଆଖିରେ ତ ଦେଖିଚୁଁ କାଳୀକି ଦଳିଚନ୍ତି । କାଳୀବିଷଠାରୁ ଏ କ'ଣ ବେଶି ? ତାଙ୍କୁ ଥରେ ଡାକିବା ବୋଲି ମୁଁ କହୁଥିଲି ।

ଜଟିଳା—ଡାକ ଡାକ, ତୁମେ ଠିକିଏ ଯାଅ ବୃନ୍ଦେ ! ଯଶୋଦା ଶାଶୁଙ୍କ କହି ତାଙ୍କୁ ହେଲେ ଡାକଲ ।

ବୋହୂ ମୋର କେମିତି ବଞ୍ଚୁ । ସେ ଯାହା ନବ ନଞ୍ଜ ପଡ଼ୁଛି, ଦେବ । ବୋହୂ ମୋର କେମିତି ବଞ୍ଚୁ ।

ରାଧା—ନାହିଁ ବୃନ୍ଦେ, ନାହିଁ ଦେବ, କୃଷ୍ଣ କ'ଣ ପର ପୁରୁଷ ନୁହନ୍ତି ? ମୋ ଆଗରେ ସେସବୁ କଥା ଯେ କହିବ ମୋ ଶତ୍ରୁ ସେ ।

ବୃନ୍ଦା—ଦେବ, କଣ ଏଥିରେ କରିବା ଯେ !

ଲଳିତା—ବୃନ୍ଦେ, ତୁମେ ଦେବୀଙ୍କ ସଙ୍ଗରେ ନେଇ ଭଗବତୀଙ୍କ ପାଖକୁ ଯାଇ ଏସବୁ ଜଣାଅ । ସେ ଶୁଣିଲେ ନିଶ୍ଚେ କିଛି ଉପାୟ କରିବେ ।

ବୃନ୍ଦା—ଚାଲନ୍ତୁ ତେବେ ଦେବ !

ଜଟିଳା—ଯିବ ବୋଲି କହୁଚ ଯେ, ଯିବା ଚାଲ । ବାକି ମନ ତ ମୋର ବୁଝୁ ନାହିଁ । କମିତି ବୋହୂକୁ ଛାଡ଼ିକରି ଯିବ ?

ବୃନ୍ଦା—ଲଳିତା ବିଶାଖା ହେରିକା ଅଛନ୍ତି, ତାଙ୍କୁ ଟିକିଏ ସମ୍ଭାଳିଥିବେ । ତେଣେ ବେଗେ ନଗଲେ ସେ ଦି'କୂଳ ଯିବ ।

ଜଟିଳା—କୁଟି, ଯା ତେବେ ଭାଇକି ଏସବୁ କଥା ଖବର ଦବୁ । ଆସ ବୃନ୍ଦେ ! ଲଳିତା, ବୋହୂ ମୋର ଲାଗିଲା । ଦଇବ କି ଦଣ୍ଡ ମୋ କର୍ମରେ ଲେଖି ନଥିଲା ! ପୁଅ ବୋଲି ଗୋଟିଏ ଯେ, ଚାରି ଦିନେ ହେଇ ସୁଖ ଦେଖିଲି ନାଇଁ ।

ବୃନ୍ଦା—ଛି, ଛି, ଆପଣ ଏମିତି ବ୍ୟସ୍ତ ହେଲେ ଶ୍ରୀମତୀଙ୍କୁ ଧୈର୍ଯ୍ୟ ଦେବ କିଏ ? ଆସନ୍ତୁ ।

(ହାତ ଧରି ଉଠାଇଲେ)

ଲଳିତା—ଶ୍ରୀମତୀଙ୍କୁ ଟିକିଏ ବାହାର ମଣ୍ଡପକୁ ନେଲେ ଭଲ ହୁଅନ୍ତା ନାଇଁ ?

ଜଟିଳା—ନିଅ, କେଜାଣି ଅବା ସୁସ୍ଥ ଲାଗିବ ।

ରାଧା—ହଁ' ମା, ଦେହ ପୋଡୁଚି ।

ବୃନ୍ଦା—ଆସନ୍ତୁ ଦେବ ! ଆଉ ଉଛୁର କରନ୍ତୁ ନାହିଁ ।

ଜଟିଳା—ତୁ ତେବେ ଯା କୁଟି ।

(ବୃନ୍ଦା, ଜଟିଳା ଓ କୁଟିଳା ପ୍ରସ୍ଥାନ)

ଲଳିତା—ସହି ମ ! ଏଥର ଟିକିଏ ନିଃଶ୍ୱାସ ମାର । ମଣ୍ଡପକୁ ଆସ, ଆମେମାନେ ଯାଉଛୁଁ କାହ୍ନୁକୁ ବେଗେ ଏ ଖବର ଦେବୁଁ । ତୁମେ ଧୈର୍ଯ୍ୟ ଧର ।

ରାଧା—କେଜାଣି ସହି, ସତେ କ'ଣ ସେ ଆଶା ଅଛି ?

ଲଳିତା— ( ଗୀତ )

ଧୈର୍ଯ୍ୟ ଧର, ଧୈର୍ଯ୍ୟ ଧର ରାଈ ବିନୋଦିନୀ !
ଛଳେ, ବଳେ, କଉଶଳେ ମିଳାଇବୁ ବେନି
ଶ୍ୟାମ ଗୁଣମଣି—ତେଜ ଖେଦ ଧନି !
କୁମୁଦକୁ ଛାଡ଼ି କାହିଁ ଚନ୍ଦ୍ର କି ରହିଛି;
ବସନ୍ତ ବହିଲେ କାହିଁ କୋଇଲି ଗାଇଛି
କାମକୁଶଳା ରେ—ଭୋଳା-ପିତୁଳା ରେ ।
ବଜେ କର ସୁବଦନ, ହୁଅ ଗୋ ହରଷ
ସରସ ମାନସ ଆଉ ନ କର ବିରସ,
ଶଶୀ ହସିଲାଣି—ଭାଗ୍ୟ ଦିଶିଲାଣି ।

---

## ପଞ୍ଚମ ଦୃଶ୍ୟ

[ ପଥ ]

ମଧୁ— ( ଗୀତ )

ଥରେ କୁଞ୍ଜକୋଣେ ରଙ୍ଗେ ହସି ଆ
ମନଚୋର, ଧନ ମୋର, ମନୋହର,
ବସନ୍ତ ଫୁଲବାସ ମାଖିଆ,
ସୁନାଫୁଲ, ନାହିଁ ମୂଲ, କାହିଁ ଭୁଲ ।୦।
କୋଇଲି କହେ କୁହୁତାନେ ତୋ ମନକଥା,
ମୋର କର୍ମ ଗଲ ଛାଡ଼ିଟି ସାରା
ଥରଥର, ଜରଜର, ଥରହର
ଆସ, ଫୁଲବନ୍ତୁ ତୋଳି କୁସୁମ,
ଗୁନ୍ଥି ମାଳ, ବନମାଳୀ, ଦେବି ଢାଳ ।
ତୁ ଦେବ ସେ ହାର, ବାସସାର,
ନାଚ ଧନ ଝୁମଝୁମ, ରୁମଝୁମ ।

ଗୋପନେ, ଧର ମୁରଲୀ ତୁ ଯମୁନା ତୀରେ
ସପନଘେର ତାନେ ପରଶ ମନ ମୋର
ମନୋହର, ମନଚୋର ।

( ସୁଦାମ ପ୍ରବେଶ )

ସୁଦାମ—(ବିରକ୍ତ ହେବା ପରି) ଓଃ, ଭେଁ ଭେଁ, ଭେଁ ! ବର୍ଷାଦିନ ତ ହେଉନାହିଁ । ଏ ମଧୁଆ ବାହୁଣିଆ ବେଙ୍ଗଟା କି ରଡ଼ା ରଡ଼ୁଛି ବାବୁ, କାନ ଅତଡ଼ା ହେଇଗଲାଣି ।

ମଧୁ—କଣଓ ! କଅଣ ଦେଖିଲ ?

ସୁଦାମ—ଲୁଚ ଲୁଚ ଗଲ, ଜଟି ବୁଢ଼ୀ ଆଜ ବଡ଼ ନସରପସର ହେଇ ଏଣେତେଣେ ଧାଇଁମରୁଛି । ଶ୍ରୀମତୀ ମଣ୍ଡପକୁ ଗଲେ, ବୁଢ଼ୀ ଆସିଲାଣି ଭଗବତୀଙ୍କ ପାଖକୁ ।

ମଧୁ—ମଣ୍ଡପକୁ ଗଲେ ! କେମିତି ମ ?

ସୁଦାମ—ଆରେ, ଦିହ ପରା ପୋଡ଼ୁଛି ! ଗରମ ଲାଗୁଛି ! ସଖିଏ କଣ ଉଣା ? କହିକରି ମଣ୍ଡପକୁ ନେଲେ ।

ମଧୁ—ଆଉ କୁଟି କାହିଁ ?

ସୁଦାମ—ଆରେ ବାହାଘର ତ ତାହାରି । ଧାଇଁଛି ଭାଇ ପାଖକୁ ଅଭିମନ୍ୟୁକୁ ଆଣିବାକୁ ମନା କରିବ ବୋଲି । ଶ୍ରୀମତୀ ପରା ଅଭିମନ୍ୟୁକୁ ଆଉ କାହ୍ନୁଙ୍କୁ ବିଷ ଝାଡ଼ିବାକୁ ତାଙ୍କ ପାଖକୁ ଯିବାକୁ ମନା କଲେ ।

ମଧୁ—ଆଚ୍ଛା କଲେ ।

ସୁଦାମ—ଏଥର ପୁଣି କଅଣ କରିବାକୁ ହବ ?

ମଧୁ—ଏଥର ?

( ଗୀତ )

ପବନରେ ବାନ୍ଧିବା ଫାନ୍ଦ ଆ ଭାଇ ସୁଦାମ ଆ,
ସୁଦାମ—ସରଗରୁ ତୋଳିବା ଫୁଲ
ଚୁ' ଭାଇ ଚୁ' ବେଗେ ଚୁ' ।
ମଧୁ—ନୂଆ କଥା ଭିଆଣ କରି
ସୁଦାମ—ହେବେ ଲୋକେ ଜଳକା ସରି,
ଉଭୟେ—ନାଚ ଖେଳ ମଉଜ କରି
ଗା' ଭାଇ, ଗୀତ ଗା' ଗା' ॥

( ପୌର୍ଣ୍ଣମାସୀ ପ୍ରବେଶ )

ପୌର୍ଣ୍ଣମାସୀ—ଭଗବାନ ଶ୍ରୀକୃଷ୍ଣଙ୍କଠାରେ ଏମାନଙ୍କର କି ସ୍ନେହ ! କି ବାତ୍ସଲ୍ୟଭାବ ! ହରି-ମାୟାରେ ଜଗତଯାକ ବନ୍ଧା । ମାୟାରେ ବାନ୍ଧି ପୁଣି ନିଜେ ଭାବରେ ବନ୍ଧା ହୋଇଛନ୍ତି ସେ । ଏ ସ୍ନେହ, ଏ ବନ୍ଧନ ଅତୁଟ । ଭାଗ୍ୟ ଆମର—ସେ ଖେଳାଲୀଳା ଦେଖି ଜୀବନ ଧନ୍ୟ ହେଉଛି । ଶ୍ରୀମତୀଙ୍କ ଗୌରବ ବଢ଼ିବା ସଙ୍ଗେ ଏଥର ଜଟିଳା କୁଟିଳାଙ୍କୁ ଘୋର ଅପମାନ ହେବ । ଗୋପବାଳକଙ୍କ ଆନନ୍ଦ କହିଲେ ନ ସରେ । ଭକ୍ତବତ୍ସଳ ନିଜେ ଏଥର ଭକ୍ତ ଲାଗି କଷ୍ଟ ଭୋଗିବେ ! ଯାଏଁ, କାର୍ଯ୍ୟ ଶେଷ କରେଁ । ତେଣେ ଜଟିଳା ଆସିବେଣି । (ନେପଥ୍ୟକୁ କାନେଇଁ ) ଏମାନେ କିଏ ପୁଣି, ଗୋପବାଳା ବୋଧହୁଏ । ବେଶ୍, ଆନନ୍ଦ ହୁଅ, ମାତିଉଠ କୃଷ୍ଣପ୍ରେମରେ ବୃନ୍ଦାବନ । ରାଧା-ରସରେ କୁଞ୍ଜବନ ଭରିଯାଉ । ଗାଅ, ନାଚ ଭାଗ୍ୟବତୀ ଗୋପବାଳା—ମତାଇଦିଅ ପ୍ରାଣ, ମତାଇଦିଅ, ଉଚ୍ଛୁଳାଇ ଦିଅ ପ୍ରେମର ଲହରୀ ।

( ପୌର୍ଣ୍ଣମାସୀ ପ୍ରସ୍ଥାନ )

( ଗୋପବାଳାଗଣ ପ୍ରବେଶ )

( ଗୀତ )

ସାଉଁଟିଲ କୁସୁମ ମଧୁ, ଏ ଭ୍ରମର ବନ୍ଧୁ
ବେଗେ ସିଞ୍ଚ ଆ, ଆ, ଆ,
ଫୁଟିଛି ଫୁଲ ମଲ୍ଲୀ ଜାଈ ମରୁଆ
ନାଗର ଆସିବେ ବୋଲି ଗୋ ବେଶ କି ନୂଆ ।
ଧୀରେ ବହେ ସମୀରଣ, ସଞ୍ଜ ସଞ୍ଜୁଆ
ନବନାଗରୀ ରେ, ରସସାଗରୀ ତୁ,
ପ୍ରୀତି-ଗୀତ ଥରେ ସହି ! ଗା, ଗା, ଗା ।

---

ପଟକ୍ଷେପ ।

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

[ କକ୍ଷ—ଚନ୍ଦ୍ରାବଳୀବେଶେ ଶ୍ରୀକୃଷ୍ଣ ]

ଚନ୍ଦ୍ରାବଳୀ— ( ଗୀତ )

(ସେଇ) ଯମୁନା ବାଲି ପଡ଼ିଁରି, ଦେଖାଦିଅ ଗୋ !
ଦିଅ ଗୋ ! ସଖି ରେ !
ସେଇ ମଳୟ ଶୀତଳ କୁଞ୍ଜେ—
ଆସ ମଧୁର ସଞ୍ଜେ, ଆସ ଗୋ !
ଆସ ଗୋ ! ସଖି ରେ !
ଗଗନେ ଚାନ୍ଦ ଉଦିବେ ଗୋ
ଅନ୍ଧାର ଅପସରି
ଏଇ ନୟନେ, ନୟନେ, ରଖିବି ଯତନେ
ସେଇ ସୁକୁମାର ସାର ଶିରି
ବାହି ପ୍ରେମତରୀ ଆସ ଗୋ,
ଆସ ଗୋ ! ସଖି ରେ !

( ମଧୁ ଶୀଘ୍ର ପ୍ରବେଶ )

ମଧୁ—କଅଁ, ପୁଣି ଚିତ୍କାର କଲ ? ଓହୋ ! କାନ ଅତଡ଼ା ପକେଇବ ତୁମେ ଯୋଉ ଲୋକ ! ଏତେ ସ୍ନାନ କରି, ମାଙ୍ଗୁଆରି, କଳା ସୁନ୍ଦର ନାଇଦେଇ ସଜେଇଥିଲି କ'ଣ ଚନ୍ଦ୍ରା ପଢ଼ିବାକୁ ? କଅଁ ଏଇତକ ବୁଝୁନାହିଁ ? ବୁଢ଼ୀ ପରା ଆସିବ, ଭଗବତୀ ତାଙ୍କୁ ସଙ୍ଗରେ ନେଇ ଗାର୍ଗୀଙ୍କ ପାଖକୁ ଆସୁଛନ୍ତି ।

ଚନ୍ଦ୍ରାବଳୀ—ତେବେ ମୋତେ କଅଣ କରିବାକୁ ହେବ ଯେ ?

ମଧୁ—କିଛି ନାହିଁ, ଗାର୍ଗୀଙ୍କି ଡାକିଆଣିବା ଯାଉଛି, ତୁମେ ଏଠି ଥିଲେ ଅଡୁଆ—ଘର ଭିତରକୁ ଚାଲ; ଡକେଇ ପଠେଇଲେ ଆସିବ । ତା'ପରେ ଟିକିଏ ଗୋଡ଼କୁ ଲମ୍ବେଇଦବ; ସହଜରେ ଧରାଦବ ନାହିଁ । ରାଧା ରାଧା ବୋଲି ତୁମେ ଯେପରି ଆତୁର ହେଉଛ, ସେଥିରେ ମୁଁ ଦେଖିପାରୁଛି ତୁମେ ଧରାପଡ଼ିଯିବ । ଟିକିଏ ରକ୍ଷା-ସମ୍ଭାଳ କାମ କରୁଥିବ । ବୁଢ଼ୀ ମୁଣ୍ଡ ଗଡ଼େଇ ଗଡ଼େଇ ମୁଣ୍ଡ ଛୁଣ୍ଡି ପଲେ ରକ୍ତ ବାହାରିବାଯାଏ ତୁମେ ଟିକିଏ ଦମ୍ଭ ଧରି, କମର କଷି, ଟାଣ ଟାଣ କରି ଦ' କଥା ଶୁଣାଉଥିବ ।

( ଗାର୍ଗୀ ଫୁଲଡାଲି ଘେନି ପ୍ରବେଶ )

ମଧୁ—(ଅନାଇଁ) ଭଗବତୀ ଜଟି ବୁଢ଼ୀକି ସଙ୍ଗରେ ନେଇ ଆସୁଛନ୍ତି ।

ଗାର୍ଗୀ—ତୁମେ ତେବେ କାହ୍ନୁ, ଘରଭିତରକୁ ଯାଅ । ବଟୁ, ତୁମେ ଯାଅ କାହ୍ନୁଙ୍କ ପାଖେ ପାଖେ ଥିବ । ମୁଁ ବସି ପୂଜା ଫୁଲ ଗୁନ୍ଥୁଛି । (ନେପଥ୍ୟକୁ ଚାହିଁ ) ହେଇଟି ଆସିଲେଣି ଦୁହେଁ ।

( ଫୁଲଗୁନ୍ଥି ବସିଲେ କୃଷ୍ଣ, ପୌର୍ଣ୍ଣମାସୀ ମଧୁ ପ୍ରସ୍ଥାନ ଓ ଜଟିଳା ପ୍ରବେଶ କରି ପ୍ରଣାମ କଲେ)

ଗାର୍ଗୀ—ଏତେ ରାତିରେ କୁଆଡ଼େ ଦେବି ! ଜଟିଳା କୁଆଡ଼େ ଆସିଛନ୍ତି ! ସବୁ ଭଲ ତ ଜଟିଳେ ?

ଜଟିଳା—(କାନ୍ଦିବା ପରି) ମୋର ତ ସଂସାର ସରୁଚି ମା', କହିବି କଅଣ ?

ପୌର୍ଣ୍ଣମାସୀ—ଶ୍ରୀମତୀଙ୍କୁ ସର୍ପ ଦଂଶନ କରିଛି ।

ଗାର୍ଗୀ—( ଆଶ୍ଚର୍ଯ୍ୟଭାବେ ) ଶ୍ରୀମତୀଙ୍କୁ ? କିପରି ?

ପୌର୍ଣ୍ଣମାସୀ—ସନ୍ଧ୍ୟାବେଳରେ ଉପବନକୁ ଯାଇଥିଲେ । ସେଇଠାରେ ଏ ଦଣ୍ଡ ।

ଜଟିଳା—କାଳ, କାଳ ସେ, କଅଣ କହିବି ? କପାଳ ମୋର ପୋଡ଼ା ଦେବି ! ତୁମେ ବିଷଝଡ଼ା ମନ୍ତ୍ର ଜାଣ ବୋଲି ଶୁଣି ଦଉଡ଼ି ଆସିଲି ? ଶ୍ରୀମତୀ ପୁଣି ପରପୁରୁଷ ଅଙ୍ଗ ଛୁଇଁବେ ନାହିଁ । ଆଉ ତ କେହି ମୋର ଭରସା ନାହିଁ । ମୋ ଘର ବୁଡ଼ୁଚି, ମୋତେ ରକ୍ଷାକର ।

ଗାର୍ଗୀ—ମୁଁ ତ ସେସବୁ ଜାଣେ ନାହିଁ । ଯୋଗକୁ ମୋର ଭଉଣୀ ଚନ୍ଦ୍ରାବଳୀ ଶାଶୁଘରୁ ଆସିଛନ୍ତି । ତାଙ୍କୁ ଭଲ ସର୍ପବିଷ ହରଣ-ମନ୍ତ୍ର ଜଣା । ଦେଖେଁ, ଡାକେଁ ତାଙ୍କ । ( ଶୀଘ୍ର ପ୍ରସ୍ଥାନ )

ପୌର୍ଣ୍ଣମାସୀ—ଜଟିଳେ, ସୌଭାଗ୍ୟ ତୁମ୍ଭର । ବିଦ୍ୟାବଳୀ ଆସିଛନ୍ତି; ତାଙ୍କ ଶାଶୁଘର କାଶୀରେ । ମୁଁ ଜାଣିଛି ସେ ଏ ବିଦ୍ୟା ଭଲ ଜାଣନ୍ତି । ବାକି ସେ ବଡ଼ ମୁଖରା, ତାଙ୍କ କଥା ସହିପାରିଲେ ହେଲା । ସହିବାକୁ ତ ପଡ଼ିବ । ଯେମିତି ପାର ତାଙ୍କ ହାତ-ଗୋଡ଼ ଧରି ତାଙ୍କୁ ଘରକୁ ନିଅ ।

( ବିଦ୍ୟାବଳୀ ଓ ଗାର୍ଗୀ ପ୍ରବେଶ )

ଗାର୍ଗୀ— ଜଟିଳେ ! ଏ ମୋର ଭଉଣୀ ବିଦ୍ୟାବଳୀ (ଜଟି ପ୍ରଣାମ କଲେ) । ବିଦ୍ୟାବଳୀ, ୟାଙ୍କ ନାମ ଜଟିଳା, ଶ୍ରୀମତୀ ରାଧିକାଙ୍କର ଏ ଶାଶୁ । ଶ୍ରୀମତୀ ଏଇନେ ବଡ଼ ବିପଦରେ ପଡ଼ିଛନ୍ତି । ତାଙ୍କୁ ସର୍ପ ଦଂଶନ କରିଛି ।

ଜଟିଳା—ଦେବି ! ତୁମେ ଟିକିଏ ଦୟା ନକଲେ ମୋ ଭେଳା ବୁଡ଼ିବ ।

ବିଦ୍ୟାବଳୀ—ମୁଁ କଅଣ କରିବି ?

ଗାର୍ଗୀ—ତୁମେ ଭଉଣୀ, ଟିକିଏ ସେଠାକୁ ଯାଇ ତାଙ୍କୁ ଦେଖ ! ତୁମ୍ଭଙ୍କୁ ସେ ମନ୍ତ୍ର ଭଲ ଜଣା । ଥରେ ନଗଲେ ଚଳିବ ନାହିଁ । ଭଗବତୀ କେବଳ ସେଇଥିଲାଗି ତମ ପାଖକୁ ଆସିଛନ୍ତି ।

ବିଦ୍ୟାବଳୀ—ଦେବି ! ତୁମ ଅନୁରୋଧରେ କଥା ଭାଙ୍ଗିନପାରି ଏଠିକି ଆସିବାର ଏଇ ଫଳ ଫଳିଲା ସିନା ! ମୁଁ କୁଳନାରୀ, ପବିତ୍ର ବ୍ରାହ୍ମଣ ବଂଶରେ ମୋର ଜନ୍ମ—ଚନ୍ଦ୍ର ସୂର୍ଯ୍ୟପରି ମୋର ପିତୃକୁଳ ଶ୍ୱଶୁରକୁଳ ଉଜ୍ଜ୍ୱଳ ! ସେଥିରେ କଳଙ୍କ ଲଗାଇବା ପାଇଁ ମୋତେ ଉପଦେଶ ଦେଉଛ ? ମୁଁ କି ଜାଣେ ବିଷଝଡ଼ା ? ଘର ବୋହୂ ମୁଁ; ଘରକୋଣ ଛଡ଼ା ଗଉଡ଼ୁଣୀଙ୍କ ପରି ତ ବାରଦ୍ୱାର ବୁଲେ ନାହିଁ —ଭ'ଲ, ମୋର ତମ ଘରକୁ ଭଉଣୀ ଘର ବୋଲି ଆସିବା ଏତିକି । ତମମାନଙ୍କ ସ୍ନେହ ବେଶ୍ ବୁଝିଲି ।

ଜଟିଳା—(ପାଦତଳେ ପଡ଼ି ) ଦେବି । ତୁମେ ଦୟା ନକଲେ ମୋର ଆଉ ଗତି ନାହିଁ । ରଖ, ମାର ଯାହା ଇଚ୍ଛା; ଆମ୍ଭମାନଙ୍କୁ ତୁମ କିଣାଲୋକ ମଣି ଦୟା କର ।

ବିଦ୍ୟାବଳୀ—ଉଠ ଉଠ, ତୁମେ ତ ବଡ଼ ଅସମ୍ଭବ କଥା କହୁଛ । ବ୍ରାହ୍ମଣ ଘର ଝିଅବୋହୂ କେଉଁଠି ଲାଜ ଛାଡ଼ି ଗୋପ ଗଉଡ଼ୁଣୀଙ୍କ ପରି ବାରଦ୍ୱାର ବୁଲିବାର ଦେଖିଛ ? ଗଉଡ଼ୁଣୀଙ୍କର ସିନା ଏଇଟା ବ୍ୟବସାୟ ।

ଗାର୍ଗୀ—ବିଦ୍ୟାବଳି ! ପରୋପକାର ସଂସାରରେ ବଡ଼ ଧନ । ଏହାଠାରୁ ବଳି ଧର୍ମ ଆଉ ନାହିଁ । ତୁମେ ତ ପଣ୍ଡିତା—ଶାସ୍ତ୍ର ପଢ଼ି ପୁଣି ଏ କଥା କେମିତି କହୁଛ ? ପରର ଉପକାର କରିବାକୁ ପୁଣି ଜାତିକୁଳ, ବେଳକାଳ ବିଚାର ଥାଏ ? ବୃଷଭାନୁ ପରମ ବିଷ୍ଣୁଭକ୍ତ । ଭାଗ୍ୟବଳରେ ପରମା ସତୀ ଶ୍ରୀମତୀ ତାଙ୍କ ଘରେ ଜନ୍ମ । ତାଙ୍କ ସଙ୍ଗେ ମିଳନ ମଧ୍ୟ ଗୋଟିଏ ବଡ଼ କଥା—କାଶୀନିବାସୀ ପଣ୍ଡିତ ବ୍ରାହ୍ମଣ ଘରେ ତୁମେ କୁଳର ବୋହୂ ହୋଇ ବିଷ୍ଣୁଭକ୍ତି କ'ଣ ତୁଟିଯାଇଛି ? ଛି, ଛି, ତମର ଏ ବିଚାର ଦେଖି ମୋତେ କାହିଁକି ଲାଜ ଲାଗିଲା । ଟିକିଏ ବିବେକ ନାହିଁ ତମର ? ପ୍ରାଣୀର ପ୍ରାଣରକ୍ଷା କରିବାକୁ—ପରର ଉପକାର କରିବାକୁ ସିନା ତୁମର ଏ ଶିକ୍ଷା ! ତୁମେ ତ ଦେଖୁଛି ବେଶ୍ ବିଦ୍ୟା ଶିଖିଲ ! ଏଥିରେ ପୁଣି ଲୋକ ଦମ୍ଭ ଅଭିମାନ କରନ୍ତି ?

ପୌର୍ଣ୍ଣମାସୀ—ନାଇଁ ବିଦ୍ୟାବଳି ! ଗାର୍ଗୀ ଯାହା କହିଲେ ସତ କଥା—ତୁମେ ଯାଅ, ଥରେ ଶ୍ରୀମତୀଙ୍କୁ ଦେଖି ସୁସ୍ଥ କରାଅ ।

ବିଦ୍ୟାବଳୀ—ଭଗବତି ! ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ । ବାକି ଗୋପପୁରରେ ମୋର ଗୋଟିଏ ଭୟ—ଶୁଣିଛି ନନ୍ଦପୁଅ ମହାଧୂର୍ତ୍ତ, ମହା ବଳିଷ୍ଠ, ବଡ଼ ଲମ୍ପଟ । ତାଙ୍କର କୁଳ-ବିଚାର ନାହିଁ—ଗୁରୁ-ଗୌରବ ନାହିଁ । ଏକେ ପୁଣି ଏ ରାତି ଅନ୍ଧାର ! ମୋତେ ଯଦି ଗୋପର

ଗୋପୀ ମନେ କରି ସେ ଆସି ପହଞ୍ଚନ୍ତୁ, କ'ଣ କରିବ ? ଲୋକେ କହନ୍ତି ସେ ବଡ଼ କପଟୀ । ଘରି ମାୟାବୀ । ଆମେମାନେ ଯିବା କେମିତି ? ବାଟରେ ହାବୁଡ଼େ ପଡ଼ିଲେ ଆଉ ଜାତିଗୋତ୍ର ରହିବଟି ? ସେଇଥିପାଇଁ ମୁଁ ଯିବାକୁ ବେଶି ଡରୁଛି ।

ପୌର୍ଣ୍ଣମାସୀ—ସେ ସବୁ କିଛି ନୁହଁ । ତୁମ ସଙ୍ଗେ ଜଟିଳା ଆଉ ଗାର୍ଗୀ ଯିବେ, ଭୟ କ'ଣ ?

ଗାର୍ଗୀ—ନାଇଁ ଭଉଣୀ ! ଡର ନାହିଁ, ଯିବାଠଉ ଆସିବାବେଳ ଯାଏ ମୁଁ ତମ ସଙ୍ଗେ ସଙ୍ଗେ ଥିବି ।

ବିଦ୍ୟାବଳୀ—ଚାଲ ତେବେ । (ଯାଉ ଯାଉ) ଜଟିଳେ ! ଆଉ ଗୋଟିଏ ବଡ଼ ଅସୁବିଧା ଅଛି । ପ୍ରଥମେ ମୁଁ ତମ ବୋହୂଙ୍କୁ ଝାଡ଼ିବି । ଦେଖିବି, ଯଦି ସେଥିରେ ବିଷ କମିଗଲା ତ ଭଲ; ନୋହିଲେ ଆଉ ଗୋଟିଏ ସିଦ୍ଧି ଔଷଧ ମୋତେ ଦେବାକୁ ପଡ଼ିବ ଯେ, ସେଥିରେ ଟିକିଏ ଅଡୁଆ ଅଛି । ପାରିବ ତ ?

ଜଟିଳା—କ'ଣ କହୁ ନାହାନ୍ତି ? ଆମମାନଙ୍କଠାରେ ଅନ୍ୟ ବିଚାର କରୁଛ କାହିଁକି ମାଆ ?

ବିଦ୍ୟାବଳୀ—ଦାନ୍ତରେ ଚୋବାଇ ପାନସଙ୍ଗେ ସେ ବୁଟି ଦେବାକୁ ପଡ଼ିବ, ଶିଠାକୁ ତମ ବୋହୂଙ୍କ ମୁଖରେ ଦେବାକୁ ହେବ । ସେ ଯଦି ତାହା ଗ୍ରହଣ ନ କରନ୍ତି, ତେବେ ମୋତେ ଆଉ ଦୋଷ ଦେବ ନାହିଁ; ବିଷ ଅସାଧ୍ୟ ହୋଇପଡ଼ିବ ।

ଜଟିଳା—ଦେବ ! ଗଉଡ଼ ଆମେ—ସଦାକାଳେ ବ୍ରାହ୍ମଣଙ୍କର ସେବକ । ଏ ପୁଣି ଔଷଧ—ଏଥିରେ ହାନି କ'ଣ ଯେ ତୁମେ ଏ କଥାକୁ ଏତେ ସଙ୍କୋଚ କରି କହୁଛ ?

ପୌର୍ଣ୍ଣମାସୀ—ଚାଲ ମା' ! ଆଉ ବିଳମ୍ବ କର ନାହିଁ ! ପଦ୍ମନାଭ ନାମ ସ୍ମରଣ କରି ବେଗେ ବାହାରି ପଡ଼ ।

( ସର୍ବେ ପ୍ରସ୍ଥାନ )

( ମଧୁ ପ୍ରବେଶ )

ମଧୁ—ହଁ, ଯାକୋଇ ଯେ କହନ୍ତି କୌଶଳ । ଏକାବେଳକେ ନାକଦୋଷରା ଜବରଦସ୍ତି । ବୁଢ଼ୀର ଏଥରକ ଆଉ ହଲ-ଚଲ ହେବାକୁ ବାଟ ନାହିଁ । ବାକି ସେ ଖେଣ୍ଟେଇ-ରଡନ କୁଟିଳା । ଭଗବତୀଙ୍କ ଅନୁଗ୍ରହ, କାହ୍ନୁକୃଷ୍ଣ, ଆଉ ଏ ମଧୁଆ ବ୍ରାହ୍ମଣର କରାମତି—ଏଥିରେ ପୁଣି ସମ୍ଭାଳେ କିଏ ?

( ଗୀତ )

କାହ୍ନୁ-କୃଷ୍ଣଙ୍କୁ କାହାର ବଳ ?
( ଏ ) ମଧୁଆ ବ୍ରାହ୍ମଣ ପୁଣି ମୋଉଛି କଳ । ୦ ।
ତିନପୁର ଆଡ଼େ ହେଲେ କହ୍ନାଇ ଆଡ଼େ,
ବୁଢ଼ୀ ଘର କି କରିବ ଖାଇବ ମାଡ଼େ—
ଦେବରାଜ ହାରି ପରା କଲା ଜୁହାର ।

---

## ଦ୍ୱିତୀୟ ଦୃଶ୍ୟ

[ ବ୍ରଜ ବନପଥ—ବ୍ରଜବାଳାମାନେ ନୃତ୍ୟ କରୁ କରୁ ପ୍ରବେଶ କଲେ ଓ ନୃତ୍ୟ ମଧ୍ୟରେ ମଧୁମଙ୍ଗଳ ପ୍ରବେଶ ]

ମଧୁମଙ୍ଗଳ—( ପରିହାସ କରି ) ଓଃ କୋଉଠି ହେଲେ ମନଷକୁ ଶାନ୍ତି ମିଳିବାକୁ ନାହିଁ ! ସେଠିକି ଗଲି ଯେ କେଁ-କଟର, ଏଠି ପଲେ ମହୁମାଛି ଖାଲି ଭଣଭଣ ହଉଚନ୍ତି । ( ହାତ ଯୋଡ଼ି ) ଉଁ-ଉଁ, କି ଆଶ୍ଚର୍ଯ୍ୟ କଥା ! ଟିକିଏ ତୁନି ହୁଅ ଭଲା ମାଛିପଲକ ! ତମ ନାଁ'ରେ ଘିଅଦୀପ ବସେଇବି, ତମକୁ ପୂଜା କରିବି । ମୋର ଭାବନାର ଭାବଗୁଡ଼ାକ ହଜି-ଯାଉଛି । ହାତ ଯୋଡ଼ୁଛି, ମହୁମାଛିପଲ ଟିକିଏ ତୁନି ହୁଅ । ଫୁଲରେ ତୁମର କାମ । ଯା, ଫୁଲ ଫୁଟିଲାଣି ବସିବ, ହସିବ । ଯା ଭଲା, ମୁଁ ଆଖି ମୁଦୁଛି, ପଳା ପଳା ( ଆଖି ମୁଦିବା ) ।

ଜଣେ ସଖି—ଏ କିଏ ? ପାଗଳ ପରି କ'ଣ ଗୁରେ କହୁଛି ?

ମଧୁମଙ୍ଗଳ— ( ଚମକି ) ଆରେ ! ଏ ମହୁମାଛି କଥା କହନ୍ତି ? ତେବେ ତ ନାହୁଡ଼ ବଡ଼ ବଡ଼ ହୋଇଥିବ । ବା ବା, ପଳେଇଲେ ବଞ୍ଚେ ।

ଦ୍ୱିତୀୟ ସଖୀ—( ଧରିକରି ) ନା, ନା, ଏ ମହୁମାଛି କାମୁଡ଼ା ନୁହନ୍ତି ।

ମଧୁମଙ୍ଗଳ—ତେବେ ମାରଣା ?

ପ୍ରଥମ ସଖୀ—ନା, ତା' ବି ନୁହେଁ ।

ମଧୁମଙ୍ଗଳ—ତେବେ ନାଗୁଆ ?

ଦ୍ୱିତୀୟ ସଖୀ—ନା, ତା' ବି ନୁହେଁ ।

ମଧୁମଙ୍ଗଳ—ତେବେ ଆଉ କି ମାଛି ତୁମେ ? ଗଣଗଣା ? ଭଣଭଣା ?

ପ୍ରଥମ ସଖୀ—ତା ମଧ୍ୟ ନୁହେଁ ।

ମଧୁମଙ୍ଗଳ—ତେବେ କ'ଣ ଏକଦମ୍ ମାଛି ନୁହଁ ?

ଦ୍ୱିତୀୟ ସଖୀ—( ହଲାଇ ) ଆଖି ଫିଟା' ।

ମଧୁମଙ୍ଗଳ—ଫିଟେଇବ, ଡରକଥା କିଛି ନାହିଁ ତ ?

ପ୍ରଥମ ସଖୀ—ନା ।

ମଧୁମଙ୍ଗଳ—( ଆଖି ଫିଟାଇ ) ମଲି ଯା, ଏଇ ପଲକ ? କଥା ନାହିଁ-ବାର୍ତ୍ତା ନାହିଁ, ଖାଲି ଭଣର-ଭଣର ହେଲ ଯେ ମୁଁ କହିଲି ଅବା ମହୁମାଛି ହେବତା । ( ହସିଲେ )

ପ୍ରଥମ ସଖୀ—ତୁମେ ଏଣେ କୁଆଡ଼େ ? କାହ୍ନୁ କାହାନ୍ତି ?

ମଧୁମଙ୍ଗଳ—ସେଇଠି ।

ଦ୍ୱିତୀୟ ସଖୀ—କୋଉଠି ?

ମଧୁମଙ୍ଗଳ – ଗଲେଣି ।

ପ୍ରଥମ ସଖୀ—ଏକା ନା ଆଉ କିଏ ?

ମଧୁମଙ୍ଗଳ—ରାମ, ଦୁଇ, ତିନ୍ । କି, ତେମେ ସବୁ ଯାଉନ ? ଏଠି ଆସି ଭଣର-ଭଣର ହଉଛ କାହିଁକି ? ସେଇଠିକି ଯା, ନବରଙ୍ଗ ଦେଖିବ । ଆଜି ତ ବଡ଼ ଆନନ୍ଦର ଦିନ, ଗାଅ, ନାଚ, ଆନନ୍ଦ ହୁଅ ।

ପ୍ରଥମ ସଖୀ—ଗାଇବୁ ତେବେ ?

ଦ୍ୱିତୀୟ ସଖୀ—ନାଚିବୁ ତେବେ ?

ମଧୁମଙ୍ଗଳ—ତାଙ୍କୁ ହିଁ, ତମକୁ ବି ହିଁ । ଗାଅ, ନାଚ, ଶୁଣେ ଦେଖି ।

ସଖୀମାନେ— ( ଗୀତ )

କହିଲାଣି ମରୁତ ମୋ କାନେ
ଶୁଣିପିବୁ ସଖି ! ଆ, ଆ ସଖି ! ଆ ।
ଆସିବେ ସଞ୍ଜେ, ଅଳି ଗୁଣମଣି ଅଙ୍ଗ ମାଜଥା ॥
କାଛି ପିନ୍ଧିଥିବୁ-ବାଛି ନୀଳଶାଢ଼ୀ
କମ ଅଙ୍ଗେ ଚୋରି ମାନୁଥିବ ଜଡ଼ି;
ହସି ନ ହସିବୁ ନବନାଗରକୁ
ଦେଖି ନ ଦେଖିଲି ପରି ଥା ।
ଗୁରୁ ଚମ୍ପକେଳେ-ବାସ ଅନ୍ତରାଳେ
ଚେତି ନ ଗୁନ୍ଥିବୁ ଧମ୍ମି କୁତୂହଳେ;
ଅଡ଼େ ଅଡ଼େ ଗୁନ୍ଥି, ମନ ମୋହି ଦବୁ
ଅଳିଅନ୍ତରେ ତୁ ନାଚୁ ଥା ।
( ନାଚ ନାଚ ପ୍ରସ୍ଥାନ )

ମଧୁମଙ୍ଗଳ—( ତାଳମାରି ) ହା'ସ୍ ! ହା'ସ୍ !

( ଗୀତ )

ଉଡ଼ ଯା' ରେ, ବାଟେ ବାଟେ ଏ ମହୁମାଛି !
କାହ୍ନୁ ପ୍ରେମ ମଧୁ ଝରି ପଡ଼ିବ
ପିଇଦଅ ପେଟେ ପେଟେ
ମଧୁନିଶା ଘୋରେ—
ଫୁଲଶେଜରେ
ଘୁମାଇ ପଡ଼ଯା' ଖଟେ ।
( ନୃତ୍ୟ ସହ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

[ ଶ୍ରୀମତୀଙ୍କ କକ୍ଷ—ଜଟିଳା, କୁଟିଳା, ବଦ୍ୟାବଳୀ, ଗାର୍ଗୀ, ଶ୍ରୀମତୀ ଓ ସଖିଗଣ ବସିଥିଲେ । ଶ୍ରୀମତୀଙ୍କଠାରୁ ବଦ୍ୟାବଳୀ ବିଷ ଝାଡ଼ୁଥିଲେ ]

ବିଦ୍ୟାବଳୀ—ନା ଜଟିଳେ, ଏ ବଡ଼ ବିଷମ ବିଷ; ସହଜେ ଛାଡ଼ିବାର ନୁହେଁ ।

ଜଟିଳା—ଏଁ ? ତେବେ ମୁଁ କ'ଣ କରିବି ଦେବି ?

ବିଦ୍ୟାବଳୀ—ବ୍ୟସ୍ତ ହୋଇପଡ଼ ନାହିଁ ତୁମ୍ଭେମାନେ । ସମସ୍ତେ ଟିକିଏ ଆଡ଼େଇ ହୋଇ ଯାଅ । ମୁଁ ସର୍ପରାଜ ମନ୍ତ୍ର ପାଠ କରେଁ, ଯେ ଦଂଶନ କରିଛି ସେ ନ ଆସିଲେ, ବୋଧହୁଏ ଝାଡ଼ିଲେ ଏ ବିଷ ଯିବ ନାହିଁ ।

ଗାର୍ଗୀ—ତେବେ ସମସ୍ତେ ଏଠୁ ଯାଆନ୍ତୁ ।

ବିଦ୍ୟାବଳୀ—ହଁ, ଶ୍ରୀମତୀଙ୍କୁ ଯେଉଁ ସର୍ପ ଦଂଶନ କରିଛି ତା'ର ଘର ବିଷ ମରି ବୋଧହୁଏ । ନୋହିଲେ ଝାଡ଼ିଲି, ପୁଣି ପାନ ସଙ୍ଗେ ବୁଟି ମଧ ଦିଆଗଲା—ତେବେକେ ବିଷ ଝଡ଼ୁନାହିଁ !

ଜଟିଳା—ତେବେ କଅଣ ସେ ମନ୍ତର ପଢ଼ିବେ ?

ବିଦ୍ୟାବଳୀ—ହଁ, ସର୍ପରାଜ-ମନ୍ତ୍ର ଜପ କରେଁ, ସବୁ ସାପଙ୍କୁ ଏଠାକୁ ଡାକିବସ କାମୁଡ଼ିଥିବ ତାହାରଦ୍ୱାରା ଶ୍ରୀମତୀଙ୍କ ବିଷ ହରଣ କରାଇବି । ନୋହିଲେ ତ ଆଉ ଗତି ନାହିଁ ଦେଖୁଛି ।

ଜଟିଳା—ସେଥିକି କ'ଣ କ'ଣ ଲୋଡ଼ା ହେବ ଯେ ?

ବିଦ୍ୟାବଳୀ—ବେଶୀ କିଛି ନୁହେଁ; ସାତଟା ଘିଅ ଦୀପ, କିଛି ଅରୁଆ ଚାଉଳ ଅଣାଇଦିଅ । ଆଉ ତିନିଦଣ୍ଡ ପର୍ଯ୍ୟନ୍ତ ତୁମେମାନେ ଟିକିଏ ବାହାରେ ବସ ।

ଜଟିଳା—ତେବେ କୁଟିଳା ଗଲୁ ମା', ଘିଅଦୀପ ଅଣେଇଦବୁ । ଚାଉଳ ଅଣେଇ ଦେ । (କୁଟି ପ୍ରସ୍ଥାନ)

ବିଦ୍ୟାବଳୀ—ସାପମାନେ ସମସ୍ତେ ଆସିବେ—ବଡ଼ ରାଗି ସେମାନେ । କାଳେ ଯଦି ତମକୁ ରାଗି କାମୁଡ଼ନ୍ତି କି ତୁମ୍ଭେମାନେ ଦେଖି କାଳେ ଡରିବ, ସେଥିପାଇଁ ମୁଁ ତୁମ୍ଭମାନଙ୍କୁ ବାହାରକୁ ଯିବାକୁ କହୁଛି । ଦେଖୁଛ ତ ଶ୍ରୀମତୀଙ୍କର ଜ୍ଞାନ ନାହିଁ, ଡାକିଲେ ଶୁଣୁନାହାନ୍ତି, ହଲେଇଲେ ବି ଉଠିବାକୁ ନାହିଁ । ଆଉ ବେଶୀ ବିଳମ୍ବ କଲେ ବିଷ ବଡ଼ କଠିନ ହୋଇପଡ଼ିବ । ଦେଖେଁ, ବିଷ କେତେ ଉଠିଲାଣି ?

(ଶ୍ରୀମତୀଙ୍କ ମଥା ଇତ୍ୟାଦି ଧରି ଆଖି ଖୋଲିବାର ଅଭିନୟ ।)

ନା, ମୋତେ ସେ ମନ୍ତ୍ର ଜପିବାକୁ ପଡ଼ିବ, ତୁମେ-ମାନେ କେହି ଯେବେ ଡରିବ ନାହିଁ, ତେବେ ରହ ।

ଗାର୍ଗୀ—ନାଇଁ ବିଦ୍ୟାବଳି ! ଆମ୍ଭେମାନେ ବାହାରକୁ ଯାଉଛୁ । କ'ଣ କହୁଛ ଜଟିଳେ ?

ଜଟିଳା—ନାଇଁ ଦେବି ! ମୁଁ ବାହାରେ ରହିବି, କାଳେ କାମୁଡ଼ିଦେବେ । ସାପଙ୍କ ରାଗ ତ ! ଆସ ଯିବା । କବାଟ କିଳି ମୁଁ କୁଟିକି ନେଇ ବାହାରେ ଅଛି । ଦେବୀ ଡାକିଲେ ପଠାଇ ଦେବି । କୁଟିଳାକୁ କହିଦଉଚି ଘିଅଦୀପ ଦେଇକରି ବାହାରି ଯାଉ !

(କୁଟିଳା ଘିଅଦୀପ ନେଇ ପ୍ରବେଶ)

ଆଣିଲୁ ମା ! ସବୁ ଏଇଠି ରଖିଦେଇ, ଆ ବାହାରକୁ ଯିବା ।

(ବିଦ୍ୟାବଳୀ ଓ ରାଧାଙ୍କ ଛଡ଼ା ସମସ୍ତେ ପ୍ରସ୍ଥାନ)

(ଲଳିତା ଓ ମଧୁ ପ୍ରବେଶ)

ଲଳିତା—ହେଉଟି ଶ୍ୟାମ, ବନ୍ଧୁଙ୍କୁ ଆଣି ଆସିଲି ।

ଶ୍ରୀକୃଷ୍ଣ—ଗଲେଣି ତ ସମସ୍ତେ ?

ମଧୁ—ଏଥର ପଶାକାଠି ଆଣିବି କି ?

ଶ୍ରୀକୃଷ୍ଣ—କାହିଁକି ? (ହସି)

ମଧୁ—ରଙ୍କ ରାଜା ହେବେ ପରା ! ପଶାଖେଳ ହେବ ।

ଲଳିତା—(ଶ୍ରୀମତୀଙ୍କ ନିକଟକୁ ଯାଇ) ଧନି ! ଆଉ କାହିଁକି ? ବିଷ ହରଣ କରିବାକୁ ପରା କାଳୀୟ ବିଷଧର-ଗଞ୍ଜନ ତବ ହୃଦୟରଞ୍ଜନ ଆସିଗଲେଣି । ପୁଣି ନବେଲା ଭେଟ । ଡାକିଆଣି ଦେଖା କରାଉଛନ୍ତି ତମ ଶାଶୁ-ନଣନ୍ଦ । ଆଉ ମୁହଁ ଝାଉଁଳିଲେ ଚଳିବ କି ? ଉଠ, ହସ ।

ଶ୍ରୀକୃଷ୍ଣ—ପ୍ରିୟେ, ତମରି ସ୍ନେହ ଦୟାରେ ବନ୍ଧା ଶ୍ୟାମ । (ଉଠାଇଲେ) ଦଣ୍ଡେ କି ତମକୁ ଛାଡ଼ି ରହିପାରେ ?

ଲଳତା—ଦେଖିଲ, ଦେଖିଲ ସଖି ! ଶ୍ୟାମଙ୍କୁ ଏ ଶ୍ୟାମାବେଶ କପରି ମାନୁଛି ? ମନ ହଉଛି ସଖି ! ପଦେ ଗୀତ ଗାଇ ମନର ଆନନ୍ଦ ମେଣ୍ଟାଇ ନଅନ୍ତୁ । ବାକ ଡର ଲାଗୁଛି, ଘର ଏ, ପାଖରେ ଶାଶୁ ନଣନ୍ଦ ।

ମଧୂ—ପାଖରେ ତ ନୁହେଁ ଖାଲି—ଦୁଆରେ । ଯା ଲଳତେ, ବୃନ୍ଦାଙ୍କୁ ଆଉ ସଖିମାନଙ୍କୁ ମିଳନ ସାଜରେ ସଜାଇବାକୁ କହ—ଗନ୍ଧ,ଚନ୍ଦନ, ହାର ଠିକ୍ କର ରଖ । ଆଜ ଶ୍ୟାମାଙ୍ଗୀ ଗୌରାଙ୍ଗୀଙ୍କ ମିଳନ ଦେଖି ମନ ସ୍ୱର୍ଗସୁଖ ଲାଭ କରୁ । ଯାଅ— ଆଉ ବେଳ ନାହିଁ । ମୁଁ ଗଲି, ତେଣେ ପୌର୍ଣ୍ଣମାସୀଙ୍କୁ ଖବର ଦେବ ।

ଶ୍ରୀକୃଷ୍ଣ—ନା ନା, ସର୍ପରାଜ ହେବ କଏ ? ଫେର୍ ମୋ ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ଦବ କଏ ?

ମଧୂ—ତେବେ ତୁମେ ଯା' ଲଳତେ ।

( ଲଳତା ପ୍ରସ୍ଥାନ )

---

## ଚତୁର୍ଥ ଦଶ୍ୟ

[ ବ୍ରଜ ବନପଥ—ବୃନ୍ଦା ଗାଇଗାଇ ପ୍ରବେଶ ]

ବୃନ୍ଦା— ( ଗୀତ )

ଶ୍ୟାମସୁନ୍ଦର, ବେଣୁ ବନେ ବଜାନା ରେ !
ଖାଲି ରାଧା ରାଧା କହି ଦେ'ନା ବାଧା
ଆଭୀରକୁଳ ମଜାନା ରେ । ୦ ।
ବେଣୁ ବାଜେ ଯେବେ ନଶୀଥରେ
ଆକୁଳ ପ୍ରାଣେ ଥର ମରେଁ
ମୋର ଅନ୍ତରେ ବାଜେ ରେ
ସେଇ ମନ୍ତ୍ରର ଶୁଭେ ରେ
କେତେ ସତେ ସମ୍ଭବ କ ?
ନତ ସଞ୍ଜେ କୁଞ୍ଜବନେ
ଗୁଞ୍ଜି ପ୍ରେମ ତାନେ
ଗଞ୍ଜ ମାନ ହଜାନା ରେ ।

( ପୌର୍ଣ୍ଣମାସୀ ପ୍ରବେଶ )

ପୌର୍ଣ୍ଣମାସୀ—ଗାଅ ବୃନ୍ଦେ, ମନର ଆନନ୍ଦରେ, ପ୍ରାଣର ଆବେଗରେ ଶ୍ୟାମଗୁଣ ଗାଇଚାଲ । ଆଜ ବଡ଼ ଆନନ୍ଦର ଦନ—ଶ୍ୟାମ ନଜେ ଆଜ ଶ୍ରୀମତୀଙ୍କର କଳଙ୍କ ମୋଚନ ଲାଗି ଶ୍ୟାମାରୂପ ଧରିଛନ୍ତି । ପ୍ରେମକଙ୍ଗାଳ ପ୍ରେମିକାଲାଗି ନକର ପାରନ୍ତି କ'ଣ ?

( ଗୀତ )

ପ୍ରେମିକାର ଲାଗି ପ୍ରେମ ବଇରାଗୀ
ପ୍ରେମରୁ କଙ୍ଗାଳ ହସ,
ଅଞ୍ଜଳ ପାତ ପୀରତ ମାଗେ ଗୋ,
ପ୍ରେମ ଦୁଆର-ଭକାରୀ ।
ସେଇ ପ୍ରେମିକାର ପ୍ରେମ ବକାଶ ଲାଗି
ଏ ଜଗତ ରଚନା ସାର,
ପ୍ରେମିକ ପରାଣ ଆକୁଳେ ଅଧୀର
ପୀରତ ଗ୍ରନ୍ଥର ହାର ।

ବୃନ୍ଦା—ଆହା ହା ! ଦେବ, ଏ ସୁଧା କେଉଁ ସ୍ୱର୍ଗରେ ଥିଲ ? ସଞ୍ଜିବନୀଠାରୁ ଆହୁର ମଧୁର, ଆହୁର ଲଳତ, ଆହୁର ସ୍ୱର୍ଗୀୟ ।

( ପୁନଃ ଗୀତଗାନ )

ପୌର୍ଣ୍ଣମାସୀ—

ସେଇ ପ୍ରେମିକାର ଲାଗି କାନନେ କାନନେ
ଫୁଟଇ ସରସ ଫୁଲ,
ଆଉ ତତ୍ପ୍ରେମିକାର ଲାଗି ପବନେ ପବନେ
ଗୁଞ୍ଜରେ ଅଳକୁଳ ।
ପୁଣି ଦୂର ଗଗନେ ଶଶୀଟି ହସେ ଗୋ
କୁମୁଦ ପୀରତ ମାଗି,
କମଳ କୋମଳ ହସଟିକ ପାଇଁ
ରବ ପର ଅନୁରାଗୀ ।
ମାଲ ଯମୁନା ନଦୀ—
ସାଗରେ ଧାଏଁ ପ୍ରେମ-ଗୀତ ଗାଇ ।
ଆଜ ସେହି ପ୍ରେମେ ଶ୍ୟାମ, ତର ଅନୁଗତ
ବାଇ କଲା ଗୋପ-ଗୁଆଳୀ ରାଈ ॥

ବୃନ୍ଦା—ଚମତ୍କାର ସଙ୍ଗୀତ ! ଏ ଧାରା ବନ୍ଦ ହେଲେ, ଏ ଧାମ ଲାଗିବ ପିଣ୍ଡ ପ୍ରାଣହୀନପରି ଲାଗେ । ଦେବି ! କେଉଁଠାରୁ ଏତେବେଳେ ଆଗମନ ?

ପୌର୍ଣ୍ଣମାସୀ—ଯାଅ ବୃନ୍ଦେ, ଆନନ୍ଦରେ ଯାଅ—ପ୍ରେମର ସୁଅରେ ବୃନ୍ଦାବନ ଭସାଇ ଦେଇଯାଅ । ମିଳନ ମଙ୍ଗଳ ଗାଇ ଗାଇ ଯାଅ—ଆଉ ବେଳ ନାହିଁ—ଯାଅ ! ପ୍ରେମର ମୂରତି ଦେଖି ଆଖି-ମନ ପବିତ୍ର କରିବ ଯାଅ, ଯାଅ । ଏକା ନୁହେଁ ! ବୃନ୍ଦାବନର ତରୁଲତା, ପଶୁପକ୍ଷୀ ସମସ୍ତଙ୍କୁ ସମ୍ବାଦ ଦିଅ । ଡାକିନିଅ ସମସ୍ତଙ୍କୁ, କହିଦିଅ ସମସ୍ତଙ୍କୁ—ପ୍ରେମଗୀତ ଗାଇ ଗାଇ ଦେଖିବେ ଯାଆନ୍ତୁ ଶ୍ୟାମାବେଶରେ ଶ୍ୟାମର ପ୍ରେମର ଅବତାର । ଯାଅ ବୃନ୍ଦେ ! ମିଳନର ସବୁ ସାମଗ୍ରୀ ପ୍ରସ୍ତୁତ ରଖ; ଆଉ ବିଳମ୍ବ କର ନାହିଁ ।

( ପ୍ରସ୍ଥାନ )

ବୃନ୍ଦା—ସ୍ୱର୍ଗର ଶୀତଳ ପରଶ ପରି—ପୁଣି ଚଞ୍ଚଳ ବିଜୁଳି ଝଟକ ପରି କେଡ଼େ ସୁନ୍ଦର, କେଡ଼େ ମନୋହର, କେଡ଼େ ସରଳ ଦେବୀଙ୍କର ହୃଦୟର ଏ ଆବେଗଭରା ମହାଭାବମିଶା ଭାଷା ! ଯାଏଁ, ଦେଖେଁ, ସମସ୍ତଙ୍କୁ ସମ୍ବାଦ ଦିଏ ।

( ଗୀତ )

ଆସ ଗୋ ମାଳତୀ, ଚମ୍ପା ରସିକା ନବୀନା,
ଆସ ଗୋ ବଉଳ, କୁନ୍ଦ କୁରୁଅନା, ମାଧବୀ ସୁମନା,
ନବନାଗରୀ ଶୋଭନା ।

ପାହିଲା ଉଆଁସ ରାତି, ଡାକିଲା ଡାକୁଆ
ରସି ରସି ଫୁଲ ସମୀରେ ଗୋ ବୋଲିଲା କଜଳପାତିଆ
ସୁନାବରନୀ ହସିଆ ।

ଆସ ଗୋ ଶୁଣିବ ପରା ମୋହନ ମୁରଲୀ,
ଧୀରେ କାନ ମନ ପରଶିବ ତାନ ସମୀରେ ଦୋହଲି,
ଯିବ ଜାତି, କୁଳ ଭୁଲି ।

ଝରେଖି ଯୁଗଳ, ବେନି ନୟନ ହସିବ,
ଝୁରୁ ଉର ହୀରା ହାର ତୋର ପ୍ରେମ-ଲୋତକେ ଭାସିବ !
ପ୍ରୀତି-ସ୍ୱାତକ କଷିବ ।

( ଗାଇ ଗାଇ ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

[ କକ୍ଷଦ୍ୱାର—ଜଟିଳା ଓ କୁଟିଳା ]

କୁଟିଳା—(ଉଭୟେ ଥରିବା ପରି ହୋଇ) ମା, ଏ କ'ଣ ଶୁଭୁଚି ? ସାପଗୁଡ଼ାକ କ'ଣ ଘର ଭିତରେ ରାଗରେ ଏମିତି ଗର୍ଜନ କରୁଛନ୍ତି ? ମା ମ, ମୋ ପାଖରେ ବ; ବଡ଼ ଡର ଲାଗୁଚି ।

( ନେପଥ୍ୟ ) ବିଦ୍ୟାବଳୀ—କହ ଏଠିକି ଆସିବା ତୋର କି ଦର୍କାର ଥିଲା ? କାହିଁକି ଶ୍ରୀମତୀଙ୍କୁ ଦଂଶନ କଲୁ ?

(ନେପଥ୍ୟ) ସର୍ପ—ମୋର ତ କିଛି ଦୋଷ ନାହିଁ ! ମୁଁ କୈଳାସରେ ଥାଏଁ, କୈଳାସପତି ହର କୋପ ହୋଇ ମୋତେ ଜଟିଳାର ପୁଅକୁ ଦଂଶିବାକୁ ପଠାଇଲେ ?

ଜଟିଳା—ଆଲୋ କୁଟି, ସରିଲା ଲୋ, ହେ ଧର୍ମ, ହେ ଷଠିଦୁଛେଇ, ମୋ ବାଳୁତ ଜୀବନ ରଖ ।

(ନେପଥ୍ୟ) ବିଦ୍ୟାବଳୀ—ତାଙ୍କର ଦୋଷ କ'ଣ ?

ସର୍ପ—ତାଙ୍କର କିଛି ଦୋଷ ନାହିଁ, ମୁଁ ଜାଣେ । ତାଙ୍କ ମା ଜଟିଳା ଅପରାଧ କରିଛି ବୋଲି ହର କୋପ ହୋଇଛନ୍ତି ।

ବିଦ୍ୟାବଳୀ—ତେବେ ତୁ ସ୍ଥିର ସାପ ହୋଇ ହର-ଆଜ୍ଞା ଅବଜ୍ଞା କରି, ଶ୍ରୀମତୀଙ୍କୁ ଦଂଶିଲୁ କାହିଁକି ? ଜଟିଳା ଯେବେ ଅପରାଧ କରିଛି ତାଙ୍କୁ ଦଂଶିଲୁ ନାହିଁ ?

ସର୍ପ—ଶୁଣ ତେବେ । ନିଜ ମରଣଠାରୁ ଏମିତି ପୁତ୍ରଶୋକରେ ଝୁରି ଝୁରି ମରିବା ଅଧିକ କଷ୍ଟକର; ତେଣୁ ମୁଁ ଏଇ ଉପାୟ କଲି ।

(ନେପଥ୍ୟେ) ବଦ୍ୟାବଳୀ—ତେବେ ତା ପୁଅକୁ ଦଂଶିଲୁ ନାହିଁ ? ଶ୍ରୀମତୀଙ୍କର କ'ଣ ଦୋଷ ?

ସର୍ପ—ମହର୍ଷି ଦୁର୍ବାସା ଶ୍ରୀମତୀଙ୍କି ବର ଦେଇଛନ୍ତି, ଶ୍ରୀମତୀ କେବେ ବିଧବା ହେବେ ନାହିଁ । ଋଷି-ଆଜ୍ଞା ଲଙ୍ଘିଲେ ମୋ ମୂର୍ଦ୍ଧନା ରହିବ ଟି କ ? ସେଇଥିଲାଗି ମୁଁ ପ୍ରଥମେ ଅଭିମନ୍ୟୁଙ୍କୁ ଦଂଶିଲି ନାହିଁ । ଆଗେ ଶ୍ରୀମତୀଙ୍କି ଦଂଶନ କରିସାରିଛି । ଏବେ ଆଜ ସଞ୍ଜରେ କୁଟିଳାକୁ ଖାଇ, ଜଟିଳାକୁ ଏକୁଟିଆ ରଖିଲେ ବୁଢ଼ୀ ଏମାନଙ୍କ ଶୋକରେ ଜୀଇ ଥାଇ ମଧ୍ୟ ନିତ ମରୁଥିବ ।

ବଦ୍ୟାବଳୀ—ଜଟିଳାର କ ଦୋଷ ସର୍ପ ?

ସର୍ପ—ତୁମେ କ'ଣ ଜାଣିନାହଁ ? ଦୁର୍ବାସା ହରଙ୍କର ଦ୍ୱିତୀୟ ସ୍ୱରୂପ । ସେ ଜଟିଳାକୁ ଏକାନ୍ତରେ କହିଥିଲେ, ନନ୍ଦଗୃହକୁ ଯାଇ ନିତ ତାର ବୋହୂ ନନ୍ଦନନ୍ଦନ ପୁରୁଷୋତ୍ତମ ଭଗବାନଙ୍କୁ ଆଦରରେ ଭୋଜନ କରାଇବେ; ତାଙ୍କ ସନ୍ତୋଷରେ ନାନା ଶୁଭଫଳ ହେବ । ଜଟିଳା ତାହା ବନ୍ଦ କରିଛି । ହର କୁପିତ ହୋଇ ସେ ଆଜ୍ଞା ଦେଇଛନ୍ତି, ତାକୁ ନପାଳି ମୋର ଗତି କାହିଁ ? ବୁଢ଼ୀ ବଳେ କାନ୍ଦୁକାନ୍ଦ ଘାଣ୍ଟିହୋଇ ମରିବ । ତା ବଂଶ ମୁଁ ନିପାତ କରିବି ।

କୁଟିଳା—ମା' ଲୋ, ମଲି ମୁଁ ।

ଜଟିଳା—ଆହେ ସର୍ପରାଜ ! ତମକୁ ନେହୁରା ହଉଚି । ମୋତେ ପଛେ ଖା, ମୋ ପୁଅ ଝିଅ ବୋହୂ ବଞ୍ଚିଥାନ୍ତୁ । ହେ ଦିଅଁ ଦେବତା, ହେ ହର, ମୋର ସବୁ ଆୟୁଷ ନେଇ ପିଲାଏ ବଞ୍ଚିଥାନ୍ତୁ । ସାପ ମୋତେ ଖାଉ; ଆଲୋ କୁଟି ! ଭାଇକି ଡାକ ଲୋ ! ସମସ୍ତେ ପାଳଦଉଡ଼ି ବେକରେ ପକାଇ ଦାନ୍ତରେ କୁଟା କାମୁଡ଼ି ସାପକୁ ମୁଣ୍ଡିଆ ମାର ଲୋ ! ହେ ସର୍ପରାଜ, ମୋ ଜୀବନ ଯାଉ ପଛେ ପିଲାଏ ବଞ୍ଚନ୍ତୁ ।

(ନେପଥ୍ୟେ) ସର୍ପ—ଦୋଷୀକି ଛୁଇଁଲେ ମୋ ବିଷ ନଷ୍ଟ ହେବ । ତୁ ମହାପାପିନୀ । ତୋତେ ଏଇମାନଙ୍କର ଶୋକ-ଭୁଜଙ୍ଗ ଗିଳିବ । ମୁଁ ତୋତେ ଛୁଇଁବି ନାହିଁ ।

ଜଟିଳା—ଆଗୋ ବଦ୍ୟାବଳି, ତମ ପା'ତଳେ ପଡ଼ୁଚି, ମୋତେ ଏ ବିପତ୍ତିରୁ ରଖ ମା' ! ସାପକୁ ଶାନ୍ତ କରାଇ, ଜୀବ ରଖ । ମୁଁ ନିୟମ କରୁଚି, ଏଣିକି ଆଉ ଦିନେ ଶ୍ରୀମତୀଙ୍କି ବନ୍ଦ କରିବି ନାହିଁ । ସେ ଦୁର୍ବାସା ଋଷିଙ୍କି ମୋର କୋଟିଏ ଜୁହାର । ଆଉ ତାଙ୍କ ଆଜ୍ଞା ଲଙ୍ଘିବି ନାହିଁ ।

କୁଟିଳା—ଆହେ ସର୍ପରାଜ, ମାଇପିବୁଦ୍ଧିରେ ମୁଁ ଅପରାଧ ଅର୍ଜିଚି, ଆଉ ଦିନେ ଏମିତି କାମ କରିବି ନାହିଁ । କେବେ ବୋହୂଙ୍କୁ ଅପବାଦ ଦେବି ନାହିଁ । ମୁଁ ନିୟମ କରି କହୁଚି, କାନ ନାକ ମୋଡ଼ି ହଉଚି, ଆଉ କେବେ ଇମିତି କରିବି ନାହିଁ ।

ସର୍ପରାଜ—ତୁମେ ଦୁହେଁ ଯେବେ ପୁଅ ଭାଇଙ୍କ ମୁଣ୍ଡରେ ହାତ ଦେଇ ନିୟମ କରିବ, ଗୁଡ଼ ଯିବି । ଯେବେ ପୁଣି କଥାକୁ ଅନ୍ୟଥା କରିବ, ବଂଶଯାକ ଖାଇବି ।

ଜଟିଳା—ମୁଁ ମୋ ପୁଅରାଣ ପକେଇ ନିୟମ କରୁଚି ଆଉ ଦିନେ ବୋହୂକୁ କିରୋଧିବି ନାହିଁ କି ଦୋଷିବି ନାହିଁ ।

କୁଟିଳା—ମୁଁ ଭାଇ-ମୁଣ୍ଡକୁ ହାତ ବଢ଼େଇ କହୁଚି, ତମ କଥା ବରାବର ପାଳୁଥିବି ।

ସର୍ପରାଜ—ହେଉ ତେବେ, ମୁଁ କୈଳାସକୁ ଯାଉଛି । ହରଙ୍କ ପାଦତଳେ ଜଣା କରିବି—ଆଉ ଦିନେ ତୁମେ କଥାରୁ ବିଚଳିତ ହେବ ନାହିଁ । କଥାରୁ ଅନ୍ୟଥା ହେଲେ ଆଉ କେହି ଶୁଣିବାକୁ ନ ଥିବେ । ଶ୍ରୀମତୀଙ୍କଠାରୁ ବିଷ ହରିନେଇ ଦିବ୍ୟତେଜ ଦେଇଗଲି ।

ଜଟିଳା—ଆଲୋ ମାଆ ଲୋ; ଆଉ ଫେର୍ ? ଏଇ କୁଟି କଥାରେ ମୁଁ ଭାସିଗଲି । ଆଉ ଦିନେ ନାହିଁ ଲୋ

ମା ! ହେ ଦୁର୍ବାସା ଋଷି, ମୋ ଅପରାଧ କ୍ଷମା କର, ପାଦତଳେ ମୁଣ୍ଡିଆ ମାରୁଚି ।

(ପ୍ରଣାମ କଲେ)

(ନେପଥ୍ୟେ) ବିଦ୍ୟାବଳୀ—ସର୍ପ ଅନ୍ତର୍ଦ୍ଧାନ ହେଲାଣି । ଆଉ ଭୟ କର ନାହିଁ; ଏଥର ସମସ୍ତେ ଆସ ।

( ଜଟିଳା ଓ କୁଟିଳା ପ୍ରସ୍ଥାନ )

---

## ଷଷ୍ଠ ଦୃଶ୍ୟ

[ କକ୍ଷ—ଶ୍ରୀମତୀ, ବିଦ୍ୟାବଳୀ ବସିଥିଲେ—ଗାର୍ଗୀ, ଜଟିଯା, କୁଟିଳା ଓ ସଖିଗଣ ପ୍ରବେଶ କଲେ ]

ଜଟିଳା—( ବିଦ୍ୟାବଳୀଙ୍କ ପାଦତଳେ ପଡ଼ି ) ଦେବି ! ତମଯୋଗୁଁ ସିନା ମୋ ଘର ରହିଲା ! ମୋ କର୍ମବଳକୁ ଦଇବ ତମକୁ ଏଠିକି ଆଣେଇଥିଲା ।

କୁଟିଳା—(ବିଦ୍ୟାବଳୀଙ୍କୁ ପ୍ରଣାମ କରି ) ଦେବି, ତମ ଦୟା ହେଲା ବୋଲି ଆମେ ସବୁ ଜୀବନ ପାଇଲୁ । ଏ ଋଣ ଶୁଝିବୁ କେମିତି ?

ବିଦ୍ୟାବଳୀ—ମୁଁ କିଛି ଉପକାର ତମର କରିନାହିଁ । ଶ୍ରୀମତୀଙ୍କ ସତୀତ୍ୱ ବଳରୁ ସବୁ ହେଲା । ମୋର ଆୟତ୍ତ କ'ଣ ?

ଜଟିଳା—( ଶ୍ରୀମତୀଙ୍କୁ ଧରି ) ଚନ୍ଦ୍ରମୁଖ ତ ଏଇନେ କୁଆଡ଼େ ଲୁଚିଯାଇଥିଲା ଲୋ ! ଏଇ ବିଦ୍ୟାବଳୀଙ୍କ ଲାଗି ମୋର ଘର-ଶିରୀ ରହିଲା । ଆଉ ଦିନେ ନାହିଁ ଲୋ ମା ! ବୋହୂକୁ ମୋର ମ ବୋଲି ଯେ ପାଟି ଫିଟେଇବ, ମୋ ବଇରୀ ସେ ।

ବିଦ୍ୟାବଳୀ—ସେ ଯୋଉ ବିଷଧର ସର୍ପ, ଦେଖିଲେ ତ ଆଗେ ପ୍ରାଣଆରେ ମରିଯିବ ମଣିଷ ।

କୁଟିଳା—ହଁ ଦେବି, ତାର ଯୋଉ ଗର୍ଜ୍ଜନ, ଯୋଉ ଟାଣଟାଣ କଥା ? ନ ଦେଖିଛୁ ଭଲ ହୋଇଚି । ସେ ତ ଆଖିରେ ନାଚୁଥାନ୍ତା—ସପନରେ ଡରନ୍ତା ।

ଲଳିତା—ଆମେମାନେ ଆରପାଖରେ ଥିଲୁ ଯେ ଖାଲି ବରଡ଼ାପନ ପରି ଥରୁଥାଉଁ, ଆଉ କ'ଣ ପିଣ୍ଡରେ ପ୍ରାଣ ଥିଲା ?

ବିଶାଖା—ହାବୁଡ଼େ ପଡ଼ିଥିଲେ ସେଇଠି ସରିଥାନ୍ତୁ । ଏ ସାପର ବିଷକୁ ପୁଣି ଆଉ କଏ ହେଲେ ପାରିଥାନ୍ତା ?

କୁଟିଳା—( ଜଟିଳାପ୍ରତି ଜନାନ୍ତିକେ ) ମ ମ, ଆମ ବୋହୂର କିଛି ଅଳଙ୍କାର ଏଙ୍କୁ ଦେଇ-ପକେଇବା; ଆଉ କ'ଣ ଦେବା ?

ଜଟିଳା—ଅଳଙ୍କାର ? କେତେ ଛାର୍ ? ଜୀବନ ଆଗରେ କି ଅଳଙ୍କାର ଲୋ ! କିଛି କ'ଣ ମ ? ସବୁ ଦିଅନ୍ତୁ । ଆସିବଟି ବୋହୂ, ତମ ଅଳଙ୍କାର-ସବୁ ଦେବୀଙ୍କି ପିନ୍ଧେଇଦିଅ ।

(ଶ୍ରୀମତୀ ଲାଜ ଲାଜ ହୋଇ ବେକରୁ ମାଳା ଫିଟାଇଲେ )

ଲଳିତା—ଲଜ୍ଜା କଣ ଶ୍ରୀମତୀ ? ସେ ତମର କି ଉପକାର ନ କରିଛନ୍ତି ? ତାଙ୍କ ପାଖେ ପୁଣି ଲଜ୍ଜା ? ନିଜ ହାତରେ ଆମ୍ଭମାନଙ୍କ ଆଗରେ ପିନ୍ଧାଇଦେଇ ଆନନ୍ଦ ଦିଅ, ଆମ୍ଭମାନଙ୍କୁ ସୁଖୀ କରାଅ । ଆହା ! ତାଙ୍କ ଋଣ ପୁଣି ସୁଝିବ କଏ ?

ବିଦ୍ୟାବଳୀ—ନାଇଁ, ଥାଉ ଥାଉ; ମୁଁ ଢେର୍ ପାଇଲଣି । ତାଙ୍କର ଗଳାହାର ତାଙ୍କର ଗଳାରେ ଥାଉ; ସେଇଥିରେ ମୋର ଆନନ୍ଦ—ତାଙ୍କୁ ଦେଖି ମୋର ସବୁ ସୁଖ ମିଳିବ ।

କୁଟିଳା—ଏ କେମିତି କଥା ? ଦିଅ ବୋହୂ; ଲାଜ କରୁଚ କାହିଁକି ?

ଜଟିଳା—ଦେବି ! ନ ନେଲେ ଆମମାନଙ୍କ ମନରେ ଘାରି ଦୁଃଖ ହବ । ଶ୍ରୀମତୀ, ତୁମେ ନିଜେ ହାରଟି ପିନ୍ଧାଇଦିଅ ।

(ଶ୍ରୀମତୀ ଲାଜ ଲାଜ ହୋଇ ହାର ପିନ୍ଧାଇଦେଲେ ଓ ସଖିମାନେ ସମସ୍ତେ ହୁଳହୁଳି ଦେଇ ଆନନ୍ଦ ହେଲେ )

ଗାର୍ଗୀ—ଜଟିଳେ ! ଏଥର ଆମ୍ଭମାନଙ୍କୁ ବିଦାୟ ଦିଅ ।

କୁଟିଳା—ମା ମ, ଏତେ ରାତି ! ଅନ୍ଧାର, ଏକୁଟିଆ ବଣବାଟରେ ସତେ ଏମାନେ କେମିତି ଯିବେ ?

ଜଟିଳା—ଦେବି ! ରାତିରେ ଆଉ ଏମିତି କି କାମ ଅଛି, ଆଜି ରାତିଟା ମୋର ଘରେ ଭୋଜନ ବଢ଼ୁ । ମୁଁ କୃତାର୍ଥ ହୋଇଯାଏ, ମୋ ପାପ ଧୋଇଯାଉ । ଏଇଠି ଶୋଇପଡ଼, ସକାଳୁ ସକାଳୁ ଗଲେ ଚଳିବ ନାହିଁ ।

ବିଦ୍ୟାବଳୀ—ଜଟିଳେ ! ଆଉ କାହିଁକି ବଳାଉଛ ? ମୋର ଅନେକ କାମ—ମୁଁ ଯୋଉ ଦିନ ସାପମନ୍ତ୍ର ଜପେ ସେ ଦିନ ପୁଣି ରାତିରେ ନିଜନରେ ସେମାନଙ୍କୁ ଆରାଧନା କରି ତାଙ୍କୁ ସନ୍ତୁଷ୍ଟ ରଖିବାକୁ ମନ୍ତ୍ର ସ୍ମରଣ କରିବାକୁ ହୁଏ, ଜାଣୁନାହଁ ? ସେମାନେ ବଡ଼ ଦୁଷ୍ଟ ଜୀବ, କି ବିଶ୍ୱାସ ତାଙ୍କୁ ?

ଜଟିଳା—ପା'ଛଳେ ପଡ଼ୁଚି ଦେବି ! ଆଜି ରାତିକ ଏଇଠି ଭୋଜନ କରି ଶୟନ କର । ଗାର୍ଗୀଙ୍କି ମୁଁ ସଙ୍ଗରେ ମୋ ଶୋଇଲା ଘରକୁ ନେଇଯାଉଚି । ଶ୍ରୀମତୀଙ୍କ ସଙ୍ଗରେ ତମେ ଚନ୍ଦ୍ରଶାଳାପୁରକୁ ଯାଅ । ସେଠା ଖୁବ୍ ନିରୋଳା, ଆଉ କେହି ଥିବେ ନାହିଁ କି ଯିବେ ନାହିଁ, ବୋହୂ ଏକଲା ଥିବେ ।

କୁଟିଳା—ବଗିଚ୍ଚ ଭିତରେ ଚନ୍ଦ୍ରଶାଳାପୁରକୁ ଆଉ କିଏ ଯାଇପାରିବ ? ଶ୍ରୀମତୀ ଆଉ ଦେବୀ ଦିହେଁ ଯାଆନ୍ତୁ ।

ଲଳିତା—ହଁ କୁଟିଳେ, ଆମେମାନେ ନେଇଯାଉଛୁଁ । ତୁମେ ଯାଇ ଆଗେ ଭୋଜନ-ବ୍ୟବସ୍ଥା କର । ଗାର୍ଗୀଙ୍କୁ ସଙ୍ଗରେ ନେଇଯାଅ, ଶ୍ରୀମତୀ ମଧ୍ୟ ଆଜି ଦେବୀଙ୍କ ସେବା କରି ଧନ୍ୟ ହୁଅନ୍ତୁ ।

ଜଟିଳା—( ଗାର୍ଗୀଙ୍କ ପ୍ରତି) ଦେବି ! ଆସ, ଆ କୁଟି ! ମା ଶ୍ରୀମତୀ, ଦେବୀ ବିଦ୍ୟାବଳୀ ଲଗିଲେ । ତାଙ୍କ ସେବାରେ ଯେମିତି କିଛି ଅଣହେଲା ନ ହୁଏ ।

ଗାର୍ଗୀ—ବିଦ୍ୟାବଳି ! ଆଉ କ'ଣ ଭାବୁଛ ? ଏମାନଙ୍କ କଥା ତ ଭଙ୍ଗିହେଉ ନାହିଁ । ଆଜି ରାତିଟା କେମିତି ଆଉ ଯିବ ?

ବିଦ୍ୟାବଳୀ—ତମର ଯାହା ଇଚ୍ଛା ସିନା !

ଜଟିଳା—ଦେବି ! ଆଉ ମନା କର ନାହିଁ, ମୁଁ ଦେବୀ ଗାର୍ଗୀଙ୍କି ସଙ୍ଗରେ ନେଇଯାଉଚି ।

କୁଟିଳା—ଆସନ୍ତୁ ଦେବି, ସଖିମାନେ ତ ଅଛନ୍ତି ।

ଗାର୍ଗୀ—ଚାଲ ତେବେ ।

(ଜଟିଳା କୁଟିଳା ସହ ପ୍ରସ୍ଥାନ)

ଲଳିତା—( ଶ୍ରୀମତୀଙ୍କ ମୁଖ ଧରି ) ସଖି ! ଲାଜ ଛାଡ଼, ଟିକିଏ ଆଡ଼ଆଖିରେ ଶ୍ୟାମଙ୍କୁ ଶ୍ୟାମାବେଶରେ ମନ ପୂରାଇ ଦେଖିନିଅ ।

ବୃନ୍ଦା—ଶାଶୁ ତ ନିଜେ କହିଛନ୍ତି, ଏଥର ମନ ମନେଇ ସଜେଇଦିଅ । ଚାଲ ଧନି, ଚନ୍ଦ୍ରଶାଳାପୁରକୁ ଚାଲ ।

ବିଶାଖା—ନାଇଁ ମ, ସଖୀର ଆମର ଏ ଶ୍ୟାମା-ବେଶରେ ମନ ମାନୁ ନ ଥିବ ପରା ? ଚାଲ ଶ୍ୟାମା, ତମକୁ ଶ୍ୟାମ କରି ସଜେଇ ଧନୀଠାରୁ ସେବା ଲାଭ କରାଇଦେବୁ ।

ଲଳିତା—ତଥାପି ଥରେ ଆଡ଼ନୟନ, ବଙ୍କାଭ୍ରୂରୁ, ଦରହାସ ଏସବୁ ଲୁଚାଇଦେଲେ ଚଳିବ କେମିତି ?

ଶ୍ରୀମତୀ—ଯା ମ, ତମମାନଙ୍କର କ'ଣ ଟିକିଏ ଲାଜ ମହତ ନାଇଁ ?

ଲଳିତା—ନଥିଲା ଯେ, ଏବେ ଆଜି ଚନ୍ଦ୍ରଶାଳା-ପୁରରେ ତମ ପାଖରୁ ଟିକିଏ ଟିକିଏ ଶିଖିବୁଁ ବୋଲି ପରା ଜଟି କୁଟି କହିଗଲେ ।

ଶ୍ରୀମତୀ—ଛି...

ବୃନ୍ଦା—ଚାଲ ଚାଲ, ସେ ଛି-ଛାରୁ କି ମିଳିବ ? ଆସ ବନ୍ଧୁ, ତମ ସଖୀଙ୍କୁ ତୁମେ ଉଠାଅ ।

(ଶ୍ରୀମତୀଙ୍କୁ ଓ ଶ୍ୟାମଙ୍କୁ କର ଧରାଇ ଠିଆକରାଇବା)

ଲଳିତା—ଧନି, ଟିକିଏ ଲାଜ ମହତ ଆମ୍ଭମାନଙ୍କୁ ଶିଖାଅ, ଏଣେ ଅନାଅ, ମୁହଁ ଟେକ । ଦେଖିଲ,

ଦେଖିଲ, ଅଙ୍ଗ ପୁଲକ ଉଠୁନାହିଁ ? ଗୃହାଁ, ଏ ପରଶ ସହୁଛ ଟି କ ?

ସମସ୍ତେ— ( ଗୀତ )

ଗୁରୁଚୂମ୍ବେ ଚେତ ଥରେ ଚତୁର ଗୃହାଁ,
ଧୀରେ ଧୀରେ ଭସିଆସେ ବସନ୍ତ ବାଆ । ଘୋଷା ।

କୁହୁ କୁହୁ ଗାଏ କଏ ହୃଆ ଚମକାଇ ଦଏ,
ମଞ୍ଜୁଳ ବଞ୍ଜୁଳ କୁଞ୍ଜରେ ଆହା ! । ୧ ।

ଅଧରେ ମିଳାଇ ଦେଇ ଦେବ ପୀରତି ଶିଖାଇ,
ଅନ୍ତରେ ଭସାଇ କ ପ୍ରେମର ନାଆ । ୨ ।

(ପଟକ୍ଷେପ)

---

## ଚତୁର୍ଥ ଅଙ୍କ

### ପ୍ରଥମ ଦୃଶ୍ୟ

[ କକ୍ଷ—ମଧୁମଙ୍ଗଳ ଗୋଟିଏ ଘାପ ହାତରେ ଧରି ଗୁରଆଡ଼ ଖୋଜିଲପରି ଗାଇ ଗାଇ ପ୍ରବେଶ ]

ମଧୁମଙ୍ଗଳ— ( ଗୀତ )

ଏ ଘୋର ଅନ୍ଧାର ରାତିରେ
ଖୋଜିବ କେଉଁ ଠାଆ ?
ଦେଖାନାହିଁ ସଖିପଲ ଶୁଭୁନାହିଁ ତ ଗହଳ
ଫୁଲିବ ଶୁଣିଲେ ଘ୍ରାତରେ ?
ଖୋଜ ଖୋଜ ଗୁରଆଡ଼ ହେଲ ଅସି ଝାଳନାଳ
କାହିଁ ଗଲେ ପ୍ରାଣସାଥୀରେ ?

ନନ୍ଦ, ନାଳ, ବଲମାଳ, ଗଛଡ଼ାଳ ଗୁରଆଡ଼ ତ ଖୋଜିଲି । ଖୋଜ ଖୋଜ ଆଲଯା ହେଲଣି । କେତେ ଖୋଜବ ଯେ ? କେଉଁଠି ଏବେ ସେମାନଙ୍କ ବସା ? ମିଳେ କେଉଁଠି ? କେତେ ଦାମ ? ତା ହେଲେ କ'ଣ ଜାଣେ । ଟିକିଏ ଥକାଟା ମେଣ୍ଟେଇନଏ ।

( ବସି ପଡ଼ଲେ—ଅନ୍ୟ ଦଗରୁ ବୃନ୍ଦା ଫୁଲମାଳ ଧରି ଗାଇ ଗାଇ ପ୍ରବେଶ )

ବୃନ୍ଦା— ( ଗୀତ )

ଆଉ ବାରିଜାକ୍ଷି, ବାରି ତୁ ଝରାନା ରେ,
ବରବରନା ତୋର ସୁନ୍ଦର ଶ୍ୟାମ ବର
ଦରହାସ ବନଧର କାମ
ରାଜିବ ରେ, ସଖି ଆକୁଳେ ଗଣ୍ଡ ଥିରନା ରେ ।

( ଗୀତମଧ୍ୟରେ ମଧୁମଙ୍ଗଳ ଘାପ ଧରି ଆସିବାର ଅଭିନୟ )

ବୃନ୍ଦା—କଏ ? ବଟୁ ନା ? କଉ, ଘାପ ଲଗାଇ କ'ଣ ଖୋଜିବୁଲୁଛ ?

ମଧୁମଙ୍ଗଳ—ଡମ ଗୋଠପାକଙ୍କୁ ଖୋଜୁଛୁ । ଅମଡ଼ା ମଡ଼ା, ନଈ ଅଡ଼ଡ଼ା, ଗୁରଆଡ଼ ଖୋଜ ଖୋଜ ଥକିଲଣି । ସଖା ଆମର ବେଶ ହେଲେ ଶଙ୍ଖ ବାଜିବ ଯେ କାଇଁ ଦେଖାଦର୍ଶନ ଅଛି ?

ବୃନ୍ଦା—ଘାପଟେ ତ ଧରିଛ କ'ଣ ?

ମଧୁମଙ୍ଗଳ—ଖୋଜୁଛୁ ପରା ? କେଉଁ ଅନ୍ଧାର କଣରେ କ ବଣରେ ସେ ପଲକ ଥିବେ । କାଳେ ଦେଖି ନ ପାରିବ ।

ବୃନ୍ଦା—ପଲ ହୁଅନ୍ତୁ କ ଗୋଠ ହୁଅନ୍ତୁ, ମଣିଷ ତ ସେମାନେ ଫେର୍; ଡାକଲେ କ'ଣ ଶୁଣନ୍ତେ ନାହିଁ ଯେ ଖୋଜୁଛ ଘାପ ଲଗେଇ ?

ମଧୁମଙ୍ଗଳ—ପାଟିକଲେ ପରା ବୁଢ଼ୀ ଜାଣିବ । ତୁନ ତୁନ ମନେ ମନେ ଖୋଜୁଛୁ ନା ! ତୁମେ କ'ଣ ମନେ କରୁଚ, ମୋର ଏଇତକ ବୁଦ୍ଧି ନାହିଁ ବୋଲି ! ମୁଁ ତ ଫେର୍ ଜଣେ ମଣିଷ !

ବୃନ୍ଦା—ଗୁଲ ଗୁଲ, ଜଣାଗଲା ତମ ବୁଦ୍ଧି ଘର ଟାଣ । ସଖିମାନେ କାହ୍ନୁଙ୍କୁ ବେଶ କରାଇ ମିଳନ-ଦୋଳା ସଜାଉଥିଲେ ।

ମଧୁମଙ୍ଗଳ—ତେବେ ଘାପଟା ଲଭେଇ ଦେଉଛୁ ?

ବୃନ୍ଦା—ହଁଅ ।

ମଧୁମଙ୍ଗଳ—ଫିଙ୍ଗି ଦେଉଛୁ ?

ବୃନ୍ଦା—ହଁଅ ।

ମଧୁମଙ୍ଗଳ—ସେଇଠୁ ?

ବୃନ୍ଦା—କେତେ ଫଟେଇ ହଉଥାଅ ମ ? ମୁଁ ପରା
ସେଇଠିକି ଯାଉଛି । ତୁମେ କ'ଣ ଯିବ ?
ମଧୁମଙ୍ଗଳ—ନାଃ, ମୁଁ ଆଉ କେମିତି ଯିବ ? ଖାଲି
ଖବରଟା ବୁଝି ପଲପାକଙ୍କୁ ଅଡ଼େଇ ନେଇ
ପହଞ୍ଚେଇ ଦେଲେ ମୋ କାମ ଶେଷ । ଆଜିର ଏ
ଘରଭିତର ଅନ୍ଧାର ମିଳନରେ ମୋର ଭାଗନାହିଁ ।
ତୁମେମାନେ ଯା, ଦେଖ, ଆନନ୍ଦ ହୁଅ ।
ବୃନ୍ଦା—ତେବେ ତୁମେ ତମ ବାଟ ଦେଖ; ମୁଁ ଗଲି ।
ମଧୁମଙ୍ଗଳ—ଯିବ ଯେ, ମିଳନଟା କେମିତି ହେବ,
ଟିକିଏ ହେଲେ କହିଦେଇ ଯା, ମୁଁ ଶୁଣି ଶୁଣି
ଆନନ୍ଦରୁ ବୋଡ଼ଏ ଦ'ବୋଡ଼ ନେଇଥାଏ ଭଲା !
ବୃନ୍ଦା—ଶୁଣିବ ତେବେ ?

( ଗୀତ )

ଝୁଲୁଥିବେ ମନମୋହନ ବାମେ ନାଗରତନ,
ଆକାଶେ ଅଚଳ ବିଜୁଳି ନୁହେଁ ତେତେ୍ ଯତନ ।
ମଧୁ—ଥିବଟି କି ଶ୍ୟାମ ମୁରଲୀ ଘଣ୍ଟ କରେ ତାମ୍ବୁଳ,
ନାଚୁଥିବେ ସବୁ ସଖିଏ ଘେରି ଗାଇ ମଙ୍ଗଳ ?
ବୃନ୍ଦା—ସେତିକି ତ ନୁହେଁ ବନ୍ଧୁ ହେ, କଟି କଙ୍କିଣୀ ଖେଳ,
କଣି ନେଲି କଣି ନେଲିଟି କରୁଥିବ ଚହଳ ।
ମଧୁ—ଧରୁଥିବ ସବୁ ତା ସଙ୍ଗେ ତାଳ ଗୁରୁ ଝୁଣ୍ଟିଆ,
ଚତୁରୀ ନାଗରୀମଣିର ସେ ତ କାମଘୁଣ୍ଟିଆ ।
ବୃନ୍ଦା—ବାଙ୍କଚୂଳ ଢଳୁଥିବ ଗୋ ବାମେ ଅଳପ ପୁଣି,
ଭୁବନମୋହନ ଗୃହାଣି ହେବ ଭୁଲିବ ଧନୀ ।
ହସି ରସି ଦିନ ଯାଉ ଗୋ, ମନମୋହନ ରସେ,
ଉତ୍ତର ନ ସହେ ବନ୍ଧୁ ହେ ଯାଉଛି ମୁଁ ହରଷେ ।
( ପ୍ରସ୍ଥାନ )
ମଧୁ—ଭାଗ୍ୟବନ୍ତୀ ଗୋପବାଳି ଗୋ ଦେଖୁଥାଅ ମିଳନ;
ଆଖିଆଗେ ମୋର ନାଚେ ଗୋ ରାଈ-ମନମୋହନ ।
( ଅନ୍ୟଦିଗେ ପ୍ରସ୍ଥାନ )

## ଉପସଂହାର

[ ଉଦ୍ୟାନରେ ଫୁଲଦୋଳାମଧ୍ୟେ ଯୁଗଳ ମୂର୍ତ୍ତି—
ସଖିଗଣ ଗାଇ ଗାଇ ଦୋଳା ଝୁଲାଉଥିଲେ ]

( ଗୀତ )

ମାଘ ଫାଲ୍‌ଗୁନ ମାସେ, ବସନ୍ତ ସମୀର ଗୋ ଆସେ
ହୋଲି ଖେଳେ ଶ୍ରୀମତୀ ମୋହନ ରେ ।
ଅଳସ ଯୌବନଭରେ ରାଈ କି ଶୋଭନ ରେ ସଖି !
ମଧୁର ମିଳନରେ ।
ଚୈତ୍ର ବୈଶାଖ ଋତୁ, ଗ୍ରୀଷମ ତପତ ଗୋ ଧରା
ଧନୀ ଗୋଳି କୁଙ୍କୁମ ଚନ୍ଦନ ରେ,
ସରମେ ଜଡ଼ିତ ଶ୍ୟାମେ କରେ ଆଲେପନ ରେ ସଖି !
ମଧୁର ମିଳନରେ ।
ଜ୍ୟେଷ୍ଠ ଆଷାଢ଼ ଘନ, ବରଷଇ ଘନ ଘନ
ବିଦ୍ୟୁ ଦେଖି ରାଧା ଛନ୍ନ ଛନ୍ନ ରେ,
ମରମେ ବ୍ୟଥିତ ସେ ମିଳେ ନିକୁଞ୍ଜକାନନରେ ସଖି !
ମଧୁର ମିଳନରେ ।
ଶ୍ରାବଣ ଭାଦ୍ରବ ଧାରା, ଝୁଲଣ ମଣ୍ଡପ ଗୋ ତୋଳା
ଝୁଲେ ରାଈ ମଦନମୋହନ ରେ,
ଲଳିତା ବିଶାଖା କରେ ଚାମର ଶୋଭନ ରେ ସଖି !
ମଧୁର ମିଳନରେ ।
ଆଶ୍ୱିନ କାର୍ତ୍ତିକ ଆସେ, ଧରଣୀ ପୁଲକେ ଗୋ ହସେ
ଫୁଟିପଡ଼େ ଶରଦର ଜହ୍ନ ରେ,
ମୁରଲୀ ମଧୁରେ ଡାକେ ରାଧା ରାଧା ନାମ ରେ ସଖି !
ମଧୁର ମିଳନରେ ।
ମାର୍ଗଶିର ପୌଷ ଶୀତ, ଶ୍ୟାମ ହେଲେ ଶୀତେ ଗୋ ଭୀତ
ତରୁଲତା ହେଲେ ଶୀତେ ଗୋ ମ୍ଳାନ ରେ
ଶ୍ରୀମତୀ ଅଧର-ମଧୁ ଶ୍ୟାମ କଲେ ପାନ ରେ ସଖି !
ମଧୁର ମିଳନରେ ।



# ଉତ୍ସର୍ଗ

ଅମର କବି ୬ ବଳଦେବ କବିସୂର୍ଯ୍ୟଙ୍କର ପବିତ୍ର ନାମ ଶିରୋଭୂଷଣ କରି ତାହାଙ୍କର ଐକାନ୍ତିକ ଶୁଭାଶିଷ କାମନାପୂର୍ବକ ଏ କ୍ଷୁଦ୍ର ଗ୍ରନ୍ଥ ଖଣ୍ଡିକ ଉତ୍ସୃଷ୍ଟ ହେଲା । "ସୂର୍ଯ୍ୟକର-ବିକଶିତ ଅରବିନ୍ଦଦ୍ୱାରା ଲୋକେ ଯେପରି ସୂର୍ଯ୍ୟଙ୍କର ପୂଜା କରନ୍ତି" ଏହା ସେତକ ମାତ୍ର ।

—ଲେଖକ

# ଭୂମିକା

ନମସ୍ୟ କବିବର କବିସୂର୍ଯ୍ୟଙ୍କର 'କିଶୋର ଚନ୍ଦ୍ରାନନ୍ଦଚମ୍ପୂ', ବୃନ୍ଦ ନ ବୃନ୍ଦ— ଉତ୍କଳରେ ସର୍ବତ୍ର ଆଦୃତ । ସଙ୍ଗୀତଜ୍ଞଙ୍କ କଣ୍ଠରୁ ଚମ୍ପୂର କେତୋଟି ଗୀତ ଶୁଣି ମୋ ମନରେ ପ୍ରଥମତଃ ଚମ୍ପୂର ଗୀତଗୁଡ଼ିକ ପ୍ରତି ଗୋଟାଏ ବିଶେଷ ଆକର୍ଷଣ ଆସେ । ଏହି ଗୀତଦଳ ଆରମ୍ଭ ଦିନରୁ ମୋର ପ୍ରବଳ ଆକାଂକ୍ଷା ଥିଲା ଚମ୍ପୂର ଗୀତଗୁଡ଼ିକ କିପରି ମନ୍ତ୍ରପ୍ରଣୀତ ତଥାକଥିତ ନାଟକଗୁଡ଼ିକ ମଧ୍ୟରେ ସ୍ଥାନ ପାଇପାରିବ; କେଣ୍ଡୁ ମୋର ନବାନୁରାଗ, କୌତୁକଚିନ୍ତାମଣି ପ୍ରଭୃତି ନାଟକରେ କବିସୂର୍ଯ୍ୟଙ୍କର କେତୋଟି ଗୀତ ସ୍ଥଳବିଶେଷରେ ସନ୍ନିବେଶିତ ହୋଇଅଛି । ଏହା ପରେ ଦିନେ ଅକସ୍ମାତ ଚମ୍ପୂକୁ ନାଟକାକାରରେ ପରିଣତ କରିବାର ତୀବ୍ର ବାସନା ବୈଶାଖ ମେଘଖଣ୍ଡ ପରି ମୋର ହୃଦୟାକାଶ ଅଧିକାର କରିବସେ । ବାସ୍ତବରେ ସେତେବେଳେ ମୋତେ ଆନନ୍ଦ ଆଉ ହତାଶା ଯୁଗପତ୍ ବଡ଼ ଆନ୍ଦୋଳିତ କରିବସନ୍ତି । କବିସୂର୍ଯ୍ୟଙ୍କର ଚମ୍ପୂ; ତାକୁ ପୁଣି ମୋପରି ଅଧମାଧମ ଅପରିପକ୍ୱ ଲେଖକର ଅସମର୍ଥ ଲେଖନୀ ସାହସ କରିଛି ନାଟକାକାରରେ ଗଢ଼ି ଜନସାଧାରଣଙ୍କ ସମ୍ମୁଖରେ ଦାଡ଼ିବାକୁ— ! ସେତେବେଳେ ଏତକ ସିନା, ମନ ଏକାବେଳକେ ମୋତେ ଉଦ୍ୟମର ଅନେକ ପଛକୁ ଟାଣିନିଏ । ନାନାପ୍ରକାର ସନ୍ଦେହରେ ପଡ଼ି ଦିନେ ସେହି କବିବରଙ୍କ ଚରଣୋଦ୍ଦେଶ୍ୟରେ ପ୍ରଣାମପୂର୍ବକ ଦୃଢ଼ ହୃଦୟରେ ଏହି ଚମ୍ପୂ ନାଟକ ଲେଖାର ଅଭିମାରମ୍ଭ ହେଲା । 'ଚମ୍ପୂର 'ମ' ଗୀତ ପର୍ଯ୍ୟନ୍ତ ନାଟକକୁ ଗଢ଼ି ସେହିଠାରେ ରାଧାକୃଷ୍ଣଙ୍କର ମିଳନ କରାଇ ମୋର ଗୀତଦଳଙ୍କୁ ଅଭିନୟ ଶିକ୍ଷା ଦେବାରେ ବ୍ୟାପୃତ ହେଲି । ଇତିମଧ୍ୟରେ ଉତ୍କଳର ସଙ୍ଗୀତ-ଚର୍ଚ୍ଚାର କେନ୍ଦ୍ରସ୍ଥଳ ଭିଙ୍ଗାରପୁର ଗ୍ରାମନିବାସୀ ମୋର ପରମ ଶ୍ରଦ୍ଧେୟ ହିତାକାଂକ୍ଷୀ ଶ୍ରୀଯୁକ୍ତ ପଦ୍ମଚରଣ ଦାଶ ମୋତେ କିଶୋରଚନ୍ଦ୍ରାନନ୍ଦ ଚମ୍ପୂକୁ 'ମ' ଗୀତଠାରେ ମିଳନ କରାଇ ଏଭଳି ବିକଳାଙ୍ଗ କରିବା କାରଣ ଇତ୍ୟାଦି ପଚାରି 'କ୍ଷ' ଗୀତ ପର୍ଯ୍ୟନ୍ତ ଦେଇ ଚମ୍ପୂକୁ ପୂର୍ଣ୍ଣାଙ୍ଗ କରିବାକୁ ଉପଦେଶ ଦେବାରୁ ତାଙ୍କ ପରାମର୍ଶ ଅନୁସାରେ ତଥାକରଣରେ ପ୍ରବୃତ୍ତ ହୋଇ ତା [illegible]ରେ ନାଟକ ଲେଖା ଶେଷ କଲି । ତାଙ୍କର ଅସୀମ ଚେଷ୍ଟା, ଯତ୍ନ ଓ ଉପଦେଶର ଫଳସ୍ୱରୂପ ଚମ୍ପୂ ନାଟକ ତଥା ନାଟ୍ୟକାର ତାଙ୍କ ନିକଟରେ ଆଜୀବନ ଋଣୀ ।

ଚମ୍ପୂର ନାଟକରେ ଗୀତଗୁଡ଼ିକ ପୂର୍ଣ୍ଣଭାବରେ ଦିଆଯିବା ଭଲ ସୁବିଧା ଦେଖିଲି ନାହିଁ । ପ୍ରତ୍ୟେକ ଗୀତର କେତେ ଚରଣ ନାଟକରେ ସନ୍ନିବେଶିତ କରି ବାକି ଚରଣ ଏବଂ ଶ୍ଳୋକଗୁଡ଼ିକର ଅର୍ଥ ମୋର ସାଧ୍ୟମତ ସରଳ ଭାଷାରେ ନାଟକୀୟ ପାତ୍ରବର୍ଗଙ୍କ ମୁଖରେ ଫୁଟାଇବାର ଚେଷ୍ଟା

କରାଯାଇଅଛି । ନାଟକ ଅଭିନୟଲାଗି ମୁଁ ଉତ୍କଳ-ସାହିତ୍ୟ ସମାଜର ସୁଯୋଗ୍ୟ ସମ୍ପାଦକ, ଉତ୍କଳ-ପ୍ରକୃତିର ଐକାନ୍ତିକ ଉପାସକ, ମୋର ପରମହିତୈଷୀ ଅକାରଣ ବନ୍ଧୁ ଶ୍ରୀଯୁକ୍ତ ଶଶିଭୂଷଣ ରାୟଙ୍କଠାରୁ ଯଥେଷ୍ଟ ଉତ୍ସାହ ପାଇ ଅନ୍ତରର କୃତଜ୍ଞତା ଜ୍ଞାପନ କରୁଅଛି ।

ଉକ୍ତ ନାଟକର ପ୍ରଥମ ଅଭିନୟ ଉତ୍କଳର ରାଜଧାନୀ କଟକ ସହରରେ ୯-୪-୩୨ ତାରିଖରେ ହୋଇଯାଇଅଛି । କବିବରଙ୍କ ଅନୁକମ୍ପାରୁ ଦର୍ଶକମଣ୍ଡଳୀ ପରମପ୍ରୀତି ଲାଭ କରିଥିବାର ସୂଚନା କେତେକ ଓଡ଼ିଆ ଖବରକାଗଜରୁ ଏବଂ ବିଶିଷ୍ଟ ସଙ୍ଗୀତ-ସାହିତ୍ୟ-ରସିକଜ୍ଞଙ୍କଠାରୁ ମିଳିଅଛି ।

ମୋର ଅକୃତ୍ରିମ ଅନ୍ତରଙ୍ଗ ବନ୍ଧୁ ଶ୍ରୀଯୁକ୍ତ ପଦ୍ମଚରଣ ଦାଶ ନାଟକର ମୁଦ୍ରଣଲାଗି ମୋତେ ଅନୁରୋଧ କରି ମୁଦ୍ରଣର ସମସ୍ତ ଭାର ପର୍ଯ୍ୟନ୍ତ ବହନ କରିଅଛନ୍ତି ।

କବିସୂର୍ଯ୍ୟଙ୍କର ପରମଭକ୍ତ, ସାଧକ ଏବଂ ଓଡ଼ିଆ ଭାଷାର ପ୍ରଧାନ ପୃଷ୍ଠପୋଷକ ପଣ୍ଡିତ ଶ୍ରୀଯୁକ୍ତ କୁଳମଣି ଦାଶ ଶର୍ମା ମହୋଦୟ ନାଟକର ମୁଖବନ୍ଧ ଓ ଶ୍ରୀଯୁକ୍ତ ଶଶିଭୂଷଣ ରାୟ ତାଙ୍କର ଅଭିମତଦ୍ୱାରା ଏହି ନଗଣ୍ୟ ଲେଖକର କ୍ଷୁଦ୍ର ପ୍ରଚେଷ୍ଟାକୁ ଅଳଂକୃତ କରି ଚରିକୃତାର୍ଥ କରିଅଛନ୍ତି ।

ଅବଧି କଟକରେ କ୍ରମାନ୍ୱୟରେ ତିନିବାର ଚମ୍ପୁ ନାଟକର ଅଭିନୟ ହୋଇଯାଇ-ଥିଲେହେଁ ମୋର ମନରେ ଗଭୀର ଦୁଃଖ ରହିଗଲା ଯେ ଏଠାରେ ଅନୁପସ୍ଥିତ ହେବାରୁ ଉତ୍କଳର ଭାଷାପ୍ରାଣଦାତା, ଓଡ଼ିଆ ଭାଷାକୋଷର ସଂଗ୍ରାହକ, ସଙ୍ଗୀତ-ସାହିତ୍ୟରସିକ ରାଜକଳ୍ପ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ମହୋଦୟଙ୍କର ଚରଣଧୂଳି ଲାଭରୁ ମୋର ଚମ୍ପୁର ରଙ୍ଗମଞ୍ଚ ବଞ୍ଚିତ । ପାଣ୍ଡୁଲିପିଟି ମାତ୍ର ସୁଯୋଗକ୍ରମେ ତାଙ୍କର ଦୃଷ୍ଟିରେ ପଡ଼ିପାରିଛି । ତାଙ୍କର ଆଶୀର୍ବିବମିଶ୍ରିତ ଖଣ୍ଡିଏ ଅଭିମତ ନାଟକର ଅଙ୍ଗସୌଷ୍ଠବ ସମ୍ପାଦନ କରିପାରିଛି । ଏହିଥିରେ ହିଁ ମୁଁ ଭାଗ୍ୟବାନ୍ ।

ମୋର ପ୍ରିୟ ଛାତ୍ର ଶ୍ରୀମାନ୍ ଜଗନ୍ନାଥ ମହାପାତ୍ର ରସଦଳଙ୍କୁ ମୋର ଏହି ନାଟକ ଶିକ୍ଷାଦାନ କାଳରେ ବିଶେଷ ସାହାଯ୍ୟ କରିଥିବାରୁ ମୁଁ ଅନ୍ତରର ଧନ୍ୟବାଦସହ ତାଙ୍କର ଭବିଷ୍ୟତର ଉନ୍ନତି କାମନା କରୁଅଛି ।

ପରିଶେଷରେ ଏହି 'ଚମ୍ପୁ' ନାଟକର ଅଭିନୟଦ୍ରଷ୍ଟା କଟକର ସର୍ବସାଧାରଣଙ୍କର ସ୍ନେହ-ସହାନୁଭୂତି ଲାଗି ମୁଁ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଅଛି ।

କଟକ
ତା ୨୪ । ୪ । ୩୨ } କାଳୀଚରଣ

# ମୁଖବନ୍ଧ

ଶ୍ରୀମାନ୍ ବାବୁ କାଳୀଚରଣ ପଟ୍ଟନାୟକଙ୍କ ପ୍ରଣୀତ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ନାଟକର କିୟଦଂଶ ମୁଁ ପଢ଼ିଅଛି ଏବଂ ଏହି ନାଟକ ତାଙ୍କ ରାସଦଳଦ୍ୱାରା ପ୍ରଥମେ ଯେଉଁଦିନ କଟକରେ ଅଭିନୀତ ହେଲା, ସେ ଦିନ ମୁଁ ତାହା ଦେଖିଅଛି । ସଙ୍ଗୀତ-ସାହିତ୍ୟରେ କାଳୀବାବୁଙ୍କର ଜନ୍ମଗତ ସଂସ୍କାର ଥିବା କଥା ମୁଁ ଆଗରୁ ଜାଣିଥିଲି ଏବଂ ତତ୍-ପ୍ରଣୀତ ଏହି ଅଭିନବ ନାଟକର ଅଭିନୟ ଦେଖି ମୋର ସେହି ଧାରଣା ଦୃଢ଼ୀଭୂତ ହେଲା । ମୁଁ ଏକା ନୁହେଁ, ସେ ଦିନ କଟକର ଯେଉଁ ଭଦ୍ରମଣ୍ଡଳୀ ତାଙ୍କ ନାଟକର ଅଭିନୟ ଦେଖିଥିଲେ ସେମାନେ ତାଙ୍କୁ ଶତମୁଖରେ ପ୍ରଶଂସା କରିଅଛନ୍ତି । ବିଶେଷତଃ ତାଙ୍କ ଅଭିନେତୃଦଳର ଅଧିକାଂଶ ଅପୋଗଣ୍ଡ ଶିଶୁ । ସେମାନେ ସେଦିନ ଭାବାନୁପ୍ରାଣିତ ହୋଇ ଯେଉଁସବୁ ଦୃଶ୍ୟ ଦେଖାଇଲେ, ତହିଁରେ କାଳୀବାବୁଙ୍କ କୃତିତ୍ୱର ଯଥେଷ୍ଟ ପ୍ରମାଣ ମିଳିଥିଲା ।

ମୁଁ ଯେତେବେଳେ ମହାତ୍ମା କବିସୂର୍ଯ୍ୟ ବଳଦେବ ରଥଙ୍କ ଜୀବନ ଓ ରଚନାବଳୀ ସମ୍ବନ୍ଧରେ ଆଲୋଚନା କରୁଥିଲି, ସେତେବେଳେ ଗଞ୍ଜାମ ଆଠଗଡ଼ଠାରେ ଶୁଣିଥିଲି ଯେ ଯେଉଁ ମହାକାବ୍ୟ ଖଣ୍ଡି 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ବାଲୁକେଶ୍ୱର ହରିଚନ୍ଦନଙ୍କ ନାମରେ ଭଣିତ ହୋଇଅଛି, ତାଙ୍କ ପୁତ୍ର ରାମଚନ୍ଦ୍ର ହରିଚନ୍ଦନ ପୁରୀ ଜିଲ୍ଲାର ସୁପ୍ରସିଦ୍ଧ ସଙ୍ଗୀତଲୀଳାକ୍ଷେତ୍ର ଭିଙ୍ଗାରପୁରରୁ ଦଳେ ସଙ୍ଗୀତନିପୁଣ ଗାୟକ ନିମନ୍ତ୍ରଣ କରି ବହୁ ବ୍ୟୟରେ ତାଙ୍କ ରାଜଧାନୀ ଆଠଗଡ଼ରେ ଏହାର ଅଭିନୟ କରାଇଥିଲେ । ତା'ପରେ ଏହି ଚମ୍ପୂ ଆଉ କେଉଁଠାରେ ନାଟକାକାରରେ ଅଭିନୀତ ହୋଇଥିବା କଥା ମୁଁ ଶୁଣିନାହିଁ । ସଂସ୍କୃତ ଭାଷାରେ "ଚମ୍ପୂ" ଶବ୍ଦର ଅର୍ଥ ଗଦ୍ୟପଦ୍ୟାତ୍ମକ କାବ୍ୟ । ଏହା ଏକାଂଶରେ 'ଶ୍ରାବ୍ୟକାବ୍ୟ' ଓ ଅପରାଂଶରେ 'ଦୃଶ୍ୟକାବ୍ୟ' ଶ୍ରେଣୀର ଅନ୍ତର୍ଗତ ହୋଇପାରେ । ଏହିହେତୁରୁ ମୁଁ ଏହାକୁ ମତ୍ପ୍ରକାଶିତ କବିସୂର୍ଯ୍ୟ ଗ୍ରନ୍ଥାବଳୀରେ 'ଗୀତନାଟ୍ୟ' ନାମରେ ଅଭିହିତ କରିଅଛି । ଯେତେବେଳେ କବିସୂର୍ଯ୍ୟ ଏହି ଚମ୍ପୂ ଲେଖିଥିଲେ ସେତେବେଳେ ଓଡ଼ିଆ ଗଦ୍ୟସାହିତ୍ୟ ଅତ୍ୟନ୍ତ ଅପକ୍ୱ ଅବସ୍ଥାରେ ଥିଲା । ତେଣୁ ସେ ଚମ୍ପୂର ଗଦ୍ୟାଂଶକୁ ସଂସ୍କୃତରେ ଲେଖିଥିଲେ । କାଳୀବାବୁ ତାଙ୍କ ପ୍ରଣୀତ ନାଟକରେ ସେହି ସଂସ୍କୃତ ଗଦ୍ୟର ଭାବ ଅବଲମ୍ବନରେ ଓଡ଼ିଆ ଗଦ୍ୟ ଦେଇ ତାହାକୁ ବର୍ତ୍ତମାନ ଯୁଗର ରଙ୍ଗମଞ୍ଚର ଉପଯୋଗୀ କରିଅଛନ୍ତି । କବିସୂର୍ଯ୍ୟଙ୍କ ଗୀତ ଓ ଗଦ୍ୟାଂଶ ଛଡ଼ା ସେ ଯୁଗରୁଚିର ଅନୁବର୍ତ୍ତନରେ କେତେକ ସ୍ୱରଚିତ ସଙ୍ଗୀତ ଓ ଗଦ୍ୟାଂଶ ମଧ୍ୟ ଏଥିରେ ସନ୍ନିବେଶିତ କରିଅଛନ୍ତି ଏବଂ ତଦ୍ଦ୍ୱାରା ସେ ନାଟକକୁ ଲୋକପ୍ରିୟ କରିବାକୁ ଚେଷ୍ଟା କରିଅଛନ୍ତି । ଏଭଳି କଲେହେଁ ସେ ମୂଳ-ବିଷୟ-ଚିତ୍ରକୁ (plot) ଅକ୍ଷୁଣ୍ଣ ରଖିଅଛନ୍ତି । ମଝିରେ ମଝିରେ ବିଭିନ୍ନ ରସର ଅବତାରଣା କରିବାରେ ସେ ଯେଉଁ କୃତିତ୍ୱ ଦେଖାଇ ଅଛନ୍ତି, ତାହା ମଧ୍ୟ ସର୍ବଥା ପ୍ରଶଂସନୀୟ । ତାଙ୍କର ଭାଷା ଓ ରଚନାକୌଶଳ ସର୍ବତ୍ର ସରସ, ମଧୁର ଓ ଚିତ୍ତାକର୍ଷକ । ମୋର ଆଶା, କାଳୀବାବୁ କେବଳ ଏହି ରାଧାକୃଷ୍ଣଲୀଳାକୁ ତାଙ୍କ ଦଳର ଅଭିନେୟ

ବିଷୟସ୍ୱରୂପେ ଗ୍ରହଣ ନ କରି ଅନ୍ୟାନ୍ୟ ବିଷୟ ଗ୍ରହଣ କଲେ ଓଡ଼ିଶାରେ ନାଟକ ଅଭିନୟର ଅଭାବ ଅନେକ ପରିମାଣରେ ଦୂର କରିପାରିବେ ଏବଂ ମାର୍ଜିତ ରୁଚି ଓ ଉନ୍ନତ ଭାବର ପ୍ରଶ୍ରୟ-ଦ୍ୱାରା ସମାଜର ପ୍ରଭୂତ ଉନ୍ନତି ସାଧନ କରିପିବେ । ଇତି ।

କଟକ
ତା ୨୩ । ୪ । ୩୨ } ଶ୍ରୀ କୁଞ୍ଜମଣି ଦାଶ

( ଦୁଇ )

'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ଉତ୍କଳର ଧନୀଙ୍କ ପ୍ରାସାଦଠାରୁ ଦରିଦ୍ରର ପର୍ଣ୍ଣକୁଟୀର ପର୍ଯ୍ୟନ୍ତ ସମାନଭାବରେ ଆଦୃତ; ମାତ୍ର ଏହାକୁ ନାଟକାକାରରେ ପରିଣତପୂର୍ବକ ଅଭିନୟର ଉପଯୋଗୀ କରି ସମସ୍ତଙ୍କ ସମ୍ମୁଖରେ ଅଭିନୟ କରିବାର ଉଦ୍ୟମ କିପରିଭାବରେ ସଫଳ ହୋଇଅଛି ଏହା ଦର୍ଶକମାନଙ୍କର ବିଚାର୍ଯ୍ୟ । ମୁଁ ସ୍ୱୟଂ ଏହି ଅଭିନୟ ଦେଖି ଧନ୍ୟ ଓ କୃତାର୍ଥ ହୋଇଅଛି । ମୁଁ ୧୯୦୧ ମସିହାରେ ଏହି 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ଟୀକାସହ ପ୍ରକାଶ କରିଥିଲି ଏବଂ ଏହାର ସମସ୍ତ ସଙ୍ଗୀତ ପୁଙ୍ଖାନୁପୁଙ୍ଖରୂପେ ଶୁଣି ଏଥିରେ ନିରନ୍ତର ମୁଗ୍ଧ ହୋଇଥିଲି । ମାତ୍ର ନାଟ୍ୟକାର କାଳୀଚରଣ ବାବୁଙ୍କର କୃପାଫଳରୁ ଏହାର ଚରିତ୍ରଗୁଡ଼ିକ ଯେପରି ହୃଦୟଗ୍ରାହୀ ହୋଇଅଛି ତାହା ଏକ ମୁଖରେ ବର୍ଣ୍ଣନା କରିବା ବିଶେଷତଃ ମୋ ପକ୍ଷରେ ଅସମ୍ଭବ; କାରଣ ଅଭିନୟର ସୁରୁଚି ବର୍ଣ୍ଣନା ଭାଷାର ଏକାନ୍ତ ଅତୀତ । କାଳୀଚରଣ ବାବୁ 'ଚମ୍ପୂ'ର ପ୍ରାଚୀନ ୩୪ ଗୀତ ସହିତ ତାହାଙ୍କର ସ୍ୱରଚିତ ପ୍ରାୟ ୩୦ ଖଣ୍ଡ ନୂତନ ଗୀତ ଏବଂ କଥାଗୁଡ଼ିକ ସଂଯୋଜିତ କରି ମହାରାଷ୍ଟ୍ର ଦେଶର 'ମଧୁରୁଚି' ନାମକ ଅତ୍ୟୁତ୍କୃଷ୍ଟ ଉପାଦେୟ ଖାଦ୍ୟରୂପରେ ଏହାକୁ ସର୍ବଜନ ସମକ୍ଷରେ ଉପସ୍ଥାପିତ କରିଅଛନ୍ତି—ଏହା କମ୍ ଗୌରବର କଥା ନୁହେ । ଏହା ମନର ଖାଦ୍ୟରୂପେ ସମସ୍ତଙ୍କୁ ସର୍ବଦା ଆନନ୍ଦ ପ୍ରଦାନ କରିବ ଓ କରୁଥିବ । ନୂତନ ଗୀତଗୁଡ଼ିକ ଅନୁପ୍ରାସମୁଖର ଓ ଅଳଙ୍କୃତ,—ଏହାର ଭାଷା ସ୍ୱଚ୍ଛ ଓ ପ୍ରାଞ୍ଜଳ, କେଉଁଠାରେ ଅସ୍ପଷ୍ଟତା ଅଥବା କୁହେଳିକା ନାହିଁ । ତାହାଙ୍କର ପ୍ରକୃତିବର୍ଣ୍ଣନା ମାନସ-ପ୍ରକୃତି ସହିତ ସମସ୍ୱରରେ ଗ୍ରଥିତ—ଅତୀବ ମନୋମଦ, ଭାବଦ୍ୟୋତକ ଓ ମର୍ମସ୍ପର୍ଶୀ । ନିପୁଣ ଚିତ୍ରକରଭଳି କାଳୀଚରଣ ବାବୁ ନିଜର ସାମାନ୍ୟ ଗଣ୍ଡି ମଧ୍ୟରେ ହିମାଚଳର ଅସୀମତା ଗ୍ରହଣ କରିଅଛନ୍ତି । ମୁଁ ଦର୍ପ କରି କହିପାରେଁ, ତାହାଙ୍କର ଗୀତସମୂହ ଦିନେ ଉତ୍କଳର ଜାତୀୟ ଗର୍ବ-ତୃପ୍ତିର ଅନ୍ୟତମ ଉପାଦାନ ହେବ ।

:

ପରିଶେଷରେ 'ଚମ୍ପୂ'ର ପ୍ରଣେତା କବିସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ଆଧୁନିକ କବିଗୁରୁଙ୍କ ଭାଷାରେ ମୁଁ ମଧ୍ୟ ନମସ୍କାର କରୁଅଛି :—

"ଧନ୍ୟ ସେହି ଯାର ଆଜ୍ଞା ଶିରେ ଧରି
ଏ ଲୀଳା ରଚନ୍ତି ଦେବୀ ବାଗୀଶ୍ୱରୀ ।"

କାଳୀଗଳି, କଟକ
୨୦ । ୪ । ୩୨
ଚୈତ୍ର-ପୂର୍ଣ୍ଣିମା } ଶ୍ରୀ ଶଶିଭୂଷଣ ରାୟ

# ଅଭିମତ

ଶ୍ରୀମାନ୍ କାଳୀଚରଣଙ୍କ ନାଟକାକାରରେ ପରିଣତ କିଶୋରଚନ୍ଦ୍ରାନନ୍ଦ ଚମ୍ପୂର ଅଭିନୟ ଦେଖିବାର ସୁବିଧା ଅବଧି ମୋର ଘଟିନଥିଲେହେଁ ତହିଁର ପାଣ୍ଡୁଲିପି ଦେଖିବାର ସୁଯୋଗ ମୋତେ ମିଳିଅଛି । କବିସୂର୍ଯ୍ୟଙ୍କ କିଶୋରଚନ୍ଦ୍ରାନନ୍ଦ ଚମ୍ପୂରେ ଓଡ଼ିଆ ସଙ୍ଗୀତର ମଧ୍ୟରେ ମଧ୍ୟରେ ସଂସ୍କୃତ ଗଦ୍ୟ-ପଦ୍ୟ ରଚନା ଗ୍ରନ୍ଥିତ ହୋଇଥିବାରୁ ଓ ଉକ୍ତ ସଂସ୍କୃତାଂଶ ଶବ୍ଦପାଣ୍ଡିତ୍ୟପୂର୍ଣ୍ଣ ଥିବାରୁ ତାହା ବର୍ତ୍ତମାନ ଯୁଗର ଜନସାଧାରଣଙ୍କ ପକ୍ଷରେ ବୁଝିବା କଠିନ ହୋଇପଡେ । ଏପରି ଅବସ୍ଥାରେ କବିସୂର୍ଯ୍ୟଙ୍କ ସଙ୍ଗୀତଗୁଡ଼ିକ ଅକ୍ଷୁଣ୍ଣ ରଖି ଆନୁପୂର୍ବିକ ଓ ଆନୁଷଙ୍ଗିକ ବିଷୟଗୁଡ଼ିକ ନାଟକାକାରରେ ଗଢ଼ି କାଳୀଚରଣ ଦେଶର ଗୋଟିଏ ଉପକାର କରିଛନ୍ତି ।

କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ନାୟକନାୟିକାଙ୍କର ପାର୍ଥିବ ବିଳାସ ବା କାମୁକର ଲାଳସାପୂର୍ତ୍ତିର ଚିତ୍ର ନୁହେଁ । ଏଥିରେ ଯେଉଁ ଗଭୀର ଭଗବତ୍‌ପ୍ରେମର ଅବତାରଣା ହୋଇଅଛି, ତାହା ହୃଦୟଙ୍ଗମ କରିବା ସାଧାରଣଙ୍କ ପକ୍ଷରେ ସହଜ ନୁହେଁ; କିନ୍ତୁ କାଳୀଚରଣ ତାଙ୍କ ନାଟକରେ ସ୍ଥାନେ ସ୍ଥାନେ ସେଥିର ସୂଚନା ଦେଇ ଏ ଦୁରୂହ ମାର୍ଗକୁ ଅନେକ ପରିମାଣରେ ସୁଗମ କରି ଦେଇଛନ୍ତି । ଉଦାହରଣ ସ୍ୱରୂପ ୧୦ମ ପୃଷ୍ଠାରେ ଲଳିତା ଯେଉଁଠାରେ କହୁଅଛନ୍ତି, "ଶ୍ରୀମତୀ ! ଶ୍ୟାମସ୍ନେହ ପାଇଁ ତୁମେ ନିଜକୁ ସୌଭାଗ୍ୟବତୀ ମଣୁଛ ସତ, ଆମେମାନେ ଆଜି କଥାଏ ଭାବୁଁ । ତମଠାରୁ ଆମେ ବେଶି ତପ କରିଛୁଁ—ନୋହିଲେ ଶ୍ୟାମ ଯାହାର କିଣା, ଶ୍ୟାମ ଯାହାର ପ୍ରେମରେ ବନ୍ଧା, ଆମେମାନେ ତାଙ୍କର ସେବାରେ ବ୍ରତ ନେଇଛୁଁ କିପରି ? ଭାଗ୍ୟ ତମର ନୁହେଁ ସହି—ଏ ଭାଗ୍ୟ ସତେ ଏକା ଆମରି ।"

ଭକ୍ତ ଭଗବାନଙ୍କର ଦାସର ଦାସ । ଭଗବାନଙ୍କ ଦାସର ମଧ୍ୟ ସେବା କଲେ ଭକ୍ତ କୃତାର୍ଥ ହୁଏ । ନିଷ୍କାମ ଭଗବତ୍‌ପ୍ରେମର ଏ ଗଭୀରତା ଆନନ୍ଦମୟ, ପ୍ରେମମୟ ଓ ଭକ୍ତିମୟ ।

ଯାହାହେଉ, କାଳୀଚରଣ ଏ ନାଟକର କେତେକ ସ୍ଥଳରେ ମୌଳିକ ସଙ୍ଗୀତମାନଙ୍କର ସାର୍ଥକତା ଜମାଇ ଦେଇ, ଲୁପ୍ତାଂଶମାନଙ୍କର ଭାବକୁ ନାଟକୀୟ ବ୍ୟକ୍ତିମାନଙ୍କର ମୁହଁରେ ପ୍ରସଙ୍ଗକ୍ରମେ କୁହାଇବାଦ୍ୱାରା ଦର୍ଶକମାନଙ୍କର ଧୈର୍ଯ୍ୟଚ୍ୟୁତି ନିବାରଣ କରିଅଛନ୍ତି ଓ କେତେକ ସ୍ଥଳରେ ଅସଲ ସଙ୍ଗୀତର ଭାଷା ଯେଉଁ ଯେଉଁଠାରେ ସାଧାରଣଙ୍କ ବୋଧଗମ୍ୟ ହୋଇ ନପାରିବାର ଆଶଙ୍କା ଅନୁଭବ କରିଅଛନ୍ତି, ତାହା ଏପରି କୌଶଳ ଓ ପରିପାଟୀ ସହକାରେ ସରଳଭାବରେ ଗଦ୍ୟରେ ଓ ଗୀତରେ ବୁଝାଇ ଦେଇଅଛନ୍ତି ଯେ ତାହା ଦେଖି ମୁଁ ମୁଗ୍ଧ ହୋଇଅଛି ।

ନାଟକରେ ମଧୁମଙ୍ଗଳର ମୁହଁରେ କାଳୀଚରଣ ଯେଉଁ ଭାଷା ଦେଇଅଛନ୍ତି ଓ ଅଭିନୟର ଯେଉଁ ଯେଉଁ ସ୍ଥାନରେ ମଧୁମଙ୍ଗଳକୁ ଆଣି ଠିଆକରାଇ ଦେଇଅଛନ୍ତି, ତଦ୍ଦ୍ୱାରା ଅଭିନୟର ମାଧୁର୍ଯ୍ୟ ଅନେକ ପରିମାଣରେ ବଢ଼ିଅଛି, ଏହା ସ୍ୱୀକାର କରିବାକୁ ହେବ ।

ପରିଶେଷରେ ମୋର ଏତିକି ବକ୍ତବ୍ୟ ଯେ ଉତ୍କଳାକାଶର କବିସୂର୍ଯ୍ୟ ନାମ ସାର୍ଥକକାରୀ କବିସୂର୍ଯ୍ୟଙ୍କ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ'ର ସଙ୍ଗୀତମାନଙ୍କୁ ଲକ୍ଷି ହେବାଭଳି କାଳୀଚରଣଙ୍କ ରଚିତ ସଙ୍ଗୀତମାନ ହୋଇଅଛି କି ନାହିଁ, ଏ ବିଷୟରେ ରାୟ ଦେବା ସମୟ ବର୍ତ୍ତମାନ ଆସିନାହିଁ—ଏହା ଭବିଷ୍ୟତ ସଙ୍ଗୀତ-ସାହିତ୍ୟରସାଭିଜ୍ଞମାନେ ସ୍ଥିର କରିବେ—ଏହା ସମୟସାପେକ୍ଷ ।

ମୂଳତଃ ଶ୍ରୀମାନ କାଳୀଚରଣ ଏ ନାଟକ ଖଣ୍ଡି ରଚନା କରିବାଦ୍ୱାରା 'କିଶୋର-ଚନ୍ଦ୍ରାନନ୍ଦ ଚମ୍ପୂ'ର ମାଧୁର୍ଯ୍ୟକୁ ବର୍ତ୍ତମାନ ଯୁଗର ରୁଚିକାମୀଙ୍କ ସାଧାରଣଙ୍କର ଅଧିକତର ଆଦରଣୀୟ ଓ ଉପଯୋଗୀ କରିଛନ୍ତି—ଏଥି ସନ୍ଦେହୋ ନାସ୍ତି—

କଟକ
୨୪ । ୪ । ୧୯୩୨ } ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

# ନିବେଦନ

ନାଟ୍ୟକାର ଓ ସଙ୍ଗୀତଜ୍ଞ କବିଚନ୍ଦ୍ର କାଳୀଚରଣଙ୍କ ସହିତ ମୋର ବହୁକାଳରୁ ନାନା କାରଣବଶତଃ ସମ୍ବନ୍ଧ । ତାଙ୍କର ସପରିବାର ସହିତ କଟକ ଅବସ୍ଥାନ କାଳରେ 'ଚମ୍ପୂ' ନାଟକ ଲେଖାବେଳରୁ ସେ ମୋତେ ବିଶେଷଭାବେ ନାଟକ ସହିତ ସଂପୃକ୍ତ କରି ଦେଇଅଛନ୍ତି । ଅବଶ୍ୟ ସଙ୍ଗୀତର ମୁଁ ବିଶେଷ କିଛି ନ ବୁଝିଲେହେଁ ଆବାଲ୍ୟରୁ ମୋର ହୃଦୟ କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ପ୍ରଭୃତିଙ୍କ ସଙ୍ଗୀତରେ ମୁଗ୍ଧ । ବର୍ତ୍ତମାନ କବିସୂର୍ଯ୍ୟଙ୍କର ସେହି 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ'କୁ ମୋର ପରମାତ୍ମୀୟ କାଳୀଚରଣ ବାବୁଙ୍କ ଅସୀମ ଚେଷ୍ଟାଫଳରେ ନାଟକାକାରରେ ଦେଖି ମୁଁ ଏହାର ପ୍ରକାଶର ଆଗ୍ରହ କୌଣସିମତେ ସମ୍ବରଣ କରିପାରିଲି ନାହିଁ । କାଳୀବାବୁ ମୋତେ ଏ ସୁଯୋଗ ଦେଇ ପୂର୍ବ ସମ୍ବନ୍ଧରଜ୍ଜୁ ଦୃଢ଼ୀଭୂତ କରିଅଛନ୍ତି—ଏଥିଲାଗି ମୁଁ ତାଙ୍କୁ ହୃଦୟର ଅନ୍ତରତମ ପ୍ରଦେଶର ସ୍ନେହ, ଆଶୀର୍ବାଦ ଓ କୃତଜ୍ଞତା ଜ୍ଞାପନ କରୁଛି ।

ସର୍ବସାଧାରଣରେ ଏହାର ଆଦର ହେଲେ ନିଜକୁ ଭାଗ୍ୟବାନ୍ ମଣିବି ।

କଟକ
ତା ୨୫ । ୪ । ୧୯୩୨ } ନିବେଦକ
ଶ୍ରୀ ପଦ୍ମଚରଣ ଦାଶ, (ଭିଙ୍ଗାରପୁର)
ପ୍ରକାଶକ

# ଦ୍ୱିତୀୟ ସଂସ୍କରଣର ଅଗ୍ରଲେଖ

କବିସୂର୍ଯ୍ୟଙ୍କର କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ବା କିଶୋରି-ଚମ୍ପୂ ଆମ ଓଡ଼ିଆ ଘରର ଏକ ଅମୂଲ୍ୟ ରତ୍ନ; ଏକଥା ସମସ୍ତେ ଏକ ମୁଖରେ ସ୍ୱୀକାର କରିବେ । କବିସୂର୍ଯ୍ୟଙ୍କ କାଳ ଆଜି ନାହିଁ । ତାଙ୍କ ସଙ୍ଗୀତର ଭାଷା ବୁଝିବାର ବା ଭାବ ଗ୍ରହଣ କରିବାର ଶକ୍ତି ତାଙ୍କ କାଳ ତୁଳନାରେ ଆଜି ଅଳ୍ପସଂଖ୍ୟକ ଲୋକଙ୍କର ଅଛି । ସେ ସଙ୍ଗୀତମୁଖର ସ୍ୱର୍ଣ୍ଣଯୁଗର ସୂର୍ଯ୍ୟ ଆଜି ମ୍ଳାନପ୍ରଭ । ଚମ୍ପୂ ଗୀତର ଆଦର ମଝିରେ କିଛିକାଳ ଆମ ଦେଶରେ ଊଣା ହୋଇଥିଲା । ଗୀତଗୁଡ଼ିକର ଅର୍ଥ ବୁଝିବା କଠିନ ହେଉଥିଲା । ଦେଖିଛୁ, ୧୯୩୨ ସାଲ ପୂର୍ବରୁ ସାଧାରଣ ଲୋକେ ଏ ଗୀତର ଯାହା ଅର୍ଥ ବୁଝୁଥିଲେ, ବର୍ତ୍ତମାନ ତାହାଠାରୁ ଢେର ବେଶୀ ବୁଝନ୍ତି । ଚମ୍ପୂ ଗୀତର ଯାହା ଆଦର ଥିଲା, ତାଠାରୁ ଅନେକ ଗୁଣରେ ଆଦର ମଧ୍ୟ ବଢ଼ିଯାଇଛି । ଏହାର ପ୍ରଧାନ କାରଣ କେବଳ ପ୍ରଚାର ବୋଲି କହିଲେ ଆଦୌ ଅଯୁକ୍ତ ହେବ ନାହିଁ । ଯେଉଁ ଇଚ୍ଛାରେ ମୁଁ ଚମ୍ପୂ ଗୀତଗୁଡ଼ିକୁ ନାଟକ ମଧ୍ୟରେ ଖଞ୍ଜି ୧୯୩୨ ସାଲରେ ପ୍ରଥମେ କଟକରେ

ମୋର ନାଟ୍ୟଗୁରୁଙ୍କ ଦ୍ୱାରା ଅଭିନୀତ କରିବି, ତାହା ଆଜି ସଫଳ ହୋଇଛି । ଗ୍ରାହକ, ସାହିତ୍ୟିକ, ସଙ୍ଗୀତଜ୍ଞ ଓ ସଙ୍ଗୀତ-ପ୍ରେମୀ ମାତ୍ରେ ଟିକିଏ ସୂକ୍ଷ୍ମଦୃଷ୍ଟିରେ ବିଚାର କଲେ ମୋ କଥାର ସତ୍ୟତା ଉପଲବ୍ଧି କରିପାରିବେ । ନାଟ୍ୟକାର ହିସାବରେ ମୋର କର୍ତ୍ତବ୍ୟ ମୁଁ କରୁଛି, କରିବି—ଏଥିଲାଗି ନିନ୍ଦା ବା ସ୍ତୁତି ବା ଗର୍ବ-ଗୌରବର ମୁଁ ଅପେକ୍ଷା ରଖିନାହିଁ; ରଖୁନାହିଁ ।

କିଛିକାଳ ପୂର୍ବେ ମୋର ପ୍ରଣୀତ ସେହି ଚମ୍ପୂ ନାଟକର ଅଭିନୟ ହେବାପରେ ମୋର ହଠାତ୍ ମନେ ନାଟକ ଗଢ଼ଣର କଥାବସ୍ତୁ (plot) ବଦଳାଇବା ବିହିତ ମନେ ହେଲା ଏବଂ ଏ ପରିବର୍ତ୍ତନ ମୁଁ କରିସାରିଅଛି । ତଦନୁସାରେ ୧୯୩୪ ସାଲଠାରୁ ଅବଧି ମୋର ସେହି ପରିବର୍ତ୍ତିତ ଚମ୍ପୂ ନାଟକର ଅଭିନୟ ପ୍ରଦର୍ଶିତ ହେଉଅଛି । ତାହାହିଁ ବର୍ତ୍ତମାନ ପ୍ରକାଶିତ ହେଲା । କାହିଁକି ପରିବର୍ତ୍ତନ କଲି, ସେ କଥା ମୋର ପୂର୍ବପ୍ରକାଶିତ ଚମ୍ପୂ ନାଟକ ଓ ଏହି ଅଭିନବ ପ୍ରକାଶ ଖଣ୍ଡ ପଢ଼ି, ଚମ୍ପୂ ଗୀତର ବିଷୟ ଅନୁଧାବନ କଲେ ସାହିତ୍ୟ-ରସିକମାନେ ବୁଝିପାରିବେ ।

ରଙ୍ଗମଞ୍ଚ ଯେ ସଙ୍ଗୀତ-ସାହିତ୍ୟର ବାସ୍ତବ ପ୍ରଚାରର ପନ୍ଥା, ଏ କଥାର ମୁଁ ଫଳତଃ ଅନୁଭବ କରି ଆଜି ତୃପ୍ତିଲାଭ କରିପାରୁଛି—ଏହାହିଁ ମୋର କବିସୂର୍ଯ୍ୟଙ୍କ ଚରଣ-ସେବାର ମୂଲ୍ୟ ।

ମୋର ଆଶା ଯେ ଏ ସଂସ୍କରଣଟି ହାତରେ ପାଇ ସଙ୍ଗୀତ-ସାହିତ୍ୟ-ରସିକମାନେ ପୂର୍ବବତ୍ ମୋତେ ସ୍ନେହଦୃଷ୍ଟିରେ ଦେଖି ଉତ୍ସାହିତ କରିବେ ।

ବିନୀତ

ଲେଖକ

# ପରିଚୟ

## ପୁରୁଷବର୍ଗ

ଶ୍ରୀକୃଷ୍ଣ (ନରଦେହଧାରୀ ନାରାୟଣ), ମଧୁମଙ୍ଗଳ (ଶ୍ରୀକୃଷ୍ଣଙ୍କ ପ୍ରିୟସଖା), ସୁବଳ, ସୁଦାମ ( ଗୋପବାଳକ—ଶ୍ରୀକୃଷ୍ଣଙ୍କ ଗୋଷ୍ଠଲୀଳା ସାଥୀ ), ମଦନ (କାମଦେବ) ।

## ସ୍ତ୍ରୀବର୍ଗ

ଶ୍ରୀମତୀ ( ନାରୀରୂପିଣୀ ଲକ୍ଷ୍ମୀ ), ଲଳିତା, ବିଶାଖା ( ଶ୍ରୀମତୀଙ୍କର ପ୍ରିୟ ସହଚରୀଦ୍ୱୟ ), ବୃନ୍ଦା, କୁନ୍ଦଲତା (ସଖୀମାନେ), ରତି (କାମ-ପତ୍ନୀ) ।



# କିଶୋରଚନ୍ଦ୍ରାନନ୍ଦ ଚମ୍ପୂ

( ନାଟକ )

## ପ୍ରସ୍ତାବନା

[ ବୃନ୍ଦାବନରେ ନିକୁଞ୍ଜ ଦୋଳା । କାଳ—ବସନ୍ତ । ରାକାରଜନୀ । ବନ, ଲତା ଫୁଲଭରରେ ଅବନତ । କୁଞ୍ଜଦୋଳାରେ ଶ୍ରୀକୃଷ୍ଣ । ଶ୍ରୀଚରଣରେ ଶ୍ରୀମତୀ ଏକାକିନୀ ଅର୍ଘ୍ୟ ବନ୍ଦାପନା କରୁଥିଲେ । ସଖିମାନେ ପ୍ରେମୋନ୍ମତ୍ତ; ସେମାନଙ୍କ ନୃତ୍ୟଗୀତରେ କୁଞ୍ଜବନ ଉଚ୍ଛୁଳ ଉଠୁଥିଲା । ସେମାନେ ଗାଉଥିଲେ—]

( ଗୀତ )

ମଞ୍ଜୁଳ ବନ ସାଜେ
କୋକିଳ କୁହୁ, ଝଙ୍କାରେ ଉହୁ
ବରହ୍ମୀ ପରାଣେ ବାଜେ ।
ମଳୟ ମଧୁ ମଧୁରେ ବହେ
କୁସୁମ ଗନ୍ଧ ବେରାଇ ନିଏ
ସାଗରେ, ନଗରେ, ଭୂଧରେ
ନଧର ଅଧରେ ମଧୁରେ ରାଜେ ।

---

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

[ ବ୍ରଜପଥ—ଅନତିଦୂରରେ ବୃଷଭାନୁପୁର ଦିଶୁଥାଏ । ବ୍ରଜବାଳକମାନେ ପୁରରୁ ଗୋଧନ ନେଇ ଆସୁଥିଲେ, ଗାଉଥିଲେ ଓ ନାଚୁଥିଲେ—ପଛେ ପଛେ ଶ୍ରୀକୃଷ୍ଣ ]

( ଗୀତ )

ନେଳୀ ମେଘେ ଏ କି ଛବି ସତେ
ଅଧା ଫିକା ଅଧା ନାଳିଆ,
ବୋଳିଦେଲା କିଏ ଯେମିତେ !
ମେଘତଳେ ଛପିଛପିକା
ନୂଆବୋହୂ ସିନ୍ଦୂରଟିକା,
ପଞ୍ଚୁରଙ୍ଗୀ ଶାଢ଼ୀଟି ପିନ୍ଧି
ଆଖିକୋଣେ ଚାହିଁଲା ମୋତେ । ୧ ।
ନାଲି ଓଠ ହସଟି ତାର
ସତେ ଏକା ଭାରି ସୁନ୍ଦର,
ଛୁଇଦେଲା ମେଘଟିଯାକ
ଚୋଖାରଙ୍ଗ ଅବିର କେତେ । ୨ ।
ସହଳିଆ ନୂଆବୋହୂଟି
ରାତ ଥାଉଁ ସାରେ ପାଇଟି,
ଆପେ ଉଠି, ସଭିଙ୍କି ଡାକେ
କାଉଠାରୁ କୋଇଲି ଯେତେ । ୩ ।

( ଦୋତାଲା ଉପରେ ଶ୍ରୀମତୀ ଚାଲିଯାଉଥିଲେ । ହଠାତ୍ ଆଖି ପଡ଼ିଗଲା ଶ୍ରୀକୃଷ୍ଣଙ୍କର ତାଙ୍କ ଉପରେ—ଥମକି ଗଲେ । ସତେ ଯେମିତି କ'ଣ ଗୋଟାଏ ଝୁଣ୍ଟିଲେ—ସେଇଭଳି ଉପରକୁ ଚାହିଁ ଚାହିଁ ଅଟକିଗଲେ । ସଖାମାନେ ଗୁଡ଼ ଚାଲିଗଲେଣି—ତେଣିକି ଜମା ନଜର ନାହିଁ । ମଧୁମଙ୍ଗଳ ଟିକିଏ ପଛରେ ଛେନା ଖଣ୍ଡେ ଖାଇ ଖାଇ ଆସୁଥିଲେ; ନଜର ନାହିଁ ଶ୍ରୀକୃଷ୍ଣଙ୍କ ଉପରେ । ପାଖଆଖ ହୋଇଗଲାବେଳକୁ ଚାହିଁଦିଅନ୍ତି ତ

ଶ୍ରୀକୃଷ୍ଣ ଦରବସା ହେଲାପରେ ଅଦୂର ବୃଷଭାନୁପୁରକୁ ଚକେଇ ରହିଛନ୍ତି । ଏସବୁ ଦେଖି ମଧୁମଙ୍ଗଳ ପଚାରିଲେ ଶ୍ରୀକୃଷ୍ଣଙ୍କୁ )

ମଧୁ—କଉ କାହ୍ନୁ, ସଖାମାନେ କାହାନ୍ତି ? ତୁମେ ପଛେଇଗଲ କାହିଁକି ଯେ ? ହେଲା କଅଣ ?

ଶ୍ରୀକୃଷ୍ଣ—(ଟିକିଏ ଅପ୍ରସ୍ତୁତ ହୋଇ) ନାଇଁ, ଝୁଣ୍ଟିପଡ଼ିଲି ସଖା !

ମଧୁ—( ଛଳ ଗମ୍ଭୀର ହୋଇ ) କେମିତି ? ଝୁଣ୍ଟି ପଡ଼ିଲ କେମିତି ?

ଶ୍ରୀକୃଷ୍ଣ—କ'ଣ କି ? ଦୋଷ ମୋ'ର ।

ମଧୁ—ତା' ତ ନିଶ୍ଚୟ, ଏଣେତେଣେ ଚାହିଁ ଚାହିଁ ଆସୁଥିବ । ଚଗଲା ନା—ମୋ ପରି ଏକାମନରେ ଚେହେନା ପଡ଼ୁଲିଟିକି ଚାହିଁ ଚାହିଁ ଆସୁଥିଲେ ଆଉ ଝୁଣ୍ଟାଝୁଣ୍ଟି ନ ଥାନ୍ତା—ନଜରଟା କେଉଁଠି ଥିଲା କି ?

( ଇତିମଧ୍ୟରେ ଦୋତାଲା ଉପରୁ ଶ୍ରୀକୃଷ୍ଣଙ୍କ ଭାବ ଲକ୍ଷ୍ୟ କରି ଲଳିତା ମୁରୁକି ମୁରୁକି ହସୁଥିଲେ । ତାଙ୍କ ମୁହଁରେ ଫୁଟିଉଠୁଥିଲା ଯେପରି କି ସେ ଏସବୁ ଟିକିଏ ଠଉରାଇ ନେଇଛନ୍ତି । ଆଉ ଏସବୁ କଥା ମଧୁମଙ୍ଗଳ ସଙ୍ଗେ କାହ୍ନୁଙ୍କର ଛଳନା ମାତ୍ର )

ଶ୍ରୀକୃଷ୍ଣ—କୋଉଠି ଆଉ କଅଣ ? ଆସୁ ତ ଥିଲି—

ମଧୁ—ଦେଖେଁ ଦେଖେଁ, କୋଉଠି କଅଣ ହେଇଛି ? (ଦେଖି) ସତେ ତ ! ଡିନପଲ ହବ ରକତ ବୋହିଯାଇଛି !

ଶ୍ରୀକୃଷ୍ଣ—ଯାଃ—ମୋର ତେଣେ କଅଣ ହଉଚି, ତମର ଖାଲି ଥଟ୍ଟା !

( ରୁଷିବା ପରି ଟିକିଏ ଅଭିମାନ କଲେ )

ମଧୁ—ଓହୋ ! ବୁଝିଲି, ବୁଝିଲି—ଉଚ୍ଚ ପିଣ୍ଡା ଦେଖି, ବଡ଼ଘର ଦେଖି, ଲୁଣ୍ଠିରୁ ଲାଳ ବୋହିଲା କି ? ଯୁା ତା ଘରେ ପଶି ଦହି ଟିକିଏ, ଦୁଧ ଟୋପିଏ ଚୋରି କରିବ ? ସେଇ ନଜରଟା ଚାଲିଛି, ନା ? ଜଣାଗଲା ଯେ ! ଚାଲ !—

ଶ୍ରୀକୃଷ୍ଣ—ହଁ, ତୁହେଁ କଅଣ, ଏଇଆ ତ ଖାଲି ମୋର ବେଉସା ?

ମଧୁ—ଓଃ, ରଖ ରଖ, ନଦେଖିଲା ଲୋକ ଦେଖେ—ନା, କଇଁଚ କାଡ଼ୁଛି ବେକ । ଆମକୁ ଯେମିତି କଛି ଜଣାନାହିଁ ! ଭାରି ଭଲ ଲୋକ ସିଏ !

ଶ୍ରୀକୃଷ୍ଣ—( ବିରକ୍ତି ପ୍ରକାଶ କରି ) ନ ହେଲେ ନାହିଁ, ଯା…

ମଧୁ—ଯା କଅଣ ହେ ? ଯାହା କହିଲ ମୁଁ, ତୁହେଁ ?

ଶ୍ରୀକୃଷ୍ଣ—ନା ।

ମଧୁ—ନା ? ତେବେ ଝୁଣ୍ଟା ତୁହେଁ; ସିଏ କଣ୍ଟା—

( ଗୀତ )

ଲୋକେ ହସିବେ ଶ୍ୟାମ ତମ କଥା ଅକ୍ଷମ
ଜାଣିଲି ଜାଣିଲି ମୁଁ ଚାଲ ହେ !
ନିପଟ ହିନଟାରେ ଟାଙ୍ଗର ଭୂଇଁଟାରେ
ଝୁଣ୍ଟିବା ସତ କି ହସ୍ତର ହେ ।
ଏ ତୁହେଁ ପଥଝୁଣ୍ଟା ସ୍ତନପଟକୁ କଣ୍ଟା
ନୋହିଲେ ତେଣା ମୁନା-ଭାଲ ହେ !
ଲୁଚିପଡ଼ୁଛି ମୋତେ ଜାଣିନାହିଁ କି କେତେ
ପରଘର ଚୋର ବେଭାର ହେ ?
ମୋତେ ଠକିଲ ଭଲ ସେ କଥା ସୁହାଗଲା,
ହସିବେ ଏ ବ୍ରଜ ବଜାର ହେ ।

( ଶ୍ରୀକୃଷ୍ଣଙ୍କ ସେଠୁ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

[ ବ୍ରଜପଥ-ଜଳଘଟହସ୍ତେ ଶ୍ରୀମତୀ ଓ ସଖିଗଣ ]

ସଖୀଗଣ— ( ଗୀତ )

ସଜ ସରସିଜମୁଖୀ—ମୋ ସଖି ରେ,
ନିପମୂଳକୁ ନ ଥିଲୁ କି ଦେଖି ରେ
ଅନାଁ, ଆଖି ଚୋରି ଯିବ ଲାଗି, ମୋ ସଖି ରେ । ୧ ।

ସାରସରାଜ-ଗମନା— ନୟନା ରେ
କନକଲତା କି ଜଡ଼ୁଛି ଅନା ରେ
ଅଳି ଚୁମ୍ବିକୁ କରୁଛି ମନା, ମୋ ସଖି ରେ । ୨ ।
ଯମୁନା ତଟ କେସନ—ମୋ ଧନ ରେ
ଧୀରେ ମଥା ଟେକି ଲହରୀମାନ ରେ
ସତେ କରୁଛି କି ଅଭିମାନ, ମୋ ସଖି ରେ । ୩ ।
ବନେ କର ନବବାଳ—ସଙ୍ଗାଳ ରେ,
ତୋଳିବା ସୁମନେ ବନ ନିଆଳରେ
ଗୁନ୍ଥି ଦେବ ତୋ ଗଳାକୁ ମାଳ, ମୋ ସଖି ରେ । ୪ ।
( ଗାଇ ଗାଇ ଚାଲିଗଲେ )

---

## ତୃତୀୟ ଦୃଶ୍ୟ

[ ଯମୁନାତଟ—ସଞ୍ଜ ହୋଇଆସିଲାଣି । ଗୋଠ-ବାହୁଡ଼ା ବେଳ; ଉଚ୍ଛୁର ହୋଇଯାଉଛି—କାହ୍ନୁଙ୍କର ଦେଖାନାହିଁ । ମଧୁମଙ୍ଗଳ ତାଙ୍କ୍ ଖୋଜ ବଡ଼ ବ୍ୟସ୍ତ ହୋଇ ଶେଷରେ ଯମୁନାତଟରେ ପହଞ୍ଚି, ସେଠି ମଧ୍ୟ ପାଇଲେ ନାହିଁ । ନିତାନ୍ତ ବିରକ୍ତ ହୋଇ ଥକାମରା ପରି ବସିପଡ଼ିଲେ ]

ମଧୁ—(ସ୍ୱଗତ) ଛିଃ, ଆଉ ପାରିବ ନାହିଁ । ବ୍ରହ୍ମାଣ୍ଡ ଗୋଟାକଯାକ ତ ବୁଲି ଆଇଲି, ଦେଖାନାହିଁ । କାହାକୁ ନ କହି କୁଆଡ଼େ ଯେ ଚମ୍ପଟ୍, କିଏ ଜାଣେ ? ଖଞ୍ଜ ଦେଖି ସେଇ ଘରକୁ—ନ ହେଲା-ବେଳକୁ ଦହି, ଦୁଧ ଚୋର କରିବାକୁ ଯାଇଥିବେ । ଉଣା ତ କୋଉ-କଥାକୁ ନୁହନ୍ତି ! ଆଜି ଏକା ଗୋଠକୁ ଆସିଲାବେଳୁ ସେ କାହିଁକି ଗୋଠଛଡ଼ା ବାଛୁରୀପରି ଭାରି ମନ ଉଡ଼େଇ ବସିଲା ବସିଲା ଭଳି ଲାଗୁଥିଲା ! କଥାଟା କ'ଣ ? ଡାକେଁ ଏଠି ଆଉ ଥରେ !

(ଛୁଟିପଡ଼ି ନଈକୂଳକୁ ଚାହିଁ ଡାକିଲେ, ଉତ୍ତର ନ ପାଇ ବିରକ୍ତ ହୋଇ ପୁଣି ବସିପଡ଼ିଲେ )

ଯାଃ, ଅସିଲେ ଆସୁ—ନୋହିଲେ ନାହିଁ ।

( ଏତିକିବେଳେ ଦୂରରୁ ଶ୍ରୀକୃଷ୍ଣଙ୍କ ଗୀତ ଶୁଭିଲା—ମଧୁ କାନେଇଁ ରହିଲେ )

ଶ୍ରୀକୃଷ୍ଣ— ( ଗୀତ )
ଗୋଧୂଳି ଗଗନତଳ—
ପଛାଶ ଆସିବ କହିଥିଲା କାହିଁ,
ଚାହିଁ ଚାହିଁ ଗଲା ବେଳ । ଘୋଷା ।
ଭୁଲିଲା କି ସେ ଗୋ ମୋତେ
ସେ ଦିନର ସବୁ ସତେ ?
ଶତକ ଯୁଗର ଉଚ୍ଛୁଳା—
ମରମ ଚୋରା ମନକଥା ଯେତେ
ଛଳ ଛଳ ଆଖିଜଳ । ୧ ।
କୁଞ୍ଜ ବଉଳତଳ
ଭରିଲା କୁସୁମଦଳ
ଶେଜ ଛାଇଲାଣି ମଳୟମଧୁର ସିଞ୍ଚି ମହୁଆ ଜଳ ।
ଲୁଚି ଲୁଚି ଆସେ ଖରା
ଚାହିଁବ ପହିଲ ତାରା
ଉଇଁବ ଅନ୍ଧାରେ, ଆଉ କି ଆସିବ
ସେ ତ ପରଘରବାସୀ—
ନିରଜନ—ବନସ୍ଥଳ । ୨ ।

ମଧୁ—(ଦୂରରୁ ଶ୍ରୀକୃଷ୍ଣଙ୍କର ଗୀତ ଶୁଣି କାନେଇଁ ଆନନ୍ଦ ଉପଭୋଗ କରୁଥିଲେ ) ଏ ତ ସେଇ ଖଣ୍ଡିକ ! କୁଆଡ଼େ ଡଙ୍ଗାଖଣ୍ଡେ ନେଇ ଚାଲିଛି ମେଳି ! ତା'ର କଅଣ ?

( ଦୂର ଗୀତ କ୍ରମେ କ୍ରମେ ନିକଟରେ ଶୁଭିଲା—କଦମ୍ବ ତରୁତଳରେ ଯେତେବେଳେ ଡଙ୍ଗା ଲାଗିଲା ମଧୁ ଡାକିଲେ ) ନଟବର ! ଟିକିଏ ପଶ୍ଚିମକୁ ଅନାଅଁ, ଗୋଠବାହୁଡ଼ାକୁ ମନଟି ନାଇଁ କି ? ଯମୁନା ନଈ ସାଙ୍ଗରେ ଗୀତର ସୁଅ ମିଶାଇଦେଲ ଯେ ! ଖଟାଅ, ଖଟାଅ—ଡଙ୍ଗା ଖଟାଅ, ମୁଁ ଯାଉଛି—(ଉଠିଲେ)

ଶ୍ରୀକୃଷ୍ଣ—ଆସ, ଆସ, ସଖା ! ଆଜି ଥରେ ବୁଲିଯିବା । ତମକୁ ପାରିକରାଇ ଦେବି । ଆଗମ ବାଆ ବହୁଛି, ହାତଗୋଡ଼ ଲାଗିବାକୁ ନାହିଁ । ଜମା ଭିଡ଼

ପଡ଼ୁନାହିଁ, ଖାଲି ମଙ୍ଗ ଧରିଲେ ଗ୍ଭଲିଲା । ଆସ, ଆସ, ଏକୁଟିଆଟା ସଚେ ଏକା ମନ ଲାଗୁନାହିଁ ।

ମଧୂ—ମରଯାଏଁ କର୍ମା ସୁଅଗ ! କେଡ଼େ ସୁଖ ପାଅ ସଚେ ? ସେଇଥିପାଇଁ ପରା ଆପଣାର ଭୁକ୍ତହୋଇ, ଖସିଆସି ନାଆ ମେଲିଦେଇଛ ? ନା ? ଦେଖିଲାରୁ—ସୁହାଗ ବୋହିପଡ଼ୁଛି ! ଗ୍ଭଲ ଆଜ ମାଆଙ୍କ ପାଖକୁ । ତମ ଏକୁଟିଆ ନାଆବୁଲାଟା ଛଡ଼େଇ ଦଉଛି ଯେ !

ଶ୍ରୀକୃଷ୍ଣ—ରାଗ ନାହିଁ ସଖା, ତମକୁ କଅଣ ମୁଁ ଖୋଜି ନାହିଁ ? ପାଇଲି ନାହିଁ ! ଏଣେତେଣେ ବୁଲି କୋଳି ଖାଇ ଆସୁ-ଆସୁ ଡଙ୍ଗାଟା ଦେଖି, ମନ-ହେଲା ନାଆ ଖେଳିବାକୁ, ଆସ ଆସ ।

ମଧୂ—ଆଚ୍ଛା, ଆଚ୍ଛା, ଡଙ୍ଗା ସେହି କଦମ୍ବମୂଳେ ଖଟାଅ । ମୁଁ ବୁଲି କରି ସେବାଟେ ଯାଉଛି । ଗଲେ କଥାବାର୍ତ୍ତା ସିନା !

( ଦୌଡ଼ି ଗ୍ଭଲିଗଲେ )

( ଆଗେ ଆଗେ ଶ୍ରୀମତୀ ପଛରେ ସଖୀଗଣ ଜଳ-ଘଟ ନେଇ ଆସୁଥିଲେ—ଶ୍ରୀମତୀଙ୍କ ଦୃଷ୍ଟି ପଡ଼ିଲା ଶ୍ୟାମଙ୍କ ଉପରେ; ଚମକି ପଡ଼ିଲେ । ପଛରେ ସଖୀମାନେ ମଧ୍ୟ ଟିକିଏ ଅଟକିଗଲେ ତାଙ୍କ ଗ୍ଭଲିର ଗତି କମିଯିବାରୁ । ଶ୍ରୀମତୀଙ୍କୁ ବିଶାଖା ପଗ୍ଭରିଲେ । )

ବିଶାଖା—ରହିଗଲ କାହିଁକି ? କ'ଣ ହେଲା ସହି ? ଝୁଣ୍ଟିଲ କି ?

ଶ୍ରୀମତୀ—( ମୁଖ ପାଖରୁ ଆଡ଼େଇବା ପରି ) ନାହିଁ ସହି, ସେ କିଏ ସଖି ? କପରି ଯିବ ?

ସଖୀଗଣ—କଅଣ ? କିଏ ?

ଲଳିତା—( ଶ୍ରୀକୃଷ୍ଣଙ୍କ ଉପରେ ନଜର ପଡ଼ୁଛି ତା'ର । ଆଗଭର ହୋଇ ଆସି ) ଓହୋ ! ଯାକୋଇ ଡରୁଛ ? ଠିକ୍ ହେଇଛି । ମୁହିଁସଞ୍ଜବେଳଯାଏ ଭଜୁରି କର କାହିଁକି ? ( ହସିଲା )

ଶ୍ରୀମତୀ—ଓଃ, ଆରେ ଆରେ, କିଏ ମ ଇଏ ?

ଲଳିତା—( ଗାଇଲେ ପରିହାସରେ )

( ଗୀତ )

ଅମାନିଆ ଭଅଁର ଗୋ, ଏଇ ସଞ୍ଜବେଳେ
ଅଳି କରେ ମଧୂ ଆସେ ତୋ ମୁଖ କୋମଳେ (ଭୁଲି)।୦।
ସାଗ୍ଭବନ ଏଣେତେଣେ ବୁଲି ମଧୁ ଗ୍ଭଖି
ଆକୁଳେ ଫେରୁଛି କଞ୍ଜ ମଉଳିଛି ଦେଖି,
ଭ୍ରମେ ପଡ଼ୁଛି, ନାହିଁ ଦୋଷ ତାର ଭଲେ (ରାଧେ) ।୧।

ରାଧା—ଛିଃ, ଛିଃ, ପରିହାସ କରିବାକୁ ବେଳ ମିଳିଲା ତୋତେ ? କହନା ତାକୁ, ଦୂରକୁ ଯିବାକୁ ।

ଲଳିତା—( ଗାଇଲା )

କାହାର କି ଦୋଷ ସଚେ କହ କି କରିବୁ ?
ଶିଖାଇ କେ ନାହିଁ ସହି, ଅଭିମାନୀ ହେବୁ
ତୋତେ କି ସାଜିବ ଅଳି କରାଣେ ଫେରିଲେ ? ।୨।

ରାଧା—( ଏକଦୃଷ୍ଟିରେ ଶ୍ୟାମରୂପ ଦେଖୁଥିଲେ; ମାତ୍ର ଲୋକ ଜାଣିବାକୁ ଛଳରେ ଲଳିତାକୁ କହିଲେ ) ଛିଃ ! ଘର ଦୁଷ୍ଟ ହେଲୁଣି ତୁ ।

( ଗ୍ଭହିଁ ଗ୍ଭହିଁ ଗ୍ଭଲିଗଲେ )

---

## ଚତୁର୍ଥ ଦୃଶ୍ୟ

[ ବନପଥ । ମଧୂ ଏଣେତେଣେ ଗ୍ଭହିଁ ଆସିଲେ ]

ମଧୂ—ନାଆ ବାନ୍ଧୁ-ବାନ୍ଧୁ ଘଡ଼ିଏ ! ଗ୍ଭଲୁ-ଗ୍ଭଲୁ ପହଡ଼େ—ଏମିତି ତ ନଥିଲା ବାବା ? କି ରୋଗ ଘୋଟିଲା ସ୍ୱାଙ୍କୁ ! ସବୁ ଚକୁଳିପିଠା ପରି ଓଲଟି-ଗଲା ! ମୁଁ କହୁଛି ଗ୍ଭଲ, ବେଳ ଗଲା—ନା ମୋତେ କୁହାହଉଛି ଆଗରେ ଗ୍ଭଲ ? ତମର କାମ କ'ଣ ଅଛି ? ନାଃ, କିଛି ଭିତରି ମାମଲତ ଅଛି । ଏଇକ୍ଷଣି ମୋତେ ଟିକିଏ ଆଉ ଧାରଣା ହଉଆହେଉଛି—ବାକି, ଫିଟିବ ଯେ ସବୁ ।

(ଦୂରରେ ଗୀତ)

କିଏ ? ଏ ଫେର୍ କିଏ ? ଆଚ୍ଛା, ଆଗେଇ ଚାଲେଁ—ଜଣାଯିବ ଯେ ! ( ପ୍ରସ୍ଥାନ )

( ବ୍ରଜବାଳାଗଣଙ୍କର ପ୍ରବେଶ )

( ଗୀତ )

ଧୀରେ ଚାଲ, ଚାଲ ଚାଲ, ବ୍ରଜନାରୀ
ବ୍ରଜନାରୀ-କଞ୍ଚାସୁନାଗୋରୀ,
କୁମ୍ଭ ଅତି ଭାରୀ, ଭରି ଯମୁନା ବାରି ।
ବଉଳ କୁଞ୍ଜ ଚାରୁ ଫୁଲ ମହକ
ପ୍ରାଣେ ପ୍ରାଣେ ଆଣିଦିଏ ପୁଲକ,
କାମବାଣେ ଦିଏ ଘାରି ।

( ନାଚି ନାଚି ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

[ ଉଦ୍ୟାନ-ବାଟିକା—ବଉଳ ଗଛତଳେ ବେଦୀ-ଉପରେ ବସିଥିଲେ ଏକୁଟିଆ ଆନମନା ଶ୍ରୀମତୀ; ପାଖରେ ଥିଲା ଫୁଲଗୁଡ଼ିଏ । ଶ୍ରୀମତୀ ଫୁଲ ଗୁନ୍ଥୁଥିଲାବେଳେ ଦୂରରୁ ବଂଶୀଧ୍ୱନି ଶୁଣି ଚମକି ଉଠିଲେ । ନିକଟସ୍ଥ ପ୍ରକୃତିର ନାନା ଦୃଶ୍ୟପ୍ରତି ନଜର ନ ଦେଇ ଏକାଧ୍ୟାନରେ ଶୁଣୁଥିଲେ ବଂଶୀଧ୍ୱନି—ଅନ୍ତରାଳରେ ଥାଇ ଲଳିତା ସମସ୍ତ ଲକ୍ଷ୍ୟ କରୁଥିଲେ । କିଛିକ୍ଷଣ ପରେ ଭାବୋନ୍ମତ୍ତା ଶ୍ରୀମତୀ ଗାଇଲେ—]

ଶ୍ରୀମତୀ— ( ଗୀତ )

ଘରୁ ମୋର କାଲେ ପଳାଇଯିବ ସେ
ଦୁଆର ମେଲିବି ନାହିଁ,
ମନସାଧ ମୋର ମନେ ମରୁ ପଛେ,
ତା' ଗୁଣ ଗାଇବି ନାହିଁ ।
ନାଆଁ ଧରି ତାର ଡାକିବି ନାହିଁ ମୁଁ
ଆଉ ଯଦି କିଏ ଜାଣେ—
ଭାରି ଅଭିମାନୀ କେତେ ମୁଁ ଖୋଜିବି ?
ଲୁଚିବି ଅନ୍ଧାରକୋଣେ ।
ହିଅଁ ଘରେ ତାକୁ ବନ୍ଦୀ କରିଥିବି
ବାନ୍ଧି ବାସ ଫୁଲହାରେ—
ଧୂପଟି ଜାଳିବି, ଜଗି ବସିଥିବି
ତାହାରି ଚରଣତଳେ ।

ଲଳିତା—(ଅନ୍ତରାଳରୁ ଡାକିଲେ) ସହି !

( ଶ୍ରୀମତୀ ନିରୁତ୍ତର । ଲଳିତା ଧୀରେ ଧୀରେ ନିକଟକୁ ଆସି ପଛରୁ ଆଖି ମୁଦିଧରିଲେ )

ଶ୍ରୀମତୀ—(ଚମକି ପଡ଼ି) କିଏ ?

ଲଳିତା—(ହାତ ଛାଡ଼ି ଦେଇ ପଛପଟୁ ଚାହିଁ କହିଲେ) ମୁଁ ଗୋ !

ଶ୍ରୀମତୀ—ସହି ! ଆ, ଆ—

(ପାଖକୁ ଟାଣିନେଲେ)

ଲଳିତା—ଯିବି ଯେ—କହିବଟି ଆଗ ! ଆଜି କାହିଁକି ବଡ଼ ଏକା ଏକା···

ଶ୍ରୀମତୀ—ନାଇଁ—ଏଇ···ବସିଛୁ ତ !

ଲଳିତା—ବସିଛ ତ ? ତା କ'ଣ ମୋତେ ଦିଶୁନାହିଁ ?

ଶ୍ରୀମତୀ—ଆଉ ?—

ଲଳିତା—ନାଇଁ, ବସିଛ ଠିକ୍, ବାକି ଏ ବସାଟା-ଟିକିଏ ଅଲଗା ରକମର କେମିତି !

( ଗୀତ )

ଢଳଢଳ ନୟନ ଗୋ ! ଛଳଛଳ କାହିଁକି
ଅଶ୍ରୁଚଳ ନଭତଟ ଚାହେଁ ?
ଆନମନେ ସଖି ! ଗାଉ କି ସଂଗୀତ ?
ଆନ ଭାବ ଉପୁଜାଏ ।
ଶିଥିଳ ମାଳାଞ୍ଚଳ ଶିଥିଳ କବରୀ ଗୋ
ପାଣ୍ଡୁର ଗଣ୍ଡ ନସାଜେ,
କହ, କୁସୁମେ ସଖି ! କୀଟ କି ଦଂଶିଛି
ଅନ୍ତରେ କି ସୁର ବାଜେ ?

ଶ୍ରୀମତୀ—ନାଇଁ ତ, ସଖି ! (ହସିବାକୁ ଚେଷ୍ଟା କଲେ)

ଲଳିତା—ଠକାଠକି ମୋ ପାଖେ ବଡ଼ ସହଜ ନୁହେଁ । ଜାଣେ, ଜାଣେ—ଲଳିତା ହସଚିହ୍ନ ଜାଣେ ସବୁ !

ଶ୍ରୀମନ୍ତୀ—ଠିକ୍ ତ ନାହିଁ କିଛି, ସବୁ ଦିନେ ଯାହା, ଆଜି ତ ସେଇଆ ।

(ଉଭୟଙ୍କୁ ଉଭୟେ ଟିକିଏ ଚାହିଁଲେ)

ଲଳିତା—(ଅଭିମାନ କଲାପରି ମୁହଁ ଫେରାଇ) ଫେର୍ ସେଇ କଥା ?

ଶ୍ରୀମନ୍ତୀ—(ଟିକିଏ ମନକଷ୍ଟ ହେବା ପରି ଦୀର୍ଘନିଶ୍ୱାସ ପରେ ମୁହଁ ଫେରାଇ) ଲଳିତେ…

ଲଳିତା—(ଚାହିଁ, ଟିକିଏ ନୀରବ ରହି) କହିବ ନାହିଁ ତେବେ ?

ଶ୍ରୀମନ୍ତୀ—( ଆଦରରେ ) କହିବ ନାହିଁ ? ତୋତେ ?

ଲଳିତା—ତେବେ ?

ଶ୍ରୀମନ୍ତୀ—ନା, ଭୁଲ କରୁଛୁ । ତୋତେ ଲୁଚାଇବି ତ ମୋର ଆଉ କିଏ ଅଛି ସହି, ମନଦୁଃଖ ବୁଝିବ ?

ଲଳିତା—ଛିଃ, ମନଦୁଃଖ କର ନାହିଁ ଧନ ! କଥାଟା କଅଣ ଖୋଲି କହ—ଦେଖିବା, ଯଦି କିଛି ଉପାୟ ଥାଏ…

ଶ୍ରୀମନ୍ତୀ—ଉପାୟ !

( ଲଳିତାକୁ ଅଳ୍ପ ଚାହିଁ, ମୁହଁ ଅନ୍ୟଆଡ଼େ ଫେରାଇଲେ । )

ଲଳିତା—ହିଁ ।

ଶ୍ରୀମନ୍ତୀ—କେଜାଣି…

( ଚାହିଁରହିଲେ )

ଲଳିତା—ଆଚ୍ଛା, ଶୁଣେ, କଥାଟା ଶୁଣେ ଆଗ ।

ଶ୍ରୀମନ୍ତୀ—(ରହିରହି) ସେଇ, କାଲି କଥା ସହି ! କାଲି ସଞ୍ଜ ମୋ ଜୀବନରେ ଗୋଟାଏ ନୂଆ ପବନ ବୁହାଇ ଦେଇ ମୋତେ ସାରିଛି ସଖି ! କଅଣ କହିବି ତୋତେ ଲଳିତେ ?

(ଲଳିତାଙ୍କ ହାତ ଧରିଲେ)

ଲଳିତା—(ବୋଧ ଦେଇ) ଛି, ଛି, ଲଳିତା ପାଖେ ଏତେ କୁଣ୍ଠା କାହିଁକି ସହି ?

ଶ୍ରୀମନ୍ତୀ—( ପୂର୍ବପରି ହାତ ଧରି ଗାଇଲେ )

( କ )

କି ହେଲା ରେ—

କହିବି ବୁଝାଇ କାହାରି ଆଗରେ । ଘୋଷା ।

କାଲି ଯାହା ଦୂରରୁ ଦେଖି  କଳନା କଲା ମୋ ଆଖି
କଳା ଇନ୍ଦୀବର ଆରତିରେ । ୧ ।

କେଳିକଦମ୍ବ ଲତାର  କୋଳେ କି ଶ୍ୟାମଳ ତାର
ତେଜ ସେ ରବିସୂତାର ତୀରେ । ୨ ।

କମ୍ପି ମୋର କଳେବର  ହୋଇଗଲା ଆରପାର
ଯାହାକୁ ଡରଇ ତାର ତୀରେ । ୩ ।

କି ମୋହନ ଲୀଳା ଧରି  କୋଟି କଳାକର-ଶିରି
ପୂରିଛି ସେ ଶ୍ୟାମ ମୂରତିରେ । ୪ ।

କୁଛା କରେଁ ମୁଁ ଯାତାକୁ  କାହିଁକି ସରଜ ତାକୁ
ଚିରାୟୁ ରଖିଲା ଜରତୀରେ । ୫ ।

ଲଳିତା—(ଗୀତ ପରେ) ନା, ଠିକ୍ ହେଲା ନାହିଁ ସଖି ! ଥଳକୂଳ ନପାଇ ଏକାବେଳେ ଯେ ଡେଇଁପଡ଼ିଲୁ ! ଠିକ୍ ହେଲା ନାହିଁ ରାଣ !

ଶ୍ରୀମନ୍ତୀ—ଠିକ୍ କି ଭୁଲ ଭାବିବାର ବେଳ କେଉଁଠି ଥିଲା ସହି ? ସୁନ୍ଦର ସଞ୍ଜ ପବନରେ ଯେତେବେଳେ ସେଇ ବୀଣାଜିଣା ମଧୁର କଣ୍ଠର ଲଳିତ ମୂର୍ଚ୍ଛନା ବହୁ ଦୂରରୁ ଧୀରେ ଧୀରେ ଭାସି ଭାସି ସ୍ରୋତପରି ପଶିଲା ସହି ! —ଏଇ ଅବଳାର ଦୁର୍ବଳ ହୃଦୟ-ମନ୍ଦିରରେ ମୋର…

ଲଳିତା—(ବାଧା ଦେଇ) ବୁଝିଲି, ହେଲେ ସହି, ବହୁତ ଦୂର ସେ । ସ୍ୱର ତାର ମଧୁର ସତ,— ବାକି, ବୁଝିନାହଁ ସହି, କି ମୂର୍ଚ୍ଛନା ଦିଏ ସେ । ମନ ତା'ର କି ସ୍ୱରରେ ବନ୍ଧା, ଜାଣିନାହଁ ତ ! ଶୁଣିଛି, ଲୋକେ କହନ୍ତି, ତା'ର ଅନ୍ୟ ନାମ ନାରୀମରା । ନା, ଭଲ ହେଲା ନାହିଁ ସହି—ଭଲ କଲ ନାହିଁ ।

( ଖ )

ଖରାପ ତୁ ହେଲୁ ରେ,
ଖେଳଲେଳ ଖଞ୍ଜନାକ୍ଷୀ କି ସାହସ କଲୁ ରେ । ପଦ ।
ଖର୍ବ ହୋଇ ସୁରତରୁ କୁସୁମ ବାଞ୍ଛିଲୁ ରେ
ଖେଦ-ବୀଜ ନିଜ ହୃଦ-କେଦାରେ ବୁଣିଲୁ ରେ । ୧ ।
ଖିଆଲ ପରି କି ଧନ, ମନରେ ଭାଳିଲୁ ରେ
ଖଳକାରି ନୋହି କଳାନାଗକୁ ଚାଳିଲୁ ରେ । ୨ ।
ଖର ସ୍ମର ଝାଙ୍କିଳବା ଶ୍ରୀଅଙ୍ଗ ପାଇଲୁ ରେ
ଖମଣିମଣ୍ଡଳକୁ ତୁ କରି ବଢ଼ାଇଲୁ ରେ । ୩ ।

ଶ୍ରୀମତୀ—ଲଳିତେ ! କରିବାର ଯାହା ତ କରିସାରିଛୁ, ବିବେକ, ବିଚାର, ଦମ୍ଭ, ଲାଜ, କୁଳ—ସବୁ ସହି ! କାଲି ଦିନ ଶେଷରେ ସେଇ କଳା ଅନ୍ଧାର ସଙ୍ଗେ, କଳା ଯମୁନାଜଳରେ, ତା'ରି କଳାଚରଣରେ ଉପହାର ଦେଇଛି । କ'ଣ ବାକି ଅଛି ଆଉ ?

ଲଳିତା—ଆଉ ବାକିସାକି ଖୋଜିବାର ବେଳ କି ହେଲେ ଅଛି ? ଖଣ୍ଡପାଖେ ଧନ ଦେଇ ଆଉ ଚାହିବାର କ'ଣ ଥାଏ ? ଥରେ ପଚାରି ଦେଇ ଆମ୍ଭମାନଙ୍କୁ, ଆଗି ପକାଇଥିଲେ ହେଇ ନଥାନ୍ତା ? ବିବେକବନ୍ତୀ ହୋଇ ଅଳ୍ପକେ ଭାସିଗଲ ଯାହା !

ଶ୍ରୀମତୀ—ବଢ଼ାଅ ନାହିଁ ସହି, ଆଉ ଦୁଃଖ ବଢ଼ାଅ ନାହିଁ ମୋର । ଲଭିବାର ଉପାୟ କହ, ଜଳାଇ ଲଭ କ'ଣ ଆଉ ? ଭାସି ତ ଗଲିଣି ସହି ! —ଏକାବେଳକେ ଅଥଳରେ । କୁଟାଖିଅକ ଏତେବେଳେ ମୋତେ ନଉକା ପରି ଲାଗୁଛି । ତୋ ଛଡ଼ା ଆଉ କାହାକୁ ଭାଳିବି ଭଲ ?

( ଗ )

ଗଲାଣି ତ ଗଲା କଥା,
ଗୁପତେ ସିନା ମୁଁ ତୋତେ ପଚାରୁଛି
ବଳିପଡ଼ିବାରୁ ବ୍ୟଥା ରେ—(ସଙ୍ଗୀତ)
ଗଙ୍ଗାରୁ ବିଶଦ ଗମ୍ଭୀର ତୋ ହୃଦ
ଗଣ୍ଠିଧନ ତୋର ସ୍ନେହ,
ଗୋଡ଼ ଖସି ଖେଦ ହେବାର ଦରଦ
ଯିବାର ଉପାୟ କହ ରେ । ୧ ।
ଗଞ୍ଜାଇକି କଣି, ଲଗି ଝାଙ୍କେ ପୁଣି
ରଞ୍ଜାଇଲ ମନେ ଝିଳି
ଗିଳି ଗରଳରୁ କଣ୍ଠ, ପୀୟୂଷରୁ
ସ୍ୱାଦୁଗୁଣ ଗଲ ବଳି ରେ । ୨ ।

( ଦୂରରୁ ବଂଶୀ ବାଜିଉଠିଲା—ଘନଘନ । ଗୀତ ଗାଉଗାଉ ଶ୍ରୀମତୀ ଉଠି, ସେଇ ଧ୍ୱନି ଅନୁସରଣ କରି ଚାଲିଲେ । ଲଳିତା ଏକଦୃଷ୍ଟିରେ ଚାହୁଁଥିଲେ । ଯାଉ ଯାଉ ଶ୍ରୀମତୀ ଗୋଟିଏ ଡାଳରେ ମଥା ବାଜି ବାଧାପାଇ ପଡ଼ିଯିବାବେଳକୁ ହଠାତ୍ ଲଳିତା ଉଠି, ଧରିପକାଇ ସମ୍ଭାଳି ନେଲେ )

ଲଳିତା—ଛିଃ, ଛିଃ, ଛିଃ, ସହି !

( ଘ )

ଘେନାଇ ଆମ୍ଭେ ଯେତେ କହିଲୁ ରେ !
ଘେନିଲୁ ନାହିଁ କାଳା ପହିଲୁ ରେ । ପଦ ।
ଘୃତଘଟକୁ ଶିଖୀ- ଶିଖା ପାଖରେ ରଖି
ଶିଖିଷଦେହା ଏହା ସହିଲୁ ରେ । ପଦ ।
ଘସ୍ରନାଥନନ୍ଦନା ଅନାଉଣିକି ମନା-
କରୁ ଯେ ଥାଉଁ ହଠି ଚାହିଁଲୁ ରେ,
ଘଟୀ ସରିକି କରେ ନାହିଁ କି ବିବେକରେ
ମହାର୍ଣ୍ଣବରେ ଅବଗାହିଲୁ ରେ । ୧ ।
ଘୋଟି କଦବମୂଳ ଘୋର ଘୋର ଜାଙ୍ଗଳ
ଗରଳ ତୁଲେ ତାହା ପିଇଲୁ ରେ,
ଘୂମାଇବାର ସମ୍ଭ- ବିଲ ନାହିଁ କି ଆମ୍ଭ
ସୁଯୋଗୁ ସିନା ବଞ୍ଚି ଅଇଲୁ ରେ । ୨ ।
ଘେନ ଘେନାଇଁ ଯାଇ କହିବା ସମଝାଇ
ଘଟିଲେ ଆମ୍ଭେ ଏକା ଜଇଲୁଁ ରେ,
ଘଟନା ବିରହରେ ଅବଶ୍ୟ ତ ଜହରେ
ତୋ ଘେନ ଆମ୍ଭଘାତି ହୋଇଲୁ ରେ । ୩ ।

( ଶ୍ରୀମତୀ ମଥା ଡଳାଇ ଥାଆନ୍ତି— ଲଳିତା ସମ୍ଭାଳି ନେଇ ବସାଇଲେ )

---

## ଷଷ୍ଠ ଦୃଶ୍ୟ

[ ପଥ—ଦୂରରୁ ବଂଶୀଧ୍ୱନି କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲା । ବଣାଖା ପ୍ରବେଶ କରି ଧ୍ୱନି ଶୁଣୁଥିଲେ । ତା'ପରେ ଗାଇଲେ । ]

( ଗୀତ )

କାଳିଆ-ଦୂରେ ବଜାଅ ମୁରଲୀ,
ଏକେ ଭରା ଯୌବନ
ଫୁଲକୁଞ୍ଜେ-ଅଳି ଗୁଞ୍ଜେ—ଏ ସଞ୍ଜେ—ସରଳି । ୦ ।
ଆନନ୍ଦଭରେ ଗନ୍ଧବହ
ମଞ୍ଜୁ ମଧୁରେ—ମଧୁରେ—ମଧୁରେ,
କାମିନୀ ଧନୀ ଚଞ୍ଚଳ
ବରଜ-ବଧୂରେ—ବଧୂରେ—ବଧୂରେ,
ତା' ତର ସହେନା—ତା' ମନ ମାନେନା-
ପାଶୋରେ ଲାଜ ମାନ କୁଳ
ଗୋପବଧୂରେ—ବଧୂରେ—ବଧୂରେ
ଯାଅ କାହ୍ନୁ, ଛିଃ ମୁଁ କି ସରମେ—ସରମେ ସରିଲି ।୧।
ସେ ତ କଞ୍ଜପଦେ ରଞ୍ଜି ନାହିଁ
ରଙ୍ଗ ଅଳତା—ଅଳତା—ଅଳତା,
ତେରଛେ ଚକାଏ ତ
ଖେଳେ ଭୃରୁ ଭ୍ରୂଲତା—ଭ୍ରୂଲତା—ଭ୍ରୂଲତା
ତା' କଜ୍ଜ୍ୱଳ ଲଭିଛି ସତେ ନୟନମାନରେ
ଯା, ଲୁ, ଭଲ ଦୂରେ ବଜା ଯା'
ଜୁହାର, ଜୁହାର, ହାରିଲି । ୨ ।
(ପ୍ରସ୍ଥାନ)

( ଅନ୍ୟ ଦିଗରୁ ମଧୁ ପ୍ରବେଶ )

ମଧୁ—(କାନେଇଁ ରହିଲେ, କିଛି ନଶୁଭିବାରୁ) ଏଁ ? ଟୂପ୍-ଟୂପ୍ ! କାନେଇଁଲିରୁ ସବୁ ଚୁପ୍ ! ଯୁ ! ଭିତରେ ତେବେ କିଛି ପେଞ୍ଚ ଅଛି ! ଦେଖେଁ ତ ( ପୁଣି କାନେଇଁ ) ସେଇ ଟୂପ୍-ଟୂପ୍; ଫେର୍ ସବୁ ଚୁପ୍ ? ଏ କଅଣ, ଡାହାଣୀ ନା ଚରୁଗୁଣୀ ? ମତେ ଦେଖି ଦୃଷ୍ଟି ଦେଇନାହିଁ ତ ? ମାଆ ମୋର ତ ପିଲାଦିନରୁ ଏଇ ଦୃଷ୍ଟି ପଡ଼ିଯିବ ବୋଲି ମୋତେ କେତେ ଔଷଧ କରିଥାଏ । ପିଲାଦିନେ ମୁଣ୍ଡ କୁଣ୍ଡାଇ, ମାଙ୍ଗୁ ପାରି, ହଳଦି ଲଗେଇ, ନାଲି କାଚ ଖଣ୍ଡେ ପିନ୍ଧାଇ ଯେତେବେଳେ ମାଆ ମୋର ମତେ ଦାଣ୍ଡକୁ ଗୁଡ଼ିଦିଏ; ମୁଁ କୁଆଡ଼େ ଖୁବ ସୁନ୍ଦର ଦିଶେଁ ! ଡାହାଣୀ ଖାଇଯିବ ବୋଲି ମୁଣ୍ଡରେ ମୋର ଥୁଉ-ଥୁ କରି ମେଞ୍ଚେ ଛେପ ପକାଇଥାଏ । ଏବେ କଅଣ ମୁଁ ସେମିତି ସୁନ୍ଦର ଅଛି ନା ? ଥିବ, ଥିବ—ନୋହିଲେ, ମୋ ଉପରେ ଏତେ ଦୃଷ୍ଟି ପଡ଼ନ୍ତା ? (ପୁଣି କାନେଇଁ) ହେଇରେ ବାବା ସେଇ ତ ! (ସଭୟେ) ସେଇ ଟୂପ୍-ଟୂପ୍, ସବୁ ଚୁପ୍ ! କଥାଟା କଅଣ ? ଦୁଇ ଜଣ ନିଶ୍ଚେ, ନୋହିଲେ ଗୋଟାଏ ଟୂପ୍ ହୁଅନ୍ତା ! ଏତ ଟୂପ୍-ଟୂପ୍, ଦ'ଟା ଟୂପ୍—ଦି' ଜଣ । ତେବେ କିଏ ଏସବୁ ? ହୁଁ କୋକମିନା, ଅନ୍ଧାରଘୋଡ଼ୀ ହବେଁ ! ଓଃ ( ଚମକି ଉଠି ଛାତିରେ ଛେପ ପକାଇ ) ମାଆ କହିଛି, ଏଡ଼େ ଏଡ଼େ ଦାନ୍ତ, ସୂର୍ଯ୍ୟ ପରି ଆଖି, କୁଲା ପରି କାନ—ଡର ତ ଲାଗୁଛି ! ପଳେଇଗଲେ ବଞ୍ଚେ । ଗଛସନ୍ଧିରେ ଲୁଚିଯିବି କି ? (ଅଳ୍ପ ଦୂର ଯାଇ ) ଏଁ, ସେଇ ତ ! ସେଇ ଟୂପ୍-ଟୂପ୍ ତ ! କଅଣ ଭଲ ଦିହଙ୍କ ବଗୁର ପଡ଼ିଥିବ ? ମୋ ଗଣ୍ଡିଟା କିଏ ଖାଇବ, ମୁଣ୍ଡଟା କିଏ ଖାଇବ —ଏଇ କଥା ତ ନିଶ୍ଚେ (ଥରି) ହେଁ, ହେଁ, ହେଁ, ( କାନ୍ଦି ) ମାଆ ଲୋ ମଲି ! ରଖ ଲୋ ମାଆ, କାନରେ ଡୋର ଗୋଟିଏ ବୋଲି, ଆଖିକି ବାନ୍ଧି ରଖ ଲୋ ମାଆ ! ( ଟିକିଏ ତୁନି ରହି ) ଅଇଲୁ ନାହିଁ ? ତେବେ ତାଙ୍କର ଶରଣ ପଶେଁ, ଆଉ କୁଆଡ଼େ ପଳେଇବି ? ( ମୁଣ୍ଡରେ ହାତଦେଇ ) ରଖ ଲୋ କୋକମୀନା, ରଖ ଲୋ ଅନ୍ଧାର-ଘୋଡ଼ୀ, ଏଇ ଥରକ ବଞ୍ଚା । ଏ ଶିଉକମଳ ଏଇ ଥରକ ବଞ୍ଚାଇଲେ ତମରି ବୋଲି ଜାଣ । ( ମୁଣ୍ଡିଆ ମାରି ) ହେ ମାଆ କୋକମୀନା, ହେ ମାଆ ଅନ୍ଧାର-ଘୋଡ଼ୀ !

ଏଇଠି କୋଟି କୋଟି ମୁଣ୍ଡିଆ ।

( ମୁଣ୍ଡିଆ ମାରୁଥିବାବେଳେ ତୁଳସୀ ଓ ବିଶାଖା ଦୁହେଁ ପହଞ୍ଚିଲେ ହସି ହସି )

ବିଶାଖା—କିଓ, କିଓ ମଧୁମଙ୍ଗଳ, କାହିଁକି ଏମିତି ରଡ଼ି ପକାଉଛ, କିଓ ଖାଇଯାଉଛି କି ?

ମଧୁ—( ଉଠି ) ଛାତି ଥରୁଛି, ଜୀବନ ରହିଲା । ରଖ ଲୋ ମାଆ ! (ଦୁଇଜଣଙ୍କୁ ଚାହିଁ) ଓଃ, ଏଇ ଦୁହେଁ ଝୁପ୍-ଝୁପ୍! ହଁ, ଏଥର ?—

ତୁଳସୀ—କିଓ ! ଏ କଅଣ, ଜୀବନ କଅଣ ପଳାଇ ଯାଉଛି ? ଉପରେ ଛୁଆଁ ହେଲ କି ?

ମଧୁ—ଡର, କି ଡର ? କାହାକୁ ? ବ୍ରାହ୍ମଣ ଆମେ, ଡର କାହାକୁ ? "ନଶ୍ୟତି ବିପ୍ର ଦୁର୍ଜ୍ଜନାଃ"—ଜାଣ ?

ତୁଳସୀ—ଆଉ ଏଡ଼େ ପାଟି କରି ମୁଣ୍ଡିଆ ମାରୁଥିଲ କାହାକୁ ?

ମଧୁ—ଶୂଦ୍ର ଗୁଡ଼ାକ ! ଖୁଆ, ବାଡ଼ ସନ୍ତକ ତୁମର । ବ୍ରାହ୍ମଣର ପୂଜାରେ ବିଘ୍ନ ଘଟାଇଲ ! ପୁଣି ପଚାରୁଛ ପାଟି କରୁଥିଲି କାହିଁକି ? ବେଦପାଠଟା ହେଲା ଆମର ପାଟି ? ପଳା, ପଳା !

ବିଶାଖା—ମୁଁ ଏବେ, ସ୍ୱା, ବୁଝିଛି ? କୋକମୀନା ଫେର୍ ବେଦ ? ହଉ, ହଉ, ତମ ବେଦ ସେଇ ! ଯେମିତି ବ୍ରାହ୍ମଣ, ସେମିତି ଦିଅଁ ।

ମଧୁ—ତୁମେ ଶୂଦ୍ର ଗୁଡ଼ାକ ଏଠୁଁ ଗଲ ! ମୁଁ ପୂଜାରେ ବସେଁ ।

ବିଶାଖା—ଓହୋ ରେ ପୂଜା ।

ମଧୁ—ସାବଧାନ କରି ଦେଉଛି, ଥରେ ଦିଥର, ତିନଥର । ଦେଖୁନ ନା, ଏ ବେଦପଇତାକୁ ? କେମିତି ବ୍ରହ୍ମତେଜରେ ଜକ୍‌ଜକ୍ କରୁଛି ।

ତୁଳସୀ—ରଖ ରଖ ତମ ପଇତା । ଆମେ ସବୁ ତମରି ପାଖକୁ ଖୋଜି ଖୋଜି, ଆସିଛୁଁ ।

ମଧୁ—କଅଣ ? ଅନୁସରଣରେ ତେବେ ? ଭେଟି କାହିଁ ? ଆଣ, ଦିଅ । ପୂଜା କରି କରି ତ ଭୋକ ଲାଗିଛି । ଆଗେ ବ୍ରାହ୍ମଣ ସନ୍ତୋଷ ହେଉ ତ !

ବିଶାଖା—ହଉ, ହେବ । ଚାଲ, ତମକୁ ପେଟେ ସଜ ଲହୁଣୀ, ଶାକର ମିଶାଇ ଖାଇବାକୁ ଦେବା ।

ମଧୁ—ସତ କହୁଛ ? ଦେବ ତ ? ସତ୍ୟ ?

ତୁଳସୀ—ହଁ, ହଁ, ସତ୍ୟ କଲୁଁ !

ମଧୁ—ହଉ ତେବେ କଅଣ କହିବାର କହ—

( ନିଶ୍ଚଳଭାବେ ରହିଲେ )

ତୁଳସୀ—ଶୁଣ, ତମ ସଖା କେଉଁଠି ଥିବେ ଏତେବେଳେ ?

ମଧୁ—ସେ କଥା ? ସେ କଥା ମୋତେ ପଚାରନାହିଁ ଏତେବେଳେ । ମୁଁ ଏଇନେ ଗୋଠଖଣ୍ଡିଆ ଗାଈ । ସଖା ଆମର ବି ସେ କଳାକାହ୍ନୁ ହୋଇ ନାହାନ୍ତି,—କଳାନାଗ ! ଦେଖିଲେ ଫଣା ଟେକି ମୋତେ ଫଁ-ଫଁ ହଉଛନ୍ତି; ଛୁଆଁରେ ମୁଁ ଏଠି ସେଠି ବୁଲୁଛି ସହି !

ବିଶାଖା—ଏ କେମିତି କଥା ? ସତଟି ନ କହିଲେ ଭୋଜନଟା ଆଉ ନ ପାଅ—ଏ କଥାଟି ମନେ ରଖି କହୁଥା' ।

ମଧୁ—( ଭୋଜନଟାର ସମ୍ପର୍କ ଘେନ ଟିକିଏ ଭାବିବା ପରେ) କହୁଚି ତ, କହୁଛି ତ ମିଛ ନୁହେଁ ମୋର ।

ତୁଳସୀ—ଆଚ୍ଛା, ବେଶ୍ । ସଖା ତ ତୁମର ଆଗେ ଏମିତି କଳାନାଗ ନ ଥିଲେ । କହ ଦେଖି, କେତେ ଦିନ ହେଲା ଏମିତି ହେଲେ ?

ବିଶାଖା—ଆଉ କାହିଁକି ଏମିତି ହେଲେ ?

ମଧୁ—( ଟିକିଏ ଅପେକ୍ଷା କରି ) ହୁଁ, ତା ପର ?

ବିଶାଖା—ତା'ପର ଆଉ କ'ଣ ? ଏଇ ତ ।

ମଧୁ—ଓଃ, ସରିଲା ତେବେ ? ମୁଁ ବୋଇଲି ଆଉ କିଛି ଥିବ । ଏକାବେଳେ ସବୁ ପ୍ରଶ୍ନ ଅଜାଡ଼ି ପକେଇଲ ଦିହେଁ ଯେ, କାହାକୁ ଜବାବ ଦେବି, କହ ? ସେଇଥିକି ମୁଁ ବୋଇଲିକି ସରିଯାଉ ତମର ଅଜାଡ଼ାଟା, ତା'ପର ଚକଟା ଭାଗଟା ମୋର ।

ବିଶାଖା—ପରିହାସ ଥାଉ, କହ କ'ଣ ଜାଣ ?

ମଧୁ—ଜାଣେ କଅଣ ? ଅନୁମାନ ସିନା । ଜାଣିଥିଲେ ତ ତାଙ୍କ ପେଟ ଭିତରେ ଥାଆନ୍ତି ।

ତୁଳସୀ—ଆଚ୍ଛା, ସେଇ ଅନୁମାନଟା ତୁମର ଖାସ ।

ମଧୁ—ବେଶ୍, ଗଦ୍ୟରେ ନା ପଦ୍ୟରେ ?

ବିଶାଖା—ତୁମ ଇଚ୍ଛା ।

ମଧୁ—ଆଚ୍ଛା, ( ଖଣ୍ଡିକାଣ ମାତ୍ର ଗାଇଲେ )

ଶୁଣ ସଜନୀ ! ଦେଇ ମନକର୍ଣ୍ଣ
ଠିକେ କହିବୁ ଯାହା ଅନୁମାନ ।
ଏବେ ଦିନ ଗୁଡ଼ ଛଅ ହୋଇଲା
କାହୁଁ ଖଣ୍ଡିଆ ମଳୟ ବହିଲା ।
ବଡ଼ସକାଳୁ ଗଉଡ଼େ ବାହାର
ମାଆ ଯଶୋଦା ବାଢ଼ିଲେ ଆହାର ।
ଜାଣ ଆମେ ତ ବ୍ରାହ୍ମଣିଆଁ ଜାତି
ଯୋଗେ ମିଳିଲେ କୋଣକ ଧାଆନ୍ତି ।
ସର ଶାକର ନବାଡ଼େ ଭୋଜନ
ପେଟ ଗୃଖଣ୍ଡିକ ହେଲା ଓଜନ ।
କାହ୍ନୁ ଗଉଡ଼ ପିଲାଙ୍କ ସଙ୍ଗରେ
ଗୋଠ ଯେନ ଗ୍ଲଲିଗଲେ ଆଗରେ ।
ଆମେ ଷାଠିଏ ନିଶ୍ୱାସ ମାଇଲୁଁ
ଚେଙ୍ଗାମଣ୍ଡାଏ ଯେନ ବାହାରିଲୁଁ ।
ଦେଖୁଁ କାହ୍ନୁକୁ ବାଟେ ଏକୁଟିଆ
ଝିସ ତକାଇ ହୋଇଅଛୁ ଠିଆ ।
ନନା ଠକାଠକରେ କି ଅଛନ୍ତି
କାହ୍ନୁ ନାଡ଼ୀ ନକ୍ଷତ୍ର ଚପିଛନ୍ତି ।
ନେଇ ଗ୍ଲଲିଲୁଁ ଗୋଠକୁ ସଙ୍ଗରେ
ମୋତେ କଥା ନ କହିଲେ ରାଗରେ ।
ମୁହଁ ଫୁଲୁକୁଣ୍ଡା କରି ଗୋଠରେ
ମନ ନ ଥାଏ ପିଲାଙ୍କ ମେଣ୍ଟରେ ।
ଖଞ୍ଜେ ପଚିଶେ ମାଇଲା କହାଇ
ଯାଇ ନାଆ ଲଉଡ଼ ଖେଳୁଥାଇ ।
ତାକୁ ଖୋଜି ଖୋଜି ହେଲି ହାଲିଆ
ଦେଳ ବୁଡ଼ ଦେଖ ହେଲା ନାଳିଆ ।
ଏକା ଥିଲି ତ ସୁନ୍ଦର କହ୍ନାଇଁ
ଦୃଷ୍ଟି କାହାର ପଡ଼ିଛି ଭାଳିଁ ।

ଘରେ ଲେଉଟି ନ ରୁଚେ ଲବଣୀ
ଦିନୁଁ ଦିନ ତନୁ କ୍ଷୀଣ ହେଲାଣି ।
ଏଣେତେଣେ ବୁଲୁଛି ଏକୁଟିଆ
ସେ ତ ଖୋଜୁଛି ସଚ୍ଚ ! ନାଗୁଟିଆ ।
କଳାନାଗପରି ମୋତେ ମିଶୁଛି
ଜାଣି ନପାରେଁ କି ରୋଗ ପୋଷିଛି ।

ବିଶାଖା—ହଉ ହଉ, ଏ ପୁରାଣ ଏତିକ ଥାଉ—ଶୁଣ, ଯାହା କହୁଛି ଶୁଣ ।

ମଧୁ—( ନିରୁତ୍ତର )

ବିଶାଖା—ତମକୁ ଲଳିତା ଖୋଜୁଥିଲେ । ତମ ସଖାଙ୍କ ରୋଗକୁ ଔଷଧ ଦେବେ ସେ । ତୁମେ ତାଙ୍କ ପାଖକୁ ଗ୍ଲଲ । ଗଲେ ସେଠୁଁ ଯାଇ ତମ ସଖାଙ୍କୁ ଔଷଧ ଦବ ।

ମଧୁ—ଏଇନେ ତ ନୁହେଁ ।

ତୁଳସୀ—କାହିଁକି ? କ'ଣ ଯୋଗ ଲଗ୍ନ ଖୋଜାଖୋଜି ପଡ଼ିବ ?

ମଧୁ—ନୁହେଁ କଅଣ ? ଏଇନେ ଯେ ଭୋକ !
( ପେଟ ଦେଖାଇ )

ବିଶାଖା—( ହସି ) ବେଶ୍, ସେ କଥା ବି ବୁଝାଯିବ ।

ମଧୁ—( ଆନନ୍ଦରେ ) ବୁଝାଯିବ ? ବାଃ, ବାଃ, ବାଃ, ଗ୍ଲଲ ତେବେ, ଆଗେଇ ଗ୍ଲଲ । ଗାଇ ନାଚି, ଅମରମତା ହୋଇ ଟିକିଏ ଅଜଡ଼ିଆଟାକୁ ଭାଙ୍ଗିଦେଇ ଯାଏଁ । ଗ୍ଲଲ, ଦୋକାଟି ପାଖେ ତମକୁ ଭେଟିଛି ମୁଁ । ଏଇ ଗଲି ବୋଲି ଜାଣ ।
( ବିଶାଖା ଓ ତୁଳସୀ ହସି ହସି ଗ୍ଲଲିଗଲେ )

ମଧୁ— ( ଗୀତ )

ଦେଖିଛୁ, ଉଡ଼ଯାଉଥିଲା ସକାଳରେ ଆଜ ଶଙ୍ଖଚିଲ
ବହୁଥିଲା ପବନ ଧୀର ଧୀର
ନାଚୁଥିଲା ଡାହାଣ ଆଖି ମୋର,
ସରଗନ୍ଧେ ଖାଲି ପେଟ ଘୂରୁଉଥିଲା ମୋର
ଆଶା ମିଳିଲାଣି ପୁଣି ମିଳିବ ତଟକା ଦହିସର ।
( ଗାଇ ଗାଇ ପ୍ରସ୍ଥାନ )

---

## ସପ୍ତମ ଦୃଶ୍ୟ

( ଯମୁନାତଟ ନିକଟ—ଶ୍ରୀକୃଷ୍ଣ ଅର୍ଦ୍ଧଶୟାନ—ଗାଉଥିଲେ ଗୀତ )

(ଆଶାବରୀ ମଧ୍ୟମାନ)

ହେ ଚିରସାଥୀ !

ଚେତାଇ ମରମେ ରଖ ପ୍ରେମର ବନ୍ତ ।
ଅନ୍ତରେ ଗୋପନେ ରହି ବଜାଅ କି ସ୍ୱର ?
ନୟନେ ନ ଦେଖି ମୁଁ ତ ବାହାରବାଧୁର
ଆଲୋକ-ଗ୍ରହ୍ୱାର କୋଳେ ଯାଏ ବନବାନ୍ତ । ୧ ।
କାନନ ଧାରେ, ଅଜଣା କେ' ସେ ? ୱାଣାରେ ଝଙ୍କାରେ
ତାହାର ଗାନେ, ବଭୋର ମୁଁ ଗୋ ! ତା ସ୍ଥଇ ସୁମରେଁ,
ଚନ୍ଦ୍ରାଲୋରେ, ଦ୍ୱିଗୁଣ ଜାଗେ ତବ ରୂପ ଭାନ୍ତ । ୨ ।

( ଗୀତପରେ ଦୀର୍ଘଶ୍ୱାସ ମାରି )

ନା-ଅନେକ ଦୂର—ବହୁତ ଦୂରରେ ସେ । ବାମନ ମୁଁ—ଚନ୍ଦ୍ର ଧରିବାର ଆଶା ମୋର କାହିଁକି ? ତଥାପି—ତଥାପି—କିଏ ? କିଏସେ କହେ, କିଏସେ ଦିଏ ସେ ଆଶା ? ପାଖେ ପାଖେ, ଏଇ ତରୁଲତା, ଏଇ ଫଳଫୁଲ, ଏଇ ବନପାହାଡ଼,—ସବୁଥିରେ, ସବୁଠାରେ ଯେମିତି ସେ ! ସେଇ ଦିଶୁଛି ମୋତେ । ପୋଡ଼ା ଆଖି ମେଲିଲେ କିନ୍ତୁ ବାହାରର ଶୂନ୍ୟସ୍ଥଳ ! ନା-ନା, ମୁଦି ଦିଏଁ ! ମୁଦିଦିଏଁ, ମୁଦିଦିଏଁ ଆଖି ମୋର ।

( ଝୁଙ୍କି ପଡ଼ି ମଥା ପୋତିଦେଲେ । କିଛି ବେଳ ଗଲାପରେ ଲଳିତା ଓ ମଧୁ ପ୍ରବେଶ ହୋଇ ଏହା ଦେଖିଲେ—ଲଳିତା ମଧୁ ଠାରିଠାରି ହୋଇ, ସବୁ ବାରି, ଠିକ୍ କରିନେଲେ । ମଧୁ ଅନ୍ତରାଳରେ ରହିଲେ । ମଧୁ ଗଲେ—ଲଳିତା ଗାଇଲେ । )

( ଙ )

ନୂଆ ନଟ-ପଟଳୀ-ମୁକୁଟ ହେ,
ନାହିଁ କି ଶ୍ରୀଅଙ୍ଗେ ସୁଖ ?
କପଟ ନସ୍ତେଜ ଦିଶୁଛି ତ ଆଜ
ନିରଳସ ଚନ୍ଦ୍ରମୁଖ । ଘୋଷା ।
ମାଳୋତ୍ପଳ ବାସି ହୋଇଲାପରି ଦିଶି-
ଯାଉଛି ଦୂରୁ ଶ୍ରୀଅଙ୍ଗ,
ନାସା ମାଳତୀଫୁଲରୁ ଅନଳ
ପ୍ରସରୁଛି ବେଗ ବେଗ । ୧ ।
କିଦ ନାହିଁ କି ନୟନେ ନଶୀଦନ
ଆହା ! ମରିଇଁ ମୋ ଧନ !
ନବମୀର ଚନ୍ଦ୍ର ମୃଦୁ ଦେହେ କାନ୍ତି
ସମ୍ଭବିଲା ଏ କଦନ ? । ୨ ।

ଶ୍ରୀକୃଷ୍ଣ—(ଚମକ ପଡ଼ି) କିଏ ? ଲଳିତେ !

ଲଳିତା—ହଁ, 'ଶ୍ୟାମ ! କହିବ କି ଏ ଦଣ୍ଡ ଦେଲା ଚମକୁ କିଏ ?

ଶ୍ରୀକୃଷ୍ଣ—କି ଦଣ୍ଡ ସଖି ? କିଛି ନାହିଁ ତ ।

ଲଳିତା—କିଛି ନାହିଁ ତ ? (ଗୁହିଁରହିଲେ) କେବେ ଦର୍ପଣରେ ନୋହିଲେ ଯମୁନାପାଣିରେ ତ ନିଜର ଛାଇ ଦେଖିବଣି ଶ୍ୟାମ ! ତେବେକେ ମଧ୍ୟ କହୁଚ, ତେବେକେ ମଧ୍ୟ ତୁମର ସାହସ ହେଲା କାହ୍ନୁ ! କିଛି ନାହିଁ ତ ବୋଲି କହିବାକୁ ? ଯେ ଦେହ ଇନ୍ଦ୍ରନୀଳମଣିକୁ ଉପହାସ କରୁଥିଲା, ଆଜ ବାସି ମାଳକଇଁ ପରି ଦିଶିଲାଣି— ( ମଧୁ ପ୍ରବେଶ )

ମଧୁ—ମ, ଆମେ ଗୋପସାରା ଖୋଜିମରୁଁ, ଆଉ ଏଠି ଆସି ତୁମେ ତୁମର ଏକୁଟିଆରେ ଶୋଇ ରହିଛ ? —ପୁଣି ଧୂଳିରେ !

ଲଳିତା—ଆସ ଆସ, ବଟୁ, ଦେଖିଲ ତ ?—ମୁଁ ବି ସେଇ କଥା କହିଲି ! ସୁନାଖିଅକେ ଦେହ ରହିଲାଣି ! କାହିଁକି ?—ଭଲ ନ ଲଗିଲେ ଗୋଠବୁଲା ଦୁଇ ସ୍ତରଦିନ ବନ୍ଦ କଲେ……

ମଧୁ—ହଁ ତ, ମନ୍ଦ କଅଣ ?

ମାପ ଉପବନ ନିକଟ ପବନ
ପରଶକୁ ଯେବେ ଡର ?
ନଦୀକୂଳସ୍ଥଳ ଏ ବଡ଼ ଶୀତଳ
ନୁହନ୍ତା ଟିକି ବିହାର ।

( ସମସ୍ତେ ନୀରବ )

ମଧୁ—ଭିନ୍ନ ହୋଇ କିଅଣ ରହିଲ ତ ? ଆଜି କିଅଣ କାହା ଦୃଷ୍ଟି ପଡ଼ିଛି ? ଲଳିତେ !

ଲଳିତା—କେଜାଣି ! ଏକୁଟିଆ ତ ଯୁଆଡ଼େ ପାରି ସିଆଡ଼େ ମାଡ଼ିପିବେ ! ବଣି ଭିତର ଏ ! ଅସମ୍ଭବ କୋଉ କଥା ?

ମଧୁ—ଓଃ, ବୁଝିଲି ! ବୁଝିଲି, ( ଭାବି ) ସେଇ ଦିନ ଆମର ଏଇ ବରଜ-ବଣକୁ ସରଗରୁ ମେଞ୍ଚେ ଗାଆଣୀ ଟୋକି-ନାଁ ଅପରଛନା କ'ଣ ସେଗୁଡ଼ାକୁ କହନ୍ତି—ଆସି ଫୁଲ ତୋଳୁଥିଲେ । ସଖା ! ଏତେବେଳକୁ ଠଉରେଇଲି । ହୁଁ, ତାଙ୍କରି ଆଖିବାଣ ? ମୋ ବୋପା ଲୋ ! ସେଇ କାଣ୍ଡ ତ ବାଜି ସଖାଙ୍କ ଛାତି ଫୁଟାଇ ଏ ବେଦନା ଦେଇଛି ! ସତେ ସଖା, ମୁଁ ଦେଖିଛି ପରା ! ତାଙ୍କ ଆଖିବାଣ ଯୋଉ ଗୋଳିଆ ! ମୁଁ ପରା ଠିକ୍ ତାଙ୍କ ହାବୁଡ଼େ ପଡ଼-ପଡ଼ ହେଉଥିଲି ! ବାଣ ବିନ୍ଧ ହେଲାବେଳକୁ ଅତରଛରେ ସେ କଦମ୍ବ-ମୂଳେ ଲୁଚିଗଲି କି, ମୋ ତାରପରା ପ୍ରାଣ ଥୋଡ଼ାଏ ଦିନ ବଞ୍ଚିଗଲା । ବୁଝିଲି ଲଳିତେ, କଥାଟା ସେଇଆ । କହିଦେଲେ ତ ଯାଆନ୍ତା; ହେଲେ ବୈଦ୍ୟ ଦେଖାଇ ପଥି-ପାଚନ କରାନ୍ତେ ନାହିଁ ?

ଶ୍ରୀକୃଷ୍ଣ—ଏସବୁ କିଛି ନୁହେଁ, ମୁଁ ସ୍ୱାର କି ଉତ୍ତର ଦେବି ? ମୁଁ ଭାବୁଥିଲି ଭିନ୍ନ କଥା । ଆଶ୍ଚର୍ଯ୍ୟ ହେଲ ସହି, ବାସ୍ତବିକ୍ ଯେ ଯାହା ଚାହେଁ, ତା ପାଏ ।

ଲଳିତା—ପାଏ, କେମିତି ?

ଶ୍ରୀକୃଷ୍ଣ—କେମିତି ?

( ଗୀ )

ଚାହିଁ ଚାହିଁ ତୋ ସରଣୀ     କଳୁଭକୁ ରେ ତରୁଣୀ,
ତହାପିତ ଘର ଥିଲି ବସି,
ତପ ମଣିଲି ମୁଁ ତୋତେ     ଚାହିଁ ଯା ଅତରକତେ
ଦୃଗଚକ୍ଷୁ ମିଶାଇଲୁ ଆସି ରେ,
ଚଳାପାଙ୍ଗି !

ଚନ୍ଦ୍ରରୁ ଚପୁଡ଼ି ସୁଧାଝର
ତର ତୃଷିତର ମୁଖେ ଭରି,
ସ୍ୱତୁର୍ଯ୍ୟ କୃପାକୁ ଗୁଣ—     ନଧି ! ରଖିଲୁ କି ପ୍ରାଣ ?
ଘେନଲ ମୁଁ ଏତେସର କରି ରେ । ୧ ।

ତେତା ଥିଲପରି କଛି     ପ୍ରଣିତ ତ ହେଉଅଛି
ଚକ୍କଣ ତ ଦଶୁଛି ମୋ ଦେହ,
ଚନ୍ଦ୍ରି କ ଲାଞ୍ଛନ ସତେ     ଗୃମର-ଚକୁରି ମୋତେ
ତହକାଇ ପଚାରିଲୁ କହ ରେ,
ଚଳାପାଙ୍ଗି !
ଚୂମ୍ବି ଭବନନ୍ଦନାର ମାର
ଚନ୍ଦ୍ରକାତପୁ ତୁଷାର ସାର,
ଘୂରୁ ମରୁତରୁ ତରୁ-     ତଳ ଶୀତଳ ହେଉଛୁ,
ଚନାଏ ତ ଖେଦ ନାହିଁ ମୋର ରେ । ୨ ।

ଲଳିତା—ଓହୋ, ମତେ ତେବେ ଖୋଜୁଥିଲ, କାହିଁକି ? ଆଜି ଥରେ ଆଡ଼ଆଖିରେ ଚାହିଁବାକୁ ? ଛି, ଛି !

ମଧୁ—ଏସବୁ କିଅଣ ସଖି ? କଉ ସଖା ? ମନରେ ତମର କିଅଣ ଅଛି ? ଏଠି ବସି ବସି ତପ କଲପରି କ'ଣ ଏମିତି କରୁଛ, ଏକୁଟିଆ ?

ଲଳିତା—ତପ ! ତପ କରୁଛନ୍ତି ! ଠିକ୍ କହିଚ । ଅଭ୍ୟାସ କରୁଛନ୍ତି—କେମିତି ତେରଛ ନୟନରେ ଚାହିଁବାକୁ ହୁଏ; ସାଙ୍ଗେ ସାଙ୍ଗେ କେହି ପହୁଞ୍ଚିଲେ କପଟ ଠକିବାକୁ ହୁଏ ।

ଶ୍ରୀକୃଷ୍ଣ—ନାଇଁ ତ ସଖି !

ଲଳିତା—ନାଇଁ ତ ସଖି ! ଦିନ ତିନ ଗୃହ ତଳେ ମନେ ଅଛି ଶ୍ୟାମ ? ବ୍ରଜବାଟରେ ଝୁଣ୍ଟି ପଡ଼ିବାଟା—ସତଟି ?

ମଧୁ—ଏଁ, ସେ ତ ହାଲ କଥା—ସତ ନୁହେଁ ? ଯାଃ—

ଲଳିତା—ଯାଆ କି ଶାଶୁ ତମ ସଖାଙ୍କୁ ପଚାର । କଉ ଶ୍ୟାମ ! ସେ ସତ ନା ମିଛ ?

ମଧୁ—ଯା, ବାବୁ ! ଏତେ ଗୋଳମାଳରେ ଆମର ପଶେ କଏ ? କଥା ପଚାରିଲେ ତ ଉତ୍ତର ନାହିଁ ।

ଓ, ବୁଝିଲି, ବୁଝିଲି । ମୁଁ ଆସି ବୋଧେ ଅଡୁଆ କଲି ? ଯାଉଛୁ ରେ ବାବୁ, ତମ ବିଶ୍ୱାସମୁଣି ହେଲେ ଫିଟୁ ! ଟିକିଏ ଦୂରେଇ ଯିବି କି ସଖା ?

ଶ୍ରୀକୃଷ୍ଣ—(ଟାଣିଆଣି) ନାଇଁ, ସେ ଗୋଟେ କଅଣ ? ଆସ, ଆସ ।

ମଧୁ—ଓଃ, ଓଃ, ମୋତେ 'ମରଣ ହେଉ···କି ସୁଆଗ ଲେ ? କହୁନା, ତେବେ କଅଣ ହେଇଛୁ ।

ଲଳିତା—ବଟୁ, ବେଗ ଯାଇ ସେଠି—ବହୁତ ଦୂରରେ ଯ୍ୟାଙ୍କୁ କ'ଣ ଉଣା ମଣିଛ କି ?

( ଛ )

ଛଳବାହ୍ମଣ ହେ, ଗୁଡ଼ ଏ ସାହସ ହେ ।୦।
ଛବ ତ ଆହଳ ଦଶେ ଛପିବାର ଅଛି କି ସେ
ଛଟା କାହା କଟାକ୍ଷର ଛୁଆ ହେଲା କି ବକ୍ଷର ।୧।
ଛେଳରୁ ତ ଶନ୍ତ୍ରା ବଳ ଘୁଡରେ ଗଲାଣି ଗଳ
ଛୁଟିଯାଇ ବିବେଚନା ଛଟପଟ ହେବ ସିନା ।୨।

ଶ୍ରୀକୃଷ୍ଣ—ଲଳିତେ ! ତୁମର ଏସବୁ କଥାର କ'ଣ ଉତ୍ତର ଦେବି ? ଖୋଜି ତ ପାଉନାହିଁ ।

ମଧୁ—ପାଉନାହିଁ ? କଦମ୍ବ ଗଛର ସେ କୋରଡ଼ଟା ଥରେ ଅଣ୍ଡାଳି ଦେଇଆସିବି କି ସଖା ?

ଶ୍ରୀକୃଷ୍ଣ—ଆରେ, ସେଠି କଅଣ ଅଛି ?

ମଧୁ—ଉତ୍ତର-ଉତ୍ତର । ତମର ତ ଗଛଚଢ଼ାଟା ଅଭ୍ୟାସ, କାଳେ ଭୁଲ୍‌ରେ ସେଠି ଗଳିପଡ଼ିଥିବ !

ଶ୍ରୀକୃଷ୍ଣ—ଯାଃ···

ଲଳିତା—ଶ୍ୟାମ, ଏ ତିନି ଭଙ୍ଗି ଗୁଡ଼, ଟିକିଏ ସରଳ ହୁଅ, ଛଳନା ରଖ, ମନରୁ ଏ ଛନକା ଦୂରକର ସତ କଥାଟା କହ ।

ମଧୁ— ( ଗୀତ )

ମୋହନ ! ନଫିଟିଲେ ନିଜ ମୁଖ,
ଆନ କି ବୁଝିବ ମରମ କାହାଣୀ
ଘୁଞ୍ଚିବ କି ମନ ଦୁଃଖ ? ।ଘୋଷା ।
ଲାଜ ଯେଝେ ଧନ, ଲାଗଇ ଶ୍ରୀମୁଖେ,
ଭଷିବାକୁ ମନ କଥା

ଅକ୍ଷି ଠାର ଧୀରେ, ଲଳିତା ଆଖିରେ
ମିଶାଅ ତଳାଇ ମଥା । ୧ ।
ଯିବି କି ବାହାର ଦୂରେ ଅପସର
ମୋତେ ଯେବେ ଲୁଗୁଚ୍ଛେବ
ନୟନକୋଣରେ କହିଦିଅ ଥରେ
ଲଳିତା ବୁଝିବେ ସବୁ । ୨ ।

ଲଳିତା—ବୁଝିବି କଅଣ ମୁଁ ? ସବୁରଲେ ତ କଥା ନାହିଁ । ମୋତେ ଲୁଚାଉଛ ? ମୋ ଆଖିରେ ପଡ଼ି-ନାହିଁ ସେ କଥା ? ଖଞ୍ଜରେ ଖଞ୍ଜରେ ତୁମେ କି ସେଇଟା ନଜର କରିନାହିଁ ? ମୁଁ ତମକୁ ଘୁଞ୍ଚି ଯିବାଟା ଜାଣିପାରିନାହିଁ ? ମୋତେ ସତ କହିଲ ! ବଂଶୀ ଛୁଇଁ ସତ କହିଲ ! ଏତିକି ଜାଣିନାହିଁ ?

ଶ୍ରୀକୃଷ୍ଣ— ( କ )

ଜାଣିଛି ମୁଁ ଏତେ ମାତ୍ର ଗୋ ଲଳିତେ !
ଯାହା ଇଚ୍ଛା ତୋର ତାହା କର,
ଜ୍ୱଳନରୁ ବଳି ସେହି ବନ୍ଧୁ କେଳି-
କରେ ବିଶ୍ୱବଶ୍ୟ-ନାହାକର । ପଦ ।
ଜଣକେତେ ବ୍ରଜ-ଶିଶୁ ଥିଲେ ନିଜ-
ପୁରୁ ଆସୁଥିଲି ଖେଳାଇ ସମଜ,
ଜମ୍ବାଗ୍ରତ ମଣି ଗିରୀନ୍ଦ୍ରକୁ ଜିଣି-
ବାର ପୁରେ ହେଲା ମୋ ନଜର । ୧ ।
ଜହରକୁ ଗୋଳି ଦେଲାପରି ଗିଳି
ମୋହର ଦେହରେ ପୀଡ଼ା ଗଲା ବଳି,
ଜୀବନାଶା ଟଳି ଯାଉଅଛି ଜଳ-
ପାରୁନାହିଁ ମୁଁ ମୋ ହୃଦନ୍ତର । ୨ ।

ଲଳିତା—ବେଶ ହେଲା, ତା' ପରେ ?

ଶ୍ରୀକୃଷ୍ଣ—ଆଉ ତ କହୁନାହିଁ ସଖି ! ଇନ୍ଦ୍ରନୀଳମଣି ପଥରର ସେହି କୋଠା ଉପରେ, ଝରକାଭିତରେ କାହାର ଗୋଟିଏ ସୁନା ପ୍ରତିମା ବିଜୁଳି ଖେଳିଲା-ପରି ଉଇଁଆସି ଉଭେଇଗଲା । ଆଖି ମୋର ସେତିକି ମାତ୍ର ଦେଖିଛି,—ସେତିକି ମାତ୍ର ।

ଲଳିତା—ହୁଁଃ, ସେତିକି ମାତ୍ର ? ପୁଣି ମିଛ ? ପୁଣି ଲୁଚୁଅଛ ? ବେଶ୍, ତା' ପରେ ଯମୁନାକୂଳେ ? ସଞ୍ଜବେଳେ ? ଏମିତି ଭାବରେ କୁଳରମଣୀଙ୍କୁ ଆଖି ପକାଇବାଟା ?

ମଧୁ—ମ, ଏତେ ଗମ୍ଭୀରରେ ଦୋଷ !

ଲଳିତା—ଆଉ ? ରସିକ ଜଣା ତ ନୁହନ୍ତି !

ଶ୍ରୀକୃଷ୍ଣ—ନାଇଁ ସଖି ! ସେଇ ବିଜୁଳୀ ପ୍ରତିମାଟି ତୁମ୍ଭମାନଙ୍କ ଗହଳରେ ଥିବା ଅନୁମାନ କରି ଚାହିଁଥିଲି ମାତ୍ର । ଅନ୍ୟ କାହାରି ପ୍ରତି ଦୃଷ୍ଟି ପକାଇବା ମୋର ଉଦ୍ଦେଶ୍ୟ ନୁହେଁ ।

ଲଳିତା—ନା, ସେ ବି ସତ, କହୁଛ ତ ବିଜୁଳୀ ପ୍ରତିମା, କେମିତି ବୁଝିଲ ସେଇଟି ଆମ ଗହଳରେ ଥିବାଟା ? ଆଉ କୋଉ ବିଜୁଳୀଟିକି ବା ତୁମେ ଦେଖିଥିଲ ? ତା' ଅବା ଚିହ୍ନିଲ କିପରି ? ସେ କୋଠା ଉପରେ ତ କେତେ ବିଜୁଳୀ ଖେଳେ । ଅଚ୍ଛା, କହ ଦେଖି, କଅଣ ଠଉରେଇଲ ? ସେଇଟି ଚମ୍‌ଃଚକ୍ଷା ବିଜୁଳୀ ନା ?

ଶ୍ରୀକୃଷ୍ଣ—( ନୀରବ )

ଲଳିତା—କଓ ? ତୁନି ହେଲ ଯେ !

ମଧୁ—"ମୌନଂ······ହୁଁ" ଇତି ।

ଲଳିତା—କଓ ? ବନ୍ଧୁ ଯାହା କହିଲେ ତା ଯେବେ ସତ, ବିଜୁଳୀ-ଝଟକ ତ ଆଖିରେ ପଡ଼ିଲେ, ଆଖି ମୁଦିହୋଇଯାଏ । ଚିହ୍ନିବାକୁ ତର ଥାଏ କୋଉଠି ?

ମଧୁ—ସତେ, ମୁଁ ପରି ଆଖିମୁଦି ଏକାବେଳେ ଘଡ଼ିଏ ଲେଖେଁ ମାଆକୋଳରେ ମୁହଁ ଲୁଚାଇ ଦିଏ, ତମ ରାଣ ।

ଲଳିତା—ଆଉ ଏ କେମିତି ଚିହ୍ନିଲେ ସେଇ ବିଜୁଳୀ ସେ ! ଆମ ସାଙ୍ଗରେ ଯେ ଥିଲେ ସେ ତ ଆଉ ଜଣେ ।

( ଗୀତ )

ସେ ଯେ ଗୁଆଳ-ରତନ, ପଦ-କଞ୍ଜ ଚିହ୍ନା ଅଳି ଶରଣ
କଳାକାହ୍ନୁ ହେ—ଚିହ୍ନିଲ କି ସେହି ଜନ ?
କରି ନଳଗାଇ ବିଧି, ମାନସେ ଗଢ଼ିଛି ସେ ରୂପ-ନିଧି
କଳାକାହ୍ନୁ ହେ—ହଜିବ ଶୋଭାର ବୃଦ୍ଧି ।
କଳଙ୍କ ନଥିବା ଶଶୀ, ଗୋଟିଏ ହୋଇଲେ କୋଟିଏ ମିଶି
କଳାକାହ୍ନୁ ହେ—ଛୁଇଁବ ଯିବ ଖସି ।
ବିଜୁଳୀ ହାରେ ଝଟକ, ତା'ସରି ଖୋଜିଲେ ବ୍ରଜକଟକ
କଳାକାହ୍ନୁ ହେ—ସେହି ଏକା ସମ ଲେଖ ।
ଶ୍ରୀମୁଖ ବାସ ସୁମଧୁ, ନଶିରେ ଭରମେ ଆସଇ ଅଳି
କଳାକାହ୍ନୁ ହେ—ଚିହ୍ନିଲକି ସେହି ବୋଲି ?
ଭେଟିଲ କି ତାକୁ ସତେ, ନଆସଇ ମୋର ମନେ ପରତେ
କଳାକାହ୍ନୁ ହେ—କୋଟି କଳପ ବରତେ ?

( ଗାଇ ଗାଇ ଲଳିତା ଚାଲିଗଲେ । ଲଳିତାଙ୍କ ଗୀତ ଶୁଣୁ ଶୁଣୁ ଶ୍ରୀକୃଷ୍ଣଙ୍କର ଭାବୋଦୟ ଓ ଲଳିତାଙ୍କ ପଛେ ପଛେ ଯିବା ଉଦ୍ୟମରେ ପଡ଼ିପିବାଭଳି ହେଲରୁ ମଧୁ ସମ୍ଭାଳି ନେଇ ଗାଇଲେ )

ମଧୁ— ( ୪ )

ଝଗଡ଼ ମାତ୍ର ହେଲ ହେ ଶ୍ୟାମ !
ଝିମୁଟ ହେବାକୁ ସହସ୍ର ଯାମ ।୦।
ଝାଉଁଳିବା ନବ ତମାଳ ରମା
ଝିଙ୍କି ଆଣି ଅଙ୍କେ କଲଣି ଜମା । ୧ ।
ଝଡ଼ିବ ବଳ କୋମଳ ଗୁଣ୍ଡରୁ
ଝସଧ୍ୱଜ-ପୀଡ଼ା ଝାଞ୍ଜି ତାଡରୁ । ୨ ।
ଝୁମି ଝୁମି ଲୁଠି ପୃଷ୍ପେ ରସାର
ଝୁରିବାର ଏକା ହୋଇବ ସାର । ୩ ।

---

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ମଧୁମଙ୍ଗଳ ଖୋଜହେବାପରି ଆସିଲେ )

ମଧୁ— (ଗୀତ)

ମୋତେ କେ ମନ ଚମକେ
ମୁରଲୀ ଡାକେ, ଡାକେ ବିପିନେ ।
କୁହୁକ ପରଶଯାକ, ମୋର କାଳକ ହେଲା ସପନେ ।୦।
କାମିନୀ କମ ନୟନ, କଜ୍ୱଳ ଚିହ୍ନ-ବରନ ଅଙ୍ଗ
କଏ ସେ କଳା ଜଣକ କଳାମାଣିକ କି ଯାଦୁ ଜାଣେ ।୧।

ଏକାକୀ କରଜନେ ସେ, ଉଦ୍ୱା ଅଳସେ ବସେ କାହିଁକି ?
ଆକାଶେ ସ୍ୱଚ୍ଛ ଚମକେ, ମୁରଲୀ ଫୁଙ୍କେ ମାର-ନୟନେ ।୨।

ଶ୍ରୀକୃଷ୍ଣ—( ପଛରୁ ) ସଖା !

ମଧୁ—( ଦୌଡ଼ିଯାଇ କୁଣ୍ଢାଇ ) କଅଣ ସଖା ? ( ଝାଳ ପୋଛି ) କୁଆଡ଼େ ଏତେବେଳଯାଏ କୋଉଠି ଖରରେ ବୁଲୁଥିଲ ? ଦେହରୁ ମୁଣ୍ଡରୁ ଝାଳ ବହିଯାଉଛି । ମୁହଁଟି ଶୁଖିଯାଇଛି ତ ! ଆହା ! ମା' ଯଶୋଦା ଯଦି ଦେଖିଲେ ତାଙ୍କ ପ୍ରାଣ ସହିବ ଟିକେ ?

ଶ୍ରୀକୃଷ୍ଣ—( ନୀରବ )

ମଧୁ—କାହ୍ନୁ, ତୁମେ ଟିକିଏ ଯେବେ ହସିବ ଆଗପରି, ତମକୁ ଗୋଟିଏ ଶୁଭ ଖବର ଦେବ । କାଇଁ ? ହସିଲ ଦେଖି—

ଶ୍ରୀକୃଷ୍ଣ—( ନୀରବ )

ମଧୁ—ହସିଲ ନାହିଁ ? ତେବେ—( ଦୂରେଇଯିବା )

ଶ୍ରୀକୃଷ୍ଣ—ନାଇଁ ସଖା, ହସିବ ନାହିଁ କାହିଁକି ? ଏଇ ତ ହସୁଛି ।

ମଧୁ—କାହ୍ନୁ ! କାହାକୁ ଚହ୍ଲାଉଛ ? କାହାକୁ ଦେଖାଉଛ ? ଏ'କ ସେଇ ହସ ତୁମର ?

( ଗୀତ )

ଏ ହସ ଚହ୍ଲିଛି ତୋର, ପ୍ରାଣ-କହ୍ନାଇଁ ରେ ॥
ଦଶି ଶେଷେ କୁଆଡାରା-
ସର ଦଶେ ହସ ତୋରା,
ନାହିଁ ଲେଶ ମଧୁଧାରା ଖୋଜିଲେ କାହିଁ ରେ ।
ଭ୍ରମର କମଳ-ବନ
ଚୋର ଏ ହସ ସମାନ
ସକାଳ ଶେଫାଳି ସମ ମୋତେ ଦଶଇ ରେ ।

ଶ୍ରୀକୃଷ୍ଣ—ବଟୁ !

ମଧୁ—ତେବେ ଥାଉ, ଗୀତଟା ମୋର ଥାଉ ଏତିକରେ । ଶୁଣ, ଲଳିତା ଏଇ ବାଟେ ଆସୁଥିଲେ, ମୁଁ ଆଗରୁ ସୁରକ୍ ବୁଝିଆସିଛି । ତୁମେ ଟିକିଏ ଶୋଇ ରହ ଦେହ କଅଣ ହେଲାପରି—ଯେ, ସେକଥାଟା ତ ତମକୁ ଶିଖାଇବାକୁ ହେବ ନାହିଁ; ତା' ପରେ ଯାହା କରିବାକୁ ହେବ, କରାଯିବ । ଚଞ୍ ଶୁଅ । ଲଳିତାକୁ ନ ଧରିଲେ କାମଟା ହାସଲ ହେବ ନାହିଁ ସହଜେ । ଶୁଅ—ଆସ—(କୃଷ୍ଣ ମଧୁଙ୍କ କୋଳରେ ମଥା ରଖି ଶୋଇଲେ ଓ ମଧୁ ଗୋଟିଏ ପଦ୍ମ ଆଣି ବିଞ୍ଚିବସିଲେ ) ହଁ, ଠିକ୍ ହେଲା । ଦେଖ ସଖା ! ଏଥର କଥାଟା ତା'ଠାରୁ ଖୋଲି ତାଡ଼ ବାହାର ନ କର ଆଉ ତାକୁ ଯେମିତି ନ ଛାଡ଼ ।

( ଲଳିତା ହାତରେ ଫୁଲଡାଲା ଧରି ଆନନ୍ଦରେ ଗାଇ ଗାଇ ପ୍ରବେଶ, ଶ୍ରୀକୃଷ୍ଣଙ୍କ ଉପରେ ତାଙ୍କର ନଜର ନାହିଁ )

ଲଳିତା—                    ( ଗୀତ )

ପଡ଼ୁଛି ଫାନ୍ଦେ ଏତେ ଦିନେ ନାଗର
ଦେଖି ବେଷ କେତେ ସେ କଳାନାଗର ।୧।
ଜଣେ କେ, ବସି ତେଣେ    ବରହ୍ମ-ପଦ୍ମ-ତୋଳା
ପଡ଼ଇ ଅନ୍ତରେ,    ଆକୁଳ ମାରଭରା
ଯୋଧୁଛି ନାଗ ଗତ    ବାନ୍ଧୁଛି ଚଳମତ
ଆସିବ ଲଙ୍ଘି ସେ ସ୍ନେଷଣ ସାଗର ॥

ମଧୁ—( ଜୋରରେ ) ବା, ବା, ବା !

ଲଳିତା—( ଚମକି ) କିଏ ?

ମଧୁ—କେହି ନୁହେଁ, ଆମେ···

ଲଳିତା—କିଏ ହୋ ତୁମେ ? ବଡ଼ ଜୋର୍ କଥା ତ—

ମଧୁ—କି ? ମାଲିକ ଆମେ, ତମ ପରି ସ୍ୱୈର କି ?

ଲଳିତା—ଆମେ ସ୍ୱୈର ? ···ନା ?

ମଧୁ—ସ୍ୱୈର ନୁହେଁ ଯେ ସ୍ୱୈରଣୀ—ଛାଡ଼ ସେ କଥା । ଯାହା କଲ, କଲ । ଶୁନହୁଅ । ଜାଣ ତ, ଏ ବୃନ୍ଦାବନର ଯୁବରାଜ କହ୍ନାଇଁ—ଶ୍ରୀଅଙ୍ଗ ତାଙ୍କର ଅସୁସ୍ଥ । କବିରାଜ ବତାଇଛନ୍ତି ତାଙ୍କଠି ଯେମିତି ମାଇପି-ଛାଇ ନ ପଡ଼େ···ଯାଅ ବାଟ ଦେଖ, ଏଣିକି ପାଦୁଣ୍ଡେ ନବଳି ଯେମିତି ।

ଲଳିତା—ଓଃ, ଡରିଯିବ ଟି···

ମଧୁ—ଘୁନଅାଁ ପଶିବଣି କି ନାହିଁ—ଖବର ନିଅ ଆଗେ, ଯାଅ...

ଲଳିତା—ବୃନ୍ଦାବନର ରାଜା କିଏ ହେ ବନ୍ଧୁ ?

ମଧୁ—କାହ୍ନୁ ବୋଲି ନଜାଣେ କିଏ ଏ କଥା ଯେ—ଫବେଇ ହୋଇ ପଚାରୁଛ ମୋତେ ? ଆଉ ଥରେ କହୁଛି ତେବେ—ରାଜା କଳାକାହ୍ନୁ !

ଲଳିତା—ମିଛକଥା । ବୃନ୍ଦାବନର ଈଶ୍ୱରୀ ଆମ ସଖୀ ଶ୍ରୀମତୀ ।

ମଧୁ—ଏଁ ? ସେ ଫେର୍ କିଏ ? କହୁ କେମିତିକା ?

ଲଳିତା—ମଧୁ ! ମୁହିଁ ଜଗି କଥା କହ ।

ମଧୁ—ଚୁ, ଚୁ, ନନା ଯାହା ମରିଗଲେ, ଏଇତକ ଶିଖେଇ ଯାଇ ପାରିଲେ ନାହିଁ !—ଗଉଡ଼େ ଗୋରୁ ଜଗନ୍ତି, ମୁହଁଜଗାଟା ତ ଜାଣିନାହିଁ—ତା' କଅଣ ଗଉଡ଼ୁଣୀଙ୍କଠୁ ଶିଖାଯାଏ ? ଲଳିତେ ! ଜାଣିନାହିଁ—ଚିହ୍ନିନାହିଁ ଯାହାଙ୍କୁ, ତାଙ୍କ ପରିଚୟ ପଚାରିଲି—ଏଥିରେ ମୁହଁ ଜଗିବ ? କାହିଁକି କହିଦେଲେ ତ' ସରିଯିବ—କିଏସେ ସେ ? କିପରି ସେ ? କାହାନ୍ତି ସେ ? ଚୋପେ ହେଲେ ମହତ ତମର ନାହିଁ ?

ଲଳିତା—ଓହୋ ! ଚୋପେ—କି ବୁଦ୍ଧେ, ମୋତେ ଜଣାନାହିଁ—ତୁମେ ନିଜେ ଯା, ବୁଝ—କିଏସେ ସେ—କେଉଁଠି ସେ—ନୋହିଲେ ତମ ବନରଜାଙ୍କୁ କହ, ଆଉ ଥରେ ଯମୁନାକୂଳରେ ଡଙ୍ଗା ବାନ୍ଧି, ପରରମଣୀଙ୍କୁ ଗୁହାଁ—ମହତ ଶିଖାନ୍ତୁ ।—ଆହା ହା, ପଚାରୁଛ ? ମୁଁ ଆଉ କେହି ନୁହେଁ, ଲଳିତା । ଜାଣିଛ ତ ବନ୍ଧୁ ?

ମଧୁ—ଜାଣେ ବୋଲି ତ ଏତିକ । ନହେଲେ...ଆଚ୍ଛା ! ଏଇ ତ ସବୁ କହିଗଲ ସିନା, ଆଉ ଏତେ ଭିଡ଼ମୋଡ଼ ହଉଥିଲ କାହିଁକି ?

ଲଳିତା—କଅଣ କହିଲି ?

ମଧୁ—କଅଣ ନକହିଲ ? ଜଣାଗଲା ତମ କଥାରୁ—ଯମୁନାକୂଳରେ ସଖୀଙ୍କର ସେଦିନର—ଦେଖା ଛବି—ତାଙ୍କର ତେବେ । ବୁଝାଗଲା ସବୁ । ବାକି ଟିକିକ ସମ୍ବାଦ ପାଇଁ...

ଲଳିତା—ଓଃ,—ଏତେ କଥା ଏଇଥିକି ? ବେଶ୍, ସିଆଣିଆ-ପଣଟା ରଖ । ମୁଁ ଯାଏ, ତେଣେ...

(ଲଳିତା ଗୁଲିଯିବାବେଳେ ମଧୁ ଶ୍ରୀକୃଷ୍ଣଙ୍କୁ ଟିପି ଠାରି ଉଠାଇଦେଲେ ଓ ଶ୍ରୀକୃଷ୍ଣ ଯାଇ ଲଳିତାଙ୍କ କର ଧରି ଗାଇଲେ)

( ଗୀତ )

ନବାଙ୍ଗ ରେ ଶୁଭାଙ୍ଗି, ଭାରତୀ ହୁଅ ସାହା ॥

ନୋହିଲେ ତୁ ପରମାଣ ନିର୍ଦ୍ଦୟ ଅତନୁ-ବାଣ

ନିଃଶେଷ କଲାଣି ଦେହ ଲୋହା । ୧ ।

ମାପକୁଞ୍ଜ ଉପକଣ୍ଠେ ନ୍ୟସ୍ତ କରିଅ ମୋ କଣ୍ଠେ

ନାଗାଗ୍ନି ନିରୁପମ ବାହା । ୨ ।

ନେହାନ୍ତ ବିଳାସ ସାର ନଦାନ ଏ ଅବସ୍ଥାର

ନିରେଖି ଉଚାରୁ ଥରେ ଆହା । ୩ ।

ଲଳିତା—ଶ୍ୟାମବନ୍ଧୁ ! ନିର୍ଲ୍ଲଜ-ପଣିଆର ତ ପୁଣି ସୀମା ଅଛି ?

ମଧୁ—ହଁ, ନୁହେଁ କଅଣ ? ଏଇଠୁଁ ଯମୁନାକୂଳ ଯାଏ ଡେଙ୍ଗା...ଅଧିକ ଗଲେ ଗୋଡ଼ ଖସଡ଼ା ମାରିବ !

ଲଳିତା—ତୁନି ହୁଅ ବଟ ! ପରିହାସ, ସବୁବେଳେ ସୁଖ ଲାଗେ ନାହିଁ ।

ଶ୍ରୀକୃଷ୍ଣ—ଲଳିତେ ! ପରିହାସ ତ ସେ କରୁ ନାହାନ୍ତି; ପ୍ରାର୍ଥୀଙ୍କୁ ସଦୁତ୍ତର ନଦେବାଟା କି ପରିହାସ ନୁହେଁ ?

ଲଳିତା—କାହା କଥା କହୁଛ ? ମୁଁ ତ କିଛି ବୁଝିପାରୁ ନାହିଁ ଶ୍ୟାମ ?

ମଧୁ—କାହା କଥା ବୋଲି ଫେର୍ ପଚାରୁଛ ସଖି ? ଯାହାଙ୍କ କଥା, ଯାହାଙ୍କ ନାଁ—କହିଲ ତୁମେ-ମୋତେ—

ଲଳିତା—କାହ୍ନୁ ! ମଧୁ ଯାହା କହିଲେ, ଯେବେ ତା ସତ...ତୁମେ କିମିତି ଜାଣିଲ, ସେହି ସେ ବୋଲି ?

ଶ୍ରୀକୃଷ୍ଣ—ସହି ! ପ୍ରମାଣ ତା'ର ଏହି ହୃଦୟ ମୋର । ମନଠାରୁ ବଡ଼ ପ୍ରମାଣ କିଏ ଦେବ ଆଉ ? ସେସବୁ ଛାଡ଼ ସହି ! ମୁଁ ଜାଣେ ସେହି ସେ, ଆଉ ବେଶୀ ଭଲ କରି ଜାଣେ—ତୁମ ଛଡ଼ା, ତୁମ ଉପଦେଶ ବିନା ଏ ଦୁଃଖ-ସାଗରରୁ ପାରହେବାର ମୋର ନାଉଟି ନାହିଁ ।

ମଧୁ—ଖାଲି ସେତିକି ନୁହେଁ—ନାଆ ବି ନାହିଁ । ସହି ! ସହି ! ସହି ଗୋ !! ବନ୍ଧୁଙ୍କୁ ଆମରି କଥା ପର ବୋଲି ବିଚାର କର ନାହିଁ ।

ଶ୍ରୀକୃଷ୍ଣ—ଲଳିତେ, ମନେ ମନେ ଯେ ସୁଖସୌଧରେ ଆରୋହଣ କରି ଖେଳିବାକୁ ସାହସ କରୁଛି । ତୁମେ ଏକା ସେ ଆଶାର ପାବଚ୍ଛ, ସହି ! ନିରାଶ କର ନାହିଁ ।

ଲଳିତା—ଶ୍ୟାମ ! ଏଗୁଡ଼ାକ କି ଅସମ୍ଭବ ଅନ୍ୟାୟ କଥା କହୁଛ ତୁମେ ?

( ୫ )

ଟାଣପଣ କର ସାର, ହେ ମୋହନ !
ଛିଡ଼ାଏ ମଦନ କଦନକୁ ସହି
ସଦନକୁ ବିଜେ କରି ।୦।
ଟଙ୍କାରିକ ଶ୍ରବସରିକ ବାସବ-
କୋଦଣ୍ଡରୁ ଚଣ୍ଡଧନୁ
ଟାଣି ବିନ୍ଧେ ଶମ୍ବ ସଦୃଶ କଳମ୍ବ
ତୁମ୍ଭଙ୍କୁ ଏକା ଅତନୁ ।୧।
ଟେକ ଏ ସୁନ୍ଦର ଶ୍ରୀମୁଖଟି ପର-
ଘରବୁଡ଼ା ଫଇମାସ
ଟିକାଏ ହେଲେ ଯେ ହୃଦୟ-ସରୋଜେ
ନ ହେଲି ବାସ ବିଳାସ ।୨।
ଟେକାଟେକି ମୋତେ କରି ନାନାମତେ
ତୁମ୍ଭ କାମନା ପୂରିବ
ଟାଣ ଖୁଣ୍ଟା ଗୁରୁଜନ ଗଞ୍ଜଣାରୁ
ମୋ ପ୍ରାଣସାଥୀ ସରିବ ।୩।

ଶ୍ରୀକୃଷ୍ଣ—ଲଳିତେ ! ମିଛରେ ମୋତେ କଲବଲ କରି ଭଲ କି ଲଭ ତୁମ୍ଭର ?

ଲଳିତା—କାହ୍ନୁ ! ଏ ଗୋପପୁରରେ ଯୁବତୀ-ମଣ୍ଡଳୀର ଯେତେ ରସିକ ଅଛନ୍ତି, କନ୍ଦର୍ପ ତାଙ୍କର ସପକ୍ଷରେ ଥାଇ କେବଳ କୁସୁମଶର ମାରେ—ଆଉ ତମକୁ କଅଣ ସରଳ ଦେଖି, ବାଦ କରି, ବଜ୍ରଶର ବିନ୍ଧେ ?

ମଧୁ—ତମକୁ ଆଉ କେତେ କହିବୁଁ ଲଳିତେ ? ଯୋଉ ଶର ନାଚୁ, ଦେଖୁଛ ତ, ସଖା ଏକାବେଳକେ ଅଧୀର ହୋଇପଡ଼ିଲେଣି; ଏତେବେଳେ ଉପକାଶି ବନ୍ଧୁ କରେ କଅଣ ? ଉପାୟ ସିନା ବତାଇବଏ ? ଫିଙ୍ଗା-ଫୋପଡ଼ା କରି ଗୁଡ଼ାଏ କହୁଛ ଯେ—କଷ୍ଟ, ଲଭ ହେବ ଭଲ ? ଆଚ୍ଛା, କହନା ଦେଖି, ସଖାଙ୍କୁ ତ ଆମରି ବଜ୍ରଶର ମାରିଲା—ତୁମରି ସେ ସୁନାପିତୁଳାଟି ଇନ୍ଦ୍ରନୀଳମଣି ପ୍ରାସାଦ ଉପରେ, ବୋଇଲା—ତେରଛ ଶର ହାଣିଲେ କାହିଁକି ? ଦେଖୁଛ ତ, ସଖାଙ୍କର ଆମରି କିଶୋର ବୟସ !

ଲଳିତା—ଓହୋ ! ଏ ବ୍ରଜର କିଶୋରମାନେ କଅଣ କୋଠାମାନଙ୍କ ଉପରେ କେତେ ସୁନାପିତୁଳା ଦେଖୁନାହାନ୍ତି ? ଏଥିକି ସଖାଙ୍କୁ ତମରି ଏତେ ବାଧିଗଲା କାହିଁକି ?

ମଧୁ—ତା ନୋହିଲେ, ବ୍ରଜର ଘର ଗୋପୀକାଗୁରୁଙ୍କୁ, ଏତେ—ଖୁସାମତ କରନ୍ତା କିଏ ? ବେଳ ପଡ଼ିଛି ବୋଲି ତମମାନଙ୍କୁ ଟେକାଟେକି ନକଲେ ଚଳୁନାହିଁ । ତା ନୋହିଲେ...ହୁଁଃ !

ଲଳିତା—କିଏ କହୁଛି ତମକୁ ଟେକାଟେକି କରି କହ ବୋଲି ଯେ ?

ମଧୁ—କହିଲ ପରି ବେଳ ପଡ଼ୁଛି ।

ଲଳିତା—ଅକାରଣଟାରେ ବାଟରେ ସ୍ତ୍ରୀଲୋକମାନଙ୍କୁ ଏତେ ଟାହିଲ କରି ପଥ ଓଗାଳିବାଟା କଅଣ ଭଲ କଥା ? ତୁମେ ଗଲ ଏଠୁ ! ନୋହିଲେ ନନ୍ଦ ଜାଣିବେ, ମୁଁ ଯାଏଁ ।

( ପ୍ରସ୍ଥାନୋଦ୍ୟତ )

ଶ୍ରୀକୃଷ୍ଣ—(କାନ୍ଦ ଧରି ଗାଇଲେ) ( ୦ )

ଠିକ ଠ ବର୍ତ୍ତୁଳ ଚନ୍ଦ୍ରାନନା ଚୋ ଚିତ୍ତରେ ।୦।
ଠକ ସ୍ୱତ ନଆଚରି ମୋ କଦନକୁ ହରୁର
ଅକପଟ ହାଣ-ବଧି ଉଚିତ ରେ ।୧।
ଠଣା ଠୁଙ୍କି ଚାପହାସ ମୁଣ୍ଡେ ମନମଥ-ପାଶ
ବନ୍ଧନ କରି ତୁ ପରି ମୋ ଚିତ୍ତ ରେ ।୨।
ଠଉରାଇ ଅବସର କଲେ ତୁ ପ୍ରସଙ୍ଗ ମୋର
ଯିବ ରାଜୀବନେତ୍ରାକୁ ରୁଚିତ ରେ ।୩।

ଲଳିତା—ଶ୍ୟାମ, ଏତେ କଥାରେ ମଧ୍ୟ ତୁମେ ନିବର୍ତ୍ତିଲ ନାହିଁ ! ଛି, କଅଣ ଆଉ କହିବ ?

ମଧୁ—କଅଣ ଭଲ ନ କହିଛ ? ସହି, ଲଳିତେ ! ତୁମେ ମୁହଁରେ ତ ବଡ଼ ଟାଣଟାଣ କରି କହୁଛ, ବାକି ମନରେ ତମର ସେମିତି ଅଛି ନା ? ସତ କହିଲ, ମୋତେ ତ କାହିଁକି କମିତି କମିତି ଲାଗୁଛି ।

ଲଳିତା—ମଧୁମଙ୍ଗଳ ! ମନ, ମୁହଁ—ଆମର ଦୁଇଟା ନୁହେଁ । ଶ୍ୟାମଙ୍କ ପାଖରେ ରହି, ତମଠି ସେଇ ପବନ ବାଜିଲାଣି । ନୋହିଲେ ମନରେ ସନ୍ଦେହ ଲାଗନ୍ତା କାହିଁକି ?

ଶ୍ରୀକୃଷ୍ଣ—ପବନ ବାଜି ଯଦି ଲୋକର ପ୍ରକୃତି ଭଲମନ୍ଦ ହୁଏ, ତେବେ କାହିଁ ? ତମର ତ ସେ କଥାଟି ହେଲା ନାହିଁ କାହିଁକି ? ପ୍ରିୟବାଦିନୀ, ମୃଗନେତ୍ରା ଶ୍ରୀମତୀଙ୍କ ସହଚରୀ ଲଳିତା—ସେ ନିଶ୍ଚୟ ଚତୁରୀ ହେବେ । ଶ୍ରୀମତୀଙ୍କ ପବନ ଲାଗି ପରୋପକାରିଣୀ ସେ ନିଶ୍ଚୟ । ତାଙ୍କର ପରଦୁଃଖ ଦେଖି ମନ ଟିକିଏ ହେଲେ ଟଳୁନାହିଁ ?

ମଧୁ—ସଖି ! ଆକୃତି ଅନୁସାରେ ଲୋକର ଆଚରଣ ହୁଏ, ଏ କଥା ଋଷିମାନେ କହିଯାଇଅଛନ୍ତି । ତମର ଏ ସୁନ୍ଦର ରୂପରେ ଦୟା କଅଣ ଟୋପାଏ ହୋଇ ମିଶିନାହିଁ ? ସନ୍ଦେହ ଏଥିରେ ଭଲା କାହାର ନ ଆସିବ କହିଲ ?

ଶ୍ରୀକୃଷ୍ଣ—ଏକେ ଦୟାବତୀ ଶ୍ରୀମତୀଙ୍କର ସହଚରୀ,—ତହିଁ ଉପରେ ନିଜର ଆକୃତି ଯାହା ଫୁଟାଇ ଦେଉଛି ଲଳିତେ ! ସେଥିରେ ତମ ମୁହଁରେ ଏ କଠୋର ବ୍ୟବହାର ମାନୁଛି ଟିକି ? ତିଳେ ହେଲେ ହୃଦୟରେ ଦୟା ନାହିଁ ?

ଲଳିତା—ଆହା-ହା, ପଶୁରୁଛ ? କି,ସୁନ୍ଦର କଥା ରେ ! ଦୟାବତୀ ବୋଲାଇବାକୁ ଉପଦେଶ ଦେଉଛ କାହ୍ନୁ ? ଏ କଥା ଫିଟିଲେ ବ୍ରଜରେ ଆଉ ମୁହଁଟେକ ବାଟ ଚାଲିବଟି ? ଶ୍ରୀମତୀଙ୍କ ଅବସ୍ଥା ବା କଅଣ ହୋଇବ ? ଟିକିଏ ତୁମେ ବୁଝିପାରୁନାହଁ ? ନା—ଭଲମନ୍ଦ ବୁଝିବା ଗୁଣକୁ ଦୂରକୁ ଠେଲିଦେଲଣି ମ ?

(ଡ)

ଡର ନାହିଁକି ହେ, ପର ତରୁଣୀ ହରଣୁ ?
ଡୋର ଲାଗି ଘେର ପଡ଼ିବ ଯେ ହେବ
ଚୋରର ପରି ଆଚରଣୁ ।୦।
ଡୋଳା ପ୍ରତିମାକୁ ପରାପ୍ରେ ତୁମ୍ଭଙ୍କୁ
ଯଶୋଦା ଅଛନ୍ତି ପାଳି,
ଡୁବିବଟି ଧନ ! କେଳିକ ମୋହନ
ଲୋଡ଼ୁଛ ଯେ କୁଳପାଳି ।୧।
ଡକା ଦେବା ଧ୍ୱନେ ଅଶ୍ରେଷ୍ଟେ ଜନେ
ଦେଖିଛୁଁ ଶକଟ ଦଶା,
ଡାକ-ମଧ୍ୟମାକୁ ଡାକ ଆଣିବାକୁ
ଏଠାକୁ କାହା ଭରସା ? ।୨।

ଶ୍ରୀକୃଷ୍ଣ—ଚତୁରୀ ଲଳିତେ ! ତୁମର ଶ୍ଳେଷଭାଷାଠାରୁ ଏ ଉପମା ଏକା ମୋତେ ବେଶି ବାଧୁଛି ।

ଲଳିତା—ଶ୍ୟାମ ? ଉପମା ତ ବୁଝେଁ, ସତ କଥା ମୁଁ କହୁଛୁ । (ମଧୁପ୍ରତି) କେଉଁ ପଦକ ଭଲ ମୋର ମିଛ ଏଥିରେ ମଧୁ ?

ମଧୁ—ନାଃ,—ପଦ ପଦକ ତ ପଦକ ! ସଖା, ମୁଁ ଆଉ ବେଶୀ କଅଣ କହିବ ଯେ ?

ଲଳିତା—କାହାର ସାହସ ହେବ ଶ୍ୟାମ, ସେ ହରଣୀ-ନେତ୍ରାର ନୟନରୁ ନୀର ଦେଖିବାକୁ ? ସେ ଲଳିତ ଅଙ୍ଗ କି କଷ୍ଟ ନ ଭୋଗିବ ? ଏସବୁ ଆଶା ଗୁଡ଼ିଦିଅ ।

ଶ୍ରୀକୃଷ୍ଣ—ଲଳିତେ ! ତୁମର ସହାୟ ବିନେ ଶ୍ୟାମର ଜୀବନ ରହିବ ନାହିଁ । ତୁମ ଇଚ୍ଛା ।

ଲଳିତା—କାହିଁକି ? ଚମକୁ ତ ବଂଶୀସ୍ୱନରେ ଡାକି-ଆସେ, ତୁମେ ନିଜେ ତାଙ୍କୁ ଡାକୁନାହିଁ ?

ମଧୁ—(ଭାବି) ଏ ତ ସତ କଥା ସଖା !

ଲଳିତା—ସତ ଯେ ମଧୁମଙ୍ଗଳ ! ମୋତେ ଲାଗୁଛି ସେଥିରେ ବି—ବେଶୀ କିଛି ଫଳ ହେବ ନାହିଁ ? ସେ ବଂଶୀ ନବାଜୁ, ଆମ କାନରେ ନ ପଡ଼ିଲେ ରକ୍ଷା ।

ଶ୍ରୀକୃଷ୍ଣ— (ଢ)

ଟାଳେ ତ ଟାଳିଲୁ ନାହିଁ
କୃପାସୁଧା-ଝରିକି ରେ । ୦ ।
ଚିକ୍କଣ ବାଜୁ ଥାଇ ବ୍ରଜେ
ଲଳିତାର ହୃଦାମ୍ବୁଜେ
କରୁଣା ଅଛି ବୋଲି ଯା
ନେଲି କେ ତା ହରି କି ରେ । ୧ ।
ଡ଼ୁବାଇ ଦେଲେ ତୃଷିତ
ଚକୋର ଚଞ୍ଚୁରେ ଶୀତ-
ଭାନୁ ଚନ୍ଦ୍ରିକାକୁ ବଡ଼
ଯାଏ କିଛି ସରି କି ରେ । ୨ ।

ମଧୁ—ଲଳିତେ ! ଦେଖିଲ, ବିରହରେ ସଖାଙ୍କର ଆମର ଦେହ ତରଳି ଟଳିଗଲାପରି ହେଲାଣି । ଶ୍ୟାମତନୁରେ ଆଉ କଅଣ ଅଛି ?

ଶ୍ରୀକୃଷ୍ଣ—ସଖି ! ମୁଁ ଅତି ଘାନଦଶା ଭୋଗୁଥିବାରୁ ମନ ଖୋଲି ସବୁ ତ କହୁଛି । ମୋତେ ଦେଖି, ମୋର ଏ ଗୃଢ଼ବାଣୀ ଶୁଣି, ମୋର ଦଶା ବିବେଚନା କରି ମଧ୍ୟ ମୋର ଜୀବନରକ୍ଷାର ଏକମାତ୍ର ଉପାୟକୁ ଅଣାଇବାର ଚେଷ୍ଟା ନକରି ମୋ ଉପରେ ପୁଣି କୋପଦୃଷ୍ଟି ପକାଇବା କି ଲଳିତା ପକ୍ଷରେ ସମୁଚିତ ? ତୁମ୍ଭମାନଙ୍କ ପରି ହେମଗୋଷ୍ଠୀ ସୁନ୍ଦରୀଙ୍କ ହୃଦୟ ଏଡ଼େ ନିର୍ଦ୍ଦୟ କାହିଁକି ?

(ହାତ ଧରିଲେ)

ଲଳିତା—ଫଳାଫଳ ଅଜଣା, (ହସି) ବାକି ତୁମ୍ଭର ଏ ଦୁଃଖ ଦେଖି ମୋତେ ହସ ଲାଗୁଛି ।

(ଣ)

ଅତସୀ-କୁସୁମ ସମ ଶ୍ୟାମ ହେ, ମୁଁ ଗଳିଟି । ୦ ।
ଅଳି ଭୃମ୍ଭର ନିବଡ଼ ଅସହିଷ୍ଣୁ ସେ ଯେ ବଡ଼
ଅବଶ୍ୟ ତା ତୁମ୍ଭରେ ମୁଁ ନିବେଦନ କଲିଟି । ୧ ।
ଅଧ ଅଧରରେ ସ୍ମିତ ଉଲ୍ଲସି ହେଲେ ଲଜ୍ଜିତ
ଉହିବ ଏହିଟି ବୋଲି କୃପା-କଳ୍ପବଲ୍ଲିଟି । ୨ ।
ଆରକତ କଲେ ମୁଖ ଅଖଣ୍ଡ ସୁଧା-ମୟୂଖ
ଆବୁର ସହିବ ମୋର ଜାଇଁଲେହେଁ ମଳିଟି । ୩ ।
ଅଦୃଷ୍ଟ ବନ୍ଧୁ କିଶୋରୀ ଅଙ୍ଗୀକାର କଲେ ସରି
ଅଭାବେ ଉଚ୍ଛନ୍ନ ହେବ ଏ ବଲ୍ଲବ-ପଲ୍ଲୀଟି । ୪ ।

(ଲଳିତା ପ୍ରସ୍ଥାନ କଲେ)

ମଧୁ—(ହସି) ସଖା ! ଏଥର ଭଲ ଟିକିଏ ହସ । ଆଉ କାହିଁକି ? ଦଶଅଣାକୁ ତ ବଳ ପାଇଲ । ବହୁତ ଖଟିଛି । ଭୋକ ହେଲାଣି । ଏଣିକି ଚାଲ, ପେଟ କଥା ବୁଝ । ଚିହ୍ନିଲ ? ଏ କେମିତି ଜଣେ ? ଚିହ୍ନ, ଚିହ୍ନ ।

(ଗୀତ)

ମୁଁ କି ଏମିତି ସେମିତି ଜଣେ ?
ପଇତା ଖିଅକି ବୁଦ୍ଧି କି ନିଅଣ୍ଟ
ଗୋପ-ଗଉଡ଼ୁଣୀ ପଣେ । ୦ ।

କ୍ଷୀରସର ଖଣ୍ଡ ମିଶା ପେଟପୂରା ଭୋଜ
ବୁଦ୍ଧି ମୂଳ ଦମ୍ଭ କରେ ଟକ୍‌କଣିଆ ଚଜ,
ଏଣେତେଣେ ପଡ଼ଯାଏ ଏଇ ପେଟ କୋଉ କଣେ ।୧।

ବାଲ ଭୁଇଁ ପଡ଼ିଆରେ ଫୁଟାଏ ମୁଁ ଫୁଲ
ଶ୍ୟାମ ବନା କଏ ବୁଝିବ ମଧୁଆ ବୁଦ୍ଧି ମୂଲ,
ଉଡ଼ଗଲା ଚଢ଼େଇ ପର ଗୋଟି ଗୋଟି ଗଣେ ।୨।

ସରୁଆ ପରୁଆ ହାଡ଼ ଦ ଖଣ୍ଡ ଦେଖୁଛକ ମୋର ?
ମୋଟା ବେଶି ହେଲନାହିଁ, ଲୋଭ କରବ ଗ୍ଲେର,
ବୁଦ୍ଧି ମୋର ସେମିତି ସରୁ ନ ଥିବ କଣ୍ଠାବଣେ ।୩।

( ଗାଇ ଗାଇ ଶ୍ରୀକୃଷ୍ଣଙ୍କୁ ନେଇ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ପଥ—ଲଳିତା ଗୀତ ଗାଇ ଗାଇ ପ୍ରବେଶ )

ଫଗୁଆ ମେଘେ ଖେଳଇ ସୁନାଥାଳିଟି ।୦।
ଡାହାଣିଆଁ ଝରଟି ଲୁଚ ଛପି ଗୁହେଁ
ଠାର ଡାକଇ ସଞ୍ଜ-ବାଳିଟି ।୧।
ପକ୍ଷୀଏ ମିଳ ଜଡ଼ ଗାଇ ଯାଏ
ଆକାଶ-ବେକେ ମୋତିମାଳଟି ।୨।
ଘଣ୍ଟି ରୁଣୁ-ଝୁଣୁ ଗୋଧନ ବାହୁଡ଼େ
ତଳ ନାଚଇ ବନମାଳୀଟି ।୩।

---

## ତୃତୀୟ ଦୃଶ୍ୟ

( ଉଦ୍ୟାନ ବାଟିକା—ଶ୍ରୀମତୀ ବରହ-ଜ୍ୱରରେ ପୀଡ଼ିତା—ସଖିମାନେ ବମର୍ଷ ମନରେ ଘେରରହିଛନ୍ତି ଓ ସେବାଶୁଶ୍ରୂଷା କରୁଛନ୍ତି )

ତୁଳସୀ—ନାଇଁ ସହ, ଠିକଣା ନାହିଁ । କେତେବେଳେ କମ୍ପ, କେତେବେଳେ ଗରମ—ପଦ୍ମପତ୍ର ତାଙ୍କୁ ଗରମ ଲଗୁଛି ।

ବଶାଖା—ଲଳିତା ଫେରୁ, ତା'ଛଡ଼ା ଯାଙ୍କୁ ଔଷଧ ନାହିଁ କଛି ।

ଶ୍ରୀମତୀ—( ଚମକ ଏଣେତେଣେ ଗୁହିଁ, କାନେଇଁ ରହି ) କଏ ? ହଁ । ମୋର ନୁହେଁ ତାଙ୍କରମାନଙ୍କର ଚଳମ୍ବ—ମୁଁ ତ କେତେବେଳୁ ବେଶ ସାର ବସିଛି । ଆରେ ! କଜ୍ଜଳ ଘେନନାହିଁ ପରା ! ଆଣିବୁଟି ସହ—ଆଣିବୁଟି ଦର୍ପଣଟା, ଦେଖେଁ—

( ଜଣେ ସଖୀର ପ୍ରବେଶ )

ବଶାଖା—ଛି, ସହ ! କଅଣ ଏମିତି କହୁଛ ? କାହାକୁ କହୁଛ ?

(ଗୀତ)

ବରଜ ମନୁ ଖେଦ ବରଜ-ରାଣୀ—ଏ ସଜନ !
ଘନଶ୍ୟାମ ଝୁରୁଥିବନ ॥
ଫେରଲେ ଲଳିତା ସଖୀ, ତୋ ଦୁଃଖ ରହିବ ନକ,
ସାଜ, ସାଜ, ସଜ ସଖି ଅଭିମାନମ ॥

( ଲଳିତା, ଏହି ଗୀତ ମଧ୍ୟରେ ଶ୍ରୀମତୀଙ୍କ ଅଜଣା ଅବସ୍ଥାରେ ଏକ କରରେ ପହୁଞ୍ଚଗଲେ—ସେ ହସି ବଶାଖାଙ୍କୁ ଠାର ଡାକଲେ ଓ ବଶାଖା ଗଲେ—ପରେ ଉଭୟଙ୍କର କ ପରାମର୍ଶ ହେଲା । )

ଶ୍ରୀମତୀ—ନା, ଏ ତ, ସେ ନୁହେଁ—ବଂଶୀ । ଶୁଣ ସଖି ! ଆହା, ହା ! କ ସୁନ୍ଦର !

( ଦୂରକୁ ହାତଠାର )

( ଗୀତ )

ସଖିରେ ! ମୋହନ ମୁରଲୀ ଧୀରେ ବାଜେ
କାନର ଭିତରେ ପଶି ମରମ ପରଶେ ଗୋ
ମରେଁ, ମରେଁ, ମରେଁ ସଖି ଲାଜେ । ୦ ।
ଯମୁନା ଲହରୀ ତୁଲେ ତାନ ମିଶାଏ
ବରଜ ରମଣୀକୁଳ ମାନ ଭସାଏ,
ଅଳପ ଅଳପ ହସା- ତା'ର ଅଧର ଗୋ
ଚେତନେ ସ୍ୱପନେ ସାଜେ । ୦ ।

ତୁଳସୀ—କ'ଣ ଏମିତି ଶୁଣିଲ ସହ ? କେହି ତ ନାହିଁ, ଶୋଇପଡ଼, ଶୋଇପଡ଼ ।

ଶ୍ରୀମତୀ—ନାହିଁ ? କେହି ନାହିଁ ? କିଏ କହିଲା ? ହେଇ
ତ ! ସେଇ ଶ୍ୟାମ ନଟବର, ତ୍ରିଭଙ୍ଗ ମୂରତି !
କୋଟି ଚନ୍ଦ୍ର ସୁଶୀତଳ ପରଶଟି ସହି ! ଆହା—
ବଡ଼ ଶୀତଳ (ଚକ୍ଷୁ ମୁଦି) ଦିଅ ! ଦିଅ !
ଲିଭିଯାଉ ସବୁ ଜ୍ୱାଳା । ଆସ, ଦିଅ ! ଆହା-ହା !

( ଢଳିପଡ଼ିଲେ )

(ଲଳିତା ବିଶାଖା ଧାଇଁ ଆସିଲେ)

ବିଶାଖା—ଜଳ ଆଣ ସହି, ପଙ୍ଖା କର—

( ଜଣେ ଜଳ ଆଣି ପଙ୍ଖା କଲା)

ଲଳିତା—ବିଶାଖେ ! ଏତେବେଳେ ଔଷଧ କେବଳ ଶ୍ୟାମନାମ । ମାତ୍ର ତାଙ୍କୁ ଶ୍ୟାମଙ୍କର ଉତ୍କଣ୍ଠା,— ତାଙ୍କ ଦୁଃଖ କହିଲେ, ଏ ରୋଗ ବଢ଼ିପଡ଼ିବ ।

ବିଶାଖା—ତେବେ ?—

ଲଳିତା—କିଛି ନାହିଁ । ତାଙ୍କୁ ନିପଟ ବାଣୀ ଶୁଣାଇଁ, ତା'ପର ସଙ୍ଗ ଲଭ କରି ଟିକିଏ ସେ ବାଟକୁ ଆସିଲେ ଧୀରେ ଧୀରେ ସବୁ କଥା କହିବା । ବାଙ୍କି—ଏକାବେଳକେ ନୁହେଁ । ସର-ଶାକର ମଧୁର ବୋଲି, ଏକାବେଳେ ଗିଳେଇ ଦେଲେ ଅଜୀର୍ଣ୍ଣ କି ନ ହେବ ସହି ?

ତୁଳସୀ—ଯାହା ଭଲ ମଣୁଚ କର ।

ଶ୍ରୀମତୀ—(ଚେତନା ଲଭି) କାହିଁ ? କୁଆଡ଼େ ଗଲେ ସେ ?

ବିଶାଖା—କେହି ତ ନାହିଁ ସହି ! ଲଳିତା ଫେରି ଆସିଛନ୍ତି !

ଶ୍ରୀମତୀ—( ମୁଣ୍ଡ ଫେରାଇ, ଚଞ୍ଚଳ ହୋଇ ) ଲଳିତା ! ଆସ ଆସ ସହି ! ଶ୍ୟାମ କଥା କହି ପୋଡ଼ା ପିଣ୍ଡରେ ଜୀବ ଦିଅ ମୋର ।

ଲଳିତା—(ନୀରବ, ଛଳବିମର୍ଷ ଭାବ ପ୍ରଦର୍ଶନ)

ଶ୍ରୀମତୀ—ଉଁ ?ଏ କଅଣ ସହି ? କିଛି କହିଲୁ ନାହିଁ ତ ?···

ଲଳିତା—କଅଣ କହିବି ସହି ? ( ଛଳ ଦୁଃଖରେ ଦୀର୍ଘଶ୍ୱାସ ପକାଇ ) କଅଣ ବୋଲି ଆଶ୍ୱାସନା ଦେବି ?

( ଛ )

ତୋ ଘେନ ତମାଳ-ଶ୍ୟାମ
ମୋ ମରକତ କଷିଲା ରେ
ତଥାପି ତ ଛଳେ ହେଲେ
ତୋ ସ୍ନେହେ ନ ରସିଲା ରେ । ୦ ।
ଛଳେ ବସନ ପ୍ରସାରି
ତୃଣ ଦଶନାଗ୍ରେ ଧରି,
କହିଲେହେଁ ଅନୁସରି ରାଜ ତ ନ ଦରଶିଲା ରେ । ୧ ।
ତଥ୍ୟୁଁ କି ବିଷମ ଭାବ
ତର୍କିଲା ମୋ ଗୁଣ୍ଠୁ ଶ୍ରବ-
ତଟକୁ ଘଟନ୍ତେ ଅବଧାନ ବିନା ହସିଲା ରେ । ୨ ।

ଶ୍ରୀମତୀ—( ଅର୍ଦ୍ଧୋତ୍ଥିତାଭାବେ ) କଅଣ କହିଲୁ ସହି ? ଏ କଅଣ—ସମ୍ଭବ ? ସେ ରୂପରେ, ସେ ଠାଣିରେ ସେ ଛଳଛଳ ଆଖିରେ, ଏ କଅଣ ସମ୍ଭବ ? ଏ ସତ-ନା-ମିଛ ?

ଲଳିତା—ପ୍ରିୟସହି ! ଲଳିତା ଚିରଦିନ ତମର, ଚିରକାଳ ଅନୁଗତା । ଗଲି ସହି, ପରିଶ୍ରମ କଲି, କର୍ମରେ ମୋର କଟୁକଥା ଶୁଣିବାକୁ ଥିଲା ।

( ଗୀତ )

ତିରସ୍କାର ପୂର୍ବ ଭାଷା
ତରଳାଇ ସୁଖ ଆଶା,
ତୋଟିକି ଚୁମ୍ବିଲା ତୃଷା ତମିର ବଳସିଲା ରେ । ୩ ।

ହେଲା ପଛେ ଶ୍ରୀମତୀ ! ତମର ଆଶା ପୂରିଥାଆନ୍ତା କି; ତମର ଗୌରବ ହାନି ହେବାଟା ସିନା ମୋତେ ବେଶୀ ବାଧୁଛି !

( ଗୀତ )

ତପନଜା ତଟକୁ ତୁ
ତରୁଣୀଟା କେଉଁ କୁତୁ-
ହଳରୁ ଆସିଲୁ ହେତୁ କହ ବୋଲି ଘୋଷିଲା ରେ ।୪।

(ସଖେଦେ) ଯେମିତି ଦେଖିଲି ସହି, ଯଦିବା ଭାଗ୍ୟବଳରୁ ସେ ଆଶା ପୂରିବ, ଶେଷରେ

କେବେହେଲେ ଫଳ ଭଲ ହେବ ନାହିଁ—ଅନୁତାପ ସାର ।

ଶ୍ରୀମତୀ—(ମୀରବ ରହି) ନା, ନା, ମନ ତ ମୋର ସେ କଥା କହୁନାହିଁ; ବିବେକ ମାନୁନାହିଁ ତ କାହିଁକି ?

( ଥ )

ଥାପିରେ କହ ତଥାପି ରେ ପ୍ରିୟସଖି !
ଥିବି କି ଛାଡ଼ିବି ପ୍ରାଣ । ୦ ।
ଥିଲାପରି ସ୍ନେହ ଲଗିଲାକି କହ
ଅଛୁଟି ତୋତେ ମୋ ଗୁଣ । ୧ ।
ଥକାଇ ତୁ କହୁକହୁ ଧୃତି ରହୁ
—ନାହିଁଟି ମୋହର ଜାଣ । ୨ ।
ଥୋକାଏ ତୋ ପ୍ରୀତି ବିଧିକି ସମ୍ମତି
କଲେ କି ମୋ ପରିତ୍ରାଣ । ୩ ।
ଥରେ ହେଲେ ବିକହେବି ମୋତେ ନିକି
ବଞ୍ଚାଇବ ପଞ୍ଚବାଣ । ୪ ।

ଲଳିତା—( ବିଶାଖା ପ୍ରତି ଭୁନଭୁନ ) କଅଣ ଉତ୍ତର ଦେବ ସ୍ୱାର ? କି ଅଭେଦ ପ୍ରୀତି ! ଖେଳ, ଖେଳ, ଧରିଦେବି ମନେ କରିଥିଲି ସିନା ! ନାଃ...

ଶ୍ରୀମତୀ—ଭୁନ ହୋଇ ରହିଲୁ କାହିଁକି ସଖି ? ବନ୍ଧୁ କଅଣ ସତରେ ମୋର ସ୍ନେହ ସାମାନ୍ୟ ମଣି ଫେରାଇ ଦେଲେ ତୋତେ ? କହ ସଖି ? ଜୀବନରେ ଆଶା ଅଛି—ନା-ଯମୁନା ?—

ଲଳିତା—(ବାଧାଦେଇ) ଛି, ଛି, ସଖି,—

( ଦ )

ଦୁଃଖମୟୀ ନକର ସରସ ମନ ରେ ଦୁଃଖିଧନ !
ଦମ୍ଭ ଦେଖିବାକୁ ସିନା କଲି ଛନ୍ଦ । ୦ ।
ଦୂରୁ ମୁଁ ଯିବାର ଜାଣି ହରି
ଦରିଦ୍ର-ନିଧି ଲଭିଲା ପରି,
ଦ୍ୱିଗୁଣ ଆଦରେ ପ୍ରମୋଦ ନଦ ରେ
ମଜ୍ଜି ସେନଗଲେ କରି ଧରି ।୧।
ଦସ୍ୟୁ ଜର ଜର କରି ଚିତ୍ତ
ଦନ୍ତ ବାସେ ରଖି ଦର ସ୍ମିତ,
ଦଶବାର ଅନାମୟ ମୋତେ ସେନା-
ସେନ କରି ପଚାରିଲେ ମିତ ।୨।
ଦେଖିଲି ଯାହା ଶ୍ରୀଅଙ୍ଗଦ୍ୟୁତି
ଦଳି ହୋଇଗଲା ମୋର ଛାତି,
ଦ୍ୱିଗୁଣ୍ୟାର ଶଶୀରେଖାପରି ଦଶି-
ଗଲେନି ସେ ଇନ୍ଦ୍ରନୀଳଦ୍ୟୁତି ।୩।

ବିଶାଖା—ଏଥର ଶୁଣ ! ମୋ କହିବା କଥା ଫଳିଲା ନା ?

ଶ୍ରୀମତୀ—ଫଳିଛି ସଖି-ଲଳିତେ, ବନ୍ଧୁ କଅଣ କହିଲେ ତୋତେ ? କି ଉପହାର ଦେଲେ, ଠିକ୍ ତୋର ଏ ଉପକାରର ପ୍ରତିଦାନ ହେବ ସଖି ! ଜାଣୁନାହିଁ ତ ? ଲଳିତେ ! ଏତେ ଦସ୍ୟୁ ତୋର ଛାର ବାଧିକାଠାରେ ? ( ଗଳାରୁ ହାର କାଢ଼ି ଲଳିତା ଗଳାରେ ବାନ୍ଧି ବାନ୍ଧି ଗାଇଲେ )

( ଧ )

ଧୀରି ରେ, କି ଧନ ତୁ ନଦେଲୁ ଆଜ
ଧଇଲେ କି ସତେ କରି ଯୁବରାଜ । ୦ ।
ଧରମବନ୍ଧୁ କି ମୋର ଧୂପି ଦେଇ ନିଜ କର
କୋଳକୁ ଆଣିଲୁ କଳା ଦ୍ୱିଜରାଜ । ୧ ।
ଧରାରେ ଯେତେକେ ପୁରୁଷେ ଧୂର୍ତ୍ତି ତାହାଙ୍କ ଗୁରୁ ସେ
ଧନରୁ ଯେ ବଳେ ତାହାଙ୍କର ବ୍ୟାଜ । ୨ ।

ଲଳିତା—ମାନିନି ! ଅୟି ଧର । ତୋ ଧୈର୍ଯ୍ୟ ଦେଖିବି ବୋଲି ସିନା, କପଟ କରିଥିଲି—ଏ ଶୁଖିଲା ମୁହଁ ଦେଖି ଛାତି ସହିଲା ନାହିଁ । ତୋ ଦୁଃଖ ଦେଖି ଶ୍ୟାମଙ୍କ ପାଖକୁ ଗଲି । ହେଲେ, ମନ ମାନିଲା । ଦେଖିଲି ସେ ଚକୋର ପରି ତୋହର ଚନ୍ଦ୍ର-ମୁଖସୁଧାକୁ ଅନାଇଁ ରହିଛନ୍ତି । ତୋ ବିରହରେ ଶ୍ୟାମଲତା ଝାଉଁଳି ପଡ଼ୁଛି । ସବୁ ହେଲା ସତ; ବାକ୍ୟ...

ଶ୍ରୀମତୀ—ସଖି ! ତୋ ମୁହଁରୁ ଆଶାବାଣୀ ଶୁଣି ରାଧିକା! ଆଉ ମରଣକୁ ଭୟ ରଖିନାହିଁ । ସବୁ ତ ହେଲା ବୋଲି କହିଲୁ, ଆଉ ସନ୍ଦେହ କାହିଁକି ? 'ବାଙ୍କ' ବୋଲି କହି ଭୁଲ ହେଲୁ କାହିଁକି ତେବେ ସଖି ?

( ନ )

ନବ ବିଳାସିନୀ ରେ ! ନିଷ୍ଫଳେଶ-ହାସିନୀ ।୦।
ନାହିଁ ବୋଲିବା ବାଣୀ  ନିପଟ ନାହିଁ ଶୁଣି
ନଳିନାକ୍ଷିରେ ହୋଇ କିସ ହେବ ?
ନନ୍ଦନନ୍ଦନ ପ୍ରେମା-  ପ୍ରେମରେ ନୁହେଁ ଜମା
ନିଚନ୍ଦ୍ରିମାକ ଯେବେ ଗତି ଥିବ ।୧।

ନିଷ୍ଠୁର ଗୁଣ କୁଳ-  ଶରୁ ପଡ଼ୁଛି ବଳ
'ନିଷ୍ଠୟ' ତିନ ବର୍ଣ୍ଣ ନାହିଁ ଲେଖି,
ନାଗରୀ ବିମୋହନ-  ମନ୍ତ୍ର ମାଦକ ମନ-
କପଟ ସମ୍ପୁଟରେ ଅଛୁ ରଖି ।୨।

ଶ୍ରୀମତୀ—ପୁଣି ପୁଣି କି କଥା ସଖି ? ତୋ କଥା ଶୁଣି ତାଟକା ଲାଗେ ଯେ !

ଲଳିତା—ନାଇଁ ସଖି, ସତ କଥା । ଯାଇଥିଲି ଯେତେବେଳେ ତାଙ୍କର ଭଲ-ମନ୍ଦ ସବୁ ତ କହିବ ? ଖାଲି ଶୁକ୍ଳପକ୍ଷରେ କି ମାସ ପୂରେ ? ଗୋଟିଏ କଥାରେ ମୋତେ ସନ୍ଦେହ ଲାଗିଲା— ଶ୍ୟାମ ତ ଜଣକର ନୁହେ; ଘୋର ନିଷ୍ଠୁର ସେ । "ନିଶ୍ଚୟ" ବୋଲି ତିନୋଟି ଅକ୍ଷର ସେ ଶିଖି ନାହିଁ, ପଢ଼ିନାହିଁ କି ଲେଖିନାହିଁ । ଖାଲି ଆଡ଼- ନୟନରେ, ଛଳଆଖିରେ ଚାହିଁ, ମୁରଲୀ ବଜାଇ ନାରୀମନ ହେରିଇ ଜାଣେ—ବାକି କାହାରିଠାରେ ନିଶ୍ଚୟ ସ୍ନେହ ରଖି ଜାଣେ ନାହିଁ । ଏହିକ୍ଷଣି ତୋ ବିରହରେ ଝୁରୁଛି ସେ, ଦିନରାତି ଜ୍ଞାନ ନାହିଁ, ପଦ୍ମଧର ଗରମ ଲାଗୁଛି, କଦମ୍ବ ବନର ପବନ ତାଙ୍କୁ ନିଆଁ ଝାସ ପରି ଲାଗୁଛି । ପୁଣି ଦିନ ଆସିବ —ତୁ ଟିକିଏ ତା ସ୍ନେହରେ ମଜ୍ଜିବାର ଜାଣିଲେ ସେ, ଦେଖିବୁ ଉଦାସୀନତା ସାର ହେବ । ଚନ୍ଦ୍ରକିରଣ ତୋତେ ଟାଣ ଖରାପରି ଲାଗିବ ।

ଶ୍ରୀମତୀ—ଲଳିତେ ! ଏସବୁ ସତ ହେଲେ, ମୋର ଉପାୟ ? ଆଉ ଗତି ରହିବଟି କି ?

ଲଳିତା—ସେଇଥିପାଇଁ ତ ଭଲ-ମନ୍ଦ ସବୁ କହିଲି ସଖି ! ପଚାରିଲୁ ଯେବେ ମୋତେ, ମୁଁ କହେଁ, ଖାଇବା ପିଇବା ଅରୁଚି ହେଉ ପଛକେ ଶ୍ୟାମର କପଟ ଭୁଜାଲିଙ୍ଗନକୁ ଇଚ୍ଛା କର ନାହିଁ । ଅନ୍ୟ ଗତି ଥିଲେ କେହି ସୁନ୍ଦରୀ ମୟୂରଚୂଳିଆର ପ୍ରେମ ଲୋଡ଼ିବା ଠିକ୍ ନୁହେଁ । ପଛରେ ଘୋର ଦୁଃଖ ଭୋଗି ଆକାଶ ପୃଥିବୀ ଆଉ କନ୍ଦାଅ ନାହିଁ, ଆମ୍ଭମାନଙ୍କୁ ବୁଡ଼ାଅ ନାହିଁ ସଖି ! ସବୁ ତ କହିଲି, ଏଣିକି ତମ ମନ ।

ଶ୍ରୀମତୀ—ସନ୍ଦେହର ବିଷମ-ଦୋଳାରେ ଦୋଳାଇଲୁ ଲଳିତେ ! ଭାସିଯାଇଛି ଯେତେବେଳେ ବହୁଦୂର, ଉଜାଣିକି ବଳ ନାହିଁ ମୋର ? ଯମୁନା ଛଡ଼ା ଆଉ ଅନ୍ୟ ଆଶ୍ରା ତ ନାହିଁ ସଖି ! ଏ ପାତକ ତାଙ୍କର ହେଉ । ଆଉ ତ ମୁଁ ଫେରିପାରିବି ନାହିଁ । କାହିଁକି ତେବେ ମୋତେ ଏସବୁ ଶୁଣାଇଲୁ ସଖି ? ଆଉ ତ ପାରିବି ନାହିଁ— କୁଆଡ଼େ ଯିବି ସଖି ? ବାଟ ନାହିଁ ମୋର ? ଏଁ ! ଏସବୁ ତୋର ସତକଥା ତ ?

( ଉଠିପଡ଼ିଲେ )

( ପ )

ପରମାଦ ବଡ଼ ତୁହି ଗୋ—ପ୍ରିୟସଖି !
ପାରୁ କେତେ ଛନ୍ଦେ ମୋହି ଗୋ ।୦।

ପରମ ପଦରେ ଦେଇ ଜାଣୁ ତୁ ବସାଇ,
ପୁଣି ତହୁଁ ଜାଣୁ ତଳାତଳକୁ ଖସାଇ ।
ପାସୋରାଇ ମନୁ ନାନା କଦନ ଲସାଇ,
ପୀଡ଼ୁ ଅଶ୍ରୁ ବରଷାଇ ଗୋ ।୧।

ପରବ ଚନ୍ଦ୍ର ଚପୁଡ଼ି ପିଇବା ପୀୟୂଷ,
ଚରଣତ ସମପ୍ରେ ସେ ହେବ ଯେବେ ବଶ ।
ପ୍ରସନ୍ନ ହେବା ଗଙ୍ଗାରେ ଜନ୍ମିଲେ କଲ୍‌ବଷ,
ପ୍ରଯୋଗ କରିବା କସ ଗୋ । ୨ ।
(ଗୀତ ପରେ ହଠାତ୍ ଚାଲିଗଲେ)

ଲଳିତା—ଦେଖୁଛ ବିଶାଖେ ? ଦେଖ, ଦେଖ—

ବିଶାଖା—କୁଆଡ଼େ ଗଲେ—? ସବୁ ! ସବୁ !
( ଉଭୟେ ପଛେ ପଛେ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

( ଗ୍ରାମ୍ୟ ପଥ—ମଧୁ ଓ ଶ୍ରୀକୃଷ୍ଣ ପ୍ରବେଶ )

ମଧୁ—ବୁଝିଲ ସଖା ! ପାଠ ବୋଇଲା—ବଳମ୍ବରେ କାର୍ଯ୍ୟସିଦ୍ଧି, ସେ ତ ଆଜ ଛେନାମଣ୍ଡା ନୁହେଁ ଯେ—ଟାଆକୁ କନା ଗିଳଦେଇ, ତଳକୁ କନା ପାଣି ଗ୍ଲାସ୍‌ଟିଏ ପିଇ, ହେଉଡ଼ଟେ ମାରିଦେଇ, ତଳେ ପାଣି ଧରି ଅଗସ୍ତି ବୋଲି ପେଟୁଟିରେ-ହାତ ବୁଲେଇ ଦେଲେ—ଯା—ଜୀର୍ଣ୍ଣ ହୋଇଯା, ଏଥିରେ କେତେ ନଟ ଖଟ,—ଏ ପରା—

( ଗୀତ )

ଦଗାଦିଆ ପର-ପୀରତି
ନିତ ଦକଦକ ହୁଅଇ ଛାତି । ୦ ।
କଳପନା ତୁଳିକା ଅଙ୍କା ପ୍ରେମଚନ୍ଦ୍ର ବନକମଖା
—ସେ ମନ ଛନକା
ଏ ଆଖିର ଲୁହ ସେ ଆଖିରେ ଭରି
ଆକାଶକୁ ଚାହିଁ କଟାଏ ରାତି । ୧ ।
ଶାଣଦିଆ ପୀରତି କାତି ଖୋଳେ ରସରସିଆ ଛାତି
—କ ଜାତି ଅଜାତି
ଆଲୁଅ ଅନ୍ଧାର, ଏକା କଥା ତାର
ସୁଅମୁହେଁ ଛୁର ବଣୁଆଁ ହାତି । ୨ ।

ଶ୍ରୀକୃଷ୍ଣ—( ନେପଥ୍ୟକୁ ଚାହିଁ ) କିଏ ଦି' ଜଣ ଏଣିକି ଆସୁଛନ୍ତି, ଦେଖିଲ ସଖା !

ମଧୁ—(ଚାହିଁ) ହାଁ ! ଠିକ୍, ତମ କରମ କଅଣ ଏମେଡେ ସଲଖ କି ? ଖାଲି ତୁମେ ପିନା ତିନିଭଙ୍ଗିଆ ବଙ୍କା, ନୋହିଲେ କରମ କଅଣ ? ସିଧା—ଏକଦମ୍ ବାଉଁଶ ଠେଙ୍ଗା ! ଆସ, ଏଣିକି ଆସ, ଟିକିଏ ଅଣଆଡ଼ୁଆ ହୋଇ ଆସ । (ଶ୍ରୀକୃଷ୍ଣ ଟିକିଏ ଚାହିଁବାରୁ ) ଆରେ ! କଥା ମାନ ମୋର ! ଏଠି ଆଜି ଏତେବେଳେ ସେ ଗଉଡ଼ୁଆ ବୁଦ୍ଧି ତମର ପଶିବ ନାହିଁ । ଆସ, ଚାଲିଆସ—ହାଁ ! ଆଜି ଗୋଟିଏ କଥା ଶୁଣ ! ଯେବେ କଥାଟାରୁ ସାର ସାର କାଢ଼ିବାକୁ ଚାହୁଁ, ଆକ୍ରମଣ କରି ଝାମ୍ପ ମାର । ସାଫ୍ ସାଫ୍ ସବୁ ମନକଥା ଗାଳ-ଫକାଇବ । ସେ ବଙ୍କାଭଙ୍ଗୀରେ ଖେଳାଖେଳ ବେଳ ଆଜି ନାହିଁ; ନୋହିଲେ ସେ ଚମ୍ପଟ ଦେବେ—ତମ ମନକଥା ମୁଣିରେ ଥିବ—

( ଗୀତ )

ବନର ମାଳତୀ ପରି ବନେ ଫୁଟି ଝଡ଼ିବଟି
ମନକଥା ମନେମନେ ଅକାରଣେ ମରିବଟି । ୦ ।
ଆଜି ସେ ତ୍ରିଭଙ୍ଗ ଠାଣୀ,
ନଥିବ ବାଙ୍କଚାହାଣି
ମୁରଲୀ ମଧୁର ବାଣୀ କାହା ଟାଣ ନଥିବଟି । ୧ ।
ସେ କେଳିକଦମ୍ବ ତଳ,
କିବା ସେ ଯମୁନାକୂଳ
କେ ପଚ୍ଛରେ ବାଙ୍କଚୂଳ ସବୁସୁଖ ସରିବଟି । ୨ ।
( ମଧୁ ଶ୍ରୀକୃଷ୍ଣଙ୍କୁ ନେଇ ଅନ୍ତରାଳକୁ ଗଲେ )

ଲଳିତା—( ତୁଳସୀ ସହ ପ୍ରବେଶ ହୋଇ ) ତା ପରେ ?—

ତୁଳସୀ—ବିଶାଖା ତାଙ୍କୁ ଠିକ୍ ବାଗେଇ ଦେଇଛୁ । ମୁଁ ତାଙ୍କ ସାଙ୍ଗ ଛାଡ଼ି କେତେବେଳୁ ଏ ଖବର ନେଇ ଆଗରେ ଆସି ତମକୁ ଖୋଜି ଖୋଜି ଭେଟି

ପାଇଲି । ( ପଛକୁ ଚାହିଁ ) ଏଇ ତ ! ସେ ବନ୍ଧେଁ ଆସୁଛନ୍ତି—ଦୂରରେ ଅଛନ୍ତି । ମୁଁ ଖସିଯାଏଁ । ତୁମେ ଥରେ ଆଗମୁହାଁ ହୋଇ, ଯାଇ ଏଇ ବାଟେ କୁଆଡ଼ୁ ଫେରିଲାପରି ହୋଇ ଆସ, ହାବୁଡ଼େ ପଡ଼ିବେ ଯେ ।

(ତୁଳସୀ ପ୍ରସ୍ଥାନ)

(ଲଳିତା ଯାଉଁ ଯାଉଁ ପଛରୁ ଆସି ମଧୁ ଡାକିଲେ)

ମଧୁ—ଏ କିଏ ଗୋ ? ସଜନୀ ?

ଲଳିତା—(ଫେରିଚାହିଁ) ଓଃ, ସାରିଲେ ମୋତେ—କାହିଁକି ଡାକୁଛ ହେ ?

ମଧୁ—(ମୁଣ୍ଡ କୁଣ୍ଡାଇ) କଅଣ କି ? ସେଇ—ସେଇ କଥା ତ—ସେଇ—

ଲଳିତା—କଅଣ ହେ ସେଇ ? ଗେଲେଇ ହୋଇ, କଷି ପିଲାଟିଏ ! କହିଲେ ସେଇ—ଓଃ ଏଇନେ ଅଜାଡ଼ିବେ ପରା ସମ୍ପତ୍ତି !

ମଧୁ—ନାଇଁ, ଆମର ଆଉ କି ସମ୍ପତ୍ତି ? ସେଇ ହଳଦି-କାଠୁଆ କଜଳପାଣ୍ଡି ।

ଲଳିତା—ଯା, ଯା, ସବୁବେଳେ ଗୁରୁଏ ବିରକ୍ତ କରନା । ଭଲ ନାହିଁ ମନ୍ଦ ନାହିଁ,—ଥଟ୍ଟା !

(ଶ୍ରୀକୃଷ୍ଣ ପ୍ରବେଶ)

ଶ୍ରୀକୃଷ୍ଣ—ନାହିଁ, ନାହିଁ, ଥଟ୍ଟା ନୁହେ ! ଚାତକର ଯେ, ନବଘନ ବିନା ଭରସା ନାହିଁ ।

ଲଳିତା—କିନ୍ତୁ ଶ୍ୟାମ ! ଏ ଘନରେ ହେ ବରଷା ନାହିଁ ।

ମଧୁ—କଅଣ ! ନିରାଟ ଖରା ? ଟିଇଁଟିଆଁ ?

ଲଳିତା—ତୁନି ହୁଅ ମଧୁ !

ମଧୁ—(ମୁଖ ବନ୍ଦକରି ଆଙ୍ଗୁଠି ଦେଇ) ହେଲି ।

ଶ୍ରୀକୃଷ୍ଣ—ସଖି,—

ଲଳିତା—ଆଉ ସେକାଳ ନାହିଁ, ତମର ଖବର ନେଇଯାଇ—ବହୁତ ଅପମାନ, ବହୁତ ଗଞ୍ଜଣା ସହିଲି ଶ୍ୟାମ ! ଶେଷରେ ଅବିଶ୍ୱାସିନୀ ହେଲି । କାହାକୁ କହିବି ? କର୍ମ ସେ ।

ଶ୍ରୀକୃଷ୍ଣ—କଅଣ ହେଲା ସଖି ?

ଲଳିତା—ନିଘଣ—ଚଡ଼ା ଖାଇଲି—ଫଳ ଏଇ ।

ଶ୍ରୀକୃଷ୍ଣ—ତେବେ କଅଣ ?···

ଲଳିତା—( ନେପଥ୍ୟକୁ ଚାହିଁ ) ତେବେ ଏବେ ଆଉ କଅଣ ? ବାଟଟାରେ ସ୍ତ୍ରୀଲୋକ ମୁଁ ! ଛି, ତୁମେ ବେଗେ ଗଲ ଏଠୁଁ—

ଶ୍ରୀକୃଷ୍ଣ—ତମ ଛଡ଼ା ଆଉ କିଏ ଅଛି ଲଳିତେ ! ଏ ବିପଦରେ ମୋର ସାହା ହେବ ?

ଲଳିତା—(ପୁଣି ନେପଥ୍ୟକୁ ଚାହିଁ) ଓଃ, ଗଲ ତୁମେ ଆଗେ, ଆଚ୍ଛା ଶୁଣ, ଦେଖାହେବ । ବେଗେ ଯାଅ ବାହାରି ଏଠୁଁ—ଯାଇ ଆର ପାଖେ କୁଞ୍ଜ-ପଟେ ଲୁଚି ବସିଥାଅ । ତା'ପର ଯାହା ହେବ ଅଛନ୍ତି ତ ବଟୁ, ବୁଦ୍ଧି ଦେବେ । ଯାଅ, ଡେରି କର ନାହିଁ । ଗଲ ? ଯାଅ—

ଶ୍ରୀକୃଷ୍ଣ—ଲଳିତେ ?

ଲଳିତା—ଓଃ, ଯାହା କହୁଛି କର । ଚାଲିଆସ ତେବେ, ସବୁ ଅନ୍ତରାଳରେ କହିବି । ଏଠି ରହ ନାହିଁ । ବୁଝୁନାହଁ ? ଏଟା ଗୋପଦାଣ୍ଡ ବୋଲି ? ଆସ ! (ସମସ୍ତେ ପ୍ରସ୍ଥାନ)

( ଶ୍ରୀମତୀ ଓ ବିଶାଖା ପ୍ରବେଶ )

ବିଶାଖା—ଭଲ କରିନାହଁ ସଖି, ଲଳିତାକୁ ଅବିଶ୍ୱାସ କରି । ସେ ଯେ ତମରି ।

ଶ୍ରୀମତୀ—ଜାଣେ ସବୁ—ବାକି ବିଶାଖେ ! ମୁଁ ତ, ମୁଁରେ ନଥିଲି, କଅଣ କରିବି ସଖି ? ଜୀବନ କାହିଁକି ରଖିବି ଆଉ ? ଚାରିଆଡ଼ୁ ତ ମୋର ଭରସା ତୁଟିଲା ଏବେ !

ବିଶାଖା—ଅଧୀର ହୁଅ ନାହିଁ, ଲଳିତାକୁ ପୁଣି ଧରିବାକୁ ହେବ । ତାହା ବିନା ଶ୍ୟାମ-ମିଳନର

ଆଶା ଅସମ୍ଭବ । ହୋଇଛି ସହି ! ଲଳିତା ଏଣିକି ଆସୁଛନ୍ତି ।

( ଲଳିତା ଆସୁ ଆସୁ ଶ୍ରୀମତୀ ଶୀଘ୍ର ତାଙ୍କ ନିକଟସ୍ଥା ହୋଇ )

ଶ୍ରୀମତୀ—ଲଳିତେ ! (ମୁହଁ ପୋଛିଲେ)

ଲଳିତା—ଆଉ କାହିଁକି ସହି ! ଅବିଶ୍ୱାସିନୀ ମୁଁ, ମୁହଁ ମୋର ନଚାହିଁବାଟା ଭଲ । ମୋ ସଙ୍ଗ ତ୍ୟାଗକର । ଲଳିତା ମରିଛି ସହି । ମୁଁ ସବୁ ବୁଝିଛି । ଯେ ଯାହାର ଭାଗ୍ୟ ଭୋଗ କରିବ ସିନା ! ମିଥ୍ୟା ତ ଲଳିତାର ଜୀବିକା ! ସବୁ ବୁଝିଛି, ଆଉ କାହିଁକି ?

( ଫ )

ଫାଟି ପଡ଼ିବାର ନିକୁଞ୍ଜ-ସଞ୍ଚାର-
ଶ୍ରମୁ ମୋ ଚରଣତଳ,
ଫଳୁରଖୋର ଆଖରକୁ ହେବାର
ଏହି ଏକା ଏଥିଁ ଫଳ
ରେ କିଶୋର, ଫିଟିଗଲା ଯେ ସନ୍ଦେହ ।
ଫୁଲିଗଲୁ ଫୁଲଲଲମରସିକା
ଜାଣି ପରା ଶ୍ୟାମ-ସ୍ନେହ ? ।୧।
ଫନ୍ଦାଇ ନାନା ବଚନପ୍ରେ କହି ଦନ୍ତେ
ତୃଣ ଧରିବାର ହେଲା,
ଫଟା କପାଳରେ କୁଟିଳ ହୃଦୟା
ବୋଲାଇବା ଲେଖାଥିଲା
ରେ କିଶୋର, ଫନ୍ଦାଧନ ତୁ ତ ମୋର ।
ଫଳଆଦ କାହିଁ ତୋ ନାମେ କରିବ,
ନିନ୍ଦା କଲେ ପଛେ କର ।୨।
ଫଳିତ ହୋଇ ଦୂରରେ ଥିଲେ, ତୋତେ
ଭଜି ତ ଥିବାର ସତ
ଫେଡ଼ିନୁ ତୋ କଷ୍ଟ ସୁଖ ଦେଇ ଅଷ୍ଟ-
ଶ୍ରୁତି ଏ ଆମ୍ଭ ବାଞ୍ଛିତ
ରେ କିଶୋର, ପୂରଣା ହୋଇ ତୁ ରସ ।
ଫେରଅସି ମାତ୍ର ଆମ୍ଭ ଆଗେ ନେତ୍ର-
କଞ୍ଜୁ ମିର ନବରସ ।୩।

ଶ୍ରୀମତୀ—( ଲଳିତାଙ୍କ ଆଡ଼କୁ ମୁଖଭଙ୍ଗୀ ସଖେଦେ ) ସହି ! ଏଡ଼େ କଠୋର ହୁଅ ନାହିଁ । ରାଧିକାର ତୁ ପର ଏକା ବଳ ?

ଲଳିତା—ନାହିଁ ସହି, ଆଉ ସେକାଳ ନାହିଁ । ଶ୍ରୀକୃଷ୍ଣ ପ୍ରମୋଦିନୀ, ମୁଁ ଅବିଶ୍ୱାସିନୀ—ମୋତେ ଦୂତୀ କରି ପଠାଇବାରୁ ସିନା ତୁମେ ସଫଳ-ମନୋରଥ ହେଲ ? ମୋର ପାଦଶ୍ରମର ଫଳ ମୋତେ ମିଳିଗଲାଣି । ଆଉ କାହିଁକି ?

ବିଶାଖା—ଛି ସହି, କାହାଠାରେ ଏ ଅଭିମାନ ତୋର ଆଜି ?

( ଗୀତ )

ଛାର କଥାକୁ କେତେ ସାର କରୁଛୁ ସହି !
ସେ ପରା ନୟନପିତୁଳା ?
ଗଳାମାଳା, ଶିରୀଷ- ସୁକୋମଳା—କାମକୁଶଳା ॥
ରୁଷିଲେ ତୁ ସହି, ପାରିବକି ସେ ସହି ?
ଦୟା ବହି, ଅନାଥେ ଥରେ
ତୋ ବିନା କି ଦଶା ଲଭିଲା—ପ୍ରୀତି-କୁଶଳା ॥

ଶ୍ରୀମତୀ—ଲଳିତେ ! ଏ ଜଗତରେ ତୋ'ଠାରୁ ମୋର ଆଉ ବଡ଼ ବନ୍ଧୁ କିଏ ଅଛି ଭଲ ! କିଏ ଅଛି ସହି, ରାଧିକାର ପୋଡ଼ା ପ୍ରାଣରେ ଶୀତଳ ଜଳଛିଟା ଦେଇ ଆଶ୍ୱାସନା କରିବ ? ଯେବେ ଅନୁଚିତ କଥା କହି କହିଛି, ମୋତେ କ୍ଷମା ଦେ, ସେ କଥା ଭୁଲିଯା' । ଆ ସହି ! କଦମ୍ବକୁଞ୍ଜକୁ ଯାଇ ଦେଖିବା, କେଉଁଠି ସେ ମୟୂର-ଚୂଳିଆ ଆଖି-ଛଟାରେ ତିନି ଭୁବନ ଭୁଲାଉଛି । ସହି ! ମୋର ଦୋଷ ଧର ନାହିଁ !

ଲଳିତା—କିଏ ଦୋଷ ଦେଉଛି ଗୋ ? ଲଳିତାକୁ କଅଣ ଚହ୍ନି ନାହଁ ?

ଶ୍ରୀମତୀ—କିଏ କହିଲା ମୁଁ ଲଳିତାକୁ ଚହ୍ନି ନାହିଁ ? ତୋ ଦୁଃଖ ଦେଖି ମୋର ଯେ ଧୈର୍ଯ୍ୟ ରହୁନାହିଁ । ଆ ସହି ! କଦମ୍ବ-କୁଞ୍ଜକୁ ଆ !

ଲଳିତା—ରାଧିକେ ! ପ୍ରେମ-ଖେଳ ହୋଇ ସବୁ ତ ଭୁଲିଯାଉଛ !

ଶ୍ରୀମତୀ—କଅଣ ସଖି ?

ଲଳିତା—ସଖି ! ପାଦରେ ତ ନୂପୁର ଅଛି, କଅଣ ବିଜୟ-ଡିଣ୍ଡିମ ବଜାଇ ବଜାଇ ଯିବ କି ?

ଶ୍ରୀମତୀ—ଛି, ଛି, ଏ କଅଣ କହୁଛୁ ସଖି ?

ଲଳିତା—କଅଣ କହିବି ? ଖୋଲି ରଖେଁ, ଲୁଚି ଲୁଚି ନଗଲେ କଅଣ ଛଇଳକହ୍ନାଇର ନବରଙ୍ଗ ଦେଖି ପାରିବ ? ଆଉ କି ସେତେବେଳେ ଆମେମାନେ ମନେ ପଡ଼ିବୁଁ ? ଏତିକି ବେଳୁ ତ କେତେ ଅବିଶ୍ୱାସ !! ( ନୂପୁର ଫିଟାଇବାକୁ ବସିଲେ)

ଶ୍ରୀମତୀ—(ଲଳିତାକୁ ଉଠାଇ ଗାଇଲେ)

( ବ )

ବିଚକ୍ଷଣା ରେ !
କିନା ତୋ ପ୍ରୀତି କେ ଗତି ଅଛି ଜଗତରେ । ୦ ।
ବୋଲି ଦେଲି ସିନା ଗେଲେ ହସି,
ବିଶ୍ୱେ ତୋ ସମ କାହିଁ ବିଶ୍ୱାସୀ ?
ବାନ୍ଧିବାକୁ ମୋ ମନକୁ ଫାଶୀ
ବିଶେଷରେ ମୋ ହୃଦନ୍ତର ତୋତେ ଜଣା ରେ ।୧।
ବିକେ କଣେ ଯେ ଯାହାକୁ ସ୍ନେହେ
ବଡ଼ ତା’ଠାରୁ ଜୀବନ ନୋହେ;
ବଳି ତାହାଠାରେ ସିନା ସହେ
ବହୁରଙ୍ଗେ ବୁଲୁଛନ୍ତି ଦେଖ ଅଗଣାରେ । ୨ ।

---

## ପଞ୍ଚମ ଦୃଶ୍ୟ

( ପଥ—ସଖୀଗଣ ପ୍ରବେଶ )

( ଗୀତ )

ଛପିଛପି ଲୁଚି ଆରେ, ଅରେ ଶ୍ୱେତବଦକ୍ଷିଣା !
କହିଯା ରେ, ରହିଯା ରେ,
ମନକଥା ଥରେ ସଜନୀ କାନରେ, କର କର କରୁଣା ।

ଚୁମ୍ବିଲୁଟି ଫୁଲମୁଖଟି ଚହଟିଲା କୁଞ୍ଜବନଟି
ହସିଲାଟି, ବସିଲାଟି,
ଲାଜେ ଲାଜେ ତୋତେ ଆଡ଼େ ଆଡ଼େ, ସତେ,
ଚାହିଁଲାଟି ନବୀନା ।

( ପ୍ରସ୍ଥାନ )

---

## ଷଷ୍ଠ ଦୃଶ୍ୟ

(ଯମୁନା ତୀର କୁଞ୍ଜ ନିକଟରେ ଶ୍ରୀକୃଷ୍ଣ ଉପବିଷ୍ଟ, ମଧୁମଙ୍ଗଳ ପାର୍ଶ୍ୱେ ଦଣ୍ଡାୟମାନ)

ମଧୁମଙ୍ଗଳ— ( ଗୀତ )

ଶୁଖିଯାଇଛି ତ ଆହା ନବୀନ ନୀଳ କୁମୁଦ
ଝାଉଁଳିଛି ମୁଖଚନ୍ଦ୍ର ତୁଟିଛି ମନରୁ ମୋଦ । ୦ ।
ଛଳଛଳ ନୀଳ ଆଖି, ମରମ ବେଦନା ମାଖି
ଶଶୀ ତାରା ଏକା ସାକ୍ଷୀ, ନାହିଁ ତ ନିଶିରେ ନିଦ ।

ସଖା ହେ ! ମନରୁ ଦୁଃଖ ଛାଡ଼, ଏଥର ଯମୁନା ଉଜାଣି ବହିଲା, ଡଙ୍ଗା ଭସାଅ ! ଏ ଉଜାଣିରେ ବି ତମ ଡଙ୍ଗା ଉପରକୁ ନଉଠି ଠିକ୍ ତଳକୁ ଯିବ । ଏତେଦିନକେ ମୁଁ ତମ ବଂଶୀର ପ୍ରତାପ ବୁଝିଲି । ସଖା ! ବଜେଇବଟି ବଜେଇବଟି, ଦେଖେଁ, ମୋ ଛାତିଟା କଲବଲ ହେଉଛି କି ନାହିଁ !

(ଗୀତ)

ଅଧରେ ମୁରଲୀ ଧରି, ତ୍ରିଭଙ୍ଗୀରେ ଉଭାହୁ,
ବଜାଅ ମୁରଲୀ ଥରେ, ଯିବ ଏ ମନରୁ ଖେଦ !

ଶ୍ରୀକୃଷ୍ଣ—ନିତି ପରିହାସ କି ସୁଖ ଲାଗେ ସଖା ? ଟିକିଏ ଭାବିଲି ।

ମଧୁମଙ୍ଗଳ—ଭାବିବ ? ପଛଆଡ଼ୁ ତ ମୋ ମୁଣ୍ଡଟା କୁଣ୍ଡେଇ ହଉନାହିଁ ! କେମିତି ଭାବନାର ଢଙ୍ଗ ଦେଖାଇବ ?

ଶ୍ରୀକୃଷ୍ଣ—ଛି !

ମଧୁମଙ୍ଗଳ—ମୋର ବି ସେଇ ‘ଛି’ !

ଶ୍ରୀକୃଷ୍ଣ—କଅଣ ଏମିତି ହଉଛ ମଧୁମଙ୍ଗଳ ?

ମଧୁମଙ୍ଗଳ—ମୁଁ କ'ଣ ହେଲ ? ତୁମେ ହୁଅ, ବେଶ ହୁଅ, ମନ ସରସ କର, ଟିକିଏ ଆଡ଼ଆଖିରେ ଚେଉଁଛ ଗୁହଁ; ଅଧରକୋଣରେ ଟିକିଏ ହସ ଫୁଟାଅ, ଦେବେ ନା ?—

(ଗୀତ)

ପୂରବ ମନ କାମନା, କାହ୍ନୁ ନ କର ଭାବନା
କୁଞ୍ଜେ ଆସୁଛନ୍ତି ଘଣ୍ଟ, ବୁଝି ମୁଁ ଅଇଲି ଭେଦ !

ଶ୍ରୀକୃଷ୍ଣ—ଏଁ, କଅଣ କହିଲ ସଖା ? ସତେ ଏ କୃଷ୍ଣ-ମେଘରେ ପୂର୍ଣ୍ଣଚନ୍ଦ୍ର ଉଇଁବେ ? ସତ କହ ସଖା, ଏଁ !—

(ଶ୍ରୀକୃଷ୍ଣଙ୍କୁ ବ୍ୟଗ୍ରଭାବରେ ଧରି ବସାଇ)

ମଧୁମଙ୍ଗଳ—ଥୟ ଧର, ଥୟ ଧର, ତୁନହୋଇ ବସ । ତମ ଶୋଭା, ତମ ବାଙ୍କ କଣ୍ଟୀ, ରତନଚୂଡ଼ା ରଙ୍ଗଧଡ଼ା—ଏସବୁ ଦେଖିବାକୁ ଲଳିତାଙ୍କ ସଙ୍ଗରେ ଆସୁଛନ୍ତି । ଏଇଠି ତୁନ ହୋଇ ବସିଥାଅ । ଛପି ଛପି, ଶିକାର ଦେଖି, ଏମିତି ଖଞ୍ଜରେ,—ଗଲ ଉତ୍ତରୁ ଝମ୍ପଟାଏ ମାରିବ ଯେ,—ଗଲ ଉତ୍ତରୁ, ଏକାବେଳେ ଶିକାର ତମ ନଖ ଭିତରେ, ଗଲ ଉତ୍ତରୁ, ତରତରି ନ କର୍ତ୍ତବ୍ୟଂ-କର୍ତ୍ତବ୍ୟଂ ଧୀରେ ଧୀରେ । ( କାନେଇ ) ଶୁଣ, ଶୁଣ, କାହାର କଣ୍ଠ ଶୁଭୁଛି । ସଖା ! ଗଲ ଉତ୍ତରୁ, ମଧୁଆର ଚୂଡ଼ାଦହିଟା,—ପାଇଁ ଗଲ ଉତ୍ତରୁ, ଟିକିଏ ମନେ ଥିବ ଯେମିତି; ଗଲ ଉତ୍ତରୁ, ମୁଁ ଗଲି । ଏଁ ?

(ଗୀତ)

ଅଧ ଅଧରରେ ହାସ, ଫୁଟାଅ ରେ ପୀତବାସ !
ଦେଖାଅ ନେହବିଳାସ ନକର ମନ ବିଷାଦ ।

(ପ୍ରସ୍ଥାନ)

(ଶ୍ରୀକୃଷ୍ଣ ଲତା ଆଡ଼ୁଆଳରେ ରହିଲେ । ଲଳିତା ଶ୍ରୀମତୀଙ୍କୁ ଘେନି ଅର୍ଦ୍ଧ-ନେପଥ୍ୟେ ବୃକ୍ଷାନ୍ତରାଳରେ ଲୁଚି ରହି ଦଣ୍ଡାୟମାନ ହୋଇ ଶ୍ରୀମତୀଙ୍କୁ ଶ୍ୟାମଶୋଭା ଦେଖାଉ ଦେଖାଉ )

ଲଳିତା— (ଭ)

ଭଙ୍ଗୀ ଗୁହାଁ ! (ଏ ମୋହନର)
ଭୂରୁ ନୀଳ-ଭୁଜଙ୍ଗୀ—ଭ୍ରମର ଜୀବସଙ୍ଗୀ । ୦ ।
ଭାଗ୍ୟ ଏ ଜନ ଅଖି ଜନନଅଛି ସଖି, ଜାଣରେ,
ଭରମି ନଯାଅ ଭ୍ରୂ ମନ୍ମଥ ବାଣରେ
ଭୁଜପାଶକୁ ଛନ୍ଦି ମୋ ଗଳେ,
ଭଡ଼େ ପଦକଞ୍ଜ ଖଞ୍ଜି ଧରଣୀତଳେ
ଭୂମଣ୍ଡନା ରେ,
ଭଲ ମାନୁଛି ଦେଖ ମୁଖ-ସୁଧା-ମୟୂଖ
ଅଳକ ତଳ ଅଖ- ଣ୍ଡିତ ଗୋରଚନାରେଖ
ତିଳକେ ଦୃଷ୍ଟି ରଖ ସଖି ରେ,
କି ହଣେ ଚଳାଚଳି ଗୁରୁ ଚନ୍ଦ୍ରକାଚୂଳ । ୧ ।

ପ୍ରାଣସହି ! ଆଉ ଏଣିକି ଲଳିତା ମନେ ପଡ଼ିବ କାହିଁକି ? କେଳି କଦମ୍ବତଳେ ବିଶ୍ୱବିମୋହନ ଶ୍ୟାମଘନଙ୍କର ମୟୂରଚନ୍ଦ୍ରକା ଶୋଭା ଦେଖି ଦେଖି ମୁଗ୍ଧ ହେଉଥାଅ । ଆଖିରେ, ମନରେ ପ୍ରାଣରେ ସେ ସୁଧା ପିଉଥାଅ । ମୁଁ ଯାଉଛି, ନବମାଳତୀ ଆଣି ତମର ବେଶ ସଜାଇ ଦେବି । ତୁମେ ଏଇଠି ରୂପ-ସୁଧା ପିଉଥାଅ; ଆଜ ପଲକ ପକାଇବ ନାହିଁ । (ଅଗ୍ରସର ହେଲେ) ।

ଶ୍ରୀମତୀ—ସହି ! ମୁଁ କଅଣ ଏଠି ଏକା ଥିବି ?

(ଲଳିତା ସହିତ ଅଗ୍ରସର ହେବାରୁ ସେ ବାଧାଦେଇ କହିଲେ )

ଲଳିତା—ଶ୍ରୀମତୀ ! ଯେ ରୂପ ଲାଗି ବନେ ଯମୁନାରେ ଝାସଦେବାକୁ ବସିଥିଲ, ଆଖିଆଗରେ ତାକୁ ପାଇ ପୁଣି ଏକା, ଦୋକା ଖୋଜୁଛ ? ଥାଅ, ମୁଁ ଆସେଁ— (ପ୍ରସ୍ଥାନ କରୁ କରୁ)

ଶ୍ରୀକୃଷ୍ଣ—( ଲତାଅନ୍ତରାଳରୁ ଉଠି ଆସି ) ଲଳିତେ, ଲଳିତେ !

(ଲଳିତା ଶ୍ରୀକୃଷ୍ଣଙ୍କୁ ହାତରେ ଠାରି ଶ୍ରୀମତୀଙ୍କ ନିର୍ଦ୍ଦେଶ କରି ପ୍ରସ୍ଥାନ କଲେ ଓ ଶ୍ରୀକୃଷ୍ଣ

ଶ୍ରୀମତୀଙ୍କୁ ଅନାଇଁ ଥକାହୋଇ ରହିଲେ । ଶ୍ରୀମତୀ ଲଜ୍ଜାବନତମୁଖୀ—ଶ୍ୟାମ ଅଳ୍ପ ଅଗ୍ରସର ହୋଇ ଶ୍ରୀମତୀଙ୍କ ହସ୍ତ ଧାରଣ କଲାବେଳେ ଲଳିତା ପ୍ରଭୃତି ସଖୀମାନଙ୍କର ପ୍ରବେଶ)

ସଖୀଗଣ— ( ମ )

ମଧୁରେ, ମନ୍ଦମନ୍ଦ ହୋଇ ଗନ୍ଧବହ ପ୍ରସରିଲା
କଦମ୍ବ ନିକୁଞ୍ଜ ସୀମାରେ
ମରନ୍ଦ ସେକେ ଚମକ ଲୋକେ
ହସିଲେ ଇଷି ମା ରେ
ମିଳିନ୍ଦ ଲତା ଦମ୍ପ ବନିତା ବଦନେ ମିଶି ମାରେ
ମଣ୍ଡିତ ହେଲା ସେ ବନସ୍ଥଳ
ମହାରଜତ ମହେନ୍ଦ୍ର ମାଳ—
ମୟୂଖଶିରମୟ ମଞ୍ଜୁଳ ବସର ସୁଷମାରେ ।୦।
ମିଶିଲା ଗୁରୁ ଲୋଚନ ବାରି—ରୁଦ୍ଧ ମଦନୁ ଲଭି ଲାଗୁରି
ମିଳିଲା ଶ୍ୟାମ ଗଣ୍ଡର ଦୁଇ ମହ,
ମଧୁପ ଯୁବା ଲଭିଲା ଅବା ନବ ସରସୀରୁହ
ମାନସ ଅଙ୍ଗ-ଭେଦ ପ୍ରସଙ୍ଗ ଭଙ୍ଗ ରଚିଲା ସ୍ନେହ,
ମଉଳିଗଲା ଶେଷ ସାତ୍ତ୍ୱିକ—ମୂଢ଼ନୟନ ସଖ୍ୟକଯାକ
ମଜାଇ ଦେଲା ଦୁହିଁଙ୍କ ମନ ମହାମୋଦ ପ୍ରବାହ । ୧ ।

---

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

(ବନବାଳାମାନେ ଆନନ୍ଦରେ ଗୀତ ଗାଇ ବୁଲୁଥିଲେ)

( ଗୀତ )

କୋଇଲି ରେ, ପଞ୍ଚମ ଗାଅ ଅଧୀରେ
ମଳୟ ବହୁ ସଧୀରେ ।୦।
କାମିନୀ ଗଣ୍ଡ ସୋହାଗେ ମଣ୍ଡ
ପ୍ରେମିକା ଚୁମ୍ବୁ ମଧୁରେ । ୧ ।
ଅନ୍ତର ତାର ପୁଲକେ ଭରି
ଲଭୁକ ପ୍ରେମନଧିରେ । ୨ ।

(ଗାଇ ଗାଇ ପ୍ରସ୍ଥାନ । ରତି ଓ ମଦନ ପ୍ରବେଶ)

ରତି—ଦେବ ! ଶୁଣୁଥିଲ ତ ଏଇନେ ଏଇଠି ବନବାଳାମାନଙ୍କର ଗୀତ ?

ମଦନ—ଏବେ ବୋଧହୁଏ ଏଇ ନିକଟରେ କୋଉଠି ।

ରତି—ଆପଣ ସେମାନଙ୍କୁ ଭଗବତୀ ପୌର୍ଣ୍ଣମାସୀଙ୍କ ଅନୁରୋଧ ଜଣାଇ ବ୍ରଜବନ ବସନ୍ତ ସାଜରେ ସଜାଇବାକୁ କହିଛନ୍ତି ନା ?

ମଦନ—ଦେଖୁନାହଁ ପ୍ରିୟେ ! କୁଞ୍ଜର ତରୁ, ଲତା, ଫଳ, ଫୁଲ ସବୁଥିରେ କିପରି ବସନ୍ତର ହାସଲେଖା ଜଡ଼ିରହିଛି ।

ରତି—(ଚମକି) ହେଇ ଶୁଣ ଦେବ, କୋଇଲି !

ମଦନ—(ହସି, ରତିଙ୍କ ନିକଟସ୍ଥ ହୋଇ) ଚମକି ଉଠିଲ କି ପ୍ରିୟେ ! କୋଇଲିର କୁହୁ ଶୁଣି ?

( ବ୍ରଜବାଳାଗଣ କୁସୁମହସ୍ତେ ପୁନଃ ପ୍ରବେଶ )

( ଗୀତ )

ପ୍ରେମିକ ଅଙ୍କେ କୁହୁ ଆତଙ୍କେ
ପ୍ରେମିକା ମିଶୁ ଗୁଡ଼ରେ । ୩ ।

ମଦନ—(ରତିଙ୍କ ପ୍ରତି) ହେଇଟି ପ୍ରିୟେ ! ଆସିଲେଣି ତ ବନବାଳାମାନେ ।

୧ମ ବନବାଳା—ଦେବ ! ଆଦେଶ ଅନୁସାରେ ସବୁ କରିସାରିଲୁଁ ।

ରତି—ଶ୍ରୀମତୀ, ଶ୍ରୀପତିଙ୍କ ଯୋଗର ଉପଯୁକ୍ତ ହେବାଭଳି ସବୁ ହୋଇଛି ନା ?

ବନବାଳାଗଣ— ( ଗୀତ )

ଶୁଣି ନୂଆ ଚୂତବକୁଳ କଳକଣ୍ଠର କଳ
କମକଣ୍ଠୀ ଗୋପ-ଗୋପୀଏ ଶୁଣି ହେଲେ ବିକଳ ॥
ମାତିଛନ୍ତି ରସ-ଆମୋଦେ ଗୁରୁ ଶିଖିଚୂଳିଆ
ନିରେଖି ନିକୁଞ୍ଜେ ଶ୍ରୀମତୀ ସଙ୍ଗେ ବନମାଳିଆ ॥
ଏକାଳେ ବହଇ ମଳୟ;—ଫୁଲବାସରସିକ
ମହକରେ ପୂରିଉଠିଛି କୁଞ୍ଜକାନନଯାକ ॥
ଭ୍ରମର ଗୀତକୁ ମଲ୍ଲିକା ନୃତ୍ୟ କୋକିଳ କୁହୁ,
ତାଳ ଦିଏ ସତେ ! ନାଗରି ଥରି କହଇ ଉହୁ ॥

ଜଗଜନର ଫୁଲଶାସ୍ତ୍ରକଧର ! ବରଜ ବନେ
ଯେନ ସଙ୍ଗେ ମନମୋହିନୀ ଦେଖ ସଜ ଆପଣେ ॥
( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ପଥ—ଅଦୂରରେ ଶଙ୍ଖ ଘଣ୍ଟ, ଘଣ୍ଟା, ମର୍ଦ୍ଦଳଧ୍ୱନି )

ଗୋପବାଳକଗଣ— (ଗୀତ)

ନଶି ହେଲାଣି ପାହାନ୍ତ ଉଠ ନୀଳହାଣ୍ଡି
ଉଠ ମୁଖ ଧୂଅ ତେଜ ପଲଙ୍କ ସୁପାନ୍ତ । ୦ ।
ଉପବନ ଫୁଲବାସ— ମିଶା ପବନ ସରସ
ବହିଲାଣି, ଗାଇଲେଣି ପକ୍ଷିଏ କଜାନ୍ତ । ୧ ।
ଦୂର ଗହନ ବନରେ ଗାଉଛି କେଡ଼େ ମଧୁରେ
ଜାଗିବାକୁ ଗୋପଗୋପୀ ସେ କନ୍ତଳପାନ୍ତ । ୨ ।
ଶମ୍ଭୁଆଳେ ଦ୍ୱିଜେ ବସି ହୋଇଲେଣି ମନ୍ତ୍ର ଘଷି
ବାଜଲାଣି, ଶଙ୍ଖ ଭେରୀ ବାଦ୍ୟ ନାନା ଜାତି । ୩ ।
ଉଚ୍ଛୁର ହୋଇବ ବେଳ ଭୁଞ୍ଜିବ ଲବଣୀ ସର
ଆସିଯିବେ ସବୁ ଗୋଠେ ଡାକ ସାଙ୍ଗସାଥୀ । ୪ ।
(ଗାଇ ଗାଇ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

( ନିଧୂବନ—ସଜ୍ଜିତ କୁଞ୍ଜଭିତରେ ଶ୍ରୀମତୀ ଓ ଶ୍ରୀପତି—କୁଞ୍ଜଦ୍ୱାରରେ ଥିଲେ ଲଳିତା ଏକାକିନୀ । ଭୋର ହୋଇ ଆସୁଥିଲା—ଶ୍ୟାମ କିଶୋରୀଙ୍କୁ ଫୁଲବେଶ କରୁଥିଲେ )

ଲଳିତା—( ଉଠି ଆକାଶକୁ ଚାହିଁ ) ରାତି ତ ପାହି ଆସିଲା । ଉଚ୍ଛୁର କଲେ ହିଁତେ ବିପତ୍ତି ପଡ଼ିବାକୁ ବିଳମ୍ବ କଅଣ ? ତେଣେ ଯଶୋଦା କାହ୍ନୁଙ୍କୁ ଖୋଜିବେ । ସେ ଭଲ ରକ୍ଷା ଅଛି । ଏଣେ ଜଟିଳା, କୁଟିଳା ଶ୍ରୀମତୀଙ୍କୁ ଖୋଜିଲେ ଭେଳା ବୁଡ଼ିବ । କରିବି କଅଣ ? ଏତେ ବେଳଯାଏ ତ କୁଞ୍ଜଲୀଳା ଶେଷ ହେଲା ନାହିଁ ।

ଶ୍ରୀକୃଷ୍ଣ—( ଶ୍ରୀମତୀଙ୍କୁ ବାଜୁ ପିନ୍ଧାଇ) ଦେଖ ଧନି, ବାଜୁବନ୍ଧଟା ଖସିପଡ଼ିଥିଲା ଯେ ଶ୍ରୀକର କେଡ଼େ ଅମାନିଆ ଦିଶୁଥିଲା । ଦେଖିଲ ରାଈ ! କେଡ଼େ ସୁନ୍ଦର ଦିଶିଲା ?

ଶ୍ରୀମତୀ—ଶ୍ୟାମ ! କିଏ କହୁଥିଲା ତମକୁ ଏତେ ବେଶ ପିନ୍ଧାଇବାକୁ ? ଛି, ମୋତେ ଦିଅ ।
( ହସି ଛଡ଼ାଇଲେ )

ଶ୍ରୀକୃଷ୍ଣ—( ଦୂରକୁ ଦେଖାଇ ) ଆହୁରି ଦେଖିଲଣି ନା ନୂପୁରକୁ ? କେତେ ଦୂରରେ ପଡ଼ିଛି ! ଆଣେଁ ଧନି ! ଚରଣ ଅସୁନ୍ଦର ଦିଶୁଥିବ । ( ନୂପୁର ଆଣି, ବକ୍ଷରେ ଲଗାଇ ) କେଡ଼େ ଭାଗ୍ୟବାନ ତୁ ନୂପୁର ! ତୋ ଭାଗ୍ୟ ମୋଠାରୁ ବେଶି । ଦିନ, ରାତି ଯେ ଚରଣ ସେବାଲାଗି ଶ୍ୟାମ ଶୟନେ, ସ୍ୱପନେ ଲାଳାୟିତ, କେଡ଼େ ଭାଗ୍ୟ ତୋର ସତେ ! ଅହରହ ସେ ଚରଣ ମଣ୍ଡନ କରୁଛୁ ! ତୋତେ ଚୁମ୍ବନ ଦେଇ ମନପ୍ରାଣ ଧନ୍ୟ ହେଉ ।
( ନୂପୁର ଚୁମ୍ବନୋଦ୍ୟତବେଳେ ଶ୍ରୀମତୀ ଉଠିଆସି, ଶ୍ରୀକୃଷ୍ଣଙ୍କର କର ଧରି ବାଧାଦେଲେ)

ଶ୍ରୀମତୀ—ଛି, ଛି, ଏ କଅଣ କରୁଛ ଶ୍ୟାମ ? ମୋତେ କଅଣ ଏକାବେଳକେ ଅପରାଧିନୀ କରିପକାଇବ ? ଛି, ଛି, ଛାଡ଼, ନୂପୁର ଛାଡ଼ ।

ଶ୍ରୀକୃଷ୍ଣ—ଅନୁମତି ଦିଅ ରାଈ ! ଚରଣରେ ମଣ୍ଡିଦିଏଁ ।

ଶ୍ରୀମତୀ—(ଚମକି) ଓଃ, ଏ ତ ଆହୁରି ମହାପାପ ! ଶ୍ୟାମ ! ମୋତେ ଏତେ ଅପରାଧରେ ବୁଡ଼ାଅ ନାହିଁ ।

ଶ୍ରୀକୃଷ୍ଣ— (ଗୀତ)
( ଘ )

ଯୋଷାବର ରେ !
ଯଥାର୍ଥରେ ଜାଣ ମୁଁ ତୋହର ରେ;
ଯାମଳ - ଭୂଧର-ନିଭ ପୟୋଧର—
ମରଦନିଆଁ ଦ୍ୱିକର ରେ । ୦ ।

ଯାବକ ତୋ ପଦକଞ୍ଜ-ରସମଦ
ଗଜଗତି, ମୋ ଶେଖର ରେ
ଯଜ୍ଞାନନ୍ଦ ସମାଧି-ଖଣ୍ଡନା ତୁ ନିଧି
ମୁଁ ରଙ୍କମାନଙ୍କ ବର ରେ ।୧।
ଯମକ କି ତୁମ୍ବ ପୂର୍ଣ୍ଣଚନ୍ଦ୍ର ମୂର୍ତ୍ତି
ମୋ ମହା ଶୁଭ ଦଶାର ରେ
ଯତ୍ନେ ସମ୍ପାଦିବା ଚିନ୍ତାମଣି ଅବା
ମୋ କରେ ହେଲୁ ସୁସାର ରେ ।୨।

ଶ୍ରୀମତୀ—ନଟବର ! ରାଧିକାର ମତିଗତି, ମାନମହତ୍ତ୍ୱ, କୁଳଶୀଳ, ସବୁ ଶ୍ୟାମର; ଅଦେୟ କିଛି ନାହିଁ । କିନ୍ତୁ ଶ୍ୟାମ ! ମୋତେ କ୍ଷମା ଦିଅ । ଘରର ପଦ-ସେବକାର ପାଦରେ ନପୁର ପିନ୍ଧାଇ ଦେବାକୁ ମୁଁ ତୁମ୍ଭଙ୍କୁ ଅନୁମତି ଦେଇପାରିବି ନାହିଁ; ମୋର ଏତିକି ଭିକ୍ଷା । ଶ୍ୟାମ, ମୋତେ କ୍ଷମାକର ।

ଶ୍ରୀକୃଷ୍ଣ—ସଖି ! ଯଦି ସେଥିରେ ଅପରାଧ ହୁଏ, ତେବେ ଇନ୍ଦ୍ର ଚନ୍ଦ୍ର ସାକ୍ଷ୍ୟରେ ମୁଁ ତାହା ଆଦରରେ ବରଣ କରିବାକୁ ପ୍ରସ୍ତୁତ ଅଛି । ଥରେ ଅନୁମତି ଦିଅ ରାଣି, ମନୋବାଞ୍ଛା ପୂର୍ଣ୍ଣ କର ।

ଲଳିତା—( କୁଞ୍ଜଦ୍ୱାରରେ ଗୀତ ଗାଇଲେ )

( ର )

ରସାଳସା ରେ !
ରସି ପୁଣି ଏ କି ଲୋକହସା ରେ ? । ୦ ।
ରକ୍ତିମା ଚୁମ୍ବିଲ ଇନ୍ଦ୍ର ଆଶାରେ
ରାଜୀବ ପ୍ରଫୁଲ୍ଲ ହେଲେ କାସାରେ ॥
ରତିନାଥ ସମର ପ୍ରଶଂସାରେ
ରମଣୀ କେ ନ ରସନ୍ତି ଫସାରେ ॥
ରସନ୍ତ ରସିକେ ସିନା ନିଶାରେ
ରଜନୀ ଶେଷରେ ଏ କି ଦଶା ରେ ॥
ରହୁନା ଅଯଶ ଆଉ ରସାରେ
ରସାଳୁହରୁ ଲତାକୁ ଖସାରେ ॥

ଶ୍ରୀମତୀ—(ଚମକି) ଶୁଣ ଶ୍ୟାମ ! ରାତି ପାହିଗଲାଣି । ଛାଡ଼ ମୋତେ, ମୁଁ ଯାଏଁ । ତୁମେ ତ ମୋର ଶାଶୁ-ନଣନ୍ଦଙ୍କର ଦାଉ ଜାଣିଛ ! ମୋର ଆଉ ମୁହଁ ରହିବ କିପରି ? କୁଞ୍ଜଦ୍ୱାରରେ ଲଳିତା ଡେଚାଇ ଦେଲାଣି ପରା ! ଯାଅ କାହ୍ନୁ ! ବନପଥରେ ଘରକୁ ଚାଲିଯାଅ, ମୋତେ ବିଦାୟ ଦିଅ ! ( ଶାଢ଼ୀ ଦେଖି, ଚମକି ) ଆରେ ଏ କଅଣ, ମୁଁ କପର ପିନ୍ଧି ଶ୍ୟାମ ? ଏ କଅଣ କରିଛ ନଟବର ? ଏ ତ ମୋର ଶାଢ଼ୀ ନୁହେଁ । ନଟନାଗର ! ଅନୁଗ୍ରହ କର ମୋତେ, ଦାଣ୍ଡରେ ଆଉ ଲୋକ-ହସା କରାଅ ନାହିଁ ଶ୍ୟାମ !

ଶ୍ରୀକୃଷ୍ଣ—ଧନି ! ମୋର ଦୋଷ କଅଣ ? ମୁଁ କଅଣ କଲି ? କାହିଁ, ମୁଁ ତ କିଛି ଜାଣିନାହିଁ, ଏ କଅଣ ତୁମର ଶାଢ଼ୀ ନୁହେଁ ?

ଶ୍ରୀମତୀ—ଶ୍ୟାମ ! ଛଳ ଥାଉ, ଦୟା କର !

ଲଳିତା—(ନେପଥ୍ୟେ) ସଖି ! ଆଗରୁ ଆମ୍ଭେମାନେ କେତେ ହିତକଥା ନ କହିଛୁ ? ଶୁଣିନାହିଁ । ଯଦି ବା ଗୋଡ଼ ଖସାଇ ଦେଇଛ, ଏବେ ମଧ୍ୟ ବେଳ ଅଛି, ଆତ୍ମରକ୍ଷା କର—ଯେମିତି ଭଗାର-ହସା ନହୁଅ ।

ଶ୍ରୀମତୀ—( ଉଠି ଶ୍ରୀକୃଷ୍ଣଙ୍କ କର ଧରି ) ଶ୍ୟାମ ! ଆଉ କେତେ ହଟହଟା କରିବ ଭଲା ? ଦିଅ ।

ଶ୍ରୀକୃଷ୍ଣ—କାହିଁ ? ମୁଁ ତ କିଛି ଜାଣିନାହିଁ ।

ଶ୍ରୀମତୀ—( ହସି ) ନା, କିଛି ଜାଣିଥିବ କି ?

( ଲ )

ଲୀଳାନିଧି ହେ !
ଲାଜେ ମୁଁ ଗଲିଣି ସଡ଼ି;
ଲୁଚାଇଛ କାହିଁ ଶ୍ୟାମ ହେ ଦିଅ ମୋ ଲାଗି-ଶାଢ଼ୀ ।୦।
ଲଭି ତୁମ୍ଭଙ୍କୁ ପ୍ରାଣବନ୍ଧୁ କରି,
ଲୋକହସାରେ ଯେବେ ପଡ଼ିବ ସରି
ଲସିବ ଯେବେ ପାଇ ନିନ୍ଦା ଦାଉ
ଲାଗିଲି ଆପଣଙ୍କୁ କେଉଁ ଆଉ ।୧।

ଲକ୍ଷ ଲକ୍ଷ ରାଣ ଅଛୁଟି ମୋର,
ଲଳାମ ଆଦି ଭୂଷା ସଜ କର
ଲଭିଥିବ ଭ୍ରୂମଧ୍ୟ ତିଳକ,
ଲେଖିଦିଅ ବେଗେ ନଦେଖୁ ଲୋକ ।୨।

ଲୋଷ୍ଟ, ଶ୍ରୀଭୁଜବନ୍ଧ ଶିଥିଳିଅ,
ଲତା ଗହଳେ ଗହନେ ପଳାଅ
ଲାଗିଛୁ ଲାକ୍ଷା-ମୁକୁଟ ଶିଖଣ୍ଡେ,
ଲାଜକଥା ଲୋକେ ଦେଖିଲେ ଦାଣ୍ଡେ ।୩।

ଲଗାଇଛ ହଟ ଯେଉଁ ରସରେ,
ଲୁଟିବ ସିନା କାଲି ପ୍ରଦୋଷରେ
ଲଙ୍ଘି ଆଶ୍ରିତେ ଥିବା କୃପାସିନ୍ଧୁ,
ଲାଞ୍ଛିଆଟି କେତେ ହେଲ ହେ ବନ୍ଧୁ । ୪ ।

( ଏତିକବେଳେ ସଖୀମାନେ ଜଳଘଟହସ୍ତେ ପ୍ରବେଶ ହୋଇ ପ୍ରଥମରେ କୁଞ୍ଜଦ୍ୱାରସ୍ଥା ଲଳିତାଙ୍କୁ ଦେଖି ପଚାରିଲେ—)

ବିଶାଖା—କାହିଁ ଗୋ ! ତୁମ ଶ୍ରୀମତି କାହାନ୍ତି ? ତୁହେଁ କଅଣ ବଣିପାହାନ୍ତି ଘରୁ ଆସିଛ ନା କଅଣ ମ ? ଆମେମାନେ ଯମୁନା ଗାଧୋଇ ଯିବାକୁ ଖୋଜି ଖୋଜି ଆସିଲୁଁ ଯେ, ଆଜି ଭେଟ ପାଏ କିଏ ?

(ସଖୀମାନଙ୍କ କଣ୍ଠ ଶୁଣି ଶ୍ରୀକୃଷ୍ଣ କୁଞ୍ଜ ଛାଡ଼ି ଶୀଘ୍ର ଚାଲିଗଲେ । ଶ୍ରୀମତି କୁଞ୍ଜରେ ଅଧୀରା ହୋଇ ବସନ ଭୂଷଣ ସମ୍ଭାଳୁଥିଲେ )

ଲଳିତା—ହଁ, ଟିକିଏ ଆଗରୁ ତ ଶ୍ରୀମତିଙ୍କ ସଙ୍ଗରେ ଫୁଲ ତୋଳିବାକୁ ବାହାରି ଆସିଥିଲି । ଏବେ କେତେ ବନ ହେଲା ଦେଖୁନାହିଁ, କାହ୍ନୁ ତାଙ୍କ ସାଥୀମାନଙ୍କୁ ନେଇ ବଡ଼ ହୁଲିଜୁରି କରୁଛନ୍ତି । କିଛି କାମ ନାହିଁ—ବାକି ଆମମାନଙ୍କ ବାଡ଼ିକୁ ପଶି ଗଛ, ଡାଳ, ଲତା, ପତ୍ର ଭାଙ୍ଗି ସବୁ ଫୁଲ ନେଇ ପାହାଡ଼ ପଥରକୁ ବେଶ କରୁଥିବେ । ଛି, କି ବାଡ ଯେ କହନା ଦେଖି ? କାହାକୁ କହିବା ? ରଜାପୁଅ ତ ସେ ! କହିଲେ ଦୋଷ, ସହିଲେ ଦୋଷ ।

ଧନିଷ୍ଠା—ତେବେ ଶ୍ରୀମତି କାହାନ୍ତି ?

ଲଳିତା—ମୁଁ ଏ ପାଖରେ ଫୁଲ ତୋଳୁଥିଲି, ସେ କୁଞ୍ଜ ଆରପାଖକୁ ଫୁଲ ତୋଳିବାକୁ ଯାଇଛନ୍ତି ।

( ଶ୍ରୀମତି ଚରଚର ହୋଇ ପ୍ରବେଶ )

ବିଶାଖା—ସଇ ! ଆମ୍ଭମାନଙ୍କୁ ଛାଡ଼ିଦେଇ, ଲଳିତା ସାଙ୍ଗରେ ଆସି କାଇଁ କେତେ ଫୁଲ ତୋଳିଲଣି ଦେଖେଁ ?

ଧନିଷ୍ଠା—( ଶ୍ରୀମତିଙ୍କୁ ଚାହିଁ ) ମ, ମ, ଫୁଲ କାଇଁ ମ ? ଦେଖିଲଣି ସଖି, ଏସବୁ କଅଣ ମଁ ବିପରୀତ କଥା ? ସଖୀର ଆମର ଆଜି ଏ କି ବେଶ ମ ?

ବିଶାଖା—( ହସି ମୁହଁରେ ଲୁଗାଦେଇ ) କାଇଁ ଦେଖେଁ ? ( ଚାହିଁ ) ଓହୋ, ବୁଝିପାରିଲୁନାହିଁ କି ସଖି ? ଏଇଟା ପରା ଫୁଲତୋଳା ବେଶ । ଏ ବେଶ ନୋହିଲେ କି କୁସୁମ-ନାଗର ବଶ ହେବେ ?

( ସମସ୍ତେ ହସି ଠଗିଠରି ହେଲେ )

ସମସ୍ତେ—ହଉ ହଉ, ଚାଲ ଚାଲ, ଜଣାଗଲା ଯେ,—

( ବ )

ବିଚିତ୍ର ବେଶମଞ୍ଜୁଳା ରେ ବାଳା !
ବିବିଧ ଚାତୁରୀଶୀଳା ।୦।
ବିଭବରୀ ଅର୍ଦ୍ଧେ ଏକାକୀ ଏକାକୀ
ହୋଇ ରଚୁ ଫୁଲତୋଳା ରେ,
ବିଳାସ-କୁଶଳାରେ,
ବଲ୍ଲୀ-ନିଳୟ ବିହାରଲୋଳା ।୧।

ଶ୍ରୀମତି—ନାହିଁ ସହି ! ଆସିଥିଲି ଯେ ଫୁଲ ତୋଳି··· ବାକି ଫୁଲସବୁ କିଏ ତୋଳି ନେଇଛି, କିଏ ଭାଙ୍ଗି ଦେଲାଣି ଆମେ ଆସିଲାବେଳକୁ ।

କୁନ୍ଦଲତା—କାହା ଆସିଲାବେଳକୁ ଗୋ ? ଆମେ ନା ତୁମେ ? ଭାଙ୍ଗି ଦେଲଣି ମୁହେଁ ଯେ—ଭାଙ୍ଗି ଗଲାଣି ଆମେମାନେ ଆସିଲାବେଳକୁ—ନା ? ଆମେ ସବୁ କଅଣ ଏତେ ପର ହେଲୁଁ ?

ସମସ୍ତେ— (ଗୀତ)

ବାଳକାନ୍ତୁ ବାସ ପର ରେ ବାଳା !
ବଞ୍ଚିଥିଲୁ ଅନୁସର,
ବିଲକ୍ଷଣ ବନ-ବିହାର-ଉତ୍ସବ
ବେଳେ ଯା ହେଲୁ ପାଶୋର ରେ
ବିସ୍ମର ତ ଗୋଶ ରେ,
ବିଶ୍ୱେ କାହିଁକି ପ୍ରୀତି ଆଚର । ୨ ।

ଶ୍ରୀମତୀ—ନାଇଁ ସଖି ! ପର କରନାହିଁ ତ । ଠିକ୍‌ଏ ଗଛ ଥାଉଁ ଥାଉଁ ଅଧିକ ଫୁଲ ପାଇବା ଆଶାରେ ଆସିଲ ଯେ, ପରିଶ୍ରମ ମାତ୍ର ସାର ହେଲା । ଫୁଲର ନାଁ-ଗନ୍ଧ ନାହିଁ ।

ବିଶାଖା—ସେ କଥା କଅଣ ଆମେମାନେ ଆଉ ଜାଣିପାରୁନାହୁଁ ? ଫୁଲତୋଳାର କଅଣ ସତରେ ନାଁ-ଗନ୍ଧ ଅଛି କି ? ବାକି ଆମମାନଙ୍କୁ ମଧ୍ୟ ବାଧୁଛି ସଖି, ମିଛରେ ତମ ପରିଶ୍ରମଟା ଯାହା ସାର ହେଲା !

ଧନିଷ୍ଠା—ହଁ, ହଁ, ସେତିକି ପରିଶ୍ରମ ନ କରିଥିଲେ ଏସବୁ ( ବେଶକୁ ଠାରି ) ହୁଅନ୍ତା କିପରି ? ଏସବୁ ତ ଖୁବ୍ ପରିଶ୍ରମର ଲକ୍ଷଣ ।

ଶ୍ରୀମତୀ—( ବେଶକୁ ଚୁହିଁ, ଚମକି ) କାଇଁ, କଅଣ ? କଅଣ ଏମିତିସବୁ ମତେ କହୁଛ ଆଜି ?

ସମସ୍ତେ— କହୁ ନାହିଁ ଯେ…

( ଗୀତ )

ବ୍ୟସ୍ତ ହୋଇ ଚହମାରୁ ରେ ବାଳା !
ବ୍ରଣଗଣ ତ ବିଶୁଛି
ବିମ୍ବାଧରୁ ନବପଲ୍ଲବମାନଙ୍କୁ
ବାଣ୍ଟିଲୁ କି କହୁ କହୁ ରେ
ବିଶ୍ରୁଥ ହୋଇଛୁ ରେ,
ବାସ ପିନ୍ଧିଥାଉ ପର କାହୁଁ ? । ୩ ।

ଲଳିତା—ଛି, ସଖି ! ମିଛଟାରେ ଏତେ କଥା କହି ଆଉ ସଖୀକି ଲାଜରେ ବୁଡ଼ାଅ ନାହିଁ !

ବିଶାଖା—ନାଇ ମ, ଏ ତ କମ୍ପା ଲାଜକଥା ନୁହେଁ, ଯମୁନାରେ ବୁଡ଼ ଦେବାକୁ ଡାକୁଛି ସିନା ! ଲାଜରେ ବୁଡ଼ିବେ କଅଣ ମଁ ?

ଶ୍ରୀମତୀ—ଯାଃ ! ତୁମେମାନେ ବଡ଼ ଦୁଷ୍ଟ ହେଲଣି ।

ଧନିଷ୍ଠା—ସତେ ସଖି ! ତମ ରଙ୍ଗଢଙ୍ଗ ଦେଖି, ଏବେ ଚାଟକା ହୋଇ, ଆମେସବୁ ଦୁଷ୍ଟ ପାଲଟିଗଲୁଣି ମଁ !

ଶ୍ରୀମତୀ—କି ରଙ୍ଗଢଙ୍ଗ ମୋର ?

ସମସ୍ତେ—ତମ ନବପ୍ରେମଣିଆ ମ—

( ଗୀତ )

ବଲ୍ମୀକ ଅନାଇଁ ଦୁରୁ ରେ ବାଳା !
ବାସରେ ତ ଉପ୍ନ କରୁ
ବ୍ରଜେ ଆଜ ଶୁଣି ଅସିଲୁ ତୁ ପୁଣି
ପ୍ରତି ଗଛ ଆସୁ ଘରୁ ରେ
ବିଜନେ ସଞ୍ଚରୁ ରେ,
ବଡ଼ ବିଷମ, ଏ ଯା ନ ଡରୁ । ୪ ।

( ଶ୍ରୀମତୀଙ୍କୁ ଘେନି ହସି ହସି ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

(ବ୍ରଜ-ବନପଥ—ଉତ୍କଣ୍ଠିତ ମଧୁମଙ୍ଗଳ ପ୍ରବେଶ ହେଲେ)

ମଧୁ—(ବିରକ୍ତଭାବେ) (ଗୀତ)

ସେ କଳାକାହ୍ନୁକୁ ଯେତେ କହିଲି ଭଲକୁ
ନ ଘେନିଲା ମୋ ବୋଲକୁ ( ଛଇଲ କହ୍ନା ) ।୦।
ନଣୀ ଗଲା ପାହି—କାହିଁ ଦେଖାନାହିଁ
ଗଛ ସାରା ମୋର ଗଲା ଚୁହିଁ ଚୁହିଁ,
ଜାଣିବେ ଯେବେ ସେ ନନ୍ଦରାଜା ଥରେ
ଭାଙ୍ଗିଦେବେ ତା ଗେଲକୁ ।୧।
ବ୍ରଜପାଳ ହଟା—ପଡ଼ୁଛି କାହ୍ନୁଟା
ଦହି-ଦୁଧ-ଘିଆ ନପଟ ଗ୍ୱେରଟା,
ଗୋପୀ-ମାନଙ୍କଆ ବଡ଼ ଅମାନିଆଁ
ଖେଳ କରିଛି ଖଳକୁ ।୨।

( ଅଦୂରରେ ବଂଶୀ ଶୁଣି ଚମକି ) ଏ କଅଣ ବଂଶୀ ନାଁ ! (କାନେଇ) ହଁ ତ ! ଆସିଗଲେ ପରା, ଟିକିଏ ଛପିପଡ଼ି ରଙ୍ଗଟା ଦେଖେଁ ।

( ଶୋଇପଡ଼ିଲେ )

ଶ୍ରୀକୃଷ୍ଣ—( ଏଣେତେଣେ ଚାହିଁ ପ୍ରବେଶ ) ବେଳ ତ ବେଶୀ ହୋଇଗଲା ! ଏତେବେଳେ ବନ୍ଧୁଙ୍କୁ ପାଇଲେ ସୁବିଧା । ତାଙ୍କୁ ସଙ୍ଗରେ ନେଇ ଘରକୁ ଗଲେ ମୋର ଆଉ ଚିନ୍ତା ଭାବନା ନାହିଁ । ଏତେବେଳେ କଅଣ ବନ୍ଧୁଙ୍କ ଦେଖା ମିଳିବ ?

(ପଛରୁ ମଧୁ ଜୋରରେ ହାଇ ଓ ଫୁଟୁକି ମାରିଲେ)

ଶ୍ରୀକୃଷ୍ଣ—( ଚମକି ) କିଏ, ସଖା ? ଉଠ, ଉଠ, ଏଠିଟାରେ ଏମିତି କାହିଁକି ପଡ଼ିଛ ? ଏ କଅଣ ?

( ଉଠାଇଲେ )

ମଧୁ—( ଆଖି ମଳି ) ଓଃ, କିଏ ତୁମେ ?

ଶ୍ରୀକୃଷ୍ଣ—ମୁଁ ପରା—ତୁମ ସଖା ! ଏଠି ଏମିତି କେମିତି ? କଅଣ କରୁଥିଲ ?

ମଧୁ—ଦେଖୁଥିଲି···(ଆଖିମଳୁଥିଲେ) ଦେଖୁଥିଲି ସ୍ୱପ୍ନ, ଗୋଟାଏ ଅଦ୍ଭୁତ ସ୍ୱପ୍ନ, ବଡ଼ ଡର ଲାଗିଲା ମୋତେ ।

ଶ୍ରୀକୃଷ୍ଣ—କଅଣ ଦେଖିଲ ସଖା ?

ମଧୁ—କହିଲି ପରା ସ୍ୱପ୍ନ !

ଶ୍ରୀକୃଷ୍ଣ—କି ସ୍ୱପ୍ନ ସଖା ?

ମଧୁ—ଜଣେ କଳା ହୋଇ, ଗୋଟାଏ ବଡ଼ ଚୋର, କୁଞ୍ଜଭିତରେ ପଶିଛି···ନା ··ପଶିଥିଲା । ତା ଦାନ୍ତ ମୁଣ୍ଡ ସବୁ···ଓଃ ସଖା ! ଆଉ କହିପାରିବି ନାହିଁ । (ଥରି) ଛାତି ଥରୁଛି, ଆଖି ମୁଦିଦିଏଁ ।

ଶ୍ରୀକୃଷ୍ଣ—(ଅଖି ଫିଟାଇ) ନାଇଁ ସଖା ! ଡର ନାହିଁ, ମୁଁ ପରା ତମ ପାଖରେ ଅଛି ?

ମଧୁ—ତୁମେ ? କିଏ ତୁମେ ?

ଶ୍ରୀକୃଷ୍ଣ—ମୁଁ ପରା—ତମ ସଖା ?

ମଧୁ—କାଇଁ ଦେଖେଁ (ଆଖି ମେଲାଇ, ଚମକିବା ପରି ଦୂରକୁ ଯାଇ) ଆଲୋ ମୋ ବୋପାଲୋ, ଏ ତ ସେଇ ଚୋର ଲୋ ବୋପା, ମୋତେ ମୋ ସଖା ବୋଲି ଠକିବାକୁ ଆସିଛି ! ହେ ହରି ! ହେ ଦଇବ !

ଶ୍ରୀକୃଷ୍ଣ—( ମଧୁଙ୍କୁ ଧରି ) ଛି, ଛି, ସଖା ! ଏମିତି କଅଣ ହେଲ ? ବଣ ଭିତରେ କୋଉଠି ଭୂତ ଦେଖିଲ କି ? ମୁଁ ପରା ତମ ସଖା ? ଅନାଁ, ଚାହଁ, ଦେଖ !

ମଧୁ—(ଛକେଇ) ଦେଖ ! କଅଣ ଦେଖିବି ? ସେଇ କୁଞ୍ଜବନର ଚୋରଟା ତ ! ମୋ ସଖା କାହାନ୍ତି ? ତୁମେ କାହିଁକି ମୋ ସଖା ହୁଅନ୍ତ ?

ଶ୍ରୀକୃଷ୍ଣ—ନାଇଁ ସଖା : ମୁଁ ସତ କହୁଛି ।

ମଧୁ—ସତ କହୁଛ ? କାଇଁ, ମୋ ରାଣ ପକେଇଲ ଦେଖି ?

ଶ୍ରୀକୃଷ୍ଣ—ତମ ରାଣ !

ମଧୁ—ଓହୋ ! ଏଥର ଦମ୍ଭ ପାଇଲି । (ଚାହିଁ, କୁଣ୍ଢାଇ, ହସି) ଏଁ, ହଁ ତ । ଏଁ, ସତେ ତ !—ଏଁ, ହେଇତ । ମୁଁ ମନେକଲି ସପନର ସେଇ ଚୋର ବୋଲି । ତୁମେ ସଖା, ଏତେବେଳେ, ଏଡ଼େ ବେଗେ ନିଦରୁ ଉଠି, ମାଆ ଯଶୋଦାଙ୍କ କୋଳ ଛାଡ଼ି, ଏଣେ, ବଣଟା ଭିତରେ ଏକୁଟିଆ ଆସିଥିବ ବୋଲି ମୋର ମୋଟେ ବିଶ୍ୱାସ ହେଲା ନାହିଁ । କୁଆଡ଼େ ଏମିତି ଆସିଥିଲ ସଖା ?

ଶ୍ରୀକୃଷ୍ଣ—ଜାଣିନାହିଁ ସଖା ! ଗୋରୁଗାଈ ବେପାର ତ ! ତାଙ୍କର ଲାଗି ଛଟପଟ ।

ମଧୁ—ହଁ, ହଁ, ତା ନୁହେଁ କଅଣ ? ନିଜ ବେଭାରଟା ତ ଫେର୍ ତାଜା ରଖିବାକୁ ହେବ ! ଓଃ, ବଡ଼ ପରିଶ୍ରମ ପଡ଼ୁଥିବ । ହଉ, ହଉ, ପାଇଲ ନାଁ ?

ଶ୍ରୀକୃଷ୍ଣ—(ଇତସ୍ତତଃ ହୋଇ) ଉଁ—

ମଧୁ—ଉଁ, ଆଁ, କିଛି ଦରକାର ନାହିଁ । ବୁଝିଲୁ ବୁଝିଲୁଁ ଯେ—

(ଗୀତ)

(ଶ)

ଶ୍ୟାମ ଶିଖଣ୍ଡ ଚୂଳ,
ଶ୍ରମ କି ଆଜଯାକେ ହେଲା ସଫଳ ହେ । ୦ ।
ଶର୍ବରୀ ନିଦ୍ରା ବିନା ଗଲା କି ସରି,
ଶମ୍ବର-ପର-ପୁର କଲ କି ଜୁରି ? । ୧ ।
ଶ୍ରୀଅଙ୍ଗ ବେଶ କିପା ଏପରି ଆଜ,
ଶରଦ-ଚନ୍ଦ୍ର ତୁମ୍ଭ ନାହିଁକି ଲାଜ । ୨ ।
ଶିଶୁ ହେଲେହେଁ ତୁମ୍ଭେ କଳଙ୍କ ସରି
ଶଶ କିଶୋରୀଟିକି ଦେଲ ଯା ସାରି । ୩ ।

ଶ୍ରୀକୃଷ୍ଣ—ଛି, ସଖା ! ମୋ'ଠାରେ ଅବିଶ୍ୱାସ କରନ୍ତି ?

ମଧୁ—ହଁ, ହଁ, ତୁମେ କଅଣ ସେ ପାଠ କାଣିବୃଏ ହେଲେ ଜାଣିଛ କି ?

(ଗୀତ)

ଶିଶ୍ୱର ମାଳା ଦଳଦେଇ କୂଠାରେ,
ଶଙ୍କା ନକଲ ସଖାମାନଙ୍କଠାରେ । ୪ ।

ଶ୍ରୀକୃଷ୍ଣ—ନାହିଁ ସଖା ! ସେସବୁ କିଛିନୁହେଁ । ସୁନ୍ଦର ଚନ୍ଦ୍ର କିରଣ ପଡ଼ିଥିଲା, ଯମୁନାର ନୀଳ ଜଳ ଝଲମଲ କରୁଥିଲା; ଏଣେ ଗୋଟି ଗୋଟି ଲହରୀ ଧୀର ପବନରେ ନାଚ କରୁଥିଲା—ଦେଖି, ମନ ଛାଡ଼ିଲାନାହିଁ । ଯମୁନା ତଟରେ ବୁଲିବୁଲି ତ ରାତିସାରା ଅନିଦ୍ରା, ତୁମେ ଆଉ କିଛି ମନେ କରନାହିଁ !

ମଧୁ—ବାଃ, ବାଃ, ସଖା ଆମର ଏତେବେଳକେ ସତ କହିଲେ—

(ଗୀତ)

ଶରମପ୍ରଦ ଆଜ ସତ୍ୟକ ହେଲ
ଶମନସ୍ୱସା ତଟ ଅଟବୀବୁଲ । ୫ ।

ଶ୍ରୀକୃଷ୍ଣ—ଯାଃ, ସଖା ! ତୁମେ ତ ଖାଲି ପରିହାସ କରିବ ।

ମଧୁ—ନା, ନା, ପରିହାସ ନୁହେଁ ଯେ, ଏସବୁ ପୁଣି କାହିଁକି ହେଲା ? ସତ କହିବଟି ଦେଖି, ତମକୁ ଗୋଟେ ରାଣ ଅଛି, (ମୁଣ୍ଡ ଟେକିଦେଇ) ଏସବୁ କଅଣ ?

ଶ୍ରୀକୃଷ୍ଣ—(ଆଶ୍ଚର୍ଯ୍ୟ ହେବାପରି) କୋଉକଥା ସଖା ?

ମଧୁ—କୋଉକଥା ? କଅଣ କହିବ ସଖା, ଚୂଳା କୋଥିଲିଟା ଛାଡ଼ି ଆସିଲ ତ !

ଶ୍ରୀକୃଷ୍ଣ—କାହିଁକି ? କଅଣ ହେବ ?

ମଧୁ—କିଛି ନାହିଁ ଯେ, ଦର୍ପଣଟା ଥିଲା ସେଥିରେ । ଦେଖି ଥାଆନ୍ତ, ଜାଣି ଥାଆନ୍ତ—

ଶ୍ରୀକୃଷ୍ଣ—କଅଣ ସଖା ?

ମଧୁ—ଏଇ—ତମ—ବେଶଟା ।

(ଗୀତ)

ଶିର ସୁନ୍ଦର ଦଶେ ଯାବକ ବୋଲେ
ଶରଣ ବୋଲି କି ପଡ଼ିଲ ପା'ତଳେ ? ୬ ।

ଶ୍ରୀକୃଷ୍ଣ—ସଖା ! ତମ ପରିହାସ ଆଉ ମୁଁ ସହି ପାରିବ ନାହିଁ । ମୁଁ ଯାଉଛି—(ଅଭିମାନରେ ଫେରିଲେ)

ମଧୁ—ତେର୍, ତେର୍ ଦେଖିଛି ସଖା ! ସେ ଅଭିମାନ, ସେ ତରି, ସେ ଢଙ୍ଗ ତମର ରଖ । ଧରିଟି ପଡ଼ି ମାରିଚ, ଏବେ ସତଟି ସଫା ସଫା ଫିଟାଇ ନ କହିଲେ ତମର ଏ ଗର୍ବ ଭାଙ୍ଗିଯିବ । ମୁଁ ନନ୍ଦ ଯଶୋଦାଙ୍କୁ ନକହି ଛାଡ଼ୁନାହିଁ, ଜାଣିଥାଅ । କିନ୍ତୁ ତ ବନର ଇଚ୍ଛାଟା ପୂରିଥିବାରୁ ତମ ଛାତିଟା କୁଣ୍ଡେ ମୋଟ ହୋଇଯାଇଛି ପରା ? ନାଁ ? ଆଚ୍ଛା, ଆଚ୍ଛା, ଦେଖିବା ଯେ !

ଶ୍ରୀକୃଷ୍ଣ—ବନ୍ଧୁ ! ମୋ ଅବସ୍ଥା ଦେଖି ତମର ଦୟା ହେଉନାହିଁ ? ତୁମେ ପୁଣି ଏତେବେଳେ ମୋର କୁଶଳ ପ୍ରଶ୍ନ ନ ପଚାରି ଓଲଟି ମୋତେ କଟୁକଥା କହି କଷ୍ଟ ଦେଉଛ ।

ମଧୁ—ସଖା ! ତମକୁ କଷ୍ଟ ହେଲାଣି ? ହଉ, ହଉ, ଆମକଥା ଆମଠି ଥାଉ । ଘରକୁ ଚାଲ, ସେଇଠି କଥାବାର୍ତ୍ତା ହିନା !

ଶ୍ରୀକୃଷ୍ଣ—ଛି, ସଖା ! ତୁମେ ଏମିତି କଠୋର ହେଲେ ମୋର ଆଉ ଗତି କଅଣ ?

ମଧୁ—କାହିଁକି ? କହିଲି ତ, ସତଟା ଘୁଏଁ ଘୁଏଁ ଶ୍ରୀମୁଖରୁ ଫିଟୁ—ନୋହିଲେ ନଷ୍ଟେ ବ୍ରଜଯାକ କାଲି ନାଗରା ବଜାଇ ଦେବି । ସଫା ସଫା, ସତ ସତ, ଠିକ୍ ଠିକ୍, କଥାଟି ମାନ ଯାଅ, କହିଯାଅ, ନୋହିଲେ ଯାହା କହିଲି ସେଇଆ ।

ଶ୍ରୀକୃଷ୍ଣ—ମୁଁ ଆଉ କଅଣ କହିବି ସଖା ? କଅଣ ବା ତୁମେ ନଜାଣ ? ଏ ନାଟର ଗୁରୁ ତ ତୁମେ । ଏଇ ଥରକ କ୍ଷମା ଦିଅ ! ଏ କଥା ଗୋପରେ ଜାଣିଲେ କଅଣ ତମକୁ ଠିକଏ ହେଲେ ବାଧିବ ନାହିଁ ସଖା ?—

(ଗୀତ)

'ସ'

ସଫଳଟି ମୋର ରେ ! ସହ ଏଇଥର ରେ !
ସାର ହାର ମସାର ମଣିବର
ସର ଧରି ବକ୍ଷସ୍ଥଳେ ନିରନ୍ତର
ନ ଫିଙ୍ଗି ପୁଣି ହଟି ସୁନ୍ଦର ନୁହଇଟି,
ବରୁଷ ଭରସା ବଢ଼ାଅ ଅପରିମିତ । ୦ ।
ଶୁଣିଲେ ଆଉ କେ ବ୍ରଜେ,
ସହିଯିବ ସିନା ଲାଜେ ॥
ସାହା ତୁ ନୋହିଲେ କିଛି
ସଂସାରେ ନକ ମୁଁ ଅଛି ॥
ସାଧୁଜନ କୃଷି କୂପେ,
ଭଲ ମନ୍ଦ ସିନା ଛପେ ॥
ସଂହର କୋଧ ଉଦୟ,
ସହଜେ ତୁ ସହୃଦୟ ॥
ସବୁ ଅନ୍ୟାୟ ଚରିତ,
ଶିକ୍ଷାକୁ ଗୁରୁ ତୁହି ତ ॥
ସମସ୍ତେ କହୁ ତୋଟିକ,
ସଖା ଲକ୍ଷଣ ଏ ଠିକ ? ॥

(ଶୀଘ୍ର ସୁବଳ ଓ ସୁଦାମ ଇତ୍ୟାଦିଙ୍କ ପ୍ରବେଶ)

ସୁବଳ—ବେଶ୍, ଘାଇଜସା ଘ ଆମେ ତେଣେ ତମକୁ ଖୋଜି ବୁଲୁଛୁଁ, ମଧୁଆ ବ୍ରାହ୍ମଣ ତମକୁ ଏବେ କଅଣ ମନ୍ତ୍ର କଲାଣି ପରା ? ତୁମେ ତମର ଏଠ ?

ଶ୍ରୀକୃଷ୍ଣ—ସଖା ! ସକାଳୁ ବଡ଼ ସୁନ୍ଦର ପବନ ବହିଲା—ମନହେଲା କୁଞ୍ଜବନରେ ବୁଲି ବୁଲି ଫୁଲ ତୋଳିବାକୁ ।

ମଧୁ—ଶୁଣୁଛ ତ, ଗୋପାଳ ଗର୍ଦ୍ଦଭ ! ଏଇନେ କେମିତି ମୋତେ ଦୋଷ ଦେଉଥିଲୁ ?

ସୁବଳ—ଜାଣୁଁ, ଜାଣୁଁ, ସବୁ ନଟ କୁଟ ତମର ବୁଦ୍ଧି ।

ସୁଦାମ—କି ମିଳିବ ସେ କଥାରୁ ଆମର ? ଆସ ଏକାବେଳେ ଯମୁନା ଗାଧୋଇ, ସବୁକାମ ସାରି ଘରକୁ ଯିବା । ଗୋଠକୁ ଯିବାକୁ ବେଳ କଅଣ ଦିଶୁନାହିଁ ?

ମଧୁ—ଖାଲି ଗାଧୁଆ ହେଲେ ଆମ କଥା ନପଟିଂ ।

ସୁବଳ—ଆଜି ଯମୁନାରେ କଅଣ କରନ୍ତ ?

ମଧୁ—ତା ପଛ କଥାଟା (ହାତରେ ଖାଇବା ଅଭିନୟ କରି)

ସୁଦାମ—ତୋତେ କହାତ ବ୍ରହ୍ମପେଟୁଟେ ଏଇଟା ! ଚାଲ, ଆଗେ ସଖା, ଚାଲ । ଏଇଟାକୁ ପଚାରେ କଏ ?

ମଧୁ—(ଅଭିମାନରେ ଶ୍ରୀକୃଷ୍ଣଙ୍କୁ) ସଖା ! ଶୁଣ, ମୋତେ କେମିତି ବ୍ରହ୍ମପେଟୁ କହିଲା । ତୁମେ ପରା ଗୋପଯୁବରାଜ ! ବୁଝ, ମୋତେ କେମିତି ଏମିତି କହିଲା ସଖା !

ଶ୍ରୀକୃଷ୍ଣ—(ନୀରବ ହାସ୍ୟ)

ମଧୁ—ହଁ, ହସିଦେଲ ? ମୋ କଥା ବୁଝିଲ ନାହିଁ ? ବାକି ଜାଣିଥା ସଖା, ହଁ, କହି ଦେଉଛି ?

ଶ୍ରୀକୃଷ୍ଣ—ଛି, ଛି, ସଖା !

ମଧୁ—ନାହିଁ, କହିଦେବି ତ । ବୁଝ; ନୋହିଲେ କହିଦେବି ନଷ୍ଟେ ।

ଶ୍ରୀକୃଷ୍ଣ--ଆଚ୍ଛା, ସେଇଟା ତା'ର ଭୁଲ୍ ।

ମଧୁ—ଭୁଲ୍ ? ତୁମେ କହିଲେ କଅଣ ହେବ ? ସେ କହୁ, ଗୋପାଳ ଗର୍ଦ୍ଦଭ ! ଶଏ ଏକ ବର୍ଷରେ ନାବାଳକ କଟେ ନାହିଁ ଯାହାଙ୍କର, ସେ ପୁଣି କହିବେ ଆମକୁ ଘୃଣା ? ନାହିଁ ତୁମେ ବୁଝ ସଖା, ନଇଲେ, ହୁଁ, କହିଦେବଚି ! ଯାହା କହୁଥିଲ ମାଆଙ୍କୁ କହିଦେବଚି !

ଶ୍ରୀକୃଷ୍ଣ—ଆଚ୍ଛା, ତାଙ୍କୁ ଦଣ୍ଡ ଦେବା । ଆଜ ମୋ ଭାଗରୁ ସର, ଲହୁଣି, ଛେନା, ରସାବଳୀ ଆଉ ତାଙ୍କୁ ଦିଆ ହେବ ନାହିଁ । ସବୁ ତମର । ଆଜ ତା'ର ପଡ଼ି କାଟ । ହାଁ, ହେଲା ?

ମଧୁ—ହାଁ, ଖାଉଥା (ହସି) ଖାଉଥାରେ ଗୋପାଳ ମୂର୍ଖ ! ପାଇଲୁ ? ଆସ ତେବେ ସଖା, ରସାବଳୀ ନାଁ ଶୁଣି, ଭାରି ଭୋକ ଦେଖେଇଲାଣି । ମୁଁ ସେତକ, ତମଭାଗ ସହିତେ, ସବୁ ଗିଳି ଦେଇ ଘରେ ଷାଠିଏ ନିଶ୍ୱାସ ମାରିବ । ଆଉ ତୁମେ କଅଣ କରିବ କହିବ ? ଏଁ-ଏକଦମ, ଏ ଗଉଡ଼ ପିଲାଙ୍କୁ ନେଇ ଯମୁନା କୂଳରେ, ତ୍ରିଭଙ୍ଗ ଠାଣିରେ, ସେଇଠି, ମନେ ପଡ଼ୁଚି ନା ସଖା ? (ଠାରି) ଏଁ-ବୁଝିଲନା ? ତୁମେ ତମ ବାଟ ଦେଖିବ—ଆମେ ଆମ ବାଟ ଧରିବୁ । ଥରେ ସେଠେଇ ତୁମେ, ନଠେଇ ବଶ, ମଠେଇ, ମଠେଇ—

[ଗୀତ]

ଜୟ ଶ୍ରୀରାଧେ ବୋଲ
ବଜାଅ ମୋହନ ବଂଶୀ
ତାନ ପରଶି କାନରେ ବେଜ
ସଖୀ ମତ୍ତ, ଗର୍ବ ଧ୍ୱଂସି ।୦।
(ସେଇ) ମୋହନ ମୁରଲୀ ତାନରେ
ଥରେ ସଚଳ ପବନ ଅଚଳ ରହୁ
ଯମୁନା ଲହରୀ ଲହରେ ଲହରେ
ପରଶି ତାନ ନଗ୍ନଜ ହାଉ
କୁଞ୍ଜବନେ କୋଇଲି କୁହୁ ଗାଉ
ଛଟକ ନୟନ ଅଟକ ରହିବ
ଲାଗବ ପୀରତି ଫାଶି ।୧।

---

ବିଷ୍କମ୍ଭକ

# ୪ର୍ଥ ଅଙ୍କ

## -ପ୍ରଥମ ଦୃଶ୍ୟ-

ଯମୁନା ତଟ

(ଯମୁନାର ଆର ପାଖରେ କଦମ୍ବ ମୂଳେ ତ୍ରିଭଙ୍ଗ ଠାଣିରେ ଉଭା ଶ୍ୟାମ, ଏପାଖରେ ଶ୍ରୀମତୀ । ଲଳିତା ବିଶାଖା ଇତ୍ୟାଦି ସଖୀଗଣ, ଶ୍ରୀମତୀଙ୍କୁ ଶ୍ୟାମ ଶୋଭା ଦେଖାଉଥିଲେ ।)

ଗୀତ

ସଖୀଗଣ— (ଷ)

ଷଟପଦ-ମାଳକେଶୀ ଆଗୋ ଗୁହଁ ଗୁହଁ,
ସବଂସହାରେ ଖେଳୁଛି ନବ ବାରି-ବାହ,
ସମୀପରେ ତାର ରହି,
ସୁରଜୁଛନ୍ତି ନର୍ତ୍ତନ ଅନେକ ବରହୀ ।୧।
ସଜହୋଇ ସୁର ସରଦାର ଅବା ଆସେ,
ସ୍ୱକାୟ ଫଳକ ଘେରିଅଛି ଚଉପାଶେ,
ହାରି ହେବ ପରି ଆଜ
ସବୋଜ ସୁନ୍ଦରନେତ୍ରା ଜନ-ମନ-ଲାଜ ।୨।
ସୁରେଶ୍ୱର ରତନକୁ ହେବାରୁ ଜଙ୍ଗମ,
ସବୁ ମଣିମାନଙ୍କୁ ମିଳିଲା ସେହି କ୍ରମ
ସ୍ୱର୍ଣ୍ଣବର୍ଣ୍ଣୀଏ ଏଣିକ
ସମ୍ଭାବିବେ ମୂର୍ତ୍ତିମନ୍ତ ରତନ ଶ୍ରେଣୀକ ।୩।

ସଞ୍ଚରଣଶୀଳ ନବ ତମାଳ ଭୂରୁହ
ସଙ୍ଗେ ଶୋଭ ଆସୁଅଛି ସଖା-ଶାଖିବ୍ୟୂହ
ଶୁକ, ଶାରୀ, ପରଭୃତ
ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ । ୪ ।

ଲଳିତା—ସଖିରେ ! ଲୋକେ କହନ୍ତି ସ୍ୱର୍ଗଗଙ୍ଗା ପବିତ୍ର ସ୍ଥାନ । ତାହାର କୂଳରେ ଯେବେ ତପ କରିଥିବା, ତେବେ ଏଇ ତମାଳ ଛାଇରେ, ଏ ବସନ୍ତରେ ସୁଖରେ ବସିବା ।

ବିଶାଖା—ଭଗ୍ୟବତୀ ସଖି ! ତମ୍ଭାଗ୍ୟ ବଳରୁ ଆମେମାନେ ଜାଣିଥିଏ, ଜାଣିଥିଏ ଯାଇଛୁଁ, ନୋହିଲେ ଏ ଶୋଭା ଦେଖନ୍ତୁ କେଉଁଠି ? ଅନାଁ ଅନାଁ ସଖି ! କାହାର ଏ ମନମୋହନ ରୂପଟି, ତିନ ଭୁବନ ମୋହନ କରି, ତିନ ଭଙ୍ଗିଆ ଠାଣିରେ କଦମ୍ବ ମୂଳେ ଉଭା !

ସଖୀଗଣ— [ଗୀତ]
'ହ'

କେତେକ ସଖୀ—ହରି ଆମ୍ଭର ଗୋ ଏ ତ ପ୍ରାଣଧନ ।୦।
ହରିହସ୍ତୁ ମଣିକି ଜିଣିଛି ଅପଘନ
ନିନ୍ଦୁଅଛି ଇନ୍ଦୁକୁ ବଦନ ଗୋ ॥
ଅନ୍ୟସଖୀ— ହଜାର ସଂଖ୍ୟକ ହେଲେ
ହେଲେହେଁ ମଦନ
ନୋହିବ ଏ ମୋହନ ସମାନ ଗୋ ॥
କେତେକ ସଖୀ—ହିଳ ନପିବ ଜୀମୂତକେଶୀର କି ଜ୍ଞାନ
ଶୁଣୁ ଶୁଣୁ ମୃଦୁ ବେଣୁ ଗାନ ଗୋ ॥
ଅନ୍ୟସଖୀ— ହଟି ଥରେ କରିବା କି ରବାମ୍ବର ପାନ
ହେଉ ଫଳବନ୍ତ ଯଉବନ ଗୋ ॥
କେତେକ ସଖୀ—ହାର ମଧ୍ୟରେ ଆମ୍ଭର ତରଳ ରତନ
ଯେବେ କି ଏ ଯୁବତୀ ଜୀବନ ଗୋ ॥

ଶ୍ରୀମତୀ—ସଖିରେ ! କଅଣ ହେଲେ ଏ ଚିନ୍ତାମଣିର ସରି ହେବ ଜାଣୁନାହିଁ । ଆସ ସଖି ! ଏ ନଟବରଙ୍କର ଗୁଣ ଗାନ କରି ଅର୍ଘ୍ୟ ବନ୍ଦାଇବା—

ସଖୀଗଣ—(ଅର୍ଘ୍ୟ ବନ୍ଦାଇ)

ଗୀତ
'କ୍ଷ'

କ୍ଷମାନୁକମ୍ପାଧର ହେ !
କ୍ଷୀର ସାଗରସମ୍ଭବାକୁଚକୁମ୍ଭଯୁଗଳ
ପରିରମ୍ଭ ଚତୁର ହେ । ୦ ।
କ୍ଷିତିତଳବାଳ ମହାଶ୍ରିତ ନିବାରଣ ହେ
କ୍ଷୁଣ୍ଣୀର-ଅବତଂସାକୃତ ଶ୍ରୀଚରଣ ହେ
ମଙ୍ଗଳ ବିହରଣ,-କଗତ ତ ଚରଣ-
ଧରାଭର ହରଣ, ଚରାଚର ଶରଣ
ତରାବର କରଣ,-ବରାବର ଚରଣ,-
ନଖାଂଶୁ ସୁରଗଣଶିଖାଭରଣ ହେ

ସମସ୍ତେ— ଗୀତ
ଭଜମନ ରାଧେ କୃଷ୍ଣ ରାଧେ କୃଷ୍ଣ ବୋଲି
ଭୁଜକୁ ପଳା ଯା ଏ ଜଞ୍ଜାଳରୁ ଚଗୁଳ ମନ) । ୦ ।
କାହାର ତୁ କେ ତୋହର ଦୁଅନା ବାଉଳ
ମିଳବଟି ପ୍ରେମଧନ ପ୍ରାଣକୁ ସଙ୍ଖାଳି । ୧ ।
ଗୋବର୍ଦ୍ଧନ ପରିକ୍ରମା କରି ମାରି ତାଳି
ଲୋଟିହୁଅ କେଳିବାର ରାସସ୍ଥଳୀ ଧୂଳି । ୨ ।
ଶ୍ରୀନାମ ସୁଧାରେ ସନସାର ଶ୍ରଦ୍ଧା ଗୋଳି
ପାନକରି ନାଚ ମଥା ପରେ କର ଟେକି । ୩ ।

(ଶ୍ରୀମତୀ ଅର୍ଘ୍ୟ ବନ୍ଦାଇ ଥିଲେ, ସଖୀମାନେ ସଖାମାନଙ୍କ ସହିତ ଶ୍ରୀରାଧା ଗୋବିନ୍ଦନାମ କୀର୍ତ୍ତନ କରୁଥିଲେ ।)

-ଯବନିକା-

ଉତ୍କଳ ସାହିତ୍ୟ ସମାଜ ।

# ପ୍ରଶଂସା ପତ୍ର ।



......[illegible] ବାର୍ଷିକ ଅଧିବେଶନ

ପୁରସ୍କାରର ନାମ— [illegible]

ବିଷୟ— [illegible]

ନାମ— [illegible]

ବାସସ୍ଥାନ— [illegible]

ଶ୍ରୀ ରାମଚନ୍ଦ୍ର ଭବନ
କଟକ
[illegible]

ସଭାପତି— [illegible]

ସମ୍ପାଦକ— [illegible]

ଉତ୍କଳ ସାହିତ୍ୟ ପ୍ରେସ—କଟକ ।

ରଚନାକାଳ—ଆରମ୍ଭ ତା ୧୨ । ୬ । ୩୭ ଶୁକ୍ରବାର ସକାଳ ୬ଘଣ୍ଟା
ଶେଷ—ତା ୪ । ୭ । ୩୭ ସକାଳ ୧୦ଘଣ୍ଟା

ପ୍ରଥମ ଅଭିନୟ— ତା ୨୧ । ୮ । ୩୭ ସନ୍ଧ୍ୟା ୬ଘଣ୍ଟା

ସ୍ଥାନ—ଜୈନମନ୍ଦିର ହତା, ଚୌଧୁରୀବଜାର, କଟକ

ଦ୍ର:—ନାଟକଟିରେ ମୂଳ ଗୀତଗୋବିନ୍ଦର ଶ୍ଳୋକ ଏବଂ ଗୀତଗୁଡ଼ିକର ଛନ୍ଦ—ସ୍ୱରାନୁସାରୀ—ଅନୁବାଦ ସ୍ଥଳାନୁସାରେ ସଂଯୋଜିତ ହୋଇଅଛି ।

# ଶ୍ରୀ ଗୀତଗୋବିନ୍ଦ

## ପ୍ରଥମ ଅଙ୍କ

### ୧ମ ଦୃଶ୍ୟ

(ଭରା ବସନ୍ତ । ଶ୍ରୀମତୀଙ୍କର ଉଦ୍ୟାନ-ବାଟିକା ବିଶାଖା ସହିତ ଉଦ୍ୟାନ ଭ୍ରମଣରେ ବାହାରିଛନ୍ତି ଶ୍ରୀମତୀ । ଚାରିଆଡ଼ରେ ବସନ୍ତ ସମାଗମର ଲକ୍ଷଣ । ଶ୍ରୀମତୀ ଗୋଟିଏ ଗଛ ମୂଳରେ ଛିଡ଼ା ହୋଇ ଗଛର ବସନ୍ତ ଶୋଭା ଦେଖୁ ଦେଖୁ (ହସି) ପଚାରିଲେ ।)

**ଶ୍ରୀମତୀ**—କେବେ ସଖି ?

**ବିଶାଖା**—(ହସି) କେଜାଣି ?

ଶ୍ରୀମତୀ—ସ୍ୱପ୍ନରେ ମାନସୀ **ପ୍ରତି**ମାର ସୁଖ ସ୍ପର୍ଶ ପରି, ଅଜାଣତରେ ସେ ଚୋର ପୁଣି କେବେ ଏଗୁଡ଼ିକୁ ଛୁଇଁ ଦେଇ ଗଲାଣିଟି ? ସତେ ଯେମିତି କିଏ ତାକୁ ଡାକଥିଲା, ଆସିବାକୁ । ଅନା, ଅନା ଗଛ ଗୋଟିକ ଯାକ ନୂଆ ପଲ୍ଲବରେ କେମିତି ଭରି ଯାଇଛି ମ ।
(ହସିଲେ)

ବିଶାଖା—ଆଜ ତେଣେ ମାଧବୀ କୁ ଚାହିଁଲଣି ନାଁ ?

ଶ୍ରୀମତୀ—ହଁ' ତ । (ଆଶ୍ଚର୍ଯ୍ୟ ହେବା ପରି ମୁଖ ଶୁଖାଇ ଚାହିଁ ରହିଲେ)

ବିଶାଖା—(ଶ୍ରୀମତୀଙ୍କୁ ଚାହିଁ ଅଳ୍ପ ନୀରବ ରହି) କ୍ଷମା କର ସଖି ! ଭୁଲ କରିଛି ମୁଁ ମାଧବୀ ନାଁ ପକାଇ । ବାକ ଦୋଷ ଏକୁଟିଆ ମୋର ନୁହେଁ ସଖି, ସେ ଆସିଲାକୁ ଯିନା—ମୋର ମନେ ପଡ଼ିଗଲା ।

ଶ୍ରୀମତୀ—କିଏ ?

ବିଶାଖା—ଯାହା' କଥା ପଚାରିଲ ମ ।

### ଗୀତ

ବସନ୍ତେ, ଡାକିଲା କେ ସେ
ବନେ ବନେ ଜାଳି ଦୀପ ନବ ପଲାଶେ । ୦ ॥
ଭରି ଭୁବନ-ସାରା କୁହୁ ଚମକ ଦେଲା
ପୂରିଲା ମନ ହତାଶେ—
ବନ୍ଧୁ ଆ ପଡ଼େ ମନେ ବିଜନେ କୁଞ୍ଜବନେ
ଝରିଲା ନୀର ନୟନେ । ୧ ।

ଲଳିତା—(ହଠାତ୍ ପ୍ରବେଶ କରି ଟିକିଏ ଆଶ୍ଚର୍ଯ୍ୟ ହେଲା ପରି ଚାହିଁ) କାହିଁ ?

ବିଶାଖା—କଅଣ ସଖି ? କାହାକୁ ଖୋଜୁଚ ?

ଲଳିତା—କାହିଁ ସେ ?

ଶ୍ରୀମତୀ—କିଏ ସଖି ?

ଲଳିତା—କାହିଁକି ? ତୁମେ କଅଣ ଶୁଣିନା ? ଲୁଚିଉଚ ମତେ ?

ଶ୍ରୀମତୀ—କଅଣ ମ ?

ଲଳିତା—ଏଇନେ ଗାଉଥିଲା ସେ—

### ଗୀତ

କୁହୁ, କୁହୁ, କୁହୁ, କୁହୁ,
କେ' ସଖି ଗୋପନେ ଗାଏ
ମରମେ ପରଶେ ଗୋ, ସରମେ ଜୀବନ ଯାଏ ।୦।
ଚତୁର ମଳୟ ସଖି ! ଚୋର ପରି ଫେରି ଚାହିଁ,
ଓଢ଼ଣି ଉଡ଼ାଇ ଦେଇ-ସେ ସ୍ୱର କାନେ ଶୁଣାଏ,
ଛଇଳ ଭ୍ରମର ପୁଣି—ସାଜେ ଲତା ମଥା ବେଣୀ
ଫୁଲେ କରି ପାଗଳମୀ, ପୀରତି ବେଣୁ ବଜାଏ ।୧।

ବିଶାଖା—ଶୁନ ହ'ମ ସଖି, ସେଇ ବସନ୍ତର ଶୋଭା ଦେଖାଇବାକୁ ଯାଇ ତ ମରିଛି ମୁଁ, ତୁ ପୁଣି ଆସି କଟାଘାଅରେ ଚୂନ ଦବୁକି ?

ଲଳିତା—କାହିଁକି ? କଅଣ ହେଲା ?

ବିଶାଖା—କହୁଛି ନାହିଁ—ମାଧବୀର ଶୋଭା ଦେଖୁ ଦେଖୁ ତ ସଖୀ ବାୟାଣୀ—ତୁ ପୁଣି କାହୁଁ ଆସି କୁହୁ ତାନ ମିଶାଇ ଦେଲୁ । ବାଃ !

ଲଳିତା—ସତେ କି ଗୋ, ଧନ ! ଏଠି ମାଧବୀ ଶୋଭା ଦେଖୁଥିଲ ବସି ? ମୁଁ ପରା ତେଣେ ତମକୁ ଏ ବସନ୍ତରେ ମାଧବ ଶୋଭା ଦେଖିବାକୁ ଡାକି ଆସିଲି । ବେଗେ ବେଗେ ବେଶ ବଢ଼ାଅ ମୋ ସଙ୍ଗରେ ଆସ—

ଶ୍ରୀମତୀ—କେଉଁଠି ସେ ସଖି ?

ଲଳିତା—ଆସ, ଦେଖିବ ଚାଲ ମୋ ସଙ୍ଗରେ—

**ଗୀତ**

ବିହୁ ଲବଙ୍ଗଲତା ଫୁଲସୁରଭିତ ମଳୟ ବହେ ଅତି ଧୀରେ
କୁଞ୍ଜ ଭିତରେ ଅଳି ଗୁଞ୍ଜନ ସଙ୍ଗେ କୋକିଳ ପଞ୍ଚମ ଗିରେ
ବିହରେ ହରି ସଖି, ସରସ ବସନ୍ତେ
ସଖିଗଣ ସଙ୍ଗେ ନାଚଇ ରଙ୍ଗେ ବଞ୍ଚିବ ପ୍ରାଣ କେମନ୍ତେ ?
କସ୍ତୁରି ବାସ ପ୍ରସାରେ ତରୁଦଳ ନବଦଳ ଶୋଭି ତମାଳେ
କାମନ ଖାଳି ପଲ୍ଲାସ ବିକାଶକ ଯୁବଜନ ହୃଦୟ ବିଦାରେ ।
ମଦନ ମହୀଧର ସ୍ୱର୍ଣ୍ଣ ଛତ୍ର ସମ ନାଗେଶ୍ୱର ଫୁଲ ରାଜେ
ଜଡ଼ିତ ଭୃଙ୍ଗ ଫୁଲ ପାଟଳି ସଙ୍ଗେ କାମ ତୂଣ ସବ ସାଜେ

ବିଶାଖା—ବାଃ, ସହି ତ ଆମର କବି ହୋଇଗଲା ଏକାବେଳେ ! ନୂଆ ବସନ୍ତ ବାଜି, ତୋର ବି କଟାପଟ କହୁଁକି ଉଠିଲା କି ମ ?

ଶ୍ରୀମତୀ—ହଁ ଫୁଲ ଫୁଟିବାକୁ ଆଉ ବାକି କେତେ ?

ଲଳିତା—ନାହିଁ ପାଖୁଡ଼ା ମେଲି ମେଲି ଆସୁଛି । ମକରନ୍ଦ ଝରିଲେ ତ ହେଲା ।

ଶ୍ରୀମତୀ—ସେ ବେଳ ପୁଣି କେବେ ?

ଲଳିତା—ତମର ଯାହା ମତ ତ ।

ଶ୍ରୀମତୀ—କେମିତି ?

ଲଳିତା—ଏ ଫୁଲ କି ସେ ବସନ୍ତକୁ ଅନାଏଁ ସଖି ?

ବିଶାଖା—ଆଉ ?

ଲଳିତା—ନାଁ ।

ଶ୍ରୀମତୀ—ତେବେ ?

ଲଳିତା—ତମର ଚନ୍ଦ୍ରହାସକୁ ତାର ଅପେକ୍ଷା । ଉଇଁଲେ-ଫୁଟିଲା (ଖିର କରି ଦେଲେ)

ଶ୍ରୀମତୀ—ଦୁଷ୍ଟ ହେଲୁଣି ତୁ ବଡ଼ । ଯାଃ (ଆଡ଼େଇ ଦେଲେ, ହାତରେ)

ଲଳିତା—ଆସ ଗୋ ! କେତେ ଯା, ଯା', ହଉଚ ? ମୋର ଏକୁଟିଆରେ ଯିବାର ହୋଇଥିଲେ, ତମକୁ ଖୋଜି ଆସନ୍ତି କାହିଁକି । ମୁଁ ଟିକିଏ··· (ଥମକି ରହି) ଆରେ, ଦେଖିଲଣି ଧନ ! ସେ ପୁଣି ଦେଖା ଦେଲାଣି···

ବିଶାଖା—କିଏ ।

ଲଳିତା—ଦେହକୁ ପତ୍ରର ମ କିଏ ? ପରଶ ଲାଗୁ ନାହିଁ ତୋତେ ?

**ବୃତ୍ତ**

ତରୁଣ-ହୃଦୟ-ତୃଷା, କେତକୀ-ବାସ ହାସି
ମଦନ ପରମାସଙ୍ଗୀ ଦକ୍ଷିଣ ମାଳ ରଙ୍ଗେ
ଦରବିକଶିତ ମଲ୍ଲୀ-ପୁଷ୍ପରାଗେ ସରାଗେ
ବିରହୀ ମରମ ଘାରେ, କାନନେ ଗ୍ରୁଇ ବାସେ ॥

ବିଶାଖା—ଧନ ! ଲଳିତା ଆମର ଭାଗ୍ୟବତୀ ବଡ଼ । ସବୁ ପରଶ ତାକୁ ଆଗେ ଲାଗୁଛି ।

ଶ୍ରୀମତୀ—(ହସି) ହଁ, ସେମିତି ତ ମୋତେ ଜଣା ପଡ଼ୁଛି । ନାଆଁଟି ତାର ଲଳିତା କି ନାଁ···ସମସ୍ତଙ୍କର ତାରି ଉପରେ ଆଖି । କଠୋର କଠିନ ଜୀବନକୁ ପତ୍ରରେ କିଏ ?

ବିଶାଖା—ପୁଣି ଲଳିତ ପଦାର୍ଥ ପାଖରେ ଥାଉଁ ଥାଉଁ !
ଲଳିତା—ରଖିଥା ଗୋ, ଏ କବିଗୃହୁସ୍ତ; ସେଇଠି ବାଣ୍ଟିବ । ବିଶୁନାହିଁ ? ମୋତେ କି ଏକା ପାଇଲ ତୁହେଁ ? ଆସ ଆସ ଆସ ମ, ଆଉ ବିଳମ୍ବ କଲେ ଚଳିବନି କି ? ଦେଖ ଦେଖ ।

( ଶାର୍ଦ୍ଦୂଳ ବିକ୍ରୀଡ଼ିତ ବୃତ୍ତ )

ରାଧେ ଗୋ, ମଧୁଗନ୍ଧରେ ଅଳି ଉଡ଼େ,
ଚୂତାଙ୍କୁରେ କମ୍ପିଲେ
ସଙ୍ଗେ କୋକିଳ-କାକଳି ବିରହିଣୀ କର୍ଣ୍ଣ-ଜ୍ୱରେ
ବା ମରେ ।
କାନ୍ତା ଚନ୍ଦ୍ରମୁଖେ ସ୍ମରେ ନିଶି ଦିବା ଯାପେ ପରି
ସ୍ମୃତିରେ
ବଞ୍ଚେ ଖୀଣମନେ ବିଦେଶ ଭବନେ କଷ୍ଟେ
ବିଯୋଗୀ ସଦା ।

ଶ୍ରୀମତୀଙ୍କୁ ଘେନି ବିଶାଖା ଓ ଲଳିତା ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ—ବନପଥ

( ମଧୁମଙ୍ଗଳ ଗାଇ ଗାଇ ଆସୁଥିଲେ )

( ଗୀତ )

ରୁମୁଝୁମୁ ନୂପୁର କେ' ବଜାଏ ରେ ?
ସେଇ ବଉଳର କୁଞ୍ଜେ, ଏଇ ନାଲି ଫୁଲସଞ୍ଜେ
ଲୁଚିଯାଏ ରେ—ଲୁଚିଯାଏ ରେ । ୦ ।
ଥରେ କୁହୁ କେ' ଶୁଣାଏ—ଥରେ ମୁରଲୀ ବଜାଏ
ଥରେ କୁଞ୍ଜ-ଫୁଲବାସରେ କେ' ନାଗରୀ ସଜାଏ
କେ' ଧୀରେ ଗାଏ ରେ ।

( ଦୂରରେ ବୃନ୍ଦା ଆସୁଥିବା ଦେଖି, ମଧୁ ଟିକିଏ କଡ଼ରେ ଲୁଚିଗଲେ ଏବଂ ବୃନ୍ଦା ପ୍ରସ୍ଥାନୋଦ୍ୟତବେଳେ)—

ମଧୁ—(ସ୍ୱର ଧରି) ଏ ମନ ଖୋଜୁଥାଇ ଯାହା
କାଳେ ପ୍ରାପତ ହୁଏ ତାହା ।

( ବୃନ୍ଦା ଫେରି ଚାହିଁଲେ—ମଧୁ ମଧ୍ୟ ଚତୁରୂପ ଚାହିଁ ରହିଲେ କିଛିକାଳ )

ମଧୁ—ତା'ପରେ ?
ବୃନ୍ଦା—କିଛି ନାହିଁ ।
ମଧୁ—ସତେ ? (ପରିହାସ ସ୍ୱରରେ)
ବୃନ୍ଦା—ପରିହାସ ମୋତେ ଭଲ ଲାଗେନାହିଁ କହିଦଉଚି ।
ମଧୁ—ସତେ ସତେ ?
ବୃନ୍ଦା—ବଟୁ !
ମଧୁ—ସତେ, ସତେ, ସତେ ?

( ବୃନ୍ଦା ଟିକିଏ କଡ଼ା ଆଖିରେ ଚାହିଁଲେ )

( ଗୀତ )

ମଧୁ—
ନାଗରୀ ସୁନାଗୋରୀ ଆରେ—ମାରନା ଆଖି-ଛୁରି
ମାରନା ଆଖି-ଛୁରି—ମରମେ ମରେ ଝୁରି ।୦।
କାମ କଜ୍ଜଳ-ସୂତା ଲଗିଛି ତୋ ଆଖିରେ
କାମକମାଣି କିଛି ରଖିଛୁ କି ବାକି ରେ ?
ବାମ ନୟନ ଠାରି—ସହି, ନ ହିଅ ଘାରି ।୧।
କାମନା ନାହିଁ ମୋର ତୋ' ଉଳା ଗୃହାଣିରେ
କା' ମନା ମାନେ ନା ତ ହିଏ ଗୁପ୍ତ ହାଣିରେ
ବାମ ନୟନ ଠାରି—ସହି ! ନ ହିଅ ଘାରି ।୨।

ବୃନ୍ଦା—ଦେଖ ବଟୁ, ସବୁକଥାରେ ଗୋଟାଏ ସୀମା ଅଛି ।
ମଧୁ—ସତେ, ସତେ, ସତେ, ସତେ ?
ବୃନ୍ଦା—ଆଉ କଅଣ ମିଛେ ?
ମଧୁ—ନାହିଁ ସତେ ?
ବୃନ୍ଦା—କେମିତି ଗୋଟେ ଜଳଜଳା ମ ତୁମେ ! ସବୁ କଥାରେ ତୁମର ପରିହାସ !
ବଟୁ—ଚମ ଗୁଣ ପକୋଉଛୁ—ଖାଇବା କଥାରେ ଏକା ସେତିକ ନଥାଏ ମୋର ସହି
ବୃନ୍ଦା—ସେଇଟା ପରା ଜାତିର ବିଶେଷତ୍ୱ । (ହସିଲେ)
ମଧୁ—ଏଇଟା ବି ତମ ଜାତିର ବିଶେଷତ୍ୱ ଯେ !
ବୃନ୍ଦା—କୋଉଟା ?

ମଧୁ—ଏଇ 'ମୁହିଁ-ପୁଲ୍‌ଟା—ଆଜ ତା' ପଛେ ପଛେ ଡରଦଉଡ଼ାଟା—

ବୃନ୍ଦା—କଏ କୁଆଡ଼େ ଭୁଲଭେ-ମନ୍ଦରେ ଯିବ କ ଆସିବ; ତୁମେ ଭଲ କାହିଁକ ଆମ ପଛେପଛେ ନେଉଛ ଥା ?

ମଧୁ—ଶିଖିଛୁ ପଦ୍ୟ ସେଇଟା ?

ବୃନ୍ଦା—ଶିଖିଛ ?

ମଧୁ—ହଁ, ସଖାଙ୍କଠୁ । ଏଇଭଳ କେତେଟା ଗୁଣରୁ ତ କହଜର ଗଉଡୁଣୀ ଗୋଟାପଣେ ତାଙ୍କର । କେଜାଣି, ଯେବେ ଅଭ୍ୟାସ କରୁକରୁ ଅବା ସେତକ ମୋତେ ପଇଟିଯାଏ, ତେବେ ଆଉ ଭାବନ କଅଣ ? ତେଣିକ ଗୋଟାକ ଉପରେ ସାତଟା ପେଟ ହେଲେବ ବେପରବ୍ୟା ।

ବୃନ୍ଦା—ଓଃ, ଏଇଥିପାଇଁ ତେବେ ପିଛୁ ଧର ଧର ବୁଲଛ ପଦ୍ୟ ?

ମଧୁ—ବୁଝିବାକୁ ଆଉର ବାକ ଅଛି ନା ସହି ! ଆମ ନନାଙ୍କଠୁ ସ୍ୱରେ ଅ, ସ୍ୱରେ ଆ ମଧ୍ୟ ପଢ଼ିନା ?

ବୃନ୍ଦା—ବର୍ଣ୍ଣୀର ହେଇ ନେଇଁ, ସେ ପାଠ ।

ମଧୁ—ସତ, ସତ, ମୋର ହୁଡ଼, ସେଇଟା ନପଟ ଗଉଡୁଣୀ ବୋଲ ଭୁଲଯାଇଥିଲ ମୁଁ । ଥୁ'କୁଲୁ ।

ବୃନ୍ଦା—ଭଲ ହେଲା, ତମ ସାଙ୍ଗେ ପୁଣି ପାରବ କଏ ? କହବଟି କୁଆଡ଼େ ମେଲଥିଲ ?

ମଧୁ—ଖୋଜୁଥିଲ ଜଣକୁ ।

ବୃନ୍ଦା—ପାଇଲ ?

ମଧୁ—ପାଇଛୁ ।

ବୃନ୍ଦା—କାଇଁ ?

ମଧୁ—ଆଗରେ ।

ବୃନ୍ଦା—କଅଣ ମୋତେ ?

ମଧୁ—ହଁ, ସତେ ।

ବୃନ୍ଦା—ବେଶ, ଭଣ ।

ମଧୁ—ଏଣେ ଆସ ।

( ବୃନ୍ଦା ନକଟକୁ ଗଲେ )

ମଧୁ—ଦୂରରୁ ଏକୁଟିଆରେ ଲଳତା ବଡ଼ ତରତର ହେଇ କୁଆଡ଼େ ଗଲାପର ଦେଖିଲ । ଖବରଟା ନେଇପାରଲ ନାହିଁ । ମନେହେଲା ଯେମିତ କଛି ଢ଼ଚର ପେଞ୍ଚ ଏଥେରେ ଅଛି । ମୁଁ ତ ଯିବ ନାହିଁ ସେଠିକ ଏତେବେଳେ—ଜାଣିଛ । ତୁମେ ଯାଅ, ସଖାଙ୍କୁ ଟିକଏ ସାବଧାନ କରେଇଦବ—ଯେମିତ ପଥ ନଦୁଉ, ପଛରେ ଆଖିଲୁହ ନ ଝରନ୍ତୁ ।

ବୃନ୍ଦା—ଭୋଳାମନ କାହ୍ନୁ ତ ! ଅସମ୍ଭବ ନୁହେଁ ଯେ ! ଲଳତା ଯାଇ ଶ୍ରୀମତୀଙ୍କୁ କଛି କହିଥିବ ।

ମଧୁ—ସେଇ ତ । ତୁମେ ଧୀରସମୀର ବନକୁ ଯାଅ । ସେଠେ ସଖାଙ୍କୁ ଭେଟିବ । ମୁଁ ମାଧବୀ-କୁଞ୍ଜ ଆଡ଼କୁ ଗଲ । ବୁଝିଲ ?

ବୃନ୍ଦା—ଆଚ୍ଛା, (ମଧୁ ବୃନ୍ଦାଙ୍କ ଯିବାବାଟକୁ ଚାହିଁଥିଲେ)

ମଧୁ—(ଟିକଏ ଭାବ) କହଦେଲ ସିନା ସ୍ଥାଙ୍କୁ ! ଏ ବ ଖଣ୍ଡେ ଚଜ ! ଏବେ କାହାକୁ କଏ ଊଣା ? ସମସ୍ତେ ଜଣେ ଜଣେ ଲମ୍ଫମଙ୍ଗଳ ଋଷି । ସମସ୍ତଙ୍କର ଜଟା ଅଛି—ତଫାତ୍ ଏତକ ଯେ କେହି ସାତ, କେହି ସତର । ବାକ ଧନମଣି ! ମୋତେ ଜଣା ତମ ଗୋଚର—

( ଗୀତ )

ମୁଁ ଭୂଇଁ ତଳେ ତଳେ ଥାଏଁ ।
ଅଡ଼ୁଆ ଚଡ଼ୁଆ ଟିକଏ ଦେଖିଲେ
ପ୍ରେଟଟି ବଜାଇଦଏଁ (ଧନମଣି)
ଭଡ଼ ମୋର ପେଟର ହାଜ
ଦେଖି କଏ ସହିବ ସଜ
ବାଗ ନଥାଇ ସେ ଜନ ପୁରୁଷକୁ
ହାଜ ହାଜ କରୁଥାଏ ।
ଭଲୁପରି ସବୁ ମୁଁ ଶୁଣେ
ପାଗ ଦେଖି ବଦନ ବୁଣେ—
ବଲରେ ତମର ଦାଆ ନ ବୁଲଇ
ମୋ ଘର ଉଚ୍ଛୁଳୁଥାଏ ।

( ଗାଇ ଗାଇ ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

[ ଯମୁନା ତଟ ]

( ବୃନ୍ଦା ଗାଇଗାଇ ପ୍ରବେଶ )

କୋଇଲି ବୋଲେ, କୁହୁ କୁ ସଖି !
ତା'ର ଫୁଲବନେ ।
କାନେ ପଶି ଗୋ ଖାରେ ମରମେ
ଆସେ ତ ପାଶେ ମରେ ସରମେ
ଫଗୁଣ ଜହ୍ନରାତି ଦେଖି ସଖୀ
(ହା' ହା') ଲୁଚେ ମୁଁ କୁଞ୍ଜକୋଣେ ।
ଅବେଳା ରାତି ଗୋ ! ଥରଇ ଗାତ୍ର
କଜ୍ଜଳ ଆଖି ମୋ ଏକା ତ ସାଥୀ
ଛନ୍ଦଗନ୍ଧ ମୋର ଅଂଚଳ (ହା' ହା')
ମାର ବାଧା ନମାନେ, ସଖି ।
( ବୃନ୍ଦା ଗାଇ ଗାଇ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

[ କୁଞ୍ଜ—ଶ୍ରୀମତୀ ଓ ଲଳିତା ]

ଶ୍ରୀମତୀ—କାହିଁ, ବିଶାଖାର ଦେଖାନାହିଁ ତ ସଖି !

ଲଳିତା—ଫେରୁଥିବ ଫେରୁଥିବ, ଏମିତି ତରତର ହେଲେ କି ଚଳେ ?

ଶ୍ରୀମତୀ—ଏତେ ବିଳମ୍ବ ? ଆଉ କଥଣ ପାଇଲା ନାହିଁ ତାଙ୍କୁ ?

ଲଳିତା—ଆସୁଥିବ ମ, ସେ— ପାଇବ ନାହିଁ କାହିଁକି ? ଯାଇଛି ତା' ସଂବାଦ ବୁଝି ତ ପୁଣି ଆସିବ । ଉଠ, ଆସ ଆମର ବସନ୍ତ ଶୋଭା ଦେଖି ଦେଖି ଆଉ ଟିକଏ ଆଗ ବଢ଼ିଯିବା ।

( ଗୀତ )

ଅନାଁ ଲୋ ମିତ, କାନନକାନ୍ତ-ଦିଆକୁ
ନନ୍ଦନବନ-ଜଣା କୁସୁମ ବାସନଆକୁ । ୦ ।
କୋଇଲି-ରସିଆକୁ କାମିନୀ-ଚୋରିଆକୁ,
ନାଲି ନୂଆ ପଲ୍ଲବ, ବଉଳ-ମାଳିଆକୁ । ୧ ।
(ବିଶାଖା ଦୁଃଖ-ମନରେ ଫେରିଆସିଲେ)

ଶ୍ରୀମତୀ—ଭେଟିଲୁ ?

ବିଶାଖା—ହଁ ସଖି !

ଶ୍ରୀମତୀ—ତେବେ ମୁହଁ ଶୁଖେଇଛୁ ଯେ ! କଅଣ ହେଲା କି ?

ବିଶାଖା—ନାଇ , କିଛି ନାହିଁ ।

ଲଳିତା—ଶ୍ୟାମଙ୍କୁ ସଂବାଦ ଦେଇପାରିଲୁ ନାହିଁ ?

ବିଶାଖା—ନା ।

ଶ୍ରୀମତୀ—କାହିଁକି ?

ବିଶାଖା—ଦେଖିବ ଚାଲ, କାହିଁକି ।

ଲଳିତା—କଅଣ ହେଲା କହୁନାହୁଁ ।

ବିଶାଖା—ଶ୍ୟାମ ଅଛନ୍ତି ସତ; କିଶୋରୀ ତ ସେଠି ଅନେକ । କାହା ସଂବାଦ ତାଙ୍କୁ ଦେବି ? କୋଉ କିଶୋରୀ ତାଙ୍କୁ ଭେଟିବେ ଯେ ?

ଲଳିତା—କାହିଁକି ?

ବିଶାଖା—କହିଲି ପରା ଚାଲ ଦେଖିବ ।

ଶ୍ରୀମତୀ—କଅଣ ହେଉଛି ବିଶାଖେ ?

ବିଶାଖା—ପହଡ଼େ କାଳ ଛୁଉଁଦେଲି, କେହି ଟିକଏ ଚାହିଁଲେ ନାହିଁ ମୋତେ । ଚାରିପାଖେ ଗୋପୀମାନେ ଘେରିଛନ୍ତି—ମଝିରେ ନାଚୁଆ ନଟବର । କେଜାଣି ତୁମେ ଗଲେ ବା ତାଙ୍କର ଆଖି ଫେରିବ । ଆମେମାନେ କିବା ଛାର ସେ ଗୁଆଳୀମାନଙ୍କ ପାଖରେ ?

ଶ୍ରୀମତୀ—ଲଳିତା, ଶୁଣିଲୁ ? ବାହୁଡ଼ିଯିବା ଚାଲ !

ଲଳିତା—ନାଇଁ ସଖି, ବାହୁଡ଼ିଯିବା ବା କାହିଁକି ? ଲଳିତା କି ସ୍ୱାର ପ୍ରତିଶୋଧ ନେଇ ଜାଣିନାହିଁ ? ଯିବା ଚାଲ । ସତରେ ଯଦି କାହ୍ନୁ ଆମମାନଙ୍କୁ ନ ଚାହାଁନ୍ତି, ତାଙ୍କର ସେବେ ଆମମାନଙ୍କୁ ଦେଖି ଚେତା ନପଶେ, ତେବେ ସଖି ! ଦେଖିବ, ଲଳିତା କଥା ବୁଝିବ—ସେ ଶିଖଣ୍ଡିଚୂଳକୁ ବନେ ଏଇ ଭୂଇଁରେ ଲୁଟାଇ, କମନସୂନରୁ ଲୁହ ନ ଝରାଇ ଛାଡ଼ୁନାହିଁ ମୁଁ ।

ଶ୍ରୀମତୀ—ନାଇଁ ସଖି, କି ମିଳିବ ଏତେକଥାରୁ ? ଆମ ବାଟ ଆମେ ଦେଖିଲେ ଭଲ ।

ବିଶାଖା— ନାହିଁ ଧନ ! ଲଳିତା ଯାହା କହିଲ, ସେଇଆ କର । ଥରେ ଯାଇ ତାଙ୍କୁ ପରଖିନେବା । ତା' ପରେ ସିନା ଯାହା କରିବା ।

ଶ୍ରୀମତୀ—ହଉ, ତମମାନଙ୍କ ମନ ।

ଲଳିତା—ଆଚ୍ଛା ସଖି, ମୁଁ ଟିକିଏ ଆଗଭର ହୋଇ ଯାଏଁ । ଅବସ୍ଥାଟା କଅଣ ହୋଇଛି ଦେଖେଁ । ତୁମେ ବିଶାଖା ସାଙ୍ଗରେ ଟିକିଏ ଧୀରେ ଧୀରେ ଆସୁ ଥା—

ଶ୍ରୀମତୀ—ଯା, ବାକ, ତାଙ୍କୁ କିଛି କହିବୁ ନାହିଁଟି, ମୋ ରାଣ ତୋତେ ।

ଲଳିତା—ଏଡ଼େ କଥା ! ରାଣ କାହିଁକି ସଖି ? ମୁଁ ଖାଲି ସେଠାର ନବରଙ୍ଗଟା ଦୂରରୁ ଠଉରେଇବି ବୋଲି ଯାଉଛି । ତାଙ୍କ ପାଖ ଜମା ମାଡ଼ିବି ନାହିଁ । ଆସ, ତମକୁ ମୁଁ ବାଟରେ ଘୁଡ଼ ଆଗକଲିଯିବି ।

ଶ୍ରୀମତୀ—ତୋ ମନ—

( ସମସ୍ତେ ପ୍ରସ୍ଥାନ କଲେ )

( ମଧୁ ପ୍ରବେଶ )

ମଧୁ—ହୋଇଚ, ହୋଇଚ । ଯହିଁକି ଡରେଁ—ତହିଁରେ ମରେଁ । ସଖାଙ୍କର ଗତିଗତି ଦେଖି ମୋତେ ଏକା କାହିଁକି ଏଇ କଥାଟା ଆଖି ଆଗେ ଆଗେ ଦିଶିଯାଉଥିଲା । ସରିଲା, ସରିଲା ! ଏଥର ଖଣ୍ଡେ ମହାପୁରାଣ ଆରମ୍ଭ ହବ । କେତେ ମାନ, କେତେ ଅଭିମାନ, କେତେ ଆଖି-ଛଳଛଳ, ରୁଷା !— ଗଉଡୁଣୀଙ୍କ ପସରା ବଢ଼ିଲା । ଆମର ବ ଏଣେ ସ୍ଥା ଗୋଡ଼ ଧ', ତା ଗୋଡ଼ ଧ', ଏ ବାଟ ଜଗ, ସେ ବାଟ ଜଗ—ଯାଏଁ ଆଗରେ ଆନମୁଣ୍ଡ ମାଡ଼ିବସି ଲଳିତାଙ୍କ ମନର ଖବରଟା ବାରେଁ । ( ଯାଉ-ଯାଉ ଫେରି ଇତବାପରି ) କରେ ବାବୁ ! ଶାଗରେ ହାତେ—ମୂଗରେ ହାତେ ଦେଲେ କ ଚଳେ ? ସ୍ଥାଙ୍କର ତ କେତେଖଣ୍ଡି ବୋଗ ଅଛି—ଆଁ, ଚାଙ୍କରିହାଣି, ମୁରଲିଫୁଙ୍କା, ହି ଉଙ୍ଗଠାଣୀ···ଗଲା, ସେ ଯୋଉଥିରେ ଭୁଲିଲା । କରେ ବାବୁ ! ଭୁଲିଅ, କିଏ ମନା କରୁଚି ? ସମ୍ଭାଳି ଭଲ । ଅସମର୍ଥ ଗୃହର ! ସେ କଅଣ ସହଜ ପାଠ ? ଓଡ଼ାଙ୍କ ମେଲଙ୍କଠୁ ଆତୁର ଭକ୍ତ ଟି ! ଜବ କ'ଣ ଆଉ ମିଛରେ ବୋଲିଛି—ଭାରି ବିଷମ, ଭାରି ଖସଡ଼ା, ଭାରି ଅଡ଼ଡ଼ା । ତହିଁରେ ନନା ପରି ମୋତେ ଦିନେ ସେଇକଥା ଏଡ଼ାଉଥିଲେ—

( ଗୀତ )

ଜଗତେ ଅପକୀର୍ତ୍ତି ହାଟ ବସେ,<br>
କଳଙ୍କ-ପସରା ତହିଁ ବିଶେଷେ ।<br>
ଜାତି କୁଳ ଜ୍ଞାନ ମାନ ବିକଇ,<br>
ଚିନ୍ତା ଉଚ୍ଛନ୍ନ ଉଚନ କଣଇ ।<br>
ନନ୍ଦାଢୋଲ ବାଜେ;<br>
ନରକେ କୃପାଫଳ କିଣି ଭୁଞ୍ଜେ ।<br>
ବଡ଼ କଠିନ ସେ ପ୍ରୀତି ପାଳିବା,<br>
ତୀକ୍ଷଣ ଅସିଧାରେ ପଥ ଚଳିବା ।<br>
ଶୂନ୍ୟ-ଆରୋହଣଠାରୁ କଠିନ,<br>
ପବନ ଫାନ୍ଦେ ଧରିବା ଲକ୍ଷଣ ।<br>
ପ୍ରୀତି ରକ୍ଷାଠାରେ;<br>
ଯଥା ପାରଦ ରଖିବା ମୁଠାରେ ।<br>
ଲକ୍ଷ ଘୋଡ଼ା ନବମୀତ ସୁଆର,<br>
ପ୍ରଚଣ୍ଡାନଳ ପଥେ ଚଳିବାର ।<br>
ତହିଁ କପରି ରହିବ ଶରୀର,<br>
ତହୁଁ ଅଧିକ ପ୍ରୀତି ପାଳିବାର ।<br>
କହୁଚି ଏତିକି;<br>
ଦୂରୁ ଜହ୍ନାର ପୀରତି ଶିତିକ ।

(ଗାଇ ଗାଇ ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

[ ବନପଥରେ ଲଳିତା ଗାଇ ଗାଇ ପ୍ରବେଶ ]

( ଗୀତ )

ସମୀର ରେ ! ଆଜ ମରମ ବହନା ଲୁ;<br>
ନୈଶ୍ୱଇ ବାସ, କୁସୁମହାସ, ବରଣ୍ଡି ପାଶେ ବହନା ଲୁ ।୦।

ଉଡ଼ାଇ ବାସ କାନ ଲଜ ସରମ ଘୁଞ୍ଚାନା
ଶିଖାଇ ମନ୍ଦହାସ ମାନ ଭରମ ସଞ୍ଚାନା
କୁଞ୍ଜେ ବନ୍ଧନା, ସଙ୍ଗେ ବନ୍ଧନା
ମନ୍ତ ବଜାନା ମଜାନା···ନା, ନା, ନା ।

( ଏକ ଦିଗରେ ଗାଇ ଗାଇ ପ୍ରସ୍ଥାନ କଲାବେଳେ ମଧୁ ସ୍ୱର ଧରି ପ୍ରବେଶ )

ମଧୁ— ( ଗୀତ )

ନା, ନା, ନା, ନା—
ଏସବୁ ସୁଖ ଲାଗେନା, ନା, ନା, ନା, (ମୋତେ)
ବସନ୍ତ ଆସେ ଯହିଁ-ଫୁଲ କପାଁ ଫୁଟେ ଗୋ ?
ସମୀର ଝେର ପୁଣି ବାସଟିକ ଲୁଟେ ଗୋ ?
ଗୋପନ କଥା ନେଇ କାହା ପାଶେ ଛୁଟେ ଗୋ
ତରଂ କ ତାର ସହେନା,-ନା,-ନା, ନା (ସତେ) ।

ଲଳିତା—କିଓ ମଧୁ, ଗଲୁ କୁଆଡ଼କୁ ?

ମଧୁ—ଦକ୍ଷିଣମୋଡ଼ ।

ଲଳିତା—ବାଃ, କଥାର ଗୁଡ଼ ତ ବେଶ୍ ! ବସନ୍ତକାଳ ଦେଖି ଏ ରସିକପଣିଆଁ ଉତ୍ତର ପଡ଼ୁଛି କ ?

ମଧୁ—(ଦୀର୍ଘଶ୍ୱାସ ସହ) ହଁ ଗୋ ସଖି ! ଚୂଲିରେ ପଶିବାକୁ ।

ଲଳିତା—କାହିଁକ ?

ମଧୁ—କଅଣ ବାକ ଅଛି ଯେ ଆଜ ? ବାହାଘର ତ ତୁମେ ଘିଅ ଢାଳବ ବୋଲ ନଆଁ ରେ ।

ଲଳିତା—ମନ୍ଦ କଅଣ ? ହୋମ ନହେଲେ ଘର ପବିତ୍ର ହବ କେମିତି ?

ମଧୁ—ବାଃ ! ଗଉଡ଼ୁଣୀଙ୍କ ଆମ ବାହୁଣିଆଁ ପବନ ବାଜଲଣି ତ ! ଆମେ ଏଥର ପୋଥିରେ ଡୋର ବନ୍ଧୁଁ ! ଗୁଡ଼ ସେକଥା, ତମ ଗଲୁ ଫେର୍ କୁଆଡ଼କୁ ଏଇନେ ?

ଲଳିତା—ଜାଣୁଛ ତ ତା ଗଉଡ଼ ଜାତି, ଗୋରୁ ବାଛୁରି ଖୋଜବାକୁ ।

ମଧୁ—କଅଣ ହଜଛନ୍ତି ?

ଲଳିତା—ହିଁ, ଏକାବେଳେ ପଘା ଛିଣ୍ଡେଇନା ! କୋଉଠି କୋଉ ବଣବୁଦାରେ ଥିବେ—ଯାଇଁ ଦେଖେଁ; ଉତ୍ତର ହବ ମୋର, ମୁଁ ଯାଏଁ ।

ମଧୁ—ଯା, ସଖି, ତହିଁକ ମନା ନାହିଁ ଯେ, ବାକ ପଡ଼େ କଥା ମୋର । ଏତକ ଯେ, ଘର ମଣେଇଁ କାରବାରଟା ଲଗାଇଥିବ । ପଛରେ ଯେମିତ ହ' କୂଳ ନ ଭାସେ ।

ଲଳିତା—ହଉ, ହଉ, ତୁମେ କୂଳ ଜଗି ବସିଥା ।
( ପ୍ରସ୍ଥାନ )

ମଧୁ—(ବାଟକୁ ଚାହିଁ) ହାଁଃ, ଗଲେ, ଆଗରୁ ବାଟ ଓଗଳେଇ ଦେବେ ଯେ । ଆମେ ବ ପିଣ୍ଡିଧର ସୁବକ ବାରୁ । କିଛି ଗଣ୍ଡଗୋଳ ନୋହିଲେ ରକ୍ଷା ! (ନେପଥ୍ୟକୁ ଚାହିଁ) ଆସୁଛନ୍ତି ଶ୍ରୀମତୀ ବିଶାଖା ଦୁହେଁ । ହାବୁଡ଼େ ପଡ଼ିବା ଆଗରୁ ସୁଦେ ସୁଦେ ସ୍ଥାନ ତ୍ୟାଗ ! ତେଣେ ସେ ଗଲେ; ଏଣେ ଏ ଆସିଗଲେ ଜାଣ ! ଅତଏବ ଏ କୁଟୀଳ ବନ୍ଧନୀ ମଧ୍ୟରେ—ମଧୁ-ପ୍ରସ୍ଥାନ ।

(ବନ୍ଧନୀ ପରି ଦୁଇହାତ ଦେଖାଇ ଦେଖାଇ— ଚାଲିଗଲେ )

---

## ଷଷ୍ଠ ଦୃଶ୍ୟ

[ ଗୋପୀଗଣସହ ନୃତ୍ୟରତ ଶ୍ରୀକୃଷ୍ଣ—ଅଦୂରରେ ଉହାଡ଼ରେ ଶ୍ରୀମତୀ ଓ ଲଳିତା । କିଛିକାଳ । ପରେ ପରେ ପ୍ରବେଶ କଲେ ବିଶାଖା ]

ବିଶାଖା - ଦେଖିଲ ସହି, ମୋ କଥା ଗୁଡ଼ । ତମକୁ କ ତାଙ୍କର ନଜର ଅଛି ? ଏକାବେଳେ ଭୋଳ—

ଲଳିତା—ଦେଖୁଛ--ଏତେବେଳେ ଶ୍ୟାମ-ଶୋଭା—
( ଗୀତ )

ଶ୍ୟାମର ଚନ୍ଦନମଣ୍ଡିତ ଅଙ୍ଗ ମନୋହର ପୀତ-ବସନ୍ତେ
ହାସଭରା ଯୁଗ ଗଣ୍ଡତଟେ ମଣିକୁଣ୍ଡଳ ଚଞ୍ଚଳ ଦୋଳେ,
ନଟବର ନାଗର କେଳ କରେ
ବଳାସିନ-ବରଜଗୁଆଳ ତୁଲେ । ୦ ।

କଣ୍ଠକୁହାଞ୍ଚଳରେ ନଳବର-ତନୁ ଶ୍ୟାମକପୋଳେ ମଣ୍ଡେ
ଶ୍ରୁତିନଚମ୍ପକଶ୍ରୀ ରସି ଚୁମ୍ବେ ପୁଲକ-ସୁରକ୍ତିମଗଣ୍ଡେ ॥
କେ'ରମଣୀ ଯମୁନାତଟ କୁଞ୍ଜେ କେଳିକଳାରସ ରଙ୍ଗେ
ମୋହନ ବାସ ଭିଡ଼େ ପରିହାସେ ଭାସି କି ପ୍ରେମତରଙ୍ଗେ ॥
ନାଚଇ ରାସରସେ ବ୍ରଜନାରୀ ସଙ୍ଗେ ନାଗର ରାଜେ
ବେଣୁ ଭୁଲେ ପୁଣି ତାଳ ମିଶେ କରକଙ୍କଣ
ରଣଝଣ ବାଜେ ॥

ଶ୍ରୀମତୀ—ଲଳିତେ ! ନା, ଆଜ ନୁହେଁ । ଏ ବାଧା ସହିବୁ ନୁହେଁ ସଖି !

ବିଶାଖା—ଏଡ଼େ ଭୋଳ ଯେ ସେ, ଥରେ ଏଣିକି ଗୃହିଁବାକୁ ତରନାହିଁ ପରା !

ଲଳିତା—ଦେଖୁଛନା ରାଇ !

ଶ୍ରୀମତୀ—ଚାଲ ସଖି ! କୁଞ୍ଜ ତ୍ୟାଗ କର । ଆସ ଲଳିତେ ।

( ଗୋପୀଗଣସହ କୃଷ୍ଣଙ୍କର ପୂର୍ବବତ୍ ନୃତ୍ୟ ଶ୍ରୀମତୀ ସଖୀଗଣଙ୍କସହ ପ୍ରସ୍ଥାନ କଲେ )

( ପଟକ୍ଷେପ )

---

## ଦ୍ୱିତୀୟ ଅଙ୍କ – ପ୍ରଥମ ଦୃଶ୍ୟ
## ଅରୁଣ-କୁଞ୍ଜ

[ ବିଷାଦମନେ ଶ୍ରୀମତୀ ଉପବିଷ୍ଟା । ପାର୍ଶ୍ୱରେ ଲଳିତା ଓ ବିଶାଖା ]

( ଗୀତ )

ଲଳିତା—

ଚୁମ୍ବି ଅଧର ମଧୁ ମଧୁର ନିନାଦେ
ବେଣୁ କି ସୁନ୍ଦର ବାଜେ,
ଚଳଯୁଗ ନୟନ ସୁଚଞ୍ଚଳ ଚୂଡ଼ା
ଶ୍ରୁତିପର କୁଣ୍ଡଳ ସାଜେ,
ରାସେ, ହରି ହରଷରେ କି ଆନନ୍ଦେ
ସୁମରି ମରେ ସଖି, ପ୍ରାଣ ବିଷାଦେ ।
ଚାରୁ ମୟୂର-ଶିଖଣ୍ଡ ସୁଶୋଭିତ
ସୁନ୍ଦର କୁନ୍ତଳ ଘେରି,
ସାନ୍ଦ୍ର ଘନେ ଅତି ମଞ୍ଜୁଳ
ରଞ୍ଜିତ ଇନ୍ଦ୍ରଧନୁ ରୂପଶିରି ହେରି
ମଞ୍ଜୁ ନବଚମ୍ପକଶ୍ରୀ ବ୍ରଜନାରୀ—
ଚୁମ୍ବନ ଲୋଭ ବିଳାସେ,
ଫୁଲ୍ଲ ବନ୍ଧୂଳିହରି ମଧୁରାଧର
ମଣ୍ଡିତ ବା ଦରହାସେ ।

ବିଶାଖା—ନାହିଁ ରାଇ, ତୁମେ ଯାହା କହ, ମୋର କାହିଁକି ଧୈର୍ଯ୍ୟ ରହୁନାହିଁ । କି କପଟ ସେ ! ଥରେହେଲେ ଆମଆଡ଼କୁ ତାଙ୍କ ଭୋଳା ଆଖି ଫେରିପାରି-ନାହିଁ ? ଏଡ଼େ ନିଷ୍ଠୁର ସେ !

ଶ୍ରୀମତୀ—ସବୁ ଦେଖିଛୁ । ସେ କଥା ଥରକୁଥର ଚେତାଇ, ସେଇ ନାଗରବର ମୋହନ ଛବିର ରୂପ-ମାଧୁରୀ, ସେ ନୃତ୍ୟଭଙ୍ଗି ମନେ ପକାଇ, ମୋ ବୁଦ୍ଧି କଣା କରିଦେ' ନାହିଁ । ରାଧିକା ହତଭାଗିନୀ ସହି, ଏତେ ଦୁଃଖରେ, ଏଡ଼େ ନିରାଶାରେ—ଏଭଳି କପଟ ବୋଲି ଜାଣି ମଧ୍ୟ ମୁଁ ତାଙ୍କର । କେଜାଣି କାହିଁକି ସହି, ମୁହିଁ ଖୋଲେ ନାହିଁ—ଛାତି ଭିତର ଫାଟିଯାଏ । ପୋଡ଼ା ଆଖି ସବୁ ଦେଖେ—ସବୁ ବିଶୁଛି ।

ବିଶାଖା—ସେଇଆ ତ···

( ଗୀତ )

ମନକଥା ମନେ ମରେ, ଗୃହିଁବାକୁ ଆଖି ଫିଟେନା
ଯଉବନୀ ଲାଜେ ସରେ—ଛାତିଫାଟେ ମୁଖ ଫିଟେନା ।୦।
କହିକହି ଆସେ କଥା—ନଇଁଯାଏ ଲାଜେଁ ମଥା
ଥରଥର ଅଧରଟିକି, ଦରଫୁଟା ଛଇ ଭୁଟେନା । ୧ ।

ଶ୍ରୀମତୀ— ( ହରିଣୀ ବୃତ୍ତ )

ହରି ପର ରସେ ରଙ୍ଗୀ-ସଙ୍ଗୀ ତଥାପି ତ ମୋର ସେ
ଅବଗୁଣଗୁଣେ ଚେଜେଁ-ହେଜେଁ ଗୁଣାବଳି ତାର ଗୋ ।
କି କରିବ ମନେଁ ଧାଏ-ଧାଏଁ ହବାନଶି ସନ୍ତତେ
ଛି ଛି ସଖି ! ମରେଁ ଲାଜ-ବ୍ୟାଜେ ସିନା ଅନୁରାଗିଣୀ ॥

ଲଳିତା—ସେଇ ଗୁଣରୁ ଧନୀ ବଡ଼ ବୋଲୁଇଛ ସିନା ! ନୋହିଲେ ଶ୍ୟାମ ତମର କଣ କାହିଁକି ? ପ୍ରିୟସଖି ! ଲଳିତା ସବୁ ଜାଣେ । ମୋ ଦୁଃଖ ମୋତେ ବାଧୁନାହିଁ ସଖି, ବାଧେ, ଏଇ ଚନ୍ଦ୍ର-ନିନ୍ଦୀ ସୁଧାବୋଳା ମୁହଁଟି ଟିକଏ ଝାଉଁଳି ପଡ଼ିଲେ । ଏଇ ସ୍ନେହ, ପ୍ରେମ, ଦୟା, ମାୟା ମିଶା ଆଖିଦୋଟି ଟିକଏ ଛଳଛଳ ହୋଇଉଠିଲେ, ସାରା ପୃଥିବୀ ଘୂରିଯାଏ, ଛାତି ଫାଟିଯାଏ; ଆକାଶ ପାତାଳ ହୁଏ, ପାତାଳ ଆକାଶ ହୁଏ । ଦିନରାତି ଜଣାଯାଏ ନାହିଁ । ସବୁ ଓଲଟପାଲଟ ହୋଇପଡ଼େ । ବଡ଼ ରାଗରେ, ଭାରି ଦୁଃଖରେ ଶ୍ୟାମଙ୍କ ପାଖକୁ ଯାଏଁ; ପୁଣି ସେଠିକି ଗଲେ ଏ ଦୁଃଖସବୁ କୁଆଡ଼େ ପାଶୋରି ଯାଏ । ମନରାଗ ମନେମନେ ମରେ । ମୁହଁ ଫିଟେ ନାହିଁ, ଫିଟିଥାଏ ଖାଲି ଆଖି ଦି'ଟା । ଦେଖେଁ ଶ୍ୟାମ ରୂପ, ଚାହେଁ ସେଇ, ବିଷାଦଭରା, ରାଇ ଅଦର୍ଶନରେ ଶିରହୀନ ଶିଶିରମଖା ପଦ୍ମମୁଖଟି । ସେତେବେଳେ ପୁଣି ଥରେ ସବୁ ମୋର ଓଲଟପାଲଟ ହୋଇଯାଏ ।

ଶ୍ରୀମତୀ—ସଖି ରେ; ସବୁ କରିଥାଏଁ, ମନେ ମନେ ଦମ୍ଭ ଧରିଥାଏଁ । ଅଭିମାନ କରିଥାଏଁ । ବାକି ଦିନ ଦିନକର କଥା—ଦିନ ଦିନକର ଶ୍ୟାମ ସ୍ନେହ ଘଡ଼ିକେ ମତେ ସବୁ ପାଶୋରାଇ ଦିଏ—ମତେ ଭୁଲାଇ ଦିଏ । ଗୋଟି ଗୋଟି ସବୁ ମନେପଡ଼େ । ଜାତି, କୁଳ, ମାନ, ଅଭିମାନ, ସବୁ ଜଳିପୋଡ଼ିଯାଏ । ବୁଦ୍ଧି ବିବେକ ହଜିଯାଏ । ମତି, ଗତି, ସବୁ ପୁଣି ସେଇ ଶ୍ୟାମ—ସେଇ ସୁଠାମ—ସେଇ ଶିଖିଚୂଳ ଦେଖିବାକୁ ତରତର ହୋଇପଡ଼େ । (ଦୀର୍ଘଶ୍ୱାସସହ) ଯାଉ ସଖି, ସବୁକଥା ପଛରେ ପଡ଼ୁ—ଛାଡ଼ ସେସବୁ ।

( ଗୀତ )

ସଖିରେ ଶ୍ୟାମ ସୁଠାମ ମୁରାରି
ସଙ୍ଗ କରାଅ ତୁ—ସହିବି ଏ ସ୍ମର-ତାପୁଁ
ଥରେ କରି ପାରି ॥ ଧ୍ରୁବ ॥

ବିଶାଖା—ଛି, ଧନୀ, ସେକଥା ପୁଣି ମନରେ ଆଣନାହିଁ । ଭୁଲିଯାଅ ।

ଶ୍ରୀମତୀ—ଭୁଲିବି ? ଦିନଦିନକର କଥା ଶୁଣିବୁ ?

( ଗୀତ )

ଅନ୍ଧକାର ନିଶି ବିଜନ ନିକୁଞ୍ଜେ
ସଖି ବସିଛୁ ମୁଁ ପଥଚାହିଁ
ଚକିତ ନୟନ ସେ ରତିରସ-ଲାଳସ
ଚାହିଁ ହସେ ତ କହ୍ନାଇ ॥

ବିଶାଖା—ମୁଁ ସବୁ ଜାଣେ । ବାକି ମୋ କଥା ମାନ, ଏଇଥର ତୁମେ ଟିକଏ ଦମ୍ଭ ଧର । ମୁଁ ଯାଇ ଥରେ ଶ୍ୟାମ ସ୍ନେହ ପରଖି ନିଏଁ ।

ଶ୍ରୀମତୀ—ଲୋଡ଼ା ନାହିଁ ସଖି, ପରଖା-ପରଖି । ସେ ସେହି ଶ୍ୟାମ, ଆଉ ମୁଁ ଏଇ ଶ୍ରୀମତୀ । କହୁଥିଲି ପରା ତୋତେ—

( ଗୀତ )

ରାତିଟିରେ ମନ ମୋହିବ ନାଗର
ପ୍ରଥମ ସମାଗମ କାଳେ
ହାସରସେ ପୁଣି ଫେଇ ଜନ ଜଘନ
ଝିନ ବାସ କୁଞ୍ଜ-ରତି ଆଳେ ।
ନବଦଳ ଶେଯ ଶୁଆଇ ତା ଉରୁପର
ଅତିଶୟ ପ୍ରେମ ସରାଗେ,
ଅଧରେ ଘନଘନ ଚୁମ୍ବନ ଦାନେ
ମୋହିବ ମନ ଅନୁରାଗେ ॥

ଲଳିତା—ଛି ଛି, ଧନୀ ! ଏତେ ଅଧୀର ହେଲେ ଚଳିବଟି ? ଜଗିରଖି ସିନା ସବୁକଥା କଲେ ହୁଏ ! ମନେ କ'ଣ କରୁଛ, ଏ ସୁଯୋଗ ଆଉ ହେବ ନାହିଁ ?

ଶ୍ରୀମତୀ—ଭୁଲି ମନରେ ସେ ଆଶା ଆଉ କାହିଁକି ସଖି !

ଲଳିତା—ତେବେ ତୁମେ ଦେଖିନାହଁ ପରା ! ମୁଁ ସିନା କହୁଥିଲି ରାଇ, ତମ ମନ ବଢ଼ିବାକୁ । ଦେଖିଥିଲେ, ସେତେବେଳେ ଜାଣିଥାଆନ୍ତ ଧନ ! ଏସବୁ କାହିଁକି ହେଲା ।

ବିଶାଖା—କଅଣ ସଖି ?

ଲଳିତା—ତୋ'ର ହେଲେ ଆଖି ପଡ଼ୁନାହିଁ ? ଠାରିଦେଲି ପରା ତୋତେ ଦେଖିବାକୁ ! ତୁମେ ଦେଖିଛ ରାଇ, ଜାଣିଛ ଶ୍ୟାମର ସେତେବେଳେ କି ଅବସ୍ଥା ?

( ଶାର୍ଦ୍ଦୂଳ ବିକ୍ରୀଡ଼ିତ—ବୃତ୍ତ )

ହସ୍ତସ୍ଥାୟୀ-ବିଳାସ ବେଣୁ ଖସିଲା
ଭ୍ରୂବଲ୍ଲି ନାଚେ ରଙ୍ଗେ,
ନେତ୍ରାନ୍ତେ ବ୍ରଜଗୋପିଏ ନବଯୁବା
ରୂପେ ଅନାଏଁ ରଙ୍ଗେ
ସିକ୍ତ:ସ୍ୱେଦଜଳେ, ସୁଧାବଦନ ଗୋ,
କନ୍ଦର୍ପ ହାରେ ସଖି !
ଲାଜେ ହସି ତ ସେ, ନିରେଖି ଚକିତେ
ଝାଉଁଳିଲା ଶ୍ରୀମୁଖ ।

ବିଶାଖା—କି ଗୋ, ରାଈ, ଶୁଣିଲୁ ତ ?

ଶ୍ରୀମତୀ—ହେଉଥିବ, ମୋତେ କିଛି ବଶିନାହିଁ । ମନେମନେ ସେତେବେଳେ କେତେ କ'ଣ କଳ୍ପନା କରୁଥିଲି; ଆଖି-ଆଗର ବନଲତା ଫୁଲଫଳ, କୁଞ୍ଜବନର ଛବି କେତେ କଷ୍ଟ ଦେଉଛି—କହିବି କାହିଁକି ସହି !

ଲଳିତା—ଛି, ଛି, ଏ ଭାବନା ଛାଡ଼, ଉଠ—
( ଗୀତ ଗାଇ ଗାଇ ଶ୍ରୀମତୀଙ୍କୁ ଉଠାଇଲା )

ନବ ମହୁଆ-ସମୀରେ, ଥିବ କି ଉଆଁସ ରାତି ?
ବାଦଲ ବରଷାଘନ-ନିଶି କି ଥିବ ସଖିରେ । ୦ ।
ଯେବେ ଗୋ, ଫୁଟିବ ହସି
ନଭତଟେ ନବଶଶୀ
ଏଇ ସୁଧାଛଳ ଆଖି-ଭରିବ ମୋହାଗମାରେ
(ଶ୍ରୀମତୀଙ୍କୁ ନେଇ ଲଳିତା ଓ ବିଶାଖା ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

[ ବନପଥ—ଏକାକୀ ଶ୍ରୀକୃଷ୍ଣ—
ଶ୍ରୀମତୀଙ୍କର ବିରହରେ ଅଧୀର ସେ ]

(ଗୀତ)

କାହିଁ ପ୍ରୀତି, ତରଙ୍ଗିଣୀ
ରସରଙ୍ଗିମା, ଭ୍ରୂଭଙ୍ଗିମା-ପ୍ରାଣସଙ୍ଗିନୀ । ୦ ।
ତା' ହସେ ଫୁଲ ହସେ ବନ-ପବନ ବାସେ
ଗାଏ କୋଇଲି ଉଦାସେ
ବରବରମା ସରସିବନ ଦରହାସିମା ।୧।
ଝାଉଁଳିଥିବ ମୁଖ କୋଟି ଶଶୀମୟୂଖ
ଜାଣୁ ଯା' କଲି ବିମୁଖ
ଶଶୀରଜନୀ, ହେବ ସଜନୀ, ଝୁରୁଥିବନି । ୨।

( ମଧୁ ପ୍ରବେଶ )

ମଧୁ—ପାଠ ବୋଇଲା—ନିଜ ଅଜଣା କର୍ମମାନ; ଆଗେ ହୁଅଇ ସାବଧାନ—ମାଲ ତ କିଣିଛ, ଗଡ଼େଇବ ଆଉ କିଏ ? ବେଶ୍‌କରିଛ । ବସିଲାଠଉଁ ଛୁଙ୍କିଲା ଯାଏ—ସବୁ ତ ଆମକୁ ପଗୁରି କର, ଆଜି ଏଇ କଥାଟାକେଲକୁ ଥରେ ଆମକୁ ଭାଳିନେଲ ନାହିଁ ? "ଯେମିତି ଦିଅଁ କୁ ସେମିତି ପୂଜା—କାମୁଡ଼ା ଦିଅଁ କୁ ଲମ୍ବ ଆଳତି" । ତେମେ ଯେମିତି ତାଙ୍କୁ ଅନେଇଁ ନାହଁ ଟିକିଏ ! ସେ ତ ଅଭିମାନ କରି ନଥିଲେ; ମୁଁ ବୋଲନ୍ତି ସେ ଦି'କଉଡ଼ାର ନୁହନ୍ତି ବୋଲି ।

ଶ୍ରୀକୃଷ୍ଣ—ସଖା ! ଯାହା କହିବାର କହ—

( ଗୀତ )

ବୁଝିହିଁ ମୁଁ ରହକୌତୁକେ ଥିଲି ଗୋପିକାଗଣ ସାଥେ
କାରନାହିଁ ମୁଁ ଖାତିରେ ଅପରାଧ ଅର୍ଜିଲି ହାତେ

ମଧୁ—ହବ୍ୟ ହବ୍ୟ ! କାଶିଗଣ୍ଡି କରିଛ ବାବୁ
ଏବେ ପସ୍ତେଉଛ ଥା ।
ଲୁହ ଝରଉଥା, ଅଖି ଧୋଉଥା—ଗୁଣ ଗାଉଥା'।

ଶ୍ରୀକୃଷ୍ଣ— ( ଗୀତ )

ସେ କରେ ଜୟ, ସେ କହେ ଜୟ
ମୋ ହିନା ହରଷେ ସେ
ଛାର ଜୀବନ ଛାର ସମ୍ପଦ
ନାହିଁ ମୋ ସୁଖ ଲେଶେ ।
କୋପିମା ଭୂରୁ ବଙ୍କିମାଧର
ମୋ ମନେ ପୁଣି ଜାଗେ
ରଙ୍ଗପଦ୍ମରୁ ଅଙ୍ଗରେ ଅଳି ଚୁମ୍ବିଲା ସରି ଲାଗେ ।

ମଧୁ—ସଖା ! (ନେପଥ୍ୟକୁ ଚାହିଁ)
ଶ୍ରୀକୃଷ୍ଣ—(କଥା ନଶୁଣି)
ମଧୁ—(ପୁଣି ନେପଥ୍ୟକୁ ଠାରି) ଦେଖନା ସଖା ! ଦମ୍ଭ ଧରିଲେ ବିନା ହୁଏ, ଖାଲିତ ସବୁବେଳେ ଡରଡର ! କିଛି ଫଳ ଅଛି ଭଲ ଯା'ର । ଅନେଇଁଲ—ହେଉଛି । (ହାତ ଠାରିଦେଲେ ଏକ ଦିଗକୁ)
ଶ୍ରୀକୃଷ୍ଣ—(ଚମକି) କିଏ କନ୍ଦର୍ପ ! ଏଣିକି ଆସୁଛନ୍ତି, କାହିଁ କି ? ନାହିଁ ନାହିଁ ଦେବ !

( ଶ୍ଳୋକ )

ହସ୍ତେ ଚୂତର ଶାଣ ଶାୟକଧର
ଆତପତ୍ର ରୂପେ ଭୃଙ୍ଗ
ହାରେ ବଶ, ସଦା ପର, ଲଘୁଜନେ
ଘାତେ କିବା ପୌରୁଷ
ସେ ଏଣୀନୟନା କଟାକ୍ଷର ଶରେ
କନ୍ଦର୍ପର ତେ ସରେଁ ।
ପ୍ରାଣେ ସଦ୍ୟ ବଧେ, ଦୂରେ ପୁଣି ମନେ
ଅଦ୍ୟାପି କାନ୍ତା ଭିନା ।

ମଧୁ—(ଶ୍ରୀକୃଷ୍ଣଙ୍କ ଶ୍ଳୋକପାଠ ମଧ୍ୟରେ) ବା, ବା, ଦୁଧରୁ ଦହି, ସର; ଲହୁଣୀ,—ଏଇ ହୁଏ । ବାକି ପ୍ରୀତିରୁ ସେମିତି ଦହି ହୁଏ, ସର ପଡ଼େ···ଏକଥା ତ ଜଣା ନ ଥିଲା ମୋତେ । ମୁଁ କହୁଚି କଅଣ—ସେ ଦେଖୁଛନ୍ତି ଆଉ କଥାଏ । ଆହେ ସଖା ! ଅନାଅଁ ଦେଖ, ସେଠି ତମ କନ୍ଦର୍ପ ନାହାନ୍ତି । ଅନେଇଁଲ କିଏ । ଓ, ସେଇ ଦୂରରେ, ଏଣିକି ଆସୁଛନ୍ତି । ଦେଖ, ବୃନ୍ଦା ଲଳିତା ଦୁହେଁ । ଚାଲ, ମୁଁ ତମକୁ ଟିକିଏ ଅଣଆଡ଼ଆରେ ରଖେଇ ଦେଇ ତାଙ୍କ ପିଛା ଧରେଁ । ଦେଖେଁ, ସେ ଦୁହେଁ ଏଣେ କୁଆଡ଼େ ମାଡ଼ିଆସୁଛନ୍ତି ।
ଶ୍ରୀକୃଷ୍ଣ—ସଖା, ଶ୍ରୀମତୀଙ୍କର ସମ୍ବାଦ ଆଣୁଥିବେ ପରା । ଏଇଠି ଟିକିଏ ଅଟକାଇବା ତାଙ୍କୁ ।
ମଧୁ—(ରାଗି) ଅଟକେଇଲେ ଅଟକିଯିବେ ତୁମେ, ଆମକୁ ସେ ନେଭିଡ଼ାପଣିଆଁ ଜଣାନାହିଁ । ଯାଃ—
(ଦୂରକୁଗଲେ)

ଶ୍ରୀକୃଷ୍ଣ—(ଉଠି) ସଖା, ସଖା !
ମଧୁ—(ଫେରି) ଆସୁନାହିଁ, କଥା ତ ମାନିବ ନାହିଁ । ଆଉ ଖାଲି ସଖା, ସଖା, ଆସ । ଯାହା କହୁଛି-କର । ମୁଁ ବାଗ ଧରେଇଦେବି; ତେଣିକି ତୁମେ କଦମ ଚଲେଇଥା'—ଚାଲ ।

(ଯେନ ପ୍ରସ୍ଥାନ କଲେ)

(ବୃନ୍ଦା ଲଳିତା ଦୁହେଁ ପ୍ରବେଶ କଲେ)

ବୃନ୍ଦା—ତାଙ୍କ ଭେଟ ମିଳିଲେ ତ ଏତେବେଳେ । ଏକେ ତ ମନଟି ତାଙ୍କର ଭଲ ନାହିଁ । କୋଉଠି ଥିବେ, କି ଠିକଣା ତା'ର ?

ଲଳିତା—ସେଇଥିଲାଗି ପରା କହୁଚି, ତୁମେ ଯମୁନା କୂଳକୁ ଯାଅ; ମୁଁ ଥରେ ନିଭୃତ ନିକୁଞ୍ଜଟା ବୁଲି-କରି ଆସେଁ । କେଜାଣି, ଯଦି ସେଠି ଦେଖା ମିଳେ ।
ବୃନ୍ଦା—କଥାଟା ବଳପଡ଼ିଲା ବାକି ! କିଟୁକୁ ଦେଖିଛ ? ତାଙ୍କ ଭେଟ ମିଳିଲେ ହେଲେ କିଛି ଠିକଣା ଜଣା-ପଡ଼ନ୍ତା ପରା ।
ଲଳିତା—ସେ' ତ ପାଖେ ପାଖେ ଥିବେ । ତୁମେ ଯମୁନା କୂଳକୁ ଯାଅ । ଧୀର ସମୀର ଦେଖି ଆସିବ । ମୁଁ କୁଞ୍ଜ ବୁଲି ଶ୍ରୀମତୀଙ୍କ ପାଖକୁ ଫେରିଯିବି । ଯଦି ପାଏଁ ତ ଭଲ । ନୋହିଲେ ତୁମେ ବୁଝେଇଶୁଝେଇ ଖବର ନେଇ ଯିବ ।
ବୃନ୍ଦା—ହଉ, ଆସ—

(ଦୁହେଁ ପ୍ରସ୍ଥାନ)

ମଧୁ—ହାଁ, ଆମକୁ ଖୋଜା ! ଆମେ ନହେଲେ କାମ ନଚଳେ—ଆମେ କି ଠକରେଇ ନେଲୁ ହେ—

( ଗୀତ )

ବୁଝିଲି ବାହିଚି ପ୍ରେମର ପବନ
ଦକ୍ଷିଣରୁ ସୁଲୁସୁଲିଆ
ଲହରେ ଲହରେ ଫୁଲୁଛି ଝୁଲୁଛି,
ଫୁଲ ଦୁଇ ଗୁଲୁଗୁଲିଆ ॥

ଏ'ତ ଅଜାଣତ ବହେ ପବନ—
ଦୁଇ ଗୁଡକ ଛୁଇଁଛୁ ସମାନ,
ଠାର ଡାକେ ଘର କୁଞ୍ଜବନେ
ସଞ୍ଜ ହୋଇଗଲ ଆ ॥

(ନେପଥ୍ୟରୁ ଲଳତା ଫେରୁଥିଲେ । ତାଙ୍କୁ ଦେଖି ମଧୁ ପଛକୁ ଘୂଞ୍ଚି ଭୂନ ହୋଇ ଆଖିମୁଦ ଧ୍ୟାନ କଲପର ବସିରହିଲେ । ଅଳ୍ପକାଳପରେ ଲଳତା ଆସି ମଧୁଙ୍କୁ ତଦବସ୍ଥ ଦେଖି ହସି ହସି ଗୃହିଁ ଥାଆନ୍ତି । ମଧୁ ଛଳରେ ମନ୍ତ୍ରପାଠ କଲପର ଶ୍ଳୋକ ପଢ଼ିଲେ )

ଖଣ୍ଡାଖାଇ ଭୁ ଚଞ୍ଚଳା ଖରଖସା ଚଣ୍ଡୀ କୃପା ପୋଟଶ୍ୱ
ଭଣ୍ଡାଭଣ୍ଡି ସୁକୌଶଳୀ ରସବଶା କନ୍ଦାଇ ଆସେ ଭଲେ
ମଣ୍ଡା ଖୀର ସବୁ ଗିଳୀ କଳଭୁଣ୍ଡୀ ଚନ୍ଦ୍ର'ନମା ଆସ ଗୋ
ଗଣ୍ଡାଏ ପଦରେ ଜୁହାରଇ ସଦା ଧଣ୍ଡାପୁଲେ ସେବ ମୁଁ ।

ଲଳତା—ମଧୁ !

ମଧୁ—ଜଏ, ଜଏ, ଜଏ, ଜଏ, ଜଏ, ଜଏ ।

ଲଳତା—ମଧୁ !

ମଧୁ—ଦେବ, ଦୟା ଯମୁନା, ଏତେଦନେ ଦୟା ହେଲ ?

ଲଳତା—ହିଁ ଅଁ ।

ମଧୁ—କେତେ ନେତ୍ରଗ ହେଉଛୁ, କେତେ ଡାକଛୁ । ଏଇଥର ନଷ୍ଟେ ଦେଖାଦେଉଛ ତେବେ ?

ଲଳତା—ହିଁ ଅଁ,

ମଧୁ—ଗଛ, ଗଛ ନାହିଁ, ବନ, ବନ ନାହିଁ । କେତେ ଡାକଛୁ । ପଥର କାନକୁ ଏତେଦନେ ଶୁଭଲ ଚନ୍ଦ୍ରି ?

ଲଳତା—ହିଁ ଅଁ ।

ମଧୁ—ହଉ । ଜଏ, ଜଏ, ଜଏ, ଜଏ,

ଲଳତା—ଶ୍ରୀଆଖି ମେଲ ତରଟି ଅନାଅଁ, ଦର୍ଶନ ଦେବାକୁ ଆସିଛୁ ।

ମଧୁ—ତା' ତ ବୁଝୁଛୁ । ବାକ ଗୁନ୍ଅଁ କଥା କଛୁ ନାହିଁ ତ ?

ଲଳତା—ନା ।

ମଧୁ—ହଉ, ଜଏ, ଜଏ, ଜଏ, ଜଏ, ଜଏ, ଜଏ !
(ଆଖିମେଲ ଚୃହିଁଲେ) ଏଁ । ତମେ ତ ସେ ନୁହଁ ।

ଲଳତା—କାହାକୁ ଖୋଜୁଥିଲ କ ତୁମେ ?

ମଧୁ—ମୋ ଦେବତା, କାଠମୁଠୀ ଠାକୁରାଣୀଙ୍କି । ତମେ ତ ସେ ନୁହଁ ।

ଲଳତା—ତାଙ୍କ ଲଗି କେତେକାଳ ହେଲ ଏମିତ ତପ କରୁଛ ବସି ?

ମଧୁ—ନନାଙ୍କ ଜନ୍ମ ଅମଳରୁ ।

ଲଳତା—ବେଶ୍ ଯୋଗ୍ୟପୁତ ! ଆଉ ଏ ଶ୍ଳୋକ ?

ମଧୁ—ନନାଙ୍କ ଭଆର—ଘରୁଆନାମାଲ, ଏ କଣ ଆଉ କୋଉଠି ମିଳନ୍ତ କ ଭାବଛ ? ନନା ଜାଣନ୍ତି କ ମୁଁ ତାଙ୍କର ଏକଇର ବଳା ଗେଲବସର ବଣୀ-କେଶନ ବୋଲ, ମୁଁ ଜାଣେ ।

ଲଳତା—ଭଲ କଥା—ତମ ଶ୍ଳୋକରେ ସନ୍ତୁଷ୍ଟ ହୋଇ ଦେଖାଦେଲ ମୁଁ ।

ମଧୁ—ତେବେ ବର ଦଅ ଚଣ୍ଡୀ ।

ଲଳତା—ଏଠି ନଥାଏ, ସେ ଗଣ୍ଡିଲ ଗୁଡ଼ଆସିଛୁ । ମୋ ସାଙ୍ଗରେ ଆସ ।

ମଧୁ—ଯିବ ? ଦେବ ତ ?

ଲଳତା—ହଁଅଁ, ଏଥିରେ ଆଉ ଠୋପେ ମିଛ ଅଛୁ ?

ମଧୁ—ତା' ତ ସତ, ବାକ ମିଛ ହେଲେ, ବର ନଦେଲେ, ମୋର ଏ ବାରବରଷର ତପସ୍ୟା···

ଲଳତା—ହିଁ, ସେ କଥା କଅଣ ମୁଁ ଜାଣୁନାହିଁ ? ଆସ, ଉଠିଆସ ।

ମଧୁ—ଉଃ (ଉଠି ନପାରିବାପର) ଧର ଧର ଉଠାଅ ଟିକଏ । ତପରେ ତନୁ ଖୀନ୍ନ । ଆଉ କ ବଳ ଅଛୁ ନା ବପୁ ଅଛୁ ? (ହାତ ଟେକଲେ)

ଲଳତା—(ହାତ ଧର ଟାଣି) ବାଃ, ଓଜନ ତ ବେଶ୍ ।

ମଧୁ—(ଆଖି ମୁଦ) ହିଁ, କମିଛୁ କମିଛୁ ! ତପରେ ବସି ଭୋଜନ ବଢ଼ୁନେ କମିଛୁ କମିଛୁ, ଠାକୁରାଣୀ !

( ଧୀରେ ଧୀରେ ପ୍ରସ୍ଥାନ କଲେ ଲଳତାଙ୍କ ସହ )

---

## ଦ୍ୱିତୀୟ ଅଙ୍କ—ତୃତୀୟ ଦୃଶ୍ୟ

[ ଯମୁନାତଟରେ ବସିଥିଲେ ଶ୍ରୀକୃଷ୍ଣ ]

ଶ୍ରୀକୃଷ୍ଣ—(ଚମକ ପଡ଼ି) କିଏ ? ତୁମେ ଲତାମଣ୍ଡପରେ ?
କାହାର ଏ କରୁଣ ଗୀତବାଣୀ ? ଅଭିମାନିନୀ ।
ଅପରାଧ ଅପରାଧୀର; କିନ୍ତୁ କ୍ଷମା ପରା ସ୍ୱର୍ଗୀୟ ।
ତେବେ ?—ତେବେ ଏ କଅଣ କଲ ସଖି !

( ମାଳାବୃତ୍ତ ଛନ୍ଦ )

କାର୍ମୁକ ତୋ ତରଳ ଭ୍ରୂଲତିକା କି ସାଜେ
କନ୍ଦର୍ପ ଗୋ, ରଖିଛୁ ବାଣ ଅପାଙ୍ଗ ତ[illegible] ।
ଆକର୍ଷି ତୁମ୍ଭି ତ୍ରିଭୁବନ ଜଗତେ ହରାଏ
ଆୟୁଧ ବା ମମ ବିନାଶନ ଲାଗି କାହେଁ !

(କ୍ଷୁବ୍ଧ ମନେ ଉଠି ଆସୁ ଆସୁ ଚମକି) ଆରେ, କାହାର ମଧୁର ସ୍ପର୍ଶ ! ଶରୀରର ଅଣୁ-ପରମାଣୁ ତଡ଼ିତ-ବେଗରେ ନଚାଇ ପ୍ରାଣ ଚମକାଇ ଦେଲା ? ସେଇ ଶୀତଳ କରର ଚିକ୍କଣ ପରଶ ପରି, ଠିକ୍ ସେଇ କନକବରଣୀର ଚମ୍ପକ ଅଙ୍ଗୁଳିର ସୂକ୍ଷ୍ମ ଅଥଚ କ୍ଷଣିକ ସମ୍ପର୍କ ବାରିପାରିଲା ଏଇ ପୋଡ଼ା ପ୍ରାଣ ମୋର । ଅନ୍ଧ, ଅନ୍ଧ ନୟନ ଭୁଲ୍ କରିନାହିଁ ତ ? କୋଉଠି ତୁମେ ପ୍ରିୟେ ?

( ଶାର୍ଦ୍ଦୂଳ ବିକ୍ରୀଡିତ ଛନ୍ଦ )

ଅଙ୍ଗ ସ୍ପର୍ଶ ଲଭେଁ କିବା ତରଳ ସେ
ନେତ୍ରାନ୍ତ ଖେଳା ବିଶେ
ପ୍ରଫୁଲ୍ଲାମ୍ବୁଜ ବାସ ତୋ ମୁଖୁଁ ଝରେ
ବାଣୀ-ସୁଧା ଢାଳଇ ।
ସେ ବିମ୍ବାଧର ମଞ୍ଜୁଳେ ରଚଇ ଗୋ,
ଖେଳା ସଦା ମାନସେ
ଜ୍ୱାଳା ତୋ ବିରହେ କପାଁ ବଢ଼ଇ ରେ,
ବ୍ୟାଧି ସମେ ସର୍ବଦା ।

ଦୂର ଦିଗ୍‌ବଳୟରୁ ପକ୍ଷୀ ଗାଏ ନିରାଶାର କରୁଣ ସଙ୍ଗୀତ । ମଳୟ ପର୍ବତରୁ ବହିଆସେ ଅତି ବେଗରେ ଶୀତଳ, କିନ୍ତୁ କୁଟିଳ ଦକ୍ଷିଣା । କାହାରି ସରସତା ନାହିଁ ! କାହାରି ଯେପରି ପ୍ରାଣରେ ଆଉ ସତ୍ତ୍ୱ ନାହିଁ ! କେହି କହୁନାହିଁ କାହିଁ ଅଛି ସେ ? କାହାରି ହେଲେ ଜଣକର ଦୟା ହେଉନାହିଁ କହିବାକୁ—କପଟ ସେ ମୋର ?

(ଅଦୂର ଅନ୍ତରାଳରୁ ବୃନ୍ଦା ଗାଇଲେ )

ବୃନ୍ଦା— ( ଗୀତ )
ସେ ବିରହେ ତବ ଦୀନା (ମାଧବ ହେ)
କାତର ମନସିଜ ଶର ଡରି ମାଧବ—
ଭାବନରେ ଅତି କ୍ଷୀଣା ।

ଶ୍ରୀକୃଷ୍ଣ—କିଏ, କିଏ, ତୁମେ ଗାଅ ? କିଏ ତୁମେ ଦେଲ ମୋର ମନକଥାର ଉତ୍ତର ? କିଏ ମୋର ଏଡ଼େ ଉପକାରୀ ବନ୍ଧୁ ? କାହାର ଦୟା ହେଲା ଏତେ କାଳ ପରେ ?

ବୃନ୍ଦା—( ପ୍ରବେଶ ହୋଇ ) ଆଉ କେହି ନୁହେଁ ଶ୍ୟାମ, ମୁଁ ।

ଶ୍ରୀକୃଷ୍ଣ—ବୃନ୍ଦେ ? କେଡ଼େ ଦୟା ତମର, ମୋଠାରେ ?

ବୃନ୍ଦା—ରଖ, ଥାଉ ଶ୍ୟାମ ତମର ସେ ଚାଟୁ । ଜାଣେ ତୁମେ ସେଥିରେ ବେଶ୍ ପଟୁ । ବାଃ, ଭଲ କାମ କରିଛ ।

( ଗୀତ )

କି ଯଶ ଅରଜିଲ ସୁନ୍ଦର !
ସରଳା ଗୋପବାଳା ଜୀବନ ଯିବ ଏଥର ।
କପଟ ଯେବେ ଏତେ—ଥିଲା ଅନ୍ତରଗତେ
ଦେଲ କାହିଁକି ପ୍ରୀତି-ମନ୍ତର ?

ଶ୍ରୀକୃଷ୍ଣ—ବୃନ୍ଦେ, କଅଣ ନ ଜାଣ ତୁମେ ? ତଥାପି, ମୋତେ ଦୋଷ ଦେଉଛ ? କିଛି ସତ୍ୟ ! [illegible]ଙ୍କ ଅବସ୍ଥା କହି ଟିକିଏ ଧୈର୍ଯ୍ୟ ଦିଅ । ମାନିନୀ ମୋ ଉପରେ କୋପ କରି ନାହାନ୍ତି ତ ?

ବୃନ୍ଦା—ସରଳା କୋପ କରିବ କଅଣ ଶ୍ୟାମ ! ଉଲଟି ତାର ଜୀବନ ଯିବାଭଳି ।

( ଗୀତ )

ନିନ୍ଦଇ ଚନ୍ଦନ ଖେଦ ଦିଅଇ ପୁଣି
ଇନ୍ଦୁ କିରଣ ତ ସଖୀରେ
ସର୍ପ ଗରଳ ସର ତା'ରି ବହେ ଯନ୍ଦ
ମନ୍ଦ ଗନ୍ଧବହ ଧୀରେ ।

ଝନଗାଡ ଝରତ ତାଡ ଦେହରେ ପୂରି ରହିଛି ତାର ।

ବାଉଳୀ ପରି କହେ ସେ' ତୁମେ ତାର ମରମରେ ଲୁଚିବସିଛ । ବକ୍ଷରୁ ପଦ୍ମପତ୍ର କାଢ଼ି ଦେଲେ କହେ, "ତାଙ୍କୁ ବାଧିବ, ଥାଉ" । ବୁଝୁଛ କି କାହ୍ନୁ ? ତମର ଏ କପଟ ପ୍ରେମ ତାର ମରଣର ବାଟ କିପରି ଖୋଲି ରଖିଛି ?

(ଗୀତ)

ତା' ମରମେ ହାରି ରହିଅଛ ଗୁପ୍ତେ
ମାରଣରେ ଯଦି ବାଧେ
ବକ୍ଷ' କରିଛି ନଳିନୀଦଳ ଜଳ ସିକ୍ତି
ବକ୍ଷ ସେ ତ ଆଚ୍ଛାଦେ ।
ବଦନ-କମଳପର, ଝରଇ ନୟନଜଳ
ଜଳଧର ସମ ବରଷେ ଗୋ,
ରାହୁ ଦଳିତ କି ଶଶଧର ସୁନ୍ଦର
ଧାରସୁଧାର ବହେ ଗୋ ।
'ମାଧବ ହେ, ତବ ଚରଣ ସରୋଜେ
ନମି ନିଶିଦିନ ସେ ଧ୍ୟାଏ,
ତବ ବିମୁଖେ ପୁଣି ବୃନ୍ଦସୁଧାକର—
କିରଣ ସଖୀ ତନୁ ଦାହେ ।"

ଶ୍ରୀକୃଷ୍ଣ—ମୁଁ ତ ଜାଣି ଜାଣି କିଛି କରିନାହିଁ ବୃନ୍ଦେ, ଗୋପିମାନଙ୍କ ମେଳରେ ରାସକ୍ରୀଡ଼ା କରୁଥିଲି । ସେତିକିବେଳେ, ନେଳୀ ବଉଦ ଭିତରୁ ଚହଟ ବିଜୁଳିର ଚଞ୍ଚଳ ଛଟକ ପରି ସେ ରୂପ ଥରେମାତ୍ର ମୋ ଆଖି ଝଲସାଇ ଦେଇ ପଲକରେ କାହିଁ ଲୁଚିଗଲା । ତା'ପରେ ଚାରିଆଡ଼ ଅନ୍ଧାର ଦିଶିଲା । କର୍ତ୍ତବ୍ୟ ସ୍ଥିରକରି ପାରିଲି ନାହିଁ ।

ବୃନ୍ଦା—କିନ୍ତୁ ପରେ ପରେ ତ ସମ୍ବାଦ ନେଇଥିଲେ ସବୁ ଜାଣିପାରି ଥାଆନ୍ତ । ତେବେ ତ ଆଜି ଧନୀର ଏ ଦଶା ହୋଇ ନଥାନ୍ତା ।

ଶ୍ରୀକୃଷ୍ଣ—କାଳେ ଅଭିମାନିନୀ ହୋଇଥିବେ ମନେକରି ଭୟ କଲି ବୃନ୍ଦେ ! ତମକୁ ଦେଖି ଟିକିଏ ବଳ-ପାଇଲି ।

ବୃନ୍ଦା—ହୋଇଥିବ, ବାକି ତମକଥା ତ । ରାଧାଙ୍କର ତେଣେ କି ଅବସ୍ଥା ଜାଣ ?

(ଶାର୍ଦ୍ଦୂଳ ବିକ୍ରୀଡ଼ିତ ବୃତ୍ତ)

ଆବାସେ ବନବାସିନୀ ସମ ସଖୀ
ମାଳା ମଣେ ଜାଲ କି ବା
ଶ୍ୱାସେ ତାପ ବହେ, ଜଟିଳ ତନୁଲତା
ଦାବାନଳେ କି ବନେ ।
ଯାପେ ସେ ହରିଣୀସମା ଦିନ ନିଶା
ସନ୍ତାପିତା ସୁନ୍ଦରୀ
କନ୍ଦର୍ପେ ଯମ ସେ ନିରେଖଇ ସତେ
ଶାର୍ଦ୍ଦୂଳ କି ବା କ୍ରୀଡ଼ଇ ।

(ଏକ ଦିଗରୁ ଲଳିତା ହଠାତ୍ ପ୍ରବେଶ)

ଲଳିତା—ବୃନ୍ଦେ,—ତେଣେ ଶ୍ରୀମତୀ ତମକୁ ଖୋଜି ହେଉଛନ୍ତି । ଏତେବେଳେ ତାଙ୍କର କି ଅବସ୍ଥା ! ତୁମେ ଏଠି କଅଣ କରୁଛ ଭଲା ? ଆସ, ମୋ ସଙ୍ଗରେ ଆସ ।

(ହାତଧରି ଟାଣି ବାହାରିଯିବାକୁ ବସିଲେ)

ଶ୍ରୀକୃଷ୍ଣ—(ଲଳିତାଙ୍କୁ ଧରି) ଲଳିତେ ! ସବୁ ତ ଜାଣ ସଖି । ଧନୀ କି ମୋତେ କ୍ଷମା ଦେବେ ନାହିଁ ?

ଲଳିତା—କ୍ଷମା, ସେ କି କଥା ? କାହିଁକି ? ତୁମେ କି ଦୋଷ କରିଚ କି ?

ଶ୍ରୀକୃଷ୍ଣ—ଲଳିତେ—(ଚାହିଁ ରହିଲେ ବିବଶ ଦୃଷ୍ଟିରେ)

ଲଳିତା—ଚାହିଁବାର ତ କିଛି ନାହିଁ । ଅପରାଧ ତମର କଅଣ ? ଓଲଟା କଥା କହୁଚ ଯେ ! ଦୋଷ ସଖୀର ସିନା ! ଅଣବାଟରେ ଯାଇଛି ଯେ, ପଥ ହୁଡ଼ିଛି ସେ । ନୋହିଲେ ଆଜି ତାଙ୍କୁ ପଦ୍ମପତ୍ର ଗରମ ଲାଗୁନଥାନ୍ତା । ହଁସୂଳ ତୁଳିତଳପ ଦେହକୁ କଣ୍ଟା ହେଉ ନ ଥାନ୍ତା । ଯାଉ, ଗଲାଣି ସେସବୁ । ଆମକୁ ଆଜି ବାଟ ଓଗାଳ ନାହିଁ । ଆସ ବୃନ୍ଦେ ! ଉଚ୍ଛୁର କର ନାହିଁ ।

(ପୁଣି ବୃନ୍ଦାଙ୍କୁ ଟାଣିଲେ ଓ ଶ୍ରୀକୃଷ୍ଣ ପଥ ଓଗାଳି ରହିଲେ)

ଶ୍ରୀକୃଷ୍ଣ—ଲଳିତେ, ଦୟା କର । ଉପାୟ ବତାଇ ଦଅ । ମୁଁ ତ ନଜାଣି ଅପରାଧ ଅର୍ଜିଛି । କଅଣ କରିବି ଏତେବେଳେ ?

ଲଳିତା—ତା ତୁମେ ଭଲକରି ଜାଣ ।

ଶ୍ରୀକୃଷ୍ଣ—ମୁଁ ?

ଲଳିତା—ଆଉ କିଏ ? ତୁମେ ଜାଣିନା, ଆଉ କିଏ ଜାଣେ ? ତମର ଯୋଗୁ ତ ଏତେ ନାଟ ?

( ଗୀତ )

ରାଧିକା, ବିରହେ ତବ କେଶବ !
ଭାର ମଣଇ ପ୍ରକଟ ନବ ହାର
ଛାର ବଣଇ ତନୁ କୃଶ ଅତି ତାର —(ରାଧିକା)
ଦୃଷ୍ଟି ବିମଣ୍ଡିତ ଜଳକଣଜାଳେ
ସଞ୍ଚରି ନଳୀନ କି ଛିନ୍ନ ମୃଣାଳେ—(ରାଧିକା)
ପାଣି ନିବେଶିତ ଗୁରୁ କପୋଳେ
ସଞ୍ଜ ଘନେ ଥିର ଶଶଧର ଲୋଳେ—(ରାଧିକା)

ବୃନ୍ଦା—ଲଳିତେ, ୟାଙ୍କ ପାଖେ ଏସବୁ କଥା କହି ଲାଭ କଅଣ ଭଲା ? ଯାହାର ଯାହା ପ୍ରକୃତି, ସେ କି କେବେ ଛାଡ଼ିବ ?

( ଉପେନ୍ଦ୍ର ବଜ୍ରା ବୃତ୍ତେ)

ଲଳିତା—ସ୍ମରଭୁର ମୋ ସଜନୀଟି ବେଦ୍ୟ
ସୁଧାତୁଲେ ମୋହନ-ଅଙ୍ଗସଙ୍ଗ ।
ବିମୋଚନେ ସେ ଜ୍ୱର ତା'ର ବନ୍ଧୁ
ଉପେନ୍ଦ୍ର ବଜ୍ରୁଂ କି କଠୋର ତୁମ୍ଭେ ?

ବୃନ୍ଦା—(ହସି) ନାଇଁ, ଏ ପଦଗୋଟି ମାନିଲି । ନଟବର, ଗିରିଧାରୀ, ମନମୋହନ ଏମିତି ତ ଅନେକ ପଦ ଥିଲା କାହ୍ନୁ ! ଏଥର ଲଳିତା ଦେଲେ ଉପାଧି ଉପେନ୍ଦ୍ର-ବଜ୍ର ; ଅର୍ଥାତ୍ ଇନ୍ଦ୍ରଙ୍କ ବଜ୍ରବାଣ । ବଳ୍ପ ନାଁଟି । ଦୟା ମଧ୍ୟ ସେହିପରି ଠିକ୍ ।

ଲଳିତା—ଭଲ ସବୁ ! ବେଳ ଗଲା । ଉତ୍ତର ହେଉଛି ପରା ।

ଶ୍ରୀକୃଷ୍ଣ—ବୃନ୍ଦେ, ଲଳିତେ ! ସତ୍ତ୍ୱତ, ସହିବି ସବୁ । ବାକ, ମୋ ଲାଗି, ମୋକଥା, ପଦେ ଧର୍ମଙ୍କି କହିବ ।

ଲଳିତା—ହଁ, କହିବାରହେଲେ କହିବୁଁ । ଆସ ବୃନ୍ଦେ ।

( ଗମନୋଦ୍ୟତ )

କୃଷ୍ଣ—କହିବ ବନ୍ଧୁଙ୍କୁ—(ଲଳିତାର ହାତଧରି ଯାଜ୍ଞ-ଯାଉ)

( ଗୀତ )

(ସଖି) ମାଧବ ତବ ବିରହେ ଅତି ମ୍ଳାନ । ୦ ।
ବହଇ ମଳୟ ସଧୀରେ-ମଦନ ସହିତ ସାଥୀ
ଫୁଟଇ କୁସୁମ ନିକରେ ଦହଇ ବିରହି-ଚିତ୍ତ (ସଖି)
ଅଳି ସବ ଗୁଣୁ ଗୁଞ୍ଜେ କରି ଅରପଇ କାନେ
ମଦନ-ଜନିତ ବିରହେ ନଶିଟି କଟଇ ଧ୍ୟାନେ (ସଖି)
ଉରଇଁ ଶଶି-ମୟୂଖେ ମରଇ କି ଦହନେ ସେ
ବିଷମ ମଦନ ବଶିଖେ, ବିକଳଇ କହନେ ସେ (ସଖି)

(ଗାଇ ଗାଇ ପ୍ରସ୍ଥାନ)

---

## ଦ୍ୱିତୀୟ ଅଙ୍କ—ଚତୁର୍ଥ ଦୃଶ୍ୟ

[ ବନପଥ ]

(ମଧୁମଙ୍ଗଳ ଓ ଶ୍ରୀକୃଷ୍ଣ ପ୍ରବେଶ କଲେ)

ମଧୁ—କଓ, ଏତେ ତାଙ୍କ ଲଞ୍ଜରେ ହାତଦେଲେ ମୋଟା ହେବେ ନାହିଁ ସେ ? ଏତେ କଥା କହି ଲାଭ କଅଣ ଆମର ?

ଶ୍ରୀକୃଷ୍ଣ—କଅଣ ଆଉ କରିବି ସଖା ! ଭୁଲଟା ଯେତେବେଳେ ମୋ'ର ଆଉ ହେଇଚି, ଟିକିଏ ବୁଝାଇ-ଶୁଝାଇ ନ କହିଲେ ଚଳିବ କେମିତି ?

ମଧୁ—ଓଃ ହାତ ଧରି, ଓଠ ଧରି, ଗଲା ୟାକୁଇ ବୁଝେଇବା କହନ୍ତି ପରା ? ଆଃ, ମୁଁ ତ ତାକୁ ଏମିତି ମନ୍ତ୍ର ଦେଇଥିଲି ଯେ ସେ ଆପେ-ଆପେ ମୋହିମାତି ହେଇ ତମ ପା'ଚଳକୁ ଆସିବାଯାଏ ତର ସହନ୍ତା ନାହିଁ । ମୁଁ କଅଣ ସେପଟେ ଛପି ଛପି ସବୁ ଶୁଣୁ ନଥାଏଁ ? ମନ ହଉଥାଏ, ତମ ଗଉଡ଼ଆ ବୁଦ୍ଧି ଛଡ଼େଇ ଦଅନ୍ତି ପଦାକୁ ବାହାରଆସି ।

ଶ୍ରୀକୃଷ୍ଣ—ଆସିଲ୍ ନାହିଁ ?

ମଧୁ—ଆଃ, ରଖ ରଖ ବୁଦ୍ଧି ଗୁଡ଼ାକ ତମର । କହିଲେ, ଆସିଲି ନାହିଁ । କେମିତି ଆସିଥାନ୍ତି ? ଲଳିତା କଅଣ ସତରେ ବୃନ୍ଦାଙ୍କୁ ଡାକିବାକୁ ଆସିଥିଲା ?

ଶ୍ରୀକୃଷ୍ଣ—ଆଉ ?

ମଧୁ—ତମକୁ ବୋକା ବନେଇବାକୁ ଆଉ ତା କାମ ବାଗେଇ ନେବାକୁ ଆସିଥିଲା । କାମଟି କଲା, ଗଲା ।

ଶ୍ରୀକୃଷ୍ଣ—ସତେ ?

ମଧୁ—ଆଉ ? ବାଟରେ ତା ସଙ୍ଗେ ମୋର ଦେଖା ! କେଡ଼େ ବଡ଼େଇ କରି କଥା କହିଲା—ଯେମିତେ ମନେ କଲା ତୁମେ ଅଧୀର ହୋଇ କିଛି ଖବର ଦେଇଥିବ, ମୋଠୁଁ ସେ ଶୁଣିବ । ମୁଁ କି ଗଜଡ଼ ମୂର୍ଖ ହୋଇଛି ଯେ ତା ପାଲରେ ପଡ଼ନ୍ତି । ଏମିତି ସ୍ପଷ୍ଟ କଲି, ଯୋଉଥିରେ କି ସେ ଆପେ-ଆପେ ଏଠି ଧରାଦେବ । ତୁମର କଅଣ ସେଇତକ ବୁଦ୍ଧି ଅଛି ? ହବ କୋଉଠୁ ? ମୋ ପରି ଚାଣକ୍ୟ ଭଳି ବୁଦ୍ଧିମନ୍ତଙ୍କୁ ସେବିଲେ ସିନା, ବୁଦ୍ଧି ଟିକା ମେଳନ୍ତା । ଦେଖିଲ ଗୋଟେ ଖଞ୍ଜି ନଗେଇ, ନା କଅଣ ? ବିଚାର କର ।

( ଗୀତ )

ଯେମିତି କଥାକୁ ଏମିତି ଖଞ୍ଜି
କେମିତି ହବ କର ଭଲ
(କଓ) ଖୁସାମତ କଥାଁ କରିବା—
କଥାଁ ମିଛେ ଚନ୍ଦ୍ର'ପଡ଼ିବା
ଗଡ଼ବୁଲି କରି ସେଇ ଅଗଣାକୁ
ତମଣା ଆସିବ ଜଣାଗଲା ।୧।
ଇଏ କଥାଁ ଚାହ୍ନା ପଡ଼ନ୍ତେ
ସିଏ କଥାଁ ଗୋଡ଼ ଲମ୍ବାନ୍ତେ
ମାଢେ ମାନେ ନେଇ ବ'କୁଳ ଯାକୁ
ହେଟେଇ ହେଲେ ମୋ କାମ ଗଲା ।୨।
ତୁମେ କି ମନେ କର
ନାହିଁ ବୋଲି ବୁଦ୍ଧି ମୋର
ତତଲ ପଣିରେ ଘର ପୋଡ଼ଦେବ
ଗୃହିଁ ଥିବେ ଯେତେ ଜଳଜଳା ।୩।

( ଶ୍ରୀକୃଷ୍ଣଙ୍କୁ ନେଇ ପ୍ରସ୍ଥାନ )

---

## ଦ୍ୱିତୀୟ ଅଙ୍କ—ପଞ୍ଚମ ଦୃଶ୍ୟ

[ଶ୍ରୀମତୀ ବିରହ-ଶୟନରେ ଶାୟିତା ଲଳିତା, ବିଶାଖା ଓ ବୃନ୍ଦା ଇତ୍ୟାଦି ବସିଥିଲେ]

( ଗୀତ )

ଲଳିତା ଓ ବୃନ୍ଦା—
ରତିସୁଖସାରେ ଚଳି ଅଭିସାରେ,
ମନ୍ମଥ ମୋହନ ବେଶେ—
ଭେଟ ତୁ ଶ୍ୟାମକୁ ଗମନ ବିଳମ୍ବ ତୁ
ନକର ନିତମ୍ବିନି ଲେଶେ ।
ଧୀର ସମୀରେ ଯମୁନାତୀରେ,
ହରି ବିହରେ ତବ ଆଶେ ।୦।
ନାମ ଭୁଲେ ତବ ସଙ୍କେତଇ ସଖି ।
ବାଇ ମଧୁର ମୃଦୁ ବେଣୁ
ଭାଗ୍ୟମଣେ ଲଭି ସଙ୍ଗମ ସେ ତବ—
ତନୁ ପରଶ ପବନରେଣୁ ॥
ପତ୍ର ମର୍ମ୍ମରଇ ବିହଗ ଉଡ଼େ ଯଦି
ଚମକି ମଣେ ତୁ କି ଆସୁ
ସଚକିତ ନୟନେ ଶୟନ ରଚି ଯତନେ
ଶ୍ୟାମ ତୋ ପଥ ପିପାସୁ ॥

ଶ୍ରୀମତୀ—ସଖି, ସନ୍ଦେହ ବଡ଼ ବିଷମ । କପରି ଯିବି ସଖି ?

ବିଶାଖା—ସବୁବେଳେ ମିଛଟାରେ ସନ୍ଦେହ କରୁଛ ତୁମେ କାହିଁକି ଭଲା ? କପରି ଯିବ ? ମୁଁ କହେଇ ଦଉଛି—

ମୁଖର ଅଧୀର ତ ନୂପୁର ତେଜ ସଖି,
ଅରି ସରି କେଳିପଥେ ସେ
ଘନତିମିରବୃତ ନିଶା କୁଞ୍ଜେ ଚଳ
ନୀଳ ବସନ ପରିବେଶେ ।

ଶ୍ରୀମତୀ—ଛି, ମୁଁ କଅଣ ଏଇଆ ପଚାରିଲି ତମମାନଙ୍କୁ ?

ଲଳିତା—ପଚାର ପଚାର, ବିଶାଖା ଯାହା କହିଲା, କର
ଚାଲ, ନଅ ସଖି ! କେଶବଡ଼ାଇ କୁଞ୍ଜକୁ ବିଜେ
କରାଅ—ଏ ଆଉ ଭୁଷା ଛାଡ଼ ଶ୍ରୀମତୀ !

ବିଶାଖା—ଜଠ, ଆଉ କାହିଁକି ?

(ଗୀତ)

ସେ ଦିନା କହିବ ତୁହି ।
ଯେ ଶିଖଣ୍ଡଚୂଳ ନୟନ-କୁଳରେ
ଦିନେ ନୋହିଥିବ ଭୁଷି ରେ । ୦ ।
ତରଣିଜାତଟ ସରଣୀରେ ଭେଟ
ଯେ ରମଣୀ ହୋଇନାହିଁ
ମାଳ ବାଉବାଦ, ଦଳନ ବିଷାଦ
ଅଳପ ନଥିବ ଗୃହିଁ ରେ । ୧ ।
ବଦନଲୁଚିଆ, ରସବିନୋଦିଆ
ରସରେ ନଥିବ ଭସି
ଦୂରରୁ ଦୁର୍ଲ୍ଲଭ, ମୁରଳୀର ରବ,
ଶ୍ରବଣେ ନଥିଲେ ପଶି ରେ । ୨ ।

ବୃନ୍ଦା—କି ? ସତ କଥା ନୁହେଁ ଶ୍ରୀମତୀ ?

( ଗୀତ )

ହରି ଅନ୍ତ ମାଗି ପାଇବ ରଜନୀ
ଭୁଲିତ ସାଜ ସଜ ରାଧେ !
ରଖ ବଚନେ, ହରିବାଞ୍ଛା-ସଫଳା ତଳ
ମଠ ନ କର ତୁ ବାଧେ ।

ଶ୍ରୀମତୀ—ଯିବି ଯେ ସଖି···

ଲଳିତା—ଆଉ ଯେ-କଅଣ ସଖି ! ଅନ୍ତଟା କଅଣ ସୁନ୍ଦର ?

ବୃନ୍ଦା—ନାହିଁ ରାଧେ ! ତୁମେ ଦେଖିନାହଁ ।

( ଗୀତ )

ଘନ ଘନ ବହେ ଶ୍ୱାସ ,ଏଣେତେଣେ ଚାହିଁ
ଚମକ ରହେ ସେ ଦଣ୍ଡେ, ଆସଇ କି ରାଈ ରେ
ନବକଂଶୋରୀ,
ଚୋଲଗି ସରେ ଗିରିଧାରି ରେ
ରାଈ ଚତୁରୀ
ଧିଆନେ ହେଲା ଶ୍ୟାମ ସାରି ।

ଥରେ ଥରେ ଉଠେ ଲତା-ପତରରେ ଶେଜ
ଉଠି ଉଠି ଆସେ କୁଞ୍ଜପଥେ ଏଥୁଁ ହେଜ ରେ
ନବକିଶୋରୀ,
ତୋ ବିନା ସରେ ବନଗୃହ ରେ
ରାଈ ଚତୁରୀ
କୁସୁମ ହାର ହେଲା ଭାର ॥

ଲଳିତା—(ଶାର୍ଦ୍ଦୂଳବିକ୍ରୀଡ଼ିତ ଛନ୍ଦ)
ଚନ୍ଦ୍ରେ ଅସ୍ତନରେ ନରେଖ ସବିତା
ତୋ ମାନ-ଦୁଃଖେ ସଖି
କାନ୍ତେ ଶ୍ୟାମ ମନୋଭିଳାଷ ପୂର ବାଳ
ଅନ୍ଧାର ସାନ୍ଦେ ଭଜେ
ରାଧେ କୋକବଧୂସମେ କରୁଣ ମୋ
ଭାଷେ ଥରେ ଯେବ ତୁ
ରାଧେ ଗୋ, ଗମନେ ବିଳମ୍ବ କର ନା
ରାସେଶ୍ୱରୀ ସୁନ୍ଦରୀ ॥

ଶ୍ରୀମତୀ—କହୁଚୁ ଲଳିତା, ଯିବାକୁ । ବାକି, କେମିତି
ଯିବି ?

ବିଶାଖା—କାହିଁକି ? କେମିତି ଯିବ, ଏଇତକ
ବୁଝୁନାହଁ ? ମୁଁ କହେଇଦେଉଚି । ଯମୁନାତଟ ତ
ଦେଖିଥିବ ଦିନେହେଲେ । ଧୀରେ -ଧୀରେ ଏଇ
ଅନ୍ଧାରରେ ଯିବା । ବାଟରେ କହୁଚି ତମାଳଗଛ
ଥୁଇ । ତା'ର ତଳେ ମନ ହେଲେ, ଏକାବେଳେ ଯାଇ
ନପାରିଲେ, ଟିକିଏ ଟିକିଏ ଥକ୍କା ମାରି ମାରି
ଯିବା । ଏଇନେ ଦିନା ପଚାରୁଚୁ କେମିତି
ଯିବା ? ସେଇ ତମାଳଗଛଳିଆ ଅନ୍ଧାରଭିତରେ
ଥରେ ବଂଶୀ ଶୁଣିଲେ ବଳେବଳେ ପଦକୁ
ବାଟ ଦିଶିଯିବ ଯେ । ଆମେ ସବୁ ସେତେବେଳେ
କେତେ ପଛରେ ପଡ଼ିରହିବୁ, କେଜାଣି !

ଶ୍ରୀମତୀ—ପରିହାସ କରୁଚ ମୋତେ ସଖି ? ମୁଁ କଅଣ
ସେ କଥା କହୁଚି ? ମୁଁ ପଚାରୁଚି, ଯେବେ ପୁଣି ମୋ
ବଞ୍ଚନା କରନ୍ତି······

ବିଶାଖା—ଓଃ, ଏଇ କଥା ! ଭଲ ! । ତୁମେ, ଯେମିତି
ଦେଖୁଚି, ସତରେ ଏକା ଦୁର୍ବଳ ହୋଇପଡ଼ୁଚ !

ତୁମେ କୁଞ୍ଜରେ ରହିବ । ମୁଁ ଆଗରେ ଏଇନେ
ଯାଇ ସଙ୍କେତ ଦେଇ ତାଙ୍କୁ ନେଇଆସିବି । ସେ ର
କଥାଟି ମନକୁ ପାଇଲା ତ ? ଆଜ ତ ପ ।ସ
କରିବାର କଥା ଏଥିରେ କିଛି ନାହିଁ । କ '
ଲଳିତେ ! ଯାଉଛି ? (ଉଠିଲେ)

ଲଳିତା—ହଁ ଯା, ଭଲ କଥା, ଭୁଚ୍ଛାଟାରେ ସନ୍ଦେହ
କରୁଚ ସିନା ସଖି !

ବିଶାଖା—ଗଲ ତେବେ ? (ପ୍ରସ୍ଥାନ)

ବୃନ୍ଦା—ହଁଏ, ହଁଏ ସେମିତି । ତାକୁଇ ସ୍ନେହ କହନ୍ତି,
ପ୍ରେମ କହନ୍ତି । ଏଇ ସନ୍ଦେହଟିଇକ ହେଲା ପ୍ରେମର
ମୂଳ ।

ଲଳିତା—ଉଠ ଉଠ, ବହୁତ ଉତ୍ତର କଲ ତୁମେ
ମିଛଟାରେ ।

ଶ୍ରୀମତୀ—ଯିବା ତେବେ ? (କୁଣ୍ଠାପ୍ରକାଶ)

ଲଳିତା—ପୁଣି ସେଇ କଥା ?

( ଗୀତ )

କହିଲେ ବହିବୁ ବେଶ ରେ ସଙ୍ଗାତ,
କହିଲେ ବହିବୁ ବେଶ
ତୁହି ଯେବେବାକୁ ଅଛୁ କି ଆତୁର
'ନିକୁଞ୍ଜବିହାରୀ ଦୋଷ । ୦ ।
ଥରକୁ ଥର ପତ୍ରାବଳୀ ମକସି
ଲେଖୁ ବିନ ଅଣ୍ଟୁ ନାହିଁ ।
ଆଜ ଯେତେ ସେବା, ଆଳ ଅଜଣାରେ
ତୋତେ ଏକା ସାକ୍ଷୀ ତୁହି ।୧।
କି କରି ନାହାନ୍ତି ତୋର ନଉକରି
ଗୁଇପରି ପାଶେ ଥାଇ
ତୁ ସିନା ନିଷେଧ କଲୁ ସେ ଆସିଲେ,
ଲକ୍ଷା ଲେଖିବାର ପାଇଁ ।୨।
ଘଡ଼ିଏ ଗୁମ୍ଫୁ ହୋଇଲେ ଅନ୍ତର
ତୋ ପଦଚନ୍ଦ୍ରର ଧୂଳି—
କେ.ଳ ଦେଉଛନ୍ତି ଲୁହ ପୋଛୁ ପୋଛୁ
ବୃନ୍ଦାବନଯାକ ବୁଲି ।୩।
( ଶ୍ରୀମତୀଙ୍କୁ ଘେନ ପ୍ରସ୍ଥାନ )

---

## ଦ୍ୱିତୀୟ ଅଙ୍କ—ଷଷ୍ଠ ଦୃଶ୍ୟ

( ବନପଥ )

( ଗୀତ )

ବିଶାଖା— ମଧୁର ମଧୁର ମୁରଲୀ ବାଜେ
ସରମେ ସରମେ ପରଶ ସାଜେ ।
କୁସୁମ ଫୁଲେ—ପରାଗ ଝୁଲେ
ଲୁଚି କାନନ-ଧାରେ—କାନନ-ଧାରେ
ରସିଆ ବୁଲେ—ରସିଆ ବୁଲେ
ମରମେ ମରମେ ମରେ ଗୋ ଲାଜେ ।
(ଗାଇ ଗାଇ ଚାଲିଗଲେ)

—*—

## ଦ୍ୱିତୀୟ ଅଙ୍କ—ସପ୍ତମ ଦୃଶ୍ୟ

( ନଦୀକୂଳ )

ମଧୁ—(ଆସୁ-ଆସୁ ବୁଲାପଡ଼ି ପିଠି ଆଉଁଷି) ଆରେ,
କେହି ତ ନାହିଁ । ମାଡ଼ମାଡ଼ ଚଡ଼ାପରି ଲାଗୁଛି
କାହିଁକି ? କିଏ ପିଠା ଧରୁଛି କିରେ ? ନାଃ—
କେହି ନାହିଁ । (ପାହୁଣ୍ଡେ ଆଗକୁ ଗଲେ । ବିଶାଖା
ଅନ୍ତରାଳରୁ ବାହାରି ପୁଣି ଛପିଗଲେ ଓ ମଧୁ ପୁଣି
ପିଠି ପଛରେ ହାତ ମାରି ) କିଏ ? ଫେରି ତ
ସେମିତି ଲାଗୁଛି ! ପୁଣି କିଏ ମାଡ଼-ମାଡ଼ ବସିଲାପରି
ପିଠିଟା ଭାରି-ଭାରି ଜଣାପଡ଼ୁଛି । ଅଚ୍ଛା, ତମ
ଖଞ୍ଜିକୁ ଆମ ଚଞ୍ଚୁ ।

(ପଛକୁ ଯାଇ ଲୁଚିଗଲେ । ବିଶାଖା
ବାହାରକୁ ଆସି ଖୋଜିବାବେଳକୁ
ମଧୁ ଅନ୍ତରାଳକୁ ଚଲେଣି । )

ବିଶାଖା—ଆରେ, ଏଇଠି କୋଉଠି ଲୁଚିଗଲେ—
ଦିଶୁନାହିଁ ତ ! ଗଲେ କୁଆଡ଼େ ? ଭାରି ଚାଲାଖ ତ !
ଦେଖେଁ ।

(ଅନ୍ତରାଳକୁ ଗଲାବେଳକୁ ମଧୁ ବାହାରି-
ଆସି ବିଶାଖାଙ୍କ ପ୍ରବେଶବେଳକୁ ପୁଣି
ଅନ୍ତରାଳକୁ ଚାଲିଗଲେ ।

( ଗୀତ )

ବିଶାଖା—କୁଞ୍ଜ-କୋଣେ ଏଇ ସଞ୍ଜେ
କେ ଲୁଚିଛପି ଗୃହେଁ ?

ମଧୁ—ସୁଧାଭରା ଆଖିଟି ଗୋ ମନ କଥା କହେ, କିଏ ?

ବିଶାଖା—ଫଗୁ-ମେଘେ ନାଲି ରଙ୍ଗ ବରଷିସି ଯାଏ

ମଧୁ—(ଏଇ) ଲୁଚକାଳି ଖେଳ ଦେଖି ଲାଜ ପାଏ ।

ବିଶାଖା—ଚନ୍ଦ୍ରା ତ ପଡ଼ୁଛ ଏବେ—

ମଧୁ—ତୁମେ ଗୁଏଁ-ଗୁଏଁ, କିଏ ?

ଗୀତର ଶେଷପଦ "ତୁମେ ଗୁଏଁ-ଗୁଏଁ" କହି, ହୁଁ ମାର ମଧୁ ମୁଖ ଦେଖାଇଲେ । ବିଶାଖା ତାଙ୍କୁ ଠାର ଡାକଲେ । ମଧୁ ମଧ ତତ୍ପୁର ବାରଣ କଲେ ) ।

ବିଶାଖା—ଗୀତଟି ଗାଉଥିଲୁ କିଏ ? ତୁମେ ?

ମଧୁ—ତୁମେ ?

ବିଶାଖା—ନାଁ ।

ମଧୁ—ନାଁ ।

ବିଶାଖା—କୁଆଡ଼େ ଆସିଥିଲ ?

ମଧୁ—କୁଆଡ଼େ ଆସିଥିଲ ?

ବିଶାଖ—ତମର ଯାଏ

ମଧୁ—ତମର ଯାଏଁ ।

ବିଶାଖା—ବେଶ୍

ମଧୁ—ବେଶ୍ ।

ବିଶାଖା—ମୁଁ ଗୋଟାଏ କଥାପଚ୍ଚାରିବ କହିବ ନାଁ ?

ମଧୁ—ମୁଁ ଗୋଟିଏ କଥା ପଚ୍ଚାରିବ କହିବ ନାଁ ?

ବିଶାଖା—କହିବ ।

ମଧୁ—କହିବ ।

ବିଶାଖା—ସଖା ?

ମଧ—ସଖା ?

(ଶ୍ରୀକୃଷ୍ଣ ପ୍ରବେଶକରି)

ଶ୍ରୀକୃଷ୍ଣ—କଅଣ ସଖା ?

ମଧ—ଉଁଃ, ମାଟିଂ ଚକାର, ମାଟିଂ ଚକାର ।

ଶ୍ରୀକୃଷ୍ଣ—(ଚାଟକା ହୋଇ ଚ୍ଛିରହିଲେ) ।

ମଧୁ—(ସେହିପରି ଚ୍ଛିଁ) ଆଉ ହାଁଟାକରି ଅନେଇଁ ରହିଲ କଅଣ ? କହୁନା ?

ଶ୍ରୀକୃଷ୍ଣ—କଅଣ କହିବ ସଖା ?

ମଧୁ—ଆଉ ଉପରେ ପଡ଼ ହୁଁକୁ ହାଁ କଲ କାହିଁକି ? ଆମେ ତ ଆମର କଥାବର୍ତ୍ତା ହେଉଥିଲୁ ଯୋଡ଼ ଜମକରେ । ତୁମେ ଆସି ଆବୁଡ଼ାପଡ଼ିଲ କାହିଁକି ?

ଶ୍ରୀକୃଷ୍ଣ—ମୁଁ ଏବେ ଏତେ କଥା ଜାଣିଛୁ ? ମୁଁ ତମକୁ ଖୋଜୁଥିଲି, ଭାଗ୍ୟକୁ ତୁମେ ଡାକଲି ।

ବିଶାଖ—ସେ ଡାକନାହାନ୍ତି ଶ୍ୟାମ; ମୁଁ ଡାକଛୁ ।

ମଧୁ—ଉତ୍ତମ, ଆମେ ତେବେ ଆଉ ମଝିରେ କାହିଁକି ?

ବିଶାଖା—ନାଁ; ନାଁ, ତୁମେ ନ ଥିଲେ କି ଚଳିବ ?

ମଧୁ—ହଉ, ଉଦ୍ଧାହେଲୁଁ !

ବିଶାଖା—ବଡ଼ ବିପଦ ଶ୍ୟାମ ।

ଶ୍ରୀମଧ—କଅଣ ବିଶାଖେ ?

ବିଶାଖା—ବୃନ୍ଦା, ଲଳିତା ଅନେକ ପ୍ରକାର କହିଲେ, ସଖି ଟିକିଏ ହେଲେ ବୁଝୁନାହାଁନ୍ତି । ବିଶ୍ୱାସ କରୁ ନାହାନ୍ତି ।

ଶ୍ରୀକୃଷ୍ଣ—ଏ ପୁଣି କଅଣ ସଖା ?

ମଧୁ—ଆଚ୍ଛା ବିଶାଖେ ? ତୁମେ ବିଶ୍ୱାସ କରୁଛ ତ ?

ବିଶାଖା—ମୁଁ ? ମୁଁ ବିଶ୍ୱାସ କରିବ ନାହିଁ କାହିଁକି ? ମୁଁ ତ ଶ୍ରୀମଧ ନୁହେଁ ।

ମଧୁ—ଠିକ୍ ଠିକ୍ । ତା ନୁହଁ କି ତା ହେଇପାରିବ ନାହିଁ । ହେଇଥିଲେ ତ କେତେ ଗୋଡ଼ ଲମ୍ବାଉଥାଆନ୍ତି । ସେ ତ ନଆସ କଥା । ମୁଁ କହୁଛି, ଯେବେ ତୁମେ ବିଶ୍ୱାସ କରୁଛ, ତେବେ ଆଉ ତାଙ୍କର କଅଣ ବାକି ଥିବ ? ସେ କଥା ନୁହେଁ ସଖା ! ଆଉ ବାଉଳା ହୁଅ ନାହିଁ । ଏଇଟା ହେଲା ସଖୀଙ୍କର ଢଙ୍ଗ, ଫେର୍ ବାଟକୁ ଆସିବେ ହେ—

ଶ୍ରୀମଧ—ବିଶାଖେ, ସତ କହ—ସଖୀ କୋଉଠି ?

ବିଶାଖା—ସତ କହିବ ?

ମଧୁ—ତେବେ ମିଛରେ ମଧ୍ୟ ତମର ବେଉସା ଅଛି ପରା ? ଆଚ୍ଛା, ପାଣି ସେଥିରେ କେତେ ମିଶେ ?

ବିଶାଖା—କି ପାଣି ?

ମଧୁ—ହୁଁଃ, ଜାଣି ନ ଥିବ ସେମିତି ? ଦୁଦ୍ଧରେ ମିଶାଅ ନାହିଁ ? ସେମିତି ଏଥିରେ ......

ବିଶାଖା—ରଖ, ରଖ......

ମଧୁ—ହଉ, ରହିଲି ।

ଶ୍ରୀମତୀ—ସହି, କହିବ ନାହିଁ ?

ବିଶାଖା—କଅଣ କହିବ ଭଲି ? ଯାହା ଶୁଣିଲେ ତମର ଦୁଃଖ ହବ, ସେମିତି କଥା କହି ଲାଭ କଅଣ ?

ମଧୁ—ବିଶାଖେ, ଏଇଟା ଭଲି ତମର ସତ କଥା ଟି ?

ବିଶାଖା—ହିଁ ବନ୍ଧୁ, ସଖୀ ଏକାବେଳେ ବିମୁଖୀ । ଯେତେ ଯେ କହିଲେ ମାନିବାକୁ ନାହିଁ । କେମିତି କଅଣ କରିବାକୁ ହେବ, ବୁଝିବାକୁ ବୃନ୍ଦା ମୋତେ ପଠାଇଲେ ତମମାନଙ୍କ ପାଖକୁ ।

ଶ୍ରୀକୃଷ୍ଣ—ସଖି, ଥରେ ଭୁଲ୍ କରିଛି । ଜାଣି ଜାଣି ତ ନୁହେଁ । ଯହିଁ ତହିଁ ଥିଲେ ମଧୁ ମୁଁ ପରା ତାଙ୍କର ? ଫୁଲ-ଚନ୍ଦ୍ର, କାସ୍ପା-ଗୁପ୍ପା—ଅଲଗା ଅଲଗା ରହି-ପାରେ କି ସହି ?

ମଧୁ—ସହି, ଏଇ ବୁଝୁନା ? (ଶ୍ରୀକୃଷ୍ଣଙ୍କୁ ଓ ନିଜକୁ ଠାରି) ଅଲଗା ଅଲଗା କେବେ ଦେଖୁଛ ? ସବୁବେଳେ ଲଗା—(ଶ୍ରୀକୃଷ୍ଣଙ୍କ ପାଖକୁ ଲାଗି)

ଶ୍ରୀକୃଷ୍ଣ—ସହି, ଯାଅ ଥରେ ଆଉ । ପୁଣି ଟିକିଏ ତାଙ୍କୁ ମୋ ଲାଗି ବୁଝାଇ କହ ।

ମଧୁ—ଅଃ, ବୁଝାଇ କହ—କଅଣଟି କହିବେ ? ସେତିକି ହେଲେ ତମକୁ ପଇଟେ ? କଥାଟାକୁ କଅଣ ସଜେଇ ବାଗେଇ କହିପାରିବ ? ମୋତେ ତମର ଗୋଟେ କା' ଦିଅ, ଦେଖ, କେମିତି ମୁଁ ପାଳେଇ ଦେବି ।

ବିଶାଖା—କା' କଅଣ ହେ ବନ୍ଧୁ ?

ମଧୁ—ସେ କଥା ତମକୁ କି ଜଣା ? ବାଗୁଡ଼ି ଖେଳିବା-ବେଳେ ଜଣଙ୍କ ପାଇଁ ଜଣେ କା'—କଓ ସଖା ? ବୁଝୁଛ ତ । କଅଣ ମୁଁ ତମପାଇଁ, ତମର ହୋଇ, ତମରି କଥା—ଯାହା କହନ୍ତ—ଆଉ ସହି ଯାହା କହିବେ ଶ୍ରୀମତୀଙ୍କି ସବୁ ବୁଝାଇ କହିବି ? କା' ହେବି ?

ଶ୍ରୀମତୀ—ହେଲ ।

ମଧୁ—ହଉ ତେବେ, କହିଲି, ବାକି ଏଗୁଡ଼ିକ ମୋର କଥା ବୋଲି ତୁମେ ଯେମିତି ମନେନକର ବିଶାଖେ ! ମୁଁ କା'—ଏଁ ?

( ଗୀତ )

କଣି ପୁଣି ଗୁଣମଣୀ କଲ ତ ନିଗଣ
ଏ ଭାବ ଭାବନା ସିନା (ବନ୍ଧୁ) ଦେଉଛୁ ପରାଣ,
ସଖି, କହିବୁ ଧନୀକି
ପରିଜନ ନାଶ ହେଲେ କାହାକୁ(ବନ୍ଧୁ) ହାନି କି ?
ରସାଳସା ଆଶା ଧରି ରହିଛୁ ଏ ଜୀବ,
ଶମ୍ପାରୋଷ-ଅନୁକମ୍ପା ନପାଇଲେ ଯିବ
ସହି, କହିବୁ ଗୋଷ୍ଠିକି
ଦାସ ଦୋଷୀ ହେଲେ ଏତେ ସରିକି କରି କି ?

ଶ୍ରୀକୃଷ୍ଣ—(ବିଶାଖାଙ୍କ ହାତ ଧରି) ସହି ! ମୋ ଲାଗି, ମୋକଥା ସଖୀଙ୍କଠାରୁ ଶୁଣି ମଧୁ ନୀରବ ରହିଲ ତ !

ମଧୁ—(ବିଶାଖାଙ୍କ ମୁହଁକୁ ଚାହିଁ) ନାଃ— ମୁହଁ ତ ହସ ହସ ଦିଶୁଛି ! ଆଉରି କଅଣ ଅଛି ଏଥିରେ ପରା !

ବିଶାଖା—କଅଣ ଅଛି ?

ମଧୁ—ମୁଁ କି ଜାଣେ ?

( ଗୀତ )

ତୋ କଥା ତୋତେ ସିନା ଜଣା'ରେ, କେଳିପ୍ରବଣା !
ତମରି ହସତଳେ କାମ କଟୁରି ଖେଳେ
ବିଷଦିଆ ତା' ସାଣ ସିନା ରେ ।
ଜାଣି ଅଛ ତମେ, ଛନ୍ଦିବ ତମ ମନ
ବୃଷ୍ଟି ଯେ ଥିବ ଲୁହାଚଣା ରେ ।

ବିଶାଖା—ବନ୍ଧୁ, ଏ ପାଳିଆପାଳେଇ ଥାଉ । ଜାଣେ, ତୁମେ ସେ ପାଠ ମୁଖସ୍ଥ କରିଚ, ପିଲାଦିନୁ ।

ମଧୁ—ହିଁ, ତା ନୁହେ ଆଉ କଅଣ ? ସାଙ୍ଗ ହେଇ ତ ପଡ଼ୁଥିଲେଁ, ନନାଙ୍କଠୁଁ । ତୁମେ ହେଇଥିଲ

ବଡ଼ଗୃହ । ମନେ ପଡ଼ୁନାହିଁ ? ଏଇ କାଲିପରି କଥା ତ !

ବିଶାଖା—ବିରକ୍ତ କରଅ ନାହିଁ ।

ମଧୁ—ନାଇଁରେ ବନ୍ଧୁ ! ଏତେବେଳେ ପରା ତମ ହାତରେ କାମ ଅଛି । ହଉ, ମୋ କଥା ମୋଠି ଥାଉ ! ତୁମେ ସତ୍ୟ ! ସତଟି କହ ।

ବିଶାଖା—ଶ୍ୟାମ, ନିଜେ ଏତେ କଲବଲ ହେବାକୁ ଆଉ ଜଣକୁ ଏତେ କଲବଲ କରିବାକୁ ଯେବେ ଡର ଏତେସବୁ କର କାହିଁକି ?

ମଧୁ—ଯାହା କହିବାର କହୁନାହଁ ସତ୍ୟ ! ଏକାଥରେ । ଏମିତି ଢୋକେ ପିଇ—ଦଣ୍ଡେ ଖାଇ ବେଖାର କରୁଛ କାହିଁକି ଭଲା ?

ଶ୍ରୀକୃଷ୍ଣ—ବିଶାଖେ ! ତମ ଖେଳଟା ମୋର କାଳ—ଏ କଥା ଜାଣି ଜାଣି ସବୁ କହୁଚ କି ?

ବିଶାଖା—ଛି, ମତେ ମରଣ ହଉ । ଏ କଥା କାହିଁକି ଶ୍ୟାମ—ପରଖୁଥିଲି ସିନା ତମକୁ···

ମଧୁ—ସଖୀ ଦେଖିଲ, କଅଣ କହୁଥିଲି ମୁଁ ?

ବିଶାଖା— ( ଗୀତ )

ନାଥ ହରେ ! ଆକୁଳ ରାଧା ବାସଘରେ
ବିଳପୁ କରୁଛି ନବ ପଦ୍ମ ମୃଣାଳେ
ବଞ୍ଚିରହେ ମିଳନେ ତବ ଧ୍ୟାନେ ।
ପୁଚ୍ଛେ ସଖୀକି ଭୁହାଇ ଭୁହାଇ
ତବ ଅଭିସାର ବିଳମ୍ବ କପାଇଁ ?
ମେଘ କଳାତିମିରେ ପୁଣି ଗୃହେଁ
ଶ୍ୟାମ ଅବା ମଣି ଅଙ୍ଗ ମିଶାଏ ।
ଭଲ ବିଳମ୍ବ ତ ତେଜଇ ଲଜ୍ଜା
ସାଜ ବସେ ହସି ବାସକ ସଜ୍ଜା ।

ଶ୍ରୀକୃଷ୍ଣ—ସଖୀ,···

ମଧୁ—କଅଣ ଓଷଧ ? ଦଉଚ । ବିଶାଖେ ! ଛନ୍ଦଦଉଡ଼ି ଆଣିଛ ?

ବିଶାଖା—(ହସି) କାହିଁକି ?

ମଧୁ—କୋଇଲି ଲୋ, ଛନ୍ଦଣି ବନ୍ଦଣି ଭୁଜଦଣ୍ଡ କରି, ନେଇଗଲି ପ୍ରାଣକୁ—ଗୁଡ଼ିଚକ ଉଡ଼ନ୍ତ ପକ୍ଷୀ । ଆଉ ଆମକୁ ପଛକୁ ନକର କହୁଛି । ଚକେ ଗଲେ ବାର ହାତ ।

ବିଶାଖା—ମିଛ ନୁହେଁ ସେ କଥା ଯେ ।

ଶ୍ରୀକୃଷ୍ଣ—ଜଣାଇବ ସତ୍ୟ; ମୁଁ ଅପେକ୍ଷାରେ ଥିବ ।

ମଧୁ—ବାଃ, କୃତାର୍ଥ ! କୃତାର୍ଥ ହେଲେ ସଖୀ ଆମର । ଶୁଣୁଚ ତାଙ୍କ ଅବସ୍ଥା ? ତୁମେ ଆଉ ଯାଇପାରିବ ନାହିଁ ଯେ ସେ ଆସିବେ—ନା ?

ବିଶାଖା—ସଖୀଙ୍କର ଆମର ଆସିବାର ବଳ ନାହିଁ ଶ୍ୟାମ—ସଙ୍କେତ ଦିଅ ମୁଁ ଯାଏ; ବାକି ତୁମେ ଉଚ୍ଚୁର ନକରି ଯିବ ।

ମଧ—ଆଚ୍ଛା, ବିଜେ କର, ମୁଁ ଦଉଡ଼ି ବଳଦଉଚି । ତୁମେ ଯାଅ ଆଗରେ ।

ବିଶାଖା—ଭଲ, ଗଲି ମୁଁ ବନ୍ଧୁ ! ତମରି କଥାରେ ଦମ୍ଭ ରଖିବାକୁ ।

ମଧୁ—କାହିଁକି, ସଖୀଙ୍କ ଉପରେ ଟିକେ ଦମ୍ଭ ମାରୁ—

ବିଶାଖା—ନାଇଁ ନାଇଁ ।

ମଧୁ—ହଉ, ନହେଲେ ନାହିଁ । ତମରିମାନଙ୍କ କଥା ତ ରହୁଚି ଏ କାଳକୁ !

ଶ୍ରୀକୃଷ୍ଣ—( ଫୁଲହାର ଗଳାରୁ କାଢ଼ି ) ବିଶାଖେ ! କହିବ, ଶ୍ୟାମର ସବୁ ଅପରାଧ କ୍ଷମା କରି ଦୟା ରଖିଥିବେ । (ହାର ପ୍ରଦାନ)

ମଧୁ—ହିଁ, ହେ ! ସେଇଟା, ନ କହିବା ଆଗରୁ ହବ—ତୁମେ···(ଯିବାକୁ ଉଠିଲେ ହାତ ହଲାଇ)

ବିଶାଖା—ମୁଁ ଗଲି ତେବେ । (ଯିବାକୁ ଉଦ୍ୟତ)

ମଧୁ—ହଁ, ଡର ନାହିଁ ଆଉ; ବିଜେକର । ଗଲି ତେବେ—ଗଲି ତେବେ । କେତେ ନଠଉ ନଠଇ ପରୁଛୁଥାଅ ? ଥରକୁଥର ପଚାରିଲେ କଅଣ ସର-ଘନେଇ ହେଇ ପାପୁଡ଼ି ଉଆଁରି ହବ ?—ଯାଅ । କଅଣ ମନ ଛାଡ଼ୁନାହିଁ, ନାଁ ?

ବିଶାଖା (ମଧୁକୁ ତୀବ୍ର ଦୃଷ୍ଟି ଓ ମଧୁ ଚତୁର ପକରଣ—ମଧ୍ୟସ୍ଥଳରେ ଶ୍ରୀକୃଷ୍ଣ )

(ପଟକ୍ଷେପ)

---

## ତୃତୀୟ ଅଙ୍କ-ପ୍ରଥମ ଦୃଶ୍ୟ ।

( ମାଧବୀକୁଞ୍ଜ )

[ସମୟ ତୃତୀୟ ପ୍ରହର ରାତି । ଚନ୍ଦ୍ରନଶା—ବାସକ-ସଜ୍ଜା ସାଜ କୁଞ୍ଜ-ଭବନମଧ୍ୟରେ ଶ୍ରୀମତୀ ଓ ସଖୀଗଣ ଶ୍ୟାମଙ୍କର ପ୍ରତୀକ୍ଷା କରୁଥିଲେ]

ଶ୍ରୀମତୀ—ଛୁଃ, ଯେତେ କହିଲେ ତୁମେମାନେ ମଠ କରୁଥିବ ! ବେଳ କଅଣ ଦିଶୁ ନାହିଁ ତମମାନଙ୍କୁ ?

ଧନିଷ୍ଠା—ଦିଶୁଛି ଗୋ ଦିଶୁଛି । ଆଜ କଅଣ ସଜଡ଼ାରେ ବାକିଅଛି ଭଲ ? ଚନ୍ଦନଚକ ଘୋରି ଗୋଳି ରଖିଦେଇଛୁ ।

ଆଉ ଜଣେ—ମୁଁ କେଶର ମିଶେଇଦେଇ ସାରିଛି ମ !

ଶ୍ରୀମତୀ—ଫୁଲଶେଜ ?

ଧନିଷ୍ଠା—ସେ ଆଜ କେତେବେଳ ଇମିତ ଲଗିବ ଯେ ! (ଲଳିତା ଏ ସଜବାଜର ଉଜଣ୍ଡା ଦେଖି ହସୁଥିଲେ କୁଞ୍ଜ ବାହାରେ ଥାଇ, ହସି ହସି ଆସି ପଶିଲେ)

ଲଳିତା—ଦେଖି ଦେଖି, ଠିଆ ହେଲି ଟିକିଏ ।

ଶ୍ରୀମତୀ—କାହିଁକି ସହି ! କଅଣ ହେଲା ?

(ଠିଆହେଲେ)

ଲଳିତା—କିଛି ନାହିଁ, ଦେଖୁଥିଲି । ଆଜିର ବେଶ ଏକା ବେଶରେ ଯାଏ । କିଏ ବେଶ ବଢ଼େଇଚି ମ ? ଭାରି ପସନ୍ଦ ତା'ର ଏକା ।

ଶ୍ରୀମତୀ—ଯାଃ—(ଛଳ କୋପ ଓ ତାଡ଼ନା)

ଲଳିତା—କାହିଁକି ମ ? ଆଜ କିଏ ଆସିବ କି ? ଭାରି ସଜାସଜ ହେଉଛି କୁଞ୍ଜ ! ବଡ଼ ତରତର । କିଏ ସହି ? କିଏ ଆସିବ ସେ ?

ଶ୍ରୀମତୀ—ଉଁଃ ? ପ୍ରେମପଣ୍ଡିତିଏ କି ତୁ ?

ଲଳିତା—ନାଇଁମ, ମୁଁ ଜାଣି ନାହିଁ କିଛି । ତୁମେ କହନା ?

ଧନିଷ୍ଠ—କହିଦଉନା—ଏଇନେ ତ ଆମମାନଙ୍କୁ ସ୍ଥା ହେଇନାହିଁ, ତା'ହେଇନାହିଁବୋଲି ଧମକୋଉ ଥିଲି, କହୁନା ।

ଶ୍ରୀମତୀ—କଅଣ କହିବ ?

ଧନିଷ୍ଠା—ମୁ ଶିଖେଇଦେବି ?

ଶ୍ରୀମତୀ—ଧେତ୍ତୁ । (ଛଳ କୋପ)

ଲଳିତା—ତାଙ୍କୁ ଦୋଷ ଦିଅ ନାହିଁ । ଦୋଷ ମୋର,ମୁଁ ଭୁଲିଯାଇଥିଲି ଜାଣିନାଣି । ହଁ ହଁ, ମୋର କେତେ କାମ ବାକି ଅଛି । ମୁଁ ସାରେଁ ଆଗ । ମନେ ପଡ଼ିଲା ସହି ।

(ଗୀତ)

ଆସିବେ ପରା, କୁଞ୍ଜେ ମୁରଲୀଧରା । ଠ ।
ସାଜ ନାହିଁ ଶେଜ, ସୁମନ ଦଳରେ
ବାକିଅଛି ସହି ! ଗୁନ୍ଥା ବଉଳ
ଲଗି ବଢ଼ିଆ ତ ହାର୍ଗିଁ ନାହିଁ ସତେ
ଅଧା ରହିଛି ଗୋ, କେତକୀ ଝରା ।

ଶ୍ରୀମତୀ—ସବୁ କରିବ ଯେ ସହି ! ବାକି କାହାପାଇଁ ଭଲ ? କି ଠିକଣା ତାଙ୍କ କଥାରେ ଯେ ?

ଲଳିତା—କାହିଁକି ? ପଥକୁ କେହି ପାଶ୍ଚୋଟି ଯାଇଛି ?

ଶ୍ରୀମତୀ—ବିଶାଖା ତ କେତେବେଳୁଁ ଗଲାଣି, ଫେରିବାକୁ ନାହିଁ ।

ଲଳିତା – ଆସୁଥିବେ ।

ଶ୍ରୀମତୀ—ରାତି କେତେ ହେବ ? କୁଞ୍ଜ-ବାହାରକୁ ଯାଇ ଦେଖିଲ ସହି, ଚନ୍ଦ୍ର ଉଇଁଲେଣି କି ?

ଲଳିତା—ଯାଉଚି । (ବାହାରକୁ ଗଲେ)

ଶ୍ରୀମତୀ—ଧନିଷ୍ଠେ, କାନେଇଁଲ, ଦୂରରୁ ବଂଶୀ ଶୁଭେ କି ? —ଟିକିଏ ଧୀର ଲହରି ଖେଳିଲାପରି ?

ଧନିଷ୍ଠ—(କାନେଇଁ ବାହାରକୁ ଗଲେ । ଲଳିତା ଫେରିଆସିଲେ) ।

ଲଳିତା—ହଁ ସହି ।

ଶ୍ଳୋକ

ରଜେ ଶାଶାଙ୍କ କୁଳଟା-କୁଳ-ପାପରାଶୀ—
ସଂଜାତ-ଲାଞ୍ଛନ ଶିରି ବହି ବକ୍ଷ-ଦେଶେ ।
ହକ୍ ସୁନ୍ଦରୀ ବଦନ-ଚନ୍ଦନ-ବିନ୍ଦୁ ବା ସେ
ବୃନ୍ଦାବନାନ୍ତ-କନ୍ଦରେ କରରାଜ ତାଳ ॥]

ଶ୍ରୀମତୀ—ଆଜ ତିଥି ?।

ଲଳିତା—ନବମୀ ।

ଶ୍ରୀମତୀ—ନବମୀ ? ତେବେ ନଅ ଘଡ଼ିରୁ ବଳିପଡ଼ିଲାଣି ସିନା ରାତ୍ର ?

(ଧନିଷ୍ଠା ଫେରିଆସିଲେ)

ଧନିଷ୍ଠା—ନାଇଁ ତ ସଖି, ବଂଶୀର ସ୍ୱର-ଶବଦ ବି ନାହିଁ । କାହାରି ତ ଅଭାଗମ ଥିଲାପରି ଲାଗୁ ନାହିଁ ।

ଶ୍ରୀମତୀ—ଲଳିତା, ଦେଖିଲୁ ? ମୁଁ ଯାହା ସନ୍ଦେହ କରି ତୋତେ କହୁଥିଲି, ଫଳିଲା ନା ?

ଲଳିତା—କାହ୍ନଙ୍କ ବିଳମ୍ବ ହେଉଥିବ ଅବା ! ନୋହିଲେ ଆସୁଥିବେ ସେ ।

ଶ୍ରୀମତୀ—(ପଲଙ୍କଉପରେ ବସିପଡ଼ି ଦୀର୍ଘଶ୍ୱାସ ସହ) ହୁଁ··· ଆଉ ସଖି କି ଆଶା ?

( ଗୀତ )

କାଳ ତ ଅତୀତ ସଖି ଶ୍ୟାମଘନ ନାହିଁ ରେ
ଅମଳ ମମ ଯୌବନ ତ ବିଫଳ ପଥ ଚାହିଁ ରେ ॥
କେ ଶରଣ ମୋ ସଜନି, ଛଳ-ବଚନ ବାଇ ରେ ?
ଯା' ପଥ ଅନାଇଁ ନିଶୀ ଜାଗିଲି ମୁଁ କାନନେ
କାମଶର ବିନ୍ଧିଲେ ସେ ଶଠ ଅକାରଣେ ॥

ଧନିଷ୍ଠା—ନାହିଁ ସଖି, ସଙ୍କେତ ଦେଇଛନ୍ତି ସେ । ମଧୁମଙ୍ଗଳ ଯେମିତି ହେଉ ତାଙ୍କୁ ପଠେଇବେ । ବିଶାଖା ଫେରନ୍ତୁ ଆଗ ।

ରାଧା—ହଁ ସଖି, କାହ୍ନଙ୍କ ସେ ଆଶା କରୁଚୁ ତାଙ୍କଠାରେ ?

( ଗୀତ )

କାତର ସିନା ମୁଁ ସଖି ଦେଖି, ମଧୁ ଯାମିନୀ
ହରି-ରମଣ ଲଭଇ କେ ଭାଗ୍ୟବନ୍ତୀ କାମିନୀ
ଆଶାକରି ପିନ୍ଧିଲି ମୁଁ ବଳୟମଣି ଭୂଷଣ
ଆଭରଣ ଅଙ୍ଗର ତ ହରି ବିନେ ଦୂଷଣ ।

(ବିଶାଖା ଫେରିଆସିଲେ)

ଲଳିତା—ବିଶାଖେ ? ସମ୍ବାଦ କଅଣ ?

ବିଶାଖା—କାଇଁ, କୁଞ୍ଜକୁ ଆସିବା ତେଣିକି ଥାଉ, ଏ ଖଣ୍ଡ-ମଣ୍ଡଳରେ ତ ତାଙ୍କ ଦେଖା-ଦର୍ଶନ ନାହିଁ ।

ଶ୍ରୀ—ଆଉ କାହ୍ନଙ୍କ ସେ କଥା ପଚାରୁଛୁ ଲଳିତେ ? ମୁଁ କହୁ ନାହିଁ ।

( ଗୀତ )

ମଦନ-ସମର ଉପଯୁକ୍ତ ସୁବେଶା
ଝରଇ ସୁମନ ସେ ଶିଥିଳିତକେଶା
କେଉଁ ହରିଭୁଜରେ
ବିଳସଇ ମୋ'ଠାରୁଁ ବଳି ଗୁଣରେ ।
କୁନ୍ତଳ ଖେଳଇ ଶ୍ରୀମୁଖଚନ୍ଦ୍ରେ
ଚୁମ୍ବନଲୋଳ ନୟନ ମୁଦ ମନ୍ଦେ ।

ଲ—ଛି, ଛି, ଅକାରଣ ଏ ସବୁ ଭାବନା । ପୁଣି ଦେଖିବ ନାହିଁ । ଦଣ୍ଡେ ଘଡ଼ିଏ ମଠ ହବ ହେଲେ । ନୋହିଲେ ନଷ୍ଟେ ତମ ମନୋରଥ ପୂରିବ ସଖି ।

(ଗୀତ)

ବନ୍ଧୁ ଆସିବେ ରେ ସାଥି,
ମଧୁରାତି, ସୁଖେ ମାତି ।
ବନଫୁଲେ ଅଳି ଝୁଲେ,
ରସି ବୋଲେ, ଏବେ ଆସିବେ ।
ମନଫୁଲେ, ମତି ଭୁଲେ
ତାତେ ରାତି, ଦିନରାତି ॥

ଶ୍ରୀମତୀ—ସମସ୍ତେ ସେମିତି କହନ୍ତି ସଖି, ବାକି ମନ ମୋର ଏସବୁ ବୁଝୁନାହିଁ । ମୋତେ ଜଳଜଳ ଦିଶୁଛି ସଖି !

(ଗୀତ)

ପୁଲକିତ ମଦନେ, ରମଣୀ ବଦନେ,
ଚୁମ୍ବଇ ଶ୍ୟାମ ମୁଖେ
ମୃଗମଦ-ତିଳକେ ଲେଖେ ପୁଲକେ,
ଶଶୀସରି ଚନ୍ଦ୍ରମୁଖେ
ଯମୁନା-ପୁଳିନେ, ରସିକ ବନେ,
ବିହରେ ସୁଖେ ତ ସଖି ରେ ।
ମନ୍ମଥ ମୃଗବନ--ସମ ଚିକୁର ବନ—
କୁରୁବକ-ସୁମନେ ଦିଏ
ପ୍ରଶଂସେ ଘନ ଘନ ପ୍ରସନ୍ନ ମୋହନ,
ନବଘନ ଚପଳା କି ଏ ?

ପରବଞ୍ଚକବର, ହଳଧର ସୋଦର
ତୋଷଇ ଶତକାମିନୀ
ଏକଲେ ବରଷେ ବନେ ମୁଁ ନରସେ,
ଯାପଇ ସତ୍ୟ ଯାମିନୀ ।

ବିଶାଖା—ନାହିଁ ଗୋ ଧନ, ଏସବୁ ମୋ'ର ଦୋଷରୁ । ବିଶ୍ୱାସ ନ କର, ଯେବେ ସଞ୍ଜରୁ ତାଙ୍କୁ ଜଗିବସି ବାଟମଣେଇଁ ଆଣିଥାନ୍ତି, ସହ୍ୟ ମୋର ଏ କଷଣ ସହନ୍ତା କାହିଁକି ? ସଖି ! ଅପରାଧିନୀ ଏଥିରେ ବିଶାଖା ।

ଲଳିତା—ନାହିଁ ତ, ତମର ଦୋଷ ଏଥିରେ କଅଣ ? ସବୁତ କହିଲେ, ସଙ୍କେତ ଦେଲେ, ଆଉ ଅବିଶ୍ୱାସ କରିବାର ଭଲ କଅଣ ଥିଲା ସେଥିରେ

ଶ୍ରୀମତୀ—କାହାର ଦୋଷ ନୁହେଁ ସତ୍ୟ, ଯେ ଯାହା—ସେ ତାହା—

(ଗୀତ)

ମୋହନ ଖଣ୍ଡ ତୋହ୍ଲା ପଡ଼ିଲା ମା !
ଅପାର ରଜନୀ ହେଲା ରେ ସଜନୀ,
ପ୍ରାଚୀ-ବଧୂଙ୍କୁ ବଧୂ ଚୁମ୍ବିଲା ମା ।୧।
କ ଯୋଗରେ ଆଜ ସାଜଥିଲା ଶେଯ
କାନନ-ମଲ୍ଲି-ଦଶା ଘଟିଲା ମା । ୨ ।
ତେ ଲ ଦେ' ଗୋ ତଲ୍ପ ପୂରିଲା ସଙ୍କଳ୍ପ
ନକୁଞ୍ଜ ଭାଗ୍ୟ ଦେଖି ଅଣ୍ଟିଲା ମା । ୩ ।

ବିଶାଖା—ସତ କଥା ସହି, ଆମେ ସିନା ଏତେ ସବୁ ଭାବୁଛେଁ, ବାକ ଯେ ତାଙ୍କୁ ପାଇ ଏ ଧରାକୁ ସର୍ଗ ମଣୁଥିବ ତା'ର ଭାଗ୍ୟ କଅଣ ନୁହେଁ ?

ଲଳିତା—ତା' କଥା କାହିଁକି ମନ୍ଦ ପଡ଼ୁର ?

ଗୀତ

ପବନ ଚଳନ ମଳ କମଳ ନୟନେ
ଲଭି କ ଉଁର ନବଦଳ ଶୟନେ ଗୋ,
ସଖି ଯା ଭୁଲ ସେ ବନମାଳୀ ଗୋ

ବିଶାଖା—ଲଭି ହରି ସଜ ସରସିଜ-ବଦନେ ଗୋ
ସରିବ କ ସେ ମନସିଜ-କଦନେ ଗୋ ?

ଶ୍ରୀମତୀ—ସଜଳ ଜଳଦ-ବର ରୁଚି ହରି ସଙ୍ଗେ
ବିରହ ସତେ ସଖି ଦହିବ କ ଅଙ୍ଗେ ?

ଲଳିତା—(ଦୂରରୁ କ ଧ୍ୱନି ଶୁଣି) ଭୁନନ୍ତୁଅ, ଭୁନନ୍ତୁଅ । ସତ୍ୟ ଗଲା ଚଳଘଳୁ ଗଲା । ବଂଶୀ ଶୁଭିଲାଣି, ଆସୁଛନ୍ତି ବୋଧ ହୁଏ···

ଶ୍ରୀମତୀ—(କାନେଇଁ ଆସନ୍ତୁ, ନ ଆସନ୍ତୁ; ଆଉ ମୋର କ'ଣ ଥାଏ । ମୁଁ ତାଙ୍କୁ କଥା କହିବ ନାହିଁ । କୁଞ୍ଜରୁ ତାଙ୍କୁ ଅନ୍ତର କରିଦେବ ସଖି !

[ଶ୍ରୀମତୀ ଓ ସଖିମାନେ ବସି ନାନା କାର୍ଯ୍ୟବ୍ୟସ୍ତ ଥିବାପରି ଅନ୍ୟମନସ୍କ ଭାବ ପ୍ରଦର୍ଶନ]

[ଶ୍ରୀକୃଷ୍ଣ ପ୍ରବେଶ କଲେ । କେହି ତାଙ୍କୁ କିଛି ପଚାରିଲା ନାହିଁ । ଯେପରି ସମସ୍ତ କୁଞ୍ଜ ତାଙ୍କପ୍ରତି ବିମୁଖ । ଶ୍ରୀକୃଷ୍ଣ ଏହି ଭାବ ଲକ୍ଷ କରି କିଛିକାଳପରେ ଲଳିତାଙ୍କୁ କୁଞ୍ଜଦ୍ୱାରରେ ଥାଇ କହିଲେ ]

ଶ୍ରୀକୃଷ୍ଣ—ଲଳିତେ, ମୁଁ ଆସିବାର ଟିକିଏ ଧନୀଙ୍କ ଛାମୁରେ ଜଣାକର ସହି ।

ଲଳିତା—(ନୀରବ)

ଶ୍ରୀକୃଷ୍ଣ—ଲଳିତେ !

ଲଳିତା—(କୋପରେ) କାହିଁକି

ଶ୍ରୀକୃଷ୍ଣ—ଧନୀ ଛାମୁରେ ଜଣାଅ ସହି ଥରେ !

ଲଳିତା—ନାଁ, ଆଦେଶ ନାହିଁ । ଲୋଡ଼ାନାହିଁ, ଯାଅ···

ଶ୍ରୀକୃଷ୍ଣ—ସହି···

ବିଶାଖା—ନାଁ—

ଲଳିତା ଓ ବିଶାଖା—

ଗୀତ

ଯା, ଯା, ମାଧବ ମୋହନ ଯା' ଛଳବାଣୀ
ଭାଷୁଛ କି ଆଉ ଶେ ?
ଯା' ଭୁଲରେ ହରି ରାତ୍ର ବୁହାଇଲ ଯା' ସେ ସୁନ୍ଦରୀ ପାଶେ
ତେଣ୍ଡ ରାତ୍ର ତବ ନୟନ କଷାୟିତ
ଗୁରୁ ଜାଗଇ ପରକାଶେ,
ଦର ମୁକୁଳିତ ସେ କେ ରମଣୀ ପ୍ରତି
ତବ ଅନୁରାଗ ବିକାଶେ ।

ଅନ୍ୟସଖୀଗଣ—

ଅରୁଣ ଅଧର କି ମନୋହର ସାଜେ
ତବ ତନୁ ବରଣ ଫୁଟାଏ,
କଜ୍ଜ୍ୱଳ-ମଳିନ-ନୟନ ଘନ-ଚୁମ୍ବନ—
ପ୍ରକଟ ପ୍ରଭା ଉଲୁଟାଏ
ମିଳ ଅଙ୍ଗରେ ଶ୍ୟାମ ତ ଶୋଭେ
କାମ-ସମର-ନଖ-ରେଖା
ସୁବର୍ଣ୍ଣ ରସରେ ମରକତ ଖଣ୍ଡେ
ରାଜଇ ରତିଜୟ ଲେଖା ।

ଲଳିତା ଓ ବିଶାଖା—

ଉରପର ନାଗର-ପାଦ ଅଲକ୍ତକ
ରାଗ ମନୋହର ରାଜେ,
ମଦନ-ପାଦପର ନବକିଶଳୟ ବା
ରକ୍ତ ବରନ ଭଲି ସାଜେ ।

ଶ୍ରୀମତୀ—ଅଙ୍ଗ ବରନ ବଳ ମଳିନ ହୃଦୟ ତବ
ଆସଇ ମନକୁ ତ ରଙ୍ଗେ
କାରଣ କିସ ପରବଞ୍ଚନ କର
ମଦନେ ବିଧୁରା ମମ ସଙ୍ଗେ ?

ଶ୍ରୀକୃଷ୍ଣ—ରାଇ !

ବିଶାଖା— ( ଗୀତ )

ନାହିଁ କହଦେ'ରେ କାହିଁକି ଏ ଉପରୋଧ
ବାହ୍ୟମାପରାଏ ଲୁହ ବହୁଅଛୁ
ଆତୁର ପୀରତି ସଧ ?
କାଳକଯା'କ କେ ଗଞ୍ଜି ହେଉଥିବ
ଏ ଅସଲଟ କଥାରେ,
ମୂଳଠାରୁ ଚୂନଯାଏ ଲବ ସତ
ନ ଥିବ ସାହା ଦେହରେ । ୧ ।
ଅଳି ଚିରମଲ୍ଲ ଠାକୁ କ ନଯିବ
ନଳୀନ କୋଳରେ ଥିଲେ
ଧୂଳିବୋଳ ନ ହୋଇବ କ ବାରଣ
ଶତବାର ରାଧୋଇଲେ ? ୨ ।
ଏତେ ବନପର ପୀରତି ବହୁଳା
ମୁହଁ ଶୁଖାନା ଲୁ ଆଉ
ମଥାରେ ପଣତ ପକାଇ ସେ ଶ୍ୟାମ
ତ ହ ପଥରେ ସେ ଯାଉ ॥

ଶ୍ରୀମତୀ—ବିଶାଖେ, ମୁଁ ସବୁ ଜାଣିଛୁ । କୁଞ୍ଜରୁ ତାଙ୍କୁ ବାହାରିଯିବାକୁ କହ ।

ଶ୍ରୀକୃଷ୍ଣ—ଥରେ ମୋ କଥା ଶୁଣ ରାଇ !

ବିଶାଖା—ଶୁଣିଛୁଁ । ନୂଆ କର ମୁହଁଟୁଁ ମୁଖସ୍ଥ କରି ଆସିଥିବ; ସେଇତକ ତ ଗାଳଢୋଳିବ, ଏଇ ତ ? ଅନେକ ଶୁଣାଅଛୁ । ଚାଲ—କୁଞ୍ଜ ଖୋଲେକର । ପୂଜ୍ୟବଦଗକୁ ଟିକିଏ ଅନାଅ ।

ଲଳିତା—(ଶ୍ରୀମତୀଙ୍କ ପ୍ରତି) ଉଠ ସହି, ଆମର ଘରକୁ ଯିବା । ରାତି ପାହିଆସିଲାଣି ସେ……
(ଆସନ ତ୍ୟାଗ)

ବିଶାଖା—(ଶ୍ରୀକୃଷ୍ଣଙ୍କ ପ୍ରତି) ଚାଲ । ଯାଅ ଶ୍ୟାମ,—ମୁଁ ତମକୁ ବିଦାୟ ଦେଲେ ବଞ୍ଚେଁ ।

( ଧୀରେ ଶ୍ରୀକୃଷ୍ଣଙ୍କ ପ୍ରସ୍ଥାନ )
(ଶ୍ରୀମତୀ ଚାହିଁରହିଥିଲେ—ଦୃଷ୍ଟି ବିନମୟ)

---

## ତୃତୀୟ ଅଙ୍କ—ଦ୍ୱିତୀୟ ଦୃଶ୍ୟ

[ ପଥ ]

(ମଧୁ ପ୍ରବେଶ)

( ଗୀତ )

**ବସନ୍ତ ଆସେ ସତ ମୋ ମନ କାହିଁକ ମରେ ?
କୁସୁମ-କୁଞ୍ଜ ଦଳ ଶିଶିର କାହିଁକ ଝରେ ।
ଉଜାଣି ବହେ ବାଆ ଶୀତରେ ଦେହଟା ଥରେ
ଅଜଣା ଡରରେ ମୁଁ ଛନକ କାହିଁକ ସରେ ?
ଗୁଣୁ ଗାଏନା ଅଳି ପାଖୁଡ଼ା ପରଶ ଛୁଟେରେ
ମରମଫଟା ସ୍ୱରେ କାନନ କାହିଁକ ଭରେ ?
(ଗୀତଟି ଗାଇ ଗାଇ ଏକଦିଗରେ ପ୍ରସ୍ଥାନ)**

**ସୁଦାମ—(ଆସି ଖୋଜ) ମଲ, ଏଇନେ ତ ଏଇଠି ଥିଲା—କଅଣ ପକ୍ଷୀ ଜଙ୍ଗଲକ ପ୍ୟାର ? ଆଛା-**

କଥା ତ !—ସେ ତେଣେ କୁଆଡ଼େ ମୁହଁ ଶୁଖେଇ ନାଆ ମେଲିଛନ୍ତି, ଏ ଏଣେ କୁଆଡ଼େ ଗୁନିଆରେ ମାଡ଼ିଚାଲିଛନ୍ତି ? ମଲ ମନିଷ ଏବେ ! ଖାସା ବେମାରି—ଶରଦ କି ଗରମ କିଛି ତ ଠଉରେଇ ପାରିଲି ନାହିଁ । (ମଧୁକୁ ଲକ୍ଷ୍ୟ କରି) ମଧୁ-ଆଇନା ! ହେ ମଧୁଆଇନା !

ମଧୁ—(ଫେରି ବିରକ୍ତ ହୋଇ) ଯା, ଯା, କେମିତି ସତେ ଅମଙ୍ଗୁଳିଆଟାଏ ! ପଛରୁ ମନିଷକୁ ହୁରି ପକେଇଚ ମଧୁଆଇନା, ମଧୁଆଇନା—ଆଃ ! ମାଆ ପେଟରୁ ଜନ୍ମକଲା ଭାଇ ଆମର ଡାକିଲେ ? ଏଁ ?

ସୁଦାମ—ଆହେ; ତାହାହେଲେ ତ ତମର ଭଇରି ହେଇଥା’ନ୍ତି । ମୁଁ ପର ଭଗାରି ନୁହେଁ, ମିତ ତମର ।

ମଧ—ଯାଃ, କଅଣ କହୁଥା…ନ୍ତି ଫେର୍ ୍ସେ, କାହିଁକି ? କଅଣ ?

ସୁଦାମ—ଆସ, ଦେଖିବ ଚାଲ—କଅଣ ? ମଗଜ ଗରମ କରନାହିଁ । ଏଣିକି ଆସି ଦେଖ । (ଏକ ଦିଗକୁ ନେଇ ଦୂରକୁ ଠାରି ଦେଖାଇଲେ) ଦେଖିଲ ? ଚିହ୍ନି ଚଚ ଏ କିଏ ? କଥାନାହିଁ, ବାର୍ତ୍ତା ନାହିଁ କେମିତି ଅବସ୍ଥା ତାଙ୍କର ?

ମଧୁ—ଜାଣେ ପରି, ସକାଳୁ ମନଟା ମୋର ଗୋଳେଇ ଘୋଳେଇ ହଉଥିଲା କେମିତି । ତାଙ୍କୁଇ ତ ଖୋଜି ବାହାରିଥିଲି ।

ସୁଦାମ—ଆଜି ପଛରୁ ମୁଁ ଡାକି କି ଦୋଷ କଲି ଯେ ଏମେତେ ବିଗୁଡ଼ୁଥିଲ ? ଯା; ଏବେ ସମ୍ଭାଳ । କଅଣ ହେଇଚି ବୁଝ ।

ମଧୁ—ଆଉ ବୁଝିବି କଅଣ ? ବୁଝିଲ ସୁଦାମ ! ଆମ ମରଦ ଜାଣିଙ୍କଠାରୁ, ଏଇ ମାଇପି ଜନମ ଭାରି ବଡ଼ିଆ ଜନମ ଏଡା ! ନେହେ ନାହିଁ କି ନେଞ୍ଜାରି ନାହିଁ । ଷୋଳଅଣା ସଜୁଡି !

ସୁଦାମ—ହଉହେ, ଆମ ଜନମଟା କଅଣ ଏମିତି ଖାଲି ଗୋଡ଼ଧୂଳିରେ ଗିବ ?

ମଧ—ଗିବ କଅଣ ? ଯାଉଚଚ ଦେଖୁଚ । ପ୍ରମାଣ ତ ଆଗେ ଆଗେ ଥୁଆ । ଚାଲ—ମୁଁ ଯାହା କହୁଚି, ସେଇଆ ହେଇଥିବ । ଅନାଁ—ଅନାଁ—

( ଗୀତ )

ଚାହାଣି ଚାହାଁ ତା ଚଞ୍ଚଳ ଚାଲ—
ନାହିଁତ ଆଜ କି ବାଜିଛି ଢ଼ଲ
—ତା ଚଞ୍ଚଳ ଚାଲ ।
ବାରିଦଘେରା କରେ ଚନ୍ଦ୍ରିମା
ସାରି ତ ଦେଇଛି କେ’ସେ ଭଗାରି ?
—ତା ଚଞ୍ଚଳ ଚାଲ ।
ଧାରି ବହେ କି ଯମୁନା ଉଚ୍ଛୁଳ
ସାରି କଲାଣି ସେ ନୟନ ବାରି
—ତା ଚଞ୍ଚଳ ଚାଲ ।

(ଉଭୟେ ପ୍ରସ୍ଥାନ)

———

## ତୃତୀୟ ଅଙ୍କ-ତୃତୀୟ ଦୃଶ୍ୟ

କୁଞ୍ଜ—(କଳହାନ୍ତରିତା ଶ୍ରୀମତୀଙ୍କୁ ଲଳିତା, ବିଶାଖା, ଧନିଷ୍ଠା ଓ କୁନ୍ଦଲତା ପ୍ରବୋଧି କହୁଥିଲେ)

ଲଳିତା—ଶ୍ରୀମତୀ ! ତମ କଥା ପାଳି ଶ୍ୟାମକୁ କୁଞ୍ଜରୁ ଅନ୍ତର କରିଦେଇଛ ! ଯଥେଷ୍ଟ ହେଲାଣି ସଖି । ଆଉ ନୁହେଁ-ଚାତୁରୀମାନ ଉଚିତ ନୁହେଁ । ସେ ଯେ ତମର । ତାଙ୍କ ଗଲାବେଳର ମୁଖ ଦେଖି ଆଖିରେ ଲୁହ ରହିଲା ନାହିଁ । ମନ ହେଲା ଫେରାଇ ଆଣନ୍ତି, କିନ୍ତୁ…

ଶ୍ରୀମତୀ—ଏକ ପକ୍ଷରୁ ବିଚାର କଲୁଣି ସହି ! ସେ ଯାହା କରିଛନ୍ତି ?

ବିଶାଖା—ହଁ ଭଲକଲ ନାହାନ୍ତି ସେ । କାଳ, ତା’ ଲାଗି କି ଅଳ୍ପ ଭୋଗିଲେଣି ? ଆଉ ନୁହେଁ । ଏକାବେଳେ ନିରାଶ କରିଦେବାଟା ଉଚିତ ହେଲା କି ଧନ ?

( ଗୀତ )

ସ୍ନେହକୁ ଏ କେମନ୍ତ ଭଣିଲ ରେ
ସେ ତୋତେ ଅନୁସର ଭସିଲ ରେ
ସୁଶୀଳା ରେ, ଚତୁର—କାହା ଦୁଃଖ କାହାର
ଯାହାରେ ଯାହା ମନ ରସିଲ ରେ ।
ସେବକଜନେ ମାନ, କରିବାର ବିଧାନ
ଏ ତୋ ଅବଧାନକୁ ଆସିଲ ରେ ?

ଶ୍ରୀମତୀ—ଯାହା କର, ଯାହା କହ ସହି, ଆଜି ସେ ନିଆଁ ରେ ଜଳିବାକୁ ମନ ବଳୁନାହିଁ ମୋର ।

ଧନିଷ୍ଠା—ବିଷର ଔଷଧ ବିଷ । ଜଳନ୍ତା ନିଆଁ ଲିଭିବାର ଔଷଧ, ସେଇ ନିଆଁ ସିନା ସହି । ତା' ଛଡ଼ା ଆଉ କିଛି ଉପାୟ ଅଛି କି ?

ଶ୍ରୀମତୀ—ଥାଉ, ନଥାଉ—ଏମିତି, ଏ ନିଆଁରେ ଥରେ ମରିବି ସିନା ସହି ! ସେମିତି ଯେ ନିତି କଳକଳ ହେଲି । ଅପବାଦ, ଗଞ୍ଜଣା—ସବୁ ସହୁଛି । ନାଃ, ଆଉ ନୁହେଁ, ଆଉ କୁଞ୍ଜକୁ ଆସିବାନାହିଁ ସଖି । ଚାଲ, ଘରକୁ ଫେରିଚାଲ ।

(ଉଠିଲେ)

ଲଳିତା—(ବସାଇ) ଏ କଅଣ ସହି ! କଥା ମାନ ।

(ଗୀତ)

ମାଧବେ ତୁ ତେଜ ମାନ ଗୁମାନବନ୍ତି ।
ଆସିବେ ଶ୍ୟାମ ବହଇ ମଧୁ ପବନ ।
ଏ ତହୁଁ କି ସୁଖ କହ ସଖି ଭବନ ?
ସଜଳ କମଳଦଳ ଶୀତଳ ଶୟନେ ।
ଶ୍ୟାମ ନିରେଖି ସଫଳ କର ନୟନେ । ୧ ।
ବାର ବାର କହିଲେ ବଢ଼ୁ ମାନ ।
ତେଜ ଶ୍ୟାମଘନ ଲଳିତ ସୁଠାମ— । ୨ ।

ଶ୍ରୀମତୀ—ସବୁ ଜାଣି ଶୁଣି ଲଳିତେ ପୁଣି ହଠହଠା କରିବାକୁ ମନ ତମର ?

ଗୀତ

ବିଶାଖା—

ଭଲ ଭଲ ଦିନ ସରିବ ନାହିଁ ଗୋ କିଶୋରି !
ଶ୍ୟାମେ ହେଲୁ ଅସ୍ନେହୀ ।
ଜାଣୁ ମଣି ହୋଇ ନ ପାରୁ ଜାଣି,
ଆଣୁନାହୁଁ ଚିତ୍ତେ ସଖୀଙ୍କ ବାଣୀ ଗୋ ।୧।
ହାତ ଓଠ ଧରି କହିଲୁ ଚପଳେ,
ତା'ତ ନବୁଝିଲୁ କା ଦୋଷ କେତେ ଗୋ ।୨।

ଶ୍ରୀମତୀ—କଅଣ କରିବି ସହି ! ମୋତେ କିଛି ସୁଖ ଲାଗୁନାହିଁ । ଚନ୍ଦ୍ର, ଚନ୍ଦନ, କୁସୁମ, ସବୁ ମୋର ବିଷ । ବୁଝୁଛି ତାଙ୍କଯୋଗୁ ମୋର କି କଷ୍ଟ । ବାରବାର ପ୍ରବଞ୍ଚନା ସହି ଆଉ ତୁଣ୍ଡ ଫିଟାଉ ନାହିଁ ମୋର । ମୋତେ ବଳାଅ ନାହିଁ ଆଉ—

( ଗୀତ )

(ଶାର୍ଦ୍ଦୂଳ ବିକ୍ରୀଡ଼ିତ ବୃତ୍ତ)

ଲଳିତା—ମୁଗ୍ଧେ ନିଷ୍ଠୁର ସ୍ନେହ ଭାଜନ ପରେ
ନମ୍ରେ ଉଦାସୀନତା
ପ୍ରେମାର୍ଥୀପ୍ରତି ବାମତା ତୁ
ଅନୁରାଗୀରେ ତ ଦ୍ୱେଷ ରତ୍
ଶୀତାଂଶୁ ଖର, ଚନ୍ଦନେ ବିଷ ଅବା
କାମାଦି ତୋ ଯାତନା
ଶାସ୍ତି ତୋର ସିନା, ଉନ୍ମାର୍ଗ-ଗମନା
ଘଟେ କୁକର୍ମେ ଫଳେ ।

ଶ୍ରୀମତୀ—(ଚମକି) କିଏ ? (ଚାହିଁଲେ)

(ବୃନ୍ଦା ନୀରବେ ଚାହିଁବା । ଅଳ୍ପ କାଳପରେ ଶ୍ରୀମତୀ ତାଙ୍କ ଗଳାରୁ ଫୁଲହାର କାଢ଼ି ଦେବାକୁ ବସିବାର ଦେଖି, ଯୋରକରି ହାର ପିନ୍ଧାଇଦେଲେ—ଶ୍ରୀମତୀ ଦୀର୍ଘନିଃଶ୍ୱାସ ପକାଇ ପୁଣି ଚାହିଁ ନୀରବ ହେଲେ )

ବୃନ୍ଦା—ଶ୍ରୀମତୀ, ଏ ଚନ୍ଦ୍ରମୁଖରେ କଳାଛାଇ ଦେଖି ମନ କଅଣ ହୁଏ, ଥରେ ଏ ଅନ୍ତରଙ୍ଗତାରେ ପଶି ଦେଖିଲେ ବୁଝନ୍ତ ସିନା ! ଶ୍ୟାମଙ୍କୁ, ଆଉ ତମର ଏଇ ଅଭାଗିନୀ ସଖିମାନଙ୍କୁ,—ସମସ୍ତଙ୍କୁ କନ୍ଦାଇ, ନିଜେ ଝୁରି ଲୁହଝରାଇବାରେ କି ସୁଖ ଭଲ ? ପ୍ରସନ୍ନ ହୁଅ, ଅନୁମତି ଦିଅ,—ବନ୍ଧୁ ଆସନ୍ତୁ ।

(ଉତ୍ତର ଅପେକ୍ଷା କଲେ, କିନ୍ତୁ ଶ୍ରୀମତୀ ତଥାପି ନୀରବ )

(ଗୀତ)

କେବେ ନଥିବା ତୃଷା ଆଜ କାହିଁକି
ମୋହନଠାରେ ମନ ଲାଗିଗଲା କି । ୦ ।
ବରଜକୁ ଭୁଲିନା-କପଟ ସେ ଚୋର କନା
କେଞ୍ଚିବେ ମାନସରେ ନପାଞ୍ଚିଲୁ କି ?
ଶ୍ରୀବ୍ରଜେନ୍ଦ୍ରନନ୍ଦନ-ମୋ ଜୀବର ଜୀବନ
କେତେଥର ବୋଲନ୍ତୁ ପାଶୋରିଲୁ କି ?
ଆରେ ପ୍ରାଣସିଙ୍ଗିଣି-କେ'କି କହିଲେ ଶୁଣି
ଏପରି ଦୁଃଅନା ରେ ଆଉ ଏଣିକି ।

ବିଶାଖା—ମୁଖ ଟେକ ଧନ, ସେ ଶ୍ୟାମ ନୁହେଁ, ତମର ପ୍ରିୟସହଚରୀ ବୃନ୍ଦା ସେ ।

ଲଳିତା—କେହି ତମର ଅଣହିତ କଥା କହିବ ନାହିଁ । ରାଧେ ! ଆଉ କାହିଁକି ? ଏତେ ଅଭିମାନକୁ କିଛି ପାଇଛିକି ?

( ସହସା ଶ୍ରୀକୃଷ୍ଣ ଆସି ଶ୍ରୀମତୀଙ୍କ ପାର୍ଶ୍ୱରେ ଗାଇଲେ—ସଖିମାନେ ଉଠି ଠିଆ ହୋଇ ରହିଲେ )

( ଗୀତ )

ଶ୍ରୀକୃଷ୍ଣ—

ପ୍ରିୟେ ଶୃଙ୍ଗାରିଣୀ ଲୋ,
ତେଜ ମନୁ ମାନିନୀ ଗୁମାନେ,
କାମ ଖର ଚାପ ସହି ଦହଇ ମମ ମାନସେ
ଦାନକର ବଦନ ମଧୁ ପାନେ ॥୦॥
ମଞ୍ଜୁ ମଧୁ ହାସରେ ସରସ ଶରଦ-ଚନ୍ଦ୍ରିକା
ହରଇ ମମ ମନ ତମିର ଯାମେ,
ଚନ୍ଦ୍ର ବଦନୀ ଅଧର ମଧୁର ମଧୁଧାର ଗୋ,
ନୟନ ତ ଚକୋର ସରି କାମେ ॥
ସତ୍ୟ ତୋ କୋପ ଯଦି କହୁଛି ରସବାଦିନି !
ମାର ତବ ନୟନ ଶରଘାତ ।
ବାନ୍ଧ ଭୁଜବନ୍ଧନେ ଛେଦରଦଖଣ୍ଡନେ ।
ସଜନି, ତବ ମୋଦ ଯହିଁ ଜାତ ।
ସ୍ଥଳ କମଳ ଗଞ୍ଜି ସେ ମମ ହୃଦୟରଞ୍ଜିକ;
ରତି ରସର ଚରମ ଛବିଧାରୀ,
ସରସ ଅଳକ୍ତ ରସେ ଚରଣଯୁଗଳ ମଣ୍ଡିତ
ଲାଗ ମଧୁ ହାସ ବରନାରି !
କାମ-ଗର୍ବ ଖଣ୍ଡନ ଭାଲ ପଟ୍ଟ ଭୂଷଣ
ଦେହି ପଦ ପଲ୍ଲବ ସୁହାସି ।

( ଶ୍ରୀମତୀଙ୍କ ଚରଣତଳକୁ କର ବଢ଼ାଇବାବେଳେ ଶ୍ରୀମତୀ ଚମକି ବାଧାଦାନ କରି, ଉଠି ପଡ଼ିଲେ ଓ ସଖିମାନେ ଶ୍ରୀମତୀଙ୍କୁ ଘେନାଇ ଗୀତ ଗାଇ ମିଳନ ଘଟାଇଲେ । )

ସଖିଗଣ—

( ଗୀତ )

ଏଥରକ ଶ୍ୟାମ ଦୋଷ କର କ୍ଷମା ରେ ।
ପଦତଳେ ପଡ଼ି-ଯାଉଛନ୍ତି ସଢ଼ି
ତୋଳ ହେଲେ ଶ୍ରୀମୁଖ ଚନ୍ଦ୍ରମା ରେ ।
ନ ଘେଡ଼ା ଶ୍ରବଣ—କହୁଛନ୍ତି ଶୁଣ
କୃପାନିଧି ବୃଷଭାନୁଜେମା ରେ ।
କେତେ ଥର ସହି—ଯାଇନାହୁଁ ସହି
ଅପରାଧଯାକ ଘେନ ପ୍ରେମା ରେ ।
ପଶୁପ ନଗରୀ-ଶିରୀ ଯିବ ସରି
ନ ବୁଝିଁଲେ କେଶରୀମଧ୍ୟମା ରେ ।
( ଗୋପାଳକୃଷ୍ଣ )

( ଲଳିତା ଦୁହିଁଙ୍କ ମିଳାଇଦେଲେ )

ପଟକ୍ଷେପ ।

———

## ( ୪ର୍ଥ ଅଙ୍କ ପ୍ରଥମ ଦୃଶ୍ୟ )

ପୁଷ୍ପ ବାଟିକା

( ଶ୍ରୀମତୀଙ୍କୁ ସଖୀମାନେ ବେଶ କରୁଥିଲେ )

ଲଳିତା—( ମୁଖ ଟେକ ଧରି, ହସି )
ବାମା ତୋ ଅଧରେ ବନ୍ଧୁଲି ବିଳସେ
ଗଣ୍ଡେ ମଧୁକଳ୍ପବ
ନେତ୍ରେ ଶୋଭିତ ଶୋଭନେ କୁମକଶ୍ରୀହାସ
ପ୍ରଭା ସୁନ୍ଦର ।

ନାଶା ତୋ ତିଳର ପ୍ରସୂନ କି ଅବା
କୁନ୍ଦାଭଦନ୍ତୀ ପ୍ରିୟେ ।
ରାଧେ, ଶ୍ରୀମୁଖ ସେବ ତୋର ବଳପୁ
ବଶେ, ସିନା କାମ ଗୋ ।

ଶ୍ରୀମତୀ—(ଟିକିଏ ଛଳ କୋପଦୃଷ୍ଟିରେ ଚାହିଁଲେ ଲଳିତାଙ୍କୁ)

ଲଳିତା—ଏମିତି କଡ଼ା ଆଖିରେ ମୋତେ ଚାହିଁବ ନାହିଁ ଗୋ । କହି ଦେଲି, ହଁ, ମୁଁ ଶ୍ୟାମ ନୁହେଁ, ଲଳିତା ।

ବିଶାଖା—ଦେଖୁଛୁ କି କାହ୍ନୁ ପ୍ରୀତିମନ୍ତର ।
କାଲି କଥା ପୁଣି ଆଜି ଅନ୍ତର ?

ଧନିଷ୍ଠା—କାଲି ତ ଏତେ ବେଳକୁ ଗୋବର୍ଦ୍ଧନ ଚଳୁଥିଲ; ଆଜି ପୁଣି ରାତିରେ ପଦ୍ମ ଫୁଟିଲା କେମିତି ମ ?

ବିଶାଖା—ଆଜି ଏ ଶୋଭା ଦେଖିଲେ, ଯିଏ ନାହିଁ ସେ କହିବ—

( ଗୀତ )

ମଦାଳସଭର ଦୃଶା ବଦନ ଇନ୍ଦୁ ସନ୍ଦୀପନୀ
ସଦା ଗନ୍ତି ମନୋରମା ବଳଚରମ୍ଭୋରୁଶୋଭନା
ରତେ ସଖି କଳାବତୀ ରୁଚିର ଚିତ୍ରଲେଖାଭ୍ରୁରୁ
ସଚେ ସ୍ୱରଗ ସମ୍ପଦେ ବହନ୍ତୁ ମର୍ତ୍ତ୍ୟ ଜନ୍ମେ ଧନୀ ।

ଶ୍ରୀମତୀ—ଛି, ଆଚ୍ଛା, ମୋତେ ପରିହାସ କଲେ କଅଣ ତମମାନଙ୍କୁ ଆନନ୍ଦ ମିଳେ ?

ସମସ୍ତେ—ହଁ, ଟିକିଏ ଟିକିଏ ।

ଶ୍ରୀମତୀ—(ଉଠି) ଯା', ମୁଁ ଆଉ ଜମା ତମମାନଙ୍କ ପାଖେ ରହିବ ନାହିଁ ।

ସମସ୍ତେ—(ଧରି ବସାଇ) ଟିକିଏ, ଟିକିଏ ।

ଶ୍ରୀମତୀ—ଛାଡ଼ ଛାଡ଼, ମୁଁ ଯାଏଁ ।

ବୃନ୍ଦା—(ବୃନ୍ଦା ହଠାତ୍ ପ୍ରବେଶି) ହଁ ହଁ ବେଗେ ଆସ, ମନ ଉତ୍କଣ୍ଠ ହବଣି । ଲଳିତା, ବିଶାଖା ସମସ୍ତେ ଅଛ—କେହି ସଖୀର ମନକଥାଟା ବୁଝିପାରିଲ ନାହିଁ ଆତୁର ତାଙ୍କୁ ବସାଉଛ !? (ଉଠାଧରି) ନାହିଁ ଗୋ, ଆସ, ମୁଁ ତମ ମନଟି ବାରି ଆସିଛି ପରା ! ଠିକ୍ ବେଳେ ପହଞ୍ଚି ନାହିଁ ?

ଲଳିତା—ଏତେ ବେଗେ କୁଆଡ଼କୁ, ସେ ?

ଶ୍ରୀମତୀ—ବୃନ୍ଦେ, ତୁମେ ବି, ଏଇମାନଙ୍କ ସଙ୍ଗେ ଜୁଆଣ ହେଲ ?

ବୃନ୍ଦା—ନାହିଁ ଗୋ, । ସତକଥା ଦେଖିବ ଚାଲ...
ବହୁକର ନାଗର ଚାହୁଁଚାଣି ଭଣି
ଚରଣ ତଳେ ତବ ଧାୟୀ
ମଞ୍ଜୁଳ ବେତସ କୁଞ୍ଜ ସଜାଏ
କେଳିଶୟନ ପଥ ଚାହିଁ

ରାଧେ, ମାନମୟୀ, ଅନୁଗତ ମୋ ହନେ ଅନୁସର ଗୋ ।

ସମସ୍ତେ—ଭଲ, ଭଲ । ତେବେ ତ ସଖୀଙ୍କି ଆମର ଅଟକେଇବାଟା ସତରେ ଭାରି ଅନ୍ୟାୟ ହୋଇଯାଉ ।

ଲଳିତା—ମାନିନୀ, ଆମମାନଙ୍କୁ କ୍ଷମା ଦେବ । ନଜାଣି ଅଟକାଅଟକ କରୁଥିଲୁଁ, କ୍ଷମା କର । ବଳେ କଲ ଯାଇ ।

ବୃନ୍ଦା—ଆଉ ଚାହିଁଛ କଅଣ ମ ?
ତମ କଳହଂସୀ ଚାଲି ପୁଣି ।
ଚାରୁ ନିତମ୍ବ ଗୁରୁସ୍ତନଭରେ ମନ୍ଥରଗାମିନୀ ସଖି
ଚାଲି ମୁଖର ମଣି ମଞ୍ଜିର ବାଜେ ରାଜହଂସକୁହସଇ ।
କାମିନମୋହନ ମୋହନ ଚାହୁଁଛୁ ଯେନସ୍ୱହାସି,
ସୁହାଗି କାମର ଶାସନ ବନ୍ଧନୀ କୋଇଲି
ତାନେ ତୁଅ ଅନୁସରୀ ।

( ଗୀତ )

ଲଳିତା—ଲତାକର ସମ୍ପବ କୋମଳ ପବେ
ମନ୍ଦ ମରୁତ ତ ବାଜେ ।
ଠାରି ସତେ ଗମନେ ଅନୁରୋଧେ
ଆଉ ବିଳମ୍ବ କି ସାଜେ ?

ଶ୍ରୀମତୀ—ତେମେ ସବୁ ମହତଚଢ଼ା ହେଲଣି କି ମ ?

ଅନ୍ୟ ସଖି—ହଁ ଗୋ !

ଗୀତ

ତରଳ ଧାରସର ହାରବଳମ୍ବ ତ
କାମକୁଚେ ତୁ ପସ୍ୱର,
କାମତରଙ୍ଗ ବିଘାତ-ବିକମ୍ପ ତ
ସୂଚିତ ମିଳନ ବିଦ୍ୱର ॥

ଶ୍ରାମନ୍ତୀ—ନାଇଁମ ବୃନ୍ଦା ସେମିତ ମୋତେ ପରିହାସରେ
କହୁଛନ୍ତି ସିନା ! ତମେମାନେ ଜମା ବୁଝିପାରୁନା
ତାଙ୍କ କଥା ! ମୁଁ କଅଣ ସତରେ ଯିବି ନା ସେ
ସତରେ କହୁଛନ୍ତି ?

ସମସ୍ତେ—ଠକ ନାହିଁ ଆମକୁ ଗୃଖବ । ଜଣା ଅଛି ସବୁ ।

ବୃନ୍ଦା—ହଁ ଗୋ, ମୋ କରିବା ନ କରିବା ତୁମେ ଜାଣୁ-
ଥିବ କ ମନ ଜାଣୁଥିବ । ଯିବାର କ ନ ଯିବାର
ସେ କଥା କ ଲୁଚିରହିଛି ଏମାନଙ୍କ ପାଖେ ?

ଗୀତ

ସଖିଗଣ ନର୍ତ୍ତିତ କାରିଛନ୍ତି ତୋ
କାମ-ଜଣା ରଣସଜ୍ଜା ।
ମେଖଳ ଡମ୍ବ୍ରି ମ ବାଇ ତୁ ଯୁଦ୍ଧେ
ଚଣ୍ଡି, ତେଜ ତଳ ଲଜ୍ଜା ॥

(ଶ୍ରାମନ୍ତୀଙ୍କୁ ଉଠାଇଲେ)

ବିଶାଖା—ଚାଲ ଗୋ ।

ଶ୍ଳୋକ

ନେତ୍ରେ ଅଂଜନ ଗୋ ତମାଳ ମୁକୁଳେ
ରଞ୍ଜାଇ କଣ୍ଠେ ରସି,
ମାଥେ ମାଳ ସରୋଜଦାର ଭୃତରେ
କସ୍ତୁରୀ ଚନ୍ଦ୍ରେ ରଚ ।
ଗାତ୍ରେ ନୀଳମ ବାସ ଘେର ତନୁରେ
ଜହ୍ନ ଣ୍ଡ ତା ଯଦ୍ୟପି,
ଚାଲେ କୁଂଜଘରେ ଦିଶେ ତନୁ ସତେ
ଅନ୍ଧାର ଆଲିଙ୍ଗଇ ।

( ଶ୍ରାମନ୍ତୀଙ୍କୁ ଘେନି ଯାଉଯାଉ ପଟ୍ଟପରିବର୍ତ୍ତନ

———

## ଚତୁର୍ଥ ଅଙ୍କ—ଦ୍ୱିତୀୟ ଦୃଶ୍ୟ

( ନୃତ୍ୟରତା ସଖିଗଣ )

ବହର ରେ ମନ୍ଦିରାଁ ରେଣୁ ତୁଳେ
ନବଫୁଲ କୁଞ୍ଜବନେ ଗୁଞ୍ଜରେ ଅଳିକୁଳେ ॥
ଗଗନ ଭରେ ମୃଦୁ ମଧୁ ଫୁଲଗନ୍ଧ
ମ.ଦଳ ସମୀରଣ ଆକୁଳ ଅନ୍ଧ
ପରଶି ତୋ ଅଙ୍ଗେ ଫୁଲ—
ଯୌବନସାଗର ଭଙ୍ଗେ ଭୁଲେ ।

—ପ୍ରସ୍ଥାନ—

———

## ଚତୁର୍ଥ ଅଙ୍କ—ତୃତୀୟ ଦୃଶ୍ୟ

( କୁଞ୍ଜମଧ୍ୟରେ ମଧୁମଙ୍ଗଳ ପ୍ରବେଶ)

ମଧୁ—(ଗୃହଆଡ଼ ଖୋଜ) ନ ଃ, ଏଠି ତ ସେ ଗନ୍ଧ ନାହିଁ ।
କାହିଁ ବାସୁ ନାହିଁ ତ, ପୁଣି କଅଣ ଚମ୍ପଟାଯିବେ ?
ଲଗିବ କ ଫେର ପାଳି ? ସେ ଏବେ କାହାକୁ
କରିବ ପର ? ତାର ଦୁନିଆଁ ଯାଙ୍କ ତ ଘର—
(ନେପଥ୍ୟକୁ ଚାହିଁ) ହଁ !

( ଗୀତ )

ଛଳ ଛଳ ଆସୁଛି ମୋ ନାଟୁଆ ରତନ ଗୋ
ଛଳ ଆଖି ବାଙ୍କଚୂଳ ଦିଶେ କ ଯତନ ଗୋ
ମରିଯାଏଁ ମୁ ସଖା !
କେତେବେଳୁ ମୋତେ ଦେଇନ ଦେଖା—
ଯାଏ ମୁଁ

(ଶୀଘ୍ର ପଛକୁ ଯାଇ ପିଠିକରି ବସି, ତନଖଣ୍ଡ କାଠି
ଗୋଟେଇ ଆଣି ପଶାଖେଳଛଳରେ ବସି)—
କଚେ ବାର—ପୁଅ ବାର ।

( ଆସି ପଛରେ ଛିଡ଼ାହେଲେ ଶ୍ରୀକୃଷ୍ଣ ମଧୁ ତାଙ୍କୁ
ଲକ୍ଷ କରିନଥିବାପରି ଗାଇଲେ )

( ଗୀତ )

ତୁମେ ଯୋଉଥିକ ନସର ପସର
ଆମେ ସେ କଥାଟି ଜାଣି
ଗୁଣମଣି-ମାନମଣି-ଧନମଣି !
ବ ହାତେ ଲମ୍ବିର ଓଢ଼ଣା ଘୋଡ଼ାଇ
ଲୁଚି ପଡ଼ୁଛୁ କ ମୋତେ ?
ଝୁମୁ ଝୁମୁ ଝୁମୁ ଶୁଣିଛୁ, ଗଣିଛୁ
ପାଦରେ ଝୁଣ୍ଟିଆ କେତେ ।
(ଏବେ) ଝଞ୍ଜାରେ ଝଞ୍ଜାରେ ନଡ଼ିଆ ଭିତରେ
ଶୀଘ୍ରେ ପଶିଛୁ ପାଣି,

ଆଉ କ ସେକାଳ ଅଛି ?
(କେତେ) ହାତ ଓଠଧରି ଛୁ ଛୁ !
ଘୁଏ ଘୁଏଁ ଆଜ ଉଜାଣି ବହୁଛି
ଯମୁନା ନଈର ପାଣି ।
( ଗୀତାନ୍ତେ ଶ୍ରୀକୃଷ୍ଣ ପରିହାସରେ ଡାକଲେ)

ଶ୍ରୀକୃଷ୍ଣ—ସଖା !

ମଧୁ—(ମଧୁ ଚମକ, ଦଣ୍ଡେ ରହି) କଉ, ସଖା କଉ ? (ଉଚ୍ଚ ହାସ୍ୟ) ଗୀତଟେ ପଡ଼ଥିଲି ଆମର ।

ଶ୍ରୀକୃଷ୍ଣ—ଆଛ ?

ମଧୁ—ପଶାଖେଳଟେ ବି ହେଉଥିଲା ।

ଶ୍ରୀକୃଷ୍ଣ—ଆଉ ମୋ ଆସିବାଟା ଜାଣି···

ମଧୁ—ରାମ, ରାମ (କାନଛୁଇଁ) ନା ନା ତୁମେ ଏଇନେ ଆସିପାରିବ ନାହିଁ ବୋଲି ତ ମୁଁ ଜାଣେ ।

ଶ୍ରୀକୃଷ୍ଣ—କେମିତି ?

ମଧୁ—ଚରଣ-ଛଡ଼ା ହେଲେ ତ ?

ଶ୍ରୀକୃଷ୍ଣ—ହୁଁ, ଥଟ୍ଟା କରୁଛ ମୋତେ ?

ମଧୁ—ଥଟ୍ଟା ? ଯାହା ଜନ୍ମଯାତକରେ ନାହିଁ ମୋର ? କେବେ ମୁଁ ତମକୁ ସେ କଥା କରେଁ ? ବାକ ଭଲ ଔଷଧ ଶିଖିଛ ସଖା ! ଏକାବେଳେ ଅଣଲେଉଟା ।

ଶ୍ରୀକୃଷ୍ଣ—ଯାଃ,

ମଧୁ—ନାଇଁ, 'ଯା' କଅଣ ? ଲୋକେ ଯାହା ଆମ ଜାତକ ପାଠୁଆ ବୋଲି କହନ୍ତି ! ମିଛ, ମୁଁ କାଲଠୁଁ ସେକଥା ବୁଝିଲି । ଏ ଗୃହଶାଳୀକି ମୋଟେ ଆମେ ପୂଜା ନେଇନାହୁ କ ଆ'ହାନେ ଜମା ଏ ପାଠ ପଢ଼େଇ ନାହାନ୍ତି ।

ଶ୍ରୀକୃଷ୍ଣ—ଏଇଥିକି ମୁଁ ତମକୁ ଖୋଜୁଥିଲି ପରା ?

ମଧୁ—ମତେ ଖୋଜୁଥିଲ ? ହଁ ଖୋଜୁଥିବ ତ ! କଅଁଳା ପିଲା ନା ! ମା' କେତେ ଥର କହନ୍ତି ପରା, ବଣ ବାଟରେ ଡରିବ ଧନ ମୋର ? ସତ, ରାତି ବେଶି ହେଲଣି, ଏକୁଟିଆଟା ଘୁନଆଁ ପଶିଯିବ । ଚାଲ ତେବେ, ଘରେ ଛାଡ଼ଦେଇଆସିବ, ଚାଲ !

ଶ୍ରୀକୃଷ୍ଣ—ମୁଁ କଅଣ ଘରକୁ ଯିବାକୁ ଖୋଜୁଛି ?

ମଧୁ—ଆଉ କଅଣ ଏତେବେଳେ ବି ଗାଈବାଛୁରି ଖୋଜା ? ହଜୁଛି ପରା ? ହଁ, ତାହା ନୋହିଲେ ଏତେ ରାତିରେ ଘରଛାଡ଼ ବଣବୁଦା ମଝିକି ଆସନ୍ତ କାହିଁକି ?

ଶ୍ରୀମତୀ—ସଖା, ପରିହାସ ମାହାଟା ଟିକିଏ ଊଣା କର ।

ମଧୁ—ନାଇଁ ସଖା, ସତେ, ତୁମେ ତ ଏବାଟୁ ଆସିଲ, ମୁଁ ସେବାଟୁ ଆସିଲି, ଗାଈ କି ମଣିଷ କି ଆଉ କଣ୍ଛି ମୁଁ ବାରିପାରିଲି ନାହିଁ । ମାତ୍ର ଆସୁଥିଲି ସ୍ୱାଡ଼କୁ ! ମୁଁ ଘୁନଆଁରେ ପଳେଇ ଆସିଲି !

ଶ୍ରୀମତୀ—କାହିଁକି ଏଡ଼େବେଳେ ଘୁନଆଁ ?

ମଧୁ—ଘୁନଆଁ ! ମୁଁ ସିନା ଖାଲି ଘୁନଆଁ ? ତୁମେ ହେଇଥିଲେ ଅତରଛରେ ମୋହ ଯାଇଥା'ନ୍ତ । ଡାହାଣୀ କି ଭୂତ କି ବଣବେବତା ! କଅଣ ହେବ ସେ କେଜାଣି ? ଆମ କଇଁଫୁଲ ବେକଂରେ ବାଗୁଡ଼ ଯେମିତି,—ସେ ଧାଇଁଲେ ଝୁମ୍ଝୁମ୍ ଶୁଭେନାଇଁ,—ସେମିତି ଶୁଭୁଥିଲା । ଯୋଉ ତେଜ ! ଅନ୍ଧାରିଆ ବଣ ବାଟଟାଯାକ ଖାଲି ହାଲେଇ !

ଶ୍ରୀମତୀ—ଏଡ଼େ ଆଲୁଅରେ ବି ଚିହ୍ନିପାରିଲ ନାହିଁ କଅଣ ସେ ?

ମଧୁ—ନା ଜଲୁ,—ଜଲୁ ସେପଲକ ନଷ୍ଟେ, ସେତକ ବାରିଛି । ବାକଚିହ୍ନି ବି କେମିତି ? ଆଲୁଅ କି କମ୍ । ଝାପ୍‌ସାରେ ଆଖି ମୁଦ ହୋଇଗଲା ପରା ? କଟିକାଟିଆ କରି ଆଖିମୁଦ ବଢ଼ଡ଼ ପାର୍ !

ଶ୍ରୀମତୀ—ତଥାପି, କଅଣ ବୋଲି ଭଲା ତୁମର ଅନୁମାନ ?

ମଧୁ—ଅନୁମାନ ? ସେ ତ ଅଲଗା କଥା—ଅନୁମାନ କଣ କି ?— ଝୁମ୍ଝୁମ୍ ଥିଲା, ଟୁପ୍‌ଟୁପ୍ ଥିଲା—ତେବେ—ବାକ ରହିଲା ଆମ ଅନୁମାନ—ନା ? ଅନୁମାନ – ଏମନ୍ତ କି ?—

( ଶ୍ଳୋକ )

ଗ୍ଲନ୍ତ କୁଙ୍କୁମ ବିନ୍ଦୁ ଅଭିସାରକାଏ
ସମ୍ପାତ ବୃନ୍ଦୁ କରଣେ ଝଟକେ ନଶା ବା ।
ସଜେ ତମାଳ ଦଳ ମାଳ ଘନାନ୍ଧକାରେ
ସେ ପ୍ରେମ ହେମ କଷିବା କଷଟି ପ୍ରକାରେ ॥

ଶ୍ରୀମତୀ—ତ' ପରେ ? ତାଙ୍କ ଗତି ?

ମଧୁ—ବୁଝ ତୁଅ । କାନାଇଁ, ଆସ ଆସ ଲୁଚପଡ଼ି ତାଙ୍କ ଖୋଜାଖୋଜିଟା ଦେଖିନବା । ଛକାପଞ୍ଝାରେ ରହିଲେ ତୁଏ କ ! ଆସ, ତୁମେ ତ ଖାଲି ଧରାଟି ପଡ଼ିବ । ଏମିତି ନେଉଡ଼ି ରହିଲେ ତମ ଯୁ' ସେ କଳନେବେ । ଆଜ ହବ କଅଣ ଜାଣ ?—

ଗୀତ

ଘନସୁନ୍ଦର ଚରଣ ଧରା ହେବ ସାର
ଭୁଲିବ ମୁରଲୀଧର ତେଜିବ ଶିଖଣ୍ଡଝର
ନ ମାନିବ ଖରାତର ଝରୁଥିବ ଲୁହଧାର ।୧।
ଗତ ହେବ ଅଗତ ଚାତିବ ପରା ଗୁଡ଼ି
ସାଥି, ମାନ ବନିତ କାନ୍ତ ମାରିବ ମାର ।୨।
[ବେଗେ ଶ୍ରୀକୃଷ୍ଣଙ୍କୁ ଘେନି ପ୍ରସ୍ଥାନ କଲେ]

[ଶ୍ରୀମତୀଙ୍କ ସହ ସଖିଗଣ ପ୍ରବେଶ]
( ସଖିଗଣ—ଗୀତ )

ସୁନ୍ଦର ନିକୁଞ୍ଜ ବନ କେଳିଭବନେ
ଯା' ତୁ ରାଧେ ମୋହନ ସମୀପ ସଖି !
ବିହର-ରତିରସ ସୁହାସ ବଦନେ ।
ନୂତନ, ଅଶୋକଦଳ ରଚିତ ଶୟନେ
ଯା' ତୁ ରାଧେ, ମୋହନ ସମୀପ ସଖି !
ବିହର, କୁଚ-କଳସ ହାର ଚଳନେ ।
ମୁଲ୍ଲିଫୁଲ ଦାମ ସଜ କୁଞ୍ଜସଦନେ
ଯା' ତୁ ରାଧେ, ମୋହନ ସମୀପ ସଖି !
ବିହର, କୁସୁମ-ସୁକୁମାର ଲଳନେ ।
ପଲ୍ଲବ ସୁସଞ୍ଜ ଘନକୁଞ୍ଜକୁ ଅନାଁ
ଯା'ତୁ ରାଧେ, ମୋହନ ସମୀପ ସଖି !
ବିହର, ଅଳସ ଘନପୀନଜଙ୍ଘନା ।
ମଧୁରସିକ ମଧୁପକୁଳ ମଧୁର ଗୁଞ୍ଜେ
ଯା'ତୁ ରାଧେ, ମୋହନ ସମୀପ ସଖି !
ବିହର, ମଦନ-ରସଭରିତ କୁଞ୍ଜେ ।

ଶ୍ରୀମତୀ—(ଏଣେତେଣେ ଚାହିଁ ଚାହିଁ) ଛୁ, ସଖି, ଏତେ କଲବଲ କରୁଛ ମୋତେ କାହାପାଇଁ ଭଲି ?

ବୃନ୍ଦା—ଥିବେ ଗୋ, ଥିବେ ଏଇଠି କୋଉଠି ।

ବିଶାଖା—ଜଣ, ଜଣ କରି ଏଣେତେଣେ ଯାଇ ଖୋଜଦେବୁ ଗୋ !

ଧନିଷ୍ଠା—ଧୈର୍ଯ୍ୟ ଧର ।

ଲଳିତା, ବିଶାଖା ଧନିଷ୍ଠା—[ଗୀତ]

ଏହି କୁଞ୍ଜେ ଥିବେ ପରା
ପ୍ରାଣସଙ୍ଗିନି ରେ ନେହାନନ୍ଦପସରା ।
ପ୍ରାଣକୁ ସନ୍ତୋଷ ଦୃଷ୍ଟ ନ କରରେ ରମ୍ଭୋରୁ
ପ୍ରସରୁଛି ଏ ବଗରୁ ସୌରଭଧାରା ।
ନକର ଚାରିକା କାନ୍ତି ନକରରେ ସୁଦନ୍ତି
ଝଟତି କେଳି ବସନ୍ତ ନ ହସେ ତୋରା ।
ପରିହାସ ଭାବ ଚତେ ଲତାଜାଳେ ଏକାନ୍ତେ
ଲୁଚ ରହିଥିବେ ସତେ ଶିଖଣ୍ଡଝରା ।

(ଗୀତ ଗାଇଗାଇ ଜଣେ ଜଣେ ସଖୀ ଏଣେତେଣେ ବୁଲିଗଲେ । ଶ୍ରୀମତୀ ଏକାକିନୀ ରହିବାରୁ କହିଲେ)

ଶ୍ରୀମତୀ—ଗୋଟି ଗୋଟି ହୋଇ ସମସ୍ତେ ତ ମୋତେ ଛାଡ଼ିଗଲ ! ଏକୁଟିଆ ପଡ଼ିଲି ତ ! ସଖି, ସଖି !...

(ଅଗ୍ରସର ହେଲେ)

(ସହସା ଲତାନ୍ତରାଳରୁ ଶ୍ରୀକୃଷ୍ଣ ବାହାରି ପଛରେ ଶ୍ରୀମତୀଙ୍କୁ ଡାକଲେ)

ଶ୍ରୀକୃଷ୍ଣ—ସଖି !

(ନେହାନ୍ତମିଳନବେଳେ ପଟକ୍ଷେପ)

—*—

## ପଞ୍ଚମ ଅଙ୍କ—୧ମ ଦୃଶ୍ୟ

—ବନକୁଞ୍ଜ—ମଧଶାୟିତ—

ବୃନ୍ଦା—(ପ୍ରବେଶ) (ଗୀତ)

କୋଇଲି ବୋଲେ, ପାହିଲା ରାତି
ଚେଇଁ ଗୋ ସଖି ! ଶେଯ ସୁପାତି ॥
ଗହଳ କୁଞ୍ଜବନେ ଏକୁଟିଆ କେ'
କାହାର ପଥ ଚାହିଁ ଠିଆ ଠିଆ ସେ ।
ମଳୟ କି ସେ-ବଉଳ ସାଥୀ
ବାସି ବାସନାବୋଳା ତା'ଗାତ୍ର
ଭୁଲିଛି ପଥ, ଯାଉଛି କି ମତ ।
ଚଢ଼ିଛି ଧରା—ଆଜି କି ଗତ ?

ମଧୁ—(ବୃନ୍ଦାଙ୍କ ଗୀତପରେ ଉଠି ଅଳସ ଭାଙ୍ଗି କାନେଇଁ) କୁଜ, କୁଜ, କୁଜ ।

ବୃନ୍ଦା—(ଫେରିଚାହିଁ ହସି) କିଓ ! ଏ କଅଣ ? ଏ କି ରୋଗ ଘୋଟୁଛି ?

ମଧୁ—(ଜିଭକାଢ଼ି) ନାଇଁ, କଥାଟା କଅଣ କି ? ସକାଳ ହେଲାଣି ତ, କୋଇଲି ବୋବେଇବାପରି ଶୁଭିଲା ସେ କଉତୁକରେ ତାକୁ ଖଚେଇ ହଉଥିଲି ।

ବୃନ୍ଦା—କିମିତି ? ଆଜି ଥରେ, ଆଜି ଥରେ ହେଲି ।

ମଧୁ—ମୁଁ ଶୋଇଲେ, କୋଇଲି ଗାଇଲେ, ତେବେ ସିନା ! ଖାଲିରେ କେମିତି ହବ ?

ବୃନ୍ଦା—ଏଠିଣାରେ ଏମିତି କାହିଁକି ପଡ଼ିଥିଲ ?

ମଧୁ—କୋଉଠି ?

ବୃନ୍ଦା—ଏଇ ବାଟପାଖଟା, ପଥରଟା, ନଗୁଟିଆ—

ମଧ—ଆରେ, ମୋତେ ତ ଏସବୁ କଥା କିଛି ଜଣା ନାହିଁ ; ଘରେ ତ ଥିଲି । କଅଣ ଭୂତ ଉଠେଇ- ଆଣିଲା ମୋତେ ? ଏଁ ? (ଦେହକୁ ବାରମ୍ବାର ଚାହିଁଲେ)

ବୃନ୍ଦା—କୋଉ ଭୂତ ସାଙ୍ଗରେ ଆସିଥିବ !

ମଧୁ—ହେଇଥିବ । ଭୂତ ଉଠେଇ ନ ଆଣିଲେ, ମୁଁ ଆଜି ଏଠିକି ଆସିଲି କେମିତି ?

ବୃନ୍ଦା—କିଛି ମନେ ହଉନାଇଁ, କେମିତିକା ଭୂତ ସେ ? ଭାବିଲ, ଭାବିଲ ଦେଖି ।

ମଧୁ—ହଁ ରହ, ଟିକିଏ ଭାବିକରି ଭାବେଁ...

ଗୀତ

ସେଇ ହେଇଥିବ ବରଜେ ଯାହାକୁ କହୁଛନ୍ତି କଳାଭୂତ
ସଖି ! ସତ, ସତ, ସତ, ସତ ।
ଘର ଘରଣୀକି ରାତି ଅଧାରୁ ସେ ନିଦରୁ ଉଠାଇଦିଏ,
ବାଟବଣା କରି ଘରୁ ଏକାବେଳେ, ଯମୁନା ପାଣିକି ନିଏ
ସେଠି, ଭାରି ଧାଁରିତ ସୁଅ
ଭାବିଲେ ଥରଇ ହିଅ—
ଡା'ଳମାକୁଡ଼ ସେ, ଖେଳୁଥାଇ ପରା କଦମ୍ବ ଡାଳରେ ମିତ !
ହଦେହଦେ ପୁଣି କରଜଗୁଆଳୀ ରଖିଛି କବାଟ କିଳ,
ଦହି ଦୁଧ ସର ଟୋପାଏ ନ ଥିବ, ବଡ଼ା ପଡ଼ିଥିବ ଖାଲି
ତାକୁ, କିଏ ନେଲା—କିଏ ନେଲା
ଘରୁ ହୁରି ଜୁରି କଲା—
କୋଉ ଝଞ୍ଜରେ ସେ କେମିତି ପଶେ ଗୋ
ଭାବିଲେ ଚମକେ ଚିତ୍ତ ॥

ବୃନ୍ଦା—ସେଇ ଦେଇଛୁ କି କଅଣ ! ତେବେ ଏଠି ଆଣି ତମକୁ ପକେଇଦେଇଛି ! ମୁଁ ପୁଣି ଶୁଣିଲି ଗୋଟେ ଅତି ଆଚମ୍ବିତ କଥା—ସେଇ ଭୂତ ପରା କୁଆଡ଼େ ଆମ କୁଞ୍ଜବନରେ ପଶିଛି ।

ମଧୁ—ଏଁ, ଏଁ, ଏଁ !

ବୃନ୍ଦା—ହଁ ନେ ।

ମଧୁ—ଧରାପଡ଼ିଛି ନା ?

ବୃନ୍ଦା—ହଁ ପରା, ତାକୁ ଲତାଜାଲରେ ଗୋପୀମାନେ ବାନ୍ଧି ରଖି କୁଞ୍ଜରେ ଜଗିବସି, ମୋଠିକି ଖବର ଦେଇଛନ୍ତି ଦେଖିଯିବାକୁ...

ମଧୁ—ସେଠିକି ସେ ଗଲେ କେମିତି ?

ବୃନ୍ଦା—କିଓ, ସେ କଅଣ ଖାଲି ଯାଇଛନ୍ତି ?

ମଧୁ—ଆଉ ?

ବୃନ୍ଦା—ମ ମ, ଘରବୁଡ଼ ପାଣି ଆଣୁ ଏ—ନା, ଅନ୍ଧ କହୁତ ମେଘ ଦୁଲୁକୁଛି ! ପ୍ୟେ, ବରଜଗୋଟାକ ହୁରି ଟି !

ମଧୁ—କଅଣ ?

ବୃନ୍ଦା—କଅଣ ? କାଲି ରାତି ଅଧରେ ବୃଷଭାନୁସୁତାଙ୍କୁ

ଘରୁ ପର କଏ ଉଠେଇନେଇଛ ? ଶୁଣୁ ଶୁଣୁ
ବୁଝୁବୁଝୁ କଅଣ ନା ସେଇ ଭୂତ । ସେ ପୁଣି
କୁଞ୍ଜବନରେ ।

ମଧୁ—ବାଃ, ଛଇଳପଟେ—ଏବେ କରୁଛନ୍ତି କଅଣ ?

ବୃନ୍ଦା—କଅଣ କରିବେ ?

ଗୀତ

ଧନଗତମନ ସେ ବାଞ୍ଛଇ ସୁଚିର ବିଳାସେ
ରାଧା-ବଦନ ସୁଶୋଭନ ଲୋଚନ-
ଶୋଭିତ ମଦନବିକାରେ
ଚଳଜଳଚଞ୍ଚଳ-ସାଗର-ଶଶଧର-
ମଣ୍ଡଳ ଦରଶ ପ୍ରକାରେ
ହାର ଗୁରୁତର ମୁକ୍ତାଫଳଧର
ସୁନ୍ଦର ଉରବର ସାଜେ,—
ଯମୁନାଜଳପର, ଖଚିତ କି ମଞ୍ଜୁଳ
ଫେନ-ତରଙ୍ଗ ବିରାଜେ ॥

ମଧୁ—ବାଃ ବାଃ, ରସିକଙ୍କ ମୁଣ୍ଡର୍ବ ଦେବେ ?

ବୃନ୍ଦା—ଆସ,ଯିବ, ମୋ ସାଙ୍ଗେ ଆସ, ଦେଖିବ ଆସ ।

ମଧୁ—ଏଁ, ଡର ମାଡ଼ୁଛି ! ଆମର ତ କାନ୍ଧରେ ପାଞ୍ଚଣ
ନ ଥାଏ ସବୁ, ପଇଡ଼ା ! ମାଡ଼ କୋଉଥିରେ
ଦେବ ? ତରି ଘୁନଆଁ ଦେବ ନାହିଁ ତ ?

ବୃନ୍ଦା—ପଇଡ଼ା ! ଭଲ ଭଲ, ବାନ୍ଧପକାଇବ ତୁମେ ବି !
ଆସ । ଭୋର ହୋଇଗଲା ଯେ !

ମଧୁ—ଭଲ,କ,ଅସଲ କର-ଗୋଠବାଡ଼ିଆ କରିବା ନା—

ଗୀତ

ତୁମେ ଧରିଥିବ ପାଞ୍ଚଣଖଣ୍ଡିକ ମୁଁ ଧରିଥିବ ପଘା
ସବୁ, ଆମକୁ ଅଛି କ ଲଗା ?
ବଇଜବଜାରେ ଚଳେଇ ଚଳେଇ
ଏଇ ଥର ପାଇ ଦଗା
ବଚନ ମଧୁର ତିଳକ ସରୁ ସେ
ଅସଲ ଠକଙ୍କ ଗୁରୁ
ସେ:ଭୂତର ଆଜ ଭୂତ ଛଡ଼ାଇବା
ସବୁର କାମନା ପୂରୁ ?

ନଇତ ଆଖିରେ ଧୂଳି ଦେଇ ପରା
ଆମକୁ ବନାଏଁ ବଗା
(ଗାଇଗାଇ ବୃନ୍ଦାଙ୍କସହ ପ୍ରସ୍ଥାନ)

## ପଞ୍ଚମ ଅଙ୍କ—ଦ୍ୱିତୀୟ ଦୃଶ୍ୟ

—କୁଞ୍ଜ—

( ଶ୍ରୀମତୀ ଓ ଶ୍ରୀକୃଷ୍ଣ )

ଶ୍ରୀମତୀ—ସୁନ୍ଦର ! କାହିଁକି ଆଜ ଶୁଣୁନାହଁ ?
କଜ୍ଜଳପାତି ଡାକଲାଣି ପରା ? ମୋତେ ଚନ୍ଧାପକାଇ
କଅଣ ଲଭ ଭଲ ? ଛାଡ଼ ! ମୁଁ ଯମୁନା ଯାଇ
ସଖିମାନଙ୍କ ସଙ୍ଗେ ମିଶିଯିବି ।

ଶ୍ରୀକୃଷ୍ଣ—ଅଦ୍ୟାପି ରାତି ଅଛି ଧନ ! ସକାଳ ହୋଇ
ନାହିଁ ତ ! ଆସ,

( ଶ୍ରୀମତୀଙ୍କୁ ବସାଇ )

ଗୀତ

ନବଦଳ ଶେଯପରେ ରଖ ସୁନ୍ଦରି,
ଚରଣ-କମଳ ତବ ଆଜ
ପାଉ ପରାଭବ ହେରି ପଦବରନ
ସୁନ୍ଦରପଣ ଯିବ ଲାଜ ।
କରକମଳେ ତବ ଚରଣ ଚାପି ସଖି,
ପଥ-ଶ୍ରାନ୍ତ ମୁଁ ଗଣ୍ଡେ
ଯେବେ ଆଶ୍ରିତ ମୁଁ ନୂପୁରସରି
ତବ ଶଯ୍ୟନପରେ ରଖ ଦଣ୍ଡେ ।
ଚନ୍ଦ୍ର ବଦନୁ ଝରେ ଅମୀୟ ସରିତମ୍ବର
ତବ ସଦୟ ବାଣୀ ରାଧେ !
କରେ, ଅପସାରିତ ବିରହ ସମେ ତବ
ସ୍ତନାବରଣ କଡ଼ ବାଧେ ।

ଶ୍ରୀମତୀ—ଶ୍ୟାମ, ଚରଣ ଧରୁଛି, କ୍ଷମା କର ମୋତେ ।
ବେଳ ଗଲା । ଆରେ, ମୋତେ ସାରିଛ ଯେ !
ଯିବି କେମିତି ? ଗୋଟିଗୋଟି ହୋଇ ଅଳଙ୍କାର-
ସବୁ ଏଣେ ତେଣେ ପଡ଼ୁଛି ! କେଶବାସ ଅସଜଡ଼ା
ରହିଛି । ଭଗାରି ହସିଲେ ତମକୁ ସୁନ୍ଦର ଦିଶିବ

ଅନୁମତି ଦିଅ ଭଲା । ( ପିନ୍ଧାଇ ଦେବାକୁ ଉଦ୍ୟତ ବେଳେ ବାଧାଦେଲେ ରାଧା )

ଶ୍ରୀମତୀ—ସୁନ୍ଦର, ମୁଁ ତାକୁ ହାତରେ ନେଉଛି । ମଥାରେ ପିନ୍ଧିବି । ଦିଅ ।

ଶ୍ରୀକୃଷ୍ଣ—ନା'ଇଁ ଧନି । ଲଗାଣ କର ନାହିଁ ମୋତେ । ଅନୁଗ୍ରହ କର । (ସଖୀମାନେ ହଠାତ୍ ପ୍ରବେଶକଲେ)

ଲଳିତା—ହେଇ, ହେଲା, ଆଉ ବାକି କଅଣ ? ଶ୍ରୀମତୀ, ପ୍ରିୟବନ୍ଦକୁ ଟିକିଏ ଅନାଅଁ । ରବି ଉଦୟକୁ ଆଉ ବା'କି କେତେ ? ଅସ, ଉଠ ।

ବୃନ୍ଦା—(ଶ୍ରୀମତୀଙ୍କୁ ଚାହିଁ) ଅରେ, ଏସବୁ କଅଣ ? ଏ କଅଣ କରଚ ସଖୀକି ଅମର ନଟବର । ଦେଖିଲୁଣି ଲଳିତେ, ଦେଖିଲୁଣି ବିଶାଖେ ! (ଶ୍ରୀମତୀଙ୍କୁ ଉଠାଇବାର ଚେଷ୍ଟା)

ଶ୍ରୀକୃଷ୍ଣ— କଅଣ ସହି ? କାହିଁକି ମୋତେ ଦୋଷ ଦେଉଚ ? ହାରଟି ପିନ୍ଧାଇ ଦେବାକୁ ଯାଉଥିଲି ମାତ୍ର । ଆଉ ତ କିଛି ନୁହେଁ । ମୁଁ ତ କିଛି ଜାଣି ନାହିଁ—

ଲଳିତା—ନା, କିଛି ଜାଣ ନି । ରଖ, ରଖ ତମ ହାର । ଅସ, ଉଠ । (ଉଠାଇବାର ଚେଷ୍ଟା) ଅରେ । ସଖୀର ତ ଉଠିବାର ବଳଥିବାପରି ଦିଶୁନାହିଁ—

( ଗୀତ )

ଧନ୍ୟ ହେ ନବକିଶୋର ସତୀ-ମତି ଧୃତି-ଚୋର
ନିଖିଳ ନାଗର ଶିରୋମଣି
ତୁମ୍ଭ ସଦୃଶ ମାନସ କୁଳଶିଳ୍ପୀ କରଙ୍କର
ବୋଲି ନ ଥିବାରୁ ଅମ୍ଭେ ଜାଣି
ଅହେ ଶ୍ୟାମବନ୍ଧୁ ।
ଅମ୍ଭ ସଖୀ ଲଭିଲା କି ଦଶା,
ଦମ୍ଭେ ଉଭହେବା ନାହିଁ ଅଶା
ଦେଲେ ତରୁଣ କେଶରୀ—
କୋଳେ କୁରଙ୍ଗୀ କିଶୋରୀ
ଦଇବେ କି ବଞ୍ଚିବା ଭରସା ।
ଅହେ ଶ୍ୟାମବନ୍ଧୁ,......
ତୂଳତଳପ ଶେଜାଇ-
ଦେବାର କୋମଳ ଦାଇ—
ଦଳ ଯାହା ଅଙ୍ଗେ ବସେ ରୁଢ଼,
ମରକତ ଅର୍ଗଳ-ବଳିଷ୍ଠ ବାହୁ-ଯୁଗଳ
ଲଗାଇ କେଡ଼େ ନିବିଡ଼େ ଭିଡ଼
ଅହେ ଶ୍ୟାମବନ୍ଧ,
କି ଚଞ୍ଚଳ ଭାବ ଥିଲା କାଲି ?
ବାଜି ତୁମ୍ଭ ଅଙ୍ଗସଙ୍ଗ-ଭାଲି
ଭଗ୍ନଚକ୍ର ମନମଥ ବିଜୟୀ ମଙ୍ଗଳରଥ-
ଗତି ସ୍ୱିତ ଚୈତ୍ରରଚ୍ଛ ଚାଲି
ଅହେ ଶ୍ୟାମବନ୍ଧୁ
କି ଚଞ୍ଚଳ ଭାବ ଥିଲା କାଲି । ୨ ।

ଶ୍ରୀକୃଷ୍ଣ—ଲଳିତେ । ମିଛରେ ମୋତେ ଦୋଷ ଦିଅ ନାହିଁ । ମୁଁ କିଛି ଅପରାଧ କରିନାହିଁ ତ ।

ବୃନ୍ଦା—ହଉ, ଜଣାଗଲା, ଗଲ ତୁମେ ଏଠୁଁ ।

ଶ୍ରୀକୃଷ୍ଣ—ପିବ ସହି, ବାକି ଏ ଗୁନ୍ଥା ହାରଟି ଲାଗି କରିବାର ସୁଯୋଗ ମୋତେ ଦିଅ ଭଲା । ଏତିକି ମୋର ଭିକ୍ଷା । ଆଉ ମୁଁ କିଛି ଚାହୁଁ ନାହିଁ ।

ବୃନ୍ଦା—ସତ୍ୟ କରୁଚ ତ ? ମ'ଳାଟି ଦେଇ ଆଉ ଦଣ୍ଡେ ଏଠି ରହିପାରିବ ନାହିଁ ।

ଶ୍ରୀକୃଷ୍ଣ—ସତ କହୁଚି ସହି, ଚାଲିଯିବି ।

ବୃନ୍ଦା—ତେବେ ଲଳିତେ, କଅଣ କହୁଚ ? ସଇ । ଅନୁମତି ଦିଅ ।

ଲଳିତା—ଯାହା କରନ୍ତୁ ପଛେ, ବେଗେ କୁଞ୍ଜରୁ ଯା'ନ୍ତୁ ହେ ବାକି ।

ବୃନ୍ଦା—ଶ୍ୟାମ, ଆଉ ବିଳମ୍ବ କାହିଁକି ?

(ଶ୍ରୀକୃଷ୍ଣ ଶ୍ରୀମତୀଙ୍କ ଗଳାରେ ମାଳାପ୍ରଦାନ)

( ସଖୀମାନଙ୍କ ମଙ୍ଗଳଗୀତ ଗାନ)

( ଗୀତ )

ହେ ନବନାଗର ରସିକସାଗର
ଭଲା ଭୁଲାଇଲ ସଖୀକି ଭଲା ସତେ ଲଖିକି-ହା ହା
ଗଲା ଜାତି କୁଳ, ଗଲା ମାନ-ଶୀଳ
କି ମିଠା କାଳିଆ ପୀରତି କି
ମଲା ସଖୀ ଚାଖିକି । ହା ହା

(ଯବନିକା ପତନ)

**ସମାପ୍ତ**

୧୯୭୫ ସାଲର କଥା । କଟକ ଚୌଧୁରୀବଜାର ଜୈନମନ୍ଦିରର ଖୋଲା ଥାନରେ 'ଗୀତଗୋବିନ୍ଦ' ନାଟକ ପରୀକ୍ଷା ହେଉଥାଏ । କେତେ ଦିନ ନାଟକଟି ଶୁଣିଲାପରେ ଦିନେ ମୋର ପ୍ରିୟ ଶିଷ୍ୟ ଶ୍ରୀମାନ୍ ଦୁର୍ଲଭ (ଚନ୍ଦ୍ର ସିଂହ) ମତେ ସେହି ବର୍ଷର ଅଶ୍ୱିନସଂଖ୍ୟା 'ଉତ୍କଳ-ସାହିତ୍ୟ'ର ଗୋଟିଏ ପ୍ରତି ଆଣି ଦେଖାଇଲେ । ସେଥିରେ ଅଭିନୟ-ଦର୍ଶନକାରୀମାନଙ୍କ ମଧ୍ୟରୁ ସୁପରିଚିତ କବି-ସାହିତ୍ୟିକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କରଙ୍କର ସମାଲୋଚନାଟିଏ ପ୍ରକାଶ ପାଇଥାଏ । ସେହି ସମାଲୋଚନାଟି ଆଜି ମୁଁ ନାଟକର ପାଠକପାଠିକାଙ୍କୁ ଏଠି ଦେଉଛି । ଅଭିନୟର ଦର୍ଶନପରେ ସମାଲୋଚନାଟି ଲେଖା ହୋଇଥିଲା । ତେଣୁ ସହୃଦୟ ପାଠକପାଠିକା ନାଟକଟି ପାଠ କରିସାରିବାପରେ ଏହି ସମାଲୋଚନାଟି ପାଠ କରିବେ,—ଅନୁରୋଧ ।

କାଳୀଚରଣ
୧-୧-୭୮

# 'ଗୀତଗୋବିନ୍ଦ'ର ଗୌରବ

ଉତ୍କଳର ଯୁବକ ନୃତ୍ୟଶିଳ୍ପୀ, ନାଟ୍ୟକଳାବିତ୍ କାନ୍ତକବି କବିଚନ୍ଦ୍ର ଶ୍ରୀଯୁକ୍ତ କାଳୀଚରଣ ପଟ୍ଟନାୟକଙ୍କ 'ଚମ୍ପୂ' ନାଟକ ଓଡ଼ିଶାର ସୁଧୀସମାଜ-ସମକ୍ଷରେ ଅଳ୍ପ ଦିନ ତଳେ ଏକ କମନୀୟ ଚିତ୍ରଶାଳା ଖୋଲିଦେଇଅଛି । 'ଚମ୍ପୂ'ପରେ ଏବେ କାଳୀବାବୁଙ୍କର 'ଗୀତଗୋବିନ୍ଦ' ନାଟକ ଉତ୍କଳ ବାଣୀମଣ୍ଡପକୁ ଦ୍ୱିତୀୟ (ଅଦ୍ୱିତୀୟ) ଅଭିନବ ଦାନ । 'ଗୀତଗୋବିନ୍ଦ' ବାସ୍ତବରେ 'ଚମ୍ପୂ'କୁ ବଳିପଡ଼ିଛି ନାନା ବିଭବ-ସମ୍ଭାରରେ । 'ଗୀତଗୋବିନ୍ଦ' ଅଭିନୟଦର୍ଶନର ସୌଭାଗ୍ୟ ଲାଭ କରିବାପରେ ମୋ ପ୍ରାଣରେ ଯେଉଁ କେତୋଟି ଭାବର ଉଦୟ ହୋଇଛି, ତାହା ଚୁମ୍ବକରେ ଏଠାରେ ନ ଲେଖିଲେ ଶିଳ୍ପୀଙ୍କପ୍ରତି ମୋ ଶ୍ରଦ୍ଧାଞ୍ଜଳିର ନୈବେଦ୍ୟ ଅପୂର୍ଣ୍ଣ ରହିଯିବ ।

ଏଠାରେ ସଂସ୍କୃତ 'ଗୀତଗୋବିନ୍ଦ'ର ନୁହେଁ, କାଳୀବାବୁଙ୍କ ଓଡ଼ିଆ 'ଗୀତଗୋବିନ୍ଦ'ର ସାର୍ଥକତା ଦେଖାଇବାକୁ ଯାଉଛି ମୁଁ ନମନୀୟ କବିଦୃଷ୍ଟିରେ । ପକ୍ଷାନ୍ତରରେ ତାହାଦ୍ୱାରାହିଁ ମୂଳ 'ଗୀତଗୋବିନ୍ଦ'ର ଗୌରବ ସହଜରେ ପ୍ରତିପାଦିତ ହୋଇଯିବ । ନାଟକୀୟ ବିଭବ ବା ଅଭାବ ପ୍ରଭୃତି ତୀକ୍ଷ୍ଣ ସମାଲୋଚକଭାବରେ କିଛି କହିବା ଏଠାରେ ମୋ ସୀମାର ଅନ୍ତର୍ଗତ ନୁହେଁ ।

ଏହି 'ଗୀତଗୋବିନ୍ଦ' ନାଟକର ସାର୍ଥକତା ପ୍ରଧାନତଃ ତିନୋଟି ବୈଶିଷ୍ଟ୍ୟ ଯୋଗୁଁ ପୂର୍ଣ୍ଣରୂପେ ସାଫଲ୍ୟମଣ୍ଡିତ ହୋଇଅଛି :

(୧) ଅମରକବି ଜୟଦେବ ଓ ତାହାଙ୍କ ଚିରନୂତନ ଗୀତକାବ୍ୟ 'ଗୀତଗୋବିନ୍ଦ'

(୨) କବିପ୍ରାଣ କାଳୀବାବୁ ଓ ତାଙ୍କର ମୂର୍ଚ୍ଛନାମୟ ଓଡ଼ିଆ 'ଗୀତଗୋବିନ୍ଦ' ନାଟକ

(୩) ନାଟ୍ୟଦଳର ନଟନଟୀଙ୍କର ଭାବୋଚ୍ଛ୍ୱାସଭରା ଅଭିନୟଭଙ୍ଗୀ

ଏହି ତିନୋଟି ସାବଲୀଳ ସାପେକ୍ଷ ସମନ୍ୱୟରେ 'ଗୀତଗୋବିନ୍ଦ' ବାସ୍ତବରେ ଉତ୍କଳର ସାହିତ୍ୟ-ରାଜ୍ୟରେ ସୂକ୍ଷ୍ମକଳାଖୋଦିତ ଏକ ବିରାଟ କୋଣାର୍କ ସୃଷ୍ଟି କରିଅଛି ।

ଏହି ଅଭିନୟଦର୍ଶନପରେ ମୋର ସୁପ୍ରତିଷ୍ଠିତ ଧାରଣା ହୋଇଅଛି ଯେ, ଓଡ଼ିଆ ସାହିତ୍ୟର ଏହି ନବଯୁଗରେ ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ଶୂରଦେଓଙ୍କ ପରେ କାନ୍ତ କୋମଳ, କମନୀୟ ନମନୀୟ ଭାବରେ ଏଭଳି ଖାଣ୍ଟି ଓଡ଼ିଆ ସଂଗୀତ ଲେଖିବାରେ କାଳୀବାବୁହିଁ ସମର୍ଥ ହୋଇଅଛନ୍ତି। କାଳୀବାବୁଙ୍କର କଅଁଳଛନଛନ ଲଳିତକଳାତ ସଙ୍ଗୀତକବିତାର ତରଙ୍ଗମୟ ଝଂକାର କେଉଁ ଓଡ଼ିଆର ହୃଦୟକୁ ନୃତ୍ୟଶୀଳ ନ କରିବ ? ତାଙ୍କର ଛନ୍ଦୋବିଳସିତ ବିଚିତ୍ର ସଙ୍ଗୀତଧାରା ଏହି 'ଗୀତଗୋବିନ୍ଦ'ରେ ଶରତ୍‌କାଳର ଶେଫାଳୀସୁରଭିତା କଳକଳଗୀତିରତା ଝରଣାଟିପରି କେତେ ମଧୁରମନ୍ଥର ତରଳ ଭଙ୍ଗୀରେ ମୂଳରୁ ଶେଷ ପର୍ଯ୍ୟନ୍ତ ତାଳେ ତାଳେ ନାଚି ନାଚି ଗତି କରି ଚାଲିଛି। ସଂଗୀତର ପ୍ରତ୍ୟେକ ଶବ୍ଦଯୋଜନା, ପ୍ରତ୍ୟେକ ଅକ୍ଷରବିନ୍ୟାସରେ ବିଶେଷତ୍ୱ ଅଛି—ସବୁ ଭାବମୟ, ସବୁ କବିତ୍ୱମୟ, ସବୁ ପ୍ରାଣସ୍ପର୍ଶୀ। ଓଡ଼ିଆ ହୃଦୟର ଭାଷା, ଓଡ଼ିଆ ପ୍ରାଣର ଆଶା—ସବୁ ଓଡ଼ିଆ ବେଶରେ, ଓଡ଼ିଆ ଆବେଶରେ, ଓଡ଼ିଆ ପରିବେଶରେ ରୂପାୟିତ ହୋଇଅଛି।

ଏହାଛଡ଼ା ନାଟ୍ୟକାର ଅତି ପୋଖତ ଓ ପୁରୁଖା ଦୃଷ୍ଟିରେ ମୁକୁତା-ପରଖା ମାଳାକାର-ପରି ପରଖି ପରଖି ଜୟଦେବଙ୍କ ଶ୍ରେଷ୍ଠ ଶ୍ରେଷ୍ଠ ରତ୍ନଯାକ ବେଛିଅଛି ତହିଁରେ ଯେଉଁ ବାଗ୍‌ବିଭବମୟ ନବ ଓଡ଼ିଆ ସଂଗୀତର ସୃଷ୍ଟି କରିଅଛନ୍ତି, ତାହା ପ୍ରକୃତରେ ଅତୁଳନୀୟ। ସଂସ୍କୃତ 'ଗୀତଗୋବିନ୍ଦ'ର ଶ୍ଳୋକାଂଶ ଓ ଗୀତଗୁଡ଼ିକୁ ତତ୍ତତ୍ ଛନ୍ଦରେ ସଂସ୍କୃତର ଗୁରୁ ଲଘୁ ନିୟମର ପୂର୍ଣ୍ଣ ସାମଞ୍ଜସ୍ୟ ରକ୍ଷା କରି, ସେତିକି ଅକ୍ଷରର ବା ମାତ୍ରାର ସୀମାମଧ୍ୟରେ ଆବଦ୍ଧ ରଖି ଯେ ଯେଉଁ ଅପୂର୍ବ ଓଡ଼ିଆ ସଙ୍ଗୀତ ରଚନା କରିଅଛନ୍ତି, ତହିଁର ସମକକ୍ଷ ଓଡ଼ିଆ ସାହିତ୍ୟରେ ଏହାହିଁ ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ। ଏହି ରଚନାରେ କାଳୀବାବୁଙ୍କର କବି-ହୃଦୟ, କଳାଗତ ପ୍ରାଣ ଓ ଜନ୍ମଗତ ସଙ୍ଗୀତପ୍ରାଣତାର ଚରମ ପରାକାଷ୍ଠା ପ୍ରକଟିତ ହୋଇଅଛି। ଲେଖକଙ୍କ ସ୍ୱରଚିତ ସଙ୍ଗୀତାବଳୀର ଅନୁପମ ଭାବ-ସମ୍ପଦ ସହିତ ବାଣୀବିଜୟୀ ଜୟଦେବଙ୍କର ଅତୁଳ କାବ୍ୟକଳା ମିଶ୍ରିତ ହୋଇ ଏକ କଳ୍ପନାତୀତ କଳ୍ପଲୋକର ସ୍ୱପ୍ନମୟ ସୃଷ୍ଟି ଶ୍ରୋତୃ ତଥା ଦର୍ଶକମାନଙ୍କ ଭାବନା-ରାଜ୍ୟରେ ବିହ୍ୱଳ କରାଇ ଦେଇଛି।

କେବଳ ଏତିକି ନୁହେଁ, ପ୍ରାଚୀନ ଉତ୍କଳର ଗୁରୁଗୌରବମୟ ଛାନ୍ଦ ଓ ସଙ୍ଗୀତର କେଉଁ ରତ୍ନାକରରେ ଯେ କାଳୀବାବୁ ପଶି ନାହାନ୍ତି, କହିବା କଷ୍ଟକର। କବିସୂର୍ଯ୍ୟ, ଗୋପାଳକୃଷ୍ଣ, ସାମନ୍ତସିଂହାର, ବନମାଳୀ ପ୍ରମୁଖ ପ୍ରାଚୀନ ଅମର କବିମାନଙ୍କ ବିଶିଷ୍ଟ ବିଶିଷ୍ଟ ରସମୟ ବର୍ଣ୍ଣନାର ସାର ତୋଳିଆଣି କବିଚନ୍ଦ୍ର କାଳୀଚରଣ ନିଜ 'ଗୀତଗୋବିନ୍ଦ'ର ଯଥାସ୍ଥାନରେ ଯେ ଖୁଣ୍ଡିକ ଖଞ୍ଜିଦେଇ ଗୀତଟିକୁ ଅଦ୍ଭୁତ ସ୍ୱୃଣୀୟତର କରିଦେଇଛନ୍ତି। ଏହି ଗ୍ରନ୍ଥନ-କୁଶଳତାରେ ନାଟ୍ୟଶିଳ୍ପୀଙ୍କର ଯେଉଁ ଗଭୀର ଅନ୍ତର୍ଦୃଷ୍ଟିର ଇଙ୍ଗିତ ମିଳୁଛି, ତାହା ଯଥାର୍ଥରେ ଅନବଦ୍ୟ।

ତାପରେ ନଟନଟୀମାନଙ୍କର ନୃତ୍ୟକଳା ଓ ଅଭିନୟଭଙ୍ଗୀ। 'ଗୀତଗୋବିନ୍ଦ' ନାଟକ କଟକନଗରରେ ବହୁବାର ଅଭିନୀତ ହେଲାପରେ ମଧ୍ୟ ଆଜିର ଅଭିନୟରେ ଦର୍ଶକ-ମଣ୍ଡପ ପରିପୂର୍ଣ୍ଣ ହୋଇଯାଇଥିଲା। ଏହାହିଁ ଅଭିନେତାମାନଙ୍କର ଶ୍ରେଷ୍ଠ ମାନପତ୍ର ଏବଂ ସେମାନଙ୍କର କୃତିତ୍ୱୋତ୍କର୍ଷ ପ୍ରମାଣକ ଦର୍ଶକସାଧାରଣଙ୍କ ହୃଦୟର ଶ୍ରେଷ୍ଠ ଗୁଣାନୁବାଦମୟ ଅର୍ଘ୍ୟ।

କୃଷ୍ଣ ଓ ରାଧା ଏହାର ମୁଖ୍ୟ ନାୟକ ଓ ନାୟିକା ହେଲେହେଁ ମଧୁମଙ୍ଗଳ ଓ ଲଳିତାହିଁ ଏହି ଅପ୍ରାକୃତ ମିଳନଲୀଳାର ସୁଭଶଙ୍ଖବାଦକ । ସେହିମାନଙ୍କ ବାଲାସପାଠବଦରେହିଁ ସମଗ୍ର ଅଭିନୟଟି ଉତ୍ସବମୟ ହୋଇଉଠିଛି । ଏ 'ଗୀତଗୋବିନ୍ଦ'ର ପ୍ରଧାନ ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟ ଏହି ଯେ, ରାସେଶ୍ୱରୀ ରାଧା ନଟରାଜଙ୍କ ଦୈବୀ ପ୍ରତ୍ୟାଖ୍ୟାନକୁ କେବେହେଲେ ରୋଷ ବା ବିରାଗ ଚକ୍ଷୁରେ ଦେଖି ନାହାନ୍ତି, ବରଂ ନିଜର ଦୁର୍ଭାଗ୍ୟକୁ ଧିକ୍କାର ଦେଇ ରାସେଶ୍ୱରଙ୍କପାଇଁ ଅଧିକତର ପ୍ରେମ ଓ ଅନୁରାଗର ଅର୍ଘ୍ୟ ଯେମିତି ଉତ୍କଣ୍ଠିତା ହୋଇ ବସିଅଛନ୍ତି । 'ଚମ୍ପୂ' ନାଟକର ସ୍ଥଳବିଶେଷରେ ଶାରୀରିକ ମିଳନ ବା ପାର୍ଥିବ ସଂଭୋଗଲାଳସାର ଅଗ୍ରାସ ଅଭିନୟରୁ କିଂଚିତ୍ ସୂଚିତ ହେଉଥିଲା, ଫଳରେ ଭକ୍ତିଭରା ଦୃଷ୍ଟିରେ ଦେଖିବାକୁ ବସିଥିଲେହେଁ ଦର୍ଶକର ମଝିରେ ମଝିରେ ଝୋବାଠରୁ ଖସିପଡ଼ିବାର ଆଶଙ୍କା ଥିଲା; କିନ୍ତୁ ମୋର ଦୃଢ଼ ବିଶ୍ୱାସ—'ଗୀତଗୋବିନ୍ଦ' ସେ ଦୋଷରୁ ସମ୍ପୂର୍ଣ୍ଣ ମୁକ୍ତ । ମୁଗ୍ଧ ଚକ୍ଷୁ ଓ ନିବିଷ୍ଟ ପ୍ରାଣରେ ମୁଁ ଆରମ୍ଭରୁ ଶେଷପର୍ଯ୍ୟନ୍ତ ଏକମନରେ ଏକଧ୍ୟାନରେ ଅଭିନୟଟି ଉପଭୋଗ କରିଅଛି; କିନ୍ତୁ କୌଣସି ସ୍ଥାନରେ ହେଲେ ମୋ ହୃଦୟରେ ମର୍ତ୍ତ୍ୟରାଜ୍ୟର ଅବିଳ ପ୍ରେମାକୁଳତା କ୍ଷଣକପାଇଁ ସୁଦ୍ଧା ଅଣୁମାତ୍ର ପ୍ରଶ୍ରୟ ପାଇବାକୁ ଅବସର ପାଇ ନାହିଁ । ସତେ ଯେପରି କେଉଁ ସୁଦୂର ପୂର୍ବଯୁଗର ସେହି କଳକଳନା କାଳିନ୍ଦୀତଟ, ସେହି ସୌରଭବାସିତ କୁସୁମ-ସୁଷମିତ ବସନ୍ତକାନନ ମୋ ଆଖିଆଗରେ ସ୍ୱପ୍ନାବାଜି ପରି ପ୍ରତିଭାତ ହୋଇଉଠିଲା । ସତେ ଯେପରି ସେହି—

"ନୀପତରୁତଳେ ତମାଳ-କୁଞ୍ଜେ
ଲଳିତ ନୂପୁର ଛନ୍ଦଲୀଳା
ରଚିଥିଲା ଯେତେ ଉତ୍ସବ, ସବୁ
ଦିଶି ଦିଶିଯାଏ ନୃତ୍ୟଶୀଳା ।

(ଉଦ୍ଧୃତ ନୁହେଁ)

ପୁଣି ଆଖିଆଗରେ ଭାସିଉଠିଲା ଅଭିମାନିନୀଙ୍କର ସେହି ବିକଳ କରୁଣ ବିଷାଦମୂର୍ତ୍ତି । ହତାଶ ପ୍ରାଣରେ କୁଞ୍ଜତ୍ୟାଗପୂର୍ବରୁ ସତେ ଯେପରି ବନଦେବୀଙ୍କୁ କହିଗଲେ :

"କୁଞ୍ଜର ତୋର ପତ୍ରପୁଞ୍ଜେ
ନିଃଶେଷି ମୋର ଅଶ୍ରୁଧାରା
ଯାଉଛି ଗୋ ଏବେ ପିନ୍ଧାଇ ଅଙ୍କ
ମୁକୁତାର ଏହି ଅର୍ଘ୍ୟମାଳା ।"

(ଉଦ୍ଧୃତ ନୁହେଁ)

ଏତିକରେ ଶେଷ ନୁହେଁ, ଅଶାର ପଦ୍ମିଣୀ ରାଧାଙ୍କର ଏହି ନୈରାଶ୍ୟରେ ପର୍ଯ୍ୟବସିତ ହେଲେହେଁ ପୁଣି ତାଙ୍କ ପ୍ରାଣରେ ଅଶାର ଉଦୟ ହୋଇଛି—ପୁଣି ସେ ରସରାଜଙ୍କ ଚରଣଧୂଳି-ପାଇଁ ଅଞ୍ଚଳ ପତାଇ ଚଞ୍ଚଳ ପ୍ରାଣରେ ଗୃହିଁବସିଛନ୍ତି । କୋକିଳର କୁହୁତାନ ତାଙ୍କ ପ୍ରାଣରେ ମିଳନର ଶୁଭ ସଙ୍କେତ ଦେଇଛି । ଯେତେବେଳେ ସେ ଶ୍ରବଣ ଡେରି ତଦ୍‌ଗତ ପ୍ରାଣରେ ତାହା ଶୁଣିଛନ୍ତି । କେତେ ଅଶା-ନିରାଶାର ଦ୍ୱନ୍ଦ୍ୱରେ ପଡ଼ି ତାଙ୍କ ପ୍ରାଣଦୟିତଙ୍କୁ ଡାକିଛନ୍ତି :

"ଅନ୍ତର-ଦେବତା ମୋ ଅନ୍ତରଯାମି ହେ
ପରଶିବ ନାହିଁ ଯେବେ ପ୍ରାଣ ମୋର ସ୍ୱାମି ହେ
ସ୍ନେହ ପ୍ରୀତି ଗୌରବ
ରୂପରେଖା ସୌରଭ
ନିଷ୍ଫଳ ସିନା ମୋର ଜୀବନର ଯାମୀ ଏ
ଅନ୍ତର-ଦେବତା ମୋ ଅନ୍ତରଯାମି ହେ ।

( ଉଦ୍ଧୃତ ନୁହେଁ )

ସଜନୀଙ୍କର ଏହି ବ୍ୟାକୁଳ ମିନତିରେ ବ୍ୟଥିତା ହୋଇ ରସପ୍ରବୀଣା ସୁଲଳିତା ଲଳିତା ତାଙ୍କୁ ପ୍ରବୋଧ ଦେଉଛନ୍ତି—କେତେ ଆଶାର ଆଲୁଅ ଦେଖାଉଛନ୍ତି; ତଥାପି ପ୍ରେମମୟୀ ଅସ୍ଥିରା ନ ହୋଇ ଉତ୍କଣ୍ଠିତା ହୋଇଉଠିଛନ୍ତି ।

ଧୈର୍ଯ୍ୟଶୀଳା ଲଳିତା ଏଥିରେ ବିଚଳିତା ନ ହୋଇ ପୁଣି କେତେ ସାନ୍ତ୍ୱନା ଦେଉଛନ୍ତି; ତଥାପି ଉନ୍ମାଦିନୀ-ପ୍ରାଣରେ ଧୈର୍ଯ୍ୟର ସଞ୍ଚାର ହୋଇ ନାହିଁ । ଚତୁର୍ଦ୍ଦିଗ ତାଙ୍କୁ ଅନ୍ଧକାରମୟ ଦେଖାଯାଉଛି । ସେ ଶେଷରେ ପ୍ରାଣେଶ୍ୱରଙ୍କ ଆଗମନରେ ବିଳମ୍ବ ଦେଖି ଲଳିତାକୁ ଅତି କାରୁଣ୍ୟରେ କୁଣ୍ଠାରହିତ ହୃଦୟର ଶେଷବାଣୀଟି କହି ତା ବୁକୁରେ ଢଳିପଡ଼ିଛନ୍ତି ।

ପ୍ରେମ-ପାଗଳିନୀଙ୍କ ଅନନ୍ତ ପ୍ରେମର ଚରମ ପରାକାଷ୍ଠା ଏହିଠାରେ । ଏପରି ଉତ୍କଣ୍ଠାମୟ ପ୍ରେମାନୁଭବର ଚିତ୍ର ବିଶ୍ୱସାହିତ୍ୟରେ ବିରଳ ।

ତେଣେ ଅପ୍ରାକୃତ ପ୍ରେମମୂର୍ତ୍ତି ରସରାଜ ଶ୍ରୀକୃଷ୍ଣ ପ୍ରତୀକ୍ଷମାଣା ତଦ୍‌ଗତପ୍ରାଣା ରାଧାଙ୍କର ବ୍ୟାକୁଳ ବେଦନା କଥା ଭାଳିହୋଇ କେତେ ଅଶ୍ରୁ-ଆସାର ବର୍ଷିଛନ୍ତି—ନିଜର ସେହି ସାକ୍ଷାତ୍ ଅପର ବିଗ୍ରହର ମିଳନପାଇଁ କେତେ ଆଶାର ରାଗିଣୀ ତୋଳିଛନ୍ତି ।

ଏହିରୂପେ ଆଶା-ନିରାଶାର ଓ ଅଶ୍ରୁ ହାସ୍ୟର ଲୁଚକାଳିମଧ୍ୟରେ ଶେଷରେ ସେହି ଅବିଚ୍ଛେଦ୍ୟ ପ୍ରେମବିଗ୍ରହଦ୍ୱୟର ପୂତମହତ୍ ମିଳନ ସାଧିତ ହୋଇଅଛି । ନାଟ୍ୟଶିଳ୍ପୀ ଶେଷପର୍ଯ୍ୟନ୍ତ ଏହି ଅନାବିଳ ପ୍ରେମଭକ୍ତି-ରସରେ ପାଠକ ତଥା ଦର୍ଶକମାନଙ୍କୁ ଯେ ବୁଡ଼ାଇରଖିପାରିଛନ୍ତି, ଏହାହିଁ ବିଶେଷଭାବରେ ସୂଚାଇଦେବାପାଇଁ ଏତେଗୁଡ଼ିଏ ପ୍ରସଙ୍ଗର ଅବତାରଣା କଲି । ଅଧୁନାତ ତଥା ପ୍ରାଚୀନ ଲେଖକମାନଙ୍କପରି ଗତାନୁଗତିକ ପନ୍ଥା ଓ ପଦ୍ଧତି ଧରି ଚାଲିବାକୁ ଆଦୌ ଚହିବାକୁ ଯାଇ ନାହାନ୍ତି—ତାଙ୍କ ଲେଖାରେ କୌଣସିଠାରେ ଉତ୍କଟ ଆଦିରସର ଉଗ୍ରତାର ଗନ୍ଧ ସୁଦ୍ଧା ପଡ଼ି ନାହିଁ । ଏଥିରେ ପୁଣ୍ୟାତ୍ମା ଜୟଦେବଙ୍କ ପ୍ରାଣର ମହତ୍ତ୍ୱହିଁ ଛନ୍ଦେ ଛନ୍ଦେ ପ୍ରତିବିମ୍ବିତ ହୋଇଅଛି । ବସ୍ତୁତଃ ଏ ସମସ୍ତ ସେହି ମହାକବିଙ୍କ ଗୌରବ ଓ ମହାପୃସ୍ତା ଛଡ଼ା ଆଉ କିଛି ନୁହେଁ । ପକ୍ଷାନ୍ତରରେ 'ଚମ୍ପୂ' ଓ 'ଗୀତଗୋବିନ୍ଦ' ରଚୟିତ୍ର କବିସୂର୍ଯ୍ୟ ଓ ଜୟଦେବଙ୍କ ହୃଦୟମଧ୍ୟରେ ଭକ୍ତି-ରସର ପାର୍ଥକ୍ୟ ମଧ୍ୟ ଜଣାପଡ଼େ । ମୋଟଉପରେ କହିବାକୁ ଗଲେ 'ଚମ୍ପୂ' ଟିକିଏ ଆଦିରସପ୍ରଧାନ ଏବଂ 'ଗୀତଗୋବିନ୍ଦ' ଭକ୍ତିରସପ୍ରଧାନ ହୋଇପାରିଛି ।

ମୋର, କେତେକଙ୍କ ଭଳି, ମନେ ହୁଏ, ରଙ୍ଗମଞ୍ଚରେ ଅଭିନେୟ ନାଟକ ଭାବରେ କାଳୀବାବୁଙ୍କର 'ଗୀତଗୋବିନ୍ଦ' ମୂଳ ସଂସ୍କୃତ 'ଗୀତଗୋବିନ୍ଦ'କୁ ବୋଧ ହୁଏ ବଳିଯାଇଛି । ଜୟଦେବଙ୍କର ଦୟା ଓ ଦାନରେ ପୁଷ୍ଟ ଓ ବିକଶିତ ହୋଇ ମଧ୍ୟ ତାହା ଜନ୍ମଦାତା ଜୟଦେବଙ୍କୁ ସ୍ଥାନେ ସ୍ଥାନେ ଟପିଯାଇ ତାଙ୍କର ଅପାର କୀର୍ତ୍ତିର ଜୟଗାନ କରିଅଛି । ଅନ୍ୟଭାବରେ କହିବାକୁ ଗଲେ, ସଂସ୍କୃତ 'ଗୀତଗୋବିନ୍ଦ'ର ଅଭିନେୟାଂଶମାନ ଅତି ନିପୁଣତା ସହକାରେ ଚୟନ କରିଆଣି କାଳୀବାବୁ ଜୟଦେବଙ୍କ ରସମାଧୁରୀଗୁମ୍ଫିତ ପ୍ରେମ-ଛବିଟିକୁ ଅଦ୍ଭୁତ ଜୀବନ୍ତ ରୂପ ଦେଇପାରିଛନ୍ତି । ଆମ୍ଭମାନଙ୍କର ଏଠାରେ ନାଟ୍ୟକାରଙ୍କୁ ଅନୁରୋଧ ଯେ, ସେ 'ଚମ୍ପୂ' ଓ 'ଗୀତଗୋବିନ୍ଦ' ପରି ଓଡ଼ିଆର କୃତିତ୍ୱପୂର୍ଣ୍ଣ ପ୍ରାଚୀନ କୃତି 'କୋଟିବ୍ରହ୍ମାଣ୍ଡସୁନ୍ଦରୀ', 'ବିଦଗ୍ଧଚିନ୍ତାମଣି', 'ଲାବଣ୍ୟବତୀ', 'ସମରତରଙ୍ଗ', 'ପ୍ରବନ୍ଧପୂର୍ଣ୍ଣଚନ୍ଦ୍ର' ପ୍ରଭୃତି କାବ୍ୟର କଥାବସ୍ତୁଗୁଡ଼ିକୁ ମୂଳପିଣ୍ଡ କରି ଏହିପରି ରସମୟ ନାଟକାବଳୀ ନିର୍ମାଣପୂର୍ବକ ଉତ୍କଳବାଣୀଭଣ୍ଡାରରେ ସାଇତି ଦେଇଯାଆନ୍ତୁ । ତାହାଦ୍ୱାରା ସେ ଓଡ଼ିଶାରେ ଅମର ହୋଇ ରହିବେ, ଆଉ ଓଡ଼ିଶାର ପ୍ରାଚୀନ ସାହିତ୍ୟ-ବିଭବ ତାହାଦ୍ୱାରା ଅଦ୍ଭୁତ ଉଜ୍ଜ୍ୱଳ ସୁନ୍ଦର କମନୀୟ ରୂପରେ ଜଗତର ଚକ୍ଷୁଆଗରେ ଉଦ୍ଭାସିତ ହେବ ।

ଜୟଦେବଙ୍କ ଜନ୍ମଭୂମି ଓଡ଼ିଶାର ସୃଷ୍ଟ ସାହିତ୍ୟକଳା ଭାରତରେ ଅଦ୍ୱିତୀୟ । କାଳୀବାବୁ ନିଜକୁ ଓ ନିଜ ଅଭିନେତୃଦଳକୁ କେବଳ ଓଡ଼ିଶାରେ ଆବଦ୍ଧ ନ ରଖି ଯେବେ ଦେଶର ବିଭିନ୍ନ ପ୍ରାନ୍ତକୁ ଯାଇ ଏହି ନାଟକ ପ୍ରଦର୍ଶନ କରନ୍ତେ, ତାହେଲେ ଯଥାର୍ଥରେ ତଦ୍ଦ୍ୱାରା ଜୟଦେବଙ୍କପ୍ରତି ଓଡ଼ିଶାର ଶ୍ରେଷ୍ଠ ପୂଜା ଅର୍ପିତ ହୋଇପାରନ୍ତା ।

ବାକ୍ୟ ଅଛି—ସ୍ୱାସ୍ଥ୍ୟ, ସମ୍ପଦ, ଶାନ୍ତି ଓ ସୁବିଧା ଏ ସବୁଗୁଡ଼ିକ ଠିକ ନ ଥିଲେ ବାଗ୍‌ଦେବୀଙ୍କ ଉପାସନା ବିଡ଼ମ୍ବନାରେ ପର୍ଯ୍ୟବସିତ ହୁଏ । ମାତ୍ର କାଳୀବାବୁ ପ୍ରାୟ ଏ ସବୁଗୁଡ଼ିକରେହିଁ ହୀନ । ତଥାପି ତାଙ୍କର ଅଦମ୍ୟ ଅଧ୍ୟବସାୟ ମଞ୍ଜିଳବାର ନୁହେଁ । ସେ ନାନା ଜଞ୍ଜାଳଜାଲ ଓ ବାଧାବିପଦର ସମ୍ମୁଖୀନ ହୋଇ ସୁଦ୍ଧା ଯେପରି ଅବିଚଳଚିତ୍ତରେ ସେସମସ୍ତପ୍ରତି ଭ୍ରୂକ୍ଷେପ ନ କରି ଆଜୀବନ ସେହି ବାଣୀପୂଜାରେହିଁ ଲାଗିରହିଛନ୍ତି, ତାହା ବାସ୍ତବରେ ଅନନ୍ୟସାଧାରଣ । ମାତୃଭୂମି ତଥା ଉତ୍କଳ-ଭାରତୀଙ୍କର ନଗଣ୍ୟ ସେବାକାରୀ ଭାବରେ ଆମେ ଆଉ କଣ ଆଶା କରିବା ? କରିବା କେବଳ କାଳୀବାବୁଙ୍କର ଅଜେୟ ମନୋବଳ ଓ ଅଧ୍ୟବସାୟ ସହିତ ଦୀର୍ଘଜୀବନ ଓ ଅକ୍ଷୟଶାନ୍ତି । ମା ବାଗ୍‌ଦେବୀ ତାଙ୍କ କଣ୍ଠରେ ମଳୟ ଓ ଲେଖନୀରେ ଚନ୍ଦନ ଲଗାଇଦିଅନ୍ତୁ, ତାଙ୍କ ଲେଖନୀ ବଜ୍ର ହେଉ । ସେ ପ୍ରଭୁଙ୍କ ଆଶୀର୍ବାଦବଳରେ ମାତୃଚରଣର ଶ୍ରେଷ୍ଠ ପୂଜାରୀ ହୋଇ, ରଙ୍ଗମଣ୍ଡପର ଶ୍ରେଷ୍ଠ ପୁରୋଧା ହୋଇ ଅପେ ଗୌରବାନ୍ୱିତ ହୁଅନ୍ତୁ ଏବଂ ପ୍ରତ୍ୟେକ ଉତ୍କଳୀକୁ ସେହି ଗୌରବର ଅଂଶିକ ଅଧିକାରୀ କରନ୍ତୁ ।

ଶ୍ରୀ କୃଷ୍ଣଚନ୍ଦ୍ର କର

# ନିବେଦନ

ଏଥିପୂର୍ବରୁ ମୁଁ ମୋର ନାଟ୍ୟସଂଘ ଦ୍ୱାରା ଅନେକଗୁଡ଼ିଏ 'ରାସ' ମଞ୍ଚସ୍ଥ କରିଛି ଓଡ଼ିଶାର ପୁରପଲ୍ଲୀରେ । ସେଗୁଡ଼ିକ ଗୀତବହୁଳ ନାଟ୍ୟରୂପେ ପରିବେଶିତ । ଅଧିକାଂଶ ନାଟକର ଗୀତ ମାନ ସ୍ଥଳ-କାଳ-ପାତ୍ର ଅନୁଯାୟୀ ରସମୁଖୀ ରାଗ-ରାଗିଣୀରେ ଲେଖିଛି ମୁଁ । ହେଲେ ମଧ୍ୟ କୌଣସିଟି ଗୀତ ମୋ ପୂର୍ବପୁରୁଷଙ୍କ ରଚନାର ସମକକ୍ଷ ନୁହେ ବୋଲି ମୋର ଧାରଣା । ସେଇଁ ଗୀତ-କବିମାନଙ୍କର ପଦାଙ୍କ ଅନୁସରଣ କରି ମୁଁ ନିଜକୁ ସୌଭାଗ୍ୟବାନ୍ ମଣୁଛି, ଏହି ପ୍ରୀତିସୁଧାକର ନାଟକଟିରେ ସେହିମାନଙ୍କ ରଚନାରୁ କିଛି ବାଛି ବାଛି, ଯଥାସ୍ଥାନରେ ଖଞ୍ଜି, ରସିକ ସହୃଦୟଙ୍କ ପରଷି ଦେଉଛି । ଅବଶ୍ୟ କେତେକ ସ୍ଥାନରେ ନିଜର ରଚନା ଯୋଗ କରାଯାଇଛି, ଆବଶ୍ୟକ ମନେ କରି ।

ପୂଜ୍ୟପାଦମାନଙ୍କ ସ୍ମୃତିସ୍ମରଣ ଓ ପ୍ରଣତ ନିବେଦନର ଏ ସୁଚିନ୍ତିତ ବ୍ୟବସ୍ଥା ଲାଗି ମୋତେ ଉପଦେଶ ଦେଇଛନ୍ତି ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଶ୍ରୀ ଶଶିଭୂଷଣ ରାୟ ମହୋଦୟ ! ଏଥିନିମିତ୍ତ ମୁଁ ତାଙ୍କ ନିକଟରେ ଚିରକୃତଜ୍ଞ ।

ପ୍ରଥମ-ଅଭିନୟ ରଜନୀରେ ଭାଷାକୋଷ ପ୍ରଣେତା ଶ୍ରୀଯୁକ୍ତ ପ୍ରହରାଜ ମୋତେ ଆଶୀର୍ବାଦ କରି ନାଟକ ଉନ୍ମୋଚନ କରିଛନ୍ତି । ଚିରଦିନ ମୁଁ ତାଙ୍କର ଏ ଅଶିଷ ଭିଖାରି ।

କାଳୀଚରଣ
୮ । ୯ ୩୭

---

ନାଟ୍ୟଭୂମିକା :

ଶ୍ରୀକୃଷ୍ଣ, ମଧୁମଙ୍ଗଳ, ଗୋପବାଳକ ଗଣ ।

---

ଶ୍ରୀମତୀ, ଲଳିତା, ବିଶାଖା, ଗୋପୀଗଣ ।

---

# ପ୍ରୀତିସୁଧାକର

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ ।

( ଯମୁନାତଟ ବାସ୍ତ୍ରି ପଥ—ଗୋଧୂଳୀ ବେଳା—ବନ୍ଦାପନା ସାମଗ୍ରୀ ଘେନି ଶ୍ରୀମତୀ ଓ ସଖୀଗଣ ଅସୁଥିଲେ )

ସଖୀଗଣ— ( ଗୀତ)

ଦେଖିବ ସବୁ ଅସ ଅସ ବାସ ନୟନା । ଘୋଷା ।
ଶୃକ୍ଟୀରେ ଶୋହେ ଚନ୍ଦ୍ରିକା ଚୂଳ
ନାନାରତନେ ଯତନେ କୁଣ୍ଡଳ
ଚନ୍ଦ୍ରମୁଖେ ଲୁଚେ ସୁଇନ୍ଦ୍ରନୀଳମଣିଜିତ ବରନା ।୧।
ଶିଖିଫଣି ମଣି କରେ କ୍ର ନତ୍ୟ
ଶ୍ରୀଛଟରେ ଶୋଭିତ ମୁରଲୀ ଗୀତ
ଦୁଃଖିଜନମାନେ ସୁଖିତ ହୋଇବେ
ମାନିନୀ ମାନ ହେବ ଚୂନା ।୨।
ମଦନ ମୋହନ ମୁରତି ତା'ର
ପାଦ ନ ଚଳଇ ଦେଖିଲେ ମୋର
ରେ କୋଟିକୋଟି କରେ ପ୍ରହାର
ମାରଇ ଅପଘନ ସିନା ।୩।
ଝଲମଲ ପୀତପଟ ଶୋଭେ
ଝୁମୁ ଝୁମୁ ଝୁମୁ ନୂପୁର ବାଜେ
ଧୈର୍ଯ୍ୟ ତେଜି ହେବ ଅଜି ନୃତ୍ୟ ଗୀତେ ହତ ଚେତନା ।

( ଶ୍ରୀମତୀଙ୍କ ପ୍ରବେଶ )

ଲଳିତା—( ଶ୍ରୀମତୀଙ୍କ ପ୍ରତି ) ସବୁଦିନ ଗୋଟେ ଏମିତି ମଠ କରୁଛ ସ ? ତମକୁ ସବୁ ମୁଁ କେତେ-ବେଳୁ କହୁ ଅସିଲଣି ?

ବିଶାଖା—ପଡ଼ି ତ ନଥିଲ ଯେ, ଗୋଟେଇ ଅଣିବୁ ? ଅସୁଛୁଁ ତ । ଜଟୀଳା କୁଟୀଳାଙ୍କୁ ଫେର୍ ସମ୍ଭାଳି ଅସିବୁଁ ତ ?

ଶ୍ରୀମତୀ—ଲଳିତେ ! କେତେ ବାଟ ଅଉ ଯିବା ?

ଲଳିତା—ନାହିଁଗୋ ଧନି, ତମର ତ ଯାହା ଉତ୍ତର । ଏଇଟି ଥାଅ । ଅଖି ମନ ଏଇଠି ପବିତ୍ର ହେବ ଯେ । ହେଉଛି—

( ଗୀତ )

ପୂରବୀ—ଝୁଲା

ଅସୁଛନ୍ତି ବ୍ରଜବାସୀ ଧୀରେ ଧୀରେ ଚୁଲି ଗୋ ।୦।
ଦିନ ଶେଷ ସମୟରେ ରହୁ ସୁରଭି ପଛରେ
ବଜାଉଛନ୍ତି ମୁରଲୀ
ଧୀରେ ଧୀରେ ଚୁଲି ଗୋ ।୧।
ଇନ୍ଦ୍ର ନୀଳମଣି ତନୁ ପରିହାସ ଜାତ ମନୁ
ଝୁଲୁନ୍ତି ବରହ୍ମ ଝାଲି
ଧୀରେ ଧୀରେ ଚୁଲି ଗୋ ।୨।
ଦେଖିବା ସଜନୀ ଚୁଲି ନୋହୁବା ଟି ଚଲବଲ
ଫିଙ୍ଗିବେ ସେ ନେତ୍ର ଭଲି
ଧୀରେ ଧୀରେ ଚୁଲି ଗୋ ।୩।
ନାଗେଶ୍ୱର ନାଦ ପର କଟୀ କିଙ୍କିଣୀ ଜଜର
ଖେଳାନ୍ତି ଅହ୍ନ ଭ୍ରୂବଲ୍ଲୀ
ଧୀରେ ଧୀରେ ଚୁଲି ଗୋ ।୪।

( ଶ୍ରୀକୃଷ୍ଣ, ମଧୂମଙ୍ଗଳ ଓ ସୁବଳ ଇତ୍ୟାଦି ପ୍ରବେଶ )

ମଧୂ—ଏମାନେ କିଏ, ଚୁହିଁଲ ସଖା ?

ଶ୍ରୀକୃଷ୍ଣ—କିଏ, କାହାନ୍ତି ?

ମଧୂ—ହେଇ, ତମ ଅଗରେ ପଥ ବାଟ ଜଗି ବସିଛନ୍ତି ।

ଶ୍ରୀକୃଷ୍ଣ—କାହିଁକି ଏମାନେ ଏଠିକି ଅସିଛନ୍ତି ବଟୁ ?

ମଧୂ—ତମର ଗୋଠ ବାହୁଡ଼ାକୁ ଚୁହିଁଛ, ଅଉ ଫେର୍ କାହିଁକି ?

( ଗୀତ )

ଗୋପୀଏ ଅର୍ଦ୍ଧ୍ୟ ବନ୍ଦାନ୍ତି ମଙ୍ଗଳ—ଶୁଭମଙ୍ଗଳ
ଗୋପୀଗଣ—ଗୋଠନ ବାହୁଡ଼ା ବେଳେ
ଗୋରୁ ଗୋପାଳଙ୍କ ମେଳେ
ପଛେ ଶ୍ରୀକୃଷ୍ଣ ଗୋପାଳେ ଖୋଷି ଜାମୁ ଡାଳେ ଡାଳେ
ବାଳକଗଣ—ବଜାଇ ଖେମଟା ତାଳ-
କରତାଳ କୁତୁହଳ
ଗୋପୀ—ନାଚନ୍ତି ନନ୍ଦଦୁଲାଳ ଗୋପ ନଗର ଚହଳ

ବାଳକଗଣ—କର୍ଣ୍ଣରେ କୁଣ୍ଡଳ ଲେକେ-
ତୃପ୍ତତାଳ ପଡ଼ିବାରେ
ଗୋପୀ—ବଂଶୀବାଇ ନେଵ ଢାଳେ
ହରଷେ ମନକୁ ହରେ ।
( ଗୋପୀମାନେ ବନ୍ଦାପନା କଲେ ଓ ଶ୍ରୀକୃଷ୍ଣ ଆଦ ଗୋପାଳଙ୍କ ପ୍ରସ୍ଥାନ )

ଲଳିତା—ଶ୍ରୀମତୀ ! ତମ ସେବା, ତମ ତପ, ତମ ଭାଗ୍ୟକୁ ଏ ସାରା ଗୋପର ଗୋପୀକାମାନେ ଭାଗ୍ୟବତୀ । ନୋହିଲେ ଏ ଇନ୍ଦ୍ର ନୀଳମଣି କ ସହଜରେ ମିଳେ ? ବଧାତା ନିଷ୍କୁଣ କବ, ସୁନ୍ଦର କବ, ମଧୁର କବ, ଲଳତ କବ, ହାତ ନ ଲଗାଇ ମନେ ମନେ ଚପି ଏ ତନୁ ଗଢ଼ି ନଥିଲେ— ଶ୍ୟାମରୂପ ଏଡ଼େ କମନୀୟ ହୋଇ ନଥାନ୍ତା ।

ବିଶାଖା—ସତ କହିଲ ସଖୀ—
( ଗୀତ )

କ ଦେଖିଲି ଆଜ ନେଵ ଲେ ସଜନୀ
କ ଦେଖିଲି ଆଜ ନେଵ,
ଲଳିତ ମୂରତି କଳିତ ନୋହିଲି
ଦଳିତ ଅଞ୍ଜନ ଗାବ ।୦।
ଅଳକା କପୋଳେ ଚପଳା କ ଖେଳେ
କେକୀ ପୁଚ୍ଛ-ଚନ୍ଦ୍ର ଚୂଳ,
ଶ୍ରବଣେ ଜଡ଼ିତ ଯତନେ କୁଣ୍ଡଳ
ଝଲକେ ଚଣ୍ଡ ମଣ୍ଡଳରେ, ରଜନୀ ।୧।
ହୃଦରେ ପଦକ କବର ମାଦକ
ବାଦ କରେ ନିଶାକର,
କାମିନୀ ଗଣ- କୁମୁଦ ପ୍ରଫୁଲ୍ଲିତ
କରୁଥାଇ ଲେକତର, ରେ ସଜନୀ ।୨।

ଶ୍ରୀମତୀ— ଯାଉ ସହ କୁଳମାନ, ଯାଉ ମୋର ଗୁରୁ ଗୌରବ, ଯାଉପଛେ ଜାତପତ. ବୁଡ଼ିଯାଉ ସବୁ କଳଙ୍କ ଜଳରେ—ବିଧିକାର ଏକା ଲକ୍ଷ୍ୟ ସେହ ନବଘନଶ୍ୟାମ । ମନେହୁଏ ସଖି, ବାରବାର ସେହ ରୂପସୁଧା ପିଇ ଭୋଖ ଶୋଷ ଭୁଲି ଯାଆନ୍ତି । ସବୁବେଳେ ପାଖେ ପାଖେ ଥା'ନ୍ତି ।

ଜଣେ ଗୋପୀ—ଲଳିତେ ! ତମ୍ଭ ରୂପ ଦେଖାଇଲି ତ ? ଏବେ ସମ୍ଭାଳ ସଖୀଙ୍କ । ଶ୍ରୀମତୀ, ଏ କ'ଣ କହୁଛ ସହ ? ସେସବୁ କଥାମାନ ଭୁଲିଯାଅ । ତାଙ୍କ ଗୁଣ କ'ଣ ଜାଣିନାହିଁ ? ଗୋପପୁରରେ ଆଉ ମୁହଁ ଟେକି ବାଟ ଚାଲିପାରୁଚି ? ଚାଲ ସହ, ବେଳ ଢଳୁବ ହେଲଣି । କାଏ କେତେ କଥା କହିବେ । ତାଙ୍କୁ କଥାରେ ମନ ଦଅନା । କୁଳ ମାନ ରଖିବାକୁ ମନଥିଲେ କେହ ପତିବ୍ରତା ସତୀ ଯେପର ତା' ପାଲରେ ନ ପଡ଼ନ୍ତି ।

ଲଳିତା—ସତେ ସଖୀ । ତା' ଆଖି-ବାଣରେ ଭୁଲିଲେ ଅନୁତାପ ସାର ହେବ । ବଡ଼ କପଟୀ ସେ । ରୂପ ସିନା ଏଡ଼େ ମଧୁର, ଏଡ଼େ ଲଳିତ, ହେଲେ ଭିତରେ ତା'ର ଗରଳ ଭରା । ଚାଲ ସହ । ପାଣି ନେଇ ଘରକୁ ଯିବା । ସଞ୍ଜ ଅନ୍ଧାର ହୋଇ ଆସିଲା ।

ଗୋପୀଗଣ— ( ଗୀତ )

ତାକୁ ଚୁହାଁନା ଲେ ମିତ, କହୁଛୁ ହିତ,
ଘରବୁଡ଼ା କୁଳଛଡ଼ା ତା'ପାଖେ ଯାଅନା ।୦।
କଳାବନ୍ତ ଲେକ ଯେହ ଦୁରନ୍ତ ଅଟଇ ସେହ
ନାହିଁ ତାହାଠାରେ ପରାପର ବିବେଚନା ।୧।
ଅମ୍ବ ବସନ ଚୋରାଇ ମାଗିଲେ ସେ ନ ଦଅଇ
ଯେତେ ସ୍ନେହ କଲେ ତାର ପାଖକୁ ଯାଅନା ।୨।
ଆଣି ସ୍ନେହେ ଧର କୋଳେ ଜାଣିଛୁ ତା ବାଲକାଳେ
କ୍ଷୀରପାନ କଲାବେଳେ, ମାରିଛି ପୂତନା ।୩।
ମାନ ସଜନି ମୋ ଗୀର ଅଟଇ ସେ ଦଗାଦାର
ଉଡ଼ୁଛି ଅକୀର୍ତ୍ତି କେତେ ଗୋପପୁରେ ତା' ନାଁ ।୪।
( ଶ୍ରୀମତୀଙ୍କ ସେନା ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ଜମୁନା ତଟ—ଶ୍ରୀକୃଷ୍ଣ ଓ ସୁବଳ ପ୍ରବେଶ )

ସୁବଳ—ସେଇ ଗୁଣଟା ତ ତମର ନଗଲା ସଖା ।

କୃଷ୍ଣ—କ'ଣ ସୁବଳ ? ମୋତେ ଖୋଜୁଥିଲ ?

ସୁବଳ—କାହିଁକି ହେ ? ମୁହଁ ଶୁଖେଇ, ଲୁହ ଝରେଇ—କଅଣ ଗୁହ୍ୟ ଏମିତି ଭାବୁଥାଅ ଯେ ?

କୃଷ୍ଣ—ନାହିଁ ତ । ମୁଁ ତମେର ମାନଙ୍କୁ ଅନାଇଁ ବହୁତ ବେଳୁ ଅସି ବସି ବହିଥିଲି । ମନଟା କେମିତି କାହିଁକି ଖରାପ ହେଲା ।

ସୁବଳ—( ନେପଥ୍ୟକୁ ଗୃହିଁ ) ହେଉଛି, ତମ ବିଷଦ ଆସିଗଲେଣି । ଏଥର ତମର ତୁମେ ଗୁହାଁସୁହାଁ କରୁଥା । ତମର ବଙ୍କା ଭଙ୍ଗୀକି ଅମେ କ'ଣ ଯାଣୁ ? ( ମଧୁ ପ୍ରବେଶ )

କୃଷ୍ଣ—କିଏ ?

ସୁବଳ—ଦେଖୁନା କିଏ ?

ମଧୁ—(ଶ୍ରୀକୃଷ୍ଣଙ୍କୁ ଦେଖି ଚମକିବା ପରି) ଅରେ, ଏ ପୂର୍ଣ୍ଣି କି ଢଙ୍ଗ ଅଜି ? କିଓ, ସୁବଳ, କଥା କ'ଣ ?

( ଶ୍ରୀକୃଷ୍ଣଙ୍କ ପାଖକୁ ଯାଇ ଅଦରରେ )

( ଗୀତ )

ମୋ ଶ୍ୟାମ ହେ । କାହିଁକି ଅଜି ଏ ବିରସ,
ଶିରସ, ବିରସ ।୦।

ଫୁଟା କଞ୍ଜର ଛିଗ୍ୟ—ଛଟା ମୁଖ ମାଧୁରୀ
କେ'ଟାଳଛି ସେ ସରସ, ଅରସ, ସରସ ।୧।

ଯାଇ୍ ଉଣା ଭୁମ୍ବର—ଥାଉ ଏ ପରକାର
ଦାଉ୍ କାର ସେ ନରସ ନରସ ନବସ ।୨।

ସୁବଳ—କିଓ, କହୁନା ? କଅଣ ହେଇଛ ତମର ?

କୃଷ୍ଣ—କଅଣ ହେଇଛ ଯେ କ'ଣ କହିବ ?

ମଧ—ସତ, ସତ । ଯାହା ହେଇଛି ସେ କଅଣ କଥାରେ ହେଲେ କହି ହୋଇଏ ? କହିଲେ ଦୋଷ—ନ କହିଲେ ଦୋଷ । କହିଲେ କୁଳ କୁଟୁମ୍ବଙ୍କ ଲଜ, ନକହିଲେ କୁଳ ଭାସି ଯାଉଛି । ନାହିଁ ସଖା ? ଗୋଟେ ଭାବ ଭଡ଼ ରୋଗଟିଏ—ନୁହେଁ ?

କୃଷ୍ଣ—ନାହିଁ ସଖା, କ'ଣ ଅଉ ତମକୁ କହିବ । କ'ଣ ବା ତୁମେ ନ ଜାଣିଛ ଯେ ?

ସୁବଳ—କିଓ ବନ୍ଧୁ । ନାଟର ଗୁରୁ ତ ତମେ । ଅଉ ଏତେ ଛନ୍ଦରେ କଥା କହୁଥିଲ ଯେ ? କିଛି ଜାଣିନାବୋଲି ଏବେ ଦେଖାଇ ହେଉଥିଲ ତ ।

ମଧୁ—ଅହେ ସଖା । ଏ ବିପତ୍ତିରୁ ଭଲ ମୋତେ ଉଦ୍ଧାର କର । ସବୁବେଳେ ତୁମେ ମୋତେ ଏଇ ଦଶା ଦେଲ । ମୋର ଭଲ ଦୋଷ କ'ଣ ? ମୁଁ କ'ଣ ସବୁ କଥା ତମର ଜାଣି ରଖିଥାଏଁ ? ଅଗ୍ଲ ଲୋକ ତୁମେ । ସବୁ କଥାରେ ଗୋଟେ କ'ଣ ଭୂଜ ହୋଇ ରହୁଛ ହେ । ସମସ୍ତେ ଖାଲି ମୋତେ ଖୁଣ୍ଟି ଖାଉଛନ୍ତି । କହିବ ଯେବେ ବୁଝ, ନୋହିଲେ ଅମେ ତମ ସାଙ୍ଗ ଗ୍ଲଡ଼ିବୁଁ ବୋଲି ଜାଣ—ଅଜାଠୁଁ ।

ସୁବଳ—ଜାଣୁ, କହୁନା କ'ଣ ହୋଇଛି ତୁମର ? ମନ ମରି ଯାଇଛି. ମୁହଁ ଶୁଖି ଯାଇଛି ।

ମଧୁ—କହିବ କି ନ କହିବ କହିଲ ?

କୃଷ୍ଣ—କ'ଣ ଅଉ କହିବ ସଖା ?

ମଧୁ—କ'ଣ ଅଉ କହୁଛ ବନ୍ଧୁ ?

କୃଷ୍ଣ—କହିବ ତେବେ ?

ମଧୁ—ଶୁଣିବ ତେବେ ।

କୃଷ୍ଣ—ମନେ ଅଛିନା ତୁମର ?

ମଧୁ—କିଛି ତ କହନା—ମନେ ରହିଲି କେମିତି ?

କୃଷ୍ଣ—ଯାଃ, ମୁଁ କହୁଛି କ'ଣ କି, ସେଇ କାଲି କଥା ।

ମଧୁ—କହି ଯାଅ,—

କୃଷ୍ଣ—ଗୋଠରୁ ବାହୁଡ଼ିବା ବେଳେ—ବାଟରେ—ସେଇ ।

ମଧୁ—କ'ଣ ସେଇ ? ବୋଲି ଭୂଜ ହେଇ ଯେ ?

କୃଷ୍ଣ—ମନଟା ମୋର ସେତିକିବେଳୁ ସେଇଠି··· କିଛି ସୁଖ ଲାଗୁନାହିଁ ।

ସୁବଳ—କିଓ ବନ୍ଧୁ, ବେଶ୍ ରୋଗ ତ ।

ମଧୁ—ନାଇଁ ତ ମୁଁ କିଛି ବୁଝି ପାରୁ ନାହିଁ । ତୁମେ କ'ଣ ବା ତା'ର ବୁଝୁ ଥିବ । ସମାନ ଜାତି—ତୁମେମାନେ । ତମର ଠାର୍ ଠୂର୍ ତୁମେ ଜାଣ । ଏତେ ଢାକଢରଙ୍କରେ ଅମର ଅଉ ସ୍ଥାନ ନାହିଁ । ସତକଥାଟା କହିଲେ ସିନା କିଛି ଠିକରେଇବା ?

ସୁବଳ—କହିଲେ ପରା, ମନଟା ସେଇଠି···

ମଧୁ—କ'ଣ, କିଏ ଆଁକ ମନ ଟାଣି ନେଇଛି ?
କୃଷ୍ଣ—ସେଇଯା ସଖା ।

—ଗୀତ—

ରଖିଲା ମନ ବନ୍ଧାଧରି ଧରି ରେ
ରମଣୀ ସେ କାହାର ନୂଆ ହୋଇ ବାହାର
ଗଛ ମଣ୍ଡରେ ନିନ୍ଦା କରି କରିରେ ।୦।
ରସାଣିକ ହାଟକ— ପରି କାନ୍ତି ଫୁଟକ
ଛବିକି ନିକି ଅପସରି ସରିରେ ।୧।
ରଦବାସେ ପ୍ରକାଶ ଫୁଟକ ମୃଦୁହାସ
ପଲକ ତାକୁ ଅନୁସରି ସରିରେ ।୨।
ଭଙ୍ଗୀନେତ୍ର ଉଚିତ କୁନ୍ତଳ କଞ୍ଚିତ
ଦେଲା ମରମେ ସୁକୁମାରୀ ମାରି ରେ ।୩।
ରଖ ମୋତେ ସେବାରେ ଏତେ ଜଣାନ୍ତି ବାରେ
ସଙ୍ଗତେ ଥିଲେ ଅନୁଗୃହୀ ଗୃହ ରେ ।୪।

ମଧୁ—ବେଶ୍, ଜଣାଇଲ ନାହିଁ ତେବେ ? ପଟ ଛାଡ଼ିଲ କାହିଁକି ?
କୃଷ୍ଣ— କହିଲି ପରି ସଖା ?
ମଧୁ—ତେବେ ମନ କଥା ମନେମନେ ମାରି ତୁନି ବହିଥାଅ ନେ'···ଆମକୁ ସବୁ ଏତେ କଥା କହି ଫଳ କ'ଣ ? ଆମେ କ'ଣ ଏ ରୋଗର ବଇଦ ?
କୃଷ୍ଣ—ତୁମ ବିନା ଆଉ ଏ ରୋଗର ଔଷଧ କେହି ଦେଇ ପାରିବେ ନାହିଁ, ବନ୍ଧୁ !
ମଧୁ—ଭଲ ଭଲ । ଯେବେ ଏ କଥା ସତ, ସଖା । ଉପାୟ ଶୁଣ । ମନେକର ଏ ସବୁ ସ୍ୱପ୍ନର ଖେଳା—ଯାଅ ଯେତେ ସଜ ସଜ—ଚକଣା ଚକଣା ଚଜ ଗର୍ଭଧାଡ଼ି କରି ବନ୍ଦି ପଲଙ୍କରେ ଘୁମାଇ ପଡ଼ । ନିଦ ଭାଙ୍ଗିବା ବେଳକୁ ଦେଖିବ, ସବୁ ପାଶୋରି ଯାଇଥିବ ।
କୃଷ୍ଣ—ତା'କଣ ଏ କର୍ମରେ ଅଛି ବନ୍ଧୁ ?
ମଧୁ—ନିଦ ମଧ୍ୟ ନାହିଁ ? ଭୋଜନଟା ଭଲ ନ ଥାଉ—ସେ କଥାକୁ ମୁଁ କଷ୍ଟେମଷ୍ଟେ ଚଳାଇ ନେବି । ଏ ନିଦ କଥାକୁ ତ ମୁଁ ନାଗୃହ । ତାକୁ ଛାଡ଼ିଲେ ତ ମୋର ଦଣ୍ଡେ ଚଳିବା କଥା ନୁହେଁ । ସତେ କ'ଣ ତମକୁ ନିଦ ନାହିଁ ସଖା ? ଦେଖୁଛି ମୋତେ ଯାଇ ନନାଙ୍କ ବଦ୍ୟଶାସ୍ତ୍ର ପୁଡ଼ା ଅଟେଇବାକୁ ପଡ଼ିବ । ଦେଖି ସଖା (ଚୃହିଁ) ତମର ତ ଆଖି ଅଛି, ଆଖି ପତା ବି ଅଛି, ଆଖିରେ ପୁଅ ବି ଅଛି । ଆଉ ନିଦ ନାହିଁ କାହିଁକି ?
ସୁବଳ—ବୁଝିଲ ନାହିଁ କି ବନ୍ଧୁ ? ଇଏ ଆଉ ଗୋଟିଏ ରକମ ରୋଗ । ଜାଣିନା ପରି ?

( ଗୀତ )

ରୋଗୀ, ଭୋଗୀ, ଯୋଗୀ,—ଚୋର, ଅନୁରାଗୀ
ପାଞ୍ଚକୁ ନମାଡ଼େ ନିଦ, ସଙ୍ଗାତ,
ସଂଯୋଗୁ ପଡ଼େ ପ୍ରମାଦ ।

ମଧୁ—(ଗୀତରେ ବାଧା ଦେଇ) ରହ, ରହ । ବନ୍ଧୁବର, ମୁଁ ଅଟେ କଥାଟା ବୁଝେଁ । କଅଣ କହିଲ ସୁବଳ, ରୋଗୀ ଆଉ କଣ ଯୋଗୀ ? ଏଇ ତ, ଏଥିରୁ ସଖା, ଆମର କେଉଁଟି ? ହଇହେ ସଖା ? କହୁନା କାହିଁକି ହେ ?
ସୁବଳ—ଜାଣିଲ ନାହିଁକି ବନ୍ଧୁ ?
ମଧୁ—ନା—
ସୁବଳ—(ପୁଣି ଗାଇଲେ)

ଶୁଭ ଅଗମନେ ବରଷକେ ଦିନେ
ନିମିଷ ପରିଏ ନିଶା,
ଦଇବ ବିମୁଖ ଯୋଗୁଁ ତନୁ ଦୁଃଖ
କରାଇଲା ବୃଷ୍ଟ ଦଶା,
ସୁରତ ଉତ୍ସୁକେ ରତନ ପଲଙ୍କେ
ଭୋଗେ ଯାଉଥାଇ ଦିନ,
ତହିଁକି କଞ୍ଚିତ ହେଲେ ଉପସ୍ଥିତ
ସଂସାର ବିଷୟମାନ ॥

ମଧୁ—ସନ୍ଧ ତ ଆସି ଏତେ ଚମ୍ପାରରେ । ସଖା ! ସୁବଳ ଯାହା କହିଲେ ସତ କି ?
କୃଷ୍ଣ—କହିଲ ତ ବନ୍ଧୁ । ତୁମେ ସତରେ ଏ ରୋଗର ପ୍ରତିକାର ନ କଲେ, ମୋର ଆଉ ଗତି ନାହିଁ ।

ମଧୁ—ମୁଁ ତ ତମ ପାଖେପାଖେ ସେଇଠିଥିଲି, ସଖା !
ବାକି ମୋତେ ତ କାହିଁକି ଖୁବ୍ ନିଦ ହେଲା ?
ସୁବଳ—ବଟେ ? ତୁମେ ତ ସେ ସେଗରେ ଛନକି
ଉଠିନା ? ତମକୁ ନିଦ ନ ହେବ କାହିଁକି ? ଅବା
ତୁମେ ତାଙ୍କୁ ଦେଖିବାବେଳେ ଶୋଇ ପଡ଼ିଥିବ ।
ମଧୁ—ଶୋଇନଥିଲି ଯେ ! ଟିକିଏ ଘୁମେଇ ପଡ଼ିଲା ପରି
ଲାଗୁଛି । ସତେ ସଖା ! ତମକୁ କ'ଣ ଯମା ନିଦ
ହେଲା ନାହିଁ ? ଭଲ,ଶୋଇବାକୁ ଚେଷ୍ଟା କରିଛ ?
କୃଷ୍ଣ—ଛି ସଖା ! ଆଜ ମୋତେ ପରିହାସ କରନାହିଁ !
ମୁଁ ସତ କହୁଛି ସଖା, ଭୁଲିବି ବୋଲି, ଛାଡ଼ିବି
ବୋଲି ଅନେକ ଚେଷ୍ଟା କରିଛି । କିନ୍ତୁ ହେଲା
ନାହିଁ—ପାରିଲି ନାହିଁ ।
ମଧୁ—ତେବେ ଶୋଇବାକୁ ଚେଷ୍ଟା କରିଛ—ନାଁ ?
ସୁବଳ—ହଁ, ଏତେ କଥା ଯେତେବେଳେ କରିଛନ୍ତି,
ସେଇଟା ଆଉ କରି ନଥିବେ ?
ମଧୁ—ତେବେ କ'ଣ ନିଦ ଭାଙ୍ଗିଗଲା ? ସଖା, କ'ଣ
ଏଇଥି ଏବେ ସତ ?
କୃଷ୍ଣ—ସତ କହୁଛି ସଖା ।

( ଗୀତ )

ଚତୁର ଚାତୁରୀ ଗୋପୀ ଚାହିଁ,
ଚମକି ଗଲା ମୋ ମନ ॥ ୦ ॥

ମଧୁ—ତେବେ ସଖା ! ଶୋଇଲାବେଳେ ମଧ ଚମକି
ଉଠିଲ ?·ହଁ ହଁ, ନିଦ ତ ଭାଙ୍ଗି ଯାଇଥିବ । ମୁଁ
ବି ସେମିତି କେତେଥର ହାଉଳି ହୋଇ ପଡ଼େଁ ।
କଣେ କାଏ ଛାତିରେ ହାତ ମାରିଲେ ତେବେ
ଯାଇଁ ନିଦ ହୁଏ । ଠିକ୍, ଠିକ୍ ହେଇଥିବ ତ ।
ସେଇଠୁ, କ'ଣ ବିଛଣାରୁ ଉଠି ସଳଖେ ସଳଖେ
ଏଠି ? ଆଉ କ'ଣ ସମ୍ଭାଳି ହେଲା ନାଇଁ ସଖା ?

କୃଷ୍ଣ— ( ଗୀତ )

ନେଳ ପ୍ରାନ୍ତେ ସରୁ ଅଞ୍ଜନ
କି ଶାଣିତେ କରିଛି ମୂନ
ମାରଦେବ ଯେବେ ବାରିକ ନୟନା,
ସମ୍ଭାଳି ପାରିବ କେତେ କା ଛାତି ॥୮॥

ଝୁମୁ ଝୁମୁ ଝୁମୁକି ବଳା—
ଝମକାଇ ଚାଲିବା ଲୀଳା
ଯୁବାଜନ ଧୈର୍ଯ୍ୟ ସିନ୍ଧୁ ମନ୍ଥନକୁ,
ମନ୍ଦର ଅଟେ ସେ ମନ୍ଥର ଗତି ॥୧॥
ରାହୁ କି ରସନା ଲଳାଇ ଝାମ୍ପୁଛି
ଚିକଣ ବଦନ ରଜନୀପତି
ଭଙ୍ଗ ତାର ଭ୍ରୂଲତା ଭଙ୍ଗୀ
ବାଳି କାଳ କାଳ-ଭୁଜଙ୍ଗୀ
ମାର ଗାରୁଡ଼ିଆ ବାରମ୍ବାର କରି
ଖେଳାଉଛି କି ତା ବଦନ କାନ୍ତି ॥୨॥

ମଧୁ—ହଇହେ ସଖା ! ଏତେଗୁଡ଼ାଏ କଥା ତୁମେ
ଏକାବେଳକେ ସପନରେ ଦେଖିଲ ? ଭାରି
ଓଜନ ହେଇଥିବ ତ ?
ସୁବଳ—ଅରେ ଅଚ୍ଛା ଓଲୁ ତ ତମେ ? ଏସବୁ କ'ଣ
ସପନରେ ଦେଖିବା ପଦାର୍ଥ ?
ମଧୁ—ତେବେ କ'ଣ ସଖା ସତରେ,—ଏଇ ଆଖିରେ
ଦେଖିଲ ?
ସୁବଳ—କାହେ, କାଲି କଥା ପରା ଏଇଟା ?
ମଧୁ—ହଁ ହଁ, କହୁଥିଲ ତ, ମୁଁ ଭୁଲି ଯାଇଥିଲି ।
ଅଚ୍ଛା ସଖା ! ଦେଖିଲ ତ ଦେଖିଲ, ଭଲ କଲ ।
ତମକୁ ପରା ଏଇଥିକି ଲୋକେ ନଟନାଗର,
ରସଶେଖର, ଏଇମିତି କେତେ କଥା କହନ୍ତି—
କ'ଣ କହିବା ତମକୁ ?
ସୁବଳ—କାହିଁକି ?
ମଧୁ—କାହିଁକି ? ଅହା ହା ! ଏତିକି କଥାରେ ଏତେ
ଅଡରିଛ ? ମୁଁ ହେଇଥିଲେ ଏ ପଦ ଗୁଡ଼ାକ
ଦେହରୁ କାଢ଼ି ଫିଙ୍ଗି ଦିଅନ୍ତିଣି । ଦେଖୁ ଦେଖୁ ତ
ଏତେ ଅବସ୍ଥା—ଅଚ୍ଛା ସଖା, କହିଲ ଦେଖି !
ସେ ତମକୁ ଦେଖିଛନ୍ତି କି ନାହିଁ, ଦେଖି
କହିଲ ?
କୃଷ୍ଣ—ମୁଁ କିପରି ଜାଣିଲି ସଖା !
ମଧୁ—ଜାଣିନାହଁ କି ? ଆଉ ତେବେ କ'ଣ ? ମନ
ତ ଚିହ୍ନିନାହଁ, ଗୁଣ ତ ଜାଣିନାହଁ, ମିଛରେ
ଖାଲି ମୁହଁ ଶୁଖେଇ ବସିଛ ?

କୃଷ୍ଣ—ଆଉ କ'ଣ କରନ୍ତି ସଖା ? କହିଲି ତ ମୁଁ ଦେଖିଛି, ଆଉ ସେଇ ରୂପରେ ମଜିଛି । ତାଙ୍କ ମନ ଜାଣିଲି କିପରି ? ମୋର କି ସାଧ୍ୟ ?

ମଧୁ—ନାଇଁ, ତମର ଆଉ କି ସାଧ୍ୟ ? ସୁଖିଲା ମୁହଁଟି ଆମ ଆଗରେ ଦେଖାଇ ଲୁହ ଟଗରିବାଟି ତମର ମାନ ସାଧ୍ୟ ଭିତର କଥା । ଯାଃ, କ'ଣ ଆଉ ତମକୁ କହିବ ସଖା ?

( ଗୀତ )

କି ରସିକ ସେ, ବିରସ ଯାହାର ମୁହଁ ନିକଟେ ।

ସୁବଳ—କାହିଁକି ବନ୍ଧୁ ? ସଖାଙ୍କୁ କ'ଣ ଆଉ ଅଳପ ରସିକ ଦେଖିଲ ?

ମଧୁ—ଯା, ଯା—

( ଗୀତ )

ପୁରୁଷ ହୋଇ ଯେ ନାରୀ ମନ ସୁନା
ପ୍ରୀତି କଷଟିରେ ଯେବେ ନ କଷେ ? ।୦।

କୃଷ୍ଣ—କ'ଣ କହିବ ଆଉ ସଖା ? ଯାହା କହିବାର କହିଯାଅ ।

ମଧୁ—ଓଃ, କଅଣ ଆଉ ତମକୁ କହିବ ସଖା ?

( ଗୀତ )

କଳନା ନଯାଏ ଲଳନାର ମୁଖ
କମଳ ପରି ଏ ସଦା ନିକଟେ ।
ଅଳି ହୋଇ ଯେବେ ଚୁମ୍ବି ନ ପାରଇ
ଅଳି କରିବାର ତାର ଧିକ ସେ ।୧।

ସୁବଳ—ବନ୍ଧୁ, ଏତେ କଥା କହ ଏତେବେଳେ ସଖାଙ୍କୁ ଅମର ଏମିତ ମନ କଷ୍ଟ ଦଅନ୍ତି ଟି ?

ମଧୁ—ଅହାହା ! ଜଳ ନାହିଁ ? ହଇ ହେ, ବାଣ ନ ବାଜିଲେ ଯାଙ୍କର ବେଦନା ହେଲା କେମିତ ? ଇଏ ପଦେ ହେଲେ କି ଅଧେ ହେଲେ ତାଙ୍କୁ ଟେଞ୍ଜରେ ଖଞ୍ଜରେ କହିପାରି ନଥାନ୍ତେ ? ହଇହେ, ଯାଙ୍କର ଏ ମଦନ ମୋହନ ରୂପ—ରମଣୀ-ରଞ୍ଜନ ଅଖି—ଏଥିରେ ପ୍ରେମଡୋରି ଲଗେଇ ଟାଣିଅଣି ପାରିଲେ ନାହିଁ ତାଙ୍କୁ ? ପୁଣି ତମେ କହୁଚ କ'ଣନା—ଯାଙ୍କ ମନ କଷ୍ଟ ହେବ ?

( ଗୀତ )

ଚତୁରୀ ଗୃତୁରୀ ବଚନ ଭଙ୍ଗୀର
ମରମେ ନୟନ ଶରକୁ ପେଶେ
ତହିଁକି ଯେ ପ୍ରତି- ଉତ୍ତର ନଦେଲା
ଯୁବାବୃନ୍ଦ ମଧ୍ୟେ ଅବିବେକ ସେ ।
ଭିତରେ ସଦୟ ବାହାରେ ସଭୟ
ଦେଖାଇ କହନ୍ତି ମାତରକ ସେ,
ଖେଳାଇ କରି ଯେ ଛଳାଇ ନ ନେଲା
ନ ଜାଣଇ କିଛି ବାତରକ ସେ ।

ସୁବଳ—ସଖା ! ବନ୍ଧୁ ସବୁବେଳେ ଛଳକଥା କହିବାକୁ ଭଲ ପାଅନ୍ତି ! ତାଙ୍କ କଥା ଧର ନାହିଁ ।

ମଧୁ—ସଖା ! ମୁଁ ଛଳକଥା କହେଁ, କେଜାଣି ? ତୁମେ ବୁଝିଥିବ—ବାକି ମୋ କଥା ଭିତରେ ଲଥା ଅଛି । ଜାଣି ପାରୁଥିବ ନାହିଁକି ?

କୃଷ୍ଣ—ସବୁ ଜାଣୁଛି, ସବୁ ବୁଝୁଛି, କିନ୍ତୁ କ'ଣ କରିବ ସଖା ?

ମଧୁ—କ'ଣ କରିବ ? ଏଇ କଥାକୁ ଏଡ଼େ ଶୋଚନା ? ସେଇଥିଲାଗି ତମକୁ ପରିହାସ କରିବାକୁ ମନହୁଏ । ମୁଁ କହୁଛି ସେ ଧନ ତମରି । ପାଇବ—ପାଇବ—ପାଇବ । ବାକି ସଖା, ଗୋଟିଏ କଥା । ତୁମେ ଏ ସୁଖିଲା ମୁହଁ ଛାଡ଼, ଧୈର୍ଯ୍ୟଧର । ସହଜ ନୁହେଁ ଶ୍ୟାମ—ପୀରତି ପଥ । ବହୁତ କଣ୍ଟା—ବହୁତ ଅଡ଼ଡ଼ା । ସବୁ ସହିଲେ ତେବେ ଯାଇଁ ସେ ସୁନାର ସିଂହାସନ । ଅଖିକି ସିନା ପାଖ । ଗୃଲି, ଟିକିଏ ମନ ସରସ କରି ତାର ବାଟ ପାଞ୍ଚିବା—ଆସ । ପାଇବ ହେ—ଏତେ ଦୁଃଖ କାହିଁକି ? ତୁମେ ଅଉ କାତର ହୁଅନାହିଁ, କାହ୍ନୁ ।

କୃଷ୍ଣ—ପାଇବ ? କେଜାଣି ସଖା ?

( ପ୍ରସ୍ଥାନ )

———

### ତୃତୀୟ ଦୃଶ୍ୟ

ବନପଥ ।

( ଶ୍ରୀମତୀ ଓ ସଖୀଗଣ)

ସଖିଗଣ— ( ଗୀତ )

ନବ ଛଇଳା ରେ—ଏଣିକି ଅନାଁନା,
ପଡ଼ିଲେ ନୟନ ତୋର ହଜିବ ଚେତନା ।୦।
ଘରଗୁଡ଼ା କୁଳଛଡ଼ା ବନମାଳୀ ବାଙ୍କଚୂଡ଼ା
ଜଗି ବସିଥିବ ପଥ ହଟିଅ ମୋହନା ।୧।
ସେ ଲମ୍ପଟ ବଡ଼ ଶଠ ଲଗାଇ ଦେବଟି ନାଟ
ବେଣୁରେ କରେ ଙ୍ଗଛାଟ ନ ଶୁଣଇ ମନା ।୨।

ବିଶାଖା—(ସଖୀ ମୁଖରେ ହାତ ଦେଇ ଅଶ୍ଚର୍ଯ୍ୟ ହେବା ପରି ଏକ ଦଗକୁ ଗୃହିଁ ଚହଳେ) ତୁନ ହୁଅ, ତୁନ ହୁଅ ମ ସହ ।

ଶ୍ରୀମତୀ—କଅଣ ସହ, କଅଣ ଦେଖିଲ ?

ଶଶାଖା—କାନେଇଁଲ, ଶୁଣିଲ, କଛ ଶୁଭୁନାହିଁ ?

ଶ୍ରୀମତୀ—ସତେ ତ ସଖି ।

( ଗୀତ )

କେ ମୁରଲୀ ବଜାଉଛୁ ବୃନ୍ଦାବନେ ଗୋ ?

ଲଳିତା—ତା’ପରି ନାଗର ଆଉ
ନାହିଁ ଜଣେ ଗୋ (ସଖି) ।୦।

ବିଶାଖା—ସେ ନାଦ କର୍ଣ୍ଣେ ବାଜିଲା
ପାଦ ମୋର ନ ଚଳିଲା
ମାର ମରମେ ଭେଦିଲା ପଞ୍ଚବାଣ ଗୋ (ସଖି) ।୧।

ଲଳିତା—ମୁରଲୀ ବଡ଼ ପ୍ରମାଦ
ଦେଲା ମୋତେ ଅପବାଦ
ପତିବ୍ରତା ଛଡ଼ାଇଲା ପର ମଣେ ଗୋ (ସଖି) ।୨।

ଶ୍ରୀମତୀ—ଶବ୍ଦପଟେ ଲେଖାଇବି
ଯତନରେ ରଖାଇବି
ଶତ୍ରୁ ତହିଁ ଖଟାଇବି ଅନୁକ୍ଷଣେ ଗୋ (ସଖି) ।୩।

ଲଳିତା—ଗୃଲ ସହ ! ଉଚ୍ଚୁର କଲେ ଧରା ପଡ଼ିବା ସିନା ? ତାହିଁ କେଉଁଠି ଥିବ, ଭୂତପରି ଆସି ଦେଖାଦେବ । ହାବୁଡ଼େ ପଡ଼ିଲେ ଆଉ ମହତ ରହିବ ନାହିଁ ।

ଜଣେ ଗୋପୀ—କହିଲ ସିନା ଲଳିତା, ଦେଖିଲେ ସିନା ଲଜ ମାଡ଼େ, ନ ଦେଖିଲେ ମନଟା ଝୁରି ହେଉଥାଏ । ସେ ରୂପରେ, ସେ ଛଟାରେ, ସେ ଭଙ୍ଗିରେ—ମାଦକ ମିଶିଛୁ । ସେ ଅଙ୍ଗରେ କୁହୁକ ଅଛୁ ।

ଶ୍ରୀମତୀ—ସତ୍ୟ ସହ, ସେ ପ୍ରାଣରେ ପ୍ରାଣ ଅଛୁ, ସେ ଅକ୍ଷିରେ ଅକ୍ଷି ଅଛୁ—ସେ ମନରେ ମନ ଅଛୁ ।

ବିଶାଖା—କି ଗୋ ରାଇ ! ଭାସି ଯିବ କି ? ଫେର ଥଳକୂଳ ନଥିବଟି ।

ଶ୍ରୀମତୀ—ଭାସି ଯାଇ ତ ଥଳକୂଳ ପାଉନାହିଁ ସଖି । ନୋହିଲେ ତୁମ୍ଭମାନଙ୍କୁ ଭରସା କରିଥିଲି ତାହିଁକି ? ଦେଖିବାର ଯେତକ ସେହି ରୂପରେ ଦେଖି ସାରିଛୁ, ଭାସିବାର ଯେତେ-ହିର ସେହି ସୁଅରେ ଭାସି ଯାଉଛୁ । ଭସାଣିରେ ଆଉ ଉଜାଣି କାହିଁ ସଖି ?

ଲଳିତା—ସତ୍ୟ ଯେ, ତେବେ ଭାବଚନ୍ଦ୍ର ମନ ବଳାଇ-ଥିଲେ ପଛକୁ ଆଉ କାହାର ପଦେ କଥା କହିବାକୁ ନଥିବ ! ନୋହିଲେ ଜାଣୁନାହିଁ ଶ୍ରୀମତୀ, ହସିବାକୁ କ’ଣ ଗୋପପୁରରେ କେହି ନାହାନ୍ତି ?

( ଗୀତ )

ଖସାଇ ଦେଇ ଯୋଷାବର, ଚରଣ
ସ୍ରୋତଜଳେ ଭଗାର ହସାନା ରେ ।୦।
ଗୃହିଁ ସେ ଯମୁନାକୁ ସେ କାଳିଅ ସୁନାକୁ
ନେଇ ଲୋତକ ଲସାନାରେ ।
ନୟନ ମୁନ ତାର ମଦନ ଛୁରୀ ଧାର
ହୃଦ କାନନେ ପଶାନା ରେ ।୧।
ପିଇ ପ୍ରୀତି ଗରଳ ଅପବାଦେ କେବଳ
ରମଣୀକୁଳ ଭସାନା ରେ ।୨।

ଶ୍ରୀମତୀ—ଲଳିତା, ମଧୁର ମଧୁରତା ଚଖାଇ ଦେଇ, ପୁଣି ଛଡ଼ାଇ ନେବାକୁ ଭଲ କାହାର ସତ ବଳବ କହ ଦେଖି ସଖି । ସେ ବିଷ ଚଖାଇଲା କିଏ ?

ସେ ରୂପ ଦେଖାଇବ କିଏ ? ସବୁ ତ ଏଇ ଲଳିତା ।

ଲଳିତା—ସତେ, ସତ କହିଲ ସଇ । ଲଳିତା ତ ସବୁଥିରେ ଅପରାଧିନୀ । ଯେବେ ମୋ'ର ହେତୁରୁ ଏ ଦଶା ହୋଇଛି, ତେବେ ମୋତେ କ୍ଷମା ଦିଅ—ଭୁଲିଯାଅ । ନୋହିଲେ କୁହ ସଖି, ଲଳିତା ମନ ଦୁଃଖ ମନେ ମନେ ମାରି ଦୂରରେ ରହୁ ।

ଶ୍ରୀମତୀ—(ଲଳିତାକୁ ଧରି) ଛି ସଖି, ଏ ଅଭିମାନକୁ ରାଧିକା ସହି ପାରିବ ନାହିଁ । ମୁଁ କି'ଣ ଦୋଷ ଦେଲି ? ଲତାକୁ ବଢ଼ାଇ—ମୂଳରେ ଜଳ ସିଞ୍ଚି—ପୁଣି କଢ଼ି ଫୁଟିଲା ବେଳକୁ ମୂଳରୁ କାଟିବା କି'ଣ ଲଳିତା ପରି ପ୍ରାଣପ୍ରିୟ ସହଚରୀକୁ ସାଜିବ ? ମୁଁ ତ ଦୋଷ ଦେଉନାହିଁ । ତଳକୁ ଚାଳ ଟେକି ମନେକଲେ ମୋର ଆଉ ଗତି କାହିଁ ?

( ଗୀତ )

କାଟିଲିଣି ମୋର କରମ ବାମ
ଝଡ଼ି ହେବ ହାର କୁସୁମ ଦାମ
ଜଗତୁଁ ଲଭିବ ଶ୍ରୀମତୀ ନାମ
ସହିତ ହୋଇବ ମରଣ ସମ ରେ
ସଜନୀ ଜାଣ,
ପୋଡ଼ପାଉ ମୋର କୁଳ ଧରମ ରେ ॥

ଲଳିତା—ଛି ସଖେ, ଏ ଅଶୁଭ କଥା କି'ଣ ମୁହଁରେ ଆଣେ ? ତମ ଭଲକୁ କହିଲି ସିନା ! ନଜାଣି, ନଶୁଣି ପାଦ ବଢ଼ାଇ ଦେଲେ ପଛକୁ ଆଉ ଭାବିବାକୁ ଥିବ ତ ? ତୁମେ ଅଧୀର ହୁଅ ନାହିଁ । ଆମ୍ଭେମାନେ ଆଗେ ଦେଖୁଁ, ଶ୍ୟାମ କପଟ କଣେ—ତା' ଫାନ୍ଦରେ ପଡ଼ିଲେ ଆମ୍ଭ କିଶୋରୀଙ୍କର କି ଦଶା ହେବ ? ଏଇ କଥା ସିନା ! ଏଥିରେ ଦୁଃଖ କରିବାର କି'ଣ ଅଛି ?

( ଗୀତ )

ଯାତେ ମଣି ଅଗ୍ନିତ ଝାଞ୍ଜି ପବନେ ଶୀତ
ହେବାର ଶୋଭା ଦିଶେ ନାଁ ରେ
ଯିବ ପୁରତେ ଚାର ଗୃହିଁବ ସାସ୍ପାର
ଦମ୍ଭ ଲଙ୍କାକୁ ଖସାନା ରେ ।
ମଣିଲେ ସବୁ ଚୋର ଦେବ କରେ ନାଗର
ନୋହିଲେ ଗତି ରଖାନା ରେ ।

(ଶ୍ରୀମତୀଙ୍କ ସେନି ପ୍ରସ୍ଥାନ)

———

## ଚତୁର୍ଥ ଦୃଶ୍ୟ

—ପଥ—

( ବ୍ରଜନାରୀଗଣ ପ୍ରବେଶ ଓ ଗୀତ )

କୁସୁମ ରଣୀକି, ଯମୁନା ପାଣିକି,
ମନା କର ଦନେ ଆସିବ ନାହିଁ
ନୀପ ମୂଳେ କିଏ ମୂରଲୀ ବାଇଲେ,
ଘରକୋଣୁ କାନ ପାତିବ ନାହିଁ ।୧।
ମୟୂର ଦେଖିଲେ, ବାଙ୍କ ଚୂଡ଼ା ମଣି,
ଡରତେ ଲେଉଟି ନ ଗୃହିଁବ ଧନି,
ନୟନ କଜ୍ଜ୍ୱଳ, ନୀରେ ଗୋ ଛନ୍ଦାଇ,
ତାଳ ତଟେ ସ୍ମିତ କହିବ ନାହିଁ ।୨।
ସଞ୍ଜବେଳେ କେବେ, ହୋଇ ଏକୁଟିଆ
କୁଞ୍ଜ ଆଡ଼େ ଗୃହିଁ ନ ହୋଇବ ଠିଆ,
ନିତ ନିସ୍ପୃଟିଆ, ଖୋଜେ ସେ ହଟିଆ,
ଭୁଲାଇବ ମନ ଗୀତଟି ଗାଇ ।୩।
ପୁନିଅଁ ରାତରେ ଶଶୀଟି ହସିଲେ
ହୁର ମେଘେ ପୋଡ଼ା ଟିଟ୍ଟିଭ ଗାଇଲେ,
ଭୁଲ କୁଳ ଘର ମହତ ସଂସାର
ଚମକିବ ନାହିଁ ନିରେଖି ସ୍ମାଇ ।୪।
ଆଖିରେ ତାର ଖୋ କିମିଆ ରଖିଛି
ଚାନ୍ଦ ମୁହଁଟିରେ ଅମୀୟ ମାଖିଛି
ଗୃହିଁଲେ ଥରେ ସେ ମନ ମୋହନକୁ
ସାରା ଦହକ ସେ ହେବଟି ବାଇ ।୫।

(ପ୍ରସ୍ଥାନ)

———

## ପଞ୍ଚମ ଦୃଶ୍ୟ

ବନପଥ ।

( କଦମ୍ବ ମୂଳେ ଶ୍ରୀକୃଷ୍ଣ— ନିକଟରେ ଲଳିତା )

ଶ୍ରୀକୃଷ୍ଣ—(ଲଳିତା ହାତ ଧରି)

( ଗୀତ )

ରସବତୀ କାହାର ଯୁବତୀ ରେ କହ କହ ପ୍ରିୟସହି
ଖଣ୍ଡି ଯାଉଥିଲା ଚଣ୍ଡୀଣପଥ ସେ ମଣ୍ଡି ଦେଉଥିଲା ମହୀ ॥
ମଦନ କରର ମୁକୁରକୁ ନିନ୍ଦେ
ବଦନ ପୂର୍ଣ୍ଣିମା ଇନ୍ଦୁ
ହସି ଯାଉଥିଲା ଅଳପ ଅଳପ,
ଖସି ପଡୁଥିଲା ମଧୁ ।୧।
ଖେଳି ଯାଉଥିଲା ଖଞ୍ଜନ ପସ୍ୟେ,
ଚଳି ଯାଉଥିଲା ଅକ୍ଷି
ନଭୁଲିବ ଅବା କେଉଁ ଜନ ତା'ର,
ଭ୍ରୂଲତା ତାଣ୍ଡବ ଦେଖି ।୨।
ପଙ୍କଜ ନୟନେ ଦୂର କରୁଥିଲା
ଝଲକ ମୁଖ ମଣ୍ଡଳ,
ବସାଣ କାଞ୍ଚନ ଗୋରାକ, ଦେଖିଲେ
ପାଷାଣ ହିଁ ହେବ ଜଳ ।୩।
ଝୀନ ରଙ୍ଗ ଶାଢ଼ୀ, ଫୁଟି ଦିଶୁଥିଲା;
ମୀନ ସୁଲୋଚନା କୁଚ,
ଯେତେ ଯତନରେ ଘୋଡ଼ାଇ ଯାଏ ସେ
ତେତେ ଦିଶୁଥାଇ ଉଚ ।୪।

ଲଳିତା—ଶ୍ୟାମ, ଜଗତରେ ପୁରୁଷ ନିର୍ଲ୍ଲଜ ବୋଲି ଶୁଣିଥିଲି, କିନ୍ତୁ ଏଡ଼େ ନିର୍ଲ୍ଲଜ ତ କେଉଁଠି ଦେଖିନାହିଁ ।

ମଧୁ—(ପ୍ରବେଶ) ହଁ ସଖି, ଏଇଟା ପରା ସଖାଙ୍କ ବିଶେଷତ୍ୱ । ଦେଖୁନା, ସଖା ଅମର କଳା— ବିପଣ୍ଡ କଳା, ନାଁଟା ପୁଣି ମଦନମୋହନ । ଗୋଟା ପର ଗୋଡ଼ ଭାଙ୍ଗି ଠିଆ ହେବେ—ସେ ପୁଣି କଅଣନା, ତ୍ରିଭଙ୍ଗ ଠାଣି । ଚୈଖ ପର କଣେଇ ଚୁହିଁଲେ ତା ନାଁ ପୁଣି ହେବ ବାଙ୍କ-ଚୁହାଣୀ । ଏମିତ ଚଳ ଚୋଟିକ ଯାଉ ଖଜର ଚଛ—କି ଗୁଣ ଗାଇବ ତାଙ୍କୁର, ସେ ତ ମୂଳରୁ ପାହାଚ ପାହାଚ । ଯାହା କହୁଚ ସତ । କେତେ ପୁରୁଷଙ୍କୁ ଦେଖି ନଥିବ ତାହିଁକ ? ଗୋପର ଗଉଡ଼ୁଣୀ ଯେତେବେଳେ,ନିତ ଦହିପଶରା ମୁଣ୍ଡେଇ ଗାଁ ଗାଁ ବୁଲିବା ତମର ବେଉଷା । ଅଉ···

ଲଳିତା—ବଟୁ, ବାହ୍ମଣ ବୋଲି ସହୁଚାରୁ କ'ଣ ମୁହଁ ବଢ଼ି ଯାଉଛି କି ?

ମଧୁ—ସେଇଅ ତ, ବାଃ, ସଖୀ ଅମର ଏତେ-ବେଳକେ ସତ କହିଲେ । ହଁ ସଖି, ସେଇଥିପାଇଁ ପରା ପଇତାଟିଏ—

କୃଷ୍ଣ—ଲଳିତେ, ରାଗନାହିଁ । ସଖା ଅମର ସବୁ-ବେଳେ ସେଇଆ । ତାଙ୍କ କଥାରେ ବାଛ ବିଗ୍ଭର କରିବାର ନୁହେଁ ।

ଲଳିତା – ଏଇଥିପାଇଁ କଅଣ ଗ୍ରାଜରେ ଅଉ ମାଇପି-କାତ ରହିବେ ନାହିଁ ନା କଅଣ ?

ମଧୁ—ଏଁ, ରହିବେ ନାହିଁ ? ନ ରହିଲେ ଅମେ-ମାନେ ଖୁସାମତ କରିବୁଁ କାହାକୁ ? ଅଉ ମୁହଁ ଫୁଲେଇବ କିଏ ?

ଲଳିତା—ଶ୍ୟାମ, ମନେରଖ । ଏକଥା ନନ୍ଦ ଯଶୋଦା ଜାଣିବେ ।

ମଧୁ—ତମକୁ ଲାଜ । ଅମର କଅଣ ଥାଏ ? ମାଅଙ୍କ ଅଗେ ତମ କାନି ପଣତ ଛୁଇଁ କହିବ,—ନାୟମ କର,— ଏସବୁ କଥା କଞ୍ଚାମିଛ ।

କୃଷ୍ଣ—ସହ, ଛାଡ଼ ତାଙ୍କ କଥା । ମୋ ପ୍ରଶ୍ନର ଉତ୍ତର ଦେଇ ମନ ଟିକିଏ ଶାନ୍ତ କର ।

ଲଳିତା—କୋଉ ପ୍ରଶ୍ନ ?

କୃଷ୍ଣ—କହିଲି ତେବେ—ସେଇ···

( ଗୀତ )

ଥଳ କମଳ କି ଫୁଟି ଯାଉଥିଲା ଚରଣ ଚୁଲିବା ବେଳେ,
କନକ ଲତା କି ଲଳି ଯାଉଥିଲା ଅନେକ ରତନ ଫଳେ ।

ଲଳିତା — କେଜାଣି ବାବୁ । ମୁଁ ଜାଣି ନାହିଁ । ଗୋପରେ ଅଉ କାହାରଠାରୁ ଏ ଖବ‥ ନିଅ । ମୋତେ ବାଟ ଛାଡ଼ିଲି—ମୁଁ ଯାଏଁ ।

କୃଷ୍ଣ— ( ଗୀତ )

ରଙ୍ଗେ ଯାଉଥିଲା ରମଣୀ ରତନ
ଅଙ୍ଗେ ସାର ଶୋଭା ଘେନି,
ପାଦେ ଶୋହୁଥିବାର ବାଜେଣୀ ନୂପୁର,
ନାଦେ ମୋହୁଥିଲା ମୁନି ।୧।

ମଧୁ—ସଜନୀ ଗୋ ! ଆଜ କଉଳ ଉଦ୍ଦେଶ୍ୟରେ ଦେଇ ବୁଝାଇଲେ ଭଲା ତୁମେ ବୁଝିଲ—ଅବା ବୁଝିବ ? କହିଲ ଦେଖି ।

କୃଷ୍ଣ—ଲଳିତେ, ତୁମେ କଅଣ ଦୟାମାୟା, ସ୍ନେହ, ମମତା ସବୁ ପାଶୋରି ଦେଇ ଆସିଛ ? ଅବଳାର ତରଳ ହୃଦୟ କେଉଁଦିନ ଏତେ ଟାଣ ହେଲା, ମୁଁ ଜାଣି ନଥିଲି । (କାନ ଧରିବା)

ମଧୁ—କେମିତି ଆଜ ଜାଣିଲ ସଖୀ ? ପରଖି ନଥିଲେ ପର ।

ଲଳିତା—ଛାଡ଼, ତମ ଟାହୁଲି ଟାପରକୁ ମୁଁ ପାତ୍ର ନୁହେଁ । ଉଠ, ଉଠ—

( ଗୀତ )

ନଟନାଗରବର,
ବାଟରେ ହଟ ନାଟ ତୁ କରନା ।
ପାଟପ କୁଳ ବଟ-ସୁତ ତୁ ଅପାଟପ କହନା ।୦।
ଚଞ୍ଚଳ ମତି ଅତି ପ୍ରପଞ୍ଚ—ବାଳକ ମତି ମୁଞ୍ଚ ମୁଞ୍ଚ
ପାଞ୍ଚ ସଞ୍ଚଳ, ଘୁଞ୍ଚ ବହନ ଅଞ୍ଚଳ ଧରନା ।୧।
(କାନ ଛଡ଼ାଇଲେ)
ଯା'ଙ୍କର ଧରି ଚରଣ ମାନ-
ଭଙ୍ଗ ନ ସରଇ ରଜନୀ ଦିନ
ତା'ପରି ତୁ ନଚର ମୋହନ
ଯା ଯା ରହନା ।୨।

କୃଷ୍ଣ—ଲଳିତେ, ତମଠାରୁ ସତେ ଏକା ପଦେ ନ ଶୁଣିଲେ କୃଷ୍ଣର ପ୍ରାଣ ଉଡ଼ିଯିବ ଲାଗୁଛି । କହ ସଖି, ଦୟାକର । ଥରେ ସେହି ଲାବଣ୍ୟ ଚମତ୍କାର,—ଶ୍ୟାମ ମନଚୋର ଗୋରି ରୂପର ସନ୍ଧାନ କହ । ସମ୍ବାଦ ଦିଅ ସଖୀ ।

( ଗୀତ )

ଏ ସଖି ସେ' ସେ ରେ ।
ମୋ ମନ ରହିଲା ମଞ୍ଜୁ ବେଶରେ ।୦।
ଝଲମଲ ଝଲମଲ ଝଲକା ଝଲକେ,
ଅଟକି ରହିଲା ପଲକେ,
ନାହିଁ ନ ଥିଲା ଏ ମହୀ ଦେଶରେ ।୧।
ଗୃହପାଶେ ସହଚରୀ- ମଧ୍ୟେ ଗଲେ ମନୋହାରୀ
ତାରା ମଧ୍ୟେ ଚନ୍ଦ୍ରମା ସଦୃଶରେ ।୨।
ଭୃଙ୍ଗମାଳା ଚରିବାରୀ ଗୁମର ବୃନ୍ଦ ନିବାରି
ତନୁ ତାର ପଦ୍ମ ପରି ବାସରେ ।୩।
ମନେ ଭେଦ ମାରି ଶର- ମଣିଛୁ କଟାକ୍ଷ ତାର
କି ରଙ୍ଗରେ ଗଲେ ବେନି ପାଶରେ ।୪।

ଲଳିତା—ଥାଉ ଥାଉ ଶ୍ୟାମ ! ବେଳକୁ ବେଳ କିଛି ନ କହିବାରୁ ବଢ଼ି ବଢ଼ି ବହୁତ କଥା କହି-ଗଲଣି ।

ମଧୁ—ଓଜନ ହେଲା କି ସଜନୀ ? ଦିଅ ତେବେ, ଅଧେ ମୋତେ ଦିଅ । ଘରଠେଇଁ ପହୁଞ୍ଚାଇ ଦେଇ ଆସେଁ ।

ଲଳିତା—କିପରି ଜାଣିଲ ତୁମେ ବଟୁ ?

ମଧୁ—ତମରି ପରି ତ ଠିକ୍ ବୋଲି ମୋତେ ଲଳିତା କହୁଥିଲେ ।

ଲଳିତା—ଯାଅ, ତମେମାନେ । ଇଚ୍ଛାଥିଲେ, ଡର ନଥିଲେ, ଲାଜ ମହତକୁ ଦୂରକୁ ଫିଙ୍ଗି ପାରିଲେ ନିଜେ ଶ୍ରୀମତୀଙ୍କ ପାଖରେ ପହଞ୍ଚି ତାଙ୍କଠାରୁ ସବୁ ବୁଝ ।

କୃଷ୍ଣ—କି ନାମ କହିଲ ସଖି ? ଶ୍ରୀମତୀ ?

ମଧୁ—ତେବେ ସେ କ'ଣ ଶ୍ରୀମତୀ ? ଲଳିତେ, ସଖା ଆମର ଯାହାଙ୍କ କଥା ପଚାରୁଥିଲେ, ସେ କ'ଣ ସେହି ଶ୍ରୀମତୀ ?

ଲଳିତା—ମୁଁ ଜାଣିନାହିଁ ।

ମଧୁ—ଏ କଥା ତହିଁଲେ କି ଆଜ ଚଳେ ? କହିବାର ଆଉ ଅଧାବାଧା ବାକି କି ?

ଲଳିତା—(ବିରକ୍ତ ହୋଇ) ନାଇଁବାବୁ । ତମମାନଙ୍କ କଥାକୁ ମୁଁ ପାରେଁ ନାଇଁ—ଯାହା କରିବାର କରୁଥା'...(ଚୁଲିଗଲେ)

ଶ୍ରୀକୃଷ୍ଣ—(ଲଳିତାଙ୍କ ପଛେ ପଛେ ଶୀଘ୍ରଯାଇ) ଲଳିତେ, ଲଳିତେ, ଲଳିତେ...

ମଧୁ—(ବୋକାପରି ଚୁହିଁ) ହେ'ତ ଗଲେ । ତାଙ୍କ ପଛେ ପଛେ ସଖା ଅମର ତ ଲଳିତେ, ଲଳିତେ କହି ଚମ୍ପଟ । ମୁଁ ଏବେ କାହା ନାଁଅ ଧରି ଯିବି ? ଅଚ୍ଛା ଦେଖେଁ, ମୁଁ ବି ଗୋଟାଏ ଡାଇଦା କରି ଏଠୁଁ ବାହାରିଯାଏଁ । ସଖା । ସଖା । ସଖା ।
(କହି କହି ଚୁଲିଗଲେ)

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ଯମୁନା ତଟ—କୁଞ୍ଜ ସମ୍ମୁଖ )

ମଧୁ— ( ଗୀତ )

ସୁନ୍ଦର ନଟବର ମୋ ଜୀବନ ରେ
କୋଟିଏ ଶଶୀ ଯାକ ରୂପ ଲପନ ।୦।
ତୋ ହସେ ଗୋପପୁର-ସାରି ଅମୀୟବରି
ରତ ମରିବ ପୁରି କଞ୍ଜ-ନୟନ ।୧।
( ପଛରୁ ଶ୍ରୀକୃଷ୍ଣ ଆସି )

ଶ୍ରୀକୃଷ୍ଣ—(ସ୍ନେହେରେ) ସଖା ।

ମଧୁ—(ଗୀତରେ ବାଧା ହେଲା ପରି ଚମକି) କିଏ ?

ଶ୍ରୀକୃଷ୍ଣ—ତମର ଅନୁଗତ ସଖା ।

ମଧୁ—(କୁଣ୍ଠାଇ) ହାଙ୍କୁ, ଅନୁଗତ ? କାହାର ସଖା ? କିଏ ଅନୁଗତ ? ଛି ସଖା । ଏତେ ଅପରାଧୀ କରାଅନାହିଁ । ମୁହଁ ଶୁଖାଇ, ଆଖି ଛଳଛଳ କରି ଆଜ ଦିନେ ମତେ କନ୍ଦାଇବ ନାହିଁ । ଏ ବାଟରେ ଲୁହ ଫୁଟେରେ ନାହିଁ ସଖା, ରକ୍ତ ଫୁଟେ ।

ଶ୍ରୀକୃଷ୍ଣ—ତେବେ କ'ଣ କରିବି ଭାଇ ? ମୁଁ ତ ଇଚ୍ଛାକରି ମୁହଁ ଶୁଖାଇ ନାହିଁ, କେହି ଜଣେ ମୁହଁ ଶୁଖାଇ ଦିଏ ଆଉ ଆଖିରେ ମିଶି କନ୍ଦାଏ ।

ମଧୁ—ହସାଏ ମଧ୍ୟ—

କୃଷ୍ଣ—କାହିଁ ? ନାହିଁ ତ ।

ମଧୁ—ସେତିକି ତ ଭାଇ ତାଙ୍କର ବିଶେଷତ୍ୱ । ସେଇଥିଲାଗି ତ ତାଙ୍କୁ ଅମର ପ୍ରାଣ । ସେଇଗୁଣ ପାଇଁ ତ ତାଙ୍କୁ ଗୋପପୁରର ଆଖି ।

ଶ୍ରୀକୃଷ୍ଣ—ବନ୍ଧୁ ? ଏ କଥା ଶୁଣି ମୋର ଲାଭ ?

ମଧୁ—ହଁ ଭାଇ, ତମର କିଛି ଲାଭ ନାହିଁ । ଏ ମଧ୍ୟ ତମର ବିଶେଷତ୍ୱ । ନୋହିଲେ ତୁମର ନାମଟି ରସରାଜ ହୁଅନ୍ତା କିପରି ?

ଶ୍ରୀକୃଷ୍ଣ—ପରିହାସ କରନାହିଁ, ବନ୍ଧୁ ।

ମଧୁ—ତୁମେ ଆଗେ ଛାଡ଼ ।

ଶ୍ରୀକୃଷ୍ଣ—ମୁଁ କ'ଣ ଛାଡ଼ିବି ?

ମଧୁ—ସେଇ ପରିହାସ ।

ଶ୍ରୀକୃଷ୍ଣ—କେମିତ ? ମୁଁ କ'ଣ ପରିହାସ କଲି ?

ମଧୁ—ସେଇ ଅନୁଗତ, ସେ କଥାଟି ଛାଡ଼ ।

ଶ୍ରୀକୃଷ୍ଣ—ଅଚ୍ଛା, ହଉ ଭାଇ । ଏଣିକି ଆଉ ମୁହଁରେ କହିବି ନାହିଁ ।

ମଧୁ—ବେଶ୍, ତେବେ ଏ ଦୁଃଖ କାହିଁକି କହୁଛ ?

ଶ୍ରୀକୃଷ୍ଣ—ଜାଣ ତ ସବୁ ।

ମଧୁ—ଏଥିକି ଚିନ୍ତା କାହିଁକି ? ତୁମେ ଟିକିଏ—(ବାଧାଦେଇ) ଶୁଣ, ଶୁଣ । ତୁନି ହୁଅ—କିଏ ସବୁ ଆସୁଛନ୍ତି ?

(ଅଦୂରେ ସଖୀ ପରିବେଷ୍ଟିତା ଶ୍ରୀମତୀ ଶ୍ୟାମଙ୍କୁ ଦେଖି)

ଶ୍ରୀମତୀ—(ସଖୀ ପ୍ରତି)

( ଗୀତ )

କହ ଲୋ ସଜନୀ, ସେ କଦମ୍ବମୂଳେ କେ'ସେ
ନବୀନ ନୀରଦ ତନୁ କେଡ଼େ ଶୋଭିବନ ଦିଶେ ।୦।
କିଶୋର ବୟସ ତା'ର—ଛବି ଦିଶେ ମନୋହର
ନାଗରୀଙ୍କ ଚିତ୍ତଚୋର ନଟବର ବେଶେ ।୧।
ମନେ କର ବିବେଚନା—ଜାଣେ କି ମନ୍ତ୍ର ରଚନା
ବୋଳିଥାଇ ଗୋରଚନା ବନ୍ଧୁ-ଭାଲ ଦେଶେ ।୨।

ଜଣେ ସଖୀ—ଧନି । କ'ଣ ସ୍ୱପ୍ନ ଦେଖିଲୁ କି ? ଚିହ୍ନିପାରୁନାହିଁ କିଏସେ ସିଏ ?

ଶ୍ରୀମତୀ—ସତେ ସଖି । କିଏ ସେ ? କି ଲାବଣ୍ୟରୂପ ।
ଚାହିଁଲେ ଆଖି ଝଲସି ପଡ଼ୁଛି । ତେବେବି ମନ
ସେହି ମୋହନ ରୂପ ଚାହିଁବାକୁ, ସେହି ସୁଧା
ପିଇବାକୁ ଧାଏଁ—ଆଖି ଯାଏଁ ଯାଏଁ ଖୋଲି
ହୋଇପଡ଼େ ।

ଜଣେସଖୀ—ତେବେବି ଚିହ୍ନି ନାହିଁ ? ଏତେ
ନିକଟରେ ଥାଇ ମଧ୍ୟ, ତେବେବି ଭ୍ରମ ହେଉଛି ?
ଚିହ୍ନି ପାରୁନାହିଁ ? ସତ କହିଲି···

( ଗୀତ )

ସେହିପରି ଚିତ୍ତଚୋର,
ତୋ ହୃଦୟ ହାରଟି ।୦।
ଅଖଣ୍ଡ ଶଶୀ ମୁଖ, ଅଖିଳ ଜନ ସୁଖ,
ଅମିୟ ଝରେ ଲେଖ,
ଅଳକର ଅଳଙ୍କାର ନୀଳମଣି ସାରଟି ।୧।
ଚଳନ ନବଘନ, କଳନା କି ବରନ,
ଛଳ ନୟନ ଧନ,
ବଳକା'ର, କଳତା'ର, ସହିବାର ବାର ଟି ।୨।
ଅନାନାଁ ତାକୁ ମିତ, ତା ନାଁ ନାହିଁ ବିଦିତ,
ମନା ନାଗରୀ ହିତ,
କଳାଭୂତ, କଳାଶତ୍ର, କଳାବନ୍ତ କାଳଟି ।୩।
କେ ବୋଲେ ନନ୍ଦଗୃଠ, ଲମ୍ପଟ ସେ ନିପଟ,
ନ ଘେନେ କା'ଅକଟ,
ଚାଲି ସହୁ, ନୁହ ଦହୁ, ଦାଉ ସହୁ ତା'ରଟି ।୪।
( ଶ୍ରୀମତୀ ଥକ୍କା ହୋଇ ଚାହିଁ ରହିଲେ )

ଜଣେ ସଖୀ—କ'ଣ ଦେଖୁଛ ମ ଅଜ ? ରାଧେ,
ଚେତା ଅଛିଟି—ନା ଚେତନା ହାରିଲଣି ମ ?

ରାଧା—ଏ କ'ଣ ସେ···

ବିଶାଖା—ହଁ ସହି, ସେ—ନିତ ନୂଆ ସେ ।

ରାଧା—ପରତେ ଅସେ ସହି । ପୁଣି ସନ୍ଦେହ ଲାଗେ ।
ମନେହୁଏ ପୁଣି ନୂଆ ଜଣେ କିଏ । ସେଦିନ
ଗୋଠ ବାହୁଡ଼ା ବେଳେ···ଏ କ'ଣ ସେ ?

ଜଣେ ସଖୀ—ରାଈ ! କେତେ ଚାହୁଁଛ ? ଚାହିଁରହିଲେ
ତେଣେ ଯମୁନା ଯିବା ହେବନାହିଁ । ଅଜି ସେତ
ସବୁଦିନେ ନୂଆ ନୂଆ ।
(ସଖୀ ସମସ୍ତେ ଗୀତ ଗାଇ ଗାଇ ଶ୍ୟାମ ଶୋଭା
ବର୍ଣ୍ଣନା କରୁଥିଲେ)

( ଗୀତ— )

ଧନୁ ଧନୁ ନନ୍ଦ ତନୟ ଗୋ ନବନବ ପରି ଗୋ ମିତ ।
ନିତ ଦେଖୁଥିଲେ ପ୍ରୀତି ବଢ଼ୁଥାଇ
ତୃପତ ନୁହଇ ଚିତ୍ତ ଗୋ ମିତ ।୦।
ହାସରେ ସର୍ଗ, ଭାଷରେ ତାର ପୀୟୁଷ ଥାଇ ପୂରି,
ଶ୍ରୁତିରେ ପଡ଼ି ଧୃତି ନାଶଇ
ବୃତ୍ତି ତେଜଇ ନାସ୍ତି ଗୋ ମିତ ।୧।
ଖଞ୍ଜନ ମୀନ, ଗଞ୍ଜନ ମୃଗ କଞ୍ଜ ନୟନ ତା'ର
ଘାତରେ ପଡ଼ି କାତି ମାରଇ
ଜାତ ମଦନ ଶର ଗୋ ମିତ ।୨।
ଛାଡ଼ି ସବୁ ସଜାଡ଼ିଲା ତନୁ କେତେକାଳ ବସି ବିଧି,
କାମ ହୋଇଲେ ଝାମ ହୋଇବ
ଶ୍ୟାମ ମୂରତି ଚାହିଁ ଗୋ ମିତ ।୩।
(ଶ୍ରୀମତୀଙ୍କ ଧେନ ପ୍ରସ୍ଥାନ)

ଶ୍ରୀକୃଷ୍ଣ—(କିଛିକ୍ଷଣ ନିରବରେ ଚାହିଁ, ଦୀର୍ଘଶ୍ୱାସ ମାରି)
ବଟୁ···

ମଧୁ—ଆଜ ବଟୁ, ବଟୁ, ବଟୁ ! ବଟୁ କ'ଣ କରିବ ?
ସବୁ ତ ତମ ଆଖି ଆଗରେ ଦେଖାଇ ଦେଲି,
ଅଣାଇ ଦେଲି, ଆଉ ଫେର୍ ବଟୁ, ବଟୁ, ବଟୁ ?
କରେ ବାରୁ ! ରାନ୍ଧିଲି, ବାଢ଼ିଲି, ପରଶିଲି ।
ଅଣ୍ଟାଣିଅଣ୍ଟାକୁ ଗୁଣ୍ଡା ମଧ୍ୟ ବାଇଦେଲି । ଖାଇବା
ଲୋକ ତ ଦ'କିଡ଼ାର ନୁହେ । ଆଉ ମୁଁ କଅଣ
କରିବ ? ମୁଁ କଅଣ ତମ ପାଇଁ ଆଉ ଗିଳିବ ?
ଅଜ୍ଞ ଲୋକ ଏ ! ଖାଲି ବଟୁ, ବଟୁ, ବଟୁ,
ଡାକ, ଡାକ ।

ଶ୍ରୀକୃଷ୍ଣ—ରାଗ ନାହିଁ ସଖା ।

ମଧୁ—ଓଃ, ଗେଲେଇ ହୁଅନାଇଁ, ଗେଲେଇ ହୁଅ
ନାଇଁ । ରାଗ ନାଇଁ ସଖା । କେତେ ପରିଶ୍ରମ

କର—ବାଟ ମଝିରେ ମୁଁ ଅଣିଥିଲି ଜାଣ ? ତୁମେ ଗୋଟେ ନିହାତି ଢ଼'ଙ୍ଗଡ଼ାର । ପଦେ ହେଲେ ଆଖ କୋଣରେ ତାଙ୍କୁ କହିଦେଇ ନ ଥାନ୍ତ ? ଯେମିତେ ତମେ କିଛି ନ କହିଲ, ସେମିତେ ତାଙ୍କର ସେ ଗଲେ । ଏବେ ଗୁହିଁଥା—

ଶ୍ରୀକୃଷ୍ଣ—କ'ଣ କରିବା ସଖା ? କ'ଣ ହବ ?

ମଧୁ—କେଜାଣି କ'ଣ ହବ ? ତୁମେ ଜାଣ, ନା ମୁଁ ଜାଣେ ? କ'ଣ କରୁଛ—କରୁଥା' । ଯାହା ମନ ତାହା ହଉ । ସବୁ ତ ହାତରପାଞ୍ଚ ଘୁଞ୍ଚିଲି । ପଗ୍ରୁଛ,—ସେଇଟୁ କ'ଣ ହବ ?

( ଦୂରରେ ଏକ ପାର୍ଶ୍ବରେ ଲଳିତା—ଶ୍ୟାମ ପ୍ରତି )

ଲଳିତା— ( ଗୀତ )

ଶ୍ୟାମ ନାଗର ହେ, ଏ ବେଶ ହୋଇବ ନାହିଁ ।୦।
ଏ ବେଶ ହୋଇଲେ, ପାଷାଣ ତରଳେ
ଯୁବତୀ ବଞ୍ଚିବେ କେହି । ୧ ।
ଭଗ୍ନ ହୋଇଥିବ କଦମ୍ବର ମୂଳେ
ନଟବର ବେଶ ହୋଇ,
ଘେନିଥିବ ଯେବେ ମୋହନ ମୁରଲୀ
ଅଧର ଚୁମ୍ବିବ ନାହିଁ । ୨ ।
ପିନ୍ଧିଥିବ ଯେବେ ପିତ'ମ୍ବର ତୁମ୍ଭେ
ଭୂମିରେ ଲୋଟିବ ନାହିଁ,
ହସୁଥିବ ଯେବେ ମୃଦୁମୃଦୁ ହୋଇ
ତେରଚେ ଗୁହିଁବ ନାହିଁ । ୩ ।

ମଧୁ—ଦଅ, ଦଅ, ଟେକି ଦଅ—ଏଇ ଟେକା-ଟେକାରେ ତ ବଡ଼ଲୋକଘରର ପିଲାଗୁଡ଼ାକ ସରନ୍ତି । ଆମ ଦେଶ ରଜାଘରର ଏଇଟା ହେଲା ନାଗର କମିଅଁ ।

ଲଳିତା—ଏ କଥାଗୁଡ଼ା କ'ଣ ମୋର ଟେକାଟେକି ହେଲା ବଟୁ ?

ମଧୁ—ନାଁ, କିଏ କହିବ ? ତମ ମୁଣ୍ଡ ସୁନ୍ଦର, ଗଣ୍ଡ ସୁନ୍ଦର, ଦନ୍ତ ସୁନ୍ଦର, ହାତ ସୁନ୍ଦର—। ଏଗୁଡ଼ାକ କ'ଣ ସତରେ ଟେକାଟେକି ? ଏ ଗୁଡ଼ାକ ଗୁଡ଼ାଏ ସବୁ ଖୁସାମତ ନା ।

ଶ୍ରୀକୃଷ୍ଣ—ଲଳିତେ । ସଖାଙ୍କର ତଙ୍ଗ ସେହି ଭଳି—ଏଥିରେ ତୁମେ ଯେମିତି ଦୁଃଖ ନକର ।

ମଧୁ—କଲେ ଏବେ—

ଲଳିତା—ନାଇଁ, ନାଇଁ, ବଟୁ, ଏଥିରେ ଦୁଃଖ କରିବାର କିଛି ତ ନାହିଁ ? ପ୍ରକୃତରେ ତୁମେ ଯେବେ ଏ ରୂପରେ ଏଇ କଳାକାହ୍ନୁଠାରେ ଟିକିଏ କିଛି ମାଧୁର୍ଯ୍ୟ ଦେଖୁଥା'ନ୍ତ—ଅଧିକ ତୁମର ଚୂଡ଼ା ଦହି ଏତେ ସୁନ୍ଦର ଦଶନ୍ତା କି ?

ମଧୁ—ଜାଣ, ଜାଣ ? ଦହି ବିନେ ତୁମେ ଗୋପୀକା ନୁହଁ । ଏତକ ମନେ ରଖିଛ ତ ? ଏଇଭଳି ବ୍ରହ୍ମଜ୍ଞାନୀ ବ୍ରାହ୍ମଣଙ୍କ ପାଇଁ ଦହି ଖୋଜା ନ ହେଲେ, ତମର ଏ ଗୋପ ଗଳ୍ଳଜୁଣୀ ଗୁଡ଼ାଙ୍କର ଏ ଗୁଡ଼ର ଥା'ନ୍ତା କେଉଁଠି ? ଛାଡ଼ ସେ କଥା । କି ମିଳିବ ସେଥିରୁ ? ଦଅ ପୋଥି ଲଗାଅ ଅମର । ଜୁଅଡ଼େ ଏ ଅପାତତ ଅନୁଗ୍ରହଟା ଭଲ ?

ଲଳିତା—ଅନୁଗ୍ରହଟା ଅଜ କ'ଣ ? ବୋଉଠେ, କାହିଁ ?

ମଧୁ—ଏଇ ତମର—ଅଖୋଜା—ଅଲୋଡ଼ା ବକେଟା ।

ଶ୍ରୀକୃଷ୍ଣ—ଛି ବଟୁ, ଏମିତି କଥା କହନ୍ତି, ନା ? ଲଳିତେ, ତୁମ ପଥ ଗୁହିଁ ବସିବା ବେଳକୁ ଟିକେ ତମ ଦେଖା ମିଳିଲା । ତମେ କ'ଣ ମନକଥା ଜାଣିପାର ସହି ?

ମଧୁ—ହଁ, ହଁ, ଅନ୍ତର୍ଯାମିନୀ, ଅନ୍ତର୍ଯାମିନୀ ସେ ।

ଶ୍ରୀକୃଷ୍ଣ—ଯାଃ, ସଖା । ସବୁବେଳେ ତମର···

ମଧୁ—ହଁ, ହଁ, କହୁଯାଅ, କହୁଯାଅ । ତମର—ଏଇ କଥା—ସହି, ଅନ୍ତର୍ଯାମିନୀ କହିଲ, ଅଧା ପାଦ ପୂରଣି କଲି ।

ଲଳିତା—ତୁମେ ସବୁବେଳେ ମନ୍ଦ—

ମଧୁ—ମୁଁ ତ ନ ଜାଣଇ ଏତେ ଛନ୍ଦ ।

ଲଳିତା—କି ମିଳିବ ମୋତେ ଏତେ କଥାରୁ ? ଶ୍ୟାମ, କହିବଟି, ନବୀନ ଅଧିରେ ଏମିତି ଗୁହିଁ ରହି ତୁନି ହୋଇ ଠିଆ ହୋଇଥିଲ କାହିଁକି ?

ମଧୁ—ହଁ, ବାଃ—ଏତେବେଳକୁ ଗପ ଲଗିଲା । ବେଶ୍ ସଖା । ଦଅ ସଖୀଙ୍କ ପ୍ରଶ୍ନର ଉତ୍ତର ଦଅ ।

ଶ୍ରୀକୃଷ୍ଣ—କ'ଣ ଉତ୍ତର ଦେବ ସଖା ?

ମଧୁ—କାହିଁ ? ତୁମେ କ'ଣ ଗୁହିଁଥିଲ, କାହାକୁ ଗୁହିଁଥିଲ, କପରି ଗୁହିଁଥିଲ,—ଏ ସବୁର ଉତ୍ତର ଦେବ ତ ? ଆଉ କ'ଣ ? ନା କ'ଣ ଲଳିତେ ? ଉନ୍ନ ଲଗୁ ।

ଲଳିତା—କହିଲ ତ ବଟେ, ସତ କଥା ।

ମଧୁ—କେବେ କ'ଣ ଏ ପ୍ରଶ୍ନ ମିଛ କହନ୍ତି ଯେ—ଆଜ କହିବେ ? ସଖା ଉତ୍ତର ଦେଲା, କୁହ ।

ଶ୍ରୀକୃଷ୍ଣ—ଗୁହିଁଥିଲି ସଖି, ସେଇ ଛବିକି । ଦେଖୁଥିଲି ଅଖିରେ ସେଇ ଗଣବଣା ଏଣିର ଚକିତ, ଅଥଚ ଚଞ୍ଚଳ ଗୃହାଣୀ ।

( ଗୀତ )

ମଦାଳସୀ, ମନ୍ଦହସି
ନେତ୍ର ଭାଳି ଯାହା ଗୁହିଁ ଦେଲା ରେ ।
ଧନ୍ୟ ତାର ଶ୍ରୀମୁଖ ଶଶୀ—
ଗଗନୁ କି ପଡ଼ିଛି ଖସି
ମୋ ଧୈର୍ଯ୍ୟ ଗୁଣ୍ଡିକୁ—
ପ୍ରଖର ଶକ୍ତିକୁ
ବଳେ ଆକର୍ଷଣ କରୁଥିଲା ରେ । ୧ ।
ଭ୍ରୂଯୁଗ ଅଞ୍ଜନ ଗୁଣ—
ସନ୍ଧି ତହିଁ କଟାକ୍ଷ ବାଣ
ବେଗରେ, କ୍ଷିପ୍ରରେ ରମଣୀ ମୋ'ପରେ
ପଟେ ପଟେ କରି ବିନ୍ଧୁଥିଲା ରେ । ୨ ।
ଭାଲେ ଶୋହେ ଅଳକା ପନ୍ତି—
ଦଏ ଯୁବା ଧଇର୍ଯ୍ୟ ମନ୍ତି
ତଥି ପାଶେ ଲମ୍ବାଇଛି ଚନ୍ଦ୍ର ଝୁମ୍ପି
ମାନସକୁ ଝାମ୍ପି ନେଉଥିଲା ରେ ।୩।
ମଲ୍ଲି ଜଡ଼ି ତଳେ ଝଲକା—
ଝଲକାଇ କରଇ ଫାଙ୍କା
ଘାଟକର ଜ୍ୟୋତି ଶୁକ୍ତି ବୃହସ୍ପତି-
ଜ୍ୟୋତି ମାନଙ୍କର ମୋହୁଥିଲା ରେ ।୪।

ମଧୁ—ଏଥିରୁ କିଛି ବୁଝୁଛ ଭଲା ଲଳିତେ ?

ଲଳିତା—କାହିଁ ?

ମଧୁ—ମୁଁ ମନେ କରିଥିଲି, ଏକୁଟିଆ ମୁଁ କାଳୁ ବୋଲି, ସଖାଙ୍କ କଥାଗୁଡ଼ିକ ଠିକଣାକରି ଶୁଣିପାରିଲି ନାହିଁ । ତୁମେ ବି ତ ସେଇଆ—

ଲଳିତା—ସତେ ଶ୍ୟାମ । ଏସବୁ କ'ଣ କହୁଛ ? କାହା କଥା ?

ଶ୍ରୀକୃଷ୍ଣ—ଲଳିତେ, ବୁଝି ଅବୁଝା ହେଲେ ? ଶ୍ୟାମର ଗତି କ'ଣ—କ'ଣ ବା ତୁମେ ନଜାଣ ? ସଖା । ତୁମେ ମଧ୍ୟ···

ମଧୁ—ହଁ ସଖା । ମୁଁ ମଧ୍ୟ—

( ଦୁହିଁଙ୍କ ମଝିରେ ଛିଡ଼ା ହେଲେ

ଶ୍ରୀକୃଷ୍ଣ—ବଟେ । ପରିହାସକର, ମନା ନାହିଁ । ମାତ୍ର ଶୋଷା ମୁଁ । ଜଳ ଦେଇ ଜୀବ ରଖ ସିନା···

ମଧୁ—ହଁ ସଖା । ଏଥର ବୁଝିଲି । ବଡ଼ ଦୁଃଖ ଲାଗୁଛି ମତେ । ଲଳିତେ···

ଲଳିତା—କାହିଁ, ତୁନି ହୋଇ ରହିଲ ଯେ ? କ'ଣ, ଶିଖିଲ କି ?

ମଧୁ—ନାହିଁ ଯେ । ଏଇ ତମକୁ କହୁଥିଲି ।

ଲଳିତା—ତା'ତ ମୁଁ ବୁଝୁଛି ।

ମଧୁ—ତେବେ ତ ସବୁ ବୁଝୁଥିବ ? ଆଉ ମୁଁ ଅଧିକ କହିବି କ'ଣ ? ନାଁ କ'ଣ ସଖା ?

ଲଳିତା—ଏଥିରୁ ମୁଁ କଣ ବୁଝିଲି ?

ମଧୁ—ତୁମେ ତ ଚତୁରୀ । ଜାଣୁଥିବ ଯେ । ନା କ'ଣ ସଖା ?

ଶ୍ରୀକୃଷ୍ଣ—ଲଳିତେ । କହୁ ଆଉ ଫଳ ନାହିଁ । ଅନେକ-ବାର କହିଛି । ଶ୍ୟାମର ଜୀବନ ରଖିବାକୁ ମନଥିଲେ ଥରେ ସେ···

(ଲଳିତାର ହାତଧରି ମୁଖ ଚାହିଁଲେ)

ଲଳିତା—କଥାଟା ଖୋଲି କହିଲନାହିଁ ତେବେ ? (ହସି) ହଉ—

( ଗୀତ )

ଗଲି ମୁଁ ଶ୍ୟାମ, ନାଗରୀମଣି ଆଗକୁ
ଜଣାଇବି କରଧରି ଛଇଳ ତୁମ୍ଭ ଦୁଃଖକୁ ।୦।
ଅଧ ଅଧରରେ ଯେବେ-ହସିବ କିଶୋରୀ ତେବେ,
ଶୁଣି ମୋ ଗୁଣ୍ଠୁବାଣୀକି ଲଭିବି କୋଟି ନିଧିକୁ ।୧।
ଚରିଲେ ବାଙ୍କ ଭୂରୁ-ଗର୍ଭଫୁଲ ହେବ ଗରୁ,
ଜୀଇବା ଧିକ ବୋଲିବା ଲୋଡ଼ିବି ମୁଁ ଗରଳକୁ ।୨।

(ପଟ୍ଟକ୍ଷେପ)

— — —

## ଦ୍ୱିତୀୟ ଦୃଶ୍ୟ

ବନ-ପଥ ।

ବୃନ୍ଦା— ଗୀତ

ନବକୁଞ୍ଜ ବନେ, ମୁରଲୀ ବାଏ ନାଗର ।
ତାନେ ଉଛୁଳେ ଯମୁନା ନୀର···ପ୍ରେମ ଥରଥର ।୦।
ମୁରଲୀ ତାନେ ତ ଧେନୁ ଅଚଳ ରହେ,
ଭ୍ରମର ଗୁଞ୍ଜନ ମତ୍ତ ଭୃଙ୍ଗ ନିକର । ୧ ।
ଅଞ୍ଜନ ନବଘନ, କିଶି ବଦନ-ଧର,
ରଞ୍ଜନ କରେ ଗୋପୀ ପ୍ରୀତ ଅଧର । ୨ ।

(ପୌର୍ଣ୍ଣମାସୀ ପ୍ରବେଶ)

ବୃନ୍ଦା—(ପ୍ରଣାମ କରି) ଦେବି । ଆପଣ ଏଠାରେ କିପରି ?

ପୌଃମାଃ—ତମକୁ ଖୋଜି ଖୋଜି ।

ବୃନ୍ଦା—କାହିଁକି ଏ ଅନୁଗ୍ରହ ଦେବି ?

ପୌଃମାଃ—ତମକୁ ଗୋଟିଏ କାର୍ଯ୍ୟ କରିବାକୁ ଦେବି ।

ବୃନ୍ଦା—ଆଦେଶ ଦିଅନ୍ତୁ ଭଗବତୀ ।

ପୌଃମାଃ—ତୁମେ ଏଇନେ ଶ୍ରୀମତୀଙ୍କ ମନ୍ଦିରକୁ ଯାଇପାରିବ ?

ବୃନ୍ଦା—ଯିବି ।

ପୌଃ ମାଃ—ଯାଇ ଦେଖିବ, ଶ୍ରୀମତୀଙ୍କ ଅବସ୍ଥା । ଲଳିତା ଶ୍ୟାମସୁନ୍ଦରଙ୍କ ପାଖରୁ ଫେରିଥିଲେ । ମୁଁ ତାଙ୍କୁ ଶ୍ରୀମତୀଙ୍କ ପାଖକୁ ପଠାଇ ଦେଇଛି । ସେଦିନ ଗୋଠ ବାହୁଡ଼ା ବେଳୁ, ରସରାଜ ଅଭ ମହାଭାବଙ୍କର ନେତ୍ରାନ୍ତଭେଟ ସୃଷ୍ଟି ହୋଇ ଯାଇଛି, ମାତ୍ର ସହଜରେ ମଣି ମିଳିଲେ, ମଣିର ମହତ୍ତ୍ୱ ରହେ ନାହିଁ । ମାନବ ଶରୀର ଧରି ଏ ଦୁହିଁଙ୍କର ମନରେ ଉଭୟଙ୍କ ପ୍ରତି ଉତ୍କଣ୍ଠା ବୃଦ୍ଧି କରିଦେବା ଆବଶ୍ୟକ ମଣୁଛି ।

ବୃନ୍ଦା—ତେବେ କ'ଣ ମୋତେ ଯିବାକୁ ହେବ ?

ପୌଃ ମାଃ—ପ୍ରଥମେ ତୁମେ ଯାଇ ଶ୍ୟାମଙ୍କୁ ମୁରଲୀ ବଜାଇବା ପାଇଁ ପ୍ରବର୍ତ୍ତାଇ ଦିଅ । ମୋହନ ମୁରଲୀ ତାନରେ ବୃନ୍ଦାବନ ଭରି ଉଠୁ । ଲଳିତାକୁ ମୁଁ କହିଛି, ସେ ଶ୍ରୀମତୀଙ୍କୁ ଉପବନକୁ ନେଇ ଏକାନ୍ତରେ ବେଶ ବଢ଼ାଉଥିବେ ଆଜି ବେଳେବେଳେ ଶ୍ୟାମ ଗୁଣ ଗାଇ ତାଙ୍କ ଉତ୍କଣ୍ଠାକୁ ବଢ଼ାଇ ଦେବେ । ଠିକ୍ ସେତିକିବେଳେ ଯେପରି ଶ୍ରୀମତୀଙ୍କ କାନରେ ମୋହନ ମୁରଲୀର ମଧୁର ସ୍ୱର ବାଜେ । ଏଣିକି ବୁଝିଲ ?

ବୃନ୍ଦା—ବୁଝିଲି ଦେବି ।

ପୌଃ ମାଃ—ତେବେ ଯାଅ । ମୁଁ ଜଟିଳା, କୁଟିଳାଙ୍କୁ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ରଖାଇ ଦେବି । ଯେପରି ସେମାନେ କୌଣସି କାରଣରୁ ଉପବନକୁ ଯାଇ ନ ପାରନ୍ତି । ତୁମେ ଶୀଘ୍ର ଯାଅ ।

ବୃନ୍ଦା—ମୁଁ ତେବେ ଆସୁଛି ।

( ଉଭୟଙ୍କର ଉଭୟ ଦିଗରେ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

ଉପବନ ।

( ଲଳିତା ଓ ସଖୀଗଣ ମିଳି ଶ୍ରୀମତୀଙ୍କ ବେଶ ରଚନା କରୁଥିଲେ । )

ଶ୍ରୀମତୀ—ସେଇଠୁ କ'ଣ ହେଲା ସହି ?

ଲଳିତା—ହବ କ'ଣ ଆଉ ? ଦେଖିଛୁ—ଗୃହିଁ ରହିଛି । ଆଖି ପିଛୁଳା ପଡ଼ିବାକୁ ଡର କାହିଁ ବାଧେ ?

ଶ୍ରୀମତୀ—ଭାଗ୍ୟ ପିନା ତୋ'ର ଲଳିତେ !

ଲଳିତା—ସତେ ସହି—

( ଗୀତ )

ଦେଖିଲେ କାହ୍ନୁ ମନୁଁ ନ ଯିବ ଗୋ,
ସତୀବ୍ରତ ତନୁ ସଜାବ ଗୋ । ।
ନବ ନୀରଦ ନେବ ଶ୍ୟାମଳ ପଦ୍ମ ଗାତ୍ର,
କାମ ଉଦରେ ତନୁ ଭାଜିବ ଗୋ ସଖି । ।
ଦିନେ ଦେଖିଲି ତୋଳେ ତଳେ କଦମ୍ବ ମୂଳେ,
ଅନଙ୍ଗକୁ ଲକ୍ଷ କି ସଜାବ ଗୋ ସଖି ।୨।

ଦେଖିଲେ ତାଙ୍କ ନୃତ୍ୟ   ନ ଯିବ ତ ଚିତ୍ତ,
ଭୁଲି ତା'ଠାରେ ମନ ମଜ୍ଜିବ ଗୋ ସଖି ।୩।
ଦିନେ ସେ କୁଞ୍ଜବନ   ଦେଖି ହେଲି ଅଜ୍ଞାନ,
ସେଦିନୁ ଯା ହୋଇଅଛି ତା ଜାଣ ଗୋ ସଖି ।୪।

( ଦୂରରେ ମଧୁର ବଂଶୀଧ୍ୱନି ଶୁଭିଲା )

ଶ୍ରୀମତୀ—ଏ ଭାଗ୍ୟ କି'ଣ ଆଜି କାହାର ଅଛି ସଖୀ ?

ଲଳିତା—କାହିଁକି ରାଧେ, ଏପରି କଥା ? ଆଜି ତମ ମୁହଁରେ ଏକଥା କାହିଁକି ? ନୀଳମଣି ତମ ଗୁଣ ଶୁଣି ପାଗଳ ହେଲେଣି । ଆଜି ସହି, ସେହି ନଟନାଗର ଶ୍ୟାମର ପାଗଳ ଭଙ୍ଗି ଦେଖି ଭାଗ୍ୟବତୀ ମୁଁ । ବାସ୍ତବରେ ଏ ଲଳିତା କି'ଣ କହିବ ରାଧେ ? ଯାହା ଦେଖିଲି ଆଜି ସେହି କେଳି କଦମ୍ବ ମୂଳେ—ସେହି ତ୍ରିଭଙ୍ଗ ବଙ୍କିମ ଶ୍ୟାମରୂପ—କିରଣ ଗୃହାଣୀ—ସେଇ ଏକ ଦୃଷ୍ଟି—ଛଳଛଳ ଆଖି ଦୋ'ଟି । ସଜନୀ ! କାହାଲାଗି ଶ୍ୟାମର ଏ ରୂପ ? ଦେଖି ଆଖି ମଜ୍ଜି ଗଲା । ସତରେ ଭାଗ୍ୟ ମୋର ସିନା । ତମରି ସେବାରୁ, ତମରି ଦୟାରୁ ଲଳିତା ଭାଗ୍ୟବତୀ । ଆଖି ଆଜି ଧନ୍ୟ ମୋର ।

( ଗୀତ )

ପରବଶ ହେଲା ନେତ୍ର ମୋହର ରେ,
ପ୍ରାଣ ସଜନୀ ।
ଦେଖି ଶ୍ୟାମଳ ତନୁ   ପୀଡ଼ିଲା ଅତନୁ
ତା' ବିନା କେ ପ୍ରତିକାର ରେ ।୦।
ଚଳଭୃଙ୍ଗ-ପାଳିତ   ନୀଳମଣି ଜୀମୂତ
କୁନ୍ତଳ ବିଧୁନୁଦ   ତମାଳ ଧାବୀ ନେତ୍ର
ଚିତ୍ତ ଜାତ ପ୍ରସନ୍ନ   ଭଙ୍ଗି କି ମଧୁ ବ୍ରତ
ବଙ୍କ ଇନ୍ଦୀବର ଛବି ଅଙ୍କାରରେ ।୧।
ଶ୍ରବଣରେ କୁଣ୍ଡଳ   ଚନ୍ଦ୍ରାର୍କରୁ ମଞ୍ଜୁଳ
ଫୁଲ ଦଶଇ ତହିଁ   କଣ୍ଠେ ରତନ ହାର
ନାସେ ନାସା ମୁକୁତା   ଅତଶସ୍ତୁ ଚଞ୍ଚଳ
ଶିଖୀପୁଚ୍ଛ ଚୂଡ଼ାରେ କେଡ଼େ ନିର୍ମଳ ରେ ।୨।

ଶ୍ରୀମତୀ—ତୁମେ ଜାଣ ଲଳିତା । ଆଜି ଶ୍ୟାମକଥା କହି ମୋତେ ପାଗଳୀ କରନାହିଁ । ଯେତେ ଶୁଣେ, ତେତେ ଭାବେଁ—ଯେତେ ଭାବେଁ, ତେତେ ମଜ୍ଜେଁ । ତେତେ ସେ ରୂପ ମୋ ଆଖି ଆଗରେ ନାଚେ । ଡାକେ ମୋତେ ସେ, ଯମୁନାର ନୀଳ-ଜଳ ସଙ୍ଗେ ମିଶିଯିବାକୁ—ଶ୍ୟାମ ତନୁରେ ଜଡ଼ିଯିବାକୁ । ମନ ଇଚ୍ଛାକୁ ହୁଏ, ପିଣ୍ଡରେ ପ୍ରାଣ ନଥିଲା ପରି ଲାଗେ ।

( ଦୂରରେ ବଂଶୀଧ୍ୱନି ଶୁଣି ଚମକି ପଡ଼ିଲେ )

ଏଇ ଶୁଣ ଲଳିତେ ! ଏ ପୁଣି କିଏ ମତେ ଡାକେ :—ରାଧିକେ ! ଏ ବ୍ରଜରେ କଅଣ ଆଜି କେହି ବାଧା ଅଛି ସହି ? ଆଜି ଜଣେ କିଏ ଅଛି ସହି, ଯାହାର ମୋ'ର ଘରି କୁଳ, ଶୀଳ, ମାନ ମହତ୍ତ୍ୱ ସବୁ ସରିଲାଣି । ସବୁ ସେହି କଳା-ଜଳରେ ଭାସି ଗଲାଣି । ଏମିତି ଯମୁନା କୂଳରୁ କିଏ ଜଣେ ତାକୁ ଡାକେ—ରାଧେ, ରାଧେ ! ଯେତେ ମନା କଲେ, ଯେତେ ବିନତି କଲେ, ମାନେ ନାହିଁ ସେ । ଭରି ପ୍ରାଣରେ ପୁଣି ଡାକେ ରାଧେ, ରାଧେ । କେତେଥର କହିଛି ତାକୁ—କେତେ ବାରଣ କରିଛି ସହି—

( ଗୀତ )

(ଆଜି) ଦିନେ ନ ଡାକରୁ ରାଧିକା ବୋଲି ରେ,
ମୁରଲୀ, ତୋତେ ଶରଣ ଗଲି ରେ ।
ତୁ ନନ୍ଦ ସୁତ ମୁଁ-ରାଜ କୁମାରୀ,
ବଂଶୀ ଦେଲା ସିନା-ପରତେ କରି ।୧।
ଲୁଚି ଲୁଚି ଯାଏ ସଖୀ ସଙ୍ଗତେ,
କି ଘେନି ମୁରଲୀ ଡାକିଲୁ ମୋତେ ରେ ।୨।
ଜାତି ତୋର କଣ୍ଠା ବାଉଁଶ ଖଣ୍ଡ
ଧ୍ୱନି ସଙ୍ଗେ ଥାଇ ପଞ୍ଚମ କାଣ୍ଡ ରେ ।୩।
କୃଷ୍ଣ ହସ୍ତୁଁ ବଂଶୀ କେ ଦେଇବା ମୋତେ,
ଭସାଇ ଦିଅନ୍ତି ଯମୁନା ସ୍ରୋତ ରେ ।୪।

ତାହିଁରେ ମନ ସହି, ପ୍ରସନ୍ନ ହେଉ ନାହିଁ
ଏଥିକୁ କହ କେଉଁ ଗତି କି ଗୋ ।
କ୍ଷଣେ ଅଦର୍ଶନ ହୋଇଲେ ଜୀବନ
ସେ ନବଘନ ଶ୍ୟାମ ସ୍ମୃତି କି ଗୋ ।୦।
ଯୁଗଠାରୁ ଅଧିକ ହୋଇଲାଣି ପଲକ
କେମନ୍ତ ସମ୍ଭାଳିବି ଧୃତି କି ଗୋ,
ତ୍ରିଭୁବନ ମୋହନ ବିଷମ ବଂଶୀସ୍ୱନ
ତାହୁଁ ରୁନ୍ଧିଲା ମୋର ଶ୍ରୁତି କି ଗୋ ।୧।
ଇନ୍ଦ୍ରମାଳ କବାଟ ପୁଟ ଛଡ଼ି ସେ ନଟ-
ବର ମୁକୁଟ ମଣି ଛାତି କି ଗୋ,
ମାନସୁଁ ଭବ ଭୀତ ସତେ କି ଛାଡ଼ିଦେବ
କୁଳ, ବରତ, ନୀତି, ଜାତି କି ଗୋ ।୨।
ଗରଳ ଗିଳି ଅବା ଉବ ନନ୍ଦନ ସେବା-
ବିଧିରେ ବଳାଇବି ମତି କି ଗୋ,
ହେବି ଶ୍ୟାମ ସଙ୍ଗତି ଲଭି ସୁଭାଗ୍ୟବତୀ-
ମଣ୍ଡଳେ ଟେକାଇବି ଛାତି କି ଗୋ ।୩।

ବୃନ୍ଦା—ଛି, ଛି, ରାଧେ । ଏ ସବୁ କଅଣ କହୁଛ ? ତମ କଥା ଶୁଣି ମୋତେ ଆଉ ବୁଦ୍ଧି ଦିଶୁନାହିଁ । କଅଣ କଲେ ଯେ ତମର ହିତ ହେବ, କିଛି ବୁଝି ପାରୁ-ନାହିଁ । ସହି, ପ୍ରୀତି ବଡ଼ ବିଷମ । ନଜାଣି ଗୋଡ଼ ବଢ଼ାଇ ଆଉ ଲେଉଟିବା ହୁଏ ନାହିଁ । ମୁଁ ଯାଉଛି । ତାଙ୍କ ଗତିବିଧି ବୁଝି ତମକୁ ଭେଟିବି । କଅଣ କହୁଛ ଲଳିତେ ? ମୁଁ ଯାଏଁ ତେବେ । (ପ୍ରସ୍ଥାନ)

ଲଳିତା—ସତେ ସହି ! ବଡ଼ କଠିନ ବାଟ । ଛାତି ପଥର ନ କଲେ ପ୍ରୀତି ପାଳିବା ସହଜ ନୁହେଁ । ରାଧେ, ତରତର ହୋଇ ଗୋଡ଼ ଖସାଇ ପକାଅ ନାହିଁ । ସହଜ ନୁହେଁ-ପ୍ରୀତି ପଥ; ବଡ଼ ଖସଡ଼ା—ଦାଢ଼ୁଆ ଧାର ତା'ର ।

—ଗୀତ—

ପ୍ରୀତି ଛୁରୀ ଶାଣଦିଅ ରେ
ବାଜିବ ଛାତିକି କର ଲିହାରେ ।୦।
ସ୍ନେହ ଲିହା ଯତ୍ନେ ତତାଇ ଅଶ୍ରୁଜଳ ତହିଁରେ ଦେଇ
ମାର ଭାବଗର ଯତନେ ଗଢ଼ିଛି
ତହିଁରେ କଳଙ୍କ ବିଷପିଅ ରେ ।୧।
ଅତି ବଡ଼ ତୀକ୍ଷ୍ଣ ସେ ଧାର-ନେଇ ନ ଠାକର ତହିଁର
ନବୀନ ଦର୍ପଣ ପରି ଝଟକଇ,
ଧଗୁଦଲେ ଦଣେ ନୂଆନୂଆ ରେ ।୨।
ସେ ଛୁରୀକି ଯେହୁଁ ଛୁଇଁବ ଜାତିକୁଳ ବରଜିବ
ନପାରିଲେ ଧରି ନିଷ୍ଟେ ନାଶ ଯିବ
ଶିରଗ୍ରାମାନଙ୍କ ପ୍ରାଣିଯିଅରେ ।୩।
(ସମସ୍ତେ ପ୍ରସ୍ଥାନ)

---

## ଦ୍ୱିତୀୟ ଅଙ୍କ

### ଚତୁର୍ଥ ଦୃଶ୍ୟ

(ଯମୁନା ତଟରେ—ଶ୍ରୀକୃଷ୍ଣ ଓ ମଧୁ)

ଶ୍ରୀକୃଷ୍ଣ—ଫଳ, ଫୁଲ, ତରୁ ଲତା,—ସମସ୍ତେ ଯେମିତି ଶୁଖିଲା । ତାହାର ସରସତା ନାହିଁ । ପ୍ରାଣରେ ପ୍ରାଣ ନାହିଁ, ପିଣ୍ଡରେ ପିଣ୍ଡ ନାହିଁ । 'ମୁଁ'ରେ ଯେପରି 'ମୁଁ' ନାହିଁ । ସବୁ ଖାଲି ମୋତେ ଶୂନ୍ୟ ଶୂନ୍ୟ ବୋଧ ହେଉଛି ।

ମଧୁ—ସଖା, ଏଇଟା ତୁମର ଶୁଭ ସୂଚକ । ତୁଳନା—ନ ପାଇବାର ହୋଇଥିଲେ ତମ ମନରେ ଏ ଭାବ ଆସନ୍ତା କାହିଁକି ? ମେଃଟେ ଆସି ତ ନ ଥାନ୍ତା, ଆଉ କଳ୍ପନା ଆସନ୍ତା କେଉଁଠୁ ?

ଶ୍ରୀକୃଷ୍ଣ—କହୁଛ ସଖା ସବୁ । ବାକି ମନଟାରେ ଯେମିତି ସବୁବେଳେ ନିରାଶା, ସବୁବେଳେ ହତାଶା ଆସୁଛି । କିଛି କାରଣ ବୁଝି ପାରୁନାହିଁ ।

ମଧୁ—କେମିତି ବୁଝିବ ସଖା ? କାରଣ ପରି କିଛି ନାହିଁ ? ତୁମେ ଘୁଏଁ ଘୁଏଁ କାରଣଟାଏ ଟାଣି ଓଟାରି ବାହାର କରିବାକୁ ଚାହିଲେ କି କାରଣ ମିଳିବ ?

ଶ୍ରୀକୃଷ୍ଣ—ଯାହା କହିବାର କହ ସଖା । ଯେତେ ବୁଝାଇବାର ବୁଝାଅ । ଏ ସବୁରେ କିଛି

କାରଣ ନାହିଁ । ମନ କହେ ଏ ଜନ
ଜଗତରେ କିଛି ନାହିଁ, କେହି ନାହିଁ ।
ଗଗନରେ ଗଗନ ନାହିଁ, ପବନରେ ପବନ
ନାହିଁ ।

—ଗୀତ—

କି ବୀଣା ବାଜେ, କି ତାର ସେ ଯେ,
କି ସୁର ଝଙ୍କାରେ ମନ ନମାନେ,
କି ଫୁଲ ଫୁଟେ, କି ବାସ ଲୁଟେ,
କି ପବନ ବହେ ମୁଁ ନ ଜାଣେ ।
ଗଗନରେ ନାହିଁ ଗଗନର ଜ୍ୟୋତି,
ପବନରେ ନାହିଁ ପବନର ଗତି ।
ଏକାକୀ ଡାକଇ, ଜୀବନ ଅଳେକେ,
ଲୁଭେ ଫୁଟେ କେବେ ଶୂନ୍ୟ କୋଣେ ।୧।

ମଧୁ—ଏଇ ଗୀତ ଗାଇ ତ ସବୁ ସାରିଲ ସଖା । ମୋ
ଭାବନା, ମୋର କାମନା, ମୋର ଗରିମା-ସବୁ
ସରିଛି । କିଏ ତମକୁ ଦେଇଛି ସଖା, ଏ ଲଳିତ
କଣ୍ଠ, କେଉଁଠୁ ଶିଖିଲ ଏ କରୁଣ ଗୃହାଣୀ,
କିଏ ଶିଖାଇଛି ଏ ପ୍ରାଣଭରା ଭାବ ?

ଶ୍ରୀକୃଷ୍ଣ—କହିଲ ତ ସଖା, ସବୁ ସେହି ଜଣକ ।

—ଗୀତ—

ସଜଳ ତାର ସେ କରୁଣ ଆଖିଟି
ଶିଖାଇଛି ମୋତେ ସବୁ ସୋହାଗ ।
ପଲକେ ସେ ଛବି ପୋଡ଼ା ନୟନରୁ
ଲୁଚିଲେ ଅସଇ ମନ-ବିରାଗ ।୦।
ସାରା ଦିନ ଅସି ବଂଶୀ ବଜାଏଁ
ଗୃହିଁ ଗୃହିଁ କେବେ ଚେତନା ହଜାଏଁ ।
କାଶି ଅଧେ ବସି ତାହାରି ଆଶରେ
ଗାଉଥାଏଁ ପରା ସାଗ ବେହାଗ ।୧।
ରେଶୁର ମଳୟର ପରଶ ମଧୁର
କୁହୁ କୁହୁ ଗାନ କୋଇଲୀ ବଧୂର,
ତା ବିନେ ପୂନଅ ସାଜଟି ଅନ୍ଧାର
ତା ବିନେ ବସନ୍ତେ ନାହିଁ ସରାଗ ।୩।

ମଧୁ—ଛି, ଛି, ଛି, ସଖା ତୁମେ ଏତେ ଅଧୀର ହେଲେ
ମଧୁର ତ ଆଉ ପ୍ରାଣ ରହିବ ନାହିଁ ।
ଦେଖିଲେ ଜାଣି ପାରନ୍ତ ସଖା, ଏ ଗ୍ଳାନି
ଭିତରେ ପଞ୍ଜରା ଗୁଡ଼ିକ କାପରି ଥରିବାକୁ
ଆରମ୍ଭ କରିଛି, ପ୍ରତ୍ୟେକ ଶିରାରୁ ରକ୍ତ
କେତେ ବହିବାକୁ ଲାଗିଲାଣି ।

(ହଠାତ୍ ବୃନ୍ଦାଙ୍କ ପ୍ରବେଶ)

ବୃନ୍ଦା—ନଟବର । କେତେଦିନ ଆଉ ତୁମେ ମନରେ
କପଟ ରଖିବ ? କେତେଦିନଯାଏଁ ତମର
ଏ ସ୍ୱଭାବ ରହିବ ଭଲ ?

ଶ୍ରୀକୃଷ୍ଣ—କିଛି ତ ବୁଝେଁ ବୃନ୍ଦେ । ଏ କଅଣ ସବୁ
କହୁଛ ସଖି ? ମୁଁ ତ କିଛି ବୁଝି ପାରୁନାହିଁ ।

ବୃନ୍ଦା—ନାଁ, କିଛି ବୁଝି ପାରିଥିବ କି ? କିଏ କହିଥିଲା
ଶ୍ୟାମ, ଶ୍ରୀମତୀଙ୍କୁ ଏତେ କଲବଲ କରିବାକୁ ?
କିଏ କହିଥିଲା ତମକୁ ଏତେ କପଟକରି
ସରଳା ଶ୍ରୀମତୀଙ୍କ ଦିନରାତି ଝୁରାଇବାକୁ ? ଏ
ସବୁ କି ପ୍ରକୃତି ତମର କାହ୍ନୁ ?

ମଧୁ—ବୃନ୍ଦେ । ଏକେ ତ ସଖା ଆମର ଅଧୀର, ତହିଁ
ଉପରେ ତମର ଏ ଗରମ ପାଣିପକା କେମିତି
ସୁଖ ଲାଗିବ ? ଟିକିଏ ଅନୁମାନ କଲ ଦେଖି ।
ଯାହା କହିବାର ଖୋଲି ନ କହି, ଏତେ ଏଣୁ
ତେଣୁ କଥା କାହିଁକି ?

ଶ୍ରୀକୃଷ୍ଣ—ସତେ ସହି, ଏସବୁ କାପରି କଥା ? ଯାହାର
ରୂପ, ଯାହାର ଗୁଣ, ସ୍ନେହ, ସୋହାଗ···

(ଶ୍ୟାମଙ୍କ ଅର୍ଦ୍ଧୋକ୍ତି)

ବୃନ୍ଦା—ତୁନିହୁଅ, ତୁନି ହୁଅ ଶ୍ୟାମ—ତୁମେ ଚକ୍ରି
କଥା କହି ଜାଣ । ପାଣିରେ ଘର ପକାଇ
ଦେବ ତୁମେ । ଥରେ ଗଲେ ସେ ସରଳାକୁ
ଦେଖନ୍ତ, ତମ ବିରହରେ ତାର କି ଅବସ୍ଥା ।
କହିବି କଅଣ ଆଉ ?

—ଗୀତ—

ସେ ଯିବନିଟି, ଜୀବନେ କିଶୋରୀ, ହେ ବଂଶୀଧାରୀ ।୦।
ବିରହରେ ସଖୀ ହୋଇଛି କାତର,
ସରୁଁ ସରିଲାଣି ସରୋଜ ପତର ।
ଦେଖିଲ ସଖୀର କଣ୍ଠରେ ମାତର
ଜୀବନକୁ ଅଛି ଧରି ।୧।

ତୁମ୍ଭ ଭଳି ଯେବେ ନୋହିଲି ପାତର,
ପଶୁରୁଛନ୍ତି ଶ୍ୟାମ ନ ଦିଅ ଉତ୍ତର ।
ଅନ୍ତର୍ଗତେ ଯେବେ ଥିଲଟି ଅନ୍ତର,
ଚିତ୍ତ କିପାଁ ଦେଲ ଚୋର ? ।୨।

ଲଭିଥିଲେ ଜୀବାଧୀଶ୍ୱର ସେବାରେ,
ଆଶାଅଛି ମୋହ ଯିବା ଆସିବାରେ ।
ହଠି ବସିଅଛି ଜୀବନ ନେବାରେ,
ପାପୀ କାମ ଯମ ପରି ହେ ।୩।

ଶ୍ରୀକୃଷ୍ଣ—ବୃନ୍ଦେ ! ଧିକ ଶ୍ୟାମର ଜୀବନ ! ଜୀବନରେ ଥାଇ ଯାହା ଧନୀର ଦୁଃଖ ଶୁଣିଲି । ବେଗେ ଯାଇ ଜଣାଅ ସନ୍ଧ୍ୟା । ତାଙ୍କର ଅପେକ୍ଷାରେ ମୁଁ ମାଧବୀ କୁଞ୍ଜରେ ଥିବି ।

ବୃନ୍ଦା - ଯିବି ସତ । କିନ୍ତୁ ଶ୍ୟାମ, ତୁମେ ଆଜି ଛଳନା କରନାହିଁ । ଏ କଥାର ଯେପରି ଅନ୍ୟଥା ନ ହୁଏ । ( ପ୍ରସ୍ଥାନ )

ଶ୍ରୀକୃଷ୍ଣ—ସଖା !

ମଧୁ— ଆଜି ପୁଣି କଅଣ ସେଇ ଶୁଖିଲା ମୁହଁରେ ସଖା ! ଚାଲ, ବେଗେ ଚାଲ । ଘରକୁ ଯାଇ ତମ ସୁବିଧା ତମେ କରିବ । ଆମ ସୁବିଧା ଆମେ ଦେଖିବୁ ।

ଶ୍ରୀକୃଷ୍ଣ - ଶୁଣିଲ ତ ସଖା, ଶ୍ରୀମତୀଙ୍କ ଅବସ୍ଥା ?

ମଧୁ— ଶୁଣିଲି ତାଙ୍କ ଅବସ୍ଥା । ଦେଖୁଛି ତାଙ୍କ ଅବସ୍ଥା ଆଜି ତମ ଅବସ୍ଥା ନିକଟରେ ତଉଲିଲେ ଉଣେଇଶି ବିଇଶ୍ ହେବ ନାହିଁ ।

ଶ୍ରୀକୃଷ୍ଣ -ତେବେ କଅଣ କରିବା ସଖା ?

ମଧୁ— କିଛି ନାହିଁ । ହେଇଟି ଅନାଁ, ଫେଣଲ ଉଡ଼ୁଛି । ପାହୁଣ୍ଡ ଗଣିଗଣି—ଧୀରେ ଧୀରେ ଗତି କର । ଚାଲ ଭାଇନ୍ତୁ, ରାତି ଲାଗୁ !

—ଗୀତ—

ହେଇଟି ଅନାଁ, ଢାଳିଅ ସୁନା
ଗଗନେ ପବନେ ତୋ ଶୁଭ ସୂଚନା ।୦।

ସମୀର ଧୀର ଧୀର ବହେ, ମନ ମୋହେ,
ପୁଣି କହେ, ଶ୍ରୀହରି ମନ ବେଦନା ।୧।
ଖାଇବା ଆଖି ତୋର ନାଚୁଛି କି ନାହିଁ,
କାହିଁକି ମଜନେ ତୁ ରହିଥାଉ ଗୃହିଁ
ଶ୍ରୀମୁଖଚନ୍ଦ୍ର ଆଜି ଶୁଖାନା ।୨।

———

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

ବନପଥ

( ମଧୁ ଗାଇ ଗାଇ ପ୍ରବେଶ )

ମନ ମୋହନ ବଂଶୀ ବାଜେ
ମନ ଲାଜେ ଲାଜେ କୁଞ୍ଜେ କୁଞ୍ଜେ-ମାନିନୀ ସାଜେ ରେ
ମୁରଲୀ ଧ୍ୱନୀ ମନେ ବାଜେ ।
ମରମ ପରଶେ ଗୋ,
ଭରି ଯୌବନୀ କୁଳ ମାନ ବରଜେ ।୦।
ସଞ୍ଜେ ଯମୁନାକୂଳେ, କୁଞ୍ଜେ ଯେବେ ସେ ବାଜେ ଗୋ
ଅକୁଳ ବ୍ରଜନାରୀ, ପ୍ରାଣେ ମରେ ଲାଜେ ।
ଚନ୍ଦ୍ର ଜୋଛନା ଧାରି, ମନ୍ଦ ସମୀରେ, ରାଜେ ଗୋ
ଇନ୍ଦୁ ନିନ୍ଦିତ ମୁଖେ ହସ ଲେଖା ସାଜେ ଗୋ
ମରମ ପରଶେ ଗୋ ।୧।

(ପ୍ରସ୍ଥାନକାଳବେଳେ ନେପଥ୍ୟରୁ ଧନିଷ୍ଠାର ଗୀତ ଶୁଣି)

ମଧୁ—ସଖୀଙ୍କ ବିଜେଠା ଏଇଠୁ ଧରା ପଡ଼ିଯିବ । (କାନଡେରି) ଦେଖେଁ, କଅଣ କହୁଛି । (ଲୁଚିଯିବା)

ଧନିଷ୍ଠା—(ଫୁଲ ଡାଲା ନେଇ ଗୀତ ଗାଇ ପ୍ରବେଶ )

ମଧୁ—(ପଛରୁ ଡାକିକେ) ରସମୟୀ ସଜନୀ !

ଧନିଷ୍ଠା—(ଫେରି ଚାହିଁ ବିରକ୍ତ ହେଲାପରି)

ମଧୁ—ହେମ ଗୌରୀ ସୌଦାମିନୀ ! ଅଞ୍ଚଳ ଛଟକାଇ—ମୋ ପ୍ରାଣ ପରାଣ ଧନ—ଚାଲିଗଲେ କି ବଞ୍ଚିଲେ ? ମୁଁ ପରା ପଥ ଜଗି ବସିଛି । ଏମିତି କଡ଼ା ଆଖିରେ, ଏମିତି ଅଭିମାନରେ ଚାଲିଯାଉଛ ? କଅଣ ତମ ସଖୀଙ୍କଠାରୁ ଶିଖିଲ ନା—କଅଣ ?

ଧନିଷ୍ଠା—ହଁ, ତମର ଏ ପଥ ଜଗାଟା କିଏ ଶ୍ୟାମ ଶିଖାଇଛନ୍ତି ?

ମଧୁ—(ଗମ୍ଭୀର ଭାବେ) ବେଶ୍ ହେଲା । ମନୋହର, ଅମେ ଶ୍ୟାମ ।

ଧନିଷ୍ଠା—ତେବେ ମନୋହର, ଅମେ, ଅମ ସଖୀ ଶ୍ରୀମତୀ ।

ମଧୁ—ହେଲା ।

ଧନିଷ୍ଠା—ହଉ ।

ମଧୁ—ସେଇଠୁ ?

ଧନିଷ୍ଠା—ସରିଲା ।

ମଧୁ—କାହିଁକି ? ମାନଭଞ୍ଜନ ହେଉ । ମାନିନୀ, କଥା କହ । ମାନ ତ୍ୟାଗ କର ।

ଧନିଷ୍ଠା—ନା ।

ମଧୁ—ଅଲବତ୍ । ମନୋରଖା, ଅମେ ଶ୍ୟାମଙ୍କ ପଛ ।

ଧନିଷ୍ଠା—ମନୋରଖା । ଅମେ ବ ଶ୍ରୀମତୀଙ୍କ ପଛ ।

ମଧୁ—ଦେଖାଯାଉ, ତେବେ ହାରଜିତ୍ ବାଜି ପଡ଼ୁ ।

ଧନିଷ୍ଠା—ପଡ଼ୁ ।

ମଧୁ—କଅଣ ବାଜି ରହିଲା ? ଭୂରି ଭୋଜନ ?

ଧନିଷ୍ଠା—ଜାଣିଲେ ସିନା ?

ମଧୁ—ବେଶ୍, ମାନଭଞ୍ଜନ ହେଉ ?

ଧନିଷ୍ଠା—ଅଚ୍ଛା, ତମକୁ କାଲିଠୁଁ ଖୋଜି ଖୋଜି ରହିଲୁଣି । କେଉଁଠି ଥିଲ ?

ମଧୁ—କଅଣ କହୁଛ ? ଶ୍ୟାମଙ୍କ ଭାଷାରେ ଉତ୍ତର ଦେବି ତ ?

ଧନିଷ୍ଠା—ହଉ, ଦେଇ ଦେଖିବା ।

ମଧୁ—ଦେଲି ତେବେ ।

( ଗୀତ )

ମଧୁର ବଚନେ କହନ୍ତି ମୋହନ
ଶଶି କରିବାକୁ ବୋଧ,
କାଲି ଅଣାଯତ୍ନେ ରହିଲି ସଜନୀ
କଲି ବଡ଼ ଅପରାଧ ।

ଧନିଷ୍ଠା—ଭାଷେ କଶୋରୀ ଯେ,
ଶ୍ରୀମୁଖ ଯାଉଛି ଶୁଖି,
ଅନିଦ୍ରା ହୋଇଲାପ୍ରାୟ ଦଶୁଅଛି
ନାଳ ଇନ୍ଦୀବର ଅକ୍ଷି ।୧।

ମଧୁ—(କାଶି) ବୋଲେ ବନମାଳୀ ଧବଳୀ ବତ୍ସା ମୁଁ
ଖୋଜି ଖୋଜି ଶ୍ରମ ପାଇ,
ପ୍ରସର ଯାମିନୀ ହେବାରୁ କାମିନୀ
ଶୟନ ଭୋଜନ ନାହିଁ

ଧନିଷ୍ଠା—ଭାଷେ କଶୋରୀ ଯେ,
ଅଧରେ ଏ କସ କ୍ଷତ,
ଗୁପତ ନକର ଅହେ ନନ୍ଦ ସୁତ
ବ୍ୟକତ କର କହ ତ ।୨।

ମଧୁ—ବୋଲନ୍ତି ରସିକ ଶୁକ ମୁଖେ ମୁଖ—
ଦେଇ ପଢ଼ାନ୍ତେ ସଙ୍ଗୀତ,
ସେ ତ ଥିଲା ଚାଲି ବିମ୍ବ ଫଳ ବୋଲି
କଲା ତହୁଁ ଚଞ୍ଚୁଘାତ ।

ଧନିଷ୍ଠା—ବୋଲେ କଶୋରୀ ଯେ,
ଅଧରେ ଏ କସ କଲା ?

ମଧୁ—ଜାମୁ ଫଳ ଏକ ଗୃହିଲି ରେ ବାଳା
ତହୁଁ ବୋଲ ଲଗିଗଲା ।୩।

ଧନିଷ୍ଠା—ରସବତୀ ଭାଷି ମଳନ ତ ଦଶି
ତବ ଅଙ୍ଗେ-ଅଙ୍ଗ ବାସ,

ମଧୁ—ସଖା ଭଳି ମେଳ ଗେରୁ ଦେଲେ ବୋଲି
ଦେଖ ସଖି, ଅଙ୍ଗ ଦେଶ ।

ଧନିଷ୍ଠା—ଭାଷେ କଶୋରୀ ଯେ,
ତନୁରେ ଏ କସ ଗାର ?

ମଧୁ—କଣ୍ଟକ ବନେ ମୁଁ ଲଡିଲି ତରସ୍ତେ
ତେଣୁ ତନୁ ନାରଖାର ।୪।

ମଧୁ—ବାସ୍, ବାସ୍, ହୋଇଗଲା ? ଅଉ କଅଣ ପଚାରିବ ପଚାର । ଅଣ ଭୋଜନ ।

( ସହସା ବୃନ୍ଦାଙ୍କ ପ୍ରବେଶ )

ବୃନ୍ଦା—ବେଶ୍, ବୁହିଙ୍କ ଚର୍ଚ୍ଚା ଲଗିଛି, ନାଁ । ଅଉ କଅଣ କାମ କି ? ସବୁବେଳେ ଖାଲି ଶନ୍ତା—ଭୋଜନ ।

ମଧୁ—ଜାଣିଛ ଯେ, ଅଉ ଯାଉଛି କେଉଁଠୁ ?

ବୃନ୍ଦା—ଶୁଣ ଶୁଣ । ଗୋଟେ କଥା ତୁମକୁ ପଚାରିବା ।

ମଧୁ—କିନ୍ତୁ ମନୋରଖା । ଗୋଟାକରୁ ଦି'ଟାର ଉତ୍ତର ମୋଠାରୁ ନ ପାଅ ।

ବୃନ୍ଦା—ତମ ସଖା କେଉଁଠି ?

ମଧୁ—ଜାଣିନାହିଁ ବୋଲି ତ ଏ ପଖୀ ପଟକୁ ବାଟ ଜଗି—ଘାଟ ମାଗୁଥିଲି ।

ବୃନ୍ଦା—ଶୁଣିନାହଁ ?

ମଧୁ—ଉତ୍ତର ଦେବ ନାହିଁ ।

(ସୁବଳ ପ୍ରବେଶ ହୋଇ ମଧୁ କାନରେ କହିବା)

ମଧୁ—(ଚମକି ପଡ଼ି) ସର୍ବନାଶ ତ । ଧନିଷ୍ଠେ, ଆମ ଅଭିନୟଟା ସତ ଫଳବ କି ?

ବୃନ୍ଦା—କଅଣ ? କି ଅଭିନୟ ବଟୁ ? କଅଣ ହେଲା ସୁବଳ ?

ସୁବଳ—କିଛି ନାହିଁ ଯେ । କାହ୍ନୁ, ଶ୍ରୀମତୀଙ୍କର କୁଞ୍ଜକୁ ଅଭିସାର କରିଯିବା ବାଟରେ, ଚନ୍ଦ୍ରାବଳୀଙ୍କ ସଖୀ ପଦ୍ମା ହାଣୁଡ଼େ ପଡ଼ିଲେ । ପଦ୍ମା ତାଙ୍କୁ ଚନ୍ଦ୍ରାବଳୀ କୁଞ୍ଜକୁ ନେଇଗଲେ ।

ବୃନ୍ଦା—ବଡ଼ ବିଷମ କଥା ହେଲା । ତେଣେ ଶ୍ରୀମତୀ ସଙ୍କେତ କୁଞ୍ଜରେ ଏକାନ୍ତ ଆକୁଳ ନୟନରେ ଅପେକ୍ଷା କରିଛନ୍ତି । ଡେରି ହେବାରୁ ମୁଁ ବାଟକୁ ଦେଖିବା ପାଇଁ ଆସିଲି । କାହ୍ନୁ ପଦ୍ମାକୁ ଠକି ଦେଇ ଆସି ପାରିବେ ନାହିଁ ?

ମଧୁ—ମଧୁମଙ୍ଗଳ ସାଙ୍ଗରେ ଅଛନ୍ତି କି, ବୁଦ୍ଧି ବତେଇବେ ? ଏ ଗୋପାଳ ଗର୍ଦ୍ଦଭ ସେଠି ଥିଲା ଯେ, କଅଣ କରନ୍ତା ?

ସୁବଳ—ନା, କାହ୍ନୁ ଯେତେ ପ୍ରକାର ତାଙ୍କୁ ଠକିବା ପାଇଁ ଚେଷ୍ଟା କଲେ । ହେଲେ, ସେ ଛାଡ଼ୁଛି କେତେବେ ? ସେ କଅଣ ଶୁଣିବା କଲୁ ? ସାଙ୍ଗରେ ନେଇକରି ଗଲା ।

ମଧୁ—ଆଜି ତୁମେ ବୋକାଙ୍କ ପରି ଗୃହିଁରହି ଧାଇଁ ଆସିଲ ମୋ ପାଖକୁ ।

ବୃନ୍ଦା—କ'ଣ ତେବେ କରିବା ବଟୁ ?

ମଧୁ—କ'ଣ କରିବା ? ଯାଏଁ, ଦଉଡ଼େଁ । ବାଟରେ ହାଣୁଡ଼େ ପଡ଼ିଲେ ତ ଫେରିବେ ନିଶ୍ଚେ । ଗୋଟେ କିଛି ଫିକର କାଢ଼ିବାକୁ ହେବ । ଅଭି ଯଦି ବାହାରି ଯାଇଥିବେ କୁଞ୍ଜକୁ, ତେବେ ବଳ କ'ଣ ? ଯାଏଁ ଦେଖେଁ, ଆସ ସୁବଳ ।

(ବୁଇଜଣଙ୍କର ପ୍ରସ୍ଥାନ)

ବୃନ୍ଦା—ଧନିଷ୍ଠେ । ଅଭି ଉପାୟ କ'ଣ ?

ଧନିଷ୍ଠା—ଚାଲ ଦେଖିବା, କଅଣ ହେଉଛି । ପଦ୍ମା ସେ । ତା ପାଲରୁ ଉଧୁରିବା ବାଟଥିଲେ ତ ?

(ବିପରୀତ ଦଗରେ ଦୁହିଁଙ୍କର ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

(କୁଞ୍ଜରେ ଉତ୍କଣ୍ଠିତା ଶ୍ରୀମତୀ
ସହଚରୀ ପରିବେଷ୍ଟିତା )

ଶ୍ରୀମତୀ—ହେଇଟି କଜଳପାତୀ ଡାକିଲାଣି । ରାତି ସରି ଆସିଲାଣି ସହି ।

ଲଳିତା— ( ଗୀତ )

ପ୍ରାଣ ସଜନୀ ରେ,
ଚଳି ଭୁଲିଲି ତା ପ୍ରୀତିରେ ।୦।
ଲଗାଇ ପ୍ରେମ ମାଦକ ଭଗାରି ହସାକୁ ଦେଖି
ଜଗାଇ ଦେଲା ଯା ଚିତ୍ତରେ ।୧।
କପଟ ଜନଙ୍କ ଚିତ୍ତ ଶପଥ ପଡ଼ା ଭ୍ରମିତ
ନିପଟ ନିରସ ମତ ରେ ।୨।
ପୁରୁଷ ଜାତ ବିଶ୍ୱାସ ପୁରୁବରୁ ନାହିଁ ଲେଶ
ଜାରି, ପୁରୁଷଙ୍କ ଚିତ୍ତରେ ।୩।

ଧନିଷ୍ଠା—(ପ୍ରବେଶ) ନାଇଁ ସହି, ବୃନ୍ଦା, ଅଭି ମୁଁ ତାଙ୍କୁ ଖୋଜି ଖୋଜି ପାଇଲି ନାହିଁ । ପୁଣି ବୃନ୍ଦା ତାକୁ ଖୋଜିବାକୁ ଯାଇଛନ୍ତି । ମୁଁ ଆସିଲି ଖବର ଜଣାଇବାକୁ ।

ଶ୍ରୀମତୀ—କେଉଁଠି ହେଲେ ତାଙ୍କର ଖବର କିଛି ମିଳିଲା ନାହିଁ ?

ଧନିଷ୍ଠା—ମଧୁମଙ୍ଗଳଙ୍କୁ ଭେଟିଲି । ସେ ମଧ୍ୟ ତାଙ୍କ କଥା ଜାଣି ନାହାନ୍ତି ବୋଲି କହିଲେ । ତେବେ କେଉଁଠି ଅଛନ୍ତି ଠିକ୍ ଜଣାପଡ଼ୁନାହିଁ ।

ବିଶାଖା—ସହି । ସେ କଥାରେ କି ବିଶ୍ୱାସ ? କାହ୍ନୁଙ୍କ ମନ ଓ ମୁହଁ ସବୁବେଳେ—ଦୁଇଟା । ସଙ୍କେତ ଦେଲେ ସତ, କିନ୍ତୁ ମନରେ ଥିଲେ ସିନା ହେବ ? ଜାଣୁ ନାହଁ ସହି, କପଟୀ

ପୁରୁଷଙ୍କ ସ୍ୱଭାବ । ମୁହଁରେ ଦେଖୁଥିଲପାଏ, ଗୋଟିକଯାକ ଭ୍ରମର । ବାକି—

—ଗୀତ—

ପ୍ରିୟସଖି !
ପିଟି କଲେ କେ କାହାର ଗୋ ? ।୦।
ପ୍ରକୃତରେ ଥିବାର ପୁରୁଷଙ୍କର ସ୍ୱଭାବ ଗୋ
ଜାଣ ଦରପଣ ପରକାର ଗୋ ।୧।
କପଟୀ ପୁରୁଷ ଭାଷା ଚନ୍ଦନୁ ଶୀତଳ ଗୋ,
ପାଣିରେ କାଟିବା ପରି ଗାର ଗୋ ।୨।

(ବୃନ୍ଦା ପ୍ରବେଶ)

ଲଳିତା—ସ, ସ । ତୁମେ କେତେବେଳୁ ବୃନ୍ଦେ ?

ବୃନ୍ଦା—( ଲଳିତାଙ୍କ କାନରେ କହିବା )

ଶ୍ରୀମତୀ—କ'ଣ ବୃନ୍ଦେ ? (ଦୂରରୁ ବଂଶୀସ୍ୱନ)

ଲଳିତା—(ବଂଶୀ ଶୁଣି) ଶୁଣୁ ନାହଁ ? କପଟ ଶେଖର ଏତେବେଳକୁ ଭଲ ଭଲ ବଜେଇ କରୁଛନ୍ତି । ବୃନ୍ଦା ଦେଖି ଆସିଲେ ପରା ।

ଶ୍ରୀମତୀ—କେଉଁଠି ଥିଲେ ?

ବୃନ୍ଦା—ସେ କଥା କିଏ ଜାଣେ ? ଆସୁଥିବା'ର ଦେଖି ଆଗରୁ ଖବର ଦେବାକୁ ଆସିଲି ବାହାର । ମୋ ସଙ୍ଗେ ତାଙ୍କର ଭେଟ ହୋଇନାହିଁ ।

ବିଶାଖା—ଆସିଲେ ତ ଏଇନେ କେତେ ଫନ୍ଦ, କେତେ ଫିକର ବାହାରିବ । ତାଙ୍କୁ ପୁଣି ପାରିବ କିଏ ? ଛଳରେ ଭୁଲାଇବାକୁ କଅଣ ଊଣା ସେ ?

ଶ୍ରୀମତୀ—ଆଜି ନୁହେଁ ବିଶାଖେ । ଏଥର ରାଧିକା ଭୁଲିବା ସହଜ ନୁହେଁ ।

—ଗୀତ—

ସଖି ଗୋ, ଆଜି ଏଣିକି
କହିଲେ କେତେ ପରତେ ନାହିଁ ସେ ବେଣୁପାଣିକି ।୦।
ଶୟନ ଲଭେ ନ ସହି ଅୟରେ ଦଣ୍ଡେ ନ ରହି
ଅୟନକୁ ଗ୍ରହି ଗ୍ରହି ନୟନୁ ତେଜି ପାଣିକି ।୧।
ସଞ୍ଜବେଳୁ ବେଶ ସାଜି କୁଞ୍ଜରେ ଥିଲି ମୁଁ ଆଜି
କଞ୍ଜନେତ୍ର ତେଜି ବଜି ଭଞ୍ଜନ କଲେ ଆଣିକି ।୨।
କଉମେ ପଡ଼ିଲି ଯାହା କରମେ ଥିଲା କି ଏହା
ମରମେ ନାହିଁ କୁହାହା ନ ରମେ ମନ କେଣିକି ।୩।

ବିଶାଖା—ସଖି, ତୁମେ ଶୋଇପଡ଼ିବଟି ଟିକିଏ । ଆମେମାନେ ଦେଖିବୁଁ ସେ କପଟୀଙ୍କୁ । ବାକି ତୁମେ କିଛି କହିବ ନାହିଁ ଏଇନେ ।

ଲଳିତା—ନିକଟରେ ବଂଶୀ ଶୁଭିଲାଣି । ସେ କୁଞ୍ଜ ଦ୍ୱାରକୁ ଯାଉଛି । ଆସ ବୃନ୍ଦେ, ଆସ ବିଶାଖେ । ସଖି ! ତୁମେ ଟିକିଏ ଶୋଇ ପଡ଼ିଥାଅ ।

(ଲଳିତା, ବିଶାଖା ଆଦି କୁଞ୍ଜ ଦ୍ୱାରରେ)

ଶ୍ରୀମତୀ—ଯାଅ ସଖି, ଯାହା ଇଚ୍ଛା ପଡ଼େ ତାହା କର । ବାକି ତାଙ୍କୁ ବିଶ୍ୱାସ କର ନାହିଁ । (ଶୟନ କଲେ)

ବିଶାଖା—ଭଲ କରି ପଚାରିବ ଏଥର ତାଙ୍କ ଦଗାବାଜି ପଣିଆଁ ନଛଡ଼ାଇଲେ ଚ୍ଛଡ଼ୁଛି କିଏ ?

(ଶ୍ରୀକୃଷ୍ଣ ପ୍ରବେଶ ଓ ଲଳିତା ଉଠିଯାଇ)

—ଗୀତ—

ଘୁମୁଘୋରେ ନୟନ ଘାରେ ଝାଉଁଳିଛି ଶ୍ରୀମୁଖଟି ।
ଶ୍ୱେତଟି ସାରି ନାହିଁକି ନିଦ ଆଖି ତ ରଙ୍ଗ କୁମୁଦଟି ।୦।
ଗଣ୍ଡରେ ସିନ୍ଦୂର ନାଲି ଛିଣ୍ଡିଛି ଗଳାର ମାଳୀ
ମଳିନ ବେଶ ପୀତବାସ ଲାଗିଛି କଳା ଦାଗଟି ।୧।
ମୋହନ ବଂଶୀ ନାହିଁକି କରେ ସରାଗ ନାହିଁ ଆଉ ଅଧରେ
ପଥବଣା କି ହୋଇଲ ବନ୍ଧୁ, ଭୁଲିଲ କେଉଁ କୁଞ୍ଜଟି ।୨।

ଶ୍ରୀକୃଷ୍ଣ—ନାହିଁ ଲଳିତେ, ମିଛରେ ମୋତେ ଦୋଷ ଦିଅ ନାହିଁ । ଶୋଉ ଶୋଉ ଶୋଇପଡ଼ିଥିଲି । ବେଳ ଜଣା ପଡ଼ିଲା ନାହିଁ ।

ବିଶାଖା—ସେ ସବୁ ଜଣାଅଛି । ଆମେମାନେ ଯାଇଁ ଗୃହ ଅଡ଼େ ଖୋଜି ଆସିଛୁ । ଶୋଇ ପଡ଼ିଥିଲେ ନିଶ୍ଚେ କେଉଁଠି ହେଲେ ଦେଖା ପଡ଼ିଥା'ନ୍ତ ତ ? ଯାଅ କାହ୍ନୁ, ଫେରିଯାଅ ।

ଶ୍ରୀକୃଷ୍ଣ—ଛି, ବିଶାଖେ ! ଅକାରଣେ ମୋତେ ଅବିଶ୍ୱାସ କରନାହିଁ ।

ବିଶାଖା—ଏ ସବୁ ଦେହରେ କ୍ଷତ ଚିହ୍ନ କ'ଣ ଶୋଇବା ଶେଜରେ ?

ଶ୍ରୀକୃଷ୍ଣ—ନାହିଁ ସଖି, ଶୋଇଥିଲି । ହଠାତ୍ ନିଦ ଭାଙ୍ଗିବାବେଳକୁ ରାତି ସରି ସରିଆସିଲା ଦେଖି ବଣବାଟ ନମାନି, କଣ୍ଟାବୁଦା ନମଣି ତରତର ହୋଇ ପଳାଇ ଆସିଛି । ଏନେ ଭଲି ଧନୀ ମୋ

ଲାଗି ଅପେକ୍ଷା କରି ବିମୁଖୀ ହେବେଣି । ଦେହଯାକ କଣ୍ଟାଖୁଞ୍ଚ ଲାଗି ଚିରିଯାଇଛି—ମୋତେ ଜଣାନାହିଁ ।

ଲଳିତା—ହଜ, ହେଲା । ଆଉ ଅଜ ଲକ୍ଷଣ ସବୁ ?

ଶ୍ରୀକୃଷ୍ଣ—ଅଜ ତ କିଛି ନାହିଁ । (ଦେହ ଦେଖି) ସଖୀ କାହାନ୍ତି ଲଳିତେ ? ଆଗେ ଯାଇ ତାଙ୍କ ଅବସ୍ଥା ଦେଖେଁ ।

ଲଳିତା—ଅହା ହା ! ପାଣିରେ ଆଉ ସର ପଡାଅ ନାହିଁ । ବାଟେ ବାଟେ ଘରକୁ ଯାଅ । ଅନିଦ୍ରା ବାଧିଥିବ । ତୁନି ହୋଇ ମା' ଯଶୋଦାଙ୍କ କୋଳରେ ଶୋଇପଡ଼ିବ । ଯାଅ ।

ଶ୍ରୀକୃଷ୍ଣ—ପରିହାସ କରନାହିଁ ଲଳିତେ ! ସଇ କାହାନ୍ତି ଆଗେ କୁହ, ମୁଁ ଟିକିଏ ତାଙ୍କୁ ଦେଖା କରିବି ।

ବିଶାଖା—ସେ ଫୁସୁଲା ଫୁସୁଲି ପାଠ ଅଜ ଏଥର କେହି ପଢ଼ିବେ ନାହିଁ । ତମେ ଫେରିଯାଅ କାହ୍ନୁ ।

( ଗୀତ )

ଫେରିଯା ଫେରିଯା କାହ୍ନୁ କୁଞ୍ଜକୁ ନ ଯା,
ଅମ୍ଭ ଶ୍ରୀମତୀ ସ୍ୱପନେ ନିଦ୍ରା ନ ଭଞ୍ଜା ।୦।
ତୁମ୍ଭ ଧରମ କରମ ଧେନୁ ରଖା ବଡ଼ ପଣ
ତୁ କାହୁଁ ଜାଣିବୁ ଶ୍ୟାମ ପିରତି ମଜା ।୧।
ଜାତି ତୋ କଠାଉମଡ଼ା ଶିଙ୍ଗା ବାହୁଙ୍ଗି ସଜଡ଼ା
ବନଫୁଲେ ବାନ୍ଧି ଜୁଡ଼ା ମୁରଲୀ ବଜା ।୨।
ପୁରୁଷ ଭ୍ରମର ଜାତି ଖୋଜୁଥାନ୍ତି ପର ପ୍ରୀତି
ପାଇ ସନ୍ତୋଷ ହୁଅନ୍ତି ନାହିଁଟି ଲଜ୍ଜା ।୩।

କୃଷ୍ଣ—ବିଶାଖେ, ଲଳିତେ ! ତୁମେମାନେ ପର କଲେ ମୁଁ କାହାର ହେବି ଭଲା ? ଅଜାଣତରେ ଘୁମାଇ-ପଡ଼ି ଅପରାଧ ଅର୍ଜିଲି । ଏତେବେଳେ ଶ୍ରୀମତୀଙ୍କର ଅଭିମାନ । ତହିଁରେ ତୁମେମାନେ ଜଳନ୍ତା ନିଆଁରେ ଘିଅ ଢାଳୁଛ ପିନା । ଯାଅ ଲଳିତେ, ମୋ ଲାଗି ପଦେ ହେଲେ ସଖୀଙ୍କି ବୁଝାଇ କହ ।

ଲଳିତା—କେତେଥର ଦେଖୁଛୁଁ କାହ୍ନୁ, କେତେଥର ତମର ଏ ଭଲି କଥା ଶୁଣିଛୁଁ । ଏଥରକ ତ ନୂଆ ନୁହେଁ । ଆଜ ତମଲାଗି ଶ୍ରୀମତୀଙ୍କୁ ବୁଝାଇବାକୁ ବେଳ ନାହିଁ କି ବଳ ନାହିଁ । ମନ ହେଲେ ନିଜେ ଯାଇ କହ । ଦେଖ, ତୁମେ ଯଦି ଅଭିମାନିନୀର, ବିଷାଦିନୀର ମନ ନେଇପାର, ଯାଅ । ଆମ୍ଭେମାନେ ପଛେ କୁଞ୍ଜଦ୍ୱାର ଛାଡ଼ି ଦେଲୁଁ । ଯାଉଛି, ସଖୀର ପହୁଡ଼ ଭାଙ୍ଗି ଜଣାଏ, ଦେଖିବା ତମ ଭାଗ୍ୟ ।

ଲଳିତା—(ଶ୍ରୀମତୀଙ୍କ ନିକଟକୁ ଯାଇ)

ଗୀତ

ସଖି, ଜାଗ ରାତି ପାହିଲା ।
ଗୋପନେ ସମୀର ବହିଲା ।୦।
କୁଞ୍ଜ ଦୁଆରେ ଘନଶ୍ୟାମ ଉଭାରେ
ନିରତ ନୀର ତ ବହିଲା ।୧।

ଶ୍ରୀମତୀ—(ଆଖି ମଳି) କିଏ ସଖୀ ?

ବିଶାଖା—ସକାଳୁ ବନ୍ଧୁ ବିଜେ କରୁଛନ୍ତି । ତାଙ୍କର ରାତିପାହି ନାହିଁ ସଖି । ଶ୍ରୀମତୀ, ଥରେ ଚାହିଁ ଦେଖ, ବନ୍ଧୁଙ୍କ ବେଶର ଶୋଭା । ଉଠ ସଇ ।

ଶ୍ରୀମତୀ—କହ ତାଙ୍କୁ ବିଶାଖେ, ରାଧିକା ତାଙ୍କ ଯୋଗ୍ୟା ନୁହେଁ । ଘରକୁ ଫେରନ୍ତୁ । ତାଙ୍କର ଏଠି କେହି ନାହାନ୍ତି । (ଅଧା ଉଠି ବସିଲେ)

ଶ୍ରୀକୃଷ୍ଣ—ଅଭିମାନିନୀ ସଇ । ଅପରାଧ କ୍ଷମାକର । ଜାଣି ଜାଣି ମୁଁ ରହିନାହିଁ । ଶୋଇ ପଡ଼ିଥିଲି । ନିଦ ଭାଙ୍ଗିବାବେଳକୁ ସକାଳ ହୋଇ ଆସିବା ଦେଖି ବାଟଘାଟ ନମାନି ତମ ପାଖକୁ ଧାଇଁ ଆସିଛି । କ୍ଷମାକର ସଇ ।

ଶ୍ରୀମତୀ— ଗୀତ

ନନ୍ଦନନ୍ଦନ ଛୁଇଁଲା ଛୁଅଁତ ଲାଗାନା ।୦।
ଯା'ରତି ରସରେ ମାତି ଜାନିଦ୍ରେ ବଞ୍ଚିଛୁ ରାତି
ତା' ଶେଜେ ଶୁଅ ଯା ଘୁମାନା ।୧।
ଯେ' ତୋତେ କରିଛି ବଶ ତା'ପାଶେ ତୁ ଯାଇ ବସ
ଜଡୁ ତାର ସୁନ୍ଦରୀ ବାନା ।୨।
ଏ ତୋ ତନୁ ମରକତେ କରଜ ଘାତେ ସେ କେତେ
ଫୁଟିଛି କି ମାଣିକ୍ୟ ମୀନା ।୩।
ତା' ପଦ ରଙ୍ଗ ଅଳତା କପୋଳେ କରିଛୁ ଶତା
ସେ ଶୋଭା ମୋ ଆଗେ ଦେଖାନା ।୪।

ଶ୍ରୀକୃଷ୍ଣ—ନାହିଁ ଧନ । ଏସବୁ କିଛି ସତ୍ୟ ନୁହେଁ । ବୃଥାରେ ଅନୁମାନ କର, ମୋ'ଠାରେ ଅଭିମାନ କରନାହିଁ । ମୁଁ ସବୁକଥା ସଖୀମାନଙ୍କୁ ବୁଝାଇ ଦେଇଛି ।

ଶ୍ରୀମତୀ—ଲଳିତେ; ତାଙ୍କୁ ମଧ୍ୟ ବୁଝାଇ କହ, ରାଧିକା ବାଳିକା ନୁହେଁ । ଅଯଥା ସମୟ ନ କଟାଇ କୁଞ୍ଜ ତ୍ୟାଗ କରନ୍ତୁ । ସେ ଶଠଙ୍କ ଛଳ କଥାରେ ମୁଁ ଆଉ ଭୁଲିଯିବା ଲୋକ ନୁହେଁ । ଯାଅ ସଖି ।

ବିଶାଖା—ଚାଲ ଶ୍ୟାମ । ଫେରି ଚାଲ—

ଗୀତ

ଶ୍ୟାମ କୁଞ୍ଜରେ ନ ରହ ବେଗେ ଯା, ଯା, ଯା-
ହେ ଲମ୍ପଟ ବଡ଼ ଶଠ ସଖୀରେ କରି କପଟ
ରହିଲୁ ଯା'ସଙ୍ଗେ ନିଶି ମଜା ଯା । ୧ ।
ତା' ନାମ ଗାଇ ମୋହନ ହୁଅ ଯା ବଂଶୀବଦନ
ଯମୁନା ପୁଳିନେ ବଂଶୀ ବଜା ଯା । ୨ ।
ଯାହାରେ କଲୁ ଚୋହର ବାହୁ ଭିଡ଼ା ହୃଦୟର
ସେହି କୁଳବତୀ କୁଳ ସଜା ଯା । ୩ ।

ଶ୍ରୀକୃଷ୍ଣ—ସହି, ଅଜ୍ଞାତରେ ଯାହା କରି ପକାଇଛି ତା'ର ଆଉ ଫେରିବାର ବାଟ କ'ଣ ? ଏହି ଥରକ ଭଳି ମୋ ଦୋଷ କ୍ଷମା କରିବାକୁ କହିଅ ଲଳିତେ ।

ଶ୍ରୀମତୀ—ଲଳିତେ, ବାରବାର ଏହିପରି ଗୁଡ଼ାକଥା କେତେ ଶୁଣିଛି, କେତେ ସହିଛି । ସହିସହି ଛାତି ପଥର କଲଣି । ଆଉ ନୁହେଁ । ତୁମେମାନେ ସେ ଶଠଙ୍କୁ ବିଦାୟ ନ କଲେ ମୋ ଆଶା ଛାଡ଼ ।

ଲଳିତା—ଶ୍ୟାମ ଆଉ କାହିଁକି ? ନୂଆ ତ ନୁହେଁ ତମର ଏ ରୀତି ? ସଦେ କା ଏ କେତେ ସହିବ ? ଚାଲ ସହି, ଆଉ ବିଳମ୍ବ କରନାହିଁ ।

ଶ୍ରୀକୃଷ୍ଣ—ଶ୍ରୀମତୀ । ଏପରି ଗୁହ୍ମମାନ କଅଣ ଉଚିତ ମଣୁଛ ?

ଗୀତ

କେଉଁ କାରଣୁ ମୁଁ ତୋ ସେବାକୁ ଗୋ,
ମୋ ଠାରେ ଅବଧାନ ହେବାକୁ ଗୋ ।୦।
ତୋ' ଚାରୁ ମୁଖ ମାଟି, ଯେଣ ଲଳିତ ବାଟ
ଭୁଲିବ ଭାଲେ ନିବେଶିବାକୁ ଗୋ ।
ଲାଗଇ ମନେ ଦୁଃଖ କୋଟି ସୁଧାମୟୂଖ
ଦଳିବା ଫଳ ଛପି ଯିବାକୁ ଗୋ । ୧ ।
ମନୋହର କବରୀ ସାଜ ପାରଇଁ ଗୋରୀ
ଜାଣି ତୋ ଶିର ରଖାଇବାକୁ ଗୋ,
ଭରସା ନୁହେ ମୋର, ଛାର ନୀଳ ଗୃହର
ଚନ୍ଦ୍ରିମା କେଶେ ମିଶାଇବାକୁ ଗୋ । ୧ ।
ତୋ ପୟୋଧର ହେମଦାମ ଛଡ଼ା କୁସୁମ
ପରି ମୋ ଶରେ ଆଭାସିବାକୁ ଗୋ,
ମରଣୁ ଲାଜ ବଳେ, ଗୃହୁଁ ଗୃହୁଁ ତୋ କଲେ—
ବରକୁ ଅଳଙ୍କାର ଦେବାକୁ ଗୋ । ୨ ।

ବିଶାଖା—ଏତେ ଚେଷ୍ଟାଚେଷ୍ଟାରୁ କିଛି ମିଳିବ ନାହିଁ ବନ୍ଧୁ । ବାଟ ଦେଖ, ଚାଲ ।

(ଶ୍ରୀକୃଷ୍ଣଙ୍କ ଯେନ ପ୍ରସ୍ଥାନ)

ଲଳିତା—ଶ୍ୟାମ ତ ଗଲେ । କିନ୍ତୁ ସହି, କଥାଟା ବଡ଼ ବଢ଼ିଗଲା । ଏଣିକି ପୁଣି କଅଣ ହେବ ? ମଲ, ଯା । ସକାଳ ତ ହେଲା ଆସି । ଟେଣେ ଅଛୁରି ବିପଦ । ଚାଲ, ଚାଲ । ବେଗେ ଯିବା ।

ବୃନ୍ଦା—ଶ୍ରୀମତୀ । ଏତେ ଗୁହ୍ମମାନ ଉଚିତ ହୋଇନାହିଁ । ବଡ଼ ଦୁଃଖରେ ଶ୍ୟାମ ଫେରିଛନ୍ତି ।

(ବିଶାଖା ପ୍ରବେଶ)

ଶ୍ରୀମତୀ—(ଦୀର୍ଘ ନିଃଶ୍ୱାସ ପକାଇ) ଫେରନ୍ତୁ ସଖି । ନୋହିଲେ ବୁଝିବେ ନାହିଁ ସେ ନାରୀ ହୃଦୟର ଦୁଃଖ ।

ବୃନ୍ଦା—ସହି । ଛାର କଥାରେ ଏତେ ରାଗ ଠିକ୍ ହେଲା କି ?

( ଗୀତ )

ଗୁମାନ କରି ଗୋରି, ରହି ପାରିବୁ କି'ରେ ।
ତଳେ ହେଲେ ହେଁ ନାଗରୀ ନାଗରବରେ ।୦।
ବଂଶୀକି ଧରି ତୋର ନାମ କହାଇ
ଡାକିଲେ କି ତା ପାଶକୁ ନ ଯିବୁ ଥରେ ।୧।
ସୁରଭି ମେଳେ ବନକୁ ଗଲାବେଳେ
ଜଗି ବସିଥାଉ ପ୍ରାଣ ରଖି ତା'ଠାରେ ।୨।
ତା' କଥା ନିତି ପଢ଼ିଲାବେଳେ ଶୁକ-
ଯୁଗଳକୁ ଡେଉ ରହିଥାଉ ପଦରେ ।୩।

( ପଟ୍ଟକ୍ଷେପ )

---

## ତୃତୀୟ ଦୃଶ୍ୟ
### ବନପଥ

(ମଧୁ, ସୁବଳ ବୁଢ଼େଇଁପ୍ରବେଶ)

ସୁବଳ—ଧାଇଲ ନାହିଁ ତେବେ ?

ମଧୁ—ନାଁ—ବାଟରେ ଭେଟିଥିଲେ ଆଜ ଗ୍ଭଡ଼ଥା'ନ୍ତି ଫେର ?

ସୁବଳ—ଏତେବେଳ ତ ହେଲଣି । କଅଣ ନହେଲ ତେବେ ?

ମଧୁ—କିଛୁ ଘଟିଛି ନିଶ୍ଚେ । ଘଟିବାର କଥା ତ । ଯେମିତି କାମ, ସେମିତି ଫଳ । ଏଥିରେ ଆଜ ନୂଆ କଥାଟେ କ'ଣ ଅଛି ?

ସୁବଳ—ଅସିଲେ ସିନା—କ'ଣ ହେଲା, କ'ଣ ନାଇଁ—ବୁଝାଯାନ୍ତା ?

ମଧୁ—ତୁମେ ଆଜ କେନାଟା ବୁଝିବ । ମୁଁ ଯାହା କହୁଛି, କଥାଟା ଦେଖିବ ଠିକ୍ ସେଇଆ ଘଟିଛି । ଛୋକଟେ ମୁହଁ ଶୁଖେଇ, ଲୁହ ଝରେଇ, ନଇ, ଗଛ, ବଣକୁ ଗୁହିଁ ଖର ନିଶ୍ୱାସ ପକାଉଥିବେ । ତାଙ୍କର ଆଜ ବେପାର କ'ଣ ?

(ଅଦୂରେ ମଳିନ ବେଶେ ଶ୍ରୀକୃଷ୍ଣ)

ସୁବଳ—(କୃଷ୍ଣଙ୍କୁ ଦେଖି) ହେଇଟି ସଖା । ହେଇଟି, ବକେ କରୁଛନ୍ତି ।

ମଧୁ—ଦେଖ, ମୁଁ ଯାହା କହୁଥିଲି, ସେଇଆ ନାଁ ? ଜାଣେ ପରା···

ସୁବଳ—କିଓ ସଖା । ଏ ପୁଣି କି ଢଙ୍ଗ ଅଜ ? କଅଣ ଫେର ଉମର ହେଲ ?

ଶ୍ରୀକୃଷ୍ଣ—(ନୀରବରେ ତଳକୁ ଅନାଇଁ ରହିଲେ)

ମଧୁ—ଅହେ ବାବୁ । କହ ଭଲା, କ'ଣ ହେଇଛି । କହିବ ନାହିଁ ତ କିଛି । ଅଜ ଅମେ କଅଣ ସବଜ୍ଞ ହୋଇଛୁ ଯେ ତମ ମନ କଥା ବୁଝି ପକେଇବୁଁ ? ଭଲା ଅଡୁଆରେ ମଣିଷ ପଡ଼ିଲା ।

ସୁବଳ—କହୁନା ?

ମଧୁ—କ'ଣ ? କହିବାକୁ ଅମମାନଙ୍କୁ କିଏ ମନା କରୁଛି ?

ଶ୍ରୀକୃଷ୍ଣ—କ'ଣ କହିବ ସଖା । ସବୁ ସରିଛି ମୋର ।

ମଧୁ—କ'ଣ ହେଲା ?

ଶ୍ରୀକୃଷ୍ଣ—ଶ୍ରୀମତୀଙ୍କ କୁଞ୍ଜକୁ ଗଲାବେଳକୁ ପଦ୍ମା ହାବୁଡ଼େ ପଡ଼ିଲି, ସଖା ଯେତେ ପ୍ରକାର ଛଳନା ଦେଖାଇଲି ସବୁ ମୋର ବୃଥା ହେଲା । ତୁମେ ତ ନଥିଲ ବନ୍ଧୁ ? ଥିଲେ ଅବା କେଉଁଣି ଛା ବନ୍ଧନରୁ ମୁକ୍ତ ପାଇଥା'ନ୍ତି । ବାଧ୍ୟ ହୋଇ ମତେ ଚନ୍ଦ୍ରାବଳୀଙ୍କ କୁଞ୍ଜକୁ ଯିବାକୁ ପଡ଼ିଲା ।

ସୁବଳ—ବେଶ ତେବେ ତ ସେ କିଛି ନା କଥା ହେଲା ।

ମଧୁ—ତୁମେ କ'ଣ, ଶ୍ରୀମତୀଙ୍କ କୁଞ୍ଜକୁ ଯମା ଯାଇନା ?

ଶ୍ରୀକୃଷ୍ଣ—ଗଲି, ମାତ୍ର ସେତେବେଳକୁ ପାହାନ୍ତା ହୋଇ ଅସିଲଣି । ଅଭିମାନିନୀ ସାରା ରାତି ମୋ ଅଶାରେ କାଟି, ଗୁରୁ ମାନ ବହି, ମୋତେ କୁଞ୍ଜରୁ ବିଦାୟ କରଦେଲେ । ସଖା, ଏବେ ମୋର କି ଗତି ହେବ ?

ମଧୁ—ଅଚ୍ଛା, ତମକୁ କଅଣ କହିଲେ ସେ ?

କୃଷ୍ଣ—କିଛି ନାହିଁ । ସଖିମାନେ ତାଙ୍କଠାରୁ ଅଦେଶ ପାଇ, ମୋତେ କୁଞ୍ଜ ଗ୍ଭଡ଼ ଗ୍ଭଲି ଯିବାକୁ କହିଲେ ।

ସୁବଳ—ଅଜ ତୁମେ ଅମର ସୁନାବୃଅଟି ପରି ଗ୍ଭଲି ଅସିଲ ?

ମଧୁ—ଅଃ, ବୁଦ୍ଧି । ଅଜ କଅଣ ଅଧିଆ ପଡ଼ିଥ କ୍ରେ ? ସଖା । ସେମାନେ ତ ତମର ଚନ୍ଦ୍ରାବଳୀଙ୍କ କୁଞ୍ଜକୁ ଯିବାର ଜାଣିନାହାନ୍ତି ?

ଶ୍ରୀକୃଷ୍ଣ—ଅନୁମାନ କରିଛନ୍ତି ନିଶ୍ଚୟ ।

ମଧୁ—ଅନୁମାନ ସିନା । ଜାଣି ତ ନାହାନ୍ତି ?

ଶ୍ରୀକୃଷ୍ଣ—ବୃନ୍ଦା ଜାଣନ୍ତି ।

ମଧୁ—ସେ ଜାଣିଲେ କିଛି କ୍ଷତି ନାହିଁ । ତାଙ୍କଠାରୁ କଥାଟା ବାହାର କରି ନେବା ସହଜ ନୁହେଁ ।

ସୁବଳ—ବନ୍ଧୁ । ବୃନ୍ଦା ଅସୁଛନ୍ତି । ଭଲହେଲା ।

( ନେପଥ୍ୟକୁ ଦେଖାଇ )

ମଧୁ—କାଇଁ ? ହଁ, ଅସନ୍ତୁ ଅସନ୍ତୁ । ତାଙ୍କଠାରୁ ସବୁ ଖବର ମିଳିଯିବ ।

( ବୃନ୍ଦା ପ୍ରବେଶ )

ଶ୍ରୀକୃଷ୍ଣ—(ବୃନ୍ଦା ପ୍ରତି) ସଖୀ, ରାଧିକାଙ୍କର ମନର ଅବସ୍ଥା କଅଣ ଦେଖିଲ ?

ବୃନ୍ଦା—ଅଉ ଦେଖିବ କ'ଣ ଶ୍ୟାମ ? କଅଣ ଅଉ ତୁମେ ବାକି ରଖିଛ ଭଲା—

—ଗୀତ—

ବନ୍ଧୁ, ବୁଝାଇବି ବାରବାର ମୁଁ ।
ଯେତେ ବୁଝାଇଲେ   ମାନକର ଘୋର
ନ ବୁଝିଲା ମନ ତାର ।୦।
ଚରଣକୁ ଧରି   ଜବା ଅଧରର
ଗୃହୁଁ କରିଲି ବିସ୍ତର,
ନାହିଁ ନାହିଁ କଲା   ଯେତେ ବୁଝାଇଲା
ନୟନରୁ ନୀରଧାର ।୧।
ନିଶି ଉଜାଗର   ବସି ସଖୀ ମୋର,
ଘାର କଲା ତନୁ ସାର,
କଣ୍ଠକର ଖଣ୍ଡ,   ନାଗର କପଟ
ରହିଲା ହେ କାହାପର ।୨।
ଅଉ କି ସହିବି   ସେ ଦଶା ଦେଖିବି
ଅଣ ଅଛୁକି ତୁମ୍ଭର,
ଶପଥ କରଛୁ,   ନ ଗୁହିଁବ କିଛୁ,
କାଳ କଳା ରୂପ ତାର ।୩।

ଶ୍ରୀକୃଷ୍ଣ—ସହି, ଅଉ କାହିଁକି ଡେରେ ? ଏ ଜୀବନ ଧାରଣ ଅକାରଣ ସିନା ?

ବୃନ୍ଦା—ଶ୍ୟାମ, ଜାଣୁ ଜାଣୁ ସବୁ ତ କରୁଛ । କିଏ କହୁଥିଲା ତମକୁ ଶ୍ରୀମତୀଙ୍କୁ ସଙ୍କେତ ଦେଇ ଚନ୍ଦ୍ରାବଳୀଙ୍କ ପାଖକୁ ଯାଅ ବୋଲି ? କେତେ ଅନ୍ୟାୟ ନ କରିଛ ଭଲା ?

ଶ୍ରୀକୃଷ୍ଣ—ଜାଣୁ ଜାଣୁ ତ କରିନାହିଁ ସଖି । ସବୁ ଦୋଷ ଭାଗ୍ୟର । ଭାଗ୍ୟକୁ ସବୁ ବିପରୀତ ଫଳୁଛି ବୃନ୍ଦେ ।

( ଗୀତ )

ମୋ ଭାଲେ, ଥିଲା କି ଗୋ ଲେଖା ।
ଚଲ ମଲ୍ଲୀରେ ପଶି   ତହୁଁ ଜନ୍ମିଲା ତୃଣ
ଚନ୍ଦ୍ରା ଚନ୍ଦନଗଣ   ହେଲା ପାଷାଣ କଣ ।୦।
ଚୂତ ଫଳିଲା ନାଗରଙ୍ଗ   କଣ୍ଠିମେଖଳା ହେଲା ଭୁଜଙ୍ଗ
ତଟିନୀ ତଟେ ବାସ—   କର ନ ଗଲା ଶୋଷ
ପିଇବାର ପିୟୂଷ   ପାନରେ ହେଲା ବିଷ । ୧ ।
ମଧୁ ଶାକର ହେଲା ଲମ୍ବ,
ରବିପରି ହେଲା ଚନ୍ଦ୍ର ବିମ୍ବ
ଧାତାର କି ବିବେକ   ଚଞ୍ଚୁ ଜାତକାଂଶୁକ
ପଢ଼ା ପଣ୍ଡିତ ଶୁକ   ହେଲା ମୋ ଦ୍ୱନ୍ଦ କାକ ।୨।
ମନ୍ଦାକିନୀରେ ମଜ୍ଜିଲି,
ନିନ୍ଦା କାହିଁକି ଅର୍ଜିଲି
ଚଢ଼ିଲି ମେରୁଚୂଳ   ବେଗ ହେଲା ଅତଳ
ବ୍ରହ୍ମକାନ୍ତ ପାଟଳ   ହୀରା ହେଲା ଉପଳ ।୩।

ମଧୁ—ଥଣ୍ଡ ଧର କାହ୍ନୁ । ବୃନ୍ଦେ । ସତେ କଅଣ ଅଉ କିଛୁ ବାଟ ନାହିଁ ? ସଖୀଙ୍କର ଏ ଅବସ୍ଥା ଦେଖି ତ ଆମ୍ଭମାନଙ୍କର ଅଉ ଧୈର୍ଯ୍ୟ ରହୁନାହିଁ । କ'ଣ କରିବା ସହି ?

ବୃନ୍ଦା—କାହ୍ନୁ । ବିପଦବେଳେ ଅଧୀର ହେଲେ ଥିବା ବୁଦ୍ଧି ଉଭେଇ ଯାଏ । ତୁମେ ଏ ଭଳି ହେଲେ ଆମ୍ଭମାନଙ୍କର ଅଉ ଉପାୟ ଭାଳିବାକୁ ତରଥିବ ଟିକି ? ଛୁ କାହ୍ନୁ, ବାଟରେ ମୁଁ ଗୋଟିଏ ଉପାୟ ଭାବି ଭାବି ଆସିଛି । ଦେଖିବା, ଯଦି ସେଥିରେ ଧନୀର ମନ ଫେରେ ।

ମଧୁ—ଏ ତ ଭଲ କଥା ସଖୀ । ତୁମେ ଟିକିଏ ମନ ଦମ୍ଭକରି ବୃନ୍ଦାଙ୍କ ସଙ୍ଗରେ ଯାଅ । ମନହେଲେ ଆମ୍ଭମାନଙ୍କ ଭିତରୁ କାହାକୁ ସାଙ୍ଗରେ ନିଅ ଅବା ନ ନିଅ; କିନ୍ତୁ ତୁମେ ଏ ମୁହଁ ଶୁଖା-ଶୁଖି ଛାଡ଼ିଲ ।

—ଗୀତ—

ଅଲ୍ ଶ୍ରୀମୁଖ ସୁଖାନା—

କଞ୍ଜ ନିନ୍ଦ ସେ ମଞ୍ଜୁଳ ନୟନେ

ଧାର ଧାର ନୀର ଦେଖାଅ ନା ।୦।

ମନ ମୋହନ ମୁରଲୀ କରେ ନାହିଁ,

ଗୁଣ ସୁମର ସତେ ହେତୁ କରେ ବାଇ ?

ଗଣ୍ଡେ ଖେଦ ରେଖା ଲେଖା ନାଁ ।୧।

( ସମସ୍ତେ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

( ଗୋପବାଳାଗଣ ପ୍ରବେଶ )

—ଗୀତ—

ମୋହନ ଛବିଟି ଝୁରିଲ ପଡୁଛୁ ସଙ୍ଗୀତ ମୁଖରେ ନାହିଁ,

ଲୁଚିଲେ ମଳୟ ବଧୂଲି ଅଧର ମଧୁର ଅସିବ କାହିଁ ?

(ନିତ) ସଞ୍ଜ ବୁଡ଼ଗଲେ କୁମୁଦ ଗୃହିଁଛୁ

ଅସିବାକୁ ଜହ୍ନରାତ,

ଗୃହ ଅଧରକୁ ମଧୁ ବୁଲୁଟିକୁ

ଅନାଇଁ ଥାଏ ଯେତ ।୧।

ଗୃହି ଡ଼ାକେ କଜଳ ପାତ

ସେ ତ ପାହାନ୍ତ ତାରାର ସାଥୀ

କଇଁ ସ ବିତରେ ମଥା ପିଟି ହେଲେ

ଅଜ କି ସେ ହସ ପାଇ ? ।୨।

(ଗାଇ ଗାଇ ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

(କୃଷ୍ଣ, ମଧୁ ଓ ବୃନ୍ଦା ପ୍ରବେଶ)

ବୃନ୍ଦା—ଅସ୍ଥ, ତମ ମନକୁ ଏ କଥା କେମିତ ଲଗୁଛୁ ?

ମଧୁ—ମୋତେ ତ କଥାଟା ପୋଷେଇଲା ପରି ଲଗୁନାହିଁ ଜମା । ତମେ କ'ଣ ମନେ କରୁଛ ଶ୍ରୀମତୀଙ୍କର ଅଭିମାନ ନଥିବ ?

ବୃନ୍ଦା—ନଥିବ କାହିଁକି ? ଅଛୁ । ମୁଁ ଭଲ କରି ଜାଣେ ସେ ମାନ ସହଜରେ ତୁଟିବାର ନୁହେଁ । ତଥାପି ଦେବୀ ପୌର୍ଣ୍ଣମାସୀ ଯଦି ତାଙ୍କୁ କୌଣସି ପ୍ରକାରରେ ଫଦାଦ ଦେଇବ ତେବେ ମୁଁ ଜାଣେ ମାନ ରହିବ ନାହିଁ ।

ଶ୍ରୀକୃଷ୍ଣ—ତା'ତ ସତ । ବାକି, କଥାଟା ମୋତେ କାହିଁକି ଭଲ ଲଗୁନାହିଁ, ବୃନ୍ଦେ । ବନ୍ଧୁ, ତମ ଇଚ୍ଛା କ'ଣ ?

ମଧୁ—ମୋ ଇଚ୍ଛା ? କାହିଁକି ? ତମ ମନକୁ ଖାପ ଖାଇବ କି ନାହିଁ କହି ପାରିବ ନାହିଁ । ତାକୁ ଫଳ ଫଳନ୍ତା ନିଚ୍ଚେଁ । ଏକାବେଳେ ଅଣଲେଉଟା ବାଣ ।

ଶ୍ରୀକୃଷ୍ଣ—କହ ତେବେ ସଖା ।

ମଧୁ—କହିଲେ କ'ଣ ହେବ ? ତୁମେ କ'ଣ ଶୁଣିବା ଲୋକ ? ଏକ କହିଲେ ତ ଦୁଇ କରି ବସିବ । ନୋହିଲେ ଶ୍ରୀମତୀଙ୍କର ଅଭିମାନ ହୁଅନ୍ତା କାହିଁକି ?

ବୃନ୍ଦା—କହୁନା ତେବେ ବନ୍ଧୁ ?

ମଧୁ—କଲେ ସିନା ? ଅସ୍ଥ ଶୁଣ, ତୁମେ ଯିବ । ତୁମ ପଛେ ପଛେ ଲଚ ଲଚ ସଖା ଅମର ଯିବେ । ପ୍ରଥମେ ତୁମେ ତାଙ୍କ ଲାଗି ପଦେ ଅଧେ ବୁଝାଇ କହିବ । ମାନ ନ ତୁଟିଲା ଯେବେ ସଖା ଅମର ତମ କାନ ପଶତ ଅଡୁଆଳରୁ ବାହାରି ଝଟକା ଚରଣ-ଧାରଣ ନୀତଟା କରିଦେଇବ । ଅଲ୍ କହିବେ—"ମନରୁ ମାନ ତେଜ ଗୋ ମାନିନୀ, ସଖୀ ଗୋ ଧରୁଛୁ ତୋ ପାଦ"—ମାନ ନ ତୁଟିବା ଯାଏ ଠିକ୍ ଏଇ ଅବସ୍ଥାରେ ଥିବେ । ଯାହା ପାଇ ତାହା ହେଉ ପଛେ ଯୋଗ୍ର ଚରଣ-ଛଡ଼ା ନହୁଅନ୍ତୁ । କ'ଣ କହୁଛ ସଖା ? କ'ଣ ମୋ ପ୍ରସ୍ତାବଟା ମନ୍ଦ ?

ବୃନ୍ଦା—ଛି, ବନ୍ଧୁ । ତମର ସବୁବେଳେ ଏ ପନ୍ଦିହାପଟା ନ ଗଲ ?

ଶ୍ରୀକୃଷ୍ଣ—ବୃନ୍ଦେ । ମୁଁ ମନେମନେ ଗୋଟିଏ କଥା ସ୍ଥିର କରିଛି । ଜଲନ୍ତା ନିଅଁରେ ଅଲ୍ ଟିକିଏ ଘିଅ ଢାଳି ପାରିବ ?

ବୃନ୍ଦା—ପାରିବ । କହ ।

ଶ୍ରୀକୃଷ୍ଣ—ତେବେ କେଜାଣି, ମୋ କଥାଟା ଫଳି ପାରେ ।

ମଧୁ—ଅଚ୍ଛା, ତମ କଥାଟା କ'ଣ ଦେଖି କହୁଛ । ଅମେ ସବୁତ ଫସର ଫାଟିଗଲୁଁ । ଦେଖିବା ତମେ କେମିତ ଚତୁର ଜଣେ ।

କୃଷ୍ଣ—ଶୁଣ ସଖା ! ଶ୍ରୀମତୀଙ୍କ ଅଭିମାନର ମାତ୍ରା ଜଣା ହୋଇଛି କଷ୍ଟେଁ ।

ମଧୁ—କେମିତ ଜାଣିଲ ?

ଶ୍ରୀକୃଷ୍ଣ—ମୋ ମନରୁ ଅଉ ବୃନ୍ଦାଙ୍କ କଥାରୁ ।

ମଧୁ—ଅଚ୍ଛା, ହେଲା । ସେଇଠୁ ?

ଶ୍ରୀକୃଷ୍ଣ—ବୃନ୍ଦା କାଲୁ ଫେରିଯାଇ ମୋ ସମ୍ବନ୍ଧରେ ତାଙ୍କୁ କହିବେ । ବାକି ଟିକିଏ ସଜେଇ ବାଗେଇ କର ।

ମଧୁ—କ'ଣ ଚନ୍ଦ୍ରିକା ଚୂଳ—ମୋହନ ମୁରଲୀ ଖଞ୍ଜି—

ଶ୍ରୀକୃଷ୍ଣ—ଯାଃ, ତେବେ ତମକୁ କିଛି କହିବା ଦରକାର ନାହିଁ ।

ମଧୁ—ନାହିଁ, ନାହିଁ, ନାହିଁ । ରାଗ ନାହିଁ ସଖା । ଜାଣିକରି ତ ମୂର୍ଖଟାକୁ ସଖା କରିଛ । ମୁଁ କ'ଣ କରିବ ? ଯେତିକି ବୁଝିଲି ସିନା ?

ବୃନ୍ଦା—ତେବେ ତୁମେ କାପରି ଯିବ ସେଠାକୁ କାହ୍ନୁ ?

ଶ୍ରୀକୃଷ୍ଣ—ମୁଁ ତମ ସଙ୍ଗରେ ଯିବ । ସଖା ଯାହା କହୁଥିଲେ···

ମଧୁ—ଅରେ ବାଃ, କିଏ କହିଲା ମୁଁ ମୂର୍ଖ ବୋଲି ? ମୋ'ର କଥାତ ହେଲା । ତା'ପରେ ?

ଶ୍ରୀକୃଷ୍ଣ—( ମଧୁ କାନରେ କହିଲେ )

ମଧୁ—ବାଃ, ଯାକୁ ଯେ କହନ୍ତି ଚତୁର । ଠିକ୍ ଏଇଥର ଶିକାର ହାତୁଡ଼େ ପଡ଼ିବ । ପଡ଼—ପଡ଼—ନ ପଡ଼ ବୋଇଲେ କାହାର ଆଜ୍ଞା, ଈଶ୍ୱର ପାର୍ବତୀଙ୍କର କୋଟି କୋଟି ରାଣ ।

ବୃନ୍ଦା—କଅଁ ବଟୁ, କଅଣ ତୁହେଁ କାନରେ ଫୁସ୍‌ଫାସ୍ ହେଲ, ମୁଁ ତ କିଛି ବୁଝି ପାରିଲି ନାହିଁ ?

ମଧୁ—ଅରେ ବୁଝିବ ନାହିଁ ? କାମରେ ଦେଖିବ—ସଖା ଆମର କେମିତ ଚତୁର । ତମର ହାତରେ ତ ସବୁ ହେବ । ଜାଣିବ ନାହିଁ କ ବଳେ ? ଚାଲ ସଖା, ଅଉ ଦଣ୍ଡେ ବିଳମ୍ବ କରିବାର ନୁହେଁ ।

( ଗୀତ )

ଏଇଥର କଡ଼ା ତୁ ପତାକା, କହ୍ନାଇଁ ରେ ।
ହଳଦୀ ଅଙ୍ଗେ ନେଳୀ ମେଘୁଆ ରଙ୍ଗେ
ମଣିମାଳା ତୁ ଲଟକା, ଛଇଲା କହ୍ନା
ନାଗରୀ ମନ ଅଟକା, ଚତୁର କହ୍ନାଇ ରେ ।୧।

———

## ଷଷ୍ଠ ଦୃଶ୍ୟ

କୁଞ୍ଜବନ ।

(ଲଳିତା, ବିଶାଖା, ତୁଳସୀ ଓ ଧନିଷ୍ଠା ଇତ୍ୟାଦି ସଖୀଗଣ—ମଝିରେ ବିଷାଦିନୀ ରାଇ)

—ଗୀତ—

ଲଳିତା—ସରାଗ ତୋ ମୁଖେ ନାହିଁ ଗୋ ଶ୍ରୀମତୀ,
ପରାଗ ମୁଝିଲା ପଙ୍କଜ ପରିଏ ଦିଶୁଅଛୁ କାହିଁପାଇଁ ? ।୦।
ନନ୍ଦୁ ଶ୍ୟାମଘନ ଶୋଭାକୁ ତୁ କିପାଁ
ପିନ୍ଧୁଅଛୁ ନୀଳଚେଲ,
ଗୃହ୍ନ ମୃଗମଦ ତିଳକ ଲାବଣ୍ୟ
ନାଟିଲେ ହୋଇଛୁ ମେଳ ।୧।
ରାଜଜେମା ଷମା ଉଚିତ ତୋହର
ଏହା ମନେ ବୁଝୁ ଥିବୁ,
ଲଳନା ତୋ କଥା ବୁଝି ବସିଲେ ତ
ଦାଣ୍ଡରେ କଳନା ଯିବୁ ।୨।
ବାଞ୍ଛାବଟ ମୂଳେ ତପ କରଇ ଯେ
ଦେବାକୁ ତୋ ପାଦେ ଲକ୍ଷ,
ଅଦୋଷରେ ରୋଷ କରି ପଶ୍ଚାତ୍ତାପ
ପାଉଅଛୁ କୁଟିଳାକ୍ଷୀ ।୩।

ଶ୍ରୀମତୀ—ଲଳିତେ, ନରୁହଁ ନ ବସ୍ତୁର ହଠାତ୍ ତାଙ୍କୁ କୁଞ୍ଜରୁ ବିମୁଖ କରିଦେବା ଉଚିତ ହୋଇନାହିଁ

ସଖି ! ଅଖି ଆଗେ ଦିଶିଯାଏ ସେ ମଳିନ ମୁଖରେ କରୁଣ କଥାଟି । ପ୍ରାଣ ଭିତର ଫାଟିଯାଏ ସହି । କାହିଁକି ଜେଜାଣି, କାଏ ଜଣେ କାନରେ ଗୁନଗୁନ କହେ କି ବିଶ୍ୱାସ ତାଙ୍କୁ ? କଅଣ କରିବି ସହି ? ବ୍ୟାକୁଳ ହୋଇ ପଡୁଛି । ଜୀବନ ଗଲେ ଏ ଦୁଃଖ, ଏ ବିରହ, ଏ ଲଜ୍ଜା, ଏ ଅପବାଦ ସବୁ ଲିଭିଯା'ନ୍ତା ସହି ।

ବିଶାଖା—ଛି ସଖୀ, କେତେବେଳେ କେତେବେଳେ କଥା ବା ନ ଘଟୁଛି ? କେତେବେଳେ ମେଘ ଆସେ, କେତେବେଳେ ବିଜୁଳି ଚମକ, ବଜ୍ରର ଧମକ, ଝଡ଼ ଝଞ୍ଜା— ସବୁ ଆସେ—ଯାଏ । ପୁଣି ସେହି ଚନ୍ଦ୍ରର ହାସ ରେଖାରେ ଗଗନ ଭରି ଉଠେ । ସେଇ ଶ୍ୟାମ-ଦେହ କିଶୋରୀ ତ । ଦୁଃଖ କରନା ସଖି । ବୃନ୍ଦା ଫେରିଲେ ସବୁ କଥା ଜଣା ପଡ଼ିଯିବ । ସେ ନିଶ୍ଚୟ ବନ୍ଧୁଙ୍କୁ ମନାଇଥିବେ ।

ଶ୍ରୀମତୀ—ଯଥାର୍ଥ କହୁଛ । ମୁଁ ସବୁ ବୁଝୁଛି । କିନ୍ତୁ—

—ଗୀତ—

ଚରଣ ଛୁଇଁ କି ଲୋଡ଼ା ରେ ସଙ୍ଗାତ—
ପ୍ରିୟଜନ ପ୍ରୀତି ପୀୟୁଷ ପ୍ରବାହ ହୁଅଇ ଯେବେ
ଖଦଡ଼ା ।୦।
ପାଷାଣର ହୃଦୟ ଭିତରୁ ସଦୟ-
ପଣ ପରମ ମୁହାଁସ,
ଫେଟଯାକେ ଫୁଟିଥିବ ଯେବେ କୁଟି
ମୁଖେ ଥିବ ମନ୍ଦ ହାସ ।୧।
ଛଳ ପୂର୍ଣ୍ଣ କର ମୃଦୁ ବାଣୀ ଝର
ବିରହୀ ହୃଦେ ଢାଳିବା,
ନିଦାଘେ ତାପିତ ବନଲତା ହିତ
ହାତ ଟେକା ଜଳ କି ବା ।୨।
ପ୍ରଣୟ ପରୀକ୍ଷ କରି ଲକ୍ଷ ଲକ୍ଷ
ସବୁ ବୁଝେ ଅନୁଭବେ,
ପ୍ରୀତିଠାରୁ ବଳି କେହି ନାହିଁ ବୋଲି
ବିବେଚନା ନାହିଁ ଯେବେ ।୩।

(ବୃନ୍ଦା ଓ ଶ୍ୟାମା ବେଶରେ ଶ୍ୟାମ ପ୍ରବେଶ)

ଉଭୟେ—ଜୟ ରାଧେ, ଶ୍ରୀରାଧେ,...ବୃନ୍ଦାବନ ବିଳାସିନୀ ରାଧେ...

ଲଳିତା—ହେଇଟି ସଖି, ବୃନ୍ଦା ଆସିଲେଣି ।

ଶ୍ରୀମତୀ—କଅଣ ଦେଖିଲ ସଖୀ ? ବନ୍ଧୁ ମୋ କଥା ଶୁଣି କ'ଣ କହିଲେ ବୃନ୍ଦେ ! ବନ୍ଧୁଙ୍କ ଶ୍ରୀମୁଖ ଶୁଖି ନାହିଁ ତ ?

ବୃନ୍ଦା—କ'ଣ କହିବି ଧନୀ । ଯା'ଇ ନଥିଲେ ଭଲ ହୋଇଥା'ନ୍ତା । ମୁଖ ଶୁଖିବ କ'ଣ ? ଓଲଟି ସେ ମହାଖୁସି । ତାଙ୍କ କଥା, ତାଙ୍କ ସ୍ନେହ, ତାଙ୍କ ସୋହାଗରେ କି ବିଶ୍ୱାସ ? ମୁଁ ନ ବୁଝି ନଶୁଣି ତମକୁ ବୁଝାଉଥିଲି ସିନା । ଏବେ ବୁଝିଲି ଶ୍ୟାମ ମନ । ତମର ଅଭିମାନ ଉଚିତ ହୋଇଥିଲା ସତ । ପ୍ରତିଜ୍ଞା କର ସଖି, ଆଜିଠାରୁ ସେ ରୂପ, ସେ କପଟ ପ୍ରେମ ଭୁଲି ଯିବାକୁ, କଳା ରୂପ ନ ଚାହିଁବାକୁ ।

ଶ୍ରୀମତୀ—ଏ କ'ଣ କହୁଚ ବୃନ୍ଦେ ? ସେସବୁ କ'ଣ ସତ ? ସତେ କଅଣ ବନ୍ଧୁ ମୋତେ ଛାଡ଼ିଦେଲେ ପାଷାଣ ହୋଇଛନ୍ତି ? ହୋଇ ଥିବେ— ରାଧିକାର ଉପଯୁକ୍ତ ଶାସ୍ତି ହୋଇଛି । ନଜାଣି ନଶୁଣି ଅଭିମାନରେ ଫେରାଇ ଦେଇଛି—ମୁଖକୁ ମଧ ଚାହିଁ ନାହିଁ । ତାହିଁର ଉଚିତ ପ୍ରତିଫଳ ଫଳିଛି ସହି । ନ ହେଲା,—ନ ବୁଝନ୍ତୁ ନ ପଚାରନ୍ତୁ । କିନ୍ତୁ ମୁଁ କାହିଁର ଶ୍ୟାମ ସୋହାଗ ଭୁଲିବି ସହି ?

—ଗୀତ—

ଦୟା ନ କରନ୍ତୁ, ମୁଁ ଦାସୀ ସିନା ରେ ।୦।
ନିକଟରେ କି ଦୂରେ ନିତି ଶ୍ରୀମୁଖ ଥରେ
ଦେଖୁଥିବି ଏତିକି ମୋ କାମନା ରେ ।୧।
ଦୁଃଖ ଦେଇ ଶ୍ୟାମକୁ ରାଧା ସୁଖୀ ହେବାକୁ
ଲୁଚିବ କଲଙ୍କ କି ଏ ଅନ୍ୱେଷଣା ରେ ।୨।
ଯେ'ତାଙ୍କ ପରଶ୍ରୀସ୍ୱ ତା ନଙ୍କର କର
ଦାନ ନେବ ପଞ୍ଚଙ୍କେ ସୁମନ୍ଦନା ରେ ।୩।

ବୃନ୍ଦା —ଅପରାଧ କରନ୍ତୁ ସଖି । କ୍ଷମାକର ମୋତେ । ତମ ମନ, ତମ ପ୍ରାଣ, ତମର ଶ୍ୟାମ ପ୍ରତି ସ୍ନେହ ବୁଝିବାକୁ କହିଦେଲି ସିନା । ବାକି ସହି, ତମ ବିରହରେ ଶ୍ୟାମର ଦେହ ମନ ତାତି ଉଠୁଛି । ମୋତେ ଦେଖିଲା କ୍ଷଣି କୋଟିନିଧି ପାଇବା ପରି ହେଲେ । ଶ୍ୟାମର ସେ ଶିଖୀଚୂଳ ଶୋଭା, ସେ ଶ୍ରୀମୁଖ ଚନ୍ଦ୍ରମା ଝାଉଁଳି ପଡ଼ିଛି ରାଧେ ।

( ଗୀତ )

ସଙ୍ଗିନୀ ।

ତୋ ପ୍ରୀତି ଯେନି ମୋହନ
ନିରତେ ଝୁରୁଛି ରେ ।
ଗୋପୀ ରେ ତୋହର ଗୁଣଗତି ଗୁଣି
ନୟନୁ ଲୋତକ ଝରୁଛି ରେ ।୦।
ଫୁଲଶର ଅତନୁ ମାରିବାରୁ ସୂତନୁ
ତା'ତନୁ ଅଧୀରେ ଥରୁଛି ରେ,
ସୁନ୍ଦରର ହାର, ହୃଦ ତାହାର,
ଅହାର ହେଲଣି ଅରୁଚି ରେ ।୧।
କୁଞ୍ଜର ଗମନୀରେ କୁଞ୍ଜରେ ବସି ଧୀରେ—
ତୋ ନାମ ଗାନକରୁଛି ରେ,
ମନ୍ଦ ଗନ୍ଧ ଶୀତ ପବନ ବହୁ ମିତ
ମିତ ଦେହରୁ ଚେତନା ହରୁଛିରେ ।୨।

ଶ୍ରୀମତୀ—ବୃନ୍ଦେ । ଏତେ ଅନୁଗ୍ରହ ଛାର ଚରଣ ଦାସୀ ଠାରେ ତାଙ୍କର ? ଚାଲ ସଖୀ, ଦନବତି, ଜାତି କୁଳ, ମାନ, ମହତ, ସବୁଛାଡ଼ି ଦେଖିବ, ବୈକୁଣ୍ଠେ ସେ ଚନ୍ଦ୍ରଚନ୍ଦ୍ରିକା ପ୍ରୀତିକୋଳରେ ଅଭାଗିନୀ ରାଧିକାର ଅପେକ୍ଷା କରିବସିଛନ୍ତି ।

ବିଶାଖା—ଛି, ଛି, ଧନି । ଏ କ'ଣ କହୁଛ ? ଭୋଳରେ ସବୁ କଥା ପାଶୋରି ପକାଇଲ ? ଯମୁନାରୁ ପାଣି ନେଇ ନ ଗଲେ, ବ୍ରଜରେ ଦଶା କ'ଣ ହେବ ମନେ କରୁଛ ତ ? ଦିନ ବିତି ସଞ୍ଜ ହୋଇ ଆସୁଛି । ରାତି ତ ନୁହେଁ । ଅହୁରି ବିଳମ୍ବ ଅଛି । ଲଳିତା ଯାଇଁ ସଙ୍କେତ ବୁଝି ଆସିଥା'ନ୍ତୁ । ଚାଲ ସହି, ଯମୁନାକୁ ।

ଶ୍ରୀମତୀ—ଯମୁନାକୁ ?

ବିଶାଖା—ହଁ, ସଖୀ ।

ଲଳିତା—ଯିବାକୁ ମନା ନାହିଁ ଯେ, କିନ୍ତୁ ସଖୀ, ଶ୍ୟାମ ତ ଆଜି ଶ୍ରୀମତୀଙ୍କ ମନ ବୁଝିନାହାନ୍ତି । ରାଈ ଅଭିମାନିନୀ ଥିବା ମନେ କରି ଯେବେ ପଥରେ ଚରଣ-ଧରା ନୀତି ଆରମ୍ଭ କଲେ ? ତେତେବେଳେ···

ଶ୍ରୀମତୀ—ଛି, ଛି, ଏଡ଼େ ଅପଭ୍ରଂଶ କଥା ମୁହଁରେ ଆଣି ନାହିଁ ଲଳିତେ ।

ବୃନ୍ଦା—(ପଛରୁ କାନ ଟାଣି) ଏମିତି କାନ ଟାଣି ଧରିଲେ ?

ଶ୍ରୀମତୀ—ଯାଃ, ତମେମାନେ କଅଣ ଲାଜ ମହତ ସବୁ ଛାଡ଼ିଲ ନା—କଅଣ ?

ବୃନ୍ଦା—ଛାଡ଼ି ନାହୁଁ ଯେ, ଛାଡ଼ି ଛାଡ଼ି ଆସୁଛୁ ।

ଲଳିତା—(ଶ୍ରୀକୃଷ୍ଣଙ୍କୁ ରାଈଙ୍କ ଆଖି ମୁଦି ଦେବାକୁ ସଙ୍କେତ କରି) ଆଚ୍ଛା, ଯେବେ ତମକୁ ନିଛଟିଆ ପାଇ, ଏମିତି ଆଖି ମୁଦି ଦେବେ ?

ଶ୍ରୀମତୀ—(ଚମକି) କିଏ ? (ହାତ ଧରିଲେ)

ବୃନ୍ଦା—(ହାତ ଛଡ଼ାଇ ଦୁହିଁଙ୍କ ହାତ ମିଶାଇ ଧରି) କେଜାଣି କିଏ ?

(ଶ୍ରୀକୃଷ୍ଣଙ୍କ ଶାଢ଼ୀ ଫିଟାଇ ଦେବା)

ଗୀତ

ରାଧେ, ଏହି ପରା ବ୍ରଜରାଜ ନନ୍ଦନ ଗୋ,
ବିରହୀ ଗୋପୀକା ହୃଦ ଚନ୍ଦନ ଗୋ ।୦।
କୋଟି କାମ ଜିତ ତନୁ ପାଶୋର ନ'ଯାଏ ମନୁ
ରତି ଝୁରି ମରେ ସହି କଦନ ଗୋ ।୧।
ତ୍ରିଭଙ୍ଗ ବଙ୍କିମ ଠାଣି ନେଇ କଟାକ୍ଷ ଗୃହାଣୀ
ଏହି ପରା ଭୁବନର ବନ୍ଦନ ଗୋ ।୨।
ବିକଚ କଞ୍ଜର ଶୋଭା ଶ୍ରୀଅଙ୍ଗ କି ମନଲୋଭା
ଛାପିତ ବ୍ରଜନୟନ ଅଞ୍ଜନ ଗୋ ।୩।

ସମସ୍ତେ—"ରାଧେ ରାଧେ ଗୋବିନ୍ଦ ବୋଲ ଜୟ"

( ଯବନିକା ପତନ )

—ସମାପ୍ତ—

## —ପଦେ କଥା—

ବାଁଶରୀ-ବିଳାସ ନାଟକଟି ଆଗେ ମୁଁ ବାରିପଦାରେ ଥିବାବେଳେ ୧୯୨୨ ସାଲରେ ଲେଖିଥିଲି । ମୟୂରଭଞ୍ଜ ରାଜବାଟୀ ଠାରେ ଗୋଟିଏ ମଞ୍ଚ ବନାଇ ନାଟକଟି ବାରିପଦାର କେତେକ ବାଳକ ଛାତ୍ରଙ୍କୁ ଶିକ୍ଷାଦେଇ ନାଟକଟି ଅଭିନୀତ କରାଇଥିଲି । ପ୍ରଥମ ରାତ୍ର ଅଭିନୟପରେ ସ୍ୱର୍ଗୀୟ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଓ ତଦାନିନ୍ତନ ଜ୍ୟେଷ୍ଠରାଜ ଶ୍ରୀଯୁକ୍ତ ପ୍ରତାପଚନ୍ଦ୍ର ଭଞ୍ଜ ନାଟକଟିକୁ ବଡ଼ ପସନ୍ଦ କରି ଅଧିକ ଦୁଇରାତ୍ର ଅଭିନୀତ କରାଇ ଥିଲେ ।

ତହିଁପରେ କଟକରେ ମୋର ରାସଦଳଙ୍କ ଦ୍ୱାରା ବହୁରାତ୍ର ଏହି ନାଟକଟି ପ୍ରଶଂସାର ସହିତ ଅଭିନୀତ ହୋଇଅଛି । କୃତତ୍ୱର ସହିତ ଅଭିନୟ ପ୍ରଦର୍ଶନ କରିଥିଲେ କଲ୍ୟାଣୀୟ ଦୁର୍ଲ୍ଲଭ, ହରି, ଧ୍ୟାନଚନ୍ଦ୍ର (ଚୀମ) ଓ ଯମୁନା ପ୍ରଭୃତି ବାଳକ ଅଭିନେତାମାନେ । ମଞ୍ଚରେ ପ୍ରଥମେ ଓଡ଼ିଶୀ ନୃତ୍ୟର ପ୍ରବର୍ତ୍ତନା ଏହି ନାଟକରେ କରାଇଥିଲି ମୁଁ । ଗୋପୀନାଥ ଏବଂ ମାୟାଧର ଏହି ନୃତ୍ୟରେ ଦର୍ଶକଙ୍କ ଠାରୁ ବିଶେଷ ପ୍ରଶଂସା ଅର୍ଜନ କରିଥିଲେ । କଟକରେ ଏ ନାଟକଟି ମଞ୍ଚସ୍ଥ କରିବାବେଳେ ରୂପସଜ୍ଜା କରିଥିଲେ ସ୍ୱର୍ଗୀୟ ଶିଳ୍ପୀ ବଙ୍କିମ ଚନ୍ଦ୍ର ସରକାର । ବଙ୍କିମ ଅଜ ପରପାରରେ—**ଅକାଳ** ବିୟୋଗରେ ସେ ସ୍ମୃତି ବିଶେଷ ପାଲୁନାହିଁ ଏବେ ମଧ୍ୟ ।

**କାଳୀଚରଣ**

### ପାତ୍ର ପରିଚୟ :

ଶ୍ରୀକୃଷ୍ଣ, ମଧୁମଙ୍ଗଳ, ସୁବଳ ।

---

ଶ୍ରୀମତୀ, ଲଳିତା, ବିଶାଖା, ବୃନ୍ଦା, ପଦ୍ମା ଜଟିଳା, କୁଟିଳା ।

---

## ପ୍ରଥମ ଅଙ୍କ

ପ୍ରଥମ ଦୃଶ୍ୟ

ଦୃଶ୍ୟ ସଙ୍କେତ—ଯମୁନା ତଟ । ଗ୍ଲେଟ ପାହାଡ଼ ଗୁଳ ମଝିରେ ବସିଥିଲେ ଶ୍ରୀକୃଷ୍ଣ । ସୂର୍ଯ୍ୟାସ୍ତର ପ୍ରାକ୍‌କାଳ । ସେ ଗୁନ୍ଥୁଥିଲେ ମଲ୍ଲିମାଳ ଶ୍ରୀମତୀଙ୍କ ଉଦ୍ଦେଶ୍ୟରେ । ଏକ କୋଣରୁ ଲକ୍ଷ୍ୟ କରୁଥିଲେ ଏସବୁ ମଧୁମଙ୍ଗଳ । ଫୁଲ ଗୁନ୍ଥୁ ଗୁନ୍ଥୁ ଗାଇଲେ :—

ଶ୍ରୀକୃଷ୍ଣ— —ଗୀତ—

ମନ ମଞ୍ଜୁଳ-ବଞ୍ଜୁଳ କୁଞ୍ଜେ,
ଆଜ ବକୁର ମଞ୍ଜିର ଗୁଞ୍ଜେ ॥୦॥

ବନର କୁସୁମ ବାସେ, ଶୁଭ ମଧୁ ମଧୁ ମାସେ
ଶଶୀକର ଦରହାସେ, ମଧୁକର ଗୁଣୁ ଭାଷେ
ସପନ କହେ ମୋ କାନେ, ମରମ—ଭରମି ଗାନେ
ସେ ମୋର ଆସିବ ଆଜ ଫୁଲ ବଧୂ ସାଜେ ।୧।

ମନେହୁଏ ମୋର, ଜଗତର ସବୁଜ-ସର୍ବାଙ୍ଗ ଏଇ ଫୁଲଟି ସଙ୍ଗେ ପ୍ରାଣ ଢାଳଦେବାକୁ । ଫୁଲ, ନ'ଥାନ୍ତା କି ତୋ'ର ଜନ୍ମ, ମରଣ; ନ'ଥାନ୍ତା କି ତୋ'ର ଜାତ ଫୁଟି ପୁଣି ଝରିଯିବା ସ୍ୱଭ—ସଞ୍ଜ ନାହିଁ, ସକାଳ ନାହିଁ, ଗ୍ରୀଷ୍ମ ନାହିଁ—ଶ୍ରାବଣର ବାରିଧାର ଅବା ବସନ୍ତର କୁହୁକୁ ଅପେକ୍ଷା ନଥାନ୍ତା କି ତୋ'ର—ଚିରଦିନ ତୁ ଥାଆନ୍ତୁ ସୁକୁମାରୀ ଫୁଲଟି;—ଚିର ମଧୁର, ଚିର ସୁନ୍ଦର । ପ୍ରିୟାର ବଧୁଲି ଅଧରରୁ ମଧୁ ଚୁମ୍ବନ ପାଇ, ପ୍ରିୟାର କଣ୍ଠରେ ଲଣ୍ଠିତ ଆଶାସ୍ଫୀତ ବକ୍ଷର ପ୍ରିୟ ମିଳନ ଲଭି—(ମାଳାକୁ ଆଲିଙ୍ଗନ) ତୁ ଥାଆନ୍ତୁ, ଚିର ଜୀବନ୍ତ, ଚିର ମଧୁର !

ମଧୁ—(ଏକ ଦିଗରୁ) ହଁ, ହଁ, ହଁ—ସେ ନୁହେଁ—ସେ ନୁହେଁ ସଖା । ଭୁଲ, ଭୁଲ୍ କରୁଛ ତୁମେ ।

ଶ୍ରୀକୃଷ୍ଣ—(ଚମକି) ଏଁ, ଭୁଲ୍ ?

ମଧୁ—ନୁହେଁ ?

(ଅନ୍ୟ ଦିଗରୁ ଲଳିତାର ଗାଇ ଗାଇ ପ୍ରବେଶ)
(ମଧୁମଙ୍ଗଳ ଟିକିଏ ଅନ୍ତରାଳକୁ ଘୁଞ୍ଚିଗଲେ)

ଲଳିତା— —ଗୀତ—

ଫୁଲେ ଫୁଲେ ଜାତ ଭୁଲେ ପୂରେ କି ଗୋ ମନ ଆଶା
ସପନେ, ସପନ ଦେଖା, ଚେତନେ ସପନ-ଭାଷା ।୦।

ଯେ କଥାଟି ଉଠେ ମନେ
ସେ କି ଗୋ ଫୁଟେ ଲପନେ ?

ଆଖି ଆଖି ହରେ ସିନା ମନର ଚିର ପିପାସା ।୧।

(ଲଳିତା କାହାକୁ ଲକ୍ଷ୍ୟ ନକରି ଶ୍ରୀକୃଷ୍ଣଙ୍କ ଆଗରେ ଗାଇ ଗାଇ ଗୁଲିଗଲେ । )

ମଧୁ—(ବାହାରକୁ ଆସି) ଔଷଧଟା କେମିତ ଲାଗିଲା ସଖା ? ସ୍ୱାଦୁଇ କହନ୍ତୁ ଦାଇବା ମାଡ଼ । ଭୁଲ୍‌ଟା କାହାର ଏବେ ? ତମର ନାଁ ମୋର ?

ଶ୍ରୀକୃଷ୍ଣ—ପାଖକୁ ଟିକିଏ ଆସିଲେ କହନ୍ତ ସିନା ? ତୁମେ ଯେ କୋଣ ଭୂଅଷ୍ଟ୍ରୀ ହେଲ । ଏଣେ ଆସ ।

ମଧୁ—(ଦୀର୍ଘ ନିଃଶ୍ୱାସ ମାରି) ହଁ, ଆସିବି ସତ । ବାକି ତୁମେ ପୁଣି ଯଦ ଭୁଲ୍ କର । ମୋତେ ଯଦ ସେଇ ବରଜର କୋଣ ଭୂଅଷ୍ଟ୍ରୀ ମନେ କରି ଆଲିଙ୍ଗନ କରିବାକୁ ଉଠିଆସ ? କିନ୍ତୁ ମୁଁ, ସେ ନୁହେଁ ସଖା । (ନିଜକୁ ଦେଖାଇ)

ଶ୍ରୀକୃଷ୍ଣ—ମୁଁ ଜାଣେ । (ଗୁହଁ ହସିଲେ)

ମଧୁ—ଜାଣ ବୋଲି ତ, ଏନଟାରେ ଆଖି ଥାଉଁ ଥାଉଁ ଫୁଲଟାକୁ···ଏତେ ଭୁଲ୍ ?

କୃଷ୍ଣ—ନାହିଁ ସଖା, ଭୁଲନୁହେ ବୋଲି କହିଲି ପରା ?

ମଧୁ—ଜାଣେ ପରା । ଦୋଷଟି ମାନିବା ତମ ଜାତକରେ ବିଧାତା ଲେଖିନାହିଁ । ସେଇଥିକି ତ ମୁଁ ଯାଉନାହିଁ । ଡର ମରୁଛି । ଫୁଲର ଅବସ୍ଥାପରି ମୋତେ ଯଦ ସେଇଆ କରି ପଛରେ ପୁଣି ତୁମେ କହିବ—ଏଇଟା ମୋର ଭୁଲ୍ ନୁହେଁ, ଠିକ୍ । ସେତେବେଳେ ?

ଶ୍ରୀକୃଷ୍ଣ—ଅଚ୍ଛା, ମାନୁଛି, ମୋର ସେଇଟା ଭୁଲ୍ । ହେଲା ତ ?

ମଧୁ—ଖାଲି ଏମିତ ମାନିଲେ କଅଣ ହେବ ସଖା ? ତୁମେ ଏଥର ସଯତ୍ତ ହୁଅ ।

ଶ୍ରୀକୃଷ୍ଣ—ହଉ, ହେଲା ।

ମଧୁ—ହାଁ, ତେବେ ଚାଲ—(ନିକଟକୁ ଯାଇ କୃଷ୍ଣଙ୍କ ଗଳା ଧରି) ସଖା, ବାଃ, ଭାରି ସୁନ୍ଦର ହାର ତ ଗୁନ୍ଥିଛ ଆଜି ? ବଡ଼ ମନ ଲାଗିଯାଉଛି ହାର ଗୁନ୍ଥାରେ ?

(ଶ୍ରୀକୃଷ୍ଣ ଲଜ୍ଜାଭାବ)

ଶ୍ରୀକୃଷ୍ଣ—ବାଟରେ ଆସୁ ଆସୁ ଗୁଡ଼ାଏ ଫୁଟିଲା ଫୁଲ ଦେଖି ତୋଳି ଆଣିଲି । ତୁମେମାନେ ତ କେହି ନଥିଲ—ଅନେକ ଡାକିଲି । ସେଇଠୁ ବସି ବସି ଗୁନ୍ଥୁଥିଲି ।

ମଧୁ—ଗୁନ୍ଥୁଛ ତ ସତ । ବାକି କାହାଲାଗି ? ଚନ୍ଦ୍ରାବଳୀଙ୍କ ଲାଗି ନା ?

ଶ୍ରୀକୃଷ୍ଣ—ହେଃ, ଏଇମିତି ବସି ବସି ଗୋଟାଏ ଗୁନ୍ଥୁଥିଲି ମ ।

ମଧୁ—ବୋଧହୁଏ ଶ୍ରୀମତୀଙ୍କ···

ଶ୍ରୀକୃଷ୍ଣ—ଉଁ ?

ମଧୁ—ହୁଁ । ସତଟି ନ କହିଲେ ଆମେ ନ ବସୁଁ ।

ଶ୍ରୀକୃଷ୍ଣ—କହୁଚି, କହୁଚି, ବସ !

ମଧୁ—କହ, ଆଗେ କହ ।

ଶ୍ରୀକୃଷ୍ଣ—ହୁଁ ।

ମଧୁ—ଫେର୍ ତ ସେଇ—ଉଁ···ହୁଁ । ତୁମର ସେ ତିନିଭଙ୍ଗି ଢଙ୍ଗ ଛାଡ଼ି ସିଧା ସଳଖ କଥାଟି କହ । ନହେଲେ ମଧୁ ପ୍ରସ୍ଥାନ···

ଶ୍ରୀକୃଷ୍ଣ—(ଧରିଆଣି) ଆଚ୍ଛା, କହିଲେ ତୁମେ ଗୋଟିଏ କାମ କରିବ ?

ମଧୁ—ଓଃ, ସେ କଥା ତ ଅଛି—କହୁନା ଆଗ ।

ଶ୍ରୀକୃଷ୍ଣ—ହଁ, ତାଙ୍କରି । ତୁମେ ଯାଇ ଏ ମାଳାଟି ଦେଇ ଆସି ପାରିବ ତାଙ୍କୁ ?

ମଧୁ—ଏଁ, ତାଙ୍କୁ ବୋଇଲେ ?

ଶ୍ରୀକୃଷ୍ଣ—ତାଙ୍କୁ ମ—

ମଧୁ—ଓ, (ଆଖିଠାରି) ତାଙ୍କୁ ? ଯା ବୋଲ ।

ଶ୍ରୀକୃଷ୍ଣ—ଏଥର ବୁଝିଲ ତ ?

ମଧୁ—ବେଶ୍ ବୁଝିଲି—ହାରଟି ନେଇ ଚନ୍ଦ୍ରାବଳୀଙ୍କି ଭେଟି ଦେଇ ଆସିବ ।

ଶ୍ରୀକୃଷ୍ଣ—ସଖା । (ଚେଇରହି ଚାହିଁଲେ)

ମଧୁ—(ଛଳରେ ଡ଼ରିଯିବାପରି) ତମର ସଖା ବୋଲି···

ଶ୍ରୀକୃଷ୍ଣ—ଧେତ୍, ମୁଁ କଅଣ କହୁଚି—ତୁମେ କଅଣ ବୁଝିଲ ?

ମଧୁ—ଯାହା ବୁଝିଲି ସଫାସଫା ତ କହିଦେଲି । ଆମର ତ ଛନ୍ଦ ଦାଉଡ଼ରେ କାରବାର ନାହିଁ ।

ଶ୍ରୀକୃଷ୍ଣ—ନାଁ, ତମର ଖାଲି ଚକଟା ଚକଟିରେ ।

ମଧୁ—ହଁ ସେଇ ଚକଟା ଚକଟି ଦଳାଦଳିରେ ରସ ବାହାରେ । ଏବେ ସେଇତକ ଶ୍ରୀମୁଖରୁ ବାହାରୁ ।

ଶ୍ରୀକୃଷ୍ଣ—ଏ ମାଳାଟି ନେଇ—ତୁମେ···

ମଧୁ—ହଁ, ତୁମେ ବୋଲନ୍ତେ—ଆମେ—କଅଣ ସ୍ୱୟଂ ପିନ୍ଧିବୁ ? ଦିଅଯାଉ (ହାତ ବଢ଼ାଇଲେ)

ଶ୍ରୀକୃଷ୍ଣ—ଓଃ, ଭାରି ରସିକ ? ଶୁଣ । ତୁମେ ମାଳାଟି ନେଇ···

ମଧୁ—ନେଇ ?

ଶ୍ରୀକୃଷ୍ଣ—ଶ୍ରୀମତୀଙ୍କୁ ଦେଇ—

ମଧୁ—ହାଁ, ଦେଖିଲ ? ରସ ଏତେବେଳେ ବାହାରିଲା ।

ମଧୁ—ଏ ବରାଦଟା ପଡ଼ିବ ବୋଲି ଆମକୁ ଆଗରୁ ଜଣା । ବାକି ତା'ଛଡ଼ା ଆଉ ଯାହା କୁହ ମୁଁ କରିବାକୁ ରାଜି ଅଛି ; ଏ ମାଇପି ଲୋକଙ୍କ ଗୋଡ଼ହାତ ଧରିବାଟା ମୋ ଦେହ—(ଅଙ୍ଗୁଠି ହଲାଇ ଅସମ୍ମତି ଜଣାଇଲେ)

ଶ୍ରୀକୃଷ୍ଣ—(କୁଣ୍ଢାଇ ପକାଇ) ସଖା ! ତମ ଛଡ଼ା ଆଉ କେହି ପାରିବେ ନାହିଁ । ମୁଁ ବଡ଼ ଶରଧାରେ ଗୁନ୍ଥିଛି ।

ମଧୁ—ତା' ବୋଲି କଅଣ ମୁଁ ଯିବ ପାଦ ମଞ୍ଜାଳିବାକୁ ? କ୍ଷମାକର ସଖା ! ଏ ଗରିବ ବ୍ରାହ୍ମଣ ବଟୁର ସେଥିକି ନାଗୁର । (ନେପଥ୍ୟକୁ ଠାରି) ଏଇ, ଯାହାଙ୍କ ହାତର କାମ ସେ ସ୍ୱୟଂ ଆସି ପହଞ୍ଚିଗଲେଣି । ଆସ, ଆସ, ସୁବଳ ! ତମକୁ ଡାକି ଯାଉଥିଲି ତ ।

ସୁବଳ—(ପ୍ରବେଶ) କହ୍ନାଇଁ, ଦେଖେ ଗୋଠର ଗାଈଗୋରୁ ଏଣେତେଣେ ବୁଲୁଛନ୍ତି । ସଞ୍ଜ ହେଲାଣି । ସବୁ ଲହୁଣୀ ବଶା ହୋଇ ବାସ ହେଉଛୁ । ତୁମେ ଏଠି ବସି ମଣ୍ଡୀହାର ଗୁନ୍ଥୁଥାଅ, ଅଉ ମଧୁମଙ୍ଗଳ ସାଙ୍ଗେ ବସି ଏଣୁତେଣୁ ଖୁସି ଗପ କରୁଥାଅ । ତମର କଅଣ ଅଛି ? ବଇଁଶୀ ଖଣ୍ଡିକ ତ ବେଜସା ।

ମଧୁ—ଭଲ ନାଇଁ ମନ୍ଦ ନାଇଁ, ସଖାଙ୍କ ମନର ଅବସ୍ଥା ବୁଝିବାକୁନାଇଁ—ଅଇଲେ ବୁଅଡୁ ବଣ ବୁଲିବୁଲି —କଥା ଗୁଡ଼ାକ ଯେମିତି ଫୁଟୁଥିଲା—ଗାଳ ପକେଇ ଦେଇଗଲେ । ଗୋରୁ ଗାଈ ପଳାଉଛନ୍ତି ? —ଅଉ ତୁମେ କ'ଣ ଥିଲ ପଙ୍ଗୁ ? ଅଗେ ଅସ, ସଖାଙ୍କ ବେଦନା ଅରୋଗ୍ୟ କର । ତା'ପଛେ ଗୋରୁ, ଗାଈ, ଖିଅପିଅ—ସବୁ ହବ । ଅସ, ବସ ।

ସୁବଳ— ତୁମେ ଅଉ କଅଣ କହନ୍ତ କି ? ମାହାଳିଅ ଭୋଜନ ଟା ଟାଣ ପଡ଼ିଲେ ତମର କାମ ଶେଷ ।

ମଧୁ—ଅରେ ବାବୁ, ପଛେ ରାଗିବ । ଏଇନେ ଅଗ କାମଟି କରିସାର । ଏ ହାରଟିକୁ ଶ୍ରୀମତୀଙ୍କ ଶ୍ରୀ ଶ୍ରୀ ଶ୍ରୀ ଚରଣକମଳେଷୁ । ସାଷ୍ଟାଙ୍ଗ ପ୍ରଣତି ପୂର୍ବକ ଅମ ସଖାଙ୍କ ନିବେଦନମିଦଂ । ଯା, ଝଟ୍ ଉଠ, ଅଉ ନକର ମଠ ।

ସୁବଳ—ହଉ, ସେ କଥା ତ ହବ । ଅଗେ ଗୁଳିବ ଟି ।

ଶ୍ରୀକୃଷ୍ଣ—ସଖା । ମଧୁ ସତକଥା କହୁଛନ୍ତି । ଏ ହାରଟି ଶ୍ରୀମତୀଙ୍କ ହାତକୁ ନ ଯିବାଯାଏଁ, ମନ ମୋର ଶାନ୍ତ ନୁହେଁ । ବୁଝିଲ ? ସୁବଳ, ତୁମେ ଟିକିଏ ଅନୁଗ୍ରହ ନ କଲେ··· (ହାତ ଧରିଲେ)

ମଧୁ—(କୃଷ୍ଣଙ୍କ ପାଟି ମୁଦ ଧରି) ଚୁନ ହୁଅ, ଚୁନ ହୁଅ । ମତେ ଲାଗୁଛି ଏବେ ହାତ ଓଠ ଧରିଛ ଦାଇବ ତମକୁ ପା'ର କଲାଣି, କିଏ ଜଣେ ଖେଳେ ଚଲେଣି । ଚୁନ ହୋଇ ପଳାଇ ଅସିବ ଟି ।

(ସକଳ ପ୍ରସ୍ଥାନ)

( ବୃନ୍ଦା ଗାଇ ଗାଇ ପ୍ରବେଶ )

—ଗୀତ—

ଭୋଳିଲୀ ରେ, ଅଜ ମନମ ଦହନା ତୁ । ୦ ।
ମାଧବୀ ନିକୁଞ୍ଜେ    ମଧୁକର ଗୁଞ୍ଜେ
ଏଇ ଭବ ସଙ୍କଟେ    ଶଶୀକର ରଞ୍ଜେ
କୁହୁ କୁହୁକୁ କହନା ତୁ ।୧।

(ଲୁଚି ଲୁଚି ଶ୍ରୀକୃଷ୍ଣ ଅସି ପଛରୁ ବଂଶୀ ଧ୍ୱନି କଲେ)

ବୃନ୍ଦା—(ଚମକିଉଠି ) ଅରେ ।

ମଧୁ—(ଗୁଡରେ ଗୁପ ପକାଇ) ଓଃ, କେଡ଼େ ଘାଁ ଚମକି ପଡ଼ିଲି ସଖୀ । ଛି, ତମର ଇଏ ବଡ଼ ଖରାପ କାମ । ଅଗରୁ ହେଲେ କହି ପୋଛୁକର ଫୁଙ୍କିଲ ନାହିଁ ? ଥିବ, ଥିବ, ଲୁଚି ଲୁଚି, ଗଞ୍ଜରେ ଗଞ୍ଜରେ ପଛ'ରୁ ଚୋରୁଟୁ ଅସି ଗଲା-ମାରି ନେବ, ଅରେ ବାଃରେ ଖିଅଣିଅଁ, ସଖୀ ।

ବୃନ୍ଦା—ଛଣା, ବଣ, କିଛି ଜାଣେ ନାଇଁ ଏଇଟି ।

ମଧୁ—ସହଚରୀ ଗୋ । ମୁଁ ପରି କଷି ପିଲଟି ।

ବୃନ୍ଦା—ଚୁନହୁଅ । ସବୁବେଳେ ଗୋଟେ ନାଟ ଲଗିଛି ? ଉଠଉଠ, ମୁଁ ଯାଏଁ । କେତେ କାମ ଅଛି ମୋ'ର ।

ମଧୁ—ହଉ ଯିବ ତ, ଟିକିଏ ବଇଁଶି ଶୁଣିଥାଅ । ଗୋଟେ ନୂଅ ରାଗ ଶିଖିଛନ୍ତି ସଖା ।

ବୃନ୍ଦା—ସେ ରାଗକୁ ମୋର ଅନୁରାଗ ନାହିଁ ।

ମଧୁ—ମୁହଁରେ ନଥିଲେ ମନରେ ତ ଅଛି । କଣ୍ଠରେ ଅଛି—ଗୀତରେ ଅଛି—ଅଖିରେ ଅଛି । ଖାଲି ଯାହା ଲୁଚିଥାଇ ନା-ଚୋଡ଼ ଢ'ଟା ଦଣୁଥାଇ—

ବୃନ୍ଦା—ଯା, ଯା, କ'ଣ ଫେର୍ କହୁଛଟି ।

ମଧୁ—ମଲ ଯାହା ସେ କହୁଥିବେ—ସେଇଅ ତ କହିବ, ହଉ କହୁନ ? ସଖୀ । ଶୁଣ ।

ବୃନ୍ଦା—କଅଣ ଶୁଣିବେ ସେ ?

ମଧୁ—ଯାହା ଭାବୁଥିଲ—ଭାବ ।

ବୃନ୍ଦା—ଡରନାହିଁ ମୋର । ଯା—(ଗୁଲିଯାଉଥିଲେ)

ମଧୁ— ସଖୀ । ସଖୀ । ଖସିଗଲେ, ଖସିଗଲେ । ଧର ଧର ।

ଶ୍ରୀକୃଷ୍ଣ—(ବୃନ୍ଦାଙ୍କ ହାତ ଧରି)

—ଗୀତ—

ମୁଁ ପିନା ସରଣୀ ତୁହି ସଖି,
ବନ୍ଧୁ ଲାଗି ଥିଲି, ଚକୋର ସର ।
ଅକାଶ ଶଶୀରେ, ଅଶ କରି କରି
ଅନ୍ତରେ ସଜନୀ ଦିବା ନିଶି ଝୁରି ।୦।
ତୋ ବିନା ଗତି ନବୀନା ତ ନାହିଁ
ନ ବିନାଶ ଅଶ ହେମଗୋରୀ ରେ,
ନୀଳ କୁନ୍ତଳା—ତନୁ ଶୀତଳା
ମିଳାଅ କୁଞ୍ଜେ ନବ କିଶୋରୀ ।୧।

ସୁବଳ—ବୃନ୍ଦେ ! ଲୁଚି ପଳେଇବାକୁ ବସିଥିଲ ଯେ ? ଚନ୍ଦ୍ର କିରଣକୁ ମେଘ ଢାଙ୍କି ମନେକଲେ କି ସେ ଲୁଚିବ ?

ମଧୁ—କିଓ, ତମକୁ ତ ଖୋଜା ପଡ଼ିଥିଲା, ଅଜ ଅଡ଼ଅଡ଼ ହୋଇ ଚାଲିଯାଉଥିଲ ? କାହାକୁ ? ମତେ ? ଏଇଟା କଅଣ ଦହି ବିକା ନା ଦୁଧ ବିକା ବୁଦ୍ଧି ?

ବୃନ୍ଦା—ଏଇଟାକୁ କିଏ ପଚାରୁଛି ?

ଶ୍ରୀକୃଷ୍ଣ—ନାଁ ସଖି, ମଧୁମଙ୍ଗଳ ସତ କହୁଛନ୍ତି । ଖୋଜୁଥିଲି ଏକା । ଦୟାକରି ଏ ହାରଟି ନେଇ ତୁମ ସଖୀଙ୍କୁ ଭେଟି, କେଶର କୁଞ୍ଜର ସଙ୍କେତ ଦେବ । ନିଅ, ଦୟାକରି । ମୁଁ ଅନାଇଁ ବସିଛି ।

ମଧୁ—ଏଥର ଯା, ଖୋରାକ ତ ଯୁଟିଗଲା, ଯା ।

ବୃନ୍ଦା—କହ୍ନାଇଁ, ଏଡ଼େ ବଡ଼ କାମର ମୂଲ କିଏ ଦେବ ?

ମଧୁ—ମୁଁ, ମୁଁ । ଅଗେ କାମଟି ସାର । ମୂଲଟା ତା ପଛେ କି ? ସଖା, ମୋତେ କୁହ, ଅଗରୁ ମୂଲ ଦେଇଥାଏଁ ।

ଶ୍ରୀକୃଷ୍ଣ—(ହସି) କୃଷ୍ଣ ତ ତୁମର ବୃନ୍ଦେ । ଅଉ କି ମୂଲ ଚାହୁଁଛ ?

ମଧୁ—ହଁ ହଁ, ଗୋଡ଼ତଳେ ପଡ଼ଯା—ପାକଳେଇକରି କାମଟା ହାସଲ କରିନେବାକୁ—ଦେଖିଲ ପରା, ଖଣ୍ଡେ ବାହାଦୂର ଅମ ସଖା । (ଛଳରେ) ଶୁଣିଲ ତ ବୃନ୍ଦେ । କୃଷ୍ଣ ତ ଗୋଟିକିଯାକ ତୁମର । ଅଉ ବାକି କଅଣ ଅଛି ?

ସୁବଳ—ଯାଃ, ବଡ଼ ବୁଝା ତୁମେ । ବନ୍ଦକର ମୁହଁ । ଚାଲ ସଖା ! ମୁଁ ଏଇଟାକୁ ନେଇ ଯାଉଛି, ଉଚିତ୍ ଦଣ୍ଡ ଦେବି ।

ବୃନ୍ଦା—ମୁହଁ ବଢ଼ି ଯାଉଚି, ନା ?

ମଧୁ—(ବଂଶୀ କୃଷ୍ଣଙ୍କ ହାତରୁ ଛଡ଼ାଇ, ମୁହଁକୁ ମାପି) ଉହୁଁ, ଯେତିକି ଥିଲା ସେତିକି ତ । (କହୁ କହୁ ସୁବଳ ସହିତ ପ୍ରସ୍ଥାନ)

ଶ୍ରୀକୃଷ୍ଣ—(ବୃନ୍ଦା ହସ୍ତରେ ମାଳା ଦେଇଦେଇ) ବୃନ୍ଦେ ! ବନ୍ଧୁଙ୍କୁ ମୋର ହୃଦୟର ପ୍ରେମ ନିବେଦନ କରି ମାଳାଟି ନିଜେ ପିନ୍ଧାଇ ଦେବ, ଅଉ ସଙ୍କେତ କହିବ ।

ବୃନ୍ଦା—କାହ୍ନୁ, ଏତେ କଥାକୁ ମୁଁ ପାରିବି ନାହିଁ । ନିଜେ ଯାଉ ନା ? (ମାଳା ଫେରି ଦେବାକୁ ଉଦ୍ୟତ)

ଶ୍ରୀକୃଷ୍ଣ—(ଗୀତ)

କରୁଣାମୟୀ ଅଟେ ପ୍ରାଣସଜନୀ
ନୁହ ବିମୁଖ ହେନ ମୋର ଦୟିନୀ ।୦।
ତୋ ବିନା ଜଗତରେ
ନାହିଁ ନାହିଁ ଗତିରେ
ଧରୁଛି କର ନୁହଁ ଅଭିମାନିନୀ ।

---

## ଦ୍ୱିତୀୟ ଦୃଶ୍ୟ

ବନପଥ ।

(ଲଳିତା ଗାଇ ଗାଇ ପ୍ରବେଶ)

ଗୀତ

ଯେ ସୁରେ ବାଜେ ବେଣୁ କୁଞ୍ଜବନେ ସଞ୍ଜରେ
ସେ ସୁରେ ନାଚେ ତେଜ ଅନ୍ତରେ, ଅନ୍ତରେ
ଅନ୍ତରେ ।୦।
ଯେ ଯହିଁ ଶ୍ଳିଷ୍ଟ ତରୁ ପଲ୍ଲବଲେ ମଞ୍ଜରୀ,
ଯେ ଯହିଁ ସୁପ୍ତ ଅଳି ଉଲ୍ଲସିଲେ ଗୁଞ୍ଜରୀ ।
ନିଶିଥେ ଅଖି ଢାଳି ହେବେ ଶୃନ୍ଦ ସ୍ୱପନେ
ଟାଣେ କେ ପାଦ କୁଞ୍ଜେ
କି ମୋହନ ମନ୍ତ୍ରରେ, ମନ୍ତ୍ରରେ—ମନ୍ତ୍ରରେ ।୧।

---

( ପଛପଟୁ ମଧୁ ଅସିଲେ )

ମଧୁ—(ହସି ହସି) ବାଃ, ବାଃ, ବାଃ ।

ଲଳିତା—(ଲଜରେ ଅଧୋମୁଖୀ) ଇଶ୍ ।

ମଧୁ—ଲଜେଇ ଗଲ୍ କି ଲଳିତେ ?

ଲଳିତା—ଯାଃ, ବଡ଼ ଦୁଷ୍ଟ ତୁମେ ।

ମଧୁ—କାହିଁକି ? ସୁନ୍ଦର ପଦାର୍ଥର ଉପଭୋଗ କଲ୍, ଏଇଟା ହେଲା ମୋର ଦୁଷ୍ଟାମି ? ତେବେ ତ ସଂସାରରେ ସମସ୍ତେ ଦୋଷୀ । ଫୁଲ ଫୁଟେ-ଭ୍ରମର ପାଇଁ । ଶ୍ରୀମତୀଙ୍କ ମହାଭାବ-ରସରାଜ କାହ୍ନୁ ପାଇଁ, ଅଉ ତମମାନଙ୍କର ବହୁତ ଅନୁଗ୍ରହ, ବରୁଚ ମଧୁଆ ବ୍ରାହ୍ମଣର ପେଟପାଇଁ । ଏଥିରେ ଦୋଷୀ ହେଲି ମୁଁ ? ବାଃ, ବ୍ରଜର ଗୋପୀକା ମାନଙ୍କ ଗୁହାମଣ୍ଡାକୁ ବାହାହୁରୀ ନଦେଇ ତ ଗତ ନାହିଁ । ହଉ, ହଉ । ଏ ଗୀତଟି ମଧୁର ଗଳାରେ କିଏ ଗାଉଥିଲ କି ?

ଲଳିତା—ମୁଁ ଜାଣିନାହିଁ, ଯାଃ । ତୁମେ ଗଲ, ମୁଁ ଫୁଲ ତୋଳେଁ ।

ମଧୁ—ମ, ମୁଁ କଅଣ ତମ ହାତକୁ ବାନ୍ଧି ରଖିଛୁ ? କି ଫୁଲ ହେ ? କଅଣ ହେବ ? ଦେଖି ତ ନଥିଲି, ଭାବସୁଅରେ ଏକାବେଳେ ପହଁରୁଥିଲ । ମଲ୍ଲିଫୁଲ ତୋଳିବ ? ମାଳ ଗୁନ୍ଥିବ ?

ଲଳିତା—ହଁ, କାହିଁକି ? ତମର କାହିଁକି ଏତେ ପଚରା ପଡ଼ୁଛି ଯେ ?

ମଧୁ—ମୋର ? କାହିଁକି କି ? ଅଜା ଏତେବେ କି ଯୋଗରେ ବାଟଟା ପାହୁଛୁ, ମୁଁ ଖାଲି ଗୃହଅଡ଼େ ମଲ୍ଲିମାଳ ସ୍ୱପ୍ନ ଦେଖୁଛୁ । (ଆଖିମୁଦ) ରହ, ତମକୁ କହୁଛୁ । ଏଇ ଶୁଣ—ତୁମେ ଏ ମାଳ ଯାହା ପାଇଁ ଗୁନ୍ଥିବ ବୋଲି ବସିଛ, ତା ଗଳାରେ ଯୁଆଁ ଅତୁଳ ସୁନ୍ଦର ହାର ଝୁଲୁଛୁ । ଦେଖିବ ଯା । ସତ କି ମିଛ ।

ଲଳିତା—ଓଃ । ସତଅ ଋଷିଙ୍କ ଧରମ ପୁଅ ଏ । ଛୁ, ବସେଇ ଉଠେଇ ଦବନାହିଁ ତମେ । ମୁଁ ଯାଏଁ ଜେଣେ—(ବେଗେ ଗୁଲଗଲେ)

ମଧୁ—(ପଛେ ପଛେ ଯାଇ) ସବୁ, ସବୁ, ସାଙ୍ଗରେ ନେଇଥା' ବ୍ରାହ୍ମଣ ଜଣେ ।

( ଗାଇବାପରି ସ୍ୱରରେ )

ମୁଁ ଧନସତ ଅନୁସର, ମୋ କରମ ଚନ୍ଦ୍ର ଏହୁପରି ।୦।

(ଗାଇ ଗାଇ ପ୍ରସ୍ଥାନ)

ଶ୍ରୀକୃଷ୍ଣ—(ପ୍ରବେଶ ହେଲେ ଖୋଜିବା ପରି) ବେଳ ତ ଅସି ନାହାନ୍ତି । ବୃନ୍ଦା କଅଣ ସମ୍ବାଦ ଦେଇ ନାହାନ୍ତି ? କେଜାଣି କଣ୍ଟିଲା କୁଟିଲା ଥିବେ । ନୋହିଲେ ଏତେ ବିଳମ୍ବ କାହିଁକି ? ତାହାର ତ ଦେଖାନାହିଁ । ଆକାଶରେ କ୍ଷୀଣଚନ୍ଦ୍ର ଫୁଟିଲେଣି । କୁଞ୍ଜ କୋଣରେ କୁସୁମ ଦରହସି ଗୃହଁ, ବାସି ଉଠିଲେଣି । ତେବେ ଏ ଗନ୍ଧରେ, ଏ ଫୁଲରେ ସେ ମାଧୁରୀ ନାହିଁ କାହିଁକି ?

ଗୀତ

ସେ ଭ୍ରମରୀ ନାହିଁ କୁଞ୍ଜେ ଯା ଲଗି ଫୁଲ ବାସି,<br>
ନାହିଁ ସଙ୍ଗେ ତା'ର ହାସ ଯା'ଲଗି ଜାଗେ ଶଶୀ ।୦।<br>
ସେ ନାହିଁ ଅସେ ତ ପାଶେ, ଯା ଲଗି ରେ ପିଅସୀ,<br>
ତା'ର ଲଗି ଚନ୍ଦ୍ର ତାରା ସାଗରେ ପରବାସୀ ।୧।<br>
ଆଖି ତାରା ନୀର ଭରା, ସ୍ଥିତ ସାରା ଉଦାସୀ,<br>
ଏ ସାଗରେ ଝଡ଼ ଝଞ୍ଜା ଲହରୀ ଯାଏ ଭାସି<br>
ଏ ଜୀବନେ ତା'ର ଆଶା—ଆଶାରେ ଯାଏ ମିଶି,<br>
ଅସେ ମେଘ, ଯାଏ ମେଘ ତା'ପଥ ଗୃହେଁ ବସି ।୨।

( ପଛରୁ ପଦ୍ମା ଧୀରେ ଧୀରେ ଅସି କାନ ଟାଣି ଧରିଲେ ।)

ଶ୍ରୀକୃଷ୍ଣ—(ଚମକି) କିଏ ?

ପଦ୍ମା—ଡରନାହିଁ ବ୍ରଜରାଜ । ମୁଁ ପଦ୍ମା ।

ଶ୍ରୀକୃଷ୍ଣ—ଡରିବି କାହିଁକି ପଦ୍ମା ! (ହାତ ଧରି)

ପଦ୍ମା—ନାଃ, ଖାଲି ଟିକିଏ ଚମକି ପଡ଼ିଲ ସିନା ?

ଶ୍ରୀକୃଷ୍ଣ—ନାଇଁତ ।

ପଦ୍ମା—ଲୁଚୁଇଲେ କି ଲୁଚେ ?

ଶ୍ରୀକୃଷ୍ଣ—ତୁମ ଚନ୍ଦ୍ରାବଳୀ କିପରି ଅଛନ୍ତି ?

ପଦ୍ମା—ସେ କଥା କାହିଁକି ? ପଥବଣା ହୋଇ ପଡ଼ିଲ କି ?

ଶ୍ରୀକୃଷ୍ଣ—ପଥବଣା ନୁହେଁ ସଖି, ବଡ଼ ଅଶା କରି ଅସିଛୁ, ଫଳେତ ନ ଦେଇ ସଖୀଙ୍କ ସଙ୍ଗେ ହଠାତ୍ ସାକ୍ଷାତର ଅଭିଳାଷ । ତୁମେ ଚାଲ । କିଛୁ କହିବ ନାହିଁ, ମୁଁ ଯିବ ।

ପଦ୍ମା—ଜଣାଗଲାଣି, ଜଣାଗଲାଣି । ଚାଲ, ଚନ୍ଦ୍ରାବଳୀ ବିରହରେ କାତର ହୋଇ ପଡ଼ିଛନ୍ତି । ମୋ ସଙ୍ଗେ ସଙ୍ଗେ ଅସ ।

ଶ୍ରୀକୃଷ୍ଣ—ସତ କହୁଛୁ ପଦ୍ମା । ତୁମେ ଅଗରେ ଚାଲ । ମୁଁ ସୁବଳଙ୍କୁ ଅପେକ୍ଷା କରୁଛି । (ଖୋଜିବା ପରି) ସେ ଫୁଲହାର ନେଇ ଅସୁଥିବେ । ଅତି ଯତ୍ନ କରି ମୁଁ ଅଜି ଚନ୍ଦ୍ରାବଳୀଙ୍କ ଲାଗି ହାରଟିଏ ଗୁନ୍ଥିଥିଲି । ଘରୁ ଅସି ତାକୁ ଅଣିବାକୁ ପଠେଇଛି । ସେ ଅସିଲେ, ଯିବି । ନୋହିଲେ ପ୍ରାଣରେ ବଡ଼ ବ୍ୟଥା ଲାଗିବ ପଦ୍ମା । ସତ କହୁଛି । ତୁମେ ଅଗରେ ଚାଲ । ମୁଁ ପଛରେ ଯାଉଛି ।

ପଦ୍ମା—ସେ ଅଗ ପଛ କଥା ଛେଣିକି ଥାଉ । ମୋ ସଙ୍ଗେ ସଙ୍ଗେ ଅସ । ପଥ ନ ଚିହ୍ନିଲେ ମୁଁ ବାଟ ମଣାଇ ନେଉଛି । ଦେଖି କାହ୍ନୁ । ସୁନା ପିଲାଟି ପରି ମୋ ପଛେ ପଛେ ଅସିଲ । ଅସ । (ବେଗେ ପ୍ରସ୍ଥାନ)

ଶ୍ରୀକୃଷ୍ଣ—(କୁଣ୍ଠିତ ହେବା ପରି) ସଖି । ...... ...

ପଦ୍ମା – କାହ୍ନୁ, କାହା ପାଖରେ ଏ ଖେଳ ?

—ଗୀତ—

ବନ୍ଧୁ ସେ ପାଠ ପଢ଼ିଛୁ ମୁଁ ଯତନେ ।୦।
ଛଳ କପଟ କହ୍ନାଇଁ—ଖେଳିବାକୁ ଅଜ ନାହିଁ
ଧରା ତ ପଡ଼ିଛୁ ଏବେ ଦିନେ
ପାଣରୁ ଚଳେଇ ମନରୁ ପାଶୋର
ଭିନ ଭିନ ତୁମ୍ଭ ଅନ୍ତର ବାହାର
କେତେ କହୁଛ, ଶପଥ କରୁଛ,
ଠକିଛ ଅଛି ମୋ ମନେ

(ଶ୍ରୀକୃଷ୍ଣଙ୍କ କର ଧରି ଗାଇ ଗାଇ ବେଗେ ପ୍ରସ୍ଥାନ)

———

## ତୃତୀୟ ଦୃଶ୍ୟ

କେଶର କୁଞ୍ଜ ।

(ଶ୍ରୀମତୀ ବେଶ ହେଉଥିଲେ, ବିଶାଖା, ଲଳିତା ଚମ୍ପକ ଫୁଲ ଗୁନ୍ଥୁଥିଲେ )

ଲଳିତା— ଗୀତ

ସୁନ୍ଦରି ରେ, ଅଧରେ ସୁଧା ଝରେ (ସଦା)
ସତୀ ଧୃତି ନାଶେ, ମତ ଘାରେ.
ମନ୍ଦ ମଳୟ ବହେ, କୋଇଲି ଡାକଇ କୁହୁ
କୁହୁ କୁହୁ କୁହୁ କୁହୁ ବିରହିଣୀ ମାରେ ।୦।

ଶ୍ରୀମତୀ—(ବେଶ ହେଉହେଉ) ଅଜ ତିଥି ?

ଲଳିତା—ଚତୁର୍ଦ୍ଦଶୀ ।

ଶ୍ରୀମତୀ—ରାତି କେତେ ହବ ?

ଲଳିତା—(ବାହାରକୁ ଯାଇ ଉପରକୁ ଚାହିଁ) ଚନ୍ଦ୍ର ମଳିନ ହୋଇ ଅସିଲାଣି ।

ଶ୍ରୀମତୀ– (କାନଡେରି) ଏ କ'ଣ ସ୍ୱନେ ? ବଂଶୀ ? ଦେଖ ବିଶାଖା କୁଞ୍ଜ ଦ୍ୱାରକୁ ଟିକିଏ ଯାଅ ।

ବିଶାଖା—(ଉଠି ଯିବା)

ଶ୍ରୀମତୀ—ଲଳିତେ । ବୃନ୍ଦା କଅଣ ମିଛ କହିଛନ୍ତି ?

ଲଳିତା— ଅସମ୍ଭବ । ସେ ମିଛ କହିବେ କାହିଁକି ?

ଶ୍ରୀମତୀ—ତେବେ ?

ଲଳିତା—ଦଗାଦାରଙ୍କର ଯେପରି ପ୍ରକୃତି ତ ଜାଣିଛ ? ସେଥିରେ ଅଉ ବୃନ୍ଦାର କି ଦୋଷ ରାଧେ ?

ବିଶାଖା—(ପ୍ରବେଶ ହୋଇ) କାହିଁ ? କେହି ତ ନାହିଁ । ବଂଶୀ ନୁହେଁ । ସକାଳ ହୋଇ ଅସିଲାଣି । କଜ୍ଜଳପାତି ଡାକ ଦେଲାଣି । ବଂଶୀ କି ଇଁ ?

ରାଧା —(ଖର ନିଃଶ୍ୱାସ ପକାଇ) ଲଳିତେ ।

ଲଳିତା— ସଖି ।

ରାଧା—ତେବେ ଶେଷ ?

ଲଳିତା—(ନୀରବରେ ଚାହିଁଲେ)

ରାଧା —ଅଉ କଅଣ ହେବ ? କି ଲାଭ ଏ ବେଶରୁ ? କାଅ ସଖି । (ଦର୍ପଣ ଇତ୍ୟାଦି ଦୂରକୁ ଠେଲି) ଅସ

ବିଶାଖେ, କପାଳରୁ ଚନ୍ଦନ ତିଳକ ଲିଭାଇ ଦିଅ ।
ଫୁଲ ସଜ ଫିଙ୍ଗିଦିଅ । କି ହେବ ଏ ହାର ।
(ଛିଣ୍ଡାଇଦିବା)

ବିଶାଖା—ସଖି, ସେ ହାର ଯେ କହ୍ନାଇ ଦେଇଥିଲେ ।
(ଦର୍ପଣ ରଖି ଅସିବା)

ଶ୍ରୀମତୀ—ତାଙ୍କର ନାମରେ ଦେଲି । (ଇତସ୍ତତ ଫିଙ୍ଗିଦେଲେ)

ଲଳିତା—ରାଇ, ରବି ଉଦୟ ହୋଇ ନାହାନ୍ତି । ବନ୍ଧୁ, କେଉଁଠି, କେଉଁ କୁଞ୍ଜରେ ଅବା ପଥ ଜଗି ଘୁମାଇ ପଡ଼ିଥିବେ, ଆଉ ଦଣ୍ଡେ ଅପେକ୍ଷା କର ।

ଶ୍ରୀମତୀ—ଅନେକ ଅପେକ୍ଷା କରିଛି ସଖି । କଜ୍ଜ୍ୱଳ-ରେଖା ନୟନ ଜଳରେ ଭିଜି ଯାଇଛି । ବକ୍ଷ ଭିଜି ଯାଇଛି । ମନ, ହୃଦୟ ସବୁ ଭିଜି ଯାଇଛି । କିଛି ବାକି ନାହିଁ ତ ? ଥିଲା ଏ ଫୁଲହାର । ସେ ମଧ୍ୟ ଭିଜିଗଲା । ଆଉ ବାକି ରହିବ କାହିଁକି ? ଛି, ଚାଲ ସଖି, କୁଞ୍ଜ ତ୍ୟାଗ କର ।
(ଶ୍ରୀମତୀ କୁଞ୍ଜ ତ୍ୟାଗ କରିବାବେଳେ ଅଦୂରେ ବଂଶୀଧ୍ୱନି ଶୁଣିଲେ)

ଲଳିତା—ଶୁଣ ସହି, ଶୁଣ । ଶ୍ୟାମଙ୍କ ବଂଶୀ । ଦଣ୍ଡେ ଅପେକ୍ଷାକର ସହି ଆଉ, ନ ବୁଝି ନ ଶୁଣି ହଠାତ୍ କୁଞ୍ଜ ତ୍ୟାଗ ଉଚିତ ହେବ କି ରାଜକୁମାରୀ ?

ଶ୍ରୀମତୀ—ନାହିଁ ସଖି, ଚାଲ । ଆସି ଶୂନ୍ୟ କୁଞ୍ଜରେ ସେ ତାଙ୍କର ମୋହନ ବଂଶୀ ବଜାଉଥାଆନ୍ତୁ । ଅପେକ୍ଷା ଲୋଡ଼ା ନାହିଁ ମୋର । (ଉଠିଲେ)

ଲଳିତା—(ବସାଇ) ଛି ସଖି ।

ଗୀତ

ଆସିଛି ଯେବେ ଭ୍ରମର କୁଞ୍ଜ କୁଆରେ,
ରୁଷନା ଗୋ ଅଭିମାନେ, ନୟନଧାରେ ।୦।
ହଁସ ବନଫୁଲେ—ଯଦ ସେ ଭୁଲେ,
ଭଡ଼ା ନା ଅଭଥିରେ, ନବ ନବୀନା ହେ ।୧।
କେଜାଣି କି ଲାଗି-ସାରା ନିଶି ଜାଗି,
ଆସିଛି ଯେବେ ନବୁଝି, କରନା ମନା ରେ ।୨।

(ଜଣେ ସଖୀ ଉଠିଯାଇ ଶ୍ୟାମଙ୍କୁ କୁଞ୍ଜଦ୍ୱାରେ ଦେଖିଆସି ବିଶାଖାଙ୍କ କାନରେ ଗୁନଗୁନ କରି କହିବାରୁ, ବିଶାଖା ଦେଖିବାକୁ ଗଲେ)

ଶ୍ରୀମତୀ—ଥାଉ ବିଶାଖେ, କଅଣ ଆଉ ଦେଖିବାକୁ ଯାଉଛ ? ଏଣେ ଅସ, କୁଞ୍ଜରୁ ବାହାରିଚାଲ । ସେ ଆସିବା ଆଗରୁ ଯେମିତ କୁଞ୍ଜ ଛାଡ଼ିଯିବା ।
(କୁଞ୍ଜଦ୍ୱାରେ ଶ୍ରୀକୃଷ୍ଣ)

ବୃନ୍ଦା—(ଶ୍ୟାମଙ୍କୁ ଦେଖି ଶ୍ରୀମତୀଙ୍କୁ)

ଗୀତ

ଶେଫାଳି ବନ୍ଧୁ, ଫୁଟିଛ ସଖି, ରଜନୀଶେଷେ,
ଗନ୍ଧହାରା, ପରାଗହରା, ମଳିନ ବେଶେ ।
(ଶ୍ରୀକୃଷ୍ଣଙ୍କୁ ଦେଖାଇ )
ନିଶିଠି ସାରା ବିରହ କରା,
ସପନେ ଏଣେ ଲେଖେ ତୋ ଛବି,
ମିଳନ ରଙ୍ଗ ନୟନ କୀରେ ଗୋଳିଛି ସେ ।୧।
କ୍ଷୀଣ କଣ୍ଠେ ଶୁଷ୍କ ଭାଷା,
ହଜିଛି ମାଳା, ନାହିଁତ ତାର ସବୁଗ ଲେଶେ ।୨।

ଶ୍ରୀମତୀ—ବାରଣ କର ସଖି, କୁଞ୍ଜଦ୍ୱାର । ସେଇଠୁ ସେ ଫେରିଯାନ୍ତୁ ।

ବିଶାଖା—ବନ୍ଧୁ ! ଅଉ କାହିଁକି ଏତେ ପରିଶ୍ରମ କରି କୁଞ୍ଜଟା ଭିତରକୁ ଆସିବ ? ସଖୀ ଅମର ତମକୁ ଫେରି ଯିବାକୁ ଏକାନ୍ତ ଅନୁରୋଧ କରୁଛନ୍ତି । ଅନୁଗ୍ରହ କରି ବୁଲିପଡ଼, ଆପଣା ପଥ ଦେଖି, ତାଙ୍କୁ ଅଉ ଅମମାନଙ୍କୁ କୃତାର୍ଥକର ।

ଶ୍ରୀକୃଷ୍ଣ—ବିଶାଖେ ! ପଥଛାଡ଼, ମୁଁ ଯାଏଁ । ସବୁ କଥା ଧନୀଙ୍କୁ ବୁଝାଇ କହିବି । ଉଠ ।

ବିଶାଖା—ଆଦେଶ ନାହିଁ । ସଖୀ ବିମୁଖ ।

ଶ୍ରୀକୃଷ୍ଣ— ଗୀତ

କାହିଁକି ଉଣା ହେଲା କରୁଣା
ମୋଠାରୁ ହେ ସଜନି ! ନବୀନାରି ।

ସାର କରି ମାନସେ
ତାର ପୀରତି ରସେ
ମଜି ଅଛି ହରଷେ
ପ୍ରବେଶ ହେଲି ପାଶେ ।୧।

(ପଡ଼ି)

ରହିଁଲ ନାହିଁ ଧନ—କହିଣ କରସ ମନ
ଲୁଗାଇ ହରଷ-ତେଜ ସେ ଚନ୍ଦ୍ରବଦନ,
ମହ୍ଲୀକ ଦେଇ ନୟନ—ବସିଲ କରି ଗୁମାନ,
କବିଚନ୍ଦ୍ରେ ଗୃହ୍ଣ ବଚନ—ନ କହ ସୁବଚନ ।୨।

ବିଶାଖା—ରହିଁଲ କରି, ମାଠିକର କଥା କହିବାକୁ, ତାଙ୍କୁ ଅମର ବଡ଼ ବାହାଦୁର ।

ଲଳିତା—ଅସନ୍ତୁ ସେ ସଖି, କଅଣ ତାଙ୍କର କହିବାର ଅଛି, ଥରେ ଶୁଣି । ବିଶାଖେ, ପଥଛାଡ଼, ଅସନ୍ତୁ ସେ । ବାକି ଶ୍ରୀମତୀଙ୍କ ନିକଟକୁ ନୁହେଁ । ଦୂରରେ ଥାଇ କହନ୍ତୁ ।

(ବିଶାଖା ପଥ ଛାଡ଼ିଦେଲେ । ଶ୍ରୀକୃଷ୍ଣ ଭିତରକୁ ଗଲେ)

ଶ୍ରୀକୃଷ୍ଣ—ଶ୍ରୀମତୀ । ବକୁଳ କୁଞ୍ଜରେ ଅପେକ୍ଷା କରି ବସି ବସି ସାରା ରାତି ପାହିଯାଇଛି । କେହି ସଖୀ ମୋତେ ସମ୍ବାଦ ଦେବାକୁ ଯାଇଥିଲେ ଜାଣିଥାନ୍ତି ସିନା ।

ଶ୍ରୀମତୀ—ଲଳିତେ, ତୁମେ ତ ଖୋଜିବାକୁ ଯାଇଛ ?

ଲଳିତା—ମୁଁ ମଦନ କୁଞ୍ଜ, ଯମୁନାତଟ ଦେଖି ଆସିଲି । ବକୁଳ କୁଞ୍ଜକୁ ଯାଇ ନାହିଁ ।

ଶ୍ରୀକୃଷ୍ଣ—ମିଥ୍ୟା ନୁହେଁ ଶ୍ରୀମତୀ । ମୁଁ ସତ୍ୟ କହୁଛି ।

ଶ୍ରୀମତୀ—ପଚାର ବିଶାଖେ, ଅନ୍ୟ କେଉଁଠିକି ଯାଇ ନଥିଲେ । ଏ ନାଗେଶ୍ୱର ଫୁଲ କେଉଁଠୁ ଆଣିଲେ । ଏ ତ ଚନ୍ଦ୍ରାବଳୀଙ୍କ କୁଞ୍ଜରେ ଫୁଟେ ।

ବିଶାଖା—କିଓ ଧୂର୍ତ୍ତ ! ଶୁଣୁଛ ତ ?

ଶ୍ରୀକୃଷ୍ଣ—ତୁମେ ବିଶ୍ୱାସ କରିବ ବୋଲି ଆଶା କରି ନଥିଲି ବିଶାଖେ । ରାତି ପାହିଲାରୁ ସବୁଆଡ଼ ଖୋଜି ଖୋଜି ସଖୀଙ୍କ ଲାଗି ନାଗେଶ୍ୱର କୁଞ୍ଜରୁ କୁସୁମ ଉପହାର ନେଇ ମନ ବ୍ୟଥା ଗାଇଗାଇ ବୁଲୁଥିଲି । କେବେ ମିଥ୍ୟା ନୁହେଁ । ମୁଁ କେବେ ମିଥ୍ୟା କହେ ନାହିଁ ।

ବିଶାଖା—ଆହାହା, କିଏ କହିବ ? ତାଙ୍କୁ ଅମର କେବେ ମିଛ କହନ୍ତି ନାହିଁ । ଉପର ତ ଶହେକେ ଛ'କୋଡ଼ି ମିଛ । ଦଗାଦାର । ସେ ସବୁ କଥା ଥାଉ । କୁଞ୍ଜରୁ ବେଗେ ବାହାରିଯାଅ ।

ଶ୍ରୀମତୀ—(ବିରକ୍ତ ଭାବେ) ଯେବେ ବକୁଳ କୁଞ୍ଜରେ ଥିଲ, ତେବେ ଗଣ୍ଡରେ ଏ କ୍ଷତଚିହ୍ନ ହେଲା କିପରି ? ମଥାରେ ସିନ୍ଦୂର ଲାଗିଲା କେମିତି ?

ଶ୍ରୀକୃଷ୍ଣ—ଗେରୁ ଲତା ପିନ୍ଧିଥିଲି । ତାହାକୁ ସିନ୍ଦୂର ମନେକରି ଏକଥା କହୁଛ ସଖି ?

ବିଶାଖା—ଅସଲ କଥାଟା କହ, ଗଣ୍ଡରେ କ୍ଷତ ଚିହ୍ନଟି କିଏ ଦେଇଛି ? ସେ କଥାଟି କହିଲ ? ଆଉ ଠକିବାକୁ ଉପାୟ ନାହିଁ । ଶ୍ୟାମବନ୍ଧୁ । ମିଛସବୁ କହି ଜାଣନାହିଁ ?

କୃଷ୍ଣ—କାଲି ବସି ଶୁଆକୁ ଆଦରରେ ରାଧା ନାମ ପଢ଼ାଇ ପଢ଼ାଇ ସେ ଅଧରକୁ ବିମ୍ବଫଳ ମନେ କରି ଦଂଶନ କରିଛି । ମୋର ଅପରାଧ ନାହିଁ ଧନି । ଅଭିମାନ ତ୍ୟାଗକର ।

ଶ୍ରୀମତୀ—ମୋ ଆଗରେ ମିଛକଥା ? ମୁଁ ଅବୁଝି ନୁହେଁ । ଏଡ଼େ ଧୂର୍ତ୍ତି ? ଏଡ଼େ ଠ । ରାଧିକା ସଙ୍ଗେ ଛଳନା ? ନା, ବିଶାଖେ, ତୋତେ ମୋ ରାଣ । ତାଙ୍କୁ କୁଞ୍ଜରୁ ବିଦାୟ କରିଦିଅ ।

ବୃନ୍ଦା— (ଗୀତ)

ଯଦି ଶଶୀ ନିରିଖେ କୁମୁଦିନୀ ଫୁଟେ ବିରହ ଦହନେ
ଦହେ କା ଛାତି ।
ଯଦି ନବ ବସନ୍ତେ, ଭୋଳିଲା ମାତେ ବକୁଳ ଭୁଲେ
କା ଗୋ ବିଜନ ସାଥୀ । ।
ଅଭିମାନିନୀ ଗୋ, ଝରଇ ନୀର ଧାର
ଏ ସାରା ମଧୁମାସେ ବିଧୁରା ଅଧୀରା—
ମିଳେ କମଳିନୀ, ଅଳକେ ମାନିନୀ,
ଫେରେ ଗୋ ମନେ ଘେନି ବିଷାଦ ତାତି ।୧।

ଶ୍ରୀମତୀ—ବୃନ୍ଦେ । ବୃଥା ଏ ଅନୁରୋଧ । ଯାଅ ବିଶାଖେ, ବିଦାୟ କରି ତାଙ୍କୁ ।

ବିଶାଖା—ଲଳିତେ, ମୁଁ ସଖୀଙ୍କ ପାଖରେ ଅଛି । ତୁମେ ଯାଅ ।

ଶ୍ରୀକୃଷ୍ଣ—(ତୁନି ତୁନି) ଲଳିତେ । ତୁମେ ସାହା ନୋହିଲେ···

ଲଳିତା—(ସସ୍ମିତର ଅଭିନୟ ଦେଖାଇ ଠାରି ଦେଇ) ଚାଲ କାହ୍ନୁ, ମୋର ଦୋଷ ନାହିଁ । ଆଦେଶ ପାଳନ ଆମ୍ଭମାନଙ୍କର ଧର୍ମ । ଚାଲ ।

କୃଷ୍ଣ—ଚାଇ !···

ବିଶାଖା—ହଇ ହଇ । ବଳେ କରି, ଆଉ ବେଶୀ ଗୁଣଗାଇବାର ଦର୍କାର ନାହିଁ । ଯାଅ । (ଲଳିତା ଓ କୃଷ୍ଣ ପ୍ରସ୍ଥାନ)

ଶ୍ରୀମତୀ—ବିଶାଖା, ତୁମ୍ଭେମାନେ ଯେମିତି କେବେ ଆଉ ସେ ଶଠଙ୍କ କଥାରେ ନଭୁଲ ।

ବିଶାଖା—ସତ କହୁଛ ସଖି, ସବୁ ସହି ହେବ ଯେ ତାଙ୍କ ସେ ବଡ଼ କପଟୀ । କେତେବେଳେ କି ଛଳନା ଖେଳିବେ ଜଣାନାହିଁ । କେତେବେଳେ ଅସି କେମିତି ଦେଖାଦେବେ ଜାଣି ହେବ ନାହିଁ ।

ଶ୍ରୀମତୀ—ସାବଧାନ ଥିଲେ ଆଉ କପଟ କଅଣ କରିବେ ? ଯେ ଇଚ୍ଛା ସେ ଆସୁ, ସଖୀମାନଙ୍କ ଛଡ଼ା ଆଉ କାହାକୁ ମୁଁ କଥା କହିବି ନାହିଁ । ଅଜଣା କାହାକୁ ଅସିବାକୁ ଦେବି ନାହିଁ— ଏତେଟିକେ ତ ଗଲା—

ବିଶାଖା—ହଁ ଆଉ କଅଣ ?

ଲଳିତା—(ଧୀର ଧୀର ପ୍ରବେଶ) ରାଧେ, ଅଳ୍ପ ଅଭିମାନ କଲ ଯେ, ଏବେ ସବୁ ସରିବାକୁ ବସିଲଣି ।

ବିଶାଖା—କଅଣ—କଅଣ ?

ଲଳିତା—ମୁଁ ଆଉ କହିବି କଅଣ ? ନିଜେ ଦେଖ ଯା' ବୃନ୍ଦାବନ ଅନ୍ଧାର ହେବାକୁ ବସିଲାଣି । ବେଗେ ଉପାୟ କର, ନୋହିଲେ ମାନ ଅପମାନ ସବୁ ଜଳପୋଡ଼ି ଯିବ । ଶ୍ରୀମତୀ । ନଜାଣି ନଶୁଣି,ବେଳେ ବେଳେ ତୁମର ଏ ଅବୁଝା ଗୁଣରୁ ସବୁ ସରିବ ।

ଶ୍ରୀମତୀ—କଥା କଅଣ ଲଳିତେ ?

ଲଳିତା—ତୁମ ଆଦେଶରେ ଶ୍ୟାମଙ୍କୁ ବିଦାୟ ଦେବାକୁ ଗଲି । ପଥରେ ପୌର୍ଣ୍ଣମାସୀ ଦେବୀଙ୍କ ସହିତ ସାକ୍ଷାତ ହେଲା । କାହ୍ନୁ ତେତେବେଳକୁ କାନ୍ଦୁଥିଲେ । ପୌର୍ଣ୍ଣମାସୀ ତାଙ୍କୁ ବୁଝାଇ ବୁଝାଇ ହଠାତ୍ କହ୍ନାଇ ଡାହାଣ ହାତରେ ତାଙ୍କ ଆଖି ପଡ଼ିଲା । ଦେଖିଲାବେଳକୁ ତାଙ୍କର ଆୟୁରେଖା ଲିଭିଲିଭି ଅସୁଛି । ରେଖା ପୂର୍ଣ୍ଣରୂପେ ଲିଭିଗଲେ ଦଶା କଅଣ ହେବ ସଖି, କହି ହେଉ ନାହିଁ । ଅହା କହ୍ନାଇ ଲାଗି ସିନା ସବୁ ଆନନ୍ଦ । ଶ୍ରୀମତୀ, କି ଅନ୍ୟାୟ କଲ ? ତୁମ ସଙ୍ଗେ ପ୍ରୀତି କରି କହ୍ନାଇଁର ଜୀବନ ଯିବାଉପରେ ବସିଲାଣି ସିନା । (ଅଶ୍ରୁମୋଚନ)

ଶ୍ରୀମତୀ—ଏଁ, ସତ କହୁଛ ଲଳିତା ? ଏଥିକି ଉପାୟ କ'ଣ ?

ଲଳିତା—ପୌର୍ଣ୍ଣମାସୀ କହିଲେ ସେ ନିର୍ଦ୍ଦୋଷ । ତାଙ୍କ ଉପରେ କୋପ କରନାହିଁ । ଅଭିମାନ ତ୍ୟାଗ କରି କହ୍ନାଇଁର ଜୀବନ ରଖ ରାଧେ ।

ଶ୍ରୀମତୀ—ତେବେ ବେଗେ ଚାଲ । ସେ ଯେଉଁଠିଥିବେ, ଯିବା । ତାଙ୍କ ଚରଣତଳେ କ୍ଷମା ମାଗି ଅଭିମାନ ଛାଡ଼ିବି । ଚାଲ ସଖି ।

ଲଳିତା—କେଉଁଠି ଥିବେ କି ଚିହ୍ନିଣା ଥାଉ ? ଏଣେ ତେଣେ ତ କାନ୍ଦିକାନ୍ଦି ବୁଲୁଥିଲେ । ଗଛକୁ, ଲତାକୁ, ଫୁଲକୁ କୁଣ୍ଢାଇଧରି କାନ୍ଦୁଥିଲେ । ଅହାହା ! କହ୍ନାଇଁର କି ଦଶା । କାହା ଛାତି ସହିବ ? ପାଷାଣ ତ ତରଳି ପଡ଼ିବ । ରାଇ, ବଡ଼ ନିଷ୍ଠୁର ତୁମେ । ପ୍ରକୃତରେ ସ୍ତ୍ରୀ-ଜାତିକୁ ବିଶ୍ୱାସ ନାହିଁ ପରା । ଜଗତରେ ରହିବି,ରାଧାଲାଗି କାହ୍ନୁ ଜୀବନ ଗଲା । କି ପୌରୁଷ ଅର୍ଜ୍ଜନ କରିବ ? ଛି, ଛି ।

ବିଶାଖା—ସଖି, ଆଉ ବିଳମ୍ବ କଲେ କି ଲାଭ ? ବେଳକୁବେଳ କଥା କଲି ପଡ଼ିବ ସିନା । ତୁମେ ଯାଅ, ଶୀଘ୍ର କହ୍ନାଇଁଙ୍କୁ ନେଇ ଅସ । ମୁଁ ଶ୍ରୀମତୀଙ୍କୁ ପ୍ରବୋଧନା ଦେଉଛି ।

ଲଳିତା—ସେ କି ଅସୁନ୍ଦର ? ମୁଁ ଯେତେ କହିଲି—କହିଲେ—ଆଜ ମୁଁ ବୃଥା ଅଭିମାନ, ଅପମାନ ସହି ପାରିବି ନାହିଁ । ରାଧାନାମ ଧରି ଏ ଜୀବନ ଯାଉ ପଛେ ଆଉ ଯିବ ନାହିଁ କି କୁଞ୍ଜଦ୍ୱାର ଦେଖିବ ନାହିଁ ।

ଶ୍ରୀମତୀ—ଯାଅ, ଲଳିତେ, ତାଙ୍କୁ ଯେପରି ହେଉ ଘେନିଆସ । ଯାଅ ସଖି, ଦୟାକର ।

ଲଳିତା—ଶ୍ରୀମତୀ, ମୁଁ ଯାଉଛି । ତାଙ୍କୁ ଯେପରି ହେଉ ଆଣିବାକୁ ଚେଷ୍ଟା କରିବି । ବାକି ସାବଧାନ, ତୁମେ ଲେମୋଟ ଅଭିମାନ ରଖିନଥିବ । ନୀଳମଣିକୁ ହରାଇ କି ସୁଖ ତୁମର ରହିବ ? ଧିକ୍ ତୁମ ପ୍ରୀତି, ଧିକ ତୁମ ଅଭିମାନ, ଧିକ ତୁମ କୋପ ।

(ପ୍ରସ୍ଥାନ)

ଶ୍ରୀମତୀ—ଅନ୍ୟାୟ କରିଛୁ ସଖି, ନବୁଝି ନଶୁଣି ଅଭିମାନ କରିଛି ନୁହେଁ ।

ବିଶାଖା—ଅନ୍ୟାୟ ହେଲା । ତୁମ୍ଭ କୋପରେ ତାଙ୍କର ସର୍ବନାଶ ହେବାକୁ ବସିଲଣି ।

ଶ୍ରୀମତୀ—ତାଙ୍କର ତ ନୁହେଁ । ଦୈବ ମୋ ଲାଗିଏତେ କଷ୍ଟ କରୁଛି । ହେଁ ଛା ବଡ଼ ଅଭାଗିନୀ, ବିଶାଖେ ।

ବିଶାଖା—ଯାହା ତ ହେବାର ହେଲଣି, ତୁମେ ଧୈର୍ଯ୍ୟଧର । କହ୍ନାଇଁ ଆସିଲେ ଯେମିତି ତୁମ ମନ ଆଉ ନ ବଦଳେ ।

ଶ୍ରୀମତୀ—ସେଥିପାଇଁ ତୁମେମାନେ ଜଗିଥିବ । ମୋତେ ସାବଧାନ କରିଦେବ ସହି ।

(ଲଳିତାସହ କାନ୍ଦକାନ୍ଦ ଶ୍ରୀକୃଷ୍ଣଙ୍କ ପ୍ରବେଶ)

ଲଳିତା—(ଶ୍ରୀକୃଷ୍ଣଙ୍କ ହାତରେ ବିଷୋଟା ଦେଖି) ଦେଖ, ଦେଖ ବିଶାଖେ (ହଠାତ୍ ଶ୍ରୀମତୀ ହାତ ବଢ଼ାଇ ଧରିନେଲେ)

ଶ୍ରୀମତୀ—କାହିଁ ? କାହିଁ ? କଅଣ ହେଲା ?

ଶ୍ରୀକୃଷ୍ଣ—ରାଧେ । ତୁମ୍ଭର ଅକାରଣ କୋପରୁ କୃଷ୍ଣର ଜୀବନ ଯାଉଛି । କ୍ଷୋଭର ।

ଲଳିତା—(ପୁଣି ଦେଖି) ଜୟ, କୃଷ୍ଣକିଶୋରୀଙ୍କ ଜୟ । କହ୍ନାଇଁର ଅସୂରେଖା ପଡ଼ି ଦଗିଲଣି । ଆଉ ଭୟ ନାହିଁ ।

ଲଳିତା ଓ ବିଶାଖା—ଜୟ ଶ୍ରୀକୃଷ୍ଣ କିଶୋରୀଙ୍କର ଜୟ ।

ଶ୍ରୀକୃଷ୍ଣ—ପ୍ରେମମୟୀ, ଅଭିମାନ ତ୍ୟାଗ କର ଏ କୁସୁମ ଉପହାର ଗ୍ରହଣ କର । (ଫୁଲ ସଙ୍ଗରେ ବଂଶୀଟି ବଢ଼ାଇ ଦେଲେ )

ଶ୍ରୀମତୀ—(ଗ୍ରହଣ କରି) ଶ୍ୟାମଚନ୍ଦ୍ର । ଅଧୀନା ପ୍ରତି ଚିରଦିନ ଏହି ସ୍ନେହ ଥାଉ (ବଂଶୀ ଲୁଗୁଇ ଦେଲେ )

ବିଶାଖା—କେତେ ଦିନ କି ? ପୁଣି ତ ଥିବ ଥିବ ମେଘ ଖଣ୍ଡେ ଉଠିବ, ସବୁ ସୁଖ ଭାଙ୍ଗିଯିବ । ଯାଙ୍କ ମୁହଁ ଏତେକୁ ତାଙ୍କ ମୁହଁ ସେତେ ।

ଲଳିତା—ହଁ, ଅସମ୍ଭବ ନୁହେଁ ।

ବିଶାଖା—ସେତକ ଭୟ ନ ହେଉ । ଏମିତି ଯୁଗଳ ମାଧୁରୀ ଦେଖି ଆଖି ମନ ପବିତ୍ର ହେଉଥାଉ ।

ଲଳିତା—(ସୂର୍ଯ୍ୟଙ୍କୁ ଦେଖି) ବିପରୀତ ଫଳ ଫଳଉଛି କାହ୍ନୁ । ତୁମେ ଶୀଘ୍ର ବିଦାୟ ନିଅ । ଦିନ ଅନେକ ହେଲଣି । କୁଟୀ, ଜଟିଳା ଶ୍ରୀମତୀଙ୍କ ଖୋଜି ଆସିଲେ ଏ ସୁଖକୁ ସେ ବିପଦ ବଳି ପଡ଼ିବ । ଗୃହ କାହ୍ନୁ, ଶୀଘ୍ର କୁଞ୍ଜ ତ୍ୟାଗ କର ।

(କୃଷ୍ଣ ଅଗ୍ରସର ହେଲେ—ଲଳିତା ପଛେ ପଛେ ଗଲେ)

---

## ଚତୁର୍ଥ ଦୃଶ୍ୟ

ବ୍ରଜ—ପଥ ।

( ବୃନ୍ଦା ଗୀତ ଗାଇ ପ୍ରବେଶ )

—ଗୀତ—

ବାଙ୍କ ନୟନ ମନ ଅଳି—ସଜନି, ମୋହେ ।୦।
ସଖି ଶିଖୀଚୂଳଅ    ମୋହନ ମୁରଲୀଅ
ନାଗର ନଟବର ରାଜ ।
ସେ ଯେ ପୀତଧଟିଅ    ଅତି ନଟକୁଟିଅ
ସାରିଛି ଗୋପୀ ମାନ ଲାଜ ।୧।

ସତୀ ମନ୍ଦ-ହସ ବେଣୁ କୁଞ୍ଜେ ନିତି ବାଜେ
ଘର ଭୁଲି ପରବଧୂ ହସି ବେଶ ସାଜେ
ବନେ ତେଜିଣ ବାଜେ (ପୁଣି)ମନେ ଏଣେ ବାଜେ ଗୋ।
ନୟନ ମୁଦିଲେ ଭଲା ଛବିଟି ବିରାଜେ
ସେ ଯେ ପୀତପଟିଆ··· ।୧।
( ଗାଇ ଗାଇ ପ୍ରସ୍ଥାନ )

———

## ପଞ୍ଚମ ଦୃଶ୍ୟ

### ଯମୁନା ତଟ

(ସଖୀମାନେ ଶ୍ରୀମତୀଙ୍କ ସହ ବଂଶୀ ନେଇ ପ୍ରବେଶ )

ଶ୍ରୀମତୀ—ହଁ ଭଲ, ସେଇ ବାଉଁଶ ତ । ତେବେ ଯାର ଏତେ ଗର୍ବ କାହିଁକି ?

ଲଳିତା —ଗର୍ବ ? ସେ କଥା କହନା ଅଳି । ବାର ଅଙ୍ଗୁଳ ସୁନ୍ଦର ସରଳ ବାଉଁଶ ଖଣ୍ଡକରେ କି ଗୁଣ ଅଛି କେଜାଣି ?

ବିଶାଖା – ବାଉଁଶର ନୁହେଁ ସଖି । ଶୁଣ, କାହ୍ନୁ ଅଧରରେ ରହୁଛି ।

ଶ୍ରୀମତୀ—ନାଇଁ ସଖି, କାହ୍ନୁକୁ ଯେତେ ଡର ନାହିଁ— ଏ ବଂଶୀକି ତା'ଠାରୁ ବେଶୀ ଡରମରେଁ । କାହ୍ନୁ ମୁହଁରେ ରାଧା ରାଧା ଡାକିଲେ ତ ଏତେ ହୃଦକୁ ଛୁଇଁନ୍ତା ନାହିଁ । ଯାର ଦୋଷରୁ ଗୋପ ବଜାର ଯାଉ ବାଜି ଯାଉଛି । ଯାକୁ ଉଣା ମନେ କରିବ ନାହିଁ ।

ଲଳିତା —ଉଣା ନୁହେଁ ସତ । ବାକି କୃଷ୍ଣ ହାତରେ ଥିଲେ ତା'ର ବୁଇଗୁଣ ଦେଖାଯାଏ । ସାମାନ୍ୟ ଖଣ୍ଡେ ବଂଶୀ । ତା ଡାକରେ ଯମୁନା ପାଣି ଉଜାଣି ବହେ । ଶୁଷ୍କ ତରୁରେ ନବ ପଲ୍ଲବ ହୁଏ । ଧେନୁ ଏଇ ଶବ୍ଦ ଶୁଣି ତୃଣ ଛାଡ଼ି ଅନାଇଁ ରହେ । ବତ୍ସା ସ୍ତନ ତ୍ୟାଗ କରି ଅଚେତନ । ମୁହୂର୍ତ୍ତକ ମଧ୍ୟରେ ଶିବଙ୍କର ଯୋଗ, ବ୍ରାହ୍ମାଙ୍କର ଧ୍ୟାନ ଭାଙ୍ଗିଯାଏ ।

ଶ୍ରୀମତୀ—ସତେ ସହ ।

—ଗୀତ—

ବାଜନେ ନଶିଥେ ଯଦି ଏ ମୁରଲୀ ବାଜେ ଗୋ
ମତି ଗତି ହାରେ ମୁଁ ।
ଧରିବନି, କେ ଧୂର୍ତ୍ତ ବରଜେ ?
ନିତିନିତି ନବକୁଞ୍ଜ ସରଜେ,
ସଙ୍ଗୀରେ ।
ମଧୁରେ ମଧୁରେ—ମୁରଲି ଅଧରେ
ବେଣୁଧର ମନ ମୋର ଘାରେ ।୮।
କପଟ ଲମ୍ପଟ ନବ ନଟବର ପୀତପଟ ଧୀଟଗ୍ରନ୍ଥ ସେ
ଘର ପର ମୋର—ସାର ତ ଗିର
ତା'ର କରେ ଉଚ୍ଚାଟ ଯେ
ଅତି ନିରମମ—ଜାଗରେ ମମ
ନୟନେ ନୟନେ କରଇ ନାଟ
ଶୟନେ ସ୍ୱପନେ ମିଶଇ ମୋ ଭୁଲେ
ଯମୁନା ପଥରେ ଜଗଇ ବାଟ,
ମଧୁ ମୁରତି ମୋର ଜାତି କୁଳ ନିତି ସାରେ ।୧।

ଲଳିତା—ବଡ଼ ଭାଗ୍ୟ ସଖି, ବଇଁଶୀର ବଡ଼ ଭାଗ୍ୟ । ଲାଜ ମହତ ନେଇ ଯଛେ, ଯଦି ସେଇ ବଶ-ମନ୍ତ୍ରଟି ଶିଖାଇ ଦଅନ୍ତା ସଖି, ଆମେମାନେ ସେତିକ ଘୋଷି, କାହ୍ନୁ ଉପରେ ଅଜି ଛଳେ ଅମ୍ଭମାନଙ୍କ ସଙ୍ଗ ଛାଡ଼ି ନ ପାରିବେ, ତାର କୃପାସୁ କରନ୍ତୁ । କେଡ଼େ ଭାଗ୍ୟ ନ ହୁଅନ୍ତା ସଖି । ଆହା ।

ଶ୍ରୀମତୀ—ଲଳିତେ, ଜାଣିନାହଁ ସଖି । ବଂଶର ଗୁଣ କି କେହି କେବେ ଛାଡ଼େ ? ଏହି ବଂଶୀର ବଂଶ ବାଉଁଶରେ ଧନୁ ହୁଏ । କେତେ ପ୍ରାଣୀ ବଧ ନ ହୁଅନ୍ତି ଭଲ ? ବଚେଇକ, ବିଗୁର ନାହିଁ । ତୃଷାତୁର, କ୍ଷୁଧାତୁର କାହାର ଦୁଃଖ ବୁଝେଁ ନାହିଁ, ଅକାଳେ ବଜ୍ର ପ୍ରହାର କରେ । ବଂଶୀ ତ ସେହି ବଂଶରୁ ଜନ୍ମ । ପୂର୍ବଜନ୍ମରେ ଅମ୍ଭେମାନେ ଏହାର କିଛି ଅନିଷ୍ଟ କରିଥିବାରୁ ଏ ଜନ୍ମରେ ସେ କୃଷ୍ଣହସ୍ତରେ ରହି ବାଦ ସାଧି ନେଉଛି । ଏହା ଭିନ୍ନ ଅଉ କିଛି ନୁହେଁ ।

ଲଳିତା—ତେବେ ଏତିକିବେଳେ ସଜ ପଡ଼ୁଛୁ । ଅମେମାନେ ବି ବାଦ ସାଧିନେବା । ଶୁଭବେଳା ଘଡ଼ିଏ । ଛାଡ଼ୁଛୁ କିଏ ? ଦିଅ ସଖି, ମୋତେ । ମୁଁ ତାକୁ ଯମୁନାରେ ଭସାଇ ଦେଇଅସେଁ ।

ଶ୍ରୀମତୀ—ଭଲ କହୁଛୁ ଯେ ଲଳିତା । ବାଳ କହ୍ନାଇଁ ଏ ବଂଶୀକୁ ବଡ଼ ଶରଧା କରନ୍ତି । ଦଣ୍ଡେ ପାଖଛଡ଼ା କରନ୍ତି ନାହିଁ । ତାଙ୍କର କଷ୍ଟ ହେବ ।

ଲଳିତା—ତେବେ କଅଣ ଫେରାଇ ଦେବା ?

ଶ୍ରୀମତୀ—ନା ନା, ସେ କଥା କହନା ।

ବିଶାଖା—(ହସିକରି) ଅଚ୍ଛା କଥା ତ ! ସଖୀର ଶରଧା ତ'କୁଳକୁ । ତେଣେ କହ୍ନାଇକୁ, ଏଣେ ବଇଁଶୀକୁ । ସେପାଖେ କାହ୍ନୁର ପ୍ରେମକୁ ଡର—ଏପାଖେ ବଂଶୀର ବାଦ ସାଧିବାକୁ ହମହମ । ଏମିତ ହେଲେ କିଛୁ ହୋଇ ପାରିବ ନାହିଁ । ଶେଷରେ ଧରାଟି ପଡ଼ିଯିବ । ବଂଶୀ ଫେରିକି ବି ଯିବ । ମୋତେ ଏ କଥା କିଛୁ ଭଲ ଦିଶୁନାହିଁ । ଅମୂଲ୍ୟ ନିଧି ହାତରେ ପାଇ ହରାଇ ବସିବ ?

ଲଳିତା—ସତେ ସାଇ, ଯାହା କରିବାର ବେଗେ କର । ନୋହିଲେ କହ୍ନାଇ କୁଞ୍ଜକୁ ବଳ କାହାର ? ଫେର୍ ଏ ବଂଶୀ ପବନ ପାଇ ସୁଧା ସୁଧା ବର୍ଷିବ । ଗୋପପୁରେ ଚହଳ ପଡ଼ିଯିବ । ଜଟି, କୁଟୀ ଯେବେ ଜାଣିବେ, ସବୁ ସୁଖ ସରିଯିବ ।

ଶ୍ରୀମତୀ—ଅସମ୍ଭବ କଥା । କୃଷ୍ଣ ଅଧରରେ ତ ନାହିଁ । ଏ ବଂଶୀ ବାଜିବ କିପରି ? ଭସାଇ ଦେବା ନାହିଁ, ଲୁଚାଇ ରଖିବା ।

ବିଶାଖା—ସେ କଥା କରନାହିଁ । ଲୁଚାଇଲେ ବି ବିପଦ ନିଶ୍ଚୟ । ତାକୁ ହାତଛଡ଼ା କର । ମାୟା ତୁଟାଇ ଭସାଇ ଦିଅ । ନୋହିଲେ କାହ୍ନୁକୁ ଫେରାଇଦିଅ ।

ଶ୍ରୀମତୀ—ନା, ଫେରାଇଦେବା କଥା ନୁହେଁ ।

ଲଳିତା—ତେବେ ରଖିପାରିଲେ ହେଲା ।

ବିଶାଖା—ସେ ତ ଭଲ କଥା । ବାଳ କାହ୍ନୁକୁ କଅଣ ଲୁଚିବ ?

ଲଳିତା—ଅଜ ନ ଲୁଚେଇଲେ କାହ୍ନୁ ଜାଣିଲେ କି ରଖିପାରିବ ?

ବିଶାଖା—ଅସମ୍ଭବ ।

ଶ୍ରୀମତୀ—ତେବେ ?

ଲଳିତା—କହିଲି ତ ଭସାଇ ଦିଅ ବା ଫେରାଇ ଦିଅ ।

ବିଶାଖା—ଯାହା କରିବ ଶୀଘ୍ର ।

( ବଂଶୀ ବାଜି ଉଠିଲା )

ଶ୍ରୀମତୀ—ଏଁ ( ଚମକି ) ଏ କ'ଣ ହେଲା ?

ଲଳିତା—ବଂଶୀକୁ ନେଇ ଲୁଚାଇ ଦିଅ ସଖି । ଅଉ ବିଳମ୍ବ କରନାହିଁ ।

ବିଶାଖା—ହଁ, ପବନ ପୂର୍ଣ୍ଣ ହୋଇ ବାଜିବାକୁ ଆରମ୍ଭ କଲାଣି । ( ପୁଣି ବଂଶୀନାଦ )

ଶ୍ରୀମତୀ—( ହାତ ବଢ଼ାଇ ) ଧରିବି ସଖି ? ଯଦି ମୋ ହାତରେ ଥାଇ ପୁଣି ବାଜେ ? ଅଉ କେହି ଦେଖିଲେ ? ( ଧରିବା ଓ ପୁଣି ବଂଶୀନାଦ ) ସହ, ସହ ? ଅଉ ଉପାୟ ନାହିଁ । ଶୀଘ୍ର ଏହାକୁ କାହ୍ନୁ ହାତକୁ ଦେଇ ପଠାଅ । ଯାଉ ପଛେ ଜାତକୁଳ, ଲୋଡ଼ାନାହିଁ ଏ ପୋଡ଼ା ବଂଶୀ ।

ଲଳିତା—ଯାହା ଇଚ୍ଛା ବେଗେ କର । ବିଳମ୍ବ ହେଲେ ବଂଶୀଧ୍ୱନି ଶୁଣି ଯଦି କିଏ ଆସେ, ସବୁ ସରିଯିବ ।

ଶ୍ରୀମତୀ—( ନେପଥ୍ୟକୁ ଗୃହିଁ ) କିଏ ଅସୁଛି ପରା ?

ଲଳିତା ଓ ବିଶାଖା—( ଗୃହିଁ ) କିଏ, କାହିଁ ? (କପାଳରେ ହାତ ମାରି) ଧରିଲା ସରିଲା । ଜଟିଳା, ଲୁଗ୍ର, ଲୁଗ୍ର । ବଂଶୀ ଲୁଚାଇ ଦିଅ ସଖି ।

ଶ୍ରୀମତୀ—( ବ୍ୟସ୍ତ ହୋଇ ଶାଢ଼ୀକାନି ତଳେ ବଂଶୀ ଲୁଚାଇବାକୁ ଗଲେ ଓ ବଂଶୀନାଦ )

( ଜଟିଳା ପ୍ରବେଶ )

ଜଟିଳା—ହୁଁ, ଜାଣିଲି ଜାଣିଲି । ଅଣିଛୁଟି ସେ ପୋଡ଼ା ବାଉଁଶକୁ । ( ବଂଶୀ ଛଡ଼ାଇ ) । ଏତେ କାଳଯାଏ ମୋତେ ଲୁଚାଇକରି ରଖିଥିଲୁ—

ଅଜି ପଡ଼ିଲୁ ଧରି, ସତୀ ପରି ଟେ ? ହିଁଅ କଥା ମିଛ ମଣୁଥିଲି ମୁଁ । ସେ ଛତରି ନନ୍ଦ ପୁଅ ସାଙ୍ଗକୁ ଠିକ୍ ଜୁଟିଛ ତୁମେମାନେ । ନିର୍ଲଜ୍ଜୀ ଟୋକୀ ଗୁଡ଼ିକ । ନନ୍ଦ ପୁଅ ସାଙ୍ଗେ ତ ଭାବ ନାହିଁ, ଏ ବଂଶୀ ପାଇଲି କାହୁଁ ? କିଏ ଦେଲା ? କିଗୋ ଲଳିତା । ତୁ ମିଛ ପରି କହୁ ଜାଣୁନାହୁଁ ? ହଳିଆ ପାଣିକୁ ଗୋଡ଼ ବଢ଼ାଉ ନାହୁଁ ? ପକା କଅଁଳ କହୁଛିଏ ତୁ । ଜଣାଗଲା । ମୁଁ ଯାଉଛି । ଏଇନେ, ଏକଥା ନନ୍ଦ ଯଶୋଦାଙ୍କ ଆଗରେ ପକେଇବି । ସେ ପରି ତାଙ୍କ ପୁଅ-ଗୁଣ ମିଛ ମଣନ୍ତି ? ବୋହୂ, ତୁ ଘରକୁ ଚାଲ୍ । ବାନ୍ଧିକରି ଟେକାଇବି । ପୁଅକୁ କହି ଘରୁ ବାହାର କରାଇ ଗୋପ ବଜାରରେ ଗାଲ୍‌କେ ଚୂନ ଗାଲ୍‌କେ କାଳି ଦେଇ ନାଣ୍ଡୀମୁଣ୍ଡୀ କରି ଯେବେ ନ ଘୁଞ୍ଚାଇ, ମୋ ନାଁ ଜଟିଳା ନୁହେଁ । ଏଇଟା କୁଳର ବୋହୂ ହୋଇ କି ସ୍ନାନମାନ କଲା । ଏ ସଖୀ ଦାଇଟା ବି ତାକୁ ବଳି ।

ଲଳିତା—ବିରକ୍ତ ହୁଅନାହିଁ, ଶୁଣ । ସେ ବଂଶୀ ଯମୁନା କୂଳରେ ପଡ଼ିଥିଲା । ଆମେ ପାଇକରି ଆଣିଛୁ । ଭଲ୍ ହେଲା ନା, ମନ୍ଦ କଅଣ ?

ବିଶାଖା—ଆଜି ତାକୁ କହାଇଁ ନ ପାଇଲେ ତ ରକ୍ଷା, ଏଥିପାଇଁ ଲୁଚାଇକରି ରଖିଥିଲୁ ।

ଜଟିଳା—ସବୁ ଜାଣେ । ଅଉ ନୁହେଁ । ଯେତକ ଠକିଛ, ସେତକ । ରହ ରହ, ମୁଁ ଦେଖୁଛି ଯେ । ତୁମେ ସବୁ ଆଗ ଘରକୁ ଚାଲ । ସେଇଠି କଥା-ବାର୍ତ୍ତା ସିନା । (ପ୍ରସ୍ଥାନ)

ଶ୍ରୀମତୀ—(ବିକଳ ଭାବେ) ଯୋଉଥିକି ଡରୁଥିଲେଁ, ସେଇଅ ତ ହେଲା ସଖି । କଅଣ କରିବା ?

ବିଶାଖା—ସେତେବେଳୁ କହୁଛି ସହି, ମୋ କଥା ନ କଲ, ଏବେ ଫଳ ତାର ଫଳିଲା ।

ଶ୍ରୀମତୀ—ଫଳିଲାଣି ତ, ସେକଥା ଏତେବେଳେ କହି ଆଉ ଲାଭ କଅଣ ?

ଲଳିତା—ବିଶାଖା, ଯାଅ କାହ୍ନୁଙ୍କୁ ସମ୍ବାଦ ଦେବ । ନୋହିଲେ ସୁବଳ କି ମଧୁମଙ୍ଗଳଙ୍କୁ ଭେଟିଲେ, ତାଙ୍କୁ ବେଗେ କହି ପଠାଅ । ଦଣ୍ଡେ ମଠ କରନାହିଁ । ମୁଁ ସଖୀଙ୍କି ସଙ୍ଗରେ ନେଇ ଯାଉଛି ।

ବିଶାଖା—ମୁଁ ଗଲି ତେବେ । (ପ୍ରସ୍ଥାନ)

ଶ୍ରୀମତୀ—(ବିଶାଖା ଯିବାପରେ ତାଙ୍କ ଯିବା ପଥକୁ ଛଳଛଳ ଆଖିରେ ଚାହିଁ ରହିଲେ, ଆଖିରୁ ଲୁହ ଝରିପଡ଼ିଲା)

ଲଳିତା—ସଖି ।

(ଶ୍ରୀମତୀ ମୁହଁ ଫେରାଇଲେ—ଲଳିତା ଲୁହ ପୋଛି ଦେଉଦେଉ କହିଲେ)—ଛି ସଖି । ତୁମେ କାନ୍ଦୁଛ ? ବିଶାଖା ଫେରୁ । ଚାଲ ତୁମେ । ଚାଲ ଆଗ ଘରକୁ ।

ଶ୍ରୀମତୀ—ଘରକୁ ? କି ପୋଡ଼ାମୁହଁ ନେଇ, ଯିବି ସଖି ? ଏକା ଶ୍ୟାମ-ପ୍ରେମ ଲାଗି ସିନା ସଖି, ଏ ଜୀବନ ଧରି ରଖିଛି ? ନୋହିଲେ ମନେ କ'ଣ କରୁଛ ସହି, ଏତେ କ୍ଳେଶ, ଏତେ ମାୟା ଏ ଛାର ଜୀବନରେ ଅଛି ମୋର । ଯମୁନାର ଅତଳ ଗର୍ଭରେ କି ମୋର ଆଶ୍ରୟ ନାହିଁ ?

ଲଳିତା—(ଶ୍ରୀମତୀଙ୍କ ମୁଖରେ ଲୁଗା ଦେଇ) ପ୍ରେମିକା । କାହାର ଏ ଜୀବନ ? ଏ ପରି ଶ୍ୟାମ-ପ୍ରେମ ପୂଜାରୁଣୀର ? କି ଅଧିକାର ଉପର ଅଛି ତାକୁ ବଳି ଦେବାକୁ ଯମୁନା ଜଳରେ ? କି ଅଧିକାରରେ ବା ଯମୁନା ଏ ବଳି ଗ୍ରହଣ କରିବ ? ପୂଜାରେ ମାତ୍ର ଅଧିକାର ପୂଜାରୁଣୀର । ଫଳରେ ତ ନୁହେଁ । ଏ ଯେ ପ୍ରେମର ପୂଜା । କିଏ ଜାଣେ ଏହାର ପରିଣାମ ? ଚାଲ ସହି । (ଲୁହ ପୋଛି ଦେଲେ)

ଶ୍ରୀମତୀ—ଅନ୍ଧାରରେ ପଥ ଯେ ଦିଶୁନାହିଁ ସହି ।

ଲଳିତା—(ପୁଣି ଲୁହ ପୋଛି ଦେଇ)

—ଗୀତ—

ଜୀବନ୍ତ ପଥ ତ ଅନ୍ଧାର, ପୂଜାରୁଣୀ
ପ୍ରେମର ଦେବତା ପୂଜା—ଅଶ୍ରୁ ଢେଳି ।୦।
ମେଘ ନାଚିଥେ, ବନ ହସଥେ,
ଫୁଟୁ କଣ୍ଟା ପଦେ,— ଅଟଳ ପ୍ରେମ ଭିଖାରୁଣୀ ।୧।
ନୀରବ ନୀରବ ମରମେ ମୋହନ ଛବି
ଲେଖିଇ ନନ୍ଦନେ ନୟନେ ପ୍ରେମର କବି—
ପ୍ରେମ ନୀର ଢଳ, ସୋହାଗ ଅଞ୍ଜଳୀ;
ପ୍ରେମର ପୀଠେ—ପରାଣ ଲୁଟେ ।
ପ୍ରେମର ସାଧନା ସାଧେ ବିରହିଣୀ ।୨।

( ପଟକ୍ଷେପ )

— – —

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ଶ୍ରୀକୃଷ୍ଣ ଶାୟିତ )

ବୃନ୍ଦା—( ପ୍ରବେଶ )

—ଗୀତ—

ନବ ସୁନ୍ଦର ନନ୍ଦନକୋଭରି,
ତବ ଅଞ୍ଜନ-ଗଞ୍ଜନ ଅଙ୍ଗ ଦରି ।
ଚାନ୍ଦନ ଯାମିନୀ କୁଞ୍ଜ ତଳେ,
ରାଇ ବିନୋଦିନୀ ମାନହରି ।୧।
କଞ୍ଜ ଚରଣେ ତବ ନୂପୁର ଭରି—
କେ ଶିଖାଏ ମଧୁର ଗୃଲ ?
କହ, ନିତ ମୋର ସ୍ୱପନେ ଗୋ
ଆସ ଥରେ ଥରେ ସତେ ମନଚୋର ।୨।
ଚେତି ଚାହେଁ, କେହୁ ନାହିଁ ନାହିଁ
ପାହେ ନାଚିଥିଲା ଚାହିଁ ଚାହିଁ,
କୋଇଲି କଣ୍ଠେ ସେ ସ୍ୱର ଫୁଟେ
ମୁଁ ଯେ ଝୁରିମରେଁ ଦିନ ରାତି ସାରା ।୩।

( ପ୍ରସ୍ଥାନ )

ସୁବଳ—( ପ୍ରବେଶ ହୋଇ କୃଷ୍ଣଙ୍କୁ ଉଠାଇ ) କିଓ ସଖା ! କେଉଁ କାରଣ ଦେଖାଯାଉନାହିଁ ? ଆସି ସଞ୍ଜ ହେଲାଣି, ସଖାମାନେ ଆସି ଡାକି ଡାକି ଥକିଗଲେ, ତେବେବି ନିଦ ଭାଙ୍ଗିଲା ନାହିଁ ? ଉଠ, ଉଠ । ସେଣେ ବଳରାମ ଖୋଜିହେଉଥିଲେ । ଉଠ ।

( କୃଷ୍ଣଙ୍କ ନିଦ୍ରାଭଙ୍ଗ ଅଭିନୟ )

ସୁବଳ—ଉଠ ! ଆରେ ବଂଶୀଧର ! ବଳରାମ, ମଧୁମଙ୍ଗଳ, ସମସ୍ତେ ସେଣେ ଖୋଜି ବୁଲୁଛନ୍ତି । ଏଠି ଅଛ ବୋଲି ଶୁଣିଲେ ହେଲେ ନିଶ୍ଚିନ୍ତ ହେବେ । ଆମେ ତ ସବୁ ଗୁହଅଡ଼େ ଖୋଜି ଖୋଜି ଥକିଲୁଣି । ଭାଗ୍ୟେ ମୁଁ ଏବାଟେ ଆସିଲି ବୋଲି ସିନା । ନୋହିଲେ କେତେବେଳଯାଏ ଶୋଇଥାନ୍ତ କେଜାଣି ? କେବେ ଏମିତ ରାତି ଅନିଦ୍ରା ହୁଅନ୍ତ କାହିଁକି ? ସଞ୍ଜ ଗଡ଼, ରାତି ଦାଢ଼ ଯାଏ ଶୋଇ ଆମମାନଙ୍କୁ ଖୋଜାଇ ମରାନ୍ତ କାହିଁକି ?

କୃଷ୍ଣ—( ଅଳ୍ପ ହସି ଆଳସ୍ୟରେ ) ଓଁ ସୁବଳ ! ମୋ ବଂଶୀ ? ( ଖୋଜିବା )

ସୁବଳ—କେଜାଣି, ତୁମେ ଜାଣିଥିବ ନା, ମୁଁ କେମିତି ଦେଖିଲି ଯେ ମୋତେ ପଚାରୁଛ ? ମୁଁ ତ ଏଇନେ ଆସୁଛି ।

କୃଷ୍ଣ—ତୁମେ ନେଇନାହଁ ?

ସୁବଳ—ସୁବଳକୁ ଚୋର କଥାଟି ଆସେ ନାହିଁ ।

କୃଷ୍ଣ—ମୁଁ ଚୋର କଥା କହୁନାହିଁ । କଲେ ମୋତେ ଖେଳାଇବାକୁ ପରିହାସରେ ନେଇ ରଖିଥିବ । ନେଇ ନା ? ମୋ ରାଣ ?

ସୁବଳ—ରାଣ ଅଛି । ମୁଁ ନେଇନାହିଁ ।

କୃଷ୍ଣ—ତେବେ ତ ଗଲା, ଅହା ! ମୋର କେଡ଼େ ଆଦରର ବଇଁଶୀଟି । ଦଣ୍ଡେ ମୁଁ ତାକୁ ପାଖରୁ ଅନ୍ତର କରେନାହିଁ । ପ୍ରାଣ ଅପେକ୍ଷା ଅଧିକ ଆଦର କରିଥାଏଁ । ମୋର ଯେ ଅଧେ ଜୀବନ ଚାଲିଗଲା ପରି ଲାଗୁଛି ସୁବଳ !

ସୁବଳ—ସଖା ! ବ୍ୟସ୍ତହେଲେ କି ଲାଭ ? ଯଦି ଗୋପପୁର ଭିତରେ କେଉଁଠି ପଡ଼ିଥିବ, ତେବେ

ନଷ୍ଟେ ମିଳିବ । କୃଷ୍ଣ ବଂଶୀକି ନ ଚିହ୍ନେ କିଏ ? ଆଜି ଯଦି ଯମୁନାରେ ଗାଧୋଇବାବେଳେ ଭାସି ଯାଇଥିବ, ତେବେ ମିଳିବାର ଆଶା ନାହିଁ । ଅସ୍ତୁ ସଖା ! ତୁମେ ଭଲକରି ମନେକର. କେଉଁଠି ତ ଥୋଇନାହଁ ? ସକାଳେ ବଂଶୀ ତୁମ-ପାଖେ ଥିଲା ? ଭାବିଲ ।

ଶ୍ରୀକୃଷ୍ଣ—( ଚିନ୍ତିତ ହୋଇ ) ହଁ, ଭାବୁଛି ତ, କିନ୍ତୁ— କିନ୍ତୁ ସେମିତି କିଛି ତ ମନେ ପଡ଼ୁନାହିଁ ।

ସୁବଳ —ସକାଳେ ତୁମେ ବଂଶୀ ଧରିଚ ?

ଶ୍ରୀକୃଷ୍ଣ – ( ଭାବି ଭାବି ) ସକାଳେ ?

ସୁବଳ—ହଁ ।

ଶ୍ରୀକୃଷ୍ଣ—ସକାଳେ ମୁଁ ନାଗେଶ୍ୱର କୁଞ୍ଜରୁ ଫେରିବାବେଳେ ବଂଶୀ ଥିଲା । ମୋର ଖୁବ୍ ସ୍ମରଣ ହୁଏ, ମୁଁ ନାଗେଶ୍ୱର କୁଞ୍ଜରେ ଫୁଲ ତୋଳିବାବେଳେ ଅଣ୍ଟାରେ ମାରିଦେଇଥିଲି ।

ସୁବଳ—ତା’ପରେ ?

କୃଷ୍ଣ—ତା’ପରେ ତ ଶ୍ରୀମତୀଙ୍କ ସହିତ ବକୁଳ କୁଞ୍ଜରେ ସାକ୍ଷାତ ।

ସୁବଳ—ସେତେବେଳେ ?

କୃଷ୍ଣ—(ହସି) ଭଲ ମନେ କରିଦେଇଛ ସଖା । ସେଇଠି ଯାଇଛି । ଶ୍ରୀମତୀଙ୍କ କୁଞ୍ଜରୁ ଆସିବାବେଳେ କଅଣ ଗୋଟେ ଅଭିଲାଷ ଲାଗିଲା । ବାକି ମୁଁ ବଂଶୀକୁ ଖୋଜିନାହିଁ । ସେଇଠି ତେବେ ଯାଇଛି ।

ସୁବଳ—ତେବେ ସେଇଠିକି ଚାଲ, ଖୋଜିଲେ ନିଷ୍ଟେ ମିଳିବ ।

ଶ୍ରୀକୃଷ୍ଣ—ନା, ଅଜ ଖୋଜିବାର ଆବଶ୍ୟକତା ନାହିଁ । ମୋ’ର ମନେହେଲା ।

ସୁବଳ—ଅଜ ଅପମାନକୁ ଭୟ ଥିଲା କେମିତ ? ଅସ୍ତ୍ର ତୈର ଧନ୍ଯାଛ ।

କୃଷ୍ଣ—ନାହିଁ ସଖା, କ୍ଷମା କର । ମୋର ମନେ ନଥିଲା ଶ୍ରୀମତୀଙ୍କୁ ନାଗେଶ୍ୱର ଫୁଲ ଦେବାବେଳେ ଭୁଲ୍‌ରେ ଫୁଲ୍‌ସାଙ୍ଗରେ ବଂଶୀଟି ମଧ୍ୟ ବଢ଼ାଇ ଦେଇଛି । ସେମାନେ ଛଳନା କରି ମୋତେ ଶୀଘ୍ର ବିଦାୟ କରିଦେଲେ ।

ସୁବଳ—ବେଶ୍ କଲେ । ସିଆଣିଆ ପଣିଆ ତମର ବାହାର କରିଦେଲେ । ଭଲ ହୋଇଛି ।

ଶ୍ରୀକୃଷ୍ଣ—( ହସି ) ସଖା, ତୁମେ ଟିକିଏ ଯାଅ । ଟିକିଏ ବୁଦ୍ଧି ଖେଳେଇ ତାକୁ ହସ୍ତଗତ ନକଲେ ନହୁଏ । ଯାଅ, ଶ୍ରୀମତୀଙ୍କ ସଖୀମାନଙ୍କ ସାହାଯ୍ୟ ନେଇ କୌଣସିମତେ ବଂଶୀଟିକୁ ହାତକୁ ଆଣ । ଯାଅ ।

ସୁବଳ—ତୁମେ ତେବେ ଅସ । ସତ, ଲକ୍ଷ୍ମୀ ଭାଇଟି । ମୁଁ ତୁମକୁ ଖୋଜିଆସିବି । ବଳରାମ ତୁମକୁ ନ ଦେଖି ଖୋଜି ହେଉଛନ୍ତି ।

( ନେପଥ୍ୟରୁ ଗୀତ ଶୁଭିଲା )

ସୁବଳ—ଶୁଣ । ଭାଇ ତମର ବଡ଼ ବଡ଼ୟ । ଜାଣେ କିଏ ଏଣେ ଆସୁଛି । ତୁମେ ଯାଅ ବଳଦେବଙ୍କ ପାଖକୁ । ମୁଁ ଖବର ନେଇ ଯାଉଛି ପଛରେ । ତୁମେ ଥିଲେ କଥାଟାର ମରମ ମିଳିବ ନାହିଁ । ବୁଝିଲ ତ ?

( କୃଷ୍ଣଙ୍କ ବେଗେ ପ୍ରସ୍ଥାନ )

ବୃନ୍ଦା—( ଗାଇ ଗାଇ ପ୍ରବେଶିଲେ )

( ଗୀତ )

ଫୁଲ୍ଲ ମାଳତୀ-ପୁଞ୍ଜ-ନିକୁଞ୍ଜତଳେ
ପ୍ରିୟା ଚଞ୍ଚଳ-ଅଞ୍ଚଳ-ମଞ୍ଜୁ ଦୋଳେ ।
ଗୁଚ୍ଛ-ଚନ୍ଦନ ଚର୍ଚ୍ଚିତ ଚନ୍ଦ୍ରାନନ
ଚଳବେଣୀ ଦୋଳେ, ସଙ୍ଗେ ବନ୍ଧୁ ଖେଳେ ।
ରଙ୍ଗ-ରଞ୍ଜନ-ରଞ୍ଜିତ ପାଦକଞ୍ଜ
ଅଳି ଅଳି କରେ ମିଳି ସଙ୍ଗେ ନିତି
ମଞ୍ଜୁ ମଞ୍ଜୁଳ ଲାଜ ତ ନାହିଁ ତଳେ
ବନଜ ମଣି ଶ୍ରୀମୁଖ କଞ୍ଜ ହରେ ।୧।

ସୁବଳ—ମନ ସୁଖରେ ଗାଇ ଗାଇ ଚାଲିଯାଅ ନାହିଁ ବୃନ୍ଦେ । ମୁଁ ତୁମକୁ ଖୋଜୁଥିଲି ।

ବୃନ୍ଦା—ଖୋଜୁ ଥିଲ ? ଭଲ ଫିକରଟାଏ ତ କରି ଏଥର ରକ୍ଷା ପାଇଗଲେ । କୋଉଠି ଅଛନ୍ତି ସେଇ୍ ?

ସୁବଳ—ଜଧରଗଲେ ତ । ଏବେ ଅଜ ଏକ ବିପଦ ।

ବୃନ୍ଦା—ତାଙ୍କର ପୁଣି ବିପଦ କ'ଣ ?

ସୁବଳ—ଏଥର କାହ୍ନୁ ବିରଥ ହୋଇ ଫେରିଛନ୍ତି ଶ୍ରୀମତୀଙ୍କ କୁଞ୍ଜରୁ ?

ବୃନ୍ଦା—କେମିତି ?

ସୁବଳ—ହାତରୁ ଅସ୍ତ୍ର ଶସ୍ତ୍ର ଗଲେ ରଥୀର ଯାହା ହୁଏ ।

ବୃନ୍ଦା—ବୁଝିପାରିଲି ନାହିଁ କିଛି ।

ସୁବଳ—ଜାଣ ତ, କହ୍ନାଇର ବଡ଼ ବଳ ବଂଶୀ । ସେତକ ହରାଇ କାନ୍ଦୁଣୁମାନ୍ଦୁଣୁ ହୋଇ ଏଣେ ତେଣେ ବୁଲୁଛନ୍ତି ।

ବୃନ୍ଦା—କୋଉଠି ହଜିଲା ?

ସୁବଳ—ତୁମେ କିଛି ଜାଣିନାହଁ ?

ବୃନ୍ଦା—ନାହିଁ ତ । ଶ୍ରୀମତୀଙ୍କ କୁଞ୍ଜରେ ତାଙ୍କୁ ଘୁଞ୍ଚ ଶ୍ରୀମତୀଙ୍କ କୋପ ଦେଖି ମିଳନର ଉପାୟ ଭାବିବାକୁ ପୌର୍ଣ୍ଣମାସୀଙ୍କ ସଙ୍ଗେ ଦେଖା କରିବାକୁ ମୁଁ ଚାଲିଆସିଲି ।

ସୁବଳ—ହେଇଟି ତ ଏ ଦଶା । ମିଳନ ପରେ ପ୍ରେମ ଭୋଳ ହୋଇ ଫୁଲ ସଙ୍ଗେ ପରା ବଂଶୀଟି ଦେଇଛନ୍ତି ଟେକି ଶ୍ରୀମତୀଙ୍କ କରରେ ।

ବୃନ୍ଦା—( ହସି ) ବେଶ ହୋଇଛି । ଏଥିରେ ଅଉ ବିପଦଟା କଅଣ ? ଏ ତ ପ୍ରେମ ଖେଳ । ଏଇଥର ତେବେ କାହ୍ନୁ ସାଧ୍ୟ ହେବେ ।

ସୁବଳ—ମୋତେ ପଠାଇଛନ୍ତି ପରା ସେ ଯେଣ୍ଣେ କୌଣସି ପ୍ରକାରେ ତାଙ୍କଠାରୁ ହାତ କରିବାକୁ ।

ବୃନ୍ଦା—ସହଜ ନୁହେଁ ସେ କଥା ।

ସୁବଳ—ତୁମେ ସହାୟ ହେବାକୁ ରାଜି କି ନାହିଁ ? କହନା ଅଟେ ।

ବୃନ୍ଦା—ହଁ, ମୋ ହାତେ ଯାହା ହେବ, କରିବି । କହିଲି ତ ସହଜେ ନ ମିଳେ ସେଇଣ୍ଟି ।

ସୁବଳ—ତୁନି ହୁଅ । ବିଶାଖା ଅସୁଛନ୍ତି । ଦେଖେଁ, କଥାରେ କଥାରେ ଯେବେ ତାଙ୍କ ମୁହଁରୁ କିଛି ସୁରାକ ମିଳେ ।

( ବିଶାଖା ପହଞ୍ଚିଲେ )

ସୁବଳ—କି ବିଶାଖେ ? କୁଆଡ଼େ ବାହାରିଛ ?

ବିଶାଖା—ଉମରିମାନଙ୍କ ପାଖକୁ ତ ।

ବୃନ୍ଦା—ରାଧାକୁଞ୍ଜର ସବୁ କୁଶଳ ନା ?

ବିଶାଖା—ବୃନ୍ଦେ । ସେକଥା ଅଉ ପଚାର ନାହିଁ । ଶୀଘ୍ର ଉପାୟ ନ କଲେ ଶ୍ରୀମତୀଙ୍କ ମହତ୍ତ୍ୱ—ବ୍ରଜର ବରୁ ହଜିଯିବ । ବେଶୀ ପରେ ଶୁଣିବ । ବେଳ ନାହିଁ ଅଉ । ଅସ ।

ବୃନ୍ଦା—ହଁ ଯେ, କଥାଟା କଅଣ କହ ?

ବିଶାଖା—ଶ୍ରୀମତୀ କୁସୁମ ହାରଟି ସଙ୍ଗେ କାହ୍ନୁର ବଂଶୀ ମାଗି, ରଖିଥିଲେ । କାହ୍ନୁ ପାଖକୁ ଫେରାଇ ଦେବେ ଭାବି ଧରିବା ବେଳକୁ ପବନ ବଳରେ ବଂଶୀ ବାଜିଉଠିଲା । ବଂଶୀଧ୍ୱନି ଶୁଣି ଜଟିଳା ଅସି ଉପସ୍ଥିତ ।

ସୁବଳ—( ଅଶ୍ଚର୍ଯ୍ୟ ହୋଇ ) ବୃନ୍ଦେ । ବଡ଼ ବିଷମ କଥା ।

ବିଶାଖା—ବଂଶୀକୁ ଛଡ଼ାଇ ନେଇ, ଶ୍ରୀମତୀଙ୍କୁ ଅପମାନ ଦେଇ ଯଶୋଦାଙ୍କ ପାଖକୁ ଦେଖାଇବା ପାଇଁ ଯାଉଛନ୍ତି । ପଥରେ ତାଙ୍କଠାରୁ କୌଣସି ଉପାୟରେ ବଂଶୀ ନ ଛଡ଼ାଇଲେ ସବୁକଥା ଫାଟିପଡ଼ିବ । ଶ୍ରୀମତୀ ତେଣେ ଅଧୀର ହୋଇ ପଡ଼ିଛନ୍ତି । ଯେତେ ବୁଝାଇଲେ ସୁଦ୍ଧା ବୁଝୁ ନାହାନ୍ତି । ମୋତେ କୃଷ୍ଣଙ୍କ ନିକଟକୁ ପଠାଇଥିଲେ । ତାଙ୍କୁ ନ ଦେଖିଲେ ତୁମମାନଙ୍କୁ କହିବାକୁ କହିଥିଲେ । ବେଗେ ଚାଲ । କୌଣସି ମତେ ବଂଶୀଟିକୁ ଅଣ ।

ସୁବଳ—ଅଗନ୍ତୁ ମୋତେ କହିଥିଲେ ତ ବଂଶୀଟି ସୁବିଧାରେ ଶ୍ରୀମତୀଙ୍କ ପାଖରେ ରହିଥାନ୍ତା । ଏବେ ଉପାୟ କଅଣ ? ଜଟିଳା କେଉଁଠି ଥିବେ ?

ବିଶାଖା—ପାଣି ଅଣିବାକୁ ତ ଯାଇଥିଲେ । ଘରକୁ ଫେରି ଯଶୋଦାଙ୍କ ପାଖକୁ ଯିବେ । ଏତେବେଳକୁ ଘର ପାଖେ ପହଞ୍ଚିଯିବେଣି ପରା ।

ବୃନ୍ଦା—ସୁବଳ ! ଚାଲ ! ଅଜ ଦେଖୁଛ କଅଣ ? ସବୁ ସରିଯିବ ଯେ ।

ବିଶାଖା—ନୋହୁନୋହୁ ତ ବ୍ରଜଯାକ ହୁରିପଡ଼ୁଛି । ଅଜ ବାକି ରହିବ କି ?

ସୁବଳ—ବୃନ୍ଦେ ! ତୁମେ ବିଶାଖାଙ୍କୁ ସଙ୍ଗରେ ନେଇ ଶ୍ରୀମତୀଙ୍କ ନିକଟକୁ ଯାଅ । ମୁଁ ମଧୁମଙ୍ଗଳଙ୍କ ସଙ୍ଗେ ଉପାୟ ଭାବି ସ୍ଥିର କରୁଛି । ତୁମେ ତାଙ୍କୁ ପ୍ରବୋଧ ଦେଇ କହିବ, ବଂଶୀ ଯେପରି ହେଉ ହସ୍ତଗତ ହେବ । ଚିନ୍ତା କରିବେ ନାହିଁ । ଯାଅ ।

ବୃନ୍ଦା—ହଉ, ଯେମିତି ଭଲ ମଣୁଛ, କର । ତେବେ ବେଗେ ଚାଲ ।

ବିଶାଖା—ଶ୍ରୀମତୀଙ୍କ ପାଖକୁ ?

ବୃନ୍ଦା—ହଁ (ଉଭୟ ଦୁହେଁ ପ୍ରସ୍ଥାନ)

———

## ଦ୍ୱିତୀୟ ଦୃଶ୍ୟ

### ପଥ

(ଲଳିତା ଓ ଶ୍ରୀମତୀ ଯମୁନାକୁ ଯାଉଥିଲେ)

—ଗୀତ—

ସଙ୍ଗିନୀ, ତୁ ଯେ ନଟବର ପ୍ରେମପିଅସୀ
ଗରିଧର ନାଗର, ତୋ ମନ ଗଗନର
ଅମଳ ଶରଦ ସୁଧାଶଶୀ ।୦।
ତୋ'ର ପ୍ରେମ ରୂପ ନୟନେ ଲେଖି
ତୋ'ର ବାଟେ ପଥ ଚାହିଁ
ରଜନୀ ସାରା ତା'ର ବ୍ୟାକୁଳ ଅନ୍ତର
କୁଞ୍ଜବନେ ବାଜେ ବଂଶୀ ।୧।
ତା'ର ବସନ ପୀତ, ଧନି, ତବ ଅନୁରାଗେ
ଶିରେ ରାଧାଚୂଡ଼ା ସାଜେ
ପ୍ରେମ ତୋ'ର ତା'ର କଣ୍ଠର ଭୂଷଣ ଗୋ
ରାଧା ନାମେ ବେଣୁ ବାଜେ;
ତମାଳ ମୂଳେ, ଯମୁନା କୂଳେ ନିବାସ ତୋର ଲାଗି
ରାଧାର ଲାଗି ଜନମ ଜନମ ଗୋ
ନାଗର ବର ବ୍ରଜବାସୀ ।୨।

ଶ୍ରୀମତୀ—ଲଳିତା, ଅବଳା ମୁଁ । କହନା ? କେତେ ଅଉ ସହିପାରେଁ ?

ଲଳିତା—ସହ ! ଏ ମେଘ ଉଠିଛି ଚନ୍ଦ୍ର ଢାଙ୍କିବାକୁ । ଦେଖିବ ସଖି, ବିଶାଖା ଫେରୁ ।

ଶ୍ରୀମତୀ—ଏଣେ ତ ଅଉ ବେଳ ନାହିଁ । କୁଟିଳା ଯାଇ ଯଶୋଦାଙ୍କ ଆଗେ ବଂଶୀ ଦେଖାଇଲେ, ସରିବ ତ ସହି ରାଧାର କୂଳ, ମାନ ।

(କୁଟିଳା ଶୂନ୍ୟକୁମ୍ଭ ନେଇ ପ୍ରବେଶ)

କୁଟିଳା—କିଗୋ ରାଜନନ୍ଦିନୀ ! ଭେଟ ବାହୁଡ଼ା—ବିଜେ କଲ ?

ଲଳିତା—କି ଭେଟ ?

କୁଟିଳ—ମନେନାହିଁ ? ଅହୁରି ମୁହଁ ଫିଟାଇ କହୁଛୁ କି ଭେଟ ? ସେଇ କଳାକାହ୍ନୁଲେ—ଯମୁନାକୂଳଅ—ଯାହା ବଉଁଶୀକି ଧରି ଅମ ସତୀ ଯେମାଦେଇ ଫୁଙ୍କୁଥିଲେ ବସି । ଚାଲ ଠାକୁରାଣୀ, ଘରକୁ ବିଜେକର ।

ରାଧା—ତୁମେ ଅସଜା ପାଣିନେଇ—ଅମେଘରକୁ ଯାଉଛୁଁ ।

କୁଟିଳା—ଏଗୋ, ନା ଗୋ ନା । ଚାଲ । ମୁଁ ତମ ବେଶ ବଦଳେଇବାଲାଗି ସବୁ ଯୋଗାଡ଼ ସାଇତି ରଖି ଦେଇଛି । ଚନ୍ଦନ ଘୋରି, କର୍ପୂର ଗୋଳି, କଞ୍ଚୁଳି, ନୀଳଶାଢ଼ୀ—ସବୁ ଯତନ କରି ରଖିଦେଇ ରାଜକୁମାରୀଙ୍କ ବାଟ ଚାହିଁ ବସିଥିଲି । ଘର ମଝି ଖୁଣ୍ଟରେ ବାନ୍ଧି ସେଇଟି କୁଞ୍ଜ ଭେଟ କରାଇବାକୁ । ଚାଲ, ସେଇଠି କହ୍ନାଇଙ୍କ ଭେଟୁଥିବ, ବଇଁଶୀ ଶୁଣୁଥିବ,- ଯଶୋଦାରାଣୀ ଅସିବାଯାଏ । ନାଗର ସେଠିକି ଧରା ହୋଇଯିବେ । ଘଡ଼ିଏ ବିରହ ସହୁଥାଅ । ଫେରି ସାଥୀ ହେବ ଯେ ।

ରାଧା—ଲଳିତେ, ଭଦ୍ର ତାଙ୍କ—ଜନ୍ମଜନ୍ମାନ୍ତରେ ମୁଁ ଶ୍ୟାମଦାସୀ । ପୋଡ଼ୁ ମୋର କୁଳମାନ, ଯାଉ ମୋର ଜାତିପତି । ବିରହ ସହିବାକୁ ରାଧା ପ୍ରେମ ଶିଖିନାହିଁ—କୃଷ୍ଣ ବିରହ ହେଲେ ଦିନ ଜଗତ ରାଧା ବିରହ ଦେଖିବ । ଗ୍ରହ, ତାରା, ଚନ୍ଦ୍ର, ସୂର୍ଯ୍ୟ କାହାର ଶକ୍ତି ନାହିଁ, ମୋତେ ଶ୍ୟାମ ବିରହ ଭୋଗାଇବାକୁ ।

କୁଟୀଳା—ଅଲୋ, ସେ ଦଅଁ ଦେବତା'ର ନଥାଉ—ମନପର ଅଛୁ ମ ଅଛୁ । ଅସ ଘରକୁ ।

ବୃନ୍ଦା—(ପ୍ରବେଶି) ଏଗୋ କୁଟୀଳେ । ମୁଁ ସବୁ ଶୁଣିଲଣି । ଶ୍ରୀମତୀ ଯାହା କହୁଛନ୍ତି ସବୁ ସତ ।

—ଗୀତ—

ମନମୋହନ, ତା'ର ଚୀରସାଥି, ସାଥୀ ଗୋ—
ଚଳନ୍ତି ମାଧବ, ଦରଶନେ ନାଚେ
ଗୁଞ୍ଜେ ମୋହନ ବେଣୁଗୀତ ।
ଯା'ର ବଦନ ଗୋ ହୁର ପରବାସୀ
ଅଶାପଥେ ଅର୍ଘ ତା'ର ଗୃହେଁ,
ସଇ ଚନ୍ଦନ ତ, ପରିମେ ହୃଦେରେ
ପ୍ରେମ ମିଳନ ଦାନ ଗୀତ ।ଶ୍ରୀ
ଯା' ନୟନେ ନାହିଁ ପ୍ରେମର ପରଶ
ଅଞ୍ଜନ ବଞ୍ଚେ ସିନା ସେ,
କଜ୍ଜଳ ବିନା ସଇ ନୟନେ କଳା ଗୋ—
ବିରହ ତମିର ବିନାଶେ ।
କୋଟି ଶଶୀ ନିନ୍ଦଇ ଶ୍ୟାମତନୁ
ଦେହେ ତା'ର ଖେଳେ ସେ ଛାୟା,
ନଟବର ନାଗର, ଅଲେଖ ଦୀପ୍ତ
ସେ ଗୋ ହୋମର ଅଦ୍ଭୁତ ।

କୁଟୀଳା—ଅସ ନ ଅସ, ମାଅ କହିଲ, ମୁଁ ଡାକିଲି । ମୋ ଉପରେ କାହିଁକି ଲୋ ମା ଏ ତାନ ଝାଡ଼ୁଛ ? ସେ ଜାଣେ, ତୁମେ ଜାଣ ।

( କହୁ କହୁ ପ୍ରସ୍ଥାନ )

ଲଳିତା—ଅମର ଅସ ସହ । କି ମିଳିବ ଭଲ ସେ କହେଇବଟା କଥାରୁ ? ( ପଟ୍ଟ ପରିବର୍ତ୍ତନ )

———

ତୃତୀୟ ଦୃଶ୍ୟ

ଘାଟ

କଟୀଳା—(କାଖରେ ଜଳଘଟ ଓ ଅନ୍ୟହସ୍ତରେ ବଂଶୀଧରି) ମୁଁ ଅଜଯାକେ ଜାଣିନଥିଲି, ଏତେ ଛନ୍ଦ । ଏତେ କପଟ । ମୋ ମାଅଲୋ । ଏ କାଳ ଟୋକା ଗୁଡ଼ାକ ପୁଣି ଏମିତି ହେଲେଣି ? ସ୍ତ୍ରୀଙ୍କ ଲଜ ସରମ ନାହିଁ ? କାହିଁ ବଣିବୁଦା କଟରେ ନାଗର ଖୋଜି ବୁଲୁଛନ୍ତି ? ମଳ ନାହିଁଲୋ ଯୋଡ଼ା ମୁହାଁ ଏ । [illegible] ଫୁଲ ଡାଳ ଅଣ୍ଟିଲା ନାହିଁ, କହର ମହୁରୀ ମିଳିଲା ନାହିଁ ? ଯମୁନା ନଈରେ ପାଣି ନାହିଁ ? ନାଅଁ ଗାଅଁ ପକାଉଛ, ମରୁନା ? ଏତେଦିନଯାଏ ତ ଟିକିଏ ପାଉ ନଥିଲି । ମଲ୍ଲ, ଗୈର ଘର ତ ଦିନେ ହେଲେ ଅଲୁଅ ହବ । ମୁଁ ତାକୁଇ ଅନେଇଁ ବସିଥିଲି ଗୋ ତାକୁଇ ଅନେଇଁ ବସିଥିଲି । ଯଶୋଦା ପରା ତାଙ୍କ ପୁଅକୁ ଚେକି ପକାଉଥା'ନ୍ତି ? ସେ ଯୋଡ଼ାମୁହାଁ । କଅଣ ଉଣା ? ସବୁ ନଟକୁଟ ତା'ର । ଯାଏଁ, ବେଗେ ତାକୁ ଏ ବଇଁଶୀ ଦେଖାଇ ଗୋପଯାକ ହୁରି ପକେଇଦେବି । ଅଜ ରହ, ବେଗେ ଯାଏଁ ଲୋ ମା ବାହାରି । ନେ'ହିଲି ବେଳକୁ ଏ ବଇଁଶୀ କଥା କାହ୍ନୁ ଜାଣିଲେ ଫେର୍ କି କୂଟ କପଟ କରିବ । (ପ୍ରସ୍ଥାନ)

( ସୁବଳ ଓ ମଧୁ ପ୍ରବେଶ )

ମଧୁ—କିଓ ସୁବଳ, ବୁଢ଼ୀ ତ କଅଣ ଭାବି ତେଜୁଛି ?

ସୁବଳ—ଏତେବେଳେ ପରା ହାତରେ ପଡ଼ିଛି ନିଧି ।

ମଧୁ—କୁଟୀଳା କାହିଁ ଦିଶୁନାହିଁ ତ । ଯମୁନା ଯାଉଛି ପରା ?

ସୁବଳ—ଏଇନେ ତ ଅସିବ । ତୁମେ ଯାଅ, ସେପାଖେ ଥାଅ । ସେ ଦହି ମୋହିଁ ରଖିଦେଇ ଯାଇଛି ।

ମଧୁ—ଯାହାଇଛା ତା ହେଉ ପଛେ, ଏ ସଳ ଲହୁଣୀରେ ଏକା କାହାର ଅଉ ଭାଗ ନାହିଁ ।

ବ୍ରାହ୍ମଣ ତୁଣ୍ଡେ, ଶିବ ମୁଣ୍ଡେ । ଦର୍ବ୍ୟ ଭୋଜନଟାଏ ପଡ଼ବ ।

ସୁବଳ—ତୁମର ପେଟ ଛଡ଼ା ଚିନ୍ତା ଅଉ କଅଣ କି ?

ମଧୁ—ଊଃ, ତମର ତ ନୋହିଲେ ମୁଣ୍ଡ ଚିନ୍ତା—ଗଣ୍ଡି ଚିନ୍ତା ! ଘ୍ରା···ର୍·ତ ।

ସୁବଳ—ମଧୁ, ରୁଚ୍ଛୀ ଅଇଲା ରୁଚ୍ଛୀ ଅଇଲା । ଖସ ।
(ବୁହେଁ ଦଉଡ଼ି ପଳାଇବା)

(ଏକ ଦିଗରୁ କଣ୍ଠୀଲା ଓ ଅନ୍ୟ ଦିଗରୁ ସୁବଳ ପ୍ରବେଶ)

ସୁବଳ—(ବ୍ୟସ୍ତଭାବେ ଅସି) ଓଃ, ଅଉ ପାରବି ନାହିଁ । (ବସିପଡ଼ି) ଏତେ ଖୋଜିଲି ମିଳିଲା ନାହିଁ । କେଉଁଠୁ ପାଣି କି ଘୋଳ ଦହି ଟୋପିଏ ହେଲେ ମିଳନ୍ତା ? ବଡ଼ ଶୋଷ । (ଗୃହିଁ) ଏ କିଏ ଗେ । ମାଉସୀ ! ଓଃ. ଜୀବନ ବହିଲା ଅଜ । ମାଉସୀ, ତୋତେ ଦେଖିଲି କି ଜୀବନ ବହିଲା । ଓଃ ବଡ଼ ଶୋଷ ।

କଣ୍ଠୀଲା—ହିଁ ହିଁ, ତୁମେ ସବୁ ନା ? ଗୋଟିଏ ଗୋଟିଏ ଜନ୍ତୁ, ଯାଉନା ? ଯମୁନାରେ କଅଣ ପାଣି ନାହିଁ ? ପିଇ ମରୁନା ।

ସୁବଳ—ମ, ମୁଁ ଗାଈ ପଛରେ ଦଉଡ଼ି ଦଉଡ଼ି ଥକି ପଡ଼ିଛି । ଶୋଷରେ ହିଁସା ଉଡ଼ି ଯାଉଛି । ଏତିକିବେଳେ ରାଗୁଛୁ ମାଉସୀ ? ଟୋପିଏ ଦହି କି ପାଣି ମୁହଁଏ ଦେ । ବଡ଼ ଧର୍ମହେବ । ରାଗ ନା ।

କଣ୍ଠୀଲା—ମଲାଟେ, ଏମିତି ଶୋଷରେ ବୁଲ୍‌ମର ବାହିଁକି ?

ସୁବଳ—କଅଣ କରିବ ? ନୀଳମଣିଟା ହଜିଥିଲା । ଗୋଡ଼େଇ ଗୋଡ଼େଇ ଖୋଜି ଖୋଜି ତାକୁ ପାଇଲି ନାହିଁ । ତୁଅଡ଼େ ଗଲା କେଜାଣି ? ଯା ମାଉସୀ, ଟୋପିଏ ପିଇବାକୁ ଦେ । ଓଃ ଯା ଯା, ମୋ ରାଣକି । ମୋ ମୁଣ୍ଡ ଖା । ଯା, ଭଲ ।

କଣ୍ଠୀଲା—ହଉ ଟିକିଏ ବ' । ମୁଁ ଏଇନେ ଦହି ମୋହିଁଛି । ଦେଉଚ, ରଇଥା' । ଅଣେଁ । (ପ୍ରସ୍ଥାନ)

ସୁବଳ—ଯା ଯା, ମାଉସୀ । ବଡ଼ ଧର୍ମ ହେବ ତୋର । ଉଟକା ଫଳ ଫଳିବ । ଯା ।

ମଧୁ—(ଅଳପ ମୁହଁ ଦେଖାଇ) ସୁବଳ ! ରୁଚ୍ଛୀ ଗଲାଣି ?

ସୁବଳ—ହିଁ, ଚଞ୍ଚଳ । ଫୁର୍ତ୍ତି ।

ମଧୁ—(ଦଉଡ଼ି ପଳେଇଲା)

ସୁବଳ—(ଗୃହିଁ, ସ୍ୱଗତଃ) ଅଇଲାଣି ରେ ବାବା ! (ବାହଲରେ ଗଉଡ଼ପଡ଼ି) (ପ୍ରକାଶ୍ୟେ) ଓଃ, ବଡ଼-ଶୋଷ । ହେ ଭଗବାନ ! କି କଷ୍ଟ !

କଣ୍ଠୀଲା—(ନିକଟକୁ ଆସି) ମଲା । ଶୋଇ ପଡ଼ିଲା କ'ଣ ମ ? ଉ ··ଠୁ, ନେ, ପିଇବୁ ପରା ? ଅଉ ପିଇବୁ ଯେବେ ଅଣିଦେବି । ମୁଁ ହାଣ୍ଡି ଘୋଡ଼ାଇ ନାହିଁ । ବେଗେ ସା'ର । କୋଉଠୁ ମାକଡ଼ କୁକୁର ଆସି ମୁହଁ ମାରିବେ । ଲହୁଣୀ ଗୁରାକ ପଦାରେ ଥୋଇଦେଇ ବାହାର ଅସିଛି । ବେଗେ ପିଇ । ନେ । (ବଢ଼ାଇ ଦେବା)

ମଧୁ—(ନେପଥ୍ୟେ) ଅଲେ ଖାଇଲା ଲେ । ଏ କୁଟିଆ ଅଲେ ! ଏଡ଼େ ବଡ଼ ମାକଡ଼ଟେ ଲହୁଣୀତକ ବସି ସବୁ ଖାଇଲା ।

କଣ୍ଠୀଲା—(ଉରତର ହୋଇ) ଅଲେ, ଅଲେ । ସଇଲା ଲେ ସଇଲା । ରହ, ରହ । (ବଂଶୀଟା ଫୋପାଡ଼ି ଦେଇ) ବାଜିଥିବ କି ଏଡ଼ା ବଢ଼ିଶୀରେ ପାହାରଟା । (ବେଗେ ପ୍ରସ୍ଥାନ)

ସୁବଳ—(କଣ୍ଠିଲା ପଛକୁ ବାସନ ଫୋପାଡ଼ି) ହିଁ ହିଁ—

କଣ୍ଠୀଲା—(ବାହଲରେ ପାଟିକରି) ଅଲେ ମଲି ଲେ । କେଉଁଠେ ଯୋର୍‌ରେ ଗୋଡ଼କୁ ମାଇଲୁରେ ପୋଡ଼ା ମୁହାଁ !

ସୁବଳ—ଅହା, ମାଉସୀ, ମୁଁ ମାକଡ଼ଟା ବୋଲି ବାସନଟା ଫିଙ୍ଗି ଦେଉଥିଲି । ତୋ ଗୋଡ଼ରେ ବାଜିବ ବୋଲି ଜାଣି ନଥିଲି । ଅହା । ବଡ଼ ବାଜିଥିବ । ଅ, ମାକଡ଼ଟା ଉଡ଼ିଦେଇ ଅ—ମୁଁ ପଛରେ ତୋ ଗୋଡ଼ ଟିକିଏ ଘଷିଦେବି ।

ମଧୁ—(ଲହୁଣୀ ଖାଉଖାଉ ବଂଶୀ ଧରିହସି) ଊଁ, ଏ ହେଇଚି ।

ସୁବଳ—ହଁ ପଳା, ବାଙ୍କ ବୁଢ଼ୀର ମାଙ୍କଡ଼ ତଡ଼ାଟା ମନେ ପଡ଼ୁଥିବ । ଟଙ୍କ ଯାହାର ଖାଇଛୁ । ପଳେଇବା ଗୁଲ, ନୋହିଲେ ବୁଢ଼ୀ ଅସିଲେ ଦବଟି ଚାଙ୍କେ ।

(ତରତର ହୋଇ ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

ବନପଥ ।

ଶ୍ରୀକୃଷ୍ଣ—(ଗାଇ ଗାଇ ପ୍ରବେଶ)

କାହିଁ ରେ ମୋର ପ୍ରାଣ-ପ୍ରାଣ ବଂଶୀ
ତୋ ବିରହେ ମୋର ପ୍ରାଣ-ମନ ଜାଏ ଧ୍ୱଂସି ।୦।
ତୁ ମୋର ଜୀବ ଜୀବନ
ବସନ୍ତ ମଧୁ ପବନ
ପ୍ରିୟାଙ୍କର ପରଶେ ତୋ ଭାଗ୍ୟ ଯିବ ଦଶି ।୧।

ବଡ଼ ଭାଗ୍ୟବାନ ତୁ ମୁରଲୀ । ରସମୟୀର ମଧୁର ବଧୂଲୀ ଅଧରରୁ ମଧୁ ପାନ କରି ତୋ ସ୍ୱର ଅମୃତ ଲଳିତ ହୋଇଥିବ । କେତେ ପ୍ରାର୍ଥନା କରି, କେତେ ଅଶା କରି, ଯେ ଅଧର ସୁଧା ପାନ କରି ପାରି ନାହିଁ; ତୋର କେତେ ଭାଗ୍ୟ ବଂଶୀ ? ତୁ ତାହାର ପରଶ ପାଇ ଧନ୍ୟ ହେଲୁ । ଅସ । ବଂଶୀ ଥରେ ତୋତେ ମନ ପୂରାଇ ଚୁମ୍ବନ କରି ମୋର ମନ ସାଧ ମେଣ୍ଟାଇ ଜାଏଁ । କେତେବେଳେ ଦେଖା ଦେବୁ ମୋର ପ୍ରାଣର ବଂଶୀ ?

( ମଧୁ ପଛ ପଟୁ ଅସି ପହଞ୍ଚିଲେ)

କୃଷ୍ଣ—କିଏ ?

ମଧୁ—ଅଜ ଚହ୍ନିବ କି ସଖା ? ୧ଥର ଅଖି ଦ'ଟା ଟିକିଏ ବଡ଼ ବଡ଼ ହେଇଗଲାଣି ।

କୃଷ୍ଣ—ନାଇଁ ସଖା । ଟିକିଏ ଅନ୍ୟମନସ୍କ ଥିଲି । ମନଟା ଭଲ ନାହିଁ । ଏଣୁତେଣୁ ଭାବୁଭାବୁ ତୁମ ଅସିବାଟା ଅନୁମାନ କରିପାରି ନାହିଁ ।

ମଧୁ—କାହିଁକି ? ମନ ଭଲ ନାହିଁ କାହିଁକି ? ଏଭେ— ମାନିନୀଙ୍କ ଅଭିମାନ ଗ୍ରେଟରେ ? ସ୍ତ୍ରୀ ବଶହେଲେ ପୁରୁଷର ଅବସ୍ଥା ଯାହା ହୁଏ, ସେ କଥା ଦେଖିବାକୁ ଗୁହଁଲେ, ଅମ ସଖା ତାର ପହିଲି ନମ୍ବର ଉଦାହରଣ ।

କୃଷ୍ଣ—ନାଇଁ ସଖା, ସେପରି କିଛି ନୁହେଁ ।

ମଧୁ—ତେବେ କଅଣ ଚନ୍ଦ୍ରାବଳୀଙ୍କ କଣ୍ଠ ବଣି ନ ପାରି ମନ ଭଲ ନାହିଁ ? ଦ'କଥାରୁ ତ କଥାଏ ହୋଇଥିବ । ସଖା । ମୁଁ ଗୋଟିଏ ଭଲ ଉପାୟ କହୁଛି । ତୁମେ ମଝିରୁ ଫାଳେ ଫାଳେ ବାଣ୍ଟି ହୋଇଯାଅ ।

କୃଷ୍ଣ—ମଧୁମଙ୍ଗଳ । ମିଥ୍ୟା ନୁହେଁ । ବଂଶୀଟି ହଜିବାରୁ ମୋର ମନ ଭଲ ନାହିଁ ।

ମଧୁ—ବଂଶୀ ? କି ବଂଶୀ ?

କୃଷ୍ଣ—ମୋ ବଂଶୀଟି ।

ମଧୁ—ବଂଶୀଟି ପୁଣି ହଜିଗଲା କିପରି ? ତୁମର ତ ବାରଦିନେ ତେର ଗ୍ରେଗ । ଗୋଟାଏ କିଛି ବିକାର ଥିବ ହିଁ ଥିବ ।

କୃଷ୍ଣ—ନାଇଁ ସଖା । ଶ୍ରୀମତୀଙ୍କୁ କୁସୁମହାର ଉପହାର ଦେବାକୁ ଗଲାବେଳେ ଭୁଲରେ ବଂଶୀଟି ବଢ଼ାଇ ଦେଲି । ତାକୁ କିଏ ଦେଖି ଛଡ଼ାଇ ନେଇଛି ।

ମଧୁ—ସର୍ବନାଶ । ଏଇ, ମୁଁ କହୁଛି ଯେ । ପେଟ ବ୍ୟଥା ନଥିଲେ କାନ ଟେଣାଟା ହୋଇଥିବ । ଯେପରି ହେଉ, ଶ୍ରୀମତୀ ନୋହିଲେ ଚନ୍ଦ୍ରାବଳୀ । ନସଇଟା ନୋହିଲେ କି ତୁମକୁ ଦାନା ରୁଚେ ନାହିଁ ସଖା ? ଏବେ ତ ଜନ୍ମ ପାଞ୍ଜିରୁ ଶେଷ । ବନାକେତେ ବେଶ ହୋଇ ମନ ମୋହିଲ । ସେ ପେଡ଼ି ଶେଷ୍ । ନୟନ ବାଣ ତ ପୁରୁଣା ହେଲଣି । ଅଜ କାଠୁକରୁ ନାହିଁ । ଥିବା ଭିତରେ ହାତରପାଞ୍ଚ ଥିଲା ବଂଶୀ ଖଣ୍ଡିକ ଯେ, ସେ ଖଣ୍ଡିକ ପଛି ଚଢ଼େଇ ନେଲେ । ଏବେ ତ ଉପାୟ ସରିଲା ।

କୃଷ୍ଣ—ଯାହା ହେବାର ତ ହେଉଛି । ସଖା, ଏବେ ଉପାୟ କ'ଣ ?

ମଧୁ—ଅଛୁ । ଉପାୟ କି ସବୁଯାଇଛୁ ? ରୋଗ ଯେତେ ରକମର ବଢ଼ୁଛି, ଔଷଧି ବି ସେତେ ନୂଆ କିସମର ଆମଦାନି ହେଉଛି । ଗୋଟିଏ କଥା କର ।

କୃଷ୍ଣ—କହ ସଖା । କୃଷ୍ଣର ଜୀବନ ରଖ ।

ମଧୁ—କୃଷ୍ଣର ଜୀବନଟା ତ ଉଡ଼ିଯାଉ ନାହିଁ ଯେ ଧରି ରଖିବି । ତମ କଥାର ଉତ୍ତର ତ ଲହୁଣୀ ନୁହେଁ ଯେ, ଆଁ କଲା ମାତ୍ରେ ଗିଳିଦେବି । ଏମିତି ଅଧୀର ହେଲେ ଆଉ ମୁଁ କିଛି କରି ପାରିବି ନାହିଁ । ହଁ, ସତ କହୁଛି । ତୁମେ ଯାହା ମନେ କର ।

କୃଷ୍ଣ—ନାଁ ସଖା, ଅଧୀର ନୁହେଁ । କହ ।

ମଧୁ—ତେବେ ଗୋଟିଏ କାମ କର । ବଂଶୀ ତ ଗଲା । ଆଉ ଉପାୟ ନାହିଁ । ଆମ ନେଜେବାପାଙ୍କ ଅମଳରେ ବ୍ରାହ୍ମଣ ପଣିଆଁ କରି ମେ ଗୋଟିଏ ମନ୍ତ୍ର ଶଙ୍ଖ ଆଣିଥିଲେ । କେଉଁଠି ପଡ଼ିଥିବ କି କ'ଣ । ମୁଁ ତାକୁ ସଫା କରେଇ ଆଣି ଦେଉଛି । ତାକୁ ଧରି, ଯମୁନା କୂଳେ ବସି, ଟିକିଏ ଯୋରରେ ଗଧ ପରି ଦିନ ରାତି ଭେଁ ଭେଁ କର । ବାକି, ରାଧା ରାଧା ଆଉ ଡାକି ପାରିବ ନାହିଁ । ନୋହିଲେ ପଛେ । ଗୁଡ଼ଃ ।

କୃଷ୍ଣ—ମଧୁମଙ୍ଗଳ । ଏ ପରିହାସ କି ଏତେବେଳେ ?

ମଧୁ—ମଲା ଯା, ମୁଁ ମନେ କରୁଛି ସଞ୍ଜହେଲଣି ବୋଲି । ସେଇଥିକି ପରିହାସ କଲି । ସତ କହିଲି, ଉପାୟ ବତାଇ ଦେଲି, ଆଉ ପରିହାସ କ'ଣ ?

କୃଷ୍ଣ—ନା ସଖା, ମୁଁ ସୁବଳଙ୍କୁ ବଂଶୀ ଆଣିବାକୁ ପଠାଇଛି, କଅଣ ହେଲା, ଜାଣିନାହିଁ ।

ମଧୁ—ହେଇଟି, ସୁବଳତ ମୁହଁ ଶୁଖେଇ ଆସୁଛନ୍ତି । ହବ କଅଣ ? ତାଙ୍କ ମୁହଁରୁ ତ ଜଣା ପଡ଼ୁଛି ।

ସୁବଳ—(ପ୍ରବେଶ)

କୃଷ୍ଣ—ସଖା । ଆଣିଲ ?

ସୁବଳ—ଆଉ ସେ ଅଛି ଯେ, ଆଣିବି ? ଜଟିଳା ତାକୁ ନେଇ ପୋଡ଼ି ଏକାଟବଲେ···

ମଧୁ—ମୋ କଥାଟା ଗଡ଼ିଗଲା । ମୁଁ ସେତିକିବେଳୁ କହୁଛି, ସତ କଥାଟା ଆଗେ ଆଗେ ଫଳେ । ତା ମୁହଁରୁ ଦେଖୁନ ଯେ, କହୁଛ ଆଣିଲ ? ସୁବଳ କି ଆଉ ଜାଦୁ କରିବ ?

କୃଷ୍ଣ—ସତ କହୁଛ ସୁବଳ ?

ସୁବଳ—ଅବିଶ୍ୱାସ ହେଲେ ଏମିତି ଲୋକଙ୍କୁ ପଠାଅ କାହିଁକି ?

କୃଷ୍ଣ—ସୁବଳ । ମଧୁମଙ୍ଗଳ । କୃଷ୍ଣର ପ୍ରାଣ ବଂଶୀ ମଧ୍ୟରେ । ସେ ଯେବେ ଗଲା, ଆଉ କୃଷ୍ଣର ଅଧା ଜୀବନ ଥାଇ କି ଲାଭ ? ତୁମେମାନେ ସମସ୍ତଙ୍କୁ କହିବ । ମୋ ଲାଗି ବିଦାୟ ମାଗିବ । ମୁଁ ବଂଶୀ ସଙ୍ଗେ ଯିବି ।

ସୁବଳ—ତୁମେ ଏକା ଯିବ କାହିଁକି ? ଆମ୍ଭମାନଙ୍କୁ ଟିକିଏ ସଙ୍ଗରେ ନିଅ ।

ମଧୁ—ହଁ ଆଉ କଅଣ ? କେଉଁଠି ହେଲେ କାହା ପାଖକୁ ଫୁଲହାର ଖଣ୍ଡେ କି ଚିଠାଉ ଖଣ୍ଡେ ଦେଇ ପଠେଇବେ । ଆମମାନଙ୍କୁ ସଙ୍ଗରେ ନିଅ ।

ସୁବଳ—ଯା, ମଧୁ । ତୁମର ବିବେକ ନାହିଁ । ସଖା ଅକାରଣେ ବିରକ୍ତ ହେବେ ।

ମଧୁ—ହଁ ବାବୁ । କାଲେ ମୋ ନାଆଁକୁ ଧରି ବଂଶୀରେ ମଧୁ ମଧୁ କରି ଯେବେ ଫୁଙ୍କିବେ, ଫେର୍ ମୋ ମହତ ଶେଷ । ଓଃ ସଖା । କ୍ଷମା କର । ବଂଶୀଟା ନାଇଁ ପରା ? ଧେତ୍ । କେମିତି ମନ କେଜାଣି ? କିଛି ମନେ ରହୁନାହିଁ । (କାନ ମୋଡ଼ି ଗୁପୁଡ଼ା ଖାଇ) ଏଇଥର ଠିକ୍ ମନେ ରହିବ ।

କୃଷ୍ଣ—ସୁବଳ, ତୁମେମାନେ ମୋର ଦୁଃଖ ଦୁଇଗୁଣ କରି ବଢ଼ାଇ ଦେବାକୁ ଇଚ୍ଛା କରୁଛ । ନା—ତହିଁ ପୂର୍ବରୁ ମୁଁ ଯମୁନା ଜଳ ଭରସା କରିବି । ଯାଏଁ ।

ସୁବଳ—ମଧୁ, ତୁମେ ଯାଅ । ତୁମର ଏଠି ରହିବାର ପ୍ରୟୋଜନ ନାହିଁ, ଯାଅ ।

ମଧୁ—ମୁଁ ତ ଆଉ କାହ୍ନୁ ନୁହେଁ ଯେ, ରାଧିକାଙ୍କଠାରୁ ଧମକ ପାଇ ମଧୁର ଗଳାରେ ଗୀତ ପଦେ ଗାଇ ଗାଇ ଶୁଖିଲା ଲୁହ ଝରାଇ ଝରାଇ ବିଦାୟ ନେଇଯିବି । ମୋର ବି ଓସ୍ତାଦ କାଇଦା ଅଛି ।

ଯୋ'ଟେ କିଛି ଉଦ୍ଧମର କର ନ ହେଲେ, ଅଭି-ନନ୍ଦନଟା ବିଗିଡ଼ିଯିବ । ଦେଖେଁ, ନନାଙ୍କ ବସ୍ତ୍ରାନ୍ତରୁ ଯାହା ମିଳିବ ( ବଂଶୀ କାଢ଼ି ) ଆମର ଏଇଟା ଫୁଙ୍କି ଫୁଙ୍କି ଏମିତି ସଙ୍ଗୀତ ଗାଇଲା ପରି ଚାଲିଯିବା ।

( ଫୁଙ୍କି ଫୁଙ୍କି ଗଲେ—ସୁବଳ ହସୁଥିଲେ )

କୃଷ୍ଣ—ଏଁ, ଏତ ମୋ ବଂଶୀ । ସୁବଳ, ତୁମମାନଙ୍କ କେତେ ପରିହାସ ଆସେ ? ମଧୁମଙ୍ଗଳ, ସଖା ମଧୁ ?

ମଧୁ—( ଚମକି ) କିଏ ? ପୁଣି ପଛରୁ କାହିଁକି ? ଅଭି ମଧୁ, ବଧୂ କି ସାଧୁ କେହି ଶୁଣିବାକୁ ନାହାନ୍ତି ବାବୁ । ଶକଡ ବଜାଇବାଗୁଡ଼ୁ ପାହାର ବାଜୁଛି । ଆମକୁ କି ଅଭିମାନ ଆସେ । (ଫୁଙ୍କିବା) ମଲି, ରାଧା ରାଧା ନୋହିଲେ ଗଧା କଥା କି ଏ ବଂଶୀଟା ଡାକୁନାହିଁ ?

କୃଷ୍ଣ—ଡାକୁ । ମୁଁ ଶୁଣିବି ପଛେ । ଆସ ।

ସୁବଳ—(ଟାଣିଆଣି) ମଧୁ । ହୋଇଗଲେ, ହୋଇଗଲା । ଆସ ।

ମଧୁ—(ବଂଶୀ ଦେଇ) ନିଅ, ଧର । ବାଉଁଶ ଖଣ୍ଡକୁ ଏତେ ଲୋଭ ? ହଉ ନିଅ ।

କୃଷ୍ଣ—କିପରି ପାଇଲ ସଖା ?

ସୁବଳ—ଉପାୟ କରି, ଯନ୍ତ୍ର ମନ୍ତ୍ର କରି । ତୁମେ ଯାହାର ସହାୟ ତାହାକୁ, ତାକୁ କି ଉପାୟ ଅଜଣା ?

ମଧୁ—ଇଟାର ଲଳିତାକୁ ମାଙ୍କଡ଼ ଖୁଆଇ, ବଂଶୀ ଚୋରି ହେଲା—ସେତ ଖଣ୍ଡେ ପୁରାଣ । ପରେ ଶୁଣିବ । ଚାଲ ଆଗେ ଯମୁନା କୂଳକୁ, ସେଠି ବସି କରି ଆଉ ବଂଶୀଟା ବଜେଇବାଟି । ଜଟୀ କୁଟୀ ଶୁଣୁ ।

କୃଷ୍ଣ—ସେତକି ନୁହେଁ ମଧୁମଙ୍ଗଳ, ତାକୁ ଉଚିତ ଦଣ୍ଡଦେବା ।

ସୁବଳ—ଏ କି ବକେଇ ପଡ଼ୁଛି ?

ମଧୁ—ମଧୁ ତ ସେଥିକି ରଜାଟାଏ । ଆଜି କହ ।...

କୃଷ୍ଣ—ମୁଁ ତାର ଉପାୟ କହୁଛି । ତୁମେମାନେ ସେହିପରି କରିବ । ଗୋପବଜାରରେ ତାକୁ ଆଜି ଯେପରି ବାଟ ଚାଲିଇ ନଦେବ ।

ମଧୁ—ହଉ, ସେ ତ ପଛେ । ବାଟେ ବାଟେ କହି କହି ଯିବା । ଚାଲ ମନ ଭଲ କରି ନିଜେ କିଛି ସର ଲବଣୀ ଖାଅ । ବ୍ରାହ୍ମଣଙ୍କୁ କି କିଛି ପଥି କରାଅ । ଚାଲ ।

ସୁବଳ—ଅଜି ଅମେ ?

ମଧୁ—ଅକାରଣେ ପେଟ ଫାଟିବ । ତମ ଗୋହରେ କେବେ ସରଳହୁଣୀ ଚଳେ ? ତୁମେ ସବୁ ବକିବାକୁ କରିବ ନାଁ । ଚାଲ ସଖା । ମନ ବୋଧ କରି ପେଟେ ଅଗ ଖାଇବାଟି । ମୁହଁଟା ଟିକିଏ ଓଦା ଓଦା ହେଉ । ଶୁଙ୍ଘି ଯାଉଛି ।

( ସେଜନ ପ୍ରସ୍ଥାନ )

(ବୃନ୍ଦା ଗାଇଗାଇ ପ୍ରବେଶ)

ଚନ୍ଦ୍ରାନନେ ଫୁଟିହାସରେ,
ଅଜି କାହିଁକି ଶ୍ୟାମ ନିରାଶ ।୦।
ନିରଜ ନେତ୍ରରୁ, ସୁଧା ଛଟା ଝରୁ—
ହରୁ ମନର ପରାଶ । ।
ମାନିନୀ, କୋପିନୀ, ଗୋପିନୀ ମନହର
ମୁରଲୀଧର ଶ୍ରୀନିବାସ,
ପୀତବାସ, ପଦଢାଣ, ବନ୍ଧୁଲି ଅଧର ବିକାଶ
ଥରେ ବିଭଙ୍ଗ ଭଙ୍ଗୀ ପ୍ରକାଶ ।୨।

(ଗାଇ ଗାଇ ପ୍ରସ୍ଥାନ)

———

## ପଞ୍ଚମ ଦୃଶ୍ୟ

ପଥ ।

ଲଳିତା— (ଗୀତ)

ଘନ ନୀଳ ଯମୁନା ଜଳେ
ଚକ୍‌କଣ ଢାଲଅ ଖେଳେ, ସଖି ।
କଳା ଖଞ୍ଜନ ଖେଳିଲେ ସହି,
ଠାରେ ମୋତେ ଭଲା ଭଲା ଅଖି ।୦।

ତେଜ ମଥା ପାହାରେ ବାଜେ
ଦେଖେଁ କଳା ଶିଉଳୀ ଶେଟକ ଗୋ
(ମୁଁ) କଳା ବୋଲି ଚମକି ଉଠେ
କୋଇଲି ଦେଲେ ଡାକ ଲୋ ।୧।
ସୁଅମନଷ୍ଟା କଅଁଳ ତଳେ କଳା ହାତ ଠାରେ ଗୋ
ମୁଁ କଳା ଭାବ ତମାଳର ବାଆଁରେ ଉଭାରେ ଗୋ
ଉଡ଼ିଗଲେ କୃଷ୍ଣକୋଇ
ମନେପଡ଼େ କୃଷ୍ଣ ଡାକ ଗୋ,
ମୁଁ ଗୋ କଜ୍ଜଳ ନ ଦେଉନେ ସହି,
କଳା ଅଖି ଦେଖି ଲୋ ।୨।

ବିଶାଖା—(ପଛରୁ ଆସି)—ଲଳିତେ ।

ଲଳିତା—(ଚମକି ଚାହିଁଲେ) କିଏ ?

ବିଶାଖା—ମୁଁ ବିଶାଖା, ଶ୍ୟାମ ନୁହେଁ ।

ଲଳିତା—ନାଇଁମ । ମୁଁ କଅଣ କହିଲି କି···

ବିଶାଖା—ମୁଁ କଅଣ ଶୁଣୁ ନଥିଲି ? ଶୁଣିଛି ମ, ତୋ ମନ କଥା । କିଗୋ ! ବଡ଼ ବେଣୀ ହେଲୁ ଯେ ? ଶ୍ୟାମ-ପ୍ରେମ ବାଲୁକାରେ ଭାସି ନଯାଇ ଶ୍ରୀମତୀ ନୋହିଲେ ରକ୍ଷା ।

ଲଳିତା— ନାଇଁ ମ । ଖାଲିଟାରେ ଯାହା ମନ ତା ଗାଇ ଦେଉଥିଲି ନା—ଜିଭରୁ ଶିର କାଢ଼ିବୁ ଲୋ ମା ତୁ ଯୋଉଠି ଥିବୁ ।

( ଶୀଘ୍ର ମଧୁ ପ୍ରବେଶ )

ମଧୁ— ଅଜ ମୁଁ ଯେଉଁଠି ଥିବ ?

( ସୁବଳ ପ୍ରବେଶ )

ସୁବଳ—ଚୂଡ଼ାରୁ ଦହି କାଢ଼ିବ ତୁମେ—

ଲଳିତା—ଉଠ ଉଠ, ଏ ଗୁରାକ ସବୁଠେଇଁ ପଛେ ପଛେ ଲାଗିଛନ୍ତି । ଅଜ ଉପାୟ ନାହିଁ ।

ମଧୁ—ଲଳିତେ । ସବୁଥିର ଉପାୟ ଅଛି । ଏଥିର ନାହିଁ କେମିତି ? ଅଛି ।

ସୁବଳ—କି ଉପାୟ ମଧୁ ?

ମଧ—ଅରେ ଝୁଲ । ତାଙ୍କ କହ, ନସ୍ୟନ ବାଟେଟା ଅଗ୍ନିକର ହାଣିଲେ ପୁରୁଷ ଜାତ ଏକାଥରେ ଥାନ ଛାଡ଼ ବନେ ବନେ ବୁ ।

ବିଶାଖା—ଲଳିତେ । ତୁମେ ଥାଅ । ମୁଁ ଯାଏଁ, ଫୁଲ ତୋଳେଁ । ଏ ରଙ୍ଗ ରହସ୍ୟ ମୋତେ ଭଲ ଲାଗୁନାହିଁ

ଲଳିତା—ମ । ମୁଁ ତେବେ କି ଏକା ରହିବ ? ନାଁ, ମୁଁ ବି ଯିବ ।

ସୁବଳ—ଏକା କପର ? ଏଇ ଆମେମାନେ ତ ଅଛୁଁ । ଯାହା ଅଦେଶ କରିବ, କରିବୁ ।

ବିଶାଖା—ସଖି । ତୁମେ ଆସ ବା ନ ଆସ ମୁଁ ଗଲି ।

( ପ୍ରସ୍ଥାନ )

ମଧୁ—ଗଲେ ଯା । କେହି ପଛରେ ଗୋଡ଼େଇ ଯିବେ ନାହିଁ । ଭାରି ତ । ଓଃ !

ଲଳିତା—ମଧୁମଙ୍ଗଳ, ପରିହାସଟା ଛାଡ଼ । କୁହ, ତୁହେଁ ଯାକ କୁଆଡ଼େ ଆସି ପହଞ୍ଚିଛ ?

ସୁବଳ—ଶିକାର ଦେଖିବାକୁ—

ମଧୁ— ତୁମର ପଛେ ପଛେ ଗୋ ।

ଲଳିତା—(ନେପଥ୍ୟକୁ ଚାହିଁ) ସୁବଳ, ମଧୁମଙ୍ଗଳ । ରଙ୍ଗ ରହସ୍ୟ ରଖ । ମୁଁ ଯାଏଁ । କଣ୍ଠୀବୁଢ଼ୀ ପାଣି ଅଣିବାକୁ ଅସିଲାଣି । ଅଉ ରକ୍ଷାନାହିଁ ।

( ପ୍ରସ୍ଥାନ )

ସୁବଳ— ଅମେ ତ ସେଇ ପର୍ଯ୍ୟନ୍ତ ଚାହିଁଥିଲୁ । ମଧୁ, ମୁଁ ତେବେ ଯାଏଁ ।

ମଧୁ—ହଁ, ବେଗେ ନାଁ, ପଳୁଛ ? (ସୁବଳ ପ୍ରସ୍ଥାନ) (ମୁଣ୍ଡ କୁଣ୍ଡାଇ) ଦେଖାଯାଏତ ମଧୁର କରାମତିଟା । (ନେପଥ୍ୟକୁ ଚାହିଁ) ଆଖ ଠାରିଲି—(ଥରଥର ହୋଇ ମୁଣ୍ଡ ହଲାଇଲା) ହୁଁ । ଭଲ କହିଲେ ମନ୍ଦ । ମୁଁ ଉପଦେଶ ଦେବାରୁ ମୋ କଥା ଗଣିଲା । ସେଇଟା ରଜାଘର ଝିଅ, ଭଲଲୋକ ଘରର ବୋହୂ । ତାକୁ କହିଲି ଯେ ମାନିଲା ନାହିଁ । ବେଶ୍, ମୁଁ ଅଜ ଦଉଡ଼ ଧରେଇ, ଧନ ସତ ନାହିଁ । ସବୁବେଳେ କନ୍ଦାଇ କନ୍ଦାଇ କହି ଉଛନ୍ତି । କାହ୍ନୁ ବି ରଜାଘର ପୁଅ ବୋଲି କଅଣ ତାକୁ ସବୁ ନ୍ୟାୟ ପାରିଯିବ ? ତେଣେତେଣନୁଁ ଜଟୀ ମାଉସୀକୁ ମୁଁ ସବୁ କହନ୍ତିଣି । ଲୋକରେ ତା ଅଗରେ କହିବାକୁ ନାହିଁ । ଏଣିକି କଥାଟା

ବେଶୀ ହେଲା । ଅଜ୍ଞ ଯେମିତ ହଉ, କହିବ ।
(ଗୃହିଁ) ଏଁ, ଜଠି ମାଉଷୀ ତ । ହୁଁ ଜଠୀମାଉଷୀ ତ,
(ଫେରି) ଠିକ ଏ ଯୋଗରେ କହିଦଏଁ । ମୋ
ଜଠୀ ମାଉଷୀଙ୍କୁ ଠକି ଦେବାକୁ ସମସ୍ତେ ତିଆର ।
(ଗୃହିଁ) ଅଜ୍ଞ ଆସୁ ଜଠୀ ମାଉଷୀ । ନରଣ୍ଟି
ସବୁକଥା କହି ଧରେଇ ଦେବ ।

ଜଠୀ—( ପଢ଼ି) କରେ ପୁଅ । କଅଣ ଜଠୀ ମାଉଷୀ
କହୁଥିଲୁ ?

ମଧୁ—ମଲି, ନ ାର ଏତେ ବହୁତ ଅଇଣ ମାଉଷୀ ।
ବହୁତ ଧନ ବଞ୍ଚିଲୁ । ହଁ ମାଉଷୀ ବଞ୍ଚିବହ । ଆମକୁ
କୁଧ ନାହି ଚୋପିଏ ହେଲେ ମିଳିବ ।
(ଜନାନ୍ତିକେ) ସେଥିକ ଯେମିତ—(ପ୍ରକାଶ୍ୟେ)
ହଁ, ବହୁତ ବଞ୍ଚିଲୁ ।

ଜଠୀ—ଅଜ ବଞ୍ଚିବହ ସୁଖ ନାହିଁରେ ପୁଅ । ବେଗେ
ମଲେ ଯାଏ । ତୁ କଅଣ ଧରେଇ ଦବୁ—କହୁଥିଲୁ
କହିଲୁ ? ସେ ବଞ୍ଚିବାରୁ କ ମିଳିବ ।

ମଧୁ—ଅହା ହା । ସେକଥା କହନା, ଯେ ତୋର
ବେଗେ ମରିବା କଥା କହୁଛୁ ତା'ର, ସବୁ ହଉ ।

ଜଠୀ—କଥା କଅଣ କହିଲୁ ?

ମଧୁ - ନାଇଁ କିଛୁ ନାଇଁ, ଛାଡ଼ । କଅଣ ସେଗୁଡ଼ାକ
ଶୁଣିବୁ ?

ଜଠୀ—ମୁଁ ନଥିବା ବେଳେ ଏତେ ଧମକ ଚାହୁଥିଲୁ ।
ମୁଁ ଆସି ପହଞ୍ଚିଲାରୁ ସବୁ ଚୁପ୍ । ମୁଁ ସବୁ
ଶୁଣୁଥିଲି, କହ ।

ମଧୁ—ନା, ଅଜ୍ଞ ଦିନଟା ଯାଉ । ଏଥରଟା ତୋତେ
କହିବ ନାହିଁ, ଅଜ୍ଞ ଥରେ । ତୁ ସଂଗନା ଅଜ,
ମୋର ତୋତେ ଭାରି ଡର ।

ଜଠୀ—ଉହୁଁ । କହ, ଶୁଣେ, ମୁଁ ରାଗ ହେବ
କାହିଁ କି ? କହ ।

ମଧୁ—ମାଉଷୀ, କହିବ ତେବେ ? ଉହୁଁ—କଥାଟା
ଅଧା ଭିତ୍ ଯାଏ ଆସି ଫେର୍ ନେଉଛି ଯାଉଛୁ ।
କଅଣ କହିବ, ନ କହିଲେ ବ ଦିନକୁ ଦିନ
କଥା ବଢ଼ିପଡ଼ିଲା । ଛି, ଏଗୁଡ଼ାକ ଲାଜର କଥା ।

ଶୁଣିବା ଲୋକଙ୍କୁ ଲାଜ ଲାଗୁଛୁ । ଏମାନେ ଏତେ
ନିର୍ଲ୍ଲଜ । ଛିଃ ।

ଜଠୀ—କଥା କଅଣ କହୁନୁ ? କହ କହ, ମୋ
ସୁଣଟି,

ମଧୁ—ମାଉଷୀ, ଶୁଣ ଏବେ । ତୁ ଅଜ ମୋ ସୁଣଟିକି
ମରିବା କଥାଟି କହନା । ବଡ଼ ବାଧୁଛୁ । ମୁଁ ପଛେ
ମରେଁ, ତୁ ଥା ।

ଜଠୀ—ଅହା, ସେକଥା କହନା, ତୋ ବଇସି
ମୁହଁରେ ନିଆ ପଡ଼ୁ । କହ ଧନ ।

ମଧୁ—ଜଣ କ ବୃଧିକାଟା ସବୁବେଳେ କାହ୍ନୁ ସଙ୍ଗେ
ମାତୁଛୁ । ଏଇଟା ତେବେ, ସତେ ସମସ୍ତଙ୍କ ବଡ଼
ନିନ୍ଦାକଥା । ମୁଁ କାହ୍ନୁକୁ ବୃଧିକାକୁ ଯେତେ
କହିଲି ଶୁଣିଲେ ନାହିଁ । ଅଜ୍ଞ ଏବେ ଦେହେଁ—
ଏଇ ଦେହେଁ ଏଇ ଦିନଟାରେ କୁଞ୍ଜରେ ବସିଛନ୍ତି ।
ଯାହା ଯାହା ଲୀଳା ହେଉଛୁ,—ତୁତ ମାଉଷୀ, ମୁଁ
ପୁଅ, ଅଜ କ'ଣ କହିବ ? ଅଜ ବ ମୁଁ କହିବାରୁ
ମୋତେ କହିଲେ ଆମେ କାହାକୁ ଡରୁ ନାହିଁ ।
ଯା ହବ ହବ । ରାଧା ତ କହିଲା, ଜଠୀ କୁଟିଙ୍କୁ
ଡରୁଛୁ ? ମୁଁ ତାଙ୍କ ଆଖିରେ ଧୂଳି
ଦେଇଦେବ । କେତେଥର ଦେଇଛୁ । ମୋତେ
ବଡ଼ ରାଗ ଲାଗିଲା । ହଁ, ସତେ ମାଉଷୀ, ତୋତେ
ଖୋଜୁଥିଲି ।

ଜଠୀ—ଓହୋ, ସେ ଛତରଖାଇର ପୁଣି ଏତେ ଗରବ ?
ସେ ପୁଣି ମୋ ନାଁ ଧରି ଏକଥା କହିଲା ?
ହଇରେ ପୁଅ, ସତ ? କଅଣ କହୁଛୁ ବା ?

ମଧୁ—କହିବ କଅଣ ମ ? ଗୁଲ୍ଲନୁ । ଏଇନେ ତ
ସେଇ କୁଞ୍ଜଲୀଳା ଲାଗିଛୁ, ଦିନ ଦି'ପହରେ ।
ଧରେଇ ଦେବ, ଗୁଲ୍ । ସତ କ ମିଛ ଦେଖିବୁ ।
ଆଖି ତ ଅଜ ମାଗି ଅଣୁନାହୁଁ । ମୁଁ ମିଛକଥା
ଜାଣେ ନାହିଁ । ଯାହା କହିବ ସତ । କହି
ନଥିଲି, ଯେବେ କହିଲିଣି, ସବୁ ସାଫାସଫ
କହିଦେବ । ଗୁଲ୍ ମାଉଷୀ, ମୁଁ ତୋତେ ବାଟ

ବଢୋଉଛୁ । ଅଜ ଶୁଣାଶୁଣି କଥାଟା ସତ ଫଳେଇ ଦେବ ।

କଣ୍ଟୀଳା—ମୁଁ ତ ଖୋଜୁଛୁ । ଚାଲ୍, ଧରେଇ ଦେଲେ ସେ ଛତରଖାଇଙ୍କ ନାଣ୍ଡିମୁଣ୍ଡ କରି ଗୋପଯାକ ବୁଲେଇ ଘରୁ ଖେଦଦେବ । ଅଜ ତଡେ ପେଟେ ସଜ ଲହୁଣୀ ଖାଇବାକୁ ଦେବ ।

ମଧୁ—ତୁ ଦରୁ କ'ଣ ମ ? ମୁଁ ତ ଗ୍ଳଭେ ଅଦାସୁ କରିନେବ । (ଜନାନ୍ତରେ) ସେଇଥର ମାଙ୍କଡ଼ ଛଡ଼ାପର—(ଜଭ କାମୁଡ଼ି) ଚାଲ ମାଉଷୀ, ଅଉ ଡେରି କରନାହିଁ । ମୁଁ ଆଗରେ ଯାଉଛୁ । ତୁ ଅଧବାଟିଅରେ ଥିବୁ । ମୁଁ ସୁର୍ ସାର୍ ବୁଝି ତୋତେ ନେଇ ଠିକଣା ଯାଗାରେ ଠିଆ କରେଇ ଦେବ । ଦେଖିବା, କେମିତ ଅଖିରେ ଅଜ ଧୂଳିଦେବ ।

କଣ୍ଟୀ—ସେମିତ ହେଲେ, ଅଜ ଅଖିରେ ଧୂଳି ? ଅଖି ଆଗରେ ମିଛ ?

ମଧୁ—ଅଉ ଧୂଳିଦେବ ? ତୋର ତ ମାଉଷୀ ବୁଢ଼ୀକାଳ ଅଖିରେ ଚୋଙ୍ଗା ଢନର ବଳ ପଡ଼ିଥିବ । ହଁ, ମୁଁ ଯାହା କହେଁ—ସତ କଥାଟା କହେଁ, ଚାଲ ଚାଲ । ବାକି ମୁଁ ଯାହା ଯେମିତ କହିବି ସେମିତ ନ କଲେ ମୋର ଦୋଷ ନାହିଁ ।

କଣ୍ଟୀ—ହଁ, ମୁଁ ସେମିତ କରିବ ।

ମଧୁ—ଚାଲ ଚାଲ । ଡେରି ହେଇଯିବ ।

କଣ୍ଟୀ—ଅଜ ଦଉଡ ।

ମଧୁ—ତୁ କଅଣ ମ ? ମୁଁ ଅଗେ ତ ସେଇ ବାଉଁଶ ବଇଁଶୀ ଷଣ୍ଡଙ୍କ ଛଡ଼େଇ ମୁଣ୍ଡରେ ଏମିତ ପାହାର ଦେବ ଯେ, କାହ୍ନୁର ଟନ ଭଙ୍ଗିଅ ଠାଣି ଘୁଞ୍ଚିଯିବ । ତୋ ଭାଗକୁ ଗୁଧା—ଏଁ, କଅଣ କହୁଛୁ ? ମନକୁ ଅସିଲା ନାଁ ? ଚାଲ ।

———

## ଷଷ୍ଠ ଦୃଶ୍ୟ

ପଥ

(ବୃନ୍ଦା ଗାଇ ଗାଇ ପ୍ରବେଶ)

—ଗୀତ—

କୁଞ୍ଜେ, ବାଜେ ମୋହନ ମୁରଲୀ
ଧଇର୍ଯ୍ୟ ଧରିବ କେ ସଖି, ବ୍ରଜେ ଅଛୁ କି
ଗୋପ ନାଗରୀ ? ।୦।
ନବ ବସନ୍ତ ସଞ୍ଚାର
ଅନନ୍ଦ ସୁଧା ଧାର
ମଞ୍ଜୁଳ ମଞ୍ଜିର,—ମଧୁ ଗୁଞ୍ଜନ କର, ମୃଦୁଚରଣ
ପ୍ରେମ ଛବି, କୁଞ୍ଜ ରବି, କାନନ ଗୃହୀ ।୧।
(ଗାଇ ଗାଇ ପ୍ରସ୍ଥାନ)

———

## ସପ୍ତମ ଦୃଶ୍ୟ

(ମଧୁ ଓ କଣ୍ଟୀଳା ପ୍ରବେଶ)

କଣ୍ଟୀ—କାହିଁ ? କାହାରି ତ ଦେଖା ନାହିଁ ? ଓମ ଟୋକା ପଣ୍ଡାଙ୍କୁ ବିଶ୍ୱାସ ନାହିଁ । ମିଛରେ ବୁଢ଼ୀଟାକୁ ଏତେବାଟ ଭଣ୍ଡାଇ ଅଣିଲୁ ନାଁ ? ଧର୍ମ୍ମଥିଲେ ବୁଝିବ ।

ମଧୁ—ମାଉଷୀ, କଥା ମାନ୍ । ତୁ ନ ଦେଖି ନ ଶୁଣି ବାଇ ହେଲେ କି ହେବ ? ତୁ ଏଇ ନଟିଗଛ କଡ଼ରେ ଟିକିଏ ରହ । ମୁଁ କଦର ବୁଝି କେଉଁଠି ଅଛନ୍ତି ଦେଖି, ତୋତେ ନେଇ ଠିକ୍ ଜାଗା-ମୁଣ୍ଡରେ ପହଞ୍ଚାଇ ଦେଇ ଅସୁଛି । ତୁ ଦେଖ, ନୋହିଲେ ଅଉ ଦନକୁ ଅଉ ଦନେ ନାହିଁ ? ଫେର୍ କଥାବାର୍ତ୍ତା ହେବା ନାହିଁ ? ଥ ।

(ବେଗେ ପ୍ରସ୍ଥାନ)

(ନେପଥ୍ୟେ) ତୁ ଏଇଠି ବସିଥା । ମୁଁ ଦେଖି ଅସୁଛି । ଥସୁଧର ମାଉଷୀ । ତୋ ଠାଇଁ ତ ମୋ ଗୁଣ ଢ'ଗୁଣ ଜଳୁଛି ।

(ପୁନଃ ପ୍ରବେଶ)

ମଧୁ—କାହିଁଗଲେ ? କହିଥିଲ ଏଇଠିଥିବେ । ଦେଖେଁ ।

(ପ୍ରସ୍ଥାନ)

(କ୍ଷଣକାଳ ପରେ ଶ୍ରୀକୃଷ୍ଣ ଏବଂ ସୁବଳ ରାଧା
ବେଶରେ ପ୍ରବେଶ)

କୃଷ୍ଣ—ମଧୁମଙ୍ଗଳ, ଅମେମାନେ ଏଇଠି ବସିଛୁଁ, ତୁମେ ଯାଅ ।

ମଧୁ—ଖୋଜ ଖୋଜ ଅଙ୍କାଗଲଣି । ଫେର୍ ଯେମିତ କୁଆଡ଼େ ଢ଼ଳନ୍ତୁ ନ ଦଅ । ଦୁହେଁ ଏଇଠି ବସିଥାଅ । ବାଙ୍କ ମୁଁ ବୁଢ଼ୀକି ଦେଖେଇ ଦେଇ ସେଇଅଡ଼େ (ଠାରଦେଇ) ଏଁ ?

କୃଷ୍ଣ—(ଉପବେଶନ କରି) ମଧୁମଙ୍ଗଳ ବଡ଼ ଅଡୁଆରେ ପଡ଼ିଛନ୍ତି । ଦେଖାଯାଉ, ଘଟଣାଟା କ'ଣ ହେଉଛି ।

ରାଧା—କଅଣ ହବ କେଜାଣି ?

କୃଷ୍ଣ—(ନେପଥ୍ୟକୁ ଚାହିଁ) ତୁନିହୁଅ, ତୁନି ହୁଅ, ବୁଢ଼ୀ ଆସିଲାଣି । (ମଧୁ ଓ ଜଟୀ ପ୍ରବେଶ । ମଧୁ ବୁଢ଼ୀ କାନରେ କହି ଠାରି ଦେଇ ପ୍ରସ୍ଥାନ)

(ଶ୍ରୀକୃଷ୍ଣ ଦଣ୍ଡାୟମାନ ଓ ରାଧାବେଶୀ ସୁବଳ ତାଙ୍କ
ପଛରେ ଲୁଚିବା)

ଜଟୀ—(ପ୍ରବେଶ) କିଗୋ ସତୀ, ଲୁଚିବାକୁ ଆଉ ନାହିଁ, ମୁଁ ସବୁ ଦେଖିଲିଣି । ଆଜ ଏତେବେଳକେ ଧରାପଡ଼ିଛୁ । ସେଦିନ ପରି ବଇଁଶୀଟା ପାଇକରି ଆଣିଥିଲୁ ବୋଲି କହି ଠକି ଦେଲୁ ? କାହୁଆ ସେପାଖେ କୋଉଠି ଲୁଚିଗଲା । ଆଜ ? ଗୃଲ, ତୋ ମୁଣ୍ଡ ଖିଅର କରି ଯେବେ ଗୋପଯାକ ବୁଲାଇ ଅଣି ତୋତେ ଘରୁ ବାହାର କରି ନ ଦେଇଛି ମୋ ନାଁ ଜଟୀ ନୁହେଁ । କିରେ ପୋଡ଼ାମୁହାଁ, କଳା ମାଙ୍କଡ଼ କାହ୍ନୁଆ, ତୋ ମାଅ ପରି ତୋତେ ଟେକି ପକାଉଥାଏ ? ଏ ପୁଅଟି ପରି ସରଗ ଛୁଣ୍ଡା । କିଛି ଜାଣେ ନାହିଁ । ଅ ରାଧା, ବାହାରି ଅ । ଭଲ ମନକୁ ଇଚ୍ଛାକୁ ଡରଥିଲେ ପଦାକୁ ଅ, ଏତେବେଳେ କୋଉ କାହ୍ନୁ ଆ ତୋ ପିଠିରେ ପଡ଼ିବ ? ଆଉ ଲୁଚିବାକୁ ନାହିଁମ ? ଉଠ୍ ରେ ଛତରା କାହ୍ନୁଆ, ବଇଁଶୀ ଛଡ଼େଇକରି ଦେବି ଯେ ଦ'ପାହାର ମୁଣ୍ଡ ଫାଟିଯିବ । ଘର ବୋହୂକୁ ଅଣି ଇଚ୍ଛାତ ସାରୁଛୁ । ଗୃଲ, ତୋ ମାଅ ଆଗରେ ଆଜ ସବୁ କଥା ପଡ଼ିବ ଯେ । ଉଠ୍, ଉଠ୍ ।

କୃଷ୍ଣ—କାହିଁ, କେହି ତ ନାହିଁ । ତୁ କାହା ଉପରେ ଏମିତ ଗଡ଼ମିଡ ହଉଚୁ ? କାହିଁ ମୋ ପଛରେ କିଏ ଅଛି ? ଦେଖ୍ (ବୁଲିପିବା ଓ ଛଦ୍ମବେଶୀ ରାଧିକା ତାଙ୍କ ପଛେ ପଛେ ବୁଲିବା) ଦେଖିଲୁ ଅଇଣୀ, ଅଖି ଫିଟାଇ ଦେଖ ।

ଜଟୀ—(ସ୍ୱଗତଃ) ହଇତ । କାହିଁ ଗଲେ ?

ମଧୁ—(ପଛରୁ ଅସି ଶୀଘ୍ର) ମାଉଷୀ, ଅଇଣୀ ଦେଲୁ ? ପଛରେ—ପଛରେ, ବୁଲିକରି ଦେଖ । ହେଇଟି (ଶ୍ରୀମତୀଙ୍କୁ ଧରାଇ ଦେବା) ଧ. ଧ, (ମଧୁ ହସି ପଳାୟନ)

ଜଟୀ—(ଧରି) କିରେ ଛତରା । ମୁଁ ନାଁ । ତୁ ଅଛ ? (ରାଧାଙ୍କ କାନରେ ବାନ୍ଧି) ଗୃଲ ଯେଉଁଠାକୁ ନିଅଁ । ଗୃଲ । (କୃଷ୍ଣ ପଳାୟନ)

(ଜଟୀ ଛଦ୍ମବେଶୀ ରାଧାଙ୍କୁ ନେଇ ପ୍ରସ୍ଥାନ)

(ମଧୁ ଓ କୃଷ୍ଣ ପୁନଃ ପ୍ରବେଶ)

କୃଷ୍ଣ—ସଖା । ତୁମେ ଅଗ ଯାଅ ।

ମଧୁ—କାହିଁକି ? ତୁମେ ?

କୃଷ୍ଣ—ନାହିଁ ତୁମେ ।

ମଧୁ—ନା,ନା, ଦହେଁ ସାଙ୍ଗହୋଇ ଯିବା । ଦେଖିବା ମାଅ ଯଶୋଦାଙ୍କ ପାଖେ କେମିତି ନବରଙ୍ଗଟା ହେବ ।

କୃଷ୍ଣ—ମୁଁ ସେଠାକୁ ଯିବ ନାହିଁ । ଦୂରରେ ଥିବ ।

ମଧୁ—ହଉ, ଥା'ଇ ହେଲା, ଗୃଲ । ବୁଢ଼ୀ ଏଡ଼ା ଭାରି ଖୁସି ।

କୃଷ୍ଣ—ହଁ ।

(ଦୁହିଙ୍କର ପ୍ରସ୍ଥାନ)

---

## ଅଷ୍ଟମ ଦୃଶ୍ୟ

ପଥ ।

ଲଳିତା— (ଗାଇ ଗାଇ ପ୍ରବେଶ )

ସପନେ ମିଳନ ଅଛି ସପନ ହେଲା ତ ସଙ୍ଗ,
ନୀର ଧାରେ ଗୋ, ମୋର ଶେଜ ତ ଭିଜିଲା—

ସଖି, କାଳିଆ ନଇଲା —
ମୋର ନାଗର ନଇଲା ।୦।
ସେଇ ସେ ନଗର ରଜା  ବଜାଏ ମୁରଲୀ ବାଜା
କୁହୁ କୁହୁ ଗୋ, ବଣେ କୋଇଲି ଡାକିଲା —
ସଖି, କାଳିଆ ନଇଲା—
ମୋର ନାଗର ନଇଲା— ।୧।
ଗାଈ ପଲ ପାଖେ ପାଖେ  ଆଖିରେ ତା ଆଖି ଲଖେ
ଘର କୋଣେ ଗୋ, ଲୁଚି ନୟନ ଠାରିଲା—
ସଖି, କାଳିଆ ନଇଲା—
ପାଣେ ନାଗର ନଇଲା— ।୨।

(ଗାଇ ଗାଇ ପ୍ରସ୍ଥାନ)

— — —

## ନବମ ଦୃଶ୍ୟ

( ଦଧି ମନ୍ଥନ କରୁଥିଲେ ଯଶୋଦା )

ଯଶୋଦା—କାହିଁ, ଏତେବେଳ ଯାଏ ତ କହ୍ନାଇ ଆସିଲା ନାହିଁ ? ଗୋଠରେ ଟିକିଏ ମଠ ହେଲେ ମୋର କଂସ କଥା ମନେ ପଡ଼େ । କାହ୍ନୁ ବୋଲି ସିନା, ନୋହିଲେ ଜୀବନ ନ ଥାନ୍ତା । କେହି ତ ନାହିଁ । କାହାକୁ ହେଲେ ପଠାଇ ଡ଼ାକି ଅଣନ୍ତି । ଦେଖେଁ—(ଚାହିଁ) ଏ କିଏ ? (ଅଳ୍ପ ବିରକ୍ତ ଓ ଆଶ୍ଚର୍ଯ୍ୟ ହୋଇ) ଜଟୀ ବୁଢ଼ୀ କାହିଁକି ବଡ଼ ରାଗ ହେଲା ପରି ଆସୁଛି ? କଥା କ'ଣ ? ଏ ଅଲକ୍ଷଣୀ ମୁହଁ ଚାହିଁ ନ ଜାଣେ ଆଜି କି ଦଶା ହେବ । ତାକୁ ତ ଦେଖିଲେ ମୋତେ ଡର ଲାଗେ । ତାର ନାଗ ସାପର ମୁହଁ । କଥାରେ କାଳକୂଟର ବିଷ ।

ଜଟୀ—(ରାଧାବେଶୀ ସୁବଳ ସହ ପ୍ରବେଶ) ଯଶୋମତୀ, ଯଶୋମତୀ । ତୁମେ ଏ ରାଇଜର ରାଣୀ ବୋଲି କଅଣ ଆମେ ଆଉ କେହି ଗୋପପୁରେ ରହି ପାରିବୁଁ ନାହିଁ ?

ଯଶୋଦା—ଆଜି ଏକଥା କାହିଁକି ?

ଜଟୀ—ଗୋପପୁର ଛାଡ଼ି ଚାଲିଗଲେ କି ଭଲ ହୁଅନ୍ତା ।

ଯଶୋଦା—କଥା କ'ଣ ?

ଜଟୀ—ଇଜ୍ଜତ ମହତ ସମସ୍ତଙ୍କର ଅଛି । ରଜାର ଇଜ୍ଜତ ଅଛି ଆଉ ଆମେ ରଜା ରାଜ୍ୟରେ ଅଛୁଁ ବୋଲି ଆମର କ'ଣ ଇଜ୍ଜତ ନାହିଁ ?

ଯଶୋଦା—ଏଗୋ, କଥାଟା କ'ଣ ହେଲା ? କହ ଆଗ ।

ଜଟୀ—କାହିଁକି ଗୋ ? ଏଇ ରାଇଜରେ ପାଣି ନ ଛୁଇଁଲେ କି ଆଉ କୋଉଠି ବାସ ମିଳିବ ନାହିଁ ?

ଯଶୋଦା—କଥାଟା କହ ।

ଜଟୀ—କହିଲେ ତ କୁଳକୁଟୁମ୍ବକୁ ଲାଜ—ନ କହିଲେ କୁଳ ଭାସି ଯାଉଛି । କହିବି କ'ଣ ? ମୋର ତ ସବୁ କଥା ମିଛ ।

ଯଶୋଦା—କିଏ କହିଲା ମିଛ ?

ଜଟୀ—ଆଉ କହିଲେ ଗୁରେ କଅଣ ଅଧିକ ହୁଅନ୍ତା ? ମୁଁ ତ ସବୁ ନବରଙ୍ଗ ମିଛରେ ଦେଖେଁ । ମୋ ରତ ଆଖି ନାହିଁ । ତମର ତ ଆଖି ନାଆଁ ପର ଜଳୁଛି । ଆଖିଥିଲେ ତମ କାହ୍ନୁଅ ଗୁଣ ଦେଖ ।

( ମଧୁମଙ୍ଗଳ ଧୀରେ ପ୍ରବେଶ )

ଯଶୋଦା—( ଦେଖି ) ଏ କିଏ ରାଧିକା ?

ଜଟୀ—ହଁ ହଁ, ଦେଖ । ସେଇ ପୋଡ଼ାମୁହିଁ । କାହ୍ନୁଅ ସାଙ୍ଗରେ ପଡ଼ିଛି ପରା । ମରଣ ନାହିଁ ଯାହାକୁ ସେଇ ପୋଡ଼ାମୁହିଁକି ଦେଖ । ଭଲକରି ଦେଖ, କାହିଁକି ? ଏ ବ୍ରାହ୍ମଣ ଘର ପୁଅ ନଥିଲା କି ?

ମଧୁ—ଉଁ, କଅଣ ? ମୁଁ କୋଉଠି ଥିଲି ? ମୁଁ ତ କିଛି ଦେଖିନାହିଁ କି ଜାଣିନାହିଁ ।

ଯଶୋଦା—ମଧୁମଙ୍ଗଳ । କଥା କ'ଣ ?

ମଧୁ—କେଜାଣି ? ବୁଢ଼ୀ ମୁଣ୍ଡରେ ପୀଉର ଟୁଙ୍କ ଉଠିଥିବ ।

ଜଟୀ—କହୁନୁ ? ତୁ ତ ଧରେଇଦବା ଲୋକ । ଡର କାହିଁକି ? ଆମର କିଏ କଅଣ କରିବ ? ସତ କହିବାକୁ ଡରିବୁ କାହିଁକି ? କହ ।

ଯଶୋଦା—ହଁ, କହ ପୁଅ ।

ମଧୁ—କଅଣ କହିବି ? କଅଣ ଜାଣିଛି ନାଁ ଦେଖିଛି ଯେ କହିବି ? ମୁଁ ତ ଏଇନେ ଗୋଠରୁ ବାହୁଡ଼ି କହ୍ନାଇ କି ଖୋଜି ଆସିଲି । ଏଠି ପାଖି ଗୁଞ୍ଜି

ସ୍ୱାଡ଼କୁ ଅସିବାବେଳକୁ ଏ ନବରଙ୍ଗ । ସତେ କଳେଇଘୋଡ଼ୀ । ପକ୍କା ବୁଢ଼ୀ ଖଣ୍ଡିକ । ମଲ୍ଲକତର ଘୋଡ଼ା ହୋଇ ଡେବେକେ ମିଛ ? ଏ ପରା ମୋ ମାଉସୀ, ମୁଁ ପୁଣି ଯାର ପୁତୁରା । ମୋ ନାଆଁରେ ମିଛ କହୁଛୁ ? ଅସି ଚିଅ ହେଲ ବୋଲ ଅଠା ଲଗିଗଲା ନାଁ। କଅଣ ? ମୁ କିଛୁ ଜାଣେ ନାହିଁ, ସତ କହୁଛୁ ।

ଯଶୋଦା—କିଗୋ ଜଟିଳେ ?

ଜଟୀ—ଏ ପୁଅ, ତୋତେ ମୋ ରାଣଟି । ସତ କହ ।

ମଧୁ—ହଁ, ତୁ ମଲେ ମୁଁ ତୋ ପଛେ ପଛେ ଗୋଡ଼େଇ ଯିବା ପରା । ମୋ କୁଳ ଭାସିଯିବ ? ସତ ମିଛ ଗୋଟେ କଅଣ ? ମୋତେ ସତ ଛଡ଼ା ମିଛ କହି ଅସେନାହିଁ ।

ଜଟୀ—କଅଣ ? ଦିନବେଳାଟାରେ କହ୍ନାଇଁ ରାଧିକାକୁ ନେଇ କୁଞ୍ଜରେ ଲୀଳା ଲଗେଇଛୁ ବୋଲି ତୁ ମୋତେ ପ୍ରତ୍ୟକ୍ଷରେ ଦେଖାଇ ଦେଲୁ । ମୁଁ ରାଧିକାକୁ ବାନ୍ଧିକରି ଅଣିଛୁ । ସବୁ ସତ ହେଇ ହେଉ ତୁ ଡ଼ଡ଼େଇ କରି ମିଛ କହି ଦେଉଛୁ ? ଏଡ଼େ ସାହାସ ତୋର ?

ମଧୁ—ହଁ ବୁଢ଼ୀ, ବୁଝି ସୁଝି କଥା କହୁଥା । ମୁଁ ମଧୁମଙ୍ଗଳ । ମୁଣ୍ଡ ଫଟେଇ ତୋ ପିତୃଙ୍କୁ ଛଡ଼ାଇ ଦେବ ।

ଯଶୋଦା—ଦେଖିଥିଲେ, କହ । ଡରିବୁ କାହିଁକି ?

ମଧୁ—ମା, ମୁଁ ତ କିଛୁ ଦେଖିନାହିଁ । ପର ବୋହୂ ନାଆଁରେ କେମିତି ମିଛ କହିବ ? ଏ ଖେଣ୍ଟେଇ ବୁଢ଼ୀ କଥା ତୁମେ ସତ ମଣୁଛ ? ମୁଁ ତା'ର କଥାରେ ମିଛ କହିବ ? କାହ୍ନୁ ସାଙ୍ଗରେ ମୋର ଦିନଯାକ ଦେଖାନାହିଁ । ମୁଁ ତ କଦମ୍ବମୂଳେ ଟିକିଏ ଯମୁନାକୁ ଲଅ ଥଣ୍ଡା ପବନ ଖାଇ ବସୁବସୁ ଢୁଳେଇ ପଡ଼ିଥିଲି । ଏଇନେ ଉଠିକରି ଅସୁଛୁ, ଅଖିରୁ ନିଦ ଛାଡ଼ି ନାହିଁ । ରାମ, ରାମ, ରାମ, । ଏତେ ମିଛ ।

ଯଶୋଦା—କିଗୋ ଜଟୀଳ ? ଏ କଅଣ ?

( ଲଳିତା ପ୍ରବେଶ )

ଜଟୀ—( ରାଧା ପ୍ରତି ଠାରି ) ସାକ୍ଷାତରେ ଦେଖ ।

ଯଶୋଦା—କିଗୋ, ରାଧେ ?

ଜଟୀ—ଅଜ ରାଧେ । ତାର ମୁହଁ ଅଛି ଯେ, କହିବ ।

ଲଳିତା—ମଧୁ, ଏ କି ଲୀଳା ?

ମଧୁ—ମୁଁ ତ କିଛୁ ଜାଣିପାରୁନାହିଁ କି ବୁଝିପାରୁନାହିଁ । ରାଧାଙ୍କୁ ପରା ଏ ବୁଢ଼ୀ ବାନ୍ଧିକରି କେଉଁଠୁ ଅଣି, କହୁଛି, କହ୍ନେଇଁ ସଙ୍ଗେ କୁଞ୍ଜଲୀଳା ଲଗିଥିଲା । ମୁଁ କୁଆଡ଼େ ଧରେଇ ଦେଇଛୁ । ଏତେ ମିଛ । ମୁଁ କିଛୁ ଜାଣେନାଇଁ ?

ଯଶୋଦା—ସତ କହନ୍ତୁ ସେ ।

ଜଟୀ—ଅଜ ଦିନେ ସେମିତ, ପଚାର ଏ ଲଳିତାକୁ । ତାଙ୍କୁର ବଂଶୀଧରି ଲୀଳା ଲଗିଛୁ । ମୁଁ ପହଞ୍ଚିଗଲି ଯେମିତ, କାହ୍ନୁ କେଉଁଠି ଲୁଚିଗଲା । ବଇଁଶୀ ଖଣ୍ଡିକ ହାତରେ ଥାଇ ରାଧିକା ଧରାପଡ଼ିଲା । ମୁଁ ତମପାଖକୁ ଅଣିବାକୁ ଯାଉଛୁ, ବଂଶୀଟା ମୋ ହାତରୁ ମାଙ୍କଡ଼ ଛଡ଼େଇନେଲା । ସେଇଥିପାଇଁ ଅଜ ଅସି ପାରିଲି ନାହିଁ । ମିଛ ମଣିବ ବୋଲି ଡରିଲି । ଅଜ ଅଖି କଥା କଅଣ ମିଛ ହେବ ? ପଚାର ଏ ଲଳିତାକୁ ।

ଯଶୋଦା—ମାଙ୍କଡ଼ଟା ବଂଶୀ ଛଡ଼େଇ ନେଲା, କି ଗୋ ଲଳିତା ?

ଲଳିତା—କେଜାଣି ? ମୁଁ ତ ଏ କଥା ପୁରାଣ ଶାସ୍ତ୍ରରେ ଶୁଣିନାହିଁ ଲେ ମାଅ । ଏଠିକି ଅସିଲେ ନଟା ଲାଗିବ । ମୁଁ ଯାଏଁ ।

ମଧୁ—କାହିଁକି ? ଯିବ କାହିଁକି ? ରହ ନବରଙ୍ଗଟା ଦେଖିନବା ।

( କେତେକ ଗୋପାଳୁଣୀ ପ୍ରବେଶ )

ଜଣେ—କିଗୋ ଯଶୋମତୀ । ଅଜି ଏଠି ଏ କି ଗୋଲମାଲ ?

ଯଶୋଦା—ପଚାର, ବୁଝ । ମୁଁ ତ ତାଟକା ହୋଇଗଲିଣି ।

ଜଟୀ—ପରଘରର କଅଣ ସ ? ହାତରେ ଶଙ୍ଖା—ପୁଣି ଦର୍ପଣ ଲେଡ଼ା ? ଶୁଣ । କହ୍ନେଇଁ ସାଙ୍ଗରେ ଏ ରାଧିକାଟା ପଡ଼ିଛି । ସବୁଦିନ ଲୁଚି ଲୁଚି ଯାଉଥିଲା । ଆଜି ଦିନ ଦି'ପହରେ କୁଞ୍ଜରେ ଦୁହେଁ ବସିଥିଲେ । ଧରିକରି ଏଠାକୁ ଆଣିଛି ।

ସମସ୍ତେ—(ଠଗ୍‌ଠଗ୍ ହେଲେ,—କିଏ ଦୁଃଖ ପ୍ରକାଶ କରି କିଏବା ଆନନ୍ଦରେ)

ଜଣେ—ସେ ପରା ସତୀ ?

ଅନ୍ୟ ଜଣେ—ସତୀ ନାଁ ଗଙ୍ଗାଜଳ ?

ଅନ୍ୟ ଜଣେ—ନାଁ ଗୋବର ପାଣି ?

ଅନ୍ୟ ଜଣେ—ଅହା, ଘ୍ରାନକପାଳୀକି ସେମିତ କାଛୁ କହନାହିଁ ।

ଜଟୀ—ଅଛି ଦେଖାଟା କ'ଣ ମିଛ ? ସମସ୍ତେତ ଯୋଗକୁ ପହଞ୍ଚିଗଲଣି । ମୁଁ ଆଜ ଏଥର ନଛାଡ଼େଁ । ତାକୁ ନାଣ୍ଡ୍ରୀକରି ଗୋପପାଙ୍କ ବୁଲେଇ କୁଳରୁମୂଳରୁ ବାହାର କରିବି । ନନ୍ଦପୁଅ ଗୁଣ କଂସକୁ ଜଣେଇବି । ଏକଥା ନିଷ୍ଟୟ । ସତଟା କି ମିଛ ହେବ ? ମୋତେ ସବୁଥର ଠକି ଦିଅ ବୋଲି ଏଥରକି ସେଇଅ ? ହା'ରେ ଦଇବ ।

ଯଶୋଦା—ମଧୁମଙ୍ଗଳ ପରା ଏସବୁ ଦେଖିଛି । ସେ ଧରେଇ ଦେଇଛି ବୋଲି ଜଟୀଳା କହୁଛନ୍ତି ।

ଜଣେ—ମଧୁ ! କଅଣ ଦେଖିଛ, ସତ କହ ଭଲା ।

ମଧୁ—କଅଣ କହିବି ? କେତେଥର କହିଲଣି । ମୁଁ କିଛି ଜାଣିନାହିଁ । ମୁଁ ଭମରପରି ଦେଖଣାହାରି । ଏଠିକି ଆସିଲି ବୋଲି ବୁଢ଼ୀ ମୋ ନାଆଁରେ ନଗେଇକରି କହୁଛି । ସେମିତ ଲଳିତା ନାଆଁରେ କହିଲା, କଅଣ ନାଁ, ସେ ପରା କଅଣ ଦେଖିଛନ୍ତି । ବୁଢ଼ୀ ହାତରୁ କେଉଁଦିନ ମାଙ୍କଡ଼ଟାଏ ବଇଁଶୀ ଛଡ଼େଇ ନେଲା, ଏଥିରୁ ବୁଝ ।

ସମସ୍ତେ—(ହାସ୍ୟ)

ଜଟୀ—ଏତେ କଥା କାହିଁକି ? ସେଇ ରାଧାକୁ ସବୁ କଥା ପଚାର । ସେ ଆଜି କେମିତି ଧରାପଡ଼ିଛି—କିଏ କିଏ ଥିଲେ—କଅଣ ହେଉଥିଲା ।

ଯଶୋଦା—ସତ କହ, ଆଉ ଲାଜ କାହିଁକି ? ସତ କହ ।

ରାଧା—କହ୍ନେଇ ଆଉ ମୁଁ କୁଞ୍ଜରେ ଖେଳୁଥିଲୁ । ଇଏ ଯାଇ ମୋତେ ଯଶୋଦାଙ୍କ ପାଖକୁ ଚାଲ ବୋଲି ଧରି ଆଣିଲେ ।

ଜଣେ—ଖେଳୁଥିଲ ? ଆହା । ସାନପିଲାଟି, କିଛି ଜାଣେନାହିଁ ।

ଜଟୀ—ଶୁଣ, ଏବେ ଶୁଣ । ସତ ମିଛ ଶୁଣ । ମୁଁ ପରା ମିଛ କହେଁ ?

ଅନ୍ୟ—(ଦୁଃଖ କରି) ଆହା ହା । ବଡ଼ଘରର କି ଦଶା ?

ଯଶୋଦା—(ମୁଖ ପୋତି ରହିବା)

ଜଟୀ—କିଗୋ ଯଶୋମତୀ, ଶୁଣିଲ ?

ମଧୁ—ଛାର ରାଧା ଲାଗି ଆମେ ସବୁଥିରେ ବଳେଇ ? ହଇଗୋ, ମୋତେ ତୁମେ ଦେଖିଛ ? ମୁଁ ତୁମକୁ ଧରେଇ ଦେଇଛି ?

ରାଧା—ନାଁ, ମୁଁ ତ ଜାଣିନାହିଁ କି ତୁମକୁ ମୋଟେ ଦେଖିନାହିଁ ?

ଜଟୀ—ପୋଡ଼ାମୁହିଁ, ଫେର ମିଛ ? ତୋ'ର ସେ କଅଣ ଦିଅର ନାଁ ଭେରସ୍ତ ? ସତ କହ । ନୋହିଲେ ପିଠି ପକେଇବି ।

ରାଧା—(ନୀରବ)

ମଧୁ—(ରାଗ ହେବା ପରି—ଜଟୀ ପ୍ରତି) ମାଇପୀ, ଆଜ ଏଇଟାର କି ଲାଜ ? କି ଇଜ୍ଜତ ? କାଢ଼ ତା ମୁହଁରୁ ଓଢ଼ଣା । ସେ ଧର୍ମକୁ ଚାହିଁ ସତ ସତ କହୁ । ନୋହିଲେ ମୁଁ ଦାଉଟ କାଢ଼ି, (ଓଢ଼ଣା ଟାଣି ଦେବା ଓ ଲୁଗା ଖସିପଡ଼ିବାରୁ ପଛକୁ ଘୁଞ୍ଚି)

ସମସ୍ତେ—ଏଁ କଅଣ ? (ହାସ୍ୟ)

ଯଶୋଦା—ଜଟୀଳେ ? ଏ କିଏ ? ଏଇ ତମର ଘରର ବୋହୂ ?

ଜଣେ—କିଗୋ ଜଟୀଳେ ? ବୁଢ଼ୀ କାଳେ ତମକୁ ଏତେ ନବରଙ୍ଗ ଆସେ ! ଏ ତ ସୁବଳ ।

ଅନ୍ୟ—ଧନ୍ୟ ଲୋ ଶଙ୍ଖିଣୀ କଣ୍ଢି ।

ମଧୁ—କିରେ ସୁବଳ । ଏ କି କଥା ?

ସୁବଳ—ଆମେମାନେ ରଜାରାଣୀ ଖେଳ ଖେଳୁଥିଲୁ, ବୁଢ଼ୀ ମୋତେ ଧରିଆଣିଲେ । କାହ୍ନୁ ରଜା ହୋଇଥିଲେ । ମୁଁ ରାଣୀ ହୋଇଥିଲି । ତମକୁ ତ ଖୋଜି ଖୋଜି ପାଇଲୁଁନାହିଁ, ନୋହିଲେ ତୁମେ ପୁରୋହିତ ହୋଇଥା'ନ୍ତ ।

ଯଶୋଦା—ଛି, ଛି । (କହି ପ୍ରସ୍ଥାନ)

ମଧୁ—କିଗୋ ପୋଡ଼ାମୁହିଁ ବୁଢ଼ୀ ? କିଏ ସତ କହେ ?

ସମସ୍ତେ—ବୁଢ଼ୀଟା ତ । ନୋହିଲେ ଖିଅ ବାଡ଼ିରେ ଏଇନେ ହାଡ଼ ଭାଙ୍ଗି ଦିଅନ୍ତୁ ।

ଜଣେ—ଆଉ ନନ୍ଦ ଆସିଲେ ସମସ୍ତେ କୁହ, ଏ ବୁଢ଼ୀଟା ଏମିତି ମିଛେଇ ବୋଲି ରାଜ୍ୟରେ ଢେଙ୍ଗୁରା ଦିଅଇ ଦିଅନ୍ତୁ । ଯା ଯା—

ମଧୁ—ସେମିତି କି ? ଏମିତି ନାଁ ? ମୁଁ ତ ଏଇନେ ଗୀତ ଗାଇ ଗାଇ ଢେଣ୍ଡୁରା ପିଟି ଦେବି ।

(ଛଡ଼ି ପ୍ରଭୃତି ଛଳରେ)

—ଗୀତ—

ଏ ବୁଢ଼ୀ ମାଙ୍କଡ଼ୀଟା ମରୁନାହିଁ ?
ମିଛ କହି ଜୀବନ ଅଛୁ, ଲାଜ ମାଡୁନାହିଁ ?
ଏତେ ଲୋକ ଆଗେ ଅପମାନ ପାଇ
ଜଳଜଳ କରି ଅଛୁ ଗୁହିଁ ? ।୦।

ମଧୁ—ଅଣିବୁଟି ରେ ମୁଣ୍ଡି ଫାଟୁ ।

ସୁବଳ—ବୁଢ଼ୀ ମୁଣ୍ଡ ପୀଠ ଛାଡୁ ।

ମଧୁ—ଯମୁନା ନଈ ପାଣିରେ ସତେ ବୁଡ଼ି ମରୁନାହିଁ ।୧।

ଭଦ୍ରସେ—ଚୂଲି ସାଙ୍ଗହୋଇ, ବୋହୂ ନେଇ-
ଦେବାରେ ଲସାଇ ।୨।

ସମସ୍ତେ—(ତାଳି ସହ ହାସ୍ୟ କରି ପ୍ରସ୍ଥାନ)

———

## ତୃତୀୟ ଅଙ୍କ
### (ପ୍ରଥମ ଦୃଶ୍ୟ)
—କୁଞ୍ଜବନ—

ଲଳିତା— ଗୀତ

ଝନକ ଝଂକୃତ ବୀଣା ଅବିରତ
ଝିମି ଝିମି ବାଜଇ ନୂପୁର
ଖେଳେ ହୋଇ ମନହାରି ହରି ।୦।
କାମବାଣ ଖରଶାଣ, ମନ୍ଦ ସମୀରେ
ହା ହା ହା, ମାରେ କେ ପୀଡ଼କାରି ।୧।

ବିଶାଖା—(ପଶିଆସି) ମୋତେ ଡାକିଲୁ ନାହିଁ ? ମୁଁ ଯାଇଥା'ନ୍ତି ।

ଲଳିତା—ଆଉ ଡାକିବାକୁ ସମୟ ଥିଲା ନା ? ମୁଁ ଯାଇଁ ପହଞ୍ଚିଲା ବେଳକୁ ବୁଢ଼ୀ ଯଶୋଦାଙ୍କ ଉପରେ ଘୂରି ଗଲା ।

ବିଶାଖା—ତେବେ ଆଗରୁ ଏ ପ୍ରସ... ...ରମ୍ଭ ହୋଇ ଯାଇଥିଲା ।

ଲଳିତା—ହଁ, ମୁଁ କଅଣ ପ୍ରସଙ୍ଗର ଶୁଣି ପାରିଛି କି ?

ବିଶାଖା—ଅଧାଅଧି—ନାଁ ? ଅଛା, ତୁ ଗଲୁ ବୁଢ଼ୀ କଅଣ କହିଲା ?

ଲଳିତା—କହିବ କଅଣ ? ସେତେବେଳକୁ ତ ଦସ ରାଗରେ ଜଳୁଛି । ମୋତେ ଦେଖି ମନେ ପଡ଼ିଗଲା ସେଦିନ ବଂଶୀଚୋରି କଥା ।

ବିଶାଖା—ସେଇ ତ ଏତେ କଥାର ମୂଳ କଅଣ ହେଲା ?

ଲଳିତା—ହଉ କଅଣ ଆଉ ? ସବୁ ତ ମୂଳରୁ ମିଛ ହେଲା ।

ବିଶାଖା—ଏଥର ତେବେ ଭଲକରି ମାନେ ଔଷଧ ପଡ଼ୁଛି । କିଛିଦିନ ନାରୋଗରେ ଚୂଲିପିବ ।

ଲଳିତା—ସେ ବୋଲି ଜୀବନ ରଖିଛି । ମୁଁ ହୋଇଥିଲେ ଦଣ୍ଡେ ବଞ୍ଚି ନଥାନ୍ତି । ସେଇଠି ଠିଆରେ ଠିଆରେ ମରିଥାନ୍ତି ।

ବିଶାଖା—ମ, ଅସମ୍ଭବ କଥା । ଯାହାକୁ ମରଣ ନାହିଁ, ସେ ଫେର୍ କେମିତି ମରିବ ?

ଲଳିତା—ଦାଉଡ଼ି ଲଗେଇଦବ । ନୋଇଲେ ଭୁଣ୍ଡମରବ, କିଛି ନୋହିଲେ ଦେଖ ଗୁଣ୍ଡି ପଳେଇଯିବ ।

ବିଶାଖା—ଲଳିତାର ସବୁକଥା ଅଲଗା ରକମର ।

ଲଳିତା—ଅଲଗା ନୁହେଁ ଗୋ ଲଗା ।

ବିଶାଖା—ତାଇଁ ଗୋ, ଶ୍ରୀମତୀ କାହାନ୍ତି ?

ଲଳିତା—ଏଇଠି କେଉଁଠି ଥିବେ ।

ବିଶାଖା—ଆମେ ତ ଆଗେ ଆମ କାମ ସାରିନାହେଁ । ଚାଲ, ଫୁଲ ତୋଳି ରଖିଦେବା । ତା'ପରେ ତାଙ୍କୁ ଖୋଜିବା, ସେ ନିଶ୍ଚୟ ଆସିବେ ।

ଲଳିତା—ହଁ, କାହ୍ନୁଙ୍କୁ ସଙ୍କେତ ଦେଇଛନ୍ତି । ମଧୁମଙ୍ଗଳ କହିବାକୁ ଯାଇଥିବେ ।

ବିଶାଖା—ମୁଁ କହୁଛି, ଏତେ ନ ବୁଲି ବକୁଳ କୁଞ୍ଜକୁ ଗଲେ ବହୁତ ଫୁଲ ମିଳିବ । ଆଜି ଖୋଜାଖୋଜି ନାହିଁ । ବସନ୍ତ ଆରମ୍ଭ ।

ଲଳିତା—ହୋରିର ଉପଯୁକ୍ତ ଫୁଲ ମିଳିଲେ ହବନା ?

ବିଶାଖା—ହଁ, ମିଳିବ । (ଦୁହେଁ ପ୍ରସ୍ଥାନ)

———

## ଦ୍ୱିତୀୟ ଦୃଶ୍ୟ

ପଥ

ବୃନ୍ଦା—(ଗାଇ ଗାଇ ପ୍ରବେଶ)

କୁଞ୍ଜ ମଞ୍ଜୁ-ଲଳନା,
ସୁନ୍ଦରୀ ଶ୍ୟାମ ପ୍ରେମେ ମାନ କରନା ।୦।
ଗଗନ ପଟେ ଉଇଁ ଚାହୁଁ କନକ ତାରା,
ମଧୁରେ ସେ ଯେ ମଧୁମୟ ସୁଧା ଧାରା,
ମଳିନ ପୀତ ଧଡ଼ା, ମଲ୍ଲି ଫଲ ପାଖୁଡ଼ା
ନାଗରୀ ଗୁଣ ତୋର ଗାଏ
ମୋହନ-ମୋହନା, ମାନ ତୁ କରନା ।୧।

( ଗାଇ ଗାଇ ପ୍ରସ୍ଥାନ )

( ମଧୁ ଓ ସୁବଳବେଶୀ ରାଧା ପ୍ରବେଶ )

ମଧୁ—ସତେ, ଏ ବେଶ୍ ଏକା ବେଶ ମାନିଲା ।

ସୁବଳ—ମାନିବ ନାହିଁ ? ତୁମେ ଯେତେବେଳେ ସଜାଇ ଦେଇଛ ।

ମଧୁ—ଲଳିତାର ଗଳା ପରି ଶୁଭୁଛି । ଗଲେ କୁଆଡ଼େ ?

ସୁବଳ—ଆଜି ହୋରି ନା ? ଫୁଲ ତୋଳୁଥିବେ ।

ମଧୁ—ଏ ଇତ, ଏଇଠି ଶୁଭୁଥିଲା । ଗଲେ କୁଆଡ଼େ ? ହୋରି ଗୀତ ଗାଉଥିଲେ ।

ସୁବଳ—ଜଉନ୍ତା ଚଢ଼େଇ ସେମାନେ, କେତେ ଦୂର ଚାଲି ଯିବେଣି । ଲଳିତା ବିଶାଖା ଦୁହେଁ ସାଙ୍ଗ ହୋଇ ଆସିଥିଲେ ।

ମଧୁ—ଆଉ ବୃନ୍ଦା ?

ସୁବଳ—ସେ ମଝି ଅଗରୁ ଆସିଛନ୍ତି ।

ମଧୁ—ତେବେ ଆଜି ହୋରିଟା ଯାକଜମକରେ ହେବ ।

ସୁବଳ—ହବ ନାହିଁ ନାଁ ?

ମଧୁ—ପେଟର କିଛି ବ୍ୟବସ୍ଥା ହଉଛି ନାଁ ?

ସୁବଳ—ହଁ, ଯଥେଷ୍ଟ । ନାଲି ପାଣି, କୁଙ୍କୁମ,— ଯେତେ ପାର ।

ମଧୁ—ଯାକୁ କି ମଣିଷ ଖାଏ ? ଛି, ଛି, ।

ସୁବଳ—ନୋହିଲେ ଦେଖି ଦେଖିତ ପେଟ ପୂରିବ ।

ମଧୁ—ମୋର ଇଚ୍ଛାଟା ଯେ, ଖାଲି ସର, ଲହୁଣୀରେ ହୋରି ଖେଳଟା ହୁଅନ୍ତା କି ?

ସୁବଳ—ତା'ହେଲେ ?

ମଧୁ—ଯେ ଯେତେ ଖାଇପାରିବ । ହୋରି ନାଁ ? ଲଡ଼୍ଡୁ କ୍ଷୀରି, ପୁରି ଅଣ୍ଟାକର ପେଟଭରି ଖାଇବା ।

ସୁବଳ—ମଧୁ, ତୁମେ କେତେ ଖାଇବ ଖାଇବ ହୁଅ ? ତୁମର ତ ପେଟ ଚାଖଣ୍ଡେ ।

ମଧୁ—ତା ବୋଲି କି ବେଗ କମ୍ ?

ସୁବଳ—କିପରି ?

ମଧୁ—ପେଟ କାଉଁ କାଉଁ, ଛାତି ସାଉଁ ସାଉଁ, ବେଙ୍ଗଳ ଗାଉଁ ଗାଉଁ, ଭେକ ଚାଉଁ ଚାଉଁ । ଭେର୍ ବେଗ, ଭେର୍ ବେଗ ।

ସୁବଳ—ବେଗ କଥା ତ ବୁଝିବା । ଏବେ ତୁମର ବଇଦ କୁଆଡ଼େ ଗଲେ ?

ମଧୁ—କାହ୍ନୁ, ନାଁ ? ତାଙ୍କର ତ ଏଠିକି ଆସିବାର କଥା । ମୁଁ ତ ସଙ୍କେତ ଦେଇ ଆସିଛି । କେଉଁଠି

ବସିଥିବେ । ତୁମେ ଲୁଚିଯାଅ । ମୁଁ ତାଙ୍କୁ ଅଣେଁ । ଅଜ ତ ତାଙ୍କର ପାଳି । ଗଲି ।

( ସେନ ପ୍ରସ୍ଥାନ )

( ବୃନ୍ଦା ପ୍ରବେଶ )

ଗୀତ

କାହିଁ ଫୁଟିଛ ପ୍ରଣୟ ତାର
କାହିଁ ବିପିନ ଗହନେ, ବିଜନ କାନନେ
ଲୁଚିଛ ଗୋପନେ ପ୍ରୀତି-ହାର ।୦।
ଗାଅ ତ, ନାଚ ତ, ବଂଶୀ ବଜାଅ ତ
ସୁନ୍ଦର ଗୋପୀ ମନହାର,
ଦୁଃଖ, ସୁଖ ତୁମେ ସବୁ ହୃଦରକାର
ବୃନ୍ଦ ଚକୋର ବାରଧାର ।୧।

ବୃନ୍ଦା—(ଫୁଲ ତୋଳୁତୋଳୁ ବୁଲି କରି) କେହି ନାହିଁ ? ଏବେନେ ତ କଥାବାର୍ତ୍ତା ଶୁଭୁଥିଲା ? ତେବେ କଅଣ ଇଏ ମୋର ଭ୍ରମ ? ଦେଖେଁ ।

(ପ୍ରସ୍ଥାନ)

( ମଧୁ ଓ କୃଷ୍ଣ ପ୍ରବେଶ )

କୃଷ୍ଣ— ତେବେ କଣ ଶ୍ରୀମତୀ ଆସିନାହାନ୍ତି ?

ମଧୁ—କାହିଁ ? ଏତେବେଳେ ଯାଏ ତାଙ୍କର ଦେଖା-ନାହିଁ । ମୁଁ ଆଗେ ତାଙ୍କୁ ଖୋଜିଲି । ତା'ଧରେ ତୁମକୁ ଖୋଜି ଖୋଜି ପାଇଲି ।

କୃଷ୍ଣ—ସୁବଳ, ସେ କାହାନ୍ତି ?

ମଧୁ—ହଁ, ସେ ହେଲେ ସିଧାଙ୍କ କାମଟା ଗଲେଇ ନିଅନ୍ତେ । ନାଁ ସଖା ?

କୃଷ୍ଣ—ଯାଃ—

ମଧୁ—ଯା ନା ଶାଳୁ ? ସତ କଥା ତ । ଜଟୀବୁଢ଼ୀ ତ ଠକିଗଲା । ବାକି ସଖା । ତାକୁ ଯେମେଡ ଠକିଛ, ତୁମେ ବ ସେମେଡ ଦିନେ ଠକିବ ।

କୃଷ୍ଣ—ଅସମ୍ଭବ, ମୁଁ କି ଜଟୀ ବୁଢ଼ୀ ହୋଇଛି, ମୋତେ କିଏ ଠକିବ ?

ମଧୁ— ଦଇବ, ଦଇବ, ଅଜ ପୁଣି କିଏ ?

କୃଷ୍ଣ—ସେ କଥାତ ଅଛି । ତୁମେ ଆଗ ଦେଖ ଶ୍ରୀମତୀଙ୍କ । ଅଜ ପରା ହୋଇ ?

ମଧୁ—ତାଙ୍କ ସଖୀମାନଙ୍କୁ ତ ଦେଖିଥିଲି ଫୁଲ ତୋଳି ଯାଉ ଥିଲେ ।

କୃଷ୍ଣ—ତେବେ ସେ କାହାନ୍ତି ?

ମଧୁ - କାହାନ୍ତି ? ବେଶ ହେଉଥିବେ ।

କୃଷ୍ଣ—ସୁବଳକୁ ଡକାଇଲେ ସେ ଦେଖି ଅସନ୍ତେ ।

ମଧୁ—ନାଁ ଧରନା ସଖା । ବୁଢ଼ୀ ପାଖରେ ସମସ୍ତେ ନିମନ୍ତ୍ରଣମ୍ ।

କୃଷ୍ଣ—( ହସି ) ତେବେ କ'ଣ କରାଯିବ ?

( ଛଦ୍ମ ବେଶରେ ସୁବଳ ଗାଇ ଗାଇ ପ୍ରବେଶ । ହସ୍ତରେ ମଲ୍ଲୀମାଳ )

— ଗୀତ —

ମୋହନ ବାଂଶରିଆ, ବାରେ ବଂଶୀ ବଜା, ଯା,
ମନ୍ଦେ ମନ୍ଦେ ମଧୁର ଛନ୍ଦେ, ମୁରଲିଆ, ମଜା, ଯା ।୦।
ଜଣ୍ଟି ରଜା, ଯା,
ପ୍ୟାର ମଜା, ଯା,
ଲବଣୀ ଖା'ଜା, ଫୁଲ ବନେ ବୁଲି କୁଞ୍ଜ ସଜା, ଯା ।୧

ମଧୁ—ଏଇ ତ ଆସିଗଲେଣି । ଅସ ଅସ

କୃଷ୍ଣ—ତୁମକୁ ତ ଖୋଜା ପଡ଼ିଥିଲା ସୁବଳ । ଭଲମନ୍ଦ ଦିନରେ କୁଆଡ଼େ ଥାଅ ହେ ?

ସୁବଳ—କାହିଁ କି ସଖା ? ଏତେ ଖୋଜା କାହିଁକି ?

ମଧୁ—କାହିଁକି ? କିଛୁ ଜାଣି ପାରିଲ ନାହିଁ ? ଯା, ଶ୍ରୀମତୀଙ୍କୁ ଖୋଜି ଅଣ ।

ସୁବଳ—( ଭାବି ଖୋଜି ) ସଖା, ବାନ୍ଧିଥିଲି ତ, ଖସି ପଳାଇ ଗଲେଣି ପରା—ଦେଖେଁ ।

କୃଷ୍ଣ—ଯାଅନା ସୁବଳ । ଅଜ ଯେ ହୋଇ । ଅଜ ବେଳ ଅଛି ନାଁ ?

ମଧୁ—ଯାଅ ।

ସୁବଳ—କଅଣ ଦବ କହ ?

ମଧୁ—ଆଗେ ଆଦେଶ ପାଳନ କର ।

ସୁବଳ—ମଧୁ । ମୁଁ ତ ଏଇଠି ଥାଇ ଶ୍ରୀମତୀଙ୍କୁ ଅଣାଇ ଦେବି ।

କୃଷ୍ଣ—କିପରି ?

ସୁବଳ—ମନ୍ତ୍ର ବଳରେ । କଅଣ ଦେବ କହ ।

କୃଷ୍ଣ—କଅଣ ଗୁହ ? ଯାହା ମାଗିବ ତାହା ।
ସୁବଳ—ଯାହା ମାଗିବ ?
କୃଷ୍ଣ—ହଁ ।
ସୁବଳ—ତେବେ ଧନକ ଲାଗି ଏ ବଂଶୀଟି ।
କୃଷ୍ଣ—ଅଚ୍ଛା ।
ସୁବଳ—(ମଧୁପ୍ରତି) ତେବେ ମଧୁ ! ମୁଁ ମନ୍ତ୍ର କରେଁ । (କୃଷ୍ଣଙ୍କ ପ୍ରତି) ସଖା ! ତୁମେ ସେ କୋଣକୁ ଯାଇ ବଂଶୀ ଫୁଙ୍କ ।
କୃଷ୍ଣ—ହଉ, ସେଇଅ କରୁଛି ।
ସୁବଳ—ମଧୁ, ତୁମେ ସଖାଙ୍କ ଜଗି ଥାଅ । ଯେପରି ସେ ମୋ ମନ୍ତ୍ର ନ ଦେଖନ୍ତି । ତା' ହେଲେ ସବୁ ବିଗିଡ଼ି ଯିବ ।
ମଧୁ—( ଶ୍ରୀକୃଷ୍ଣଙ୍କୁ ନେଇ ) ଗ୍ଲ । (ନେଇ ଠିଆ କରେଇବା ଓ ଶ୍ରୀକୃଷ୍ଣଙ୍କ ବଂଶୀଫୁଙ୍କିବା )
ସୁବଳ—(ପୁରୁଷ ବେଶ କାଢ଼ି ପକାଇ ମାଳାଧରି କୃଷ୍ଣଙ୍କ ନିକଟକୁ ଯିବା )
କୃଷ୍ଣ—ଏ କଅଣ ? ତୁମେ ? ସୁବଳ ବେଶରେ ? ମୁଁ ଚିହ୍ନିପାରିଲି ନାହିଁ ।
ମଧୁ—ଠକିଲ, ଠକିଲ, ଠକିଲ ।
ଶ୍ରୀମତୀ—ଦଅ, ସତ୍ୟ ରକ୍ଷା କର । (ମାଳା ଦେବା)
ମଧୁ—ସଖା, ମଲ୍ଲିମାଳା ତୁମେ ଦେଇ ଏ ଲୀଳା ଆରମ୍ଭ କରିଛ । ଏବେ ତୁମେ ପାଇ ଲୀଳାଟି ଶେଷ କର । ବାକି ମଧୁଆ ବ୍ରାହ୍ମଣକୁ ଟିକିଏ ମନେ କରୁଥିବ । ଏ ସମସ୍ତଙ୍କ ଆଖିରେ ଧୂଳି ଦେଇ-ଦାଇ । ବୁଝିଲ ? (ହସି ପ୍ରସ୍ଥାନ)
କୃଷ୍ଣ—ଠିକ୍ କହିଛ ।
ଶ୍ରୀମତୀ—ଠିକ୍ ବେଠିକ୍ ବିଗ୍ୱର ତେଣିକି ଥାଉ । ତୁମ ସତ୍ୟ ଆଗେ ରକ୍ଷାକର । ବଂଶୀଟି ଦଅ । ନିଏଁ ।
କୃଷ୍ଣ—ନେଲେ ?
ଶ୍ରୀମତୀ—ଦେଲେ ?
କୃଷ୍ଣ—( ଶ୍ରୀମତୀଙ୍କୁ ଟାଣିନେଇ ) ହୋରିରେ ତ ଆଜି ବଂଶୀନେଇ ପିଚକାରି ମାରିବ ନାହିଁ ? ଆସ ।
( ଶ୍ରୀମତୀଙ୍କ ବେନି ପ୍ରସ୍ଥାନ । ମଧୁ ହସି ତାଳିମାରି ପଛରେ ଗଲେ )

ପରିଦୃଶ୍ୟ—( କୁଞ୍ଜସମୀପ ଶ୍ରୀମତୀ ଓ ଶ୍ରୀକୃଷ୍ଣ )
ଶ୍ରୀମତୀ— (ଗୀତ)

ଛି, ନ ମାର ରଙ୍ଗବାରି, ଚୋରିଧାରି, ବନଗୃହି
ଫୁଲ୍ ସଞ୍ଜ ହେଲଣି ଯିବ ଫେରି, ଧେନୁ ବାରି ।୦।
ଶୁଣ ଫଲ୍ କୁଞ୍ଜରେ ସଖୀଗଣ ଗୁଞ୍ଜେ
ମୁଁ ଯେ ଅବଳା ନ ବିଗୃହ, କୁଳନାରୀ,
ଛନକେ ଛନକେ ଚମକେ ମନ ସନ୍ତ୍ରତ
ହସିବେ ସିନା ବରଜେ ମୋ ଭଗାରି ।୧।
ଅଞ୍ଚଳ ତେଜ ତୁ ଚଞ୍ଚଳ ମୋହନ
ପଥ ଗ୍ଲଡ଼ ତୁ ଶଠ ନାଗର କପଟ ହରି,
ଦେଖି ତବ ଢଙ୍ଗ, ତପନ ଲଜେ ରଙ୍ଗ
ଚରଣ ଧରେଁ, ଚଲ୍ ହାରି, ଯାଅ ଫେରି ।୨।
( ସଖୀଗଣ ଗାଇ ପ୍ରବେଶ )
ଗୀତ
ଗ୍ଲ ଗ୍ଲ ସଜନୀ, ଖେଳିବା ହୋରି,
ଶ୍ୟାମ ଅଙ୍ଗବର ରଞ୍ଜନ କର ସଖି, ଘେରି ।
ଅତର ପନିରେ ଗୋଳି,
ଭରି ରଙ୍ଗ ବାରି ପିଚକାରି
ନାଗର, ସୁନ୍ଦର ଶ୍ୟାମ ଆଜି ଯିବ ହାରି ।୧।
(ସଖୀମାନେ ସମସ୍ତେ ଆସି ପିଚକାରି ମାରିଲେ ଓ ହସିଲେ)
ଲଳିତା—କି ଚତୁର କହ୍ନାଇଁ, କେମିତି ହୋରି ଖେଳ ହେଲା ? ଟିକିଏ ଏତା ପାଇ ଯେ ଏଇନେ ଖୁବ୍ ପୁରୁଷପଣିଆଁ ଦେଖାଉଥିଲ ? ଏଥର ? ମନ ମାନିଲା ନାଁ ?
ଶ୍ରୀକୃଷ୍ଣ—ସଖି, ମୋତେ ଥରେ ପିଚକାରିରେ ରଙ୍ଗ ଭରତ କରିବାକୁ ସୁବିଧା ଦେଲେ ସିନା ।
ଲଳିତା—ଭଲ କଥା । ସେ କଥା ପଡ଼ିଲେ ରାଜ-କୁମାରୀଙ୍କୁ ପଚାରି ଯାଉ ?
ଶ୍ରୀମତୀ—ଲଳିତା ? ଇଏ କେମିତି କଥା ସହି ?
ଲଳିତା—ଠିକ୍ କଥା ଗ୍ଲ । ଶ୍ୟାମ ପରି ଚତୁରବର ? ସବୁଦିନେ ତ ସେ ତାଙ୍କର ଚତୁର ପଣିଆ ଖେଳି ଆସୁଥିଲେ । ଆଜି ତାର ପରଖ ହେଉ । ଦେଖି, ଯେବେ ତାଙ୍କ ହାତର ଗୁଣ କିଛି ଥାଏ ତ ଦେଖାନ୍ତୁ ।

ଶ୍ରୀମତୀ—ଛି, ସଖି । ତାଙ୍କୁ ଏତେ କଷ୍ଟ ଦିଅ ନାହିଁ ଆଉ ।

ଲଳିତା—ଜାଣିନାହଁ ଧନ । ପୁରୁଷ ପରା ସେ ? କଷ୍ଟ ନ ଭୋଗିଲେ ହାର ମାନିବେ ନାହିଁ କେବେ ।

କୃଷ୍ଣ—ଲଳିତା ! ବଡ଼ ଚତୁରୀ ତ ତୁମେ ।

ଲଳିତା—ନାଇଁ, ନାଇଁ । ସେମିତି କଥା କହନାଇଁ । ତୁମେ ଯେ ଚତୁର-ରାଜ । ତମ ଆଗେ ମୋର ଚତୁରୀର ବଡ଼େଇ କଅଣ ? ଏଥିରେ ତମ ହାତର ବାହାଦୁରୀ ଫୁଟିବ କିନା !

ଶ୍ରୀକୃଷ୍ଣ—ତେବେ କଅଣ ମୋତେ ରଙ୍ଗ ଭରତି କରିବାକୁ ଦେବନାହିଁ ତୁମେମାନେ ?

ଲଳିତା—ହଁ ହଁ । ଦେବୁନାହିଁ କାହିଁକି ?

କୃଷ୍ଣ—ତେବେ ?

ଲଳିତା—ଆମ ସଖୀଙ୍କ ଆଗରେ, ତୁମେ ହାତ ଯୋଡ଼ି କରି କହ—ରାଜକୁମାରୀ, ହାରିଲି [illegible] । ମୋତେ ପିଚକାରୀରେ ରଙ୍ଗ ଭରତି କରିବା[illegible] ଅନୁମତି ଦିଅ । ଧନୀ ଆମର ବଡ଼ ଦୟାବତୀ । ତୁମର ଏ ଅବସ୍ଥା ଦେଖିଲେ ସେ [illegible] ଦୟାକରି ପାରନ୍ତି ।

ଶ୍ରୀମତୀ—ଲଳିତା ! ଏ ତୋର କେମିତି ଢଙ୍ଗ, କହନା ?

ଲଳିତା—କାହିଁକି ? ମୋହନ ତ ସବୁଦିନେ ଜିଣି ଯାଉଛନ୍ତି । ଏବେ ଆମର ପାଳି ପଡ଼ିଛି । ଆଜି ସେ ଆମ ହାତେ । ତାଙ୍କୁ ଭଲ କରି ଚିହ୍ନାଇ ଦିଆଯାଇ ଛାଡ଼ିଦିଆଯିବ ।

କୃଷ୍ଣ—ହୋଉ ନ ଖେଳ ମୁଁ ତ ହାର ମାନିବାକୁ ପ୍ରସ୍ତୁତ ନୁହେଁ । ଆଉ କଅଣ ସବତ୍ ଥିଲେ କହ ।

ଲଳିତା—ଅଛି, ଆଉ ବି ଗୋଟିଏ ବାଟ ତମକୁ କହେଁ—ଶ୍ରୀମତୀଙ୍କ ଚରଣ ଧରି ତୁମେ ମନାଇ ନେଇପାର ।

ଶ୍ରୀମତୀ—ଛି ଲଳିତା ! ମୋତେ ଆଉ ଲାଜରେ ବୁଡ଼ାଅ ନା ସହ ।

ଲଳିତା—ତେବେ ତ ଆଉ କିଛି ଉପାୟ ନାହିଁ ସଇ ।

ଶ୍ରୀମତୀ—ସଖୀମାନେ ସମସ୍ତେ ମିଶି ତାଙ୍କୁ ଘେରି ରଙ୍ଗ କରିଦିଅ । ଯେମିତି ତାଙ୍କ ବଂଶୀ ମଧ୍ୟ ଛାଡ଼ ନଯିବ ।
(ସଖୀମାନେ ସମସ୍ତେ ମିଶି ଶ୍ୟାମଙ୍କୁ ରଙ୍ଗ ମାରିବାକୁ ଲାଗିଲେ—ଶ୍ୟାମ ବାଧାଦେଲେ)

ଶ୍ରୀକୃଷ୍ଣ—ଏ କ'ଣ କରୁଛ ବିନୋଦିନୀ ? ତୁମ ସଖୀମାନେ ମୋତେ ରଙ୍ଗ ଭରତି କରିବାକୁ ଦେଉ ନାହାନ୍ତି ? ଆଉ ତୁମେ ଠିଆ ହୋଇ ସବୁ ଦେଖି ହସୁଛ ? ଏ କ[illegible] ? ଏକ ପଟିଆ ହୋଇ ଖେଳିବ ତୁମେମାନେ ? ବୃନ୍ଦେ ! ତୁମେ ବି ଏଇମାନଙ୍କ ସଙ୍ଗେ ଜୁଆଣ ଦେଲ ?

ବୃନ୍ଦା—ଲଳିତା, ଶ୍ୟାମଙ୍କ ପାର୍ଥନା ଶୁଣି ମୋତେ ବଡ଼ ଦୁଃଖ ଲାଗୁଛି ।

—ଗୀତ—

ସଜନୀ, ଚତୁର ଶ୍ୟାମେ ଦେ' ଦେ' ପିଚକାରୀ
ଖେଳିବେ ସେ ପରି ହୋରି,
ଫଗୁରଙ୍ଗ ବନିବିହାରୀ, ।୦।
ସୁରଙ୍ଗ କେଶର ରଙ୍ଗ
ଗୋଳ କୁଙ୍କୁମ ତହିଁ ସଙ୍ଗ
ଢାଳେ ଢାଳେ ନାଚ ରେ
ମୋହନେ ଘେରି ଘେରି ।୧।
(ଶ୍ରୀକୃଷ୍ଣ ପିଚକାରୀ ଟାଣି ନେଇ)

ଶ୍ରୀକୃଷ୍ଣ—ଆସରେ କନକ ଗୋରି
ଆଜି ଖେଳ ମୋ ତୁଲେ ହୋରି ।
ଅବିର, କୁଙ୍କୁମ, କେଶର ଘେନି
ଅଙ୍ଗେ ଦେବି ଢାଳି ।
ମୁଖଚନ୍ଦ୍ର ମନୋହର,
ଫଗୁ ତିଳକ ଅଳକ ପର
ନିରେଖି କେ ସଖୀ ଲକ୍ଷେ
ଦରହସିବ ନୟନ ଠାରି ।୨।
(ଶ୍ରୀମତୀଙ୍କୁ ରଙ୍ଗ ଦେଲେ)

ଶ୍ରୀମତୀ—ଥାଉ, ଥାଉ ଶ୍ୟାମ । ଛାଡ଼ିଦିଅ ମୋତେ । ଦେଖ ମୋର ଦେହ ସାରା ଫଗୁ ହୋଇ ଗଲାଣି ।

କୃଷ୍ଣ—ନାଁ, ସାରି ସିଆଣୀ ତ ? ମୁଁ ଏକୁଟିଆ—ଆଉ ତୁମେ ସମସ୍ତେ ମିଳି ମୋତେ ରଙ୍ଗ ଦେଇ ସାରିଛ ।

ଶ୍ରୀମତୀ—ଲଳିତା, ଦେଖ ସହୃ । ଶ୍ୟାମ କଥା ମାନୁ-
ନାହାନ୍ତି ।

ଲଳିତା—ଅଗ୍ରୁ ଦେଖାଯାଉ କଏ ଜିଣୁଛି ଏଥର । ସଖି, ସମସ୍ତେ ମିଶି ଘେରି ଯାଅ ତାଙ୍କୁ । ଏଥର ଅସ ମୋହନ ।

(ସଖୀମାନେ ଘେରି ପୁଣି ଶ୍ରୀକୃଷ୍ଣଙ୍କୁ ରଙ୍ଗଦେଲେ)

—ଗୀତ—

ହାରିଲ ନା ତୁମେ, ନାଗର ନଟବର !
ହାରିଲ ତ ହେ କହ୍ନାଇଁ ।
ଚତୁର ଟାଣପଣ ସରିଲ ତ ମୋହନ
ଛି ଛି ମରେଁ, ଲାଜ ନାହିଁ ? ।୧।
ଶ୍ୟାମ ଅଙ୍ଗରେ ରଙ୍ଗ ବିରାଜିତ
କୁଙ୍କୁମ ଅଳଙ୍କୃତ, କେଶର ଶୋଭିତ
ମଳୟ ସମୀରେ, ଶିଖୀ ଶିଖା ଖେଳେ
ମଞ୍ଜୁ ମନ୍ଦ ହସେ ରାଈ ।୨।

ଲଳିତା—କି ମୋହନ ! ତମର ହାର ହେଲା । ଏକଥା ପୁଣି ମାନୁଛ କି ନାହିଁ ?

ଶ୍ରୀକୃଷ୍ଣ—କେବେ ନୁହେଁ । ମୁଁ କଣେ—ଅଜ ତୁମେ କେତେଜଣ କହିଲ ? ତେବେବେ ତୁମ ସମସ୍ତିଙ୍କି ମୁଁ ଭଲକରି ରଙ୍ଗେଇ ଦେଇଛି । ଏଥିରେ ମୁଁ ହାରିଲ କେମିତି ? ହାରିଲ ତୁମେ ସବୁ ।

ଲଳିତା—ବାଃ, ତୁମେ ପୁରୁଷ ଅଉ ଆମେମାନେ ଯେ ଅବଳା ।

ଶ୍ରୀକୃଷ୍ଣ—ବେଶ୍, ତାହେଲେ ତୁମେମାନେ ହିଁ ବିଜୟ କର ତହ—କିଏ ହାରିଲ । ଶ୍ରୀମତୀଙ୍କ ପରାଜ-ହେଲ ।

ସଖୀମାନେ—( କରଯୋଡ଼ି )

ଗୀତ

ହେ ଶରବନ୍ଦନ ! ଭୁବନ ନନ୍ଦନ
ତୁମକୁ ଜିଣିବ କେ ଶକତି କାହିଁ ?
ଛଳେ ସିନା ହାର ଚତୁରବର ଗୋ
ପାଇଛୁ କେ' ତବ ଅନ୍ତ କାହିଁ ? ।୧।

ଶ୍ରୀକୃଷ୍ଣ—ତମର ପ୍ରେମର ଅମଳ ଧାର
ଶ୍ୟାମ ମନ ଘନ ଫିଟକ ତାର
ପ୍ରେମର ଗୁରୁ ମୋର ତୁମେ ତ ରାଈ
ପ୍ରେମିକା ତବ ସମ ଜଗତେ ନାହିଁ;
କୋଟି ଶଶୀ ଛପେ ଏ ରୂପ ଚାହିଁ ।୧।

ଲଳିତା—ରାଧାରମଣ ! ଗୋପୀମାନଙ୍କର ପ୍ରଣତି ଘେନାଜର ।

ଶ୍ରୀକୃଷ୍ଣ—ମାନିନୀ, ମୁଁ ନିଜେ ମୋର ହାର ମାନି ନେଉଛି । ସଖୀମାନେ, ତୁମମାନଙ୍କ ପ୍ରେମ ନିକଟରେ ମୁଁ ସର୍ବଦା ପରାଜିତ ।

ଶ୍ରୀମତୀ—ରାସବିହାରୀ, ତୁମ ମୁରଲୀର ସ୍ୱର ଏଡ଼େ ମଧୁର ହେଲ କାହିଁକି ? ଶୁଣିଲାମାତ୍ରେ ତ ମୁଁ ଅପଣାକୁ ଭୁଲିଯାଏଁ । ମୋ ଆଖି ଆଗରେ ସଦାସର୍ବଦା କେବଳ ତୁମର ମଧୁର ଛବି ବିରାଜିତ ।

ଶ୍ରୀକୃଷ୍ଣ—ପ୍ରେମମୟୀ ! ଏ ସବୁ କେବଳ ମୋ ପ୍ରତି ତୁମର ପ୍ରେମର ମିନତି ବାଣୀ । ଯଥାର୍ଥରେ ତୁମେ ହିଁ ମୋର ପ୍ରେମର ଗୁରୁ । ବୃନ୍ଦାବନ ତୁମର ପ୍ରେମର ସ୍ମୃତିରେ ଭରି ରହିଛି । ଅଉ, ସେ ବନ୍ଧନ ଏଡ଼ି ଯିବାର ମୋର ସାମର୍ଥ୍ୟ କାହିଁ ?

ରାଧା—ଗୋପୀନାଥ ! ତୁମର ମନମୋହନ ମୁରଲୀ ବଜାଅ ଥରେ ରସରାଜ ।

( ଶ୍ରୀକୃଷ୍ଣଙ୍କର ବଂଶୀ ବାଦନ )

ଶ୍ରୀମତୀ—ଲଳିତା, ଧନ୍ୟ ହେଲି ମୁଁ ସହୃ ।

ଲଳିତା—ରାଈ, ତମ ସଙ୍ଗେ ଧନ୍ୟା ମୁଁ ସିନା ?

( ସମସ୍ତେ ଭୂମିଷ୍ଠ ପ୍ରଣାମ କଲେ )

—ଯବନିକା—

## ପଦେ କଥା

ଶୀତ ଝଡ଼ ଝଡ଼ ନଥାଏ—ଶ୍ରୀପଞ୍ଚମୀ ବେଳ । ରାତରେ ଅଭିନୟ ସାରି ବାହୁଡ଼ିବାବେଳେ ମୋର ପ୍ରିୟତମ ଛାତ୍ର ଶ୍ରୀମାନ୍ ଦୁଲୁ (ଦୁର୍ଲ୍ଲଭ ଚନ୍ଦ୍ରସିଂହ) ଓ କନିଷ୍ଠ ଭ୍ରାତାପ୍ରତିମ ଶ୍ରୀମାନ୍ ହାବୁ (ନରେଶଚନ୍ଦ୍ର ସର୍କାର) ମୋତେ ଅନୁରୋଧ କଲେ ଲେଖିବାପାଇଁ ଏହି ମାନମୀ ନାଟକଟି । ସେତେ-ବେଳର ଦେଖଣାହାରୀଙ୍କ ଏବେ ସୁଦ୍ଧା ପାଶୋରି ଯାଇ ନଥିବାର ଶୁଣେଁ, ମୋ ରାସଦଳ ପିଲମାନଙ୍କର ଅଭିନୟ ଓ ଗାୟନର ବିଶେଷତ୍ୱ । ସେମାନଙ୍କ ମଧ୍ୟରେ, ଦୁର୍ଲ୍ଲଭ, ନବୀନ କର, ଯମୁନା ଦାସ, ପୂର୍ଣ୍ଣସିଂହ, ପୂର୍ଣ୍ଣ ସାହୁ, ହରିହର ରାଉତ, ଦୀନବନ୍ଧୁ ଦାସ (ଟୀମା) ଇତ୍ୟାଦିଙ୍କୁ ଅନେକେ ଭୁଲିନାହାନ୍ତି । ମୋର ହିତାକାଙ୍କ୍ଷୀ ବନ୍ଧୁ ଥିଲେ ସ୍ୱର୍ଗତ ପଦ୍ମଚରଣ ଦାଶ ଏବଂ ଚୌଧୁରୀ କୃଷ୍ଣଚରଣ ଦାଶ (ଭିଙ୍ଗାରପୁର) । ସେ ଦୁହେଁ ନାନାମତେ ଦଳର ସାହାଯ୍ୟକାରୀ । ପଢ଼ିବାକୁ ଚାଲିଗଲେଣି ।

ନାଟକ ଲେଖା ଆରମ୍ଭ ହେଲା ତା ୨୩ । ୨ । ୩୮ ସନରେ । ପ୍ରଥମ ଅଭିନୟ ରଜନୀ—ତା ୯ । ୪ । ୩୮ ସନ । ଉଚ୍ଛ୍ୱସିତ ପ୍ରଶଂସା ମଧ୍ୟରେ ଏକାଦିକ୍ରମେ ଦୁଇସପ୍ତାହ ବାଙ୍କାବଜାରର ଏକ ଅସ୍ଥାୟୀ ରଙ୍ଗମଞ୍ଚରେ ନାଟକଟି ପ୍ରଦର୍ଶିତ ହେଲା । ଏହି ନାଟକରେ କଟକର ସହୃଦୟ ଦର୍ଶକମାନଙ୍କଠାରୁ ମୋତେ ପରୋକ୍ଷରେ ପ୍ରେରଣା ମିଳିଲା ଯେ, ସୁଅଦିଆ ଖାଦ୍ୟ ପରଷିଲେ ରାତି ରାତି ଧରି ନାଟକ-ମଞ୍ଚରେ ଦେଖଣାହାରୀଙ୍କ ଅଭାବ ହେବନାହିଁ ।

କାଳୀଚରଣ

---

# ମାନିନୀ

## ପ୍ରସ୍ତାବନା

—ଗୀତ—

ଚରଣ କମଳ ବନ୍ଦେ ହେ ରସରାଜ ।
ରସରାଜ ନବ ନଟବର, ଗୋପିନୀଧନ ମନଚୋର
କାମରୂପ, ଏ ତିନି ଭୁବନ ନନ୍ଦେ ।୦।
ବନଫୁଲ ବନମାଳା, ନବଘନ ହୃଦେ ଦୋଳେ
ଗଜମୋତି ସଙ୍ଗେ ତାରି ଝଙ୍କ ଝଙ୍କ ଝଙ୍କ ଝଲେ ।
ନାଚ ଥରେ ଗିରିଧାରୀ । ତାଥେଇ ତାଥେଇ ଛନ୍ଦେ ।୧।
ଯୋଗୀଜନ ବନ୍ଦନ୍ତ ହେ, ଶୀଖିଶିଖା ଶିରପରେ
ଲଲାଟେ ତିଳକ ଶୋଭା, ଗୋରଚନା ମକରୀ ମେଳେ
ଅଧରେ ମୁରଲୀ ତାଳେ, ବରଜ କିଶୋରୀ ରାଧେ ।୨।

———

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( ଯମୁନାତଟ—ବେଳ ବୁଡ଼ ବୁଡ଼ ଅସ୍ତଅସ୍ତ—ସୂର୍ଯ୍ୟଅସ୍ତରେ ନାଲି କିରଣ ସୁନ୍ଦର ଅମ୍ବର ବୋଳାଇ ପରି ବାଷ୍ପହୋଇ ପଡ଼ୁଛି ସତେ !—ନିକଟରେ କୁଞ୍ଜ । ଶ୍ରୀମତୀ ମନ ସୁଖରେ ବସି ଫୁଲହାର ଗୁନ୍ଥୁଥିଲେ, ଶୁଣିଲେ ହଠାତ୍ ଶ୍ୟାମ ମୁରଲୀ । ଚମକି ପଡ଼ିଲେ ସେ । ନତ ଜାନୁରେ, ଫୁଲହାରଟି ଧରି ଆଖି ମୁଦି ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଫୁଲଡାଲ ଟେକି ଧରିଲେ । ତେଣେ ଯମୁନା ମଧ୍ୟରେ କୃଷ୍ଣମୂର୍ତ୍ତିର ଆବିର୍ଭାବ ହେଲା ଧୀରେ-ଧୀରେ । )

ଶ୍ରୀମତୀ—ଜାଣ ତ, ରସରାଜ ! ମନର ସବୁକଥା ।
ଶ୍ରୀଚରଣ ଉଦ୍ଦେଶ୍ୟରେ ଗୁନ୍ଥା ଏଇ ହାର ସଙ୍ଗେ ରାଧିକାର ମାନ, ମହତ୍ତ୍ୱ, ଜୀବନ, ଯୌବନ—

(ପ୍ରଣାମ କଲେ । ହସୁଥିଲେ କାହ୍ନୁ, ଗଳାରେ ଗୁନ୍ଥି ଗୁନ୍ଥି ଏଇ ହାରଟି ପରି ଗୋଟିଏ ହାର ଲମ୍ବିଗଲା—ଶ୍ରୀମତୀ ହାର ସହଜରେ ଫେରି ଗୁନ୍ଥି, ନିଜ କରକୁ ଅନାଇଁ ଲଳିତାର ଅପେକ୍ଷା କଲେ । କୃଷ୍ଣମୂର୍ତ୍ତି ଅନ୍ତର୍ହିତ ହେଲା । ଲଳିତା ଆସି ପଛକୁ ଟିକିଏ ଘୂରିଗଲେ ପୁଣି ଆସି ଶ୍ରୀମତୀଙ୍କ କାନ୍ଧରେ ହାତ ଦେଇ କହିଲେ)

ଲଳିତା—ଅଲେର, ହଠାତ୍ ଇଏ କ'ଣ ହେଲା ମ ? ଶିରୀଷ ଫୁଲରେ ଝାଞ୍ଜି କେମିତି ବାଜିଲା ମ ?

ଶ୍ରୀମତୀ—କାହିଁ ? କିଛି ନାହିଁ ତ ସଖୀ ।

(ଶ୍ରୀମତୀ ନୀରବ ରହିଲେ ହାରକୁ ଗୁନ୍ଥି)

ଲଳିତା—(ମୁହଁକୁ ଟେକି) ବଡ଼ ତୁନିତାନି ? ହାତରେ ଫୁଲହାର—ମୁହଁରେ ତ ଉଜ୍ଜ୍ୱଳ ସ୍ପୃହା । ଏତେ କଥାରେ ପୁଣି କିଛି ନାହିଁ ବୋଲି କହୁ, ଲଳିତାକୁ ଭୁଲାଇବାର ଯୋଗାଡ଼ ? ବାଃ, ସାହସ ମନ୍ଦ ନୁହେଁ ତ ।

ଶ୍ରୀମତୀ—ନାଁ-ଗୋ ।

ଲଳିତା—ହଁ-ଗୋ ।

ଶ୍ରୀମତୀ—(ଅଳ୍ପ ହସି) ବଡ଼ ଛଇଳୀ ତୁ । (ଲଳିତାଙ୍କ କାନ୍ଧରେ ଆଦରରେ ହାତ ପକାଇଲେ)

ଲଳିତା—(ହସି) ତମର ସଖୀ ବୋଲି ତ ?

ଶ୍ରୀମତୀ—(ଲଳିତାକୁ ଟାଣିନେଇ କାନରେ ଶ୍ରୀକୃଷ୍ଣଙ୍କ ଗୁନ୍ଥାହାର ଦେବାକୁ ସଙ୍କେତ ଦେଲେ)

ଲଳିତା—ଓ, ଏଇଥିପାଇଁ କଥା ବାଙ୍କେବାଙ୍କେ ବୁଲା ବୁଲୁଛି ? ବାକି ସବୁ…

(ଗୀତ)

ସେ ପଥେ କଣ୍ଟା ଫୁଟିବ
ପାଦେ ରେ ସଜନୀ ! ଯା'ନା !
ପୀୟୁଷ ମଣି ବିଷ ଫଣୀ ରୁ
ନବଛଇଳା ! ଖା'ନା ।୦।
ସେ କୁସୁମେ କୀଟ ଭରି
ସେ ମାଦକ ଦଏ ଘାରି
ଢଳ ଢଳ ନୟନ, ଝରଯିବ ବନ,
ବାଧିବ ଅଙ୍ଗେ କୁସୁମ ଶୟନ ।
ବିପଥେ ଭୁଲି, କରୁଣ ସ୍ୱରେ,
ମରମ-ଗୀତ ଗା'ନା ।୧।
ଲଗନ୍ତି ଲହ, ସେ ହସ ତଳେ,
ଭଉଁରୀ ଖେଳେ ସେ ନୀଳ ଜଳେ
ଭରମ ଲଗିବ, ନରମ ପବନ,
ଶରଦ ଚନ୍ଦ୍ର, ଚନ୍ଦନ
ରଖି ଦଏ ମୁଁ, ପରାଣ ସାଥି,
ଭୁଲ ଭୁଲ ତା'-ନାଁ' ।୨।

ଶ୍ରୀମତୀ—ବାଧା ଦେ' ନାଁ ଅଳି ସଖି । ମୁଁ ସବୁ ଜାଣେ । ତଥାପି—

ଲଳିତା—ବେଶ୍, ଭଲ କଥା । ରୋଗ ବଢ଼ିବାର ଥିଲେ ରୋଗୀ ପଥ୍ୟ ବିଗୁଡ଼ି କରିବ କାହୁଁ ? ମୋର କହିବାର କଥା, ମୁଁ କହିଲି । (ଦୂରରେ ବଂଶୀଧ୍ୱନି ଶୁଣାଗଲା) ଏଣିକି ତମ ଭାଗ୍ୟ ।

ଶ୍ରୀମତୀ—(ଅଧୀର ହୋଇ ଲଳିତା ମୁଖରେ ହାତ ଦେଇ) ଚୁନି—ଚୁନି ହୁଅ ସଖି । (ଧ୍ୱନି ଅଡ଼କୁ ଚାହିଁ ରହିଲେ—ନଦୀର ଏକ ପ୍ରାନ୍ତରୁ ଦିଶିଲା ଶ୍ରୀକୃଷ୍ଣଙ୍କର ନୌକା ବିହାର । ଗାଇ ଗାଇ ସେ ନାଆ ବାହି ଚାଲିଛନ୍ତି । ଲଳିତାର ଗୋଟିଏ କାନ୍ଧରେ ହାତ ରଖି ଶ୍ରୀମତୀ ଶୁଣୁଛନ୍ତି, ଏକ ମନରେ, ଏକ ଧ୍ୟାନରେ ଗୀତ । ଦେଖୁଛନ୍ତି ଶ୍ୟାମରୂପ, ହାତର ଫୁଲହାରଟି, ଗୀତ ଶେଷ ବେଳକୁ ଖସିପଡ଼ିଲା । ଲଳିତା ଗୋଟାଇ ଧରିଲେ )

ଶ୍ରୀକୃଷ୍ଣ— ଗୀତ

ତୋ'ର ଅଶେ ତରୀ ଭାସେ—
ଏଇ ନୀଳ ନୀରେ—ଏଇ ନୀଳ ନୀରେ
ଦିବାଶେଷେ ପଶ୍ଚିମେ ସେ—
ବୁଡ଼େ ରବି ନୀଳାକାଶେ ରେ ।୦।
ନାଲ୍ ଫଗୁ, ବାଉଁ, ବାଉଁ,
ନଦୀ କୂଳେ କୂଳେ,—
ନାଆ ମଙ୍ଗେ, ବାଆ ଲଗେ,
ଥରେ ଥର ଥର,
ବାଟ ଦୋଳେ ତାଳେ, ତାଳେ,
ପରାଣ ଚଞ୍ଚଳ ।
ଯମୁନା କୂଅର ମୁଖେ,
ମେଲ୍ ତରୀ ରେ ମନ ବୁଃଖେ,
ସାଥୀ କାହିଁ, ଦେଖା ନାହିଁ,
ସେ ଯେ ମୋତେ ଭୁଲେ ।୧।
( ଦୃଶ୍ୟାନ୍ତର )

---

ଦ୍ୱିତୀୟ ଦୃଶ୍ୟ
ବ୍ରଜପଥ ।

ବିଶାଖା— (ଗୀତ)

ପୀଇ କୁହୁ କୁହୁ କୁହୁ ବୋଲେ,
କୁଞ୍ଜେ ମଞ୍ଜୁ ଦୋଳେ, ଭୃଙ୍ଗ ଗୁଞ୍ଜରଲେ
ମଳୟ ସମୀର ବହେ ଧୀରେ ।୦।
ଲାଲ୍ ପଲାଶ ଗୁଲାଲ୍ ମନୋହର
କାଶ-ବିକାଶ ସୁହାସ କି ସୁନ୍ଦର,
ମୃଗ-ମଦ-ସୌରଭ ବାସ ଚଳାଚଳ
ନବଦଳ ମାଳ ତମାଳେ
ମଧୁ ଢାଳେ-ମଧୁ ଢାଳେ ।୧।
ସାଧବୀ, ମାଧବୀ, ଫୁଲ୍ଲ ମଲ୍ଲୀଦଳ,
ବୃନ୍ଦାବନ ବନ ରଞ୍ଜାଇ ମଞ୍ଜୁଳ ।
କାମ ଦଣ୍ଡଧର ଛଟ ବରବର
କେଶର କୁସୁମ-ବିଶାରେ ।
ମଧୁଢାଳେ-ମଧୁଢାଳେ ।୨।

(ନୃତ୍ୟ ମନ୍ଦିରେ ଜାଉଁଳ ବାନ୍ଧ ବଟୁ ଅସି ପହଞ୍ଚି ଏକ ପାଖକୁ ଉଭୟଙ୍କି ଚାହିଁଲେ । )

ବଟୁ—ନଷ୍ଟସ୍ୟ କାଃନ୍ୟାଗତ ? ଗଲେ ଏ ଗୁଡ଼ାକ—ଗଲେ, ଗଲେ ।

ବିଶାଖା—କୁଆଡ଼େ ? କିଏ ଗଲା ହେ ?

ବଟୁ—ମରିବାକୁ, ମରିବାକୁ ।

ବିଶାଖା—ବେଶ୍, ତେବେ ତ ଜାଉଁଳ ବାନ୍ଧିବ ତୁମେ ।

ବଟୁ—ନଷ୍ଟସ୍ୟ କାଃନ୍ୟାଗତ ?

ବିଶାଖା—କଅଣ ଗୁଡ଼ାଏ ବଡ଼ବଡ଼ର ହେଉଛ ହେ ?

ବଟୁ—ବୋଇଲି—ଯାହାଙ୍କର ନଷ୍ଟ ହେବାକୁ ଥାଏ, ତାଙ୍କର ଏଇ ଦଶା ଛଡ଼ା ଆଉ କଅଣ ହୁଅନ୍ତା ?

ବିଶାଖା—କୋଉ କଥା, କୋଉ କଥା ?

ବଟୁ—ବ୍ରଜର ଗୋପିକା ତୁମେ, କୁଳର ବୋହୂ । ପାଣି ଅଣିବା ବାହାନାରେ ଘରୁ ଅସି, ଘାଣ୍ଟରେ ନାଚ କାଉଁନ ଲଗିଛ ଗୋଟେ ପାଳ ? ସେଇଥିକି କହୁଛି ଅମର ସିନା ମନଟି କଡ଼େଇ ଏଣେ ତେଣେ ହଉଛି । ଖିଅ ନାହିଁ, ପିଅ ନାହିଁ, ଖସ ନାହିଁ, ତସ ନାହିଁ, ଏପଲିକ ତା ପଛରେ ପଛରେ ଲଗିଛନ୍ତି ।

ଧନିଷ୍ଠା—କି ? ଅମେ କଅଣ ଡାହାଣୀ ନାଁ ଶରଗୁଣୀ ।

ବଟୁ—ତା'ନୁହେ ଯେ,—ତାଙ୍କ ମାଆ, ମାଉସୀ । ଡାହାଣୀ, ଶରଗୁଣୀ ଲଗିଲେ ତ ଜୀବନରେ ମାରି ଦିଅନ୍ତି । ଏକାଥରକେ ତନି ପାଞ୍ଚରୁ ଗୋଛ୍ । ତମର ଅଉ କଅଣ ନାଁ ନେଉଛିଅ କଅସି—ଥରକୁ ଥର ବାଟ—ଜୀଅନ୍ତା ମରଣ । ବୋଇଲି, ଏ ବିଦ୍ୟା ଶିଖାଇଲା କିଏ ?

ବିଶାଖା—ତମ ଗୁରୁ ।

ବଟୁ—ବେଶ୍, ବେଶ୍, ଅଉ କଛୁ ଶିଖିଛ ନାଁ ଏତିକ ?

ବିଶାଖା—ଅଉ ବି ଅଛି, ଜାରଣ, ମାରଣ, ତାରଣ ।

ବଟୁ—ତାରଣଟା ବି ଅଛି ? ତମ ହାତେ ନାଁ ଉଧାର ଅଣ କୋଉଠୁ ?

ବିଶାଖା—ତମର ଠାଉଁ ।

ବଟୁ—କଲନ୍ତର ଖାଇ ?

ବିଶାଖା—ଗରଜ ଦେଖି ।

ବଟୁ—ଭଲ । ଭଲ । ଏମିତ ବେକଅଟା ଗୁଲ୍ ରଖ ।

ବିଶାଖା—ହଉ, ତମର ପ୍ରଶ୍ନସବୁ ସରଲ ନାଁ ଅଉ କଛି ଅଛି ?

ବଟୁ—ନାଁ, ସରଲ ।

ବିଶାଖା—ଅଚ୍ଛା ଏ ଜାଉଁଳ ?

ବଟୁ—ଶ୍ରୀମତୀଙ୍କ କୃପା, ସୂର୍ଯ୍ୟପୂଜାର ଭୋଗ ।

ବିଶାଖା—ବାଃ । ସେତକ ତମକୁ ଯୋଗ ।

ଧନିଷ୍ଠା—ଅହେ, ଅମକୁ କହୁନା ଭାଗ ?

ବଟୁ—ଛି ଛି, ଖାଇଲେ ବଢ଼ିବ ରୋଗ ।

ଧନିଷ୍ଠା—ଏ ବାଟରୁ ତା'ହେଲେ ଭାଗ ।

ବଟୁ—ଏ ବ୍ରାହ୍ମଣ ତହିଁକି ଅଗ ।

ଅନ୍ୟସଖୀ—ଧରିଦେବି କି ମୁଁ ବାଗ ?

ବଟୁ—ସହ । ଜାଣ ତ ମଧୁଆ ରାଗ ? ପୋଡ଼ିଯିବ ତଉଦଗ ।

ବିଶାଖା—ହଇହୋ । ରାଗିଲେ—ଅଭିଶାପ ଦିଅ ତୁମେ ?

ବଟୁ—ବରବର ।

ବିଶାଖା—ସେମିତ ହେଲେ ତମକୁ କୁହାର ହଉଛି ।

ବଟୁ—କୃଷ୍ଣ ପ୍ରାପ୍ତିରସ୍ତୁ ।

ଧନିଷ୍ଠା—ଭଲ ଅଭିଶାପ ଦେଲ ଏଟା ।

ମଧୁ—ସଲଖ ଜଳିବା ବାଟ, ଜୀଅନ୍ତାରେ କଲବଲ ।

(କୁଟିଳା ପହଞ୍ଚିଲେ)

କୁଟିଳା—ଓ, ସଭି ଏଇଠି ବସିଛ, ବାଟରେ ପସ । କି ଗୋ ଜେମାଦେଇ, ମାଆ ତେଣେ ଗୃହିଁ ବସିଛନ୍ତି ପାଣି ଚାଲକୁ । ସଞ୍ଜ ହେଇନାହିଁ ତମର ନାଁ ? ଯମୁନା କେତେଦୂର କି ? ଛ'କୋଶ ନାଁ ନ'କୋଶ ?

ଧନିଷ୍ଠା—କାହା ଉପରେ ରାଗ ହଉଛ ମ ?

ବଟୁ—ହଠାତ୍ ମୁଣ୍ଡରେ ଓଡ଼ଣା ଦେଇ ମୋ ଉପରେ ।

ଧନିଷ୍ଠା—ଅଖିରେ ମରଚ ପାଣି ପକେଇ ଦେଖ,—ତମ ଜେମାଦେଇ ଏଠି ନାହାନ୍ତି, ଘରେ ଥିବେ । ପା' ଦେଖି ମର୍ । ମଲ୍ ନାହିଁ ଲୋ ପୋଡ଼ାମୁହିଁ ।

ବଟୁ—ଏଁ ଏଁ, ଏତେ ସହଜରେ ?

କୁଟୀଳା—ନାହିଁ ଏବେ ସେ ଏଠି ? (ମଧୁଙ୍କ ଛଡ଼ା ଅନ୍ୟାନ୍ୟମାନଙ୍କୁ ଦେଖିଲେ)

ବଟୁ—ଘୁଡ଼ଚଲ, ଘୁଡ଼ଗଲ, (ନିଜକୁ ଠାର) ।

କୁଟୀଳା—ମଲ, ଏଇଟା କିଏ ମ ?

ବଟୁ—ଯାହାକୁ ଖୋଜୁଥିଲ, ସିଏମ ।

କୁଟୀଳା—(ରାଗି) ଯା, ଯା···(ପ୍ରସ୍ଥାନ)

ମଧୁ—ଯା, ଯା ।

ଧନିଷ୍ଠା—ଚାଲ ସହି, ରାଈଙ୍କି ସାବଧାନ କରିଦେବା । ନୋହିଲେ, ଲଗିବ ଗୋଟେ କନ୍ଦଳ ।

ବଟୁ—ମୁଁ ଯିବି କି ? ବାଟେଇ ଦେବି ?

ଧନିଷ୍ଠା—ହଉ, ତୁମ ଅନୁଗ୍ରହ ତୁମ ଝାଞ୍ଜିଲରେ ରଖ ।

ବଟୁ—ରଖୁଛି । ତେମେ ବାକି ଗଣ୍ଡିଟା ଉଡ଼ଦଅ ।

ଧନିଷ୍ଠା—ଝାଞ୍ଜିଲ ହାତକୁ ଅସିଲେ ସିନା ।
(ହସି ହସି ଯାଉ ଯାଉ)

ବଟୁ—ଧନୀ ବଡ଼ ସିଅଣିଅ କି ନାଁ—
(ହସିହସି ଅନ୍ୟପଥରେ ଗୁହିଁଗୁହିଁ ଚାଲିଗଲେ)

—×—

ତୃତୀୟ ଦୃଶ୍ୟ

( ଅନ୍ଧାର ରାତି । ବୃଷଭାନୁପୁର । ଗୃହର କବାଟ ବନ୍ଦଥିଲା । ହଠାତ୍ କବାଟ ଫିଟାଇ ଶ୍ରୀମତୀ ଅସମ୍ଭାଳ ବେଶବାସରେ ଅସି ଏକୁଣ୍ଡିବନ୍ଧ ଧରି ଛିଡ଼ାହେଲେ । ହାତରେ ଫୁଲହାର । ଚାରିପଟକୁ ଗୁହିଁ ଦେଖିଲେ—କେହିନାହିଁ । ଦୀର୍ଘ ନିଃଶ୍ୱାସ ପକାଇ ଗାଇଲେ )

ଶ୍ରୀମତୀ— (ଗୀତ)

କେ' ସେ ଲୁଚିଲ ଡାକି,
　　ଅସ ବୋଲି, କାହିଁ ଗୋ,
ଦୁଆର ମେଲିଲି ଯେବେ,
　　କେହି ନାହିଁ ନାହିଁ ଗୋ । ୦ ।
ଏ ଘନ ନିଝୁମ ରାତି,
　　ଦୁରୁଦୁରୁ ଥରେ ଛାତି
ଅନ୍ଧାରେ ଲୁଚିଲ ତୁମେ,
　　ବାରେ ଡାକ ଦେଇ ଗୋ । ୧ ।
ମନର ମିଳନ ଅଶା,
　　ମନରେ ରହିଲା ମୋର
ରହିଲା ତ ଗୁନ୍ଥା ଏ ମୋ,
　　ହାତେ ପ୍ରେମ ଫୁଲ ହାର । ୨ ।
ମରମେ ରହିଲା ଗୀତ
　　ସ୍ୱପନେ ବୁଡ଼ିଲା ରାତି
ଭରିଲା ନୟନେ ବାରି,
　　ତୁମ ପଥ ଗୁହିଁ ଗୋ । ୩ ।

(ଲଳିତା ପ୍ରବେଶ ହୋଇ ରାଈଙ୍କର ବିହ୍ୱଳ ଅବସ୍ଥା ଦେଖି ଟିକିଏ ଥମକି ଗଲେ)

ଲଳିତା—ରାଈ । (ଗୁହିଁ ରହିଲେ ପାଦଠାରୁ ମଥା ଯାଏ)

ଶ୍ରୀମତୀ—(ଅଖି ଫେରାଇ) ମୋତେ ଡାକିଲୁ ସହି ?

ଲଳିତା—ନାହିଁ ତ ।

ଶ୍ରୀମତୀ—କିଏ ତେବେ ? କିଏ ମୋତେ ଡାକିଲା ? ବଡ଼ ମିଠା ସ୍ୱର, ଭାରି ମଧୁର କଣ୍ଠ । ଅସି ଦୁଆର ଖୋଲି ଗୁହିଁଲି ଯେ, କେହିନାହିଁ ।

ଲଳିତା—ମୁଁ ତ ହେଉଛି ଅସୁଛି । ତମର ଏ ଅବସ୍ଥା ଦେଖି ତାଟକା ହେଲି ମୁଁ । କହନା, କୁଳର ବୋହୂ ତୁମେ, ସାଥିରେ କେହି ନାହିଁ । ରାତିଟା । କାହ୍ନୁ ଡରରେ ଲୋକେ ଘରୁ ବାହାରୁ ନାହାନ୍ତି । ତୁମେ ଏଥିରେ, ଏକୁଟିଅ ଅସି କବାଟ ମେଲାଇ ବାହାରେ ଠିଅ ? କୁଟୀଳା ତ ନଥିଲାକୁ କଲି ଭଅଉଛି । ନାହିଁ ନାହିଁ, ଅଜି, ତା ଅଖି ଅଗରେ ପଡ଼ି ଯାଇଥାଅନ୍ତ ? କଥାଟା କ'ଣ ହୁଅନ୍ତା ? ଅଜି ମହତ ରହନ୍ତାଟିକି ?

ଶ୍ରୀମତୀ—ତେବେ ମୋର କଅଣ ଶୁଣିବାର ଭୁଲ ହେଇଟା ସହି ? ପ୍ରଥମେ ଭାରି ଧୀରେ ଧୀରେ—ହୁଏତ୍ତ—କେଜାଣି କେତେ ଦୂରରୁ ଶୁଭିଲା, କିଏ ଯେମିତ ଭାରି କାତର ହୋଇ ଡାକୁଛି—'ରାଧା, ରାଧା' ? ବଳୁ‌ଲି ବେଗରେ ସେଇ ସ୍ୱର ପାଖରେ—ଏଇ ଦୁଆରେ ଡାକଦେଲା ପରି ଶୁଭିଲା ମୋତେ । ଅନ୍ୟାୟ କରୁଛି ? ଅନ୍ୟାୟ କରୁଛି କି ସହି, କବାଟ ଫିଟାଇ ଦେଇ ?

ଲଳିତା—ଅନ୍ୟାୟ—ନ୍ୟାୟ ପଛେ କହିବ । ଏବେ ତୁମେ ଘରକୁ ଚାଲ । କୁଟୀଳା ଯେବେ ଆସେ, ଆଜ ଏ ସବୁ ଦେଖେ, ତୁମେ ସରିବ, ମୁଁ ସରିବି । ଚାଲ, ଚାଲ, ଘରକୁ ଚାଲ ।

(ବିଶାଖା ଆସି ପହଞ୍ଚିଲେ)

ବିଶାଖା—ଏ କଅଣ ? ତୁହେଁ ଏଠି କଅଣ କଥା ହେଉଛ ? କାହାକୁ ଡରିକରି କରି ଛାଡ଼ି ହେଉଛ କି ଦୁହେଁ ?

ଲଳିତା—ମୁଁ ଡରେଇ ନାହିଁ ଯେ, ସଖି ଡରେଇ-ଛନ୍ତି । ତାଙ୍କ ପରି କିଏ ଡାକିଲା । ଘରୁ ଉଠି ଆସି କବାଟ ଫିଟେଇ ଲମ୍ବେ ଲମ୍ବେ ଏଠି ଆସି ହାଜର । ମୁଁ ନନ୍ଦପୁରକୁ ଫେରୁଛୁ । ଦେଖେ ତ ଏ ଅବସ୍ଥା ।

ବିଶାଖା—ସଖି । ମତିଚ୍ଛନ୍ନ ହେଲଣି କି ତୁମେ ? ଛି, ଟିକିଏ ଧୈର୍ଯ୍ୟ ନାହିଁ ତମର ? ଏ ସବୁ ପୁଣି କଅଣ ? କାହିଁକି ଏମିତି ହେଉଛି ଲଳିତେ ?

ଲଳିତା—କିଛି ନାହିଁ । ପ୍ରେମ ଘୋଟିବାର ପୂର୍ବ ଲକ୍ଷଣ ଏ ସବୁ । କଅଣ ମାନିବ ସେ ?

( ଗୀତ )

ମନା ମୁଁ କରୁଥିଲି ଏହାକୁ ଗୋ
ଅନାନାଁ ବୋଲି ବନ ସହାକୁ ଗୋ ।୦।
ଅନାଦର ମୋ ଗିରେ, କଲା ଯେ ଏବେ ସ୍ବରେ
ଲଭିଲା ଦୁଃଖ ହେଲା କାହାକୁ ଗୋ ।୧।
କଳାକେଶରୀ ବାଳୀ, ଧୂର୍ତ୍ତ-ଦନ୍ତୀକୁ ଦଳି,
ଦେଲାଣି ଅସି ମନ କାହାକୁ ଗୋ ।୨।
ଥରକେ ଯେବେ ଲୋକ, ନୋହିଲା ଜାଗରୁକ
କହିବା କେତେ ତୁହାତୁହାକୁ ଗୋ ।୩।

ବିଶାଖା—ସତକଥା, ଏତେ ରାତିରେ ତାଙ୍କୁ ଆଜ ଡାକିଲା କିଏ ଭଲା ?

ଶ୍ରୀମତୀ—କେଜାଣି ? ସହି । ବସିଥିଲି ତ ତମମାନଙ୍କ ବାଟ ଚାହିଁ । ଶୁଣିଲି ଖୁବ୍ ଦୂରରୁ ସେଇ ଡାକ । କାନରେ ପଡ଼ିଲା ସହି, ସେଇ ଡାକ । ଦୂରରୁ —ଦୂରରେ, ପାଖରେ, ଏଇ ଦୁଆରେ । କେମିତି ରହନ୍ତି ସହି ? କେମିତି ତୁନି ହୋଇ ରହନ୍ତି ? ନ ଆସି ବସି ରହନ୍ତି କେମିତି ଭଲା ?

ବିଶାଖା—ହଉ, ହଉ, ବୁଝାଗଲା । ଏଣିକି କାନରେ ତମର ମାଧବୀ ଫୁଲ ଦେଇ ବନ୍ଦ ନ କଲେ ଚଳିବ ନାହିଁ ଦେଖୁଛୁ ।

ଲଳିତା—ଚାଲ, ଆଗେ ଟିକିଏ ଘର ଭିତରକୁ ଚାଲ ।

ଶ୍ରୀମତୀ—ଯିବା ତେବେ ? ଅପେକ୍ଷା କରିବା ନାହିଁ ତାଙ୍କୁ ?

ଲଳିତା—କାହାକୁ ଅପେକ୍ଷାକରିବା ଦର୍କାର ନାହିଁ । ଚାଲ ।

( ଶ୍ରୀମତୀ ଫେରି ଘର ଭିତରକୁ ଯାଉଯାଉ ପୁଣି ଫେରିଲେ )

ଲଳିତା—(ଶ୍ରୀମତୀ ଫେରିବାର ଦେଖି) ପୁଣି ଫେରିବା ଲୋଡ଼ା କଅଣ ? ଚାଲ ।

ଶ୍ରୀମତୀ—ରହ ରହ, ଲୋଡ଼ା ନାହିଁ ତ ସତ । ବାକି କେମିତି ଚାଲିଯିବା କହନା ? ଶୁଣ ନାଁ, କାନ ଅଛି ନାଁ ତମର ସବୁ ?

( ଗୀତ )

ମୋର ମରମେ ମରମେ ମୁରଲୀ ବାଜୁଛି ସହି,
ଶରମଜଡ଼ିତ ଚରଣ ଛନ୍ଦ ଦେଇ ।୦।
କଜ୍ଜ୍ୱଳ ମେଘରେ ବିଜୁଳି ଚମକ ସେ ଗୋ,
ବନ୍ଧୁଲି-ବନ୍ଧୁର ମଧୁର ଅଧର କି ଗୋ ?
ବିରହ ନୟନ ଅଶ୍ରୁଧାରଟି ଧୋଇ ।୧।
ବିଜନ ବିପିନେ କୁହୁ ସେ କି ଶଣୀ ତୁଲେ,
ପଥର ପଥୁକା ଅନମନେ ପଥ ଭୁଲେ
ହତାଶ, ବତାଶ ନାଚେ ସତେ ତାତା ଥେଇ ।
ଅଧୋମୁଖେ ଫେରେ ଗୋପନ ବେଦନା ନେଇ
ଅଭିସାରିକାର ଚୁମ୍ବନ ଛାପ ବହି ।୨।

ବିଶାଖା—ଅସ ସହି । ଘରେ ବସିରହି ମରମରେ ପଛେ ବଂଶୀ ବାଜୁଥାଉ ।

ଲଳିତା—ବାହାରେ ଯଦି ତୁମ ସଙ୍ଗେ ଆମକୁ ଯୋଡ଼ାମୁହାଁ କୁଟୀଳା ଦେଖିବ, ତେବେ ତିନିହେଁ ତନି ଯାଞ୍ଚିରୁ ଯିବା । ଚାଲ ଆଗେ ।

( ଦୁଆର ବନ୍ଦ କରିଦେଲେ )

୪ର୍ଥ ଦୃଶ୍ୟ
( ଗାଇ ଗାଇ ଶ୍ରୀକୃଷ୍ଣଙ୍କ ପ୍ରବେଶ )
( ଗୀତ )

କୃଷ୍ଣ— କୃଷ୍ଣ କୁଞ୍ଚିତ ଭ୍ରମର କେଶା,
କ୍ରୀଡ଼ାଚପଳକୁରଙ୍ଗୀ ଦୃଶା,
କନକ କଳିତ, କେତକୀ ଦଳିତ,
ଚଳରଙ୍ଗୀ ଏକା ମୋ ଭରସା ।
ଅରେ ବୃନ୍ଦାବାସୀ,
ଭଳା ଭକ୍ଷୋଳମୀ କେଳ କଳହଂସୀ ।୧।
କଣୋସ୍ତକୁଳ କଣ୍ଠମଣି,
କୃଶୋଦରୀ କଳକଣ୍ଠ ବାଣୀ,
କୋମଳ ବୟସେ, କାହୁଁ ଶିଖିଲା ସେ
କେଳିତକ ଜଣିବାର ଠାଣି ।
ସେ ମୋ କୁତୁକିନୀ,
କାମ ରଣ ସମୟେ ମୋ ଅନୁକାମୀ ।୨।

( ମଧୁମଙ୍ଗଳ ଟିକ୍ ତାଙ୍କ ପଛେ ଲୁଚି ଲୁଚି ଯାଇ ଶ୍ରୀକୃଷ୍ଣଙ୍କ ଗୀତ ସରିଲା ବେଳକୁ ନିଜେ ଗୀତ-ଟିଏ ଧରି ତାଙ୍କ ଆଡ଼କୁ ପିଟିକରି ଆସିଲେ । ଶ୍ରୀକୃଷ୍ଣ ଫେରି ମଧୁଙ୍କର ଅନୁସରଣ କଲେ । )

( ଗୀତ )

ମଧୁ— ଏ ବିରହ ସୁରେ ମନ ନ ମାନେ,
ଗଗନେ ରଙ୍କେ, ଜୋଛନା ଧାରି
କୋଇଲି କୁହୁରେ ସପନ ଆଣେ ।୦।
ସମୀରେ ସମୀରେ କୁସୁମର ବାସ
ଗଗନେ ନାଚୁଛି ବଜୁଳିର ହାସ
ଅଧରେ ମଖା'ନା, କମ୍ପିଥିର ଗ୍ରସ୍ୟା
ମଧୁପ ଗୁଞ୍ଜଇ ମଙ୍ଗଳ ତାନେ ।୧।
ବସିଛି ନବୀନା ଅଳୀ ପଥ ଚୁରି
ମନେ ମନେ ମିଛେ କରୁଛି ମନ ଭାରି,
ଲୋକ ଭୁଲା ଖେଳା, ମିଛେ ଅଭିମାନ ଛଳା,
ମରମର କଥା ମରମ ଜାଣେ ।୨।

କୃଷ୍ଣ—(ପଛରୁ) ବନ୍ଧୁ !
ମଧୁ—(ଭୁଲିପଡ଼ି) ଭୂପ ।
କୃଷ୍ଣ—(ନୀରବ ରହିଲେ)
ମଧୁ—( ଟିକିଏ ଅପେକ୍ଷା କରି ) ଅଚ୍ଛା ହଉ । ବୁଝିଲି ସବୁ । ଶୁଣିଲି, ଯାହା କହିଲ । ଯାଉଛି ମୋର ତେଣେ କାମ ଅଛି ।
( ଯିବାକୁ ଉଦ୍ୟତ )
କୃଷ୍ଣ—( ହାତ ଧରି ) ସଖା !
ମଧୁ—ଆଜ କିଛି କହିବାକୁ ବାକି ଅଛି ? କହି ପକାଅ ଏକାବେଳେ ତେବେ । ମୁଁ ଟିକିଏ ବେଗେ ଯିବି ।
କୃଷ୍ଣ—କୁଆଡ଼େ ଯିବ ସଖା ?
ମଧୁ—କେଳ ଦେଖୁନାଁ ? ଶ୍ରୀମତୀଙ୍କର ସୂର୍ଯ୍ୟ ପୂଜାଟା ତ ଫେର୍ ଅଛି ?
କୃଷ୍ଣ— ତୁମେ କଅଣ ଏଉଲଗେ ସେଟିକି ଯାଉଚ ?
ମଧ—କହିଲି ତ ।
କୃଷ୍ଣ- ସତ କହିବାକୁ ସତ୍ୟକଲେ ତମକୁ ଗୋଟିଏ କଥା ପଚାରିବି ।
ମଧୁ—ତମର କଅଣ ମନେନାହିଁ ? ବ୍ରାହ୍ମଣ ପଣ୍ଡ ଅମେ ? ସତ୍ୟ କହିବା ତ ଆମର ଜନ୍ମଗତ ବେଉସା । ଅଜ୍ଞ ପୁଣି ସତ୍ୟ କରିବ କଅଣ ?
କୃଷ୍ଣ—ଏମିତ ଗୀତ କାହିଁକି ଗାଉଥିଲ, କହିବ ?
ମଧୁ—ତୁମେ ଗାଉଥିଲ ବୋଲି ।
କୃଷ୍ଣ—ମୋ ଗୀତରୁ ତୁମେ ଭଲ କଅଣ ବୁଝିଲ ?
ମଧୁ—ତୁମେ ମୋ ଗୀତରୁ ଯାହା ବୁଝିଲ ।
କୃଷ୍ଣ—ଏଇଅ କଅଣ ତୁମର ସତ କଥା ?
ମଧୁ—ଅବିଶ୍ୱାସ କରିବାର କାରଣ ?
କୃଷ୍ଣ—ତୁମେ ବନ୍ଧୁ··· ।
ମଧୁ—ଅଜ ତୁମ ସଖା ।
କୃଷ୍ଣ—ଭଲକଥା । ତୁମେ ତେବେ ଖୋଲି କଥା କହିବ ନାହିଁ ମୋତେ । ଛାଡ଼ ।
ମଧୁ—ହଉ, ମୋତେ ବି ଛାଡ଼ ।
କୃଷ୍ଣ—ଛାଡ଼ିବାକୁ ରାଜି ଅଛି । ତୁମେ ଯଦି ମୋର ଗୋଟିଏ କଥା ରଖିବ ।
ମଧୁ—ଶୁଣେଁ ଅଗ ।

କୃଷ୍ଣ—( ଖଣ୍ଡିଏ କେତକୀ ଦଳ ଦେଖାଇଲେ )

ମଧୁ—( ହସି ) ବୁଝିଲି, ବୁଝିଲି । ଦର୍ଶଙ୍କ ପାଖେ ଲାଗି କରିବାକୁ ହେବ । ଏଇଆ ତ ?

କୃଷ୍ଣ—ତୁମ ମୁଣ୍ଡ ଗଣ୍ଡି ହେବ । ମୂର୍ଖ !

ମଧୁ—ସେ ତ ଠିକ୍, କାରଣ ଆମେ ବ୍ରାହ୍ମଣ । ତୁମେ ଗୋପ କହ୍ନାଇଁ । କଥାରେ ଅଛି, "ବ୍ରାହ୍ମଣାଃ ବେଦ ପାରଗା" । ସେମିତ ତମର କଅଣଟି ସଖା ? କିଛି ଅଛି ନାଁ ?

କୃଷ୍ଣ—ଅଛି, ଅଛି । ଅନେକ ଅଛି । ସେ ସବୁ ପଛେ ।

ମଧୁ—ଅଛୁ ତେବେ, ଆଗ କୋଉଟା କହ ।

କୃଷ୍ଣ—(ପୁଣି କେତକୀ ଦଳ ଦେଖାଇଲେ )

ମଧୁ—ହଁଅ, ସେ ତ ଭଲ କଥା—ମୁଁ ତ ଯାଉଛି ଏଇନେ ଶ୍ରୀମତୀଙ୍କ ସୂର୍ଯ୍ୟପୂଜା କରିବାକୁ । ପୂଜାରେ ଲଗାଇଦେବି କେତକୀ ପାଖୁଡ଼ାଟି । ଦିଅ ।

କୃଷ୍ଣ—ଦେବାକୁ ରାଜି; ମାତ୍ର ତୁମେ ହାତରେ ଲାଗି କରିବ ନାହିଁ । ତୁମେ ଶ୍ରୀମତୀଙ୍କୁ ଦେବ, ସେ ଲାଗି କରିବେ ।

ମଧୁ—କରନ୍ତୁ, ଅହୁରି ଭଲ । ଦକ୍ଷିଣା ମିଳିବାର ଆଶାଟା ଯେତେବେଳେ ଆମର ମଧୁ—ମଧୁ, ପରଶ୍ରମ କରି ଲାଗି କରିବାକୁ ମଧ୍ୟ ଆମେ ଅରୁଡ଼ା ପଡ଼ୁନାହୁଁ । କେଣିକି ଲାଗି ସେ କରନ୍ତୁ—ନ କରନ୍ତୁ । ହାତରୁ ଯାଉ—ଗୋଟେଇଁ ଖାଉ ।

କୃଷ୍ଣ—(କେତକୀ ଦଳଟି ଦେଇ) ନିଅ, ସାବଧାନ ! ଯେପରି ଅଉ କାହା ହାତକୁ ନ ଯାଅ । ମନେରଖ ।

ମଧୁ—( କାନରେ ଗଣ୍ଠି ଦେଇ) ରଖିଲି । ଗଲି ତେବେ ।

( ମଧୁ ଯିବାବେଳକୁ ଲଳିତା ପ୍ରବେଶ କଲେ )

ଲଳିତା – (ମଧୁଙ୍କ ପ୍ରତି) ବାଃ, ଭଲ ପୂଜା କରିବ ତୁମେ ? ତମକୁ ଗୁହିଁ ଗୁହିଁ ତେଣେ ଆଖିରୁ ପାଣି ମଲାଣି । ପେଟେ ଭୋଜନ ପଡ଼ିଲେ ଦେଇ ଝୁଲି ଝୁଲି ବାହାରିବ । ନାଁ ?

ମଧୁ—ନାକ ଫେଡ଼ କାହିଁ ସଖି, ନାକ ଫେଡ଼ ନାହିଁ, ଏଇ ଗଲି—ଗୁଲି ।

( ଶ୍ରୀକୃଷ୍ଣଙ୍କ ଗୁହିଁ ହସିହସି ଗୁଲିଗଲେ )

( ଅନ୍ୟ ବାଟରେ ଲଳିତା ମଧ୍ୟ ଯାଉଥିଲେ, କିନ୍ତୁ ଶ୍ରୀକୃଷ୍ଣ ପଛରୁ ଡାକିଲେ )

କୃଷ୍ଣ—ଲଳିତେ ?

ଲଳିତା—(ଛଳ କୋପରେ) ଛିଃ । ଭଲ ନାହିଁ, ମନ୍ଦ ନାହିଁ । ମଣିଷର ଅନକୂଳ ନାହିଁ ? ପଛରୁ ଡାକିଲେ କଅଣ ତମମାନଙ୍କୁ ମିଳେ ଭଲା ? (ଫେରି ଅସିଲେ) କଅଣ ?

କୃଷ୍ଣ—(ନୀରବ ରହିଲେ) ।

ଲଳିତା—ଖେଳିବାକୁ ବେଳ ନାହିଁ ମୋର ତମ ସାଙ୍ଗେ । କଅଣ ଯେବେ କହିବାକୁ ଅଛି କହ, ମୁଁ ଯାଏଁ । ଅଉ ଯେବେ ଖେଳିବାକୁ ମନ, ଯମୁନା କୂଳକୁ ଯାଅ । ଗୋପୀମାନେ ଅଛନ୍ତି ।

କୃଷ୍ଣ—ଆଜ କେହି ନାହାନ୍ତି ସେଠି ସଖି ?

ଲଳିତା—ଅଛନ୍ତି ।

କୃଷ୍ଣ—ତୁମେ [illegible] ।

ଲଳିତା—ତୁମ ଆଖିକି [illegible] । ଆଖି ଖୋଲି ଥିଲେ ଦେଖି ପାରିବ ।

କୃଷ୍ଣ—ଖୋଲି ଅଛି ତ ସଖି ।

ଲଳିତା—ତେବେ ଦେଖୁଥିବ ତ ସବୁ । ଏତେ ପାଖଟାରେ ଦିଶୁନାହିଁ ?

କୃଷ୍ଣ—ଦିଶୁଛି ସବୁ । ଜଣକ ଛଡ଼ା···

ଲଳିତା—ଜଣକ ଛଡ଼ା ?

କୃଷ୍ଣ—ହଁ ସଖି ।

—ଗୀତ—

ସେ ଯେ, ନୟନ ମୁଦିଲେ ପାଶେ ଅସେ,
ନୟନ ମେଲିଲେ ଦୂରେ ଦୂରେ ଅପସରି ବସେ ।୦।
ନିତ ଅସେ ନିଶି ଅଧେ,
ସପନେ ଅସଇ ନିଦେ,
ଉକାଣିରେ ଭାସିଅସେ ମୁରଲୀ ଶବଦେ
ଗୋପନେ, ମୋ କାନେ କାନେ,
ମୋ କଥା କହେ ମୋତେ ସେ ।୧।

(ଗୀତ ଶୁଣି ଲଳିତା ନୀରବ ହେଲେ କିଛି କାଳ । ତା'ପରେ କହିଲେ )

ଲଳିତା—ବୁଝି ପାରିଲି ନାହିଁ କିଛି ।

କୃଷ୍ଣ—ବୁଝି ନ ବୁଝିଲା ପରି ହେଲେ, ଲାଭ କ'ଣ ?

ଲଳିତା—ବାଃ ସତ କହିଲି—ଦୋଷୀ ହେଲି ? ତୁମେ କ'ଣ କହିଲ, କାହିଁକି କହିଲ, କାହା କଥା, କାହାକୁ ଅବା କହୁଛ ? ମୁଁ ଭଲା କେମିତି ଜାଣିବି ତୁମ ମନ କଥା ସେ ?

କୃଷ୍ଣ—( ଲଳିତାର କରଧରି ) ଲଳିତେ ! ଥରେ ମୋ ଏ ଅନୁରୋଧ ରଖ... ।

ଲଳିତା—ହଁ, ଅନୁରୋଧଟା ରଖି ସେଇଠୁ କ'ଣ କରିବି ?

କୃଷ୍ଣ—କିଛି ନାହିଁ ସହି !

—ଗୀତ—

ଖେଳାଖଞ୍ଜରୀଟ ତୁଣା, ମୋ ବନ୍ଧୁ !
ଖଟାଅ ମୋତେ ତା ବେହରଣି—
ଫୁଲ୍ ଗଛତଳେ ଦବାନିଶା ।୦।
ଖିଲଇ ମାନବ ଚନ୍ଦ୍ରମିତ ମଧୁ, ବନ୍ଧୁକ ବନ୍ଧୁ ଅଧରୁ,
ଖିଅଲ ରସ ପ୍ରସଙ୍ଗ ସଙ୍ଗିମାଙ୍କ ଗଣେ
ମୋତେ ଜଣେ କରୁ ।
ଖ-ମଣି ମଣ୍ଡଳ ଅସ୍ତହେବା କାଳ
ଜଗି ଚୋର ଜାଗରୁକ
ଖଞ୍ଜୁଥିବ ସୁନସଜଡ଼ା ମଣ୍ଡନ
ମଣ୍ଡୁ ମୋ ଅଙ୍କ ପଲଙ୍କ ।୧।

ଲଳିତା—ବାଃ, ସହସା ବସୋଦ୍‌ଗାର ? ଏ ଭୀଷଣ ପ୍ରେମ ତ ନୂଆ ଟଜୁମ୍ବାର ଏମନ୍ତ ପାଖେ ଏକା ଦେଖୁଛି । କାହା କଥା କହୁଛ ? କି ଅଧିକାର ଅବା ଅଛି ମୋର କାହାର ଫୁଲ୍ ଗଛତଳେ ତମପରି ଲହୁଣୀ ପିଲୁଲାକୁ ଖଟାଇବାକୁ ?

କୃଷ୍ଣ—ଲଳିତେ ! ପରିହାସ ଥାଉ । ଟିକିଏ ଉପକାର କରିବାକୁ ରାଜି ହୁଅ । ତୁମେ 'ହଁ' ଭରିଲେ ମୋର ସୌଭାଗ୍ୟଚନ୍ଦ୍ର ଉଇଁବ । ତୁମେ ଲବେ ମାତ୍ର ଅଣା ଦେଲେ ଧନୀର ଦର୍ଶନ ଲଭ ମୋ ପକ୍ଷେ କଷ୍ଟକର ହେବ ନାହିଁ—ମୁଁ ଜାଣେ ।

ଲଳିତା—ଜାଣ ତ ସବୁ ତୁମେ । ବାକି ଧନୀ ? ଧନୀ ବୋଲନ୍ତେ ?...

କୃଷ୍ଣ—ଲଳିତେ ! ଅନ୍ତର ତମର ?...

ଲଳିତା—ନାଁ, ବୁଝି ନ ପାରିଲେ ତମର ଉପକାର କରିବି କେମନ୍ତେ ? ବୁଝ ନାହଁ ? ମୋ ପାଖେ ତୁମେ ସଫା କଥାଟା ନ କହିଲେ ମୁଁ ତ ଅଜ ତମ ଅନ୍ତର ଭିତର କଥା ଜାଣୁ ନାହିଁ । ଧନୀ ବୋଲି କାହାକୁ କହୁଛ ବୁଝିଲେ ସିନା ।

—ଗୀତ—

କୃଷ୍ଣ—ସୁନ୍ଦର ଯା, ଏ ଜଗତେ ସେ ଯେ ତା'ର ସୁନ୍ଦର ।
ସୁରେ ତା'ର ବୀଣାବାଜେ ଛୁଇ ମୋର ଅନ୍ତର ।
ଫୁଲ୍‌ହାସେ ନିନ୍ଦେ ନିତ ମଧୁ ଲୋଭୀ ଭ୍ରମର ।
ମାନେ ମୁଖ ମଣ୍ଡଳରେ ଗୃହୁଁ ରୂପେ ତାହାର ।୧।
ଏ ମରତେ ଧ୍ୟାନ ଏକା ମୋର ନବ କିଶୋରୀ ।
ଗୃହୁଁ ଗୃହୁଁ ରୂପ ତା'ର ହେବ ପ୍ରେମ ବିଭୋର ।।

ଲଳିତ—ଓହୋ ! ତାଙ୍କ କଥା ? ଅସମ୍ଭବ । ସେ ଅଣା କାହିଁକି ପୋଷିବସିଛ କାହ୍ନୁ ? ତୁମେ ତାଙ୍କୁ କ'ଣ ମନେ କଲଣି କି ?

—ଗୀତ—

ଗୁଣ ରତ୍ନାକର ହେ,
ଗଲଣିକି ସରି ସେ କିଶୋରୀ କୁଳାଗ୍ରତ ହେ ।୦।
ଗୋପାଳଙ୍କ କୁଳଶୀଳ ଗଙ୍ଗାରୁ ଗଭୀର ହେ,
ଗୋଷ୍ପଦରୁ ଊଣା ମଣିଲ କି ବଂଶୀଧର ହେ ।୧।
ଗଣ୍ଡିଧନୁ ଗୁପତ ମୋ ସଖୀର ଅଗୁର ହେ,
ଅରଣ୍ୟ କୁସୁମ ପରି ହେବ କି ଏଥର ହେ, ।୨।

କୃଷ୍ଣ—ଚତୁରୀ ! ଛଳ ରଖ । ଯଦି ବୃନ୍ଦାବନରେ କାହ୍ନୁ ନାମ ଜୀବିତ ରଖିବାକୁ ମନ ତମର ଥାଏ, ନେବେ ଯାଅ ସଖି, ଥରେ ଯାଇ ରାଈଙ୍କ ମିଳନର ସୁଯୋଗ କରି ଦିଅ । ଦୟାକର ।

ଲଳିତା—ନିବିଡ଼ିଲ ନାହିଁ ତୁମେ । ହଉ ଯିବି । ତମ ଦୁଃଖ ଦେଖି ସତରେ ମୋର ଯିବାକୁ ମନ

ବଳୁଛ । ବାକି ଗୋଟିଏ କଥା । ତୁମର ଯେ ଭୋଳା ମନ , ଘଡ଼ିକେ ବଦଳି ପଡ଼ିବ । ପଛରେ ମୁଁ ସିନା ମିଛେଇ ହେବି, ଅଜ କଷ୍ଟ ପାଇବ ସଖୀ ମୋର ।

କୃଷ୍ଣ—ଲଳିତେ । ଜୀବନ ଯାହାର ରାଧାମୟ, ପବନ ଯା'ର ରାଧାର ପରଶମିଶା, ତା ପକ୍ଷରେ ଏହା କି ସମ୍ଭବ କେବେ ? ଯାଅ ସଖି, ମୁଁ ତମ ଅସିବା ବାଟକୁ ଅନାଇଁ ରହିଲି । ସଙ୍କେତ ପାଇଲେ ଭେଟିବି ।

ଲଳିତା—ଭେଟିବ ତ ସତ । କହୁଛ ତୁମେ ଠିକ୍ । ବାକି ସଙ୍କେତ ଦେବାପୂର୍ବରୁ ତୁମେ ଶପଥ କରି ପାରିବ ?

କୃଷ୍ଣ—ରାଜି ଅଛୁ ।

ଲଳିତା—ତେବେ ବଂଶୀ ଛୁଇଁ ଶପଥ କର, ସଙ୍କେତ କୁଞ୍ଜକୁ କାଣ୍ଟେଁ ଯିବ ।

କୃଷ୍ଣ—( ବଂଶୀଛୁଇଁ ) ଶପଥ କଲି ସଖି, ସଙ୍କେତ ପାଇଲେ ଜୀବନପଣରେ ମଧ୍ୟ ଯିବି ।

ଲଳିତା—ଛି । ଛି ଏତେ ପଣ କାହିଁକି ? ତୁମେ ତେବେ କେଉଁଠି ସଙ୍କେତ ପାଇବାକୁ ଅପେକ୍ଷା କରିଥିବ ?

କୃଷ୍ଣ—ଏଇଠି ଅଛୁ ।

ଲଳିତା—ଅର୍ଥାତ୍ ଅଖି ମୁଦି ବସି ଏଇଠି ତପସ୍ୟା କରିବ ନାଁ କଅଣ ?

କୃଷ୍ଣ—ହଁ ସଖି ।

ଲଳିତା—ମୁଦିଲି ଦେଖି, ମୁଦିଲି । ( ଶ୍ରୀକୃଷ୍ଣ ନୟନ ମୁଦିଲେ । ଲଳିତା ବସନାଭ୍ୟନ୍ତରରୁ ଫୁଲମାଳ କାଢି ଶ୍ରୀକୃଷ୍ଣଙ୍କ ଗଳାରେ ପିନ୍ଧାଇଦେଲେ । ଶ୍ରୀକୃଷ୍ଣ ଚମକିପଡ଼ି ଗୃହିବା ବେଳକୁ ଲଳିତା ଅଣ୍ଟୁ ମାଡ଼ି କୃତାଞ୍ଜଳି ପୃଷ୍ଠରେ ବସିଛନ୍ତି । ଶ୍ରୀକୃଷ୍ଣ ଅନନ୍ଦରେ ଲଳିତାଙ୍କ କର ଧରିପକାଇଲେ )

କୃଷ୍ଣ—ଲଳିତେ । ଏତେ ଅନୁଗ୍ରହ ଧନୀର ମୋ ଠାରେ ? ଏତେ ସ୍ନେହ ତମର ମୋଠେଇଁ ?

ଲଳିତା—ରାଧାନାଥ । ସ୍ନେହ, ଅନୁଗ୍ରହ, ଯାହାବୋଲ ସବୁ ତମର ଦଅ ସିନା । ଧନୀର ମିନତି ରଖାକର ଅଜି ମାଧବୀକୁଞ୍ଜ ପବିତ୍ର କରିବ । ଏତିକି ଭିକ୍ଷା ।

କୃଷ୍ଣ—ଲଳିତେ । ଧନୀର ଅଦେଶ ଶିରୋଧାର୍ଯ୍ୟ । ଜୀବନରେ ଏ ରତ୍ନର ପ୍ରତିଦାନ କରୁଅଛୁ ବୋଲି ଭାବିପାରୁନାହିଁ । କିପରି ତମ ଋଣ ଶୁଝିବି ? (ଗଳାରୁ ଅନ୍ୟମାଳା କାଢ଼ି ଲଳିତାଙ୍କ ଗଳାରେ ଦେବାକୁ ଗଲାବେଳେ, ଲଳିତା ତାଙ୍କ କଣ୍ଠରେ ବନ୍ଧାଇ ଦେବାକୁ ବାଧା ଦେଇ, ମାଳାଟିକୁ ଧରି ନେଲେ )

ଲଳିତା—ରାଧାନାଥ । ଦାସୀ ଏଥିକି ଯୋଗ୍ୟା ନୁହେଁ । ଦଅ । ଏ ମାଳା ଧନୀ ଗଳାରେ ସାଜିବ । ସୌଭାଗ୍ୟ ମୋର ଯେ ମୁଁ ତାଙ୍କର ଚରଣ ଦାସୀ । କ୍ଷମାକର ।

କୃଷ୍ଣ—ମହତର ସ୍ପର୍ଶରେ ମଧ୍ୟ ମହତ୍ତ୍ୱ ଥାଏ ଲଳିତେ । ( ଲଳିତା ମସ୍ତକ ଅବନତ କଲେ, ଶ୍ରୀକୃଷ୍ଣ ଏକ-ଦୃଷ୍ଟିରେ ଦେଖୁଥିଲେ ତାଙ୍କୁ )

———

ପଟକ୍ଷେପ ।

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ଯମୁନାତୀର )

( ଶ୍ରୀମତୀ କଳଘଟ ଧେନି ଥରକୁଥର ଜଳଅଣି ପୁଣି ଢାଳୁଥିଲେ ନିତାନ୍ତ ଅନ୍ୟମନସ୍କ ଭାବରେ । ଅଖି ବଡ଼ ଉଦାସ । ବେଳେବେଳେ ନାନା ଉତ୍କଣ୍ଠା ଫୁଟିବା ପରି ଭାବ ତାଙ୍କର । ଶାଖା ଏ ସବୁ ଲତା ଉହାଡ଼ରେ ଥାଇ ଲୁଚିଲୁଚି ଦେଖୁଥିଲେ । ଶ୍ରୀମତୀ ଗାଉଥିଲେ ଗୀତ)

—ଗୀତ—

ଶ୍ରୀମତୀ—ନିରବଧି ନୀର ଝରେ, ଚିର ଅନମନା
ସହିବି ସତେ ମୁଁ କି ଯାତନାରେ ।୦।

ଯା’ଲାଗିରେ ଦବାଗ୍ନି—ଯା’ ଲାଗିରେ ତାତେ ଘୃତ
କାଳ ରଚେଁ ପ୍ରେମବ୍ରତ—ଗୃହେଁ ପଥ ନତ ନତ
ସେ କି ରେ ଛଳନା କରେ ? ।୧।

(ଗୀତ ଗାଉଥାଉ, ପାଣି ଭରି ଉଠିଲେ ଯିବାକୁ, ପୁଣି ଚାହିଁକି ଫେରି ଆସି ପାଣି ଭରନ୍ତି କରିବାକୁ ଓ ଚାଲିବାକୁ ଲାଗିଲେ । ଏହା ମଧ୍ୟରେ ବିଶାଖା ତାଙ୍କୁ ଲକ୍ଷ୍ୟ କରି ପଛରୁ ଗାଇଲେ ଗୀତ । ଶ୍ରୀମତୀ ଗୀତ ଶୁଣି ବିଶାଖାଙ୍କ ଆଡ଼କୁ ଚାହିଁରହିଲେ )

—ଗୀତ—

ବିଶାଖା— ବନୋଦମୀ ରାଗ (ସନ୍ଧ)

(ତୁ) ଏକା ଆସି କୁଳବୋହୂ ଏଇ ଯମୁନା ତୀରେ
(ତୁ) ବିଜନ ଘାଟେ ବସୁ କାହିଁଲେ
ଫୁଲସଞ୍ଜୀ ।ରେ ଗୋ ? ।୦।
ଯେ ପାରିରେ ବଂଶୀଡାକେ ପ୍ରବୀର ସ୍ୱରେ
ଭରୁ କୁମ୍ଭ, ତାକୁ ବାରି ତା’ର ତାଳେ ତାଳେ (ବନ୍ଧୁ)
ମନ ଭରୁ କି ଜଳ ଭରୁ ତୁ ଗୋ—
ତୋର କୁମ୍ଭ କି ନଭରେ ? ।୧।
ତା’ର ଲାଗି ଶିରେ ତୋର କଳଙ୍କ ପସରା
ସେଇ କଳଙ୍କ, ଫୁଲ ମଣି ତୁ କଲୁ ଗଳାମାଳା ।
(ତୋର) ମନେ ନାହିଁ କି ?
କି ହୋଇବ ନଣନ୍ଦ ଜାଣିଲେ ଗୋ ? ।୨।

(ଗୀତ ସରିବା ପରେ କୁଟୀଳାର ପ୍ରବେଶ )

କୁଟୀଳା—ରାଜକୁମାରୀ ! କଳସୀ ମଜା ସରିଲା ?

( ସମସ୍ତେ ନୀରବ )

ଭୋର୍ ପହରୁ ପାଣି ନବାକୁ ଆସିଲଣି ? ସାଙ୍ଗରୁ ଯେତେ ଆସିଥିଲେ ସମସ୍ତେ ଗଲେଣି ନାଁ ଆଉ କିଏ ଅଛି ? ଦେଖିଲୁ ?

ବିଶାଖା—ମୁଁ ଅଛି, ମୁଁ ଅଛି । (ହସିଲେ)

କୁଟୀଳା—(ଖତେଇ ହେବାପରି) ମୁଁ ଅଛି, ମୁଁ ଅଛି ! ମଲୁ ନାହିଁ ଲୋ ପୋଡ଼ାମୁହିଁ !

ବିଶାଖା—ମୁଁ ମଲେ କଅଣ ହେବ ? ତୁ ଯେତେବେଳେ ଯମୁନାରୁ ସହସ୍ରଜଳା ମାଠିଆରେ ପାଣି ନେଇ ସତୀ ହବୁ, ମୁଁ ମଲେ ଆଉ ଦେଖିବ କିଏ ?

କୁଟୀଳା—ମ’ର, ମ’ର୍ ତୁ ! ତୁନି ହ ! ଅଲେ, ତୋତେ ମୁଁ କହୁନାହିଁ ।

ବିଶାଖା—ତତେ ମୁଁ ବି କହୁନାହିଁ ।

କୁଟୀଳା—(ରାଧାଙ୍କ ପ୍ରତି) ବୋଇଲୁ, କାମ ସରିଲା ? ଘରକୁ ଯିବ ନାଁ, ଏଇଠି ରହିବ ?

ବିଶାଖା—ଗୁମର ଦେଖାଉଛୁ । ରାଇଜରେ ଆଉ ବୋହୂ ଅଛନ୍ତି ନାଁ ଯାଙ୍କର ଏକା ବୋହୂ ? ଏଇ ଏକା ନଣନ୍ଦ । ଖଟେଇ ଖଟେଇ ବୋହୂର କଣ୍ଠା ରହିଲାଣି । ଚାହିଁକି ଦେଇଛନ୍ତି ତାକୁ ଏଡ଼େ ବଡ଼ ମାଠିଆ । ନିଜେ ତ ସହସ୍ର ଜଳା ମାଠିଆରେ ପାଣି ନେଲାବେଳେ, ପାଣି ବୁହାଇ ବାଟଯାକ ଖସଡ଼ା କରିଛ । ଘାଟଠା ହେଉଚିଖସଡ଼ା ପାଣି ନେଇ ବନ୍ଦକୁ ଉଠୁ ଉଠୁ ଗୋଡ଼ ତାଙ୍କର ଖସିଗଲା ଯେ, ପଡ଼ିଲଠି ପୁଣି ପାଣିକି ଆସି ଟିକିଏ ବସିଛନ୍ତି ନାଁ, ତେଣୁ ଆସି ଝାଡ଼ ହେଲା ? ଝୋଲମାରି ଯାଇଥିଲା ତାଙ୍କୁ ଯେ, କେତେ କଷ୍ଟରେ ଚେତା ଆସିଛି । ନବୁଝି, ନଶୁଣି ଏକାତାନେ ଖପା ! ପ୍ରକୃତଛଡ଼ା ହେଲେ ଲୋକେ ସବୁ ଏଇମିତି ହୁଅନ୍ତି ! ଯା ଯା, ତୋ କାମରେ ଯା, ଆମେ ଯାଉଛୁଁ । ଆସ ସଖୀ !

( ଶ୍ରୀମତୀଙ୍କୁ ଉଠାଇଲେ – ପାଣି ନେଇ ଦୁହେଁ ଚାଲିଗଲେ )

ଅଭି—(ପ୍ରବେଶ) କଲୋ କୁଟୀ, ଯୋଉଠିଥିଲୁ ତୁ— ସାତଘର ଭାଙ୍ଗିବୁ ପରା ! କାଇଁ, କୋଉଠି ଯେ କଅଣ କରିଥିଲୁ ?

କୁଟୀଳା—ସମସ୍ତେ ତ ଦୋଷ ମତେ ଦିଅ—ମୁଁ କଅଣ ଜାଣେନାହିଁ ସେକଥା ? ପଡ଼ିବା ଫଡ଼ିବା ସବୁ ମିଛ କଥା । ସରିଲା ସେ, ଏ ଟୋକାଗୁଡ଼ାଙ୍କ ସାଙ୍ଗରେ ପଡ଼ି ।

ଅଭି—ଆଉ କଅଣ ତୋ ମନରେ ଥିଲା, ସେ ଟୋକାଗୁଡ଼ାଙ୍କ ସାଙ୍ଗରେ ପଡ଼ିନଥା’ନ୍ତା ? ଝିଅଙ୍କ ସାଙ୍ଗରେ ଝିଅ—ନାକରି କଅଣ ହେଲା ? ନାଇଁ ବୁଝିଲି ବୁଝିଲି, ତୁ ତାଙ୍କୁ ଦେଖି ନ ପାରି

ଏମିତି ଲଗେଇ-ବଗେଇ କହୁଚୁ ।

କୁଣ୍ଠୀଳା—ହଁ, ମୁଁ ତ ତା'ର ବଇରୀ ହେଉଚୁ ଯେ ଖାଲି ଲଗେଇ-ବଗେଇ କହୁଚୁ ?

ଅଭି—ଆଉ କଅଣ ? ଏଇନେ ଯେ ଗୋଡ଼ ଖସିଗଲା, ପଡ଼ିଗଲା ସେ – କିଏ ଭଲା ତା'ର ଭଙ୍ଗା ଗୋଡ଼ ସଳଖେ ? ତୋ'ର ଯୋଗୁଁ ସିନା···

କୁଣ୍ଠୀଳା—ହାଇରେ ଦଇବ । ମୁଁ କଅଣ ତାକୁ ପଡ଼ ବୋଲି କହିଲି ? (ସକେଇଲା)

ଅଭି—କହନ୍ତୁ ଆଉ କଅଣ ମ ? କେତେ ମାଠିଆ ପାଣି ଅବା ଆମର ଲୋଡ଼ା । ରଜାଘର ଜେମା ସେ—ତୁ ଏଇ କେତୋଟା ପାଣି ନେଇଗଲେ କଅଣ ହୁଅନ୍ତା ନାଇଁ ? ନାଇଁ, ସେ ନ ଆସିଲେ—ନହବ ? ତୋ'ର ଏକା ଜିଦ । ତୋ'ର ଯୋଗୁଁ ତା'ର ଗୋଡ଼ ଖସିଲାନାହିଁ ତ ଆଉ କଅଣ ?

କୁଣ୍ଠୀଳା—ସବୁ ତ ମୋ'ର ଦୋଷ । ବେଶ୍ ବେଶ୍, (କାନ ମୋଡ଼ହୋଇ) ମୁଁ ଆଜିଠୁଁ ଆଉ କୋଉ କଥାରେ କଥା କହିବ ନାଇଁ । ଯାଃ—(ରାଗରେ ଯାଉଥିଲା, ପୁଣି ଫେରି) ତୁ ରାଗ-ମାଗ ଯାହା କର ଭାଇ, ମୁଁ ସତ କହୁଚୁ । ଅଚ୍ଛା, ଯମୁନାକୁ ତ ସମସ୍ତେ ପାଣିକି ଆସୁଛନ୍ତି—ରାଧାର ଗୋଡ଼ ଖସିଗଲା କାହିଁକି, କହିଲୁ ?

ଅଭି—ହଁ ହଁ, ମୁଁ ସବୁ ବୁଝିଲିଣି । ତୁ ତା' ନାଆଁରେ ଆଜିଠୁଁ ଗୁରେ ଏଣୁତେଣୁ ଆଉ କହିବୁ ନାଇଁ । ମଣିଷର ମନ, କେତେବେଳେ କଅଣ ଥାଏ—ସାତ କଥାରେ ସତ ଭୁଲେ । ମୁଁ ବୁଝୁନାଇଁ—ପିଲା ହେଇଚ ? କହୁଚ କଅଣ ନାଁ ଦୁନିଆ ତ ଚାଲୁଛନ୍ତି, ରାଧାର ଗୋଡ଼ ଖସିଲା କାହିଁକି ? ଦୁନିଆରେ ଭଲା ତୋ'ପରି ନଣନ୍ଦ ଆଉ କାହାର ଅଛୁ ? ଯା, ଯା, ଯା—ମାଠିଆଟା ଧର୍, ସେ ଗୋଟିଏ ଗୋଟିଏ ଘରକୁ ଆସୁ ।

ବିଶାଖା—(ମାଠିଆଟା ଶ୍ରୀମତୀଙ୍କଠାରୁ ନେଇ କୁଣ୍ଠୀଳାକୁ ଦେଲେ) ନେ, ଧର୍ ।

(କୁଣ୍ଠୀଳା ରାଗ ଗରଗର ହୋଇ ଚାଲିଗଲେ—ପଛେ ପଛେ ସମସ୍ତେ ଗଲେ)

## ଦ୍ୱିତୀୟ ଦୃଶ୍ୟ

ଗ୍ରାମ୍ୟ—ପଥ

( ଖୁସି ମନରେ ଲଳିତା ଗାଇ ଗାଇ ଆସୁଥିଲେ )

ଲଳିତା— (ଗୀତ)

ଫୁଲବନେ, ଭ୍ରମରହୁଅ ଫେରି ଯା'
ସୋହାଗ-ସୁଧା ବୋଲି ଆ ।
ଧୀରେ ଧୀରେ ପରଶିଆ—ନରମ ଗଣ୍ଡ
ରସିଆ ଫୁଲକୁମାରୀ - (ଲଜଭରି)
ଝରେ ନିହାର— ନୀର କି ତା'ର
ତୋଳିଗି ଝୁରି ଝୁରି ଯା'—
(ଆସିଲେ ମଧୁମଙ୍ଗଳ)

ମଧୁ— (ଗୀତ)

ତୋ ପଥ ଚାହିଁ—ଆସିଛୁ ଧାଇଁ
ଯିବ କି ସତେ ବାହାର—ଗୃହଦଗୋର !
ଆଉନୟନେ ଅନାଇଁ ଘନେ
ନ ନେଲ୍ ଦୁଃଖ ମୋହର –
ଲଳିତା, ନବଚତୁରୀ, (ହାସଭରି) ॥

ଲଳିତା—ଓଃ, କି ଅମଙ୍ଗଳ ଘଟିବ କେଜାଣି ? ଅନୁକୂଳରୁ ଏକୁଟିଆ ବ୍ରାହ୍ମଣମୁହଁ ଚାହିଁଲିଣି ଆଜି । ଯୋଉଠି ଦେଖ, ଏଥିରୁ ଗୋଟେ ପଛେ ପଛେ ଲାଗିରହିଛୁ ।

ମଧୁ—ହଁ, ଠିକ୍ । ଯେମିତି ଫୁଲଟି ପଛରେ ଫଳ, ବିଜୁଳି ପଛରେ ବଜ୍ର, ଆଉ ଭୋକ ପଛେ ପଛେ ଭୋଜନ । ନୁହେଁ ?

ଲଳିତା—ବାକି ଜାଣିଚ ତ ? ଫଳ ଲାଗି ତ ଫୁଲ ଫୁଟେ । ବଜ୍ର ଲାଗି ତ ବିଜୁଳି ଚମକେ ?

ମଧୁ—ଭୁଲ, ଭୁଲ; ସେ ନୁହେଁ—ସେ ନୁହେଁ । ଯା ହେଲେ ତା' ହବ ବୋଲି ଯେ ତା' ନହେଲେ ଯା ହେବ—ଏ କଥା ମୋଟେ ନୁହେଁ ।

ଲଳିତା—ହଉ ଛାଡ଼ । ଆମର ସେ ବିଚାରରେ ଲୋଡ଼ା ନାହିଁ । ତୁମେ ଏଣେ ଫେର୍ କୁଆଡେ ?

ମଧୁ—ଜଜାଣି ଉଠୁଛି ।

ଲଳିତା—ଠିକଏ ସଙ୍ଗ ମୋଡ଼ିଦେବି କି ? କୁହାଣି ସୁଅରେ ବୋହି ଯିବ ?

ମଧୁ—ମୁଁ ତ କହୁନାହିଁ ନୁହେ । ମୋ ନାଅରେ ସଙ୍ଗୀ ହବାକୁ ଆଉ ଆଉ ଲୋକ ଅଛନ୍ତି । ସେ ଶ୍ରୀମତୀ ଲଳିତା ନୁହନ୍ତି ।

ଲଳିତା—ତମ କହ୍ନାଇଙ୍କ ସଙ୍ଗ କଅଣ ଆମେ ମୋଡ଼ୁଛୁଁ ?

ମଧୁ—ନୋହିଲେ, ଉଠ୍ କହିଲେ—ଉଠ୍, ବସ୍ କହିଲେ—ବସ୍ ହୁଅନ୍ତେ କେମିତି ସେ ?

ଲଳିତା—ପବନ ଦେଖି ତୁମେ ପାଲ ଟାଣୁଛ ବୋଲି ସିନା —

ମଧୁ—ସେ ପାଲଟଣା କାଳ ଗଲାଣି । ଆଜିକାଲି ନ ଅ ଚଳିବାକୁ ନାରାଜ । ବସିଛୁ ତ ବସିଛୁ । ଚଡ଼ାରେ ଲାଗିଗଲା ତ ଅଟକିଲା । ମେଲିଛ ତ ଚାଲିଛୁ । ଢଙ୍ଗ ବଦଳିଯାଇଛୁ ।

ଲଳିତା—କାହିଁକି ?

ମଧୁ—ତା' କି ତମକୁ ଅଜଣା ? ଆଉ ବି ଗୋଟେ କଥା ବଡ଼—ମନେରଖିଥିବ—

(ଗୀତ)

ରହେନା ସବୁଦିନେ ସହି, ବୃନ୍ଦାବନ ଶ୍ରୀ
ବହେନା ଫୁଲବନେ କାହିଁ ମଳୟ ନିତି ।୧।
ଗୃଡକ ଗୃହିଁହେ ଆସିବ ବରଷା ଭାସି,
ଘଡ଼ଘଡ଼ି ଡ଼ଙ୍କରେ ଚମକେ ଛନକେ ଛାତି ।୨।
ଗୃହିଁ ବସିଛୁ ପ୍ରିୟା ଜାଣି ସେ ଜାଗରଣ,
ଭୁଲିଲା ନୟନ-ମାରେ ହଂସୁଳୀ ଶେଜ ସୁଖାତି ।୩।

ଲଳିତା—ଠିକ୍ କଥା କହୁଛ ବନ୍ଧୁ ।

ମଧୁ—ବେ-ଠିକ୍ ଗୋଟେ ଶବ୍ଦ ମୋ ଜନ୍ମପୂର୍ବରୁ ସଂସାରରେ ଚଳୁଥିଲା । ମୋର ଜନ୍ମ, ଆଉ ଜାଣ କି ତା'ର ମରଣ ।

ଲଳିତା—ଅଚ୍ଛା, ଗୋଟେ ଉପକାର କରିବ ଅମର ?

ମଧୁ—ବିଧାତା ମୋ କାତକରେ ଜଙ୍କରେ ଛଡ଼ା ଆଉ କାହାର ଉପକାର କରିବାକୁ ଲେଖିନାହାନ୍ତି ।

ଲଳିତା—ସେ ଭାଗ୍ୟବନ୍ତ ଜଣକ ଭଲା କିଏ ?

ମଧୁ—(ପେଟ ଦେଖାଇ) ଏଇ ମହାତ୍ମା । ପରୋପକାର କରିବା କଥା ତ ? ଏ ଛଡ଼ା ଆଉ ଆମେ ନୋହୁ । ଯୁଆଙ୍କ ଅନ୍ନଦାନ, ଜଳଦାନ,—ଏସବୁ କି କମ୍ ଧର୍ମର କଥା ?

ଲଳିତା—ତାଙ୍କ ଛଡ଼ା ଆଉ କାହାର ଉପକାର କରିବାକୁ କି ମନା ?

ମଧୁ—ନା, ମନା ନୁହେ; ମାତ୍ର ବେଳ କାହିଁ ? ଫୁରସତ୍ ଥିଲେ ସିନା ?

ଲଳିତା—ସେ ମହାତ୍ମାଙ୍କ ସେବାର ଭାର ଯଦି କେହି ନିଏ ?

ମଧୁ—ସ୍ୱଚ୍ଛନ୍ଦରେ, ଆମେ ଅନ୍ୟ କାମ କରିପାରୁଁ । କାରଣ, ତୁମେ ତାଙ୍କ ଭାର ନେଲ—ଆମେ ସେଠୁ ତୁମ ଭାର ନେଲୁଁ । "ଏ ହାତରୁ ସେ ହାତ—ଖଣ୍ଡିଆ ହାତକୁ ଜଗନ୍ନାଥ" ।

ଲଳିତା—କହନା ତେବେ, ଚନ୍ଦ୍ରାବଳୀଙ୍କର କେହି ସଖୀ ଆଜି ତୁମ ସଖାଙ୍କ ପାଖକୁ ଆସିଥିଲେ କି ନାହିଁ, କି କୋଉଠି ଭେଟ ହୋଇଚ କି ନାହିଁ ?

ମଧୁ—ହୋଇଥିବ, ନ ହୋଇଥିବ ।

ଲଳିତା—ବାଃ, ଭଲ ଉତ୍ତର ଦେଲ ତ ।

ମଧୁ—ମନ୍ଦ ତ ନୁହେ ।

ଲଳିତା—କେମିତି ?

ମଧୁ—ମୋର ଅନୁମାନ ଯେ ତୁମେ ସଙ୍କେତ ଦେବାବେଳେ ଯେମିତି କାହାର କାଉଁଠି ତୃରଦୃଷ୍ଟ ସେଠି ପଡ଼ିଚ ।

ଲଳିତା—ତେବେ ତ ବିଷମ କଥା ହେଲା ।

ମଧୁ—ଭୟ ନାହିଁ, ଶର୍ମା ସେଥିକି ବର୍ମା । ତୁମେ ନିଶ୍ଚିନ୍ତରେ ଯାଅ । ବାଆ ଦେଖି ଅଫାଲଟା ଠିକ୍ ମୁଁ ଟାଣିଦେବି ଯେ ।

ଲଳିତା—ଦେଖ, ଯେମିତି ଖୁବ୍ ତାକତକରେ ଏସବୁ ହୁଏ ।

ମଧୁ—ବତେଇବାକୁ ହବ ନାହିଁ ସେ କଥା—ତୁମେ ଯାଅ, ତୁମ କାମ ଦେଖ ।

ଲଳିତା—ଗଲି ମୁଁ, ତମକୁ ଲାଗିଲା ବାକି ସବୁ ।
(ପ୍ରସ୍ଥାନ)

ମଧୁ—(ଲଳିତା ଯିବାପରେ ସେହି ବାଟକୁ ଗୁହିଁ ହସି ହସି) ଏଇମିତ ଏକାବେଳେ ଅନନ୍ଦ ହୋଇ ଗୃଲିଯାଉଛ କ'ଣ ଲଳିତେ ? କାଲୁ ଜାଣିଛନା ପ୍ରୀତି କଅଣ ?

(ଗୀତ)

ସେ ଯେ ଅମଡ଼ା-ମଡ଼ାର ବାଟ,
ଗୃଲି ନ ଜାଣିଲେ କଣ୍ଟା ଭୁକିଯିବ,
ମୂଳ ଆଉ ଗୋଡ଼ୁକାଟ ରେ ସଙ୍ଗାତ ।୦।
ଆଗ ପଛ ବୁଲି ପିଠି ଗୁହିଁ ଗୁହିଁ
ପାହୁଣ୍ଡ ପକାଉଥିବୁ,
ଖାଲି ଅଗଭର ମାଡ଼ିଗୃଲିଲେ ତୁ
ପଟୁ ବାହୁଅଡ ଘାଟ, ବାଜିଯିବ—
ପଟୁ ବାହୁଅଡ ଘାଟ ରେ ।୧।
ଚକଗୃନ୍ଦ ତୋର ଉଡ଼ିଯିବ ଧନ !
ଭାଙ୍ଗିଯିବ ମେରୁହାଡ଼
ଟାଣ ତାଳ ପୁଣି କଡ଼ୁଆ ରାଗିଣୀ,
ଏ ନୁହେଁ ଖେମଟା ନାଟ
ନାଚିପିଲୁ ଧାଧିନା ନାଚନା ନାଟ ରେ ।୨।
(ଗାଉ ଗାଉ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ
### ପ୍ରକୋଷ୍ଠ ପ୍ରାଙ୍ଗଣ

( ଶ୍ରୀମତୀ ଦର୍ପଣ ଧରି ପ୍ରସାଧନନିରତା—ପଛରୁ ଲୁଚିଲୁଚି ବିଶାଖା ଆସିଲେ—ଶ୍ରୀମତୀଙ୍କ ପଛପଟେ ମୁହଁ ଟେଦଖାଇବା ବେଳକୁ ଦର୍ପଣରେ ତାଙ୍କ ଛାଇ ପଡ଼ିବାରୁ ଶ୍ରୀମତୀ ଲାଜରେ ଚମକି ଉଠିଲେ )

ଶ୍ରୀମତୀ—କିଏ ? (ଦର୍ପଣଟା ହାତକୁ ଢାଙ୍କିଦେଇ ସଙ୍କୋଚଭାବ ଦେଖାଇଲେ)

ବିଶାଖା—ତମ ଚରଣଦାସୀ ବିଶାଖା ।

ଶ୍ରୀମତୀ—ଛି ଛି ।

ବିଶାଖା—ଛି କାହିଁକି ? ଆସିବାକୁ ମୋର ଠିକ୍ ଏ ମଠ ହୋଇଗଲା ବୋଲି ତ ତର ସହିଲା ନାହିଁ । ନିଜେ ନିଜେ ବସି ବେଶ ବଢ଼ାଉଥିଲ । ସତକଥା – ତାଙ୍କ ମନ ବିନା ତମକୁ ଜଣା — ଅମେ ସାତପର କ'ଣ ଏମିତ ସଜାଇ ପାରନ୍ତୁ ?

ଶ୍ରୀମତୀ—ଯାଃ —

ବିଶାଖା—ସତେ ସହି । ଏ ବଙ୍କା ଭୁରୁକୁ, କମଳକୁଳ ଏକା ଭଲ ମାନିଲା ।

ଶ୍ରୀମତୀ—(ଉଠି) ମୁଁ ଯାଉଛି ତେବେ, ସମସ୍ତେ ଖାଲି ମତେ ଥାହୁଲି କଲ ।

ବିଶାଖା—(କାନି ଟାଣିଧରି) ଥାହୁଲି ? ହଉ, ତମର କଥା ହେଲା—ସମସ୍ତେ କଅଣ ତମକୁ ଥାହୁଲି କରୁଛନ୍ତି ? ଆଚ୍ଛା, ଅନ୍ୟ କଥା ଗାଧୋଇଗଲା— କାହ୍ନୁ ଯେ ତମର ରୂପ ଆଉ ବେଶ,— ଏସବୁର ପ୍ରଶଂସା କରନ୍ତି; ସେ ବି କଅଣ ଥାହୁଲି କରନ୍ତି ?

ଶ୍ରୀମତୀ—କେଜାଣି ସେ ଜାଣିଥିବେ (କାନି ଛଡ଼ାଇ) ଛାଡ଼, ଛାଡ଼ । ସତେ ସହି । ସେ ବି କୋଉ ଜଣା ? ସାରିଲ ମୋତେ ତୁମେ ସବୁ । କୋଉ ସୁନ୍ଦର-ପଣିଆ ଭଲ ମୋର ? ସମସ୍ତେ ଖାଲି ମୋତେ ନୁଆଁଣିଆଁ ପାଇଚ ?

ବିଶାଖା—ନୁଆଁଣିଆଁ ନୁହେଁ ଗୋ—ଏ ତ ସତକଥା ମୋର । (ବସାଇଲେ)

ଶ୍ରୀମତୀ—ଏ ବି ସତକଥା ମୋର ।

ବିଶାଖା—କୋଉ କଥା ସତ ତମର ?

ଶ୍ରୀମତୀ—ଶୁଣ ଅଛି, ସତେ ସହି—

(ଗୀତ)

ଗଲିଣି ମୁଁ ଲାଜେ ସହି ।
କେଉଁ ଗୁଣେ ବସି, ନିକୁଞ୍ଜବିଳାସୀ
ମୋ ସ୍ନେହେ ଅଛନ୍ତି ଜଡ଼ି ରେ,
ପ୍ରିୟସଖି ।୦।
ମୁଁ ତ ଯଉବନ-ଗୁମାନେ ମଦନ-
ମନ୍ତ୍ରର ଗୃଲି ନ ଜାଣେ,
ମୋତେ ଜଳକେଳି, ଅଳସୀ ମରାଳୀ-
ଗମନା ବୋଲନ୍ତି କେଣେ ।୧।
ବ୍ରଜେ କେତେ ବାମା, ଯାହାନ୍ତି ସୁଷମା—
ସମ୍ମୁଖରେ ଚମ୍ପାରୁ ଦଳ,

ସେ ଶିଖଣ୍ଡଚୂଳ, ନୟନ ଅଞ୍ଚଳ,
ଆନେ ତ ନ କଲ୍ପ କେଳି ।୨।
ମୁଁ ଗୃହିଁ ନଜାଣେ, ଲବେ ନେସକୋଣେ,
ନଗ୍ନର ଭୁରୁକୁ ଗେଲେ,
ତେବେ ପୀତପଟ, ନଟଖଞ୍ଜଗ୍ରଟ-
ନୟନା ମୋ ନାମ ଦେଲେ ।୩।
(ଲଳିତା ପଢ଼ୁଥିଲେ)

ଲଳିତା—(ହସି ହସି) କଅଣ ହଉଚ କି ସହି ?

ବଶାଖା—ଗୋଟିଏ ନୂଆ କଥା ।

ଲଳିତା—କଅଣ ମ ?

ବଶାଖା—ରାଈ ଅମର ନିଜେ ନିଜେ ବସି ବେଶ ରଚନା କରୁଥିଲେ—ଯୋଉଠିକି ଯେମିତ ଯାହା ସାଜବ···

ଲଳିତା—ହଁ ହଁ, ସାର, ଚଞ୍ଚଳ ସାର ।
(ବଶାଖା କାନରେ ଭୁନ ଭୁନ ଶ୍ୟାମଙ୍କ ଆସିଥିବା କଥା କହି ସଙ୍କେତ ଦେଖାଇଲେ)

ବଶାଖା—ବାଃ, ସହୀ ତେବେ ତ ଅମର ଆଗତ-ଭବିଷ୍ୟ ପଢ଼ିଛନ୍ତି ।

ଶ୍ରୀମତୀ—କଅଣ ସହି ?

ଲଳିତା—କିଛୁ ନାହିଁ ମ -

ବଶାଖା—ତମର କଥା । ଆଗରୁ କିଏ ଆସି କହିଚ କି ?

ଲଳିତା—କେଜାଣି, କହିଥିବ—

ଶ୍ରୀମତୀ—କଅଣ ମଁ ? ମୁଁ ତ କିଛୁ ଜାଣିପାରୁନାହିଁ ।

ବଶାଖା—ସତ କହନା, କିଏ କହିଚ ଆଗରୁ ଆସି ?

ଶ୍ରୀମତୀ—କୋଉ କଥା ?

ଲଳିତା—କୋଉ କଥା ? ସେଇ କଥା—

(ଗୀତ)

ମଳୟ ଆସି କି କହୁଛୁ ତୋ' କାନେ
ପ୍ରିୟତମ ସତେ ଆସିବେ ।୦।
ସାରା ରଜନୀ ଗୋ, ସେ ଚନ୍ଦ୍ରବଦନେ,
ଶରମେ ଶରମେ ନିରେଖି ମଗନେ,
ତେରଛ ନୟନେ ନୟନ ମିଳନେ
ନୀରବ କାହାଣୀ ଭାଷିବେ ।୧।
ସୋହାଗ-ଶୀତଳ-କୋମଳ କରେ ଗୋ,
ପରଶି ଅଧର ତୋର,
(ପୁଣି) ଜଗିଥିବୁ, ଶଶି ଜାଗିବେ ତୋ ଭୁଲେ
ଜାଗିଥିବେ ମନଚୋର ।୨।
(ବଶାଖା କୋଳରେ ହସିଲେ)

ଶ୍ରୀମତୀ—ଯା, ଯା, (ଲଜରେ ହସି) ନେଲ, ଏସବୁ ଖେଳ ନାହିଁ ମୋର ।

ବଶାଖା – ନାହିଁ ନାହିଁ । ଏତେ ଅଭିମାନ କାହିଁକି ?

(ଗୀତ)

ସାଜ ସଜ, ଗୋଷ୍ଠ ଚନ୍ଦ୍ରମା, ଆସିବେ ଆଜ ଗୋ ।୦।
ଦେଉଛନ୍ତି ଝର, ଧର ଧୀରେ ଧୀର;
ରସରଙ୍ଗିନୀ କାହିଁକି ଲାଜ ଗୋ ।୧।
ମୋ ବାଣୀ ପ୍ରତୀତ—କର ପ୍ରାଣମିତ
ଭାଗ୍ଯବାନ୍ତ ହୋଇଯିବ ସଞ୍ଜ ଗୋ ।୨।
ଗୃହିଁଛନ୍ତି ବାଟ—ଶିଖଣ୍ଡମୁକୁଟ
ଯଥାଇବୁ କୋଳ ପରି ସ୍ରଜ ଗୋ ।୩।
ଘେନ ମୋ ବଚନ — ହୁଅ ସୁପ୍ରସନ୍ନ
ପରପନ୍ନୀଙ୍କର ଭାଜୁ ତେଜ ଗୋ ।୪।

ଶ୍ରୀମତୀ – ସହି ମଁ ! ମୋତେ ପରିହାସକରକର କହିଲ ଭଲ ତମର କି ସୁଖ ?

ବଶାଖା—ନକର ଅବା କି ସୁଖ ?

ଲଳିତା – ନାହିଁ ଗୋ, ସତକଥା—

(ଗୀତ)

ଘନକେଶୀ ରେ,
ଘେନ ଏତେ ଗିର ମୋର ସୁସାରେ ।୦।
ଘସ୍ରନାଥ କନ୍ୟା କୂଳ ବସାରେ—
ଘୋଷାଗ୍ରେ କିଶୋର ଶ୍ବାସ ପ୍ରସାରେ ।୧।
ଘୋରତର କାମ-କାନ୍ତ-ଭୂଷା ରେ,
ଘାଣ୍ଟି ହେଉଅଛୁ ଦବା-ନିଶାରେ ।୨।
ଘଟସ୍ତନା ତୁ ଏ କଷ୍ଟ ଦଶାରେ,
ଘନାଶ୍ଳେଷେ ରଖ ଯଶ ହସାରେ ।୩।

ଶ୍ରୀମତୀ—(ଲଜରେ ମୁଖ ପୋଡି) ଛି, ମିଛ କଥା ।

ଲଳିତା—ମିଛ କଥା । ଲଳିତା ମିଛେଇ ନୁହେଁ ସହି ! ଅଚ୍ଛା ଇଏ ତେବେ କଅଣ ମିଛ ? (ସଙ୍କେତ ହାର ଶ୍ରୀମତୀଙ୍କ ଗଳାରେ ଦେଲେ । ଶ୍ରୀମତୀ ଚମକି ଚାହିଁଲେ, ଲଜ୍ଜାରେ ମୁଖ ପାଣ୍ଡୁର ହୋଇଗଲା)

ବିଶାଖା—କି ଗୋ । ସତେ ମ ରାଈ ? ଏଥର ? ମିଛ ନାଁ ସତ ?

ଲଳିତା— (ଗୀତ)

ନାଦ ନାହିଁଟି ନଟବରକୁ ଗୋ,
ନେବୁ ନିରତେ ମୁଞ୍ଜେ ମୀରକୁ ଗୋ ।
ନ ଲଭିବାକୁ ନବନୀତାଙ୍ଗୀ ତୋ ପଲ୍ଲବ-
ଅଧର ମଧୁର ନିର୍ଝରକୁ ଗୋ ।୦।
ନୂଆ ନାଗରୀ କେତେ, ନାହାନ୍ତି ଏ ଜଗତେ
ନଚୁଇ ନୟନାନ୍ତେ ସ୍ମରକୁ ଗୋ ।
ନିର୍ମଳ କେତେ ତୋର, ପୂର୍ବ-ପୁଣ୍ୟ ନାଗର
ନଟନ୍ତେ ତୋ'ବିନା ଇତରକୁ ଗୋ ।୧।

ଶ୍ରୀମତୀ—ଛୁ, ସହି ! ଯାହାଙ୍କ ସଙ୍ଗରେ ଅଳାପଏ ମୋର ଚାହିଁଚକ୍ଷୁ ହେଇନାହିଁ, ସେ ପୁଣି କାହିଁକି···

ବିଶାଖା ରଖ, ରଖ, ସେ କଥା ତ କେତେ ଥର କହୁଚ—

(ଗୀତ)

ନୟନ କରୁ ପରା ନାହିଁ ଶୀଖଣ୍ଡଧରୀ—
ଚାହିଁ ମୁଁ ବୋଲି ଥର ଥରକୁ ଗୋ ।
ନୟନ ବାଣ ତୋର ନବାଙ୍କେ ନିକ ସ୍ମର
ନୀଳଦେହରେ ଦେଲି ଜ୍ୱରକୁ ଗୋ ।୧।

ଲଳିତା—

ନ ଜାଣି ଅବା ଜାଣି ବଢ଼ାଇଦେଲୁ ପାଣି
ବ୍ୟୋମସଞ୍ଚାରୀ କଳାଢରକୁ ଗୋ ।
ନହସୁ ଜନ ଯେବେ, ଉପାୟବଳେ ଏବେ
ଅଣାଅ ତାକୁ ନିଜ ଢରକୁ ଗୋ ।୩।

ଶ୍ରୀମତୀ—ବ୍ରଜରେ କି ଆଉ ଗୋପଯୁବତୀ ନାହାନ୍ତି ? ସେ କାହିଁକି ଭଳା ମୋତେ ଅପେକ୍ଷା କରିବେ ସଖୀ ? ମିଛ କଥା ।

ଲଳିତା—ତେବେକେ ଅବିଶ୍ୱାସ ? ଆସ, ମୋ ସାଙ୍ଗେ ଆସ । ଉଠ, ଦେଖିବ, ମୋବାଟ ଅନାଇଁ କାହ୍ନୁ ଏବେ ମଧ୍ୟ କଦମ୍ବମୂଳେ ଜଗିଥିବେ ।

ବିଶାଖା—ଦେଖିବାକୁ ଯିବ ? ମନା ନାହିଁ—ବାକି ସଖି, ସେ ରୂପ ଦେଖି ଧୃତି ଧରିପାରିବଟି ?

ଲଳିତା—ସତକଥା । ମୋଠାରୁ ସମ୍ବାଦ ପାଇ ଶ୍ୟାମଙ୍କ ଶ୍ରୀମୁଖ-ପଦ୍ମ ସେଇଲାଗେ ଫୁଟିଉଠିଲା ପରି ଦିଶିଲା । ଏକେତ ଚନ୍ଦ୍ର; ତା'ପରେ ପୁଣି ପୂର୍ଣ୍ଣିମାର କିରଣ । ଚାଲ ସହି, ଥରେ ଲୁଚି ଲୁଚି ଦେଖି-ଆସିବ । ମୁଁ ପଛକେ ତାଙ୍କୁ ସଙ୍କେତ ଦେବାକୁ ଆଗ ଦେଖାଦେବି । ତମକୁ ଦୂରରେ ରଖିବି । ବୁଝିଲ ? ଆସ ।

ଶ୍ରୀମତୀ—ହଉ, କହୁଚ ଯେବେ, ଚାଲ ।

ବିଶାଖା—ଇଃ,ଜମା ମନ ନଥିଲାପରି କୁଣ୍ଠୋଉଚ ଯେ ?

ଲଳିତା—ସତେ ରାଈ । ଦେଖିବ ଚାଲ—

(ଗୀତ)

କାହା ଚିତ୍ତ ତାହା ଚାହିଁ ନ ବଳିବ
ଯାହା ମୁଁ ଦେଖିଲି ଗୋ ମା—
ଆହା । ନବ ତାରୁଣ୍ୟ—ଆହା । ସେ କି ଲାବଣ୍ୟ—
ଆହା । ବ୍ରଜେନ୍ଦ୍ର ପୁଣ୍ୟ ପୁଞ୍ଜ ଗୋଷ୍ଠଚନ୍ଦ୍ରମା ।୦।
ବଳାହକ ନିବହ—କଳାରୁ କଳ ଦେହ
ଡୋଳାରେ ନାଚୁଛି ଗୋ ମା,
ଚଳା ଚୂଳଧ୍ୱଜକୁ ତୁଳାକୋଟି ଚଳକୁ
ବଳାଉ ଦୃଷ୍ଟି ସରିଗଲା ସବୁ ଗରିମା ।୧।

(ଗାଇ ଗାଇ ଶ୍ରୀମତୀଙ୍କ ଘେନି ପ୍ରସ୍ଥାନ)

———

## ଚତୁର୍ଥ ଦୃଶ୍ୟ

### ବନପଥ

( ଲଳିତା ଓ ମଧୁମଙ୍ଗଳ ଦୁଇ ଦିଗରୁ ପ୍ରବେଶ )

(ଗୀତ)

ଲଳିତା—ଘରୁ ଯା ତୁ ମହୁଆ ବାଆ······

ମଧୁ—ଫୁଲମଣି ତୋର ପଥ ଅନୁସରି
ଚକିରି ଉଠରି ଚାହିଁ ।

ଲଳିତା—ଜଳାକଳୁଷିତ ଯେନ ଆଖିରେ ଲେଖିଛୁ—
ମରମ କଥାଟି ତା'ର;
ମଧୁ—ଜଳମୁଦଦଅ ଅଫିଠା ରହିଛି
ତୋ'ଲାଗି ନାଲି ଅଧର ।
ଲଳିତା—ତୋ'ଲାଗିରେ; ବେଶ ସାରେ.
ମଧୁ—ନିରଜନେ—ଅନମନେ ॥
(ଦୁହେଁ ଗାଇ ଗାଇ ଦୁଇଦିଗରେ ଚାଲିଗଲେ)

— —

## ପଞ୍ଚମ ଦୃଶ୍ୟ

### କୁଞ୍ଜବନ

(ଶ୍ରୀକୃଷ୍ଣ ଶ୍ରୀମତୀଙ୍କ କଥା ଚିନ୍ତା କରୁଛନ୍ତି)

ଶ୍ରୀକୃଷ୍ଣ— (ଗୀତ)

ଯଦି କୁସୁମକୁଞ୍ଜେ; ଅଳି ନ ଗୁଞ୍ଜେ (ସଖି ରେ)
ଏ ମୋ ଜୀବନ ଯୌବନ, କୁସୁମ ଶୟନ
ବିଫଳ ଏ ମଧୁସଙ୍ଗେ ।୦।

ଛି ଛି, ସଖି, ମରଣ ଭଲ
ବିଫଳ ଜୀବନ ବହନ ଭାର—
ମୁଁ ଗହନ କାନନ, ଗଗନ, ପବନ,
ଖୋଜିବି ଭୁବନ ସାରା,
ମୋର ଜନମରେ ବିଧି—ମିଳେ ଯଦି ନିଧି;
ସଁପିବି ପରାଣଭାର
କୃଷ୍ଣକୋଳେ ଧରି ରଖିବି;
(ସେଇ) ଚଞ୍ଚଳ ଭଙ୍ଗୀରେ ମୁଁ
କୃଷ୍ଣକୋଳେ ଧରି ରଖିବି ।୧।

(ମଧୁମଙ୍ଗଳ ଆସି ଶ୍ରୀକୃଷ୍ଣଙ୍କ ମୁଖରେ
ହାତଦେଲେ । ଗୀତ ଅଧା ରହିଗଲା )

ମଧୁ—ତୁନିହୁଅ ସଖା । ଟିକିଏ କଣ-ବାଙ୍ଗୁଆ ହୋଇ
ଆସ; ଆଜି ବୃହସ୍ପତି ଉଚ୍ଚ କେନ୍ଦ୍ରରେ—
ଶ୍ରୀକୃଷ୍ଣ—କଅଣ ସଖା ?
ମଧୁ—କହିଲି ପରା ଠାଟି କରିବାଇଁ—ଏଇଠି ବସନାଇଁ
—ଚାଲିଆସ କୁଞ୍ଜକୋଣକୁ—ଟିକିଏ ଆଡ଼ଲରୁ
ଦିଅ । ମନେ ନାହିଁ ପିଲାଦିନ କଥା ? ଲୁଚକାଳି···

ଶ୍ରୀକୃଷ୍ଣ କାହିଁକି ସଖା ?
ମଧୁ ଆଃ ! ଏଇଥିପାଇଁ ମୁଁ କହେଁ ପରା ତୁମ ବୁଦ୍ଧିକି
ଶାଣ-ପଥରରେ ଘଷ ବୋଲି ।

(ଗୀତ)

କୁଞ୍ଜକୋଣକୁ ଥରେ ଅନାଁରେ ମୋହନା—
ହାସ ପରଶି— ଅସେ କେ ଭାସି
କୋଇଲି କୁହୁ ବୋଲେ କାନା ?୦।
ସରଗ ଶଶି— ପଡ଼ିଛି ଖସି
ଜପୁଛି ଦିନରାତି ଯାହା ନାଁ ।୧।

ଶ୍ରୀକୃଷ୍ଣ—(ଉଠିପଡ଼ି) ସତେ ସଖା, କାହାନ୍ତି ସେମାନେ ?
ମଧୁ—(ଟାଣିନେଇ) ଆଃ; କି ବୁଦ୍ଧି ରେ ? ତୁମକୁ
କ'ଣ କହିବି ଆଉ ? ଏଣେ ଆସ (ଗଛ ଡାଳକୁ
ନେଇ) ଏଇଠି ରହି ଦେଖ; ବାକି ଯେମିତି
ତାଙ୍କୁ ତୁମେ ଚାହିଁବାଟା ସେମାନେ ନଜାଣନ୍ତି ।
ବୁଝିଲ ?—(ଉଭୟେ ଲତାକୁଞ୍ଜରେ ଲୁଚିଗଲେ)
(ଲଳିତା; ବିଶାଖା ଓ ଶ୍ରୀମତୀ କୁଞ୍ଜର ଏକ
ଦିଗରୁ ଆସିଲେ । ଲଳିତା ଶ୍ରୀମତୀଙ୍କ ଶୋଭାରୂପ
ଦେଖାଇଲେ)

ଲଳିତା— (ଗୀତ)

ଚନ୍ଦ୍ରମୁଖି ରେ.
ଚଞ୍ଚଳ ଚାରୁଚନ୍ଦ୍ରକଚୂଳ ଚାହାଁ ସଖି ।୦।
ଚାପ ଚାରୁ ଚାଲି ବଲ୍ଲୀ ଚଳେ—
ଚାକ-ଚକ୍‌କଣ ଚଣ୍ଡଯୁଗଳେ
ଚଳ ରତନ କୁଣ୍ଡଳ ଲୋଳେ-
ଚାହିଁ ଚମ୍ପକଲେଖା ହୁଏ—
ପରମସୁଖୀ ରେ ।୧।

ଚୁମ୍ବିଅଛି ଭାଲପଟ ରେଖ
ଚୂର୍ଣ୍ଣକେଶ କି ସୁନ୍ଦର ଦେଖ
ଚନ୍ଦ୍ରଚମ୍ପକୁ ଜିଣିଛି ମୁଖ
ଚଞ୍ଚରୀକତୁଲ୍ୟ ତା'ର ତରଳ ଆଖି ରେ ।୨।

ବିଶାଖା—ସତ୍ୟ !
ଶ୍ରୀମତୀ—(ନୀରବ)

ବିଶାଖା—ଏତେବେଳେ ଚେତନା ହେଲେଇ ଦେଲଣିଟି ? ଆମେସବୁ ପାଖରେ ଅଛୁଁ । ଟିକିଏ ଲାଜ ମହତ ଶିଖ । କ'ଣ ରୂପ-ସୁଧା ପିଇ ସାରିଲ ?

ଲଳିତା—ମନରେ, ନାଁ ଏ ଆଖିରେ ?

ବିଶାଖା—କେଜାଣି, କିଛି କହୁନାହାନ୍ତି ପରି ପଚାରିଲେ ।

ଶ୍ରୀମତୀ—ଛୁଃ । ସବୁଥିରେ ମୋତେ ଦୋଷ ଦେଲ । ତୁମେମାନେ ଯାହା ଦେଖୁଚ, ମୁଁ ତ ସେଇଆ ଦେଖୁଚି । ମୋ ବେଳକୁ ଭଲ ଦୋଷ ଲେଖିଲ କୋଉଠି ?

ଲଳିତା—ସତ ଯେ, ତମ ଦେଖା ଅଲଗା—ଆମ ଦେଖା ଅଲଗା । ଆମେ କେବଳ ଆଖିରେ ଦେଖୁଚୁ ସିନା; ତୁମେ କିନ୍ତୁ ମନରେ, ପ୍ରାଣରେ ଆଉ ଧ୍ୟାନରେ ଦେଖୁଚ ।

ଶ୍ରୀମତୀ—ହଁ, କାହିଁକି କହିବ ନାହିଁ ? ବ୍ରଜଯାକ ତ ମୋର ଭିଗାରି; ତୁମେ ବାକି ରହିବ କାହିଁକି ? ମନ ପୂରାଇ ଏତେବେଳେ ବାଦ ସାଧୁନାଅ ମ ।

ବିଶାଖା—ଭିଗାରି ଆମେ ନୋହୁଁ କି ଆମେ ବାଦ ସାଧୁନାହୁଁ । ଭିଗାରି ତମର ଦେହ ମନ । ସେଇମାନେ ତୁମ ସାଙ୍ଗେ ବାଦ କରୁଛନ୍ତି; ଆମେ କାହିଁକି କରିବୁ ? ଚାହାଁ ପକାଉଛନ୍ତି ସେଇମାନେ ତମକୁ; ତୁମେ ସିନା ମନେ ମନେ ଆମକୁ ସବୁ ଲଗାଇବାକୁ ଚେଷ୍ଟା କରୁଛ । କର; ହେଲେ···

(ଗୀତ)

ମଣିମୟ ନଥ ନାଚୁଅ ତୋହାକୁ
ବିବାଦେ ଜଣିମା ପାଇଁ
କମ୍ବୁଶିରେ ମାର-ଦର୍ପଣ ରଖି
ତହିଁ ତିଳଫୁଲ ନାଚେ ରେ ।
କିଶୋରୀ; କି ମୋଦେ ଲଜ୍ଜା ନାଗରୀ ।
ଦେଖୁଥାଇ ନାଚ, ତା ପ୍ରକୃତ କବାଟ
ଆଡ଼-ଅଡ଼ପେଲ କର ରେ ।୪।

ଲଳିତା—ସତକଥା ସତକଥା । ତମର ଏକମନ୍ତ୍ରସୂନ, ଗଣ୍ଡର ଅବକ୍ରିମା—ଏଇମାନେ ଏକା ରାଇ; ସତରେ ତମର ଭିଗାରି ହୋଇ ତମକୁ ଚାହାଁ ପକାଇ ଦେଉଚନ୍ତି ।

ବିଶାଖା—ଆମର ଟିକିଏ ଦୋଷ ନାହିଁ । ଏଥିକି ନିୟମ କଲେ ପରି ବାଧିବ ନାହିଁ ।

ଶ୍ରୀମତୀ—ଯାଃ; ମୁଁ ଯାଉଚି ତମମାନଙ୍କ ପାଖରୁ ବାହାରି ।

ବିଶାଖା—କିଶୋରୀ । ଏଇଟା ତମର ମନକଥା ନାଁ ମୁହଁକଥା ମ ?

ଲଳିତା—ମନ, ମୁହଁ—ଯାହାହେଉ; ଚାଲ ସହି । ମୁଁ ଟିକିଏ ଏକୁଟିଆ କାହ୍ନୁଙ୍କୁ ଦେଖାଦେଇ ଆଉ ଥରେ କଥାଟା ମାଜି ଦେଇ ଆସେଁ । ତୁମେ ଦୁହେଁ ମୋତେ ରାଧାକୁଣ୍ଡ ପାଖେ ଅପେକ୍ଷା କର । ଯାଉଛ ?

ବିଶାଖା—ଭଲକଥା, ଚାଲ ରାଈ ।

(ଶ୍ରୀମତୀ ଯାଉ ଯାଉ ପଛକୁ ବାରବାର ଚାହିଁ ଶ୍ୟାମରୂପ ଦେଖୁଥାନ୍ତି ଲଳିତା ଶ୍ୟାମଙ୍କ ନିକଟକୁ ଆଗଭର ହେବାବେଳକୁ ପଛରୁ ମଧୁମଙ୍ଗଳ ତାଙ୍କ କାନ ଟାଣିଧରଲେ—କୃଷ୍ଣ ଉଠି ଚାଲିଗଲେ )

ଲଳିତା—(ବୁଲପଡ଼ି କାନ ଛଡ଼ାଇ) ଯା ଯାଃ—

ମଧୁ—ମାନ କଲ କି ସଖି ?

(ଗୀତ)

ମାନ କରନା—ଟିକିଦିନରୁ ଜଣାଶୁଣା ।୦।
ତୋ ଆସିବା ପଥ ଚାହିଁ
ମୋ ଆଖିରେ ନିଦ ନାହିଁ
ଖାଇବା ଲବଣି ମୋର ପେଟେ
ହଜମ ହୁଏ ନା ।୧।

ଲଳିତା—ରଖ ରଖ ତମ ପ୍ରେମ ।

ମଧୁ—ସେଇଥିପାଇଁ ତ ସହି; ସାଙ୍ଗକୁ ଜଣେ ଖୋଜୁଥିଲି । ମୋର ତ ସେ ଗୋପାଳପ୍ରେମ ନୁହେଁ—ବ୍ରହ୍ମପ୍ରେମ । ବଡ଼ ଓଜନ । ଏକୁଟିଆ ଟେକି

କରାଇ ତମ ଅନୁସରଣ କରଚ ସିନା ? ଟିକିଏ ସାହାଯ୍ୟ କର ।

ଲଳିତା—କହୁଛୁ ରଗାଅ ନାହିଁ ମତେ—ମୁଁ ଲଳିତା ।

ମଧୁ—ତା ନଜାଣିଥିଲେ ଯ୍ୱା କରନ୍ତି ? ମୋର ଚେଷ୍ଟା ଅଛି । ମୁଁ ଜଳଜଳ କରି ଚାହିଁଛି ।

ଲଳିତା—ମତେ ଦିଶୁଚ ।

ମଧୁ—ତମକୁ ଗୋଟେ ବଡ଼ ଗୁଣ ସହି । ଟିକିଏ ଦିବ୍ୟଦୃଷ୍ଟିରେ ଦେଖ ।

ଲଳିତା—ଯାଅ । ମୋର ଚେଣେ କେତେ କାମ ଅଛି । ତମ ସାଙ୍ଗରେ ଲେପଚି ଖେଳିବାକୁ ଭଲ ନାହିଁ ମୋର ।

ମଧୁ—କେଉଁଠିକି ନିମନ୍ତ୍ରଣ ଅଛି କି ?

ଲଳିତା—ହଁ ।

ମଧୁ—ଆମ ସଖୀଙ୍କର ନୁହେଁ ତ ।

ଲଳିତା—ଥିଲେ କଅଣ ହବ ?

ମଧୁ—କିଛି ନାହିଁ ଯେ; ସେ ଚନ୍ଦ୍ରପୂଜାରେ ବ୍ୟସ୍ତ । ତାଙ୍କ ଦେଖା ମିଳିବ ନାହିଁ ଏଇନେ । ଏଇଆ ।

ଲଳିତା—ଚନ୍ଦ୍ରପୂଜା ?

ମଧୁ—ତମ ସଖୀ କେମିତ ସୂର୍ଯ୍ୟପୂଜା କରନ୍ତି;— ଆମ ସଖା ସେମିତ ଚନ୍ଦ୍ରପୂଜା କରନ୍ତି ।

ଲଳିତା—କାହିଁକି ?

ମଧୁ—ଶୀଘ୍ର ଚନ୍ଦ୍ରଦର୍ଶନ,—ଚନ୍ଦ୍ର ଚଳନ ଲାଗି ।

ଲଳିତା—କାରଣ ?

ମଧୁ—ତାଙ୍କର କୋଉଠିକି ନିମତା ଅଛି ଯେ; ଚନ୍ଦ୍ର ଉଦୟ ପରେ···

ଲଳିତା—ଓ; ଏମିତ କଥା ?

ମଧୁ—ହଁ ସଖି; ସେମିତ କଥା । ଏଥର ଗୁମାନ ଛୁଟିବ ତ ? ହସିକର ପଦେ ଭାଷିବ ତ ?

ଲଳିତା—ତୁମେ କୁଆଡ଼େ ବାହାରିଥିଲ ଯେ ।

ମଧୁ—ତମର କାନ ଟାଣିବାକୁ ପରା ।

ଲଳିତା—ଫେର ସେଇ କଥା ।

ମଧୁ—ଆଉ କୋଉ କଥା କହିବ ତେବେ ବତେଇ ଦିଅ । ମୁଁ ସତ କହେଁ—ସତ କହିଲି ।

ଲଳିତା—ଆଉ ସମସ୍ତେ କଅଣ ତେବେ ମିଛ କହନ୍ତି ତମ ହିସାବରେ ।

ମଧୁ—କହୁଚ ରହ; ହିସାବ କରେଁ ।

ଲଳିତା—ଉଠ ଉଠ, ଚାଲ ମୋତେ ତୁମ ସଖାଙ୍କ ପାଖକୁ ନେଇ ଚାଲ ।

ମଧୁ—(ହସି) ହଁ; ଏଇଥର ସଲଖ ହେଲେ ସଖୀ ଆମର । ଅନ୍ଧାରରେ ଅମଡ଼ା-ମଡ଼ାରେ ବାଟ ଦିଶୁଚି । ଦିନୁଟାରେ ତ ଅନ୍ଧକୁ ମଧ୍ୟ ବାଟ ଦିଶେ ବୋଲି ମୁଁ ଜାଣେ । ତେବେ ଏତେବେଳେ କାହିଁକି ସାଙ୍ଗକୁ ଜଣେ ଖୋଜା ?

ଲଳିତା—ଯିବନାହିଁ ତେବେ ତୁମେ ?

ମଧୁ—ଯିବନାହିଁ । କାମ ଯେ ତମ ହାତରେ । ନଯାଇ ମୋ'ର ଗୁରି ଅଛି । ଚାଲ; ଆଗେ ବଢ଼ । ବାଟ କଢ଼ା ।

ଲଳିତା—କି ? ଚାଲୁନା ତେମେ ଆଗରେ ।

ମଧୁ—ନାହିଁ ସଜନୀ । ଅନ୍ଧର ସିନା ଲଉଡ଼ି ଲୋଡ଼ା, ମୁଁ କାନପଣତ ଧରିଧରି ଚାଲେଁ । ସେଇଟା ମୋର ଅଭ୍ୟାସ । ତୁମେ ଆଉ କିଛି ମନେ କର ନାହିଁ । ମୋତେ ଦାନକଣା ବୋଲି ଘେନାକର ।

(କାନ ଧରିଲେ)

ଲଳିତା—(କାନ ଛଡ଼ାଇ) ଛିଃ—

ମଧୁ—(ଘୁଞ୍ଚିଆସି) ସେମିତ ହେଲେ—(ବକ୍ରଦୃଷ୍ଟିରେ ଚାହିଁଲେ)

ଲଳିତା—(ହସି) ହଉ ନିଅ । କାନ ନିଅ ପଛେ— ଆସ ।

(କାନ ବଢ଼ାଇ ବଢ଼ାଇ ଚାଲିଗଲେ—
ମଧୁମଙ୍ଗଳ ମଧ୍ୟ ପଛେ ପଛେ ଗଲେ)

---

## ଷଷ୍ଠ ଦୃଶ୍ୟ

ବନପଥ ।

(ଗୋପବାଳକଗଣ ଗୋଠରୁ ଫେରୁଥିଲେ—ବେଳବୁଡ଼ି ଆସୁଛି—ଝଡ଼ର ସୂଚନା—ମେଘ ଘୋଟି ଆସିଲଣି)

(ଗୀତ)

ଘୋର ମେଘ ଡର ଲାଗୁଛି ଘରକୁ ଚାଲ କହ୍ନାଇଁ
ନନ୍ଦରଜା ପଠେଇଛନ୍ତି ସଙ୍ଗେ ନେବୁଁ ଭାଇ ।୦।
ବିଜୁଳି ଚାହେଁ ଆଖିତରାଟି
ଅନାଇଁ ବୁକୁ ଯାଉଛି ଫାଟି
ଖଣ୍ଡିଆଭୂତ ଥରେ ଥରେ ମାରୁଛି ସତେ ହାଇ ।୧।

ସାଇଁ ସାଇଁ ଡାକେ ଗଛପତର
ଭାଙ୍ଗିଯିବ ସତେ ବଣପଥର
ଏକୂଳ ସେକୂଳ ଉଛୁଳା ଖାଉଛ
ଗରଜେ ଯମୁନା ନଈ ।୨।
(ଗାଇ-ଗାଇ ଚାଲିଗଲେ) ।

(ଚନ୍ଦ୍ରାବଳୀଙ୍କ ସଖୀ ପଦ୍ମା ଓ
ଶୈବ୍ୟା କଥାବାର୍ତ୍ତା ହୋଇ ଆସିଲେ)

ପଦ୍ମା—ଆଜି ପଥ ଛାଡ଼ିଦେଲେ ଆଉ ସୁବିଧା ସଜ ପଡ଼ିବ ନାହିଁ ।

ଶୈବ୍ୟା—ଶ୍ରୀମତୀ ନିଶ୍ଚୟ କୁଞ୍ଜ ଜଗି ବସିଥିବେ । ସବୁ ତ ଲୁଚିଲୁଚି ଶୁଣିଲି ।

ପଦ୍ମା—ଟିକିଏ କଷ୍ଟ କରିବାକୁ ପଡ଼ିବ ।

ଶୈବ୍ୟା—ନୋହିଲେ କୃଷ୍ଣ ମିଳିବେ କାହୁଁ ?

ପଦ୍ମା—ଚନ୍ଦ୍ରାବଳୀଙ୍କୁ ଠିକ୍ କାହ୍ନୁଙ୍କ ଯିବା-ବାଟରେ ରଖାଇଦେବା; ଯେମିତି ପାରନ୍ତି,ସେମିତି ଶ୍ୟାମଙ୍କୁ ତାଙ୍କ କୁଞ୍ଜକୁ ନେବେ । ଖାଲି ରାତିଟା ପାହିଗଲେ ଶ୍ରୀମତୀଙ୍କର ଗର୍ବ ଭାଙ୍ଗିଯିବ ଯେ !

ଶୈବ୍ୟା—ତୁ ସହି କୁଞ୍ଜରେ ଥା' । ଚନ୍ଦ୍ରାବଳୀ ଆଉ ମୁଁ ଦହେଁ ତେଣେ କୁହିବାଟ ଜଗି ଥିବୁଁ । ଯାହା ହାବୁଡ଼େ ପଡ଼ିବେ ସେ ଅଟକାଇବେ ତାଙ୍କୁ । ଏଇ ଥର ହୁଡ଼ିଲେ, ଗଲା । ଆମ ସଖିଙ୍କି ଖବର ଦବା ଚାଲ । (ପ୍ରସ୍ଥାନ)

—

## ସପ୍ତମ ଦୃଶ୍ୟ

(ଶ୍ରୀମତୀଙ୍କ ବିଶାଖା ଧନିଷ୍ଠା ଇତ୍ୟାଦି ସଖିମାନେ ବେଶ କରୁଥିଲେ; ମେଘ ଗରଜନ ଶୁଭୁଥିଲା )

ଧନିଷ୍ଠା—ସଖିଙ୍କି ଆମର ଏ ନୀଳଶାଢ଼ୀ ଆଜି ଏକା ଖାସା ମାନିଛି ।

ବିଶାଖା—ନୀଳଘନରେ ବିଜୁଳି ଚମକପରି ଗୋରି-ତନୁ କପରି ଝଟକି ଉଠୁଛି ଅନା—

ଶ୍ରୀମତୀ—ଆକାଶକୁ ଚାହିଁଲଣି ସହି ?

ବିଶାଖା—କୃଷ୍ଣ-ମେଘ ଘୋଟିଆସୁଛି । ଭୟ କାହିଁକି ସଖି ? ଆମର ତ କୃଷ୍ଣମେଘର ଆଶା—

ଲଳିତା—(ପ୍ରବେଶ)

ବିଧୁମୁଖୀ ।
ଅତୀତ ପ୍ରଥମ ପ୍ରହର ନିଶା ।
ପଥ ଚାହିଁ ବସିଥିବେ –
ତେଣେ ମନଚୋର ।
ଆଉ କି ବିଳମ୍ବ ସହେ ଧନି ?
ଯୁଗସର ମଣୁଥିବେ ଶ୍ୟାମ,—
ପଲକ ଅନ୍ତର ।
ବ୍ରଜେଶ୍ୱର ଧନି,
କୁଞ୍ଜପଥେ ।
ସାଜଆସିଲିଣି କେଳିକୁଞ୍ଜ;
ଜଗିବସିଛନ୍ତି ବୃନ୍ଦା —
ଜାଳି ରତ୍ନଦୀପ ।
କର୍ପୂର, ଚନ୍ଦନ, ଫୁଲ
ରଖିଲି ସଜାଇ;
ବିଳମ୍ବ କାରେଣି ସହି —
ଆସିଛି ତୋ' ପାଶେ ।
ଆସ କେଳିକୁଞ୍ଜେ;
ମଣାଇନେବ ମୁଁ ପଥ;
ବିଳମ୍ବ ନ କର ।

ଶ୍ରୀମତୀ—(ବିଶାଖା ପ୍ରତି) ଯିବା ସହି ?

ବିଶାଖା—କେଜାଣି ? ମୋତେ କଅଣ ପଚାରୁଛ ?
ମନକୁ ପଚାରିଲେ ହୁଅନ୍ତା ନାହିଁ ?
ଲଳିତା—ଧନି । ମେଘ ଆସୁଛି, ବେଗେ ବେଗେ
ବାହାରିଗଲେ ଭଲ । ମୁଁ କୁଞ୍ଜ ସଜାଇ ରଖିଛି ମ;
ସନ୍ଦେହ କରିବାର କିଛି କାରଣ ନାହିଁ ।
ବିଶାଖା—କୁଣ୍ଠାବୋଧ କାହିଁକି ? କୋଉଥିପାଇଁ ଡର ?
କହିବଟି ଦେଖି—
ଶ୍ରୀମତୀ—ଛି; ତୁମେମାନେ ଭାରି ଦୁଷ୍ଟ ହେଲଣି ।
ଲଳିତା—ତମଠୁଁ ଅଳ୍ପ ଊଣା ମା । ଡେରି, ମନ
କର ନାହିଁ ଆଉ ।
ଶ୍ରୀମତୀ—ଯିବା ଯେ ସହି···
ଲଳିତା - ଆଉ କ'ଣ ଭାବିବାକୁ ଅଛି ନା ବିଚାରିବାକୁ
ଅଛି । (ଉଠାଇ) ଉଠିଲ; ଯାହା କହିବାର କହି
କହି ଚାଲିପଡ଼ୁଛେ; ତୁମେ ଆଉ ମନ କର ନାହିଁ ।
ବର୍ଷା ଆସିଲଣି ।
ଶ୍ରୀମତୀ—ନାହିଁ; ମନ ନାହିଁ ଯେ···
ବିଶାଖା—ତେବେ ?
ଶ୍ରୀମତୀ—ଯିବାକୁ···
ବିଶାଖା—ହଁ; କଅଣ ହେଲା, ଯିବାକୁ ?—ଚାଲ···
(ହାତ ଧରି ନେଲେ)
ଶ୍ରୀମତୀ—(ଯାଉ-ଯାଉ)

(ଗୀତ)

ତହିଁରେ ମୁଁ ନାହିଁ ଅବଗାହି, ରେ ପ୍ରିୟସହି
ଏତେବେଳୁ ଥାଅ ମୋତେ କହି ।୦।

ପ୍ରଥମ ପ୍ରବେଶ କାଳେ ଅଚ୍ଛାଦ ଅଙ୍ଗଦୁକୂଳେ
ଡ଼ୁବିହେବ ସିନା ତଳେ କେଳି-ତଳପକୁ ବଳେ
ଯେଣୁ ଯିବେ ସେହି ସ୍ନେହ ବହି ରେ ।୧।

ଲଳିତା ଓ, ଏଇ କଥା ? ଚାଲ ଚାଲ, ସେକଥା ତା
କାହାରିକୁ ଶିଖାଇଦେବାକୁ ଦରକାର ହୁଏ ନାହିଁ ।
ସେଥିପାଇଁ ଗୁରୁ ଜନ୍ମ ହେଇନାହାନ୍ତି ଚାଲ ।
( ହସି ଶ୍ରୀମତୀଙ୍କୁ ଧରି ଚାଲିଗଲେ )

---

## ଅଷ୍ଟମ ଦୃଶ୍ୟ

ପଥ

( ଚନ୍ଦ୍ରାବଳୀ, ଶୈବ୍ୟା ଓ ପଦ୍ମା ପ୍ରବେଶ )

ପଦ୍ମା—ମୁଁ ନିଜେ ଶୁଣିଛି ସହି । କାନକୁ ଅବିଶ୍ୱାସ
କରିବି କେମିତି ?
ଚନ୍ଦ୍ରା—ମୁଁ ତ କହୁ ନାହିଁ । ବାର ବାର ତ ତାଙ୍କୁ
ଦେଖିଛୁଁ—ବିଶ୍ୱାସ ବୋଲି, ନିଷ୍ଠୁର ବୋଲି
ଅକ୍ଷରଗୁଡ଼ିକ କାହ୍ନୁଙ୍କ କାତକରେ ଲେଖାଥିଲା-
ପରି ମନେ ହୁଏ ନାହିଁ ।
ଶୈବ୍ୟା—ବାକି ମୁଁ ତ ଦେଖିଆସିଛି ମାଧବୀକୁଞ୍ଜ
ମଣ୍ଡନ ହୋଇଛି । ସେଠାରେ ବୃନ୍ଦା ଏକା ଥିଲେ ।
ଶ୍ରୀମତୀଙ୍କୁ ସଙ୍କେତ ଦେଇ ନ ଥିଲେ କୁଞ୍ଜ-ମଣ୍ଡନ
ହୁଅନ୍ତା କାହିଁକି ?
ଚନ୍ଦ୍ରା—ହେଇଛି ତ ସବୁ । ତା' କ'ଣ ମୁଁ ଅବିଶ୍ୱାସ
କରୁଛି ଶୈବ୍ୟା ? ଅବିଶ୍ୱାସ କରୁଛି ତାଙ୍କ
କଥାରେ ସିନା । ମୋର ପରି ଯେ ଶ୍ରୀମତୀ
ଆଖିଲୁହରେ ଗଣ୍ଡ ତନ୍ତାଇବେ ନାହିଁ, ଏ କଥାର
କି ଠିକଣା ଭଲା ?
ପଦ୍ମା—ସହି । ଶ୍ରୀମତୀଙ୍କୁ କଣ୍ଟ ଦେଇ ଶ୍ୟାମ ଯେ ନିର୍ବାଣ
କରିବେ, ଏ କଥା ମୁଁ ବିଶ୍ୱାସ କରିପାରୁ ନାହିଁ ।
ସେ ଯେ ରାଧାନାଥ ।
ଚନ୍ଦ୍ରା—ସତ, ମେଘକୁ ଦେଖୁଛୁ ଟି ?
ପଦ୍ମା—ଦେଖୁଛି, ସେ ତ ଅଭିସାରର ଅନୁକୂଳ । କିଏ
କହିବ, ଏ ବରଷା କାହ୍ନୁର କୂଟ ନୁହେ
ବୋଲି ?
ଶୈବ୍ୟା—ତୁମେ ଧୈର୍ଯ୍ୟ ଧର ସଖି । ଆଜି ଯେପରି
ହେଉ, ସେ ଶଠଙ୍କୁ ଧରି କୁଞ୍ଜରେ ବନ୍ଦ
କରିବାକୁ ହେବ । ତେବେ ଯାଇ ଶ୍ରୀମତୀ ଆଉ
ତାଙ୍କ ସଖିମାନଙ୍କ ଗର୍ବ ଭାଙ୍ଗିବ ।
ଚନ୍ଦ୍ରା—ଧରିଦେଲେ ତ ଧରିବ ତାଙ୍କୁ ସଖି ।
ପଦ୍ମା—ଶୈବ୍ୟା, ତୁ ଟିକିଏ ବାଟକୁ ଯାଅ ତ; ଦେଖି
ଆସିବୁ ଯଦି ଆସୁଥାଆନ୍ତି । ମୁଁ ରାଧାକୁଣ୍ଡ-ବାଟ

କରିଛୁ । ସଖି ବକୁଳକୁଞ୍ଜରେ ଥାଆନ୍ତୁ । ସେ ବାଟେ ବି ତ ଆସିବେ ନାହିଁ ।
ଶୈବ୍ୟା—ମୁଁ ତେବେ ଯାଉଛି । (ପ୍ରସ୍ଥାନ)
ଚନ୍ଦ୍ରା—ଚାଲ ତେବେ ସହି କୁଞ୍ଜପଥକୁ । କେତେ ଦିନ କେତେ ରାତି ତ ଯାଇଛି; ହେଲା ଏବେ, ଆଜି ରାତିଟା ସେମିତି ଯିବ । ଜୀବନ ଯାହାର ଗୋଟାଏ ବ୍ୟର୍ଥ ନିଃଶ୍ୱାସ, ତାପକ୍ଷେ ଆଜି ଏ ବର୍ଷାରାତି ବିଫଳ ଗଲେ ବା କେଉଁ ହାନି କଅଣ ?
ପଦ୍ମା—ନିରାଶ ହେବାର କିଛି କାରଣ ନାହିଁ ଆଜି ସହି, ଚାଲ । ବିଳମ୍ବ କର ନାହିଁ ।
ଚନ୍ଦ୍ରା—ହଁ ସହି !

(ଗୀତ)

ପୁହାଇଛି କେତେ ନିଶି ତାହାର ଆଶେ ।
ଧରି ତ ନ ଦିଏ ସେ ଯେ ପୀରତି-ଫାଶେ ।୦।
ତାହାର ରୂପ-ଧିଆନେ ରହିଛି ବୁଡ଼ି,
ତାହାର ମୁରଲୀତାନେ ଯାଇଛି ହୁଡ଼ି ।
ବାସି ହୁଏ ଫୁଲହାର ଗୁନ୍ଥି ତା'ଲାଗି ରେ,
ମରେଁ ନିରାଶେ ।୧।
(ଗାଇ ଗାଇ ଚାଲିଗଲେ)

---

## ନବମ ଦୃଶ୍ୟ

ଚନ୍ଦ୍ରାବଳୀଙ୍କ କୁଞ୍ଜ ସମ୍ମୁଖ ପଥ
(ବର୍ଷାରାତି—ଏକାକୀ ଶ୍ରୀକୃଷ୍ଣ ।)

(ଗୀତ)

ଜୀବନ ମନ ମୋର ହେଉ ଘୋର ବାଦଲ
ପାଗଳ ସମୀରଣ ବକୁଳ-ବନେ ମାତଇ ରଣେ ।
ଅଶନି ଗରଜେ ଘନ କୋଇଲି କୁହୁ ବୋଲେ
ନୟନେ ଝରଇ ବାରିଧାର ।୦।
(ପଛରୁ ଚନ୍ଦ୍ରାବଳୀ ଆସି ହାତ ଧରିପକାଇଲେ)
ଶ୍ରୀକୃଷ୍ଣ—(ଫେରି) କିଏ ? ପ୍ରେମମୟୀ ରାଧି ।
ଚନ୍ଦ୍ରା—ଘନଶ୍ୟାମ ।
ନୁହେଁ ତବ ପ୍ରେମମୟୀ ରାଧି ।
ପ୍ରେମହୀନା ଅଭାଗିନୀ,
ଦାସୀ ଚନ୍ଦ୍ରାବଳୀ ।
କୃଷ୍ଣପ୍ରେମ-ଭିଖାରୁଣୀ—
ନମଇ ଶ୍ରୀପଦେ ।
ଶ୍ରୀକୃଷ୍ଣ—କ୍ଷମା କର ସଖି । ବଳରାମ ଭାଇ ପୀଡ଼ିତ; ଔଷଧ ସଂଗ୍ରହଲାଗି ଯାଉଥିଲି । ଅନ୍ୟମନସ୍କ ଥାଇ ତମକୁ ରାଧି ବୋଲି ଭୁଲ୍‌ରେ ଡାକି-ଦେଇଛି ।
ଚନ୍ଦ୍ରା—ବଳରାମ ପୀଡ଼ିତ ? ତୁମେ କି ଔଷଧ ଆଣିବ କାହିଁକି ? ଏ ମେଘ-ଅନ୍ଧାର ରାତିରେ ଘରୁ ବାହାରିଛ ?
ଶ୍ରୀକୃଷ୍ଣ—ଦେବୀ-ପ୍ରଦତ୍ତ ଔଷଧ ।
ଚନ୍ଦ୍ରା—ବୋଧ ହୁଏ ମାଧବୀ-କୁଞ୍ଜରେ ମିଳେ ।
ଶ୍ରୀକୃଷ୍ଣ—ପରିହାସ ନୁହେ ଚନ୍ଦ୍ରାବଳୀ । ଆଜି ମୋର ପରିହାସଲାଗି ସମୟ ନାହିଁ ।
ଚନ୍ଦ୍ରା—କିନ୍ତୁ କାହିଁକି । ଗୀତ ଗାଇ-ଗାଇ ମନ-ସୁଖରେ ଔଷଧ ଖୋଜିବାକୁ ସମୟ ତ ଅଛି ?
ଶ୍ରୀକୃଷ୍ଣ—ନାହିଁ ସଖି । ଏକା ଯାଉଥିଲି । ଡର ମାଡ଼ିବାରୁ ବଡ଼ପାଟିରେ ଯାହା ଇଚ୍ଛା ତାହା ଗାଇ-ଗାଇ ଚାଲିଛି ।
ଚନ୍ଦ୍ରା—ଭୟ ଯେବେ ଏତେ, ଚାଲ ତେବେ—ସାଙ୍ଗରେ ମୁଁ ଯିବି ।
ଶ୍ରୀକୃଷ୍ଣ—ତୁମେ ଅବଳା, ସୁକୁମାରୀ । ଏ ବର୍ଷା, ଝଡ଼ ଅନ୍ଧାର ରାତିରେ ମୋଲାଗି କାହିଁକି ଭଲା କଷ୍ଟ ପାଇବ ?
ଚନ୍ଦ୍ରା—କୃତାର୍ଥ ହେଲି—ବଡ଼ ଦୟା । କେବେଠୁଁ ଏତେ ଦୟାଳୁ ହେଲ ? ଆଗରୁ ଏପରି ଦୟା ଥିଲା ନା ଆଜି ଅଭିସାରିକା ଶ୍ରୀମତୀଙ୍କ ଚିରି ଚାନ୍ଦମୁଖର ପରଶଲାଗି ଏ ଦୟାସାଗର ଉଚ୍ଛୁଳିପଡ଼ୁଛି ?
ଶ୍ରୀକୃଷ୍ଣ—ନାହିଁ ସଖି । ସତ କଥା—ମୁଁ ଯାଏଁ—ମଠ ହେଲେ ବିପଦ ଘଟିବ ।
ଚନ୍ଦ୍ରା—ତା' ତ ମୁଁ ଜାଣେଁ । ରାଧି ଅଭିମାନ କରିବେ —ବାକି ତୁମକୁ କି ଛଳ ଆସେ ନାହିଁ ଯେ ?

ଶିଖିବାକୁ ହେବ । ଜପଟଶେଖର । ଧରାଟି ପଡ଼ିଛୁ—ପ୍ରବଞ୍ଚନା ରଖ ।

**ଶ୍ରୀକୃଷ୍ଣ**—ଛାଡ଼ ମୋତେ ଚନ୍ଦ୍ରାବଳୀ । ସତ୍ୟ କଲି, କାଲି ଆସି ନିଶ୍ଚେ ଭେଟିବି । ବିଶ୍ୱାସ କର ମୋତେ ।

**ଚନ୍ଦ୍ରା**—ଅନେକ ବାର ତ ବିଶ୍ୱାସ କରିଛୁ । ବାର-ବାର ନିରାଶ ହୋଇ ମଧ୍ୟ ବିଶ୍ୱାସ କରିଆସିଛୁ ଶ୍ୟାମ ! ମୁଁ ଜାଣେ, 'କାଲି'ଟା ତୁମ ଜାତକରେ ନାହିଁ । ସବୁ ଦିନେ ତ ରାତି ପାଇଲେ ଆଜି ।

**କୃଷ୍ଣ**—ସଖି ! ଅକାରଣ ପଥରୋଧ କରି ମୋର ଅମଙ୍ଗଳ ପାଞ୍ଚୁଛ ପିନା !

**ଚନ୍ଦ୍ରା**—ନିଖିଳ ମଙ୍ଗଳମୟ ! ଅମଙ୍ଗଳ, ମଙ୍ଗଳ—ସବୁ ତ ତୁମର ଖେଳା ? କାହାକୁ ଭୁଲାଉଛ ରାଧାନାଥ ? ଦାସୀର ଅନୁରୋଧ ରକ୍ଷା କରି କୁଞ୍ଜକୁ ବିଜେକର । କ୍ଷଣକାଳ ବିଶ୍ରାମ କରି ପଛେ ଚାଲି-ଆସିବ । ଅଧୀନାର ଅନୁରୋଧ ରକ୍ଷା କର ।

(ଗୀତ)

ବନ୍ଧୁ ହେ ! ମୁଁ ନୁହେଁ ଜଗତଛଡ଼ା,
ଜଗତର ସ୍ୱାମୀ, ତୁମେ ଅନ୍ତର୍ଯାମୀ,
ନିବାର ମରମ-ଭରା । ।୦।
ମନ-ବନଫୁଲେ, ପ୍ରୀତି-ନେନ୍-ନୀରେ,
ପୂଜିଲି ଚରଣ ବେନି,
କହ ରାଧାନାଥ, ଦାସୀ ମନୋରଥ,
ନ ପୂରିଅ କିସ ଘେନି ? ।୧।

(ଚରଣରେ ପ୍ରଣାମ କଲେ)

**କୃଷ୍ଣ**—ସଖି ଚନ୍ଦ୍ରାବଳୀ !

ପ୍ରେମ-ଭକ୍ତିପାଶେ ବିକା ଶ୍ୟାମ,
ଏଡ଼ି ନ ପାରଇ ଭକ୍ତବୋଲା ଅନୁରୋଧ ।
ଉଠ ସଖି, ଅଭିମାନ ତେଜ ଲୋ ସୁନ୍ଦରୀ !

(କର ଧରି ଉଠାଇଲେ)

(ପଟକ୍ଷେପ)

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ମାଧବୀକୁଞ୍ଜ । ରାତିର ଶେଷ ତାରା ଆକାଶରେ କୁଳୁ-କୁଳୁ ହୋଇ ଉଭେଇ ଆସିଲେଣି । କୁଞ୍ଜମଧ୍ୟରେ କର୍ପୂର, ଚନ୍ଦନ, ପାନ, ଶଯ୍ୟା ଇତ୍ୟାଦି ସଜାହୋଇଛି ଶ୍ୟାମଙ୍କ ଆଶାରେ । ତାଙ୍କ ପଥ ଚାହିଁ ଶ୍ରୀମତୀ ବଡ଼ ଉତ୍କଣ୍ଠିତା । ଦୀପ ମିଞ୍ଜି-ମିଞ୍ଜି ହୋଇ ଜଳୁଛି । ଦୀପର ତେଜ ଫିକା ପଡ଼ିଆସିଲଣି ।)

(ଗୀତ)

ବନ୍ଧୁଅଲାଗି ମୁଁ ଶେଜ ଶେଜାଇଲି,
ଗୁନ୍ଥିଲି କୁସୁମମାଳା—
ବଢ଼ିଅ ସାଜିଲି ପ୍ରଦୀପ ତେଜିଲି
ନଇଲେ ହରିଅ କଳା ।୦।
ସଖି ! ଶ୍ୟାମଘନ ନଇଲେ ମୋର୍
ଚୋରି କରି ମନ ସେ ମନଚୋର ।୧।
ରସର-ସାଗର, ରସିକ ନାଗରେ,
ନ ଘେନିଲେ ଏତେ ମନେ ।
ଶାଶୁ-ନଣନ୍ଦରେ ବଞ୍ଚନା କରି ମୁଁ,
ଆଇଲି ଗହନ ବନେ ।୨।
ବଡ଼ ଆଶା ମନେ—ଏହି କୁଞ୍ଜବନେ
ମିଳିବ ମନ ମୋହନେ ॥
ଆଶାପଥ ଚାହିଁ, କେତେ ଥିବି ରହି
କେତେ ପ୍ରବୋଧିବି ମନେ ।୧ ।

**ଶ୍ରୀମତୀ**—ସଖି ! ତାଙ୍କର ସଙ୍କେତରେ ଭରସା କରି, ଲଜ୍ଜା ସରମ ଛାଡ଼ି, ଗୁରୁଜନଙ୍କ ଦୃଷ୍ଟିକି ଏଡ଼ି, ଏଇ ଘୋର ନିଶାରେ ବାଧାବିଘ୍ନ ନ ମାନି... (ଦୀର୍ଘ ନିଃଶ୍ୱାସ) ଶେଷରେ ଏଇ ଫଳ ପାଇଲି ?

**ଲଳିତା**—ଉଚ୍ଚୁର ଦେଖି ମନେ କରିଥିଲି, ଘୋର ବର୍ଷା, ଘନ ଅନ୍ଧକାର, ଏଥିଲାଗି ଶ୍ୟାମ ଆସି-ବାରେ ବିଳମ୍ବ ଘଟିଛି । କିନ୍ତୁ...

**ଶ୍ରୀମତୀ**—ମନେ ପଡ଼େ ସଖି, କି ଘଡ଼ଘଡ଼ି ଶବଦ ! ଝିସଡ଼ା କଣ୍ଟାମୟ ବନପଥ ! କେତେ ବାବ

ପଡ଼ୁ ପଡ଼ୁ ସମ୍ଭାଳି ରହିଛୁ । ବହୁତ ଅଶା କରି ଯେ ଅସିଥିଲି ସଖି...

ବିଶାଖା— ସଖି ! ଧୈର୍ଯ୍ୟ ଧର, ସକାଳ ହେବାକୁ ଅହୁରି ତ ବିଳମ୍ବ ଅଛି । କହିଛନ୍ତି ଯେତେବେଳେ, ନିଶ୍ଚୟ ଅସିବେ । ମିଛରେ ଲୁହ ବୁହାଉଛ ସିନା ! କାହ୍ନୁ ନିଷ୍ଠୁର ନୁହନ୍ତି ସହି, ମୁଁ ଜାଣେଁ । ଠିକଏ କପଟ ଅଉ ଚଞ୍ଚଳମତି ସିନା । ତଥାପି ମୋର କାହିଁକି ତାଙ୍କ ଅସିବାର ଅଶା ତୁଟୁ ନାହିଁ ।

ଶ୍ରୀମତୀ—ବୃଥା, ବୃଥା ସଖି ! (ଦୀର୍ଘନିଃଶ୍ୱାସ)

ଲଳିତା—ଅଉ ଅଳପ ଅପେକ୍ଷା କର ସଖି, ମୁଁ ଯାଇ ଦେଖେଁ, ତାଙ୍କର ଯଦି କିଛି ସନ୍ଧାନ ମିଳେ ।

(ଉଠି ଗୁଲିଗଲେ)

ଶ୍ରୀମତୀ—ଏଇ ଦେଖ ସଖି !

ପାଣ୍ଡୁର ଦିଶଇ କମେ—
ଆକାଶର ଚନ୍ଦ୍ର !
ନଇଲେ ଅବଧି କଳାଚନ୍ଦ୍ର,
ଲିଭିଅସିଲଣି ଶେଷତାରି,
ଜୀବନ-ପ୍ରଦୀପ ମୋର—
ଶ୍ୟାମଚନ୍ଦ୍ର ବିନେ
ଝଳୁଅଛି ଏଇ ତାରିସରି ।
ହୋଇଲେ ପ୍ରଭାତ,
ଅଉ କ୍ଷଣିକାଳପରେ
ନିର୍ଦ୍ଦୟ ପ୍ରଭାତ-ପବନରେ—
ଯିବ, ଯିବ ଲିଭି ସଖି ଜୀବ ।
କହ ସଖି !
କି ଅଶାରେ ଧରିବି ଜୀବନ ?

ବିଶାଖା—ଅମଙ୍ଗଳ କଥାଗୁଡ଼ା କାହିଁକି କହୁଛ ଧନି ? ଲଳିତା ଫେରନ୍ତୁ ଅଗ । ତା'ପରେ ଯାହା କରିବାର କରିବା ସିନା ।

ଶ୍ରୀମତୀ—ତେଜ ସଖି ।

ଶ୍ୟାମ-ଅଗମନ ଅଶା ।
ଦେଖୁ ନାହିଁ ? ଶୁଣୁ ନାହିଁ ?—

(ଦୂରକୁ ଅନାଇଲେ)

(ଗୀତ)

ଗଗନ ଉପରେ ଶଶି-କିରଣ ବିଛୁରିତ
ପିକ କୁହୁରବେ ଗାଏ ଗୀତ ।
ଏସନ ରଜନୀ ସତେ; କେସନ ଯାପିବି ଗୋ,
ନଇଲେ ଯେବେ ମୋ ପ୍ରିୟ ସାଥୀ ।°

ବିଶାଖା—ନ କହିବ କଥା ସହି,
ଅସିଲେ ଏଥର ।

ଧନିଷ୍ଠା—ମନେ ଅଛି ମନ-କଥା—
ଛନ୍ଦିବେ ଏଥର କାହ୍ନୁ,
ଜାଣିବେ ଏଥର
ଗୋପବଧୂ କାଣେ ଅଭିମାନ ।

ବିଶାଖା—ଯେ ଅନଳେ
ଜଳେ ରାଈ-ତନୁ,
ବୁଝନ୍ତୁ ସେ
ସେ ଅନଳ-ଜ୍ୱାଳା ।

ଶ୍ରୀମତୀ – ସହି !
ଜନ୍ମ ଯା'ର ପରି ଜାଳିବାକୁ—
ଜାଳିବୁ ତୁ ବସିଛୁ ତାକୁ ?
ଅନଳ ଦହନ କରେ,—
ଅନଳର ଗୁଣ ।
କେସନେ ଦହିବୁ ତାକୁ ?

ବିଶାଖା – ନୟନର ଜଳେ ।

ଶ୍ରୀମତୀ – ହସ ଲାଗେ,
ଏତେ ଦୁଃଖେ ମୋର,
ହସାଇଲୁ ମୋତେ ସଖି ।
ରମଣୀ-ନୟନଜଳେ
କି ଭୟ ତାହାର ?
ଦବାଗ୍ନି—
ଅଶ୍ରୁ କର,
ସେହି ବଂଶଦଣ୍ଡ,—
ମୁରଲୀ ଯାହାକୁ ବୋଲ ।
ସନ୍ତରଇ ପରି ସେହୁ—
ଘରଛଡ଼ା, କୁଳଛଡ଼ା,

ମୋହପର ଅଭାଗିନୀ
କେତେ ଗୋପନାରୀ ।
ନୟନ-ସଲିଳେ
କି ଭିଜୁ ତାହାର ତହିଁ ?
(କୋପଗର୍ମ୍ଭର ଲଳିତା ଆସି ବସିଗଲେ)
ବିଶାଖା—ଭେଟିଲୁ ?
ଲଳିତା—ଖାଲି ଭେଟିଲି ନୁହେଁ—କୁଞ୍ଜ ଭଙ୍ଗ କଲି ।
ଶ୍ରୀମତୀ—କୁଞ୍ଜଭଙ୍ଗ ?
ଲଳିତା—ହଁ ସହି, କୁଞ୍ଜଭଙ୍ଗ । ନାଗରୀ ଚନ୍ଦ୍ରାବଳୀଙ୍କର କୁଞ୍ଜଭଙ୍ଗ; ନାଗରରାଜ ଚନ୍ଦ୍ରାବଳୀଙ୍କ କୁଞ୍ଜରେ ଯାମିନୀ ଯାପନ କରି ଭୋର୍ ହେଲାରୁ ବୋଧହୁଏ ବିଦାୟ ମାଗୁଥିଲେ । ମୁଁ କୁଞ୍ଜର ଏକ କୋଣରେ ଲୁଚି ସବୁ ଦେଖିଆସିଲି ।
ଶ୍ରୀମତୀ (ଦୀର୍ଘନିଃଶ୍ୱାସ ପକାଇ) ବିଶାଖା !
ଫଳିଲା ନା,
ଅନୁମାନ ମୋର ?
ବାହାରେ କଳାବରଣ,
ଅନ୍ତରଟା—
ତହୁଁ ବଳି କଳା ।
ଗରଳରେ କି ବିଶ୍ୱାସ ସଖି ?
ଉଠ,
ତେଜ କୁଞ୍ଜ—
କି ଆଶାରେ ଅଉ ?···
(ଉଠିଲେ ଓ ଲଳିତା ତାଙ୍କୁ ପୁଣି ବସାଇଲେ ।)
ଲଳିତା—ଏ କି କଥା ସହି ?
ଗୋପନାରୀ
ଦେଇପାରେ ଉପଯୁକ୍ତ ଶିକ୍ଷା ।
ବ୍ରଜବଧୂ
ଜାଣେ ଅଭିମାନ ।
ଯେ ବକ୍ଷେ ଦହୁଛି ଶ୍ୟାମ
ସଖି-ତନୁଲତା,
ସେହି ବକ୍ଷେ—
ସେହି ବକ୍ଷେ ଜଳାଇବ ତାଙ୍କୁ ।

ଗରଳରେ ମିଶାଇ ଗରଳ
ଉତ୍କଟରୁ କରିବ ଉତ୍କଟତର ।
ତେବେ ମୁଁ ଲଳିତା ।
ତେବେ ସେ ଚହ୍ନିବେ ମୋତେ ।।
ଶତବାର, ଶତବାର—
ବାଙ୍କ-ଚୂଡ଼ା
ଲୋଟୁଥିବ ସଖି-ଚରଣରେ ।
ଦମ୍ଭରେ
ଗରଜି କହିବ—
ଯାଅ ଗୋପନାରୀ ମୁହିଁ,
ଗରଜି କହିବ—
ନାହିଁ, ଦେବ ନାହିଁ କ୍ଷମା ।
ଦେଖିବି ମୁଁ କେତେ ଦମ୍ଭ
ଶଠ ଗୋପ-କହ୍ନାଇର ।
(ଅଶ୍ରୁ ଭରିଆସିଲା ଆଖିରେ)
ଶ୍ରୀମତୀ—କି ଲୋଡ଼ା ତହିଁକି ସଖି ?
ଅଉ କି ମିଳିବ ଦେଖା ?
ମିଳିଲେ ଅବା—
ସ୍ୱୀକାର କି କରିବେ ସେ
ନିଜ ଅପରାଧ ?
କପଟଶେଖର ପରା ।
ଲଳିତା—କପଟ ?
ଓଣା ନୁହେଁ ସେଥିକି ଲଳିତା ।
କରିଛି ମୁଁ ଉପାୟ ତହିଁକି—
କେତକୀଦଳରେ ଲେଖି
ଫିଙ୍ଗିଦେଇଅଛି ଲେଖି
କୁଞ୍ଜକୁଟୀମଧ୍ୟେ ।
ବାଜିଛି ଅଙ୍ଗରେ ।
ଚମକିଉଠିଲେ ଦେଖି ତାଙ୍କୁ,
ପଡ଼ି ହେଲେ ତରତର
ତେଜିବାକୁ ଚନ୍ଦ୍ରାବଳୀ-କୁଞ୍ଜ ।
ଆଗେ ଆଗେ ମୁହିଁ,
ଆସିଛି ପଳାଇ —

ଏକା ରହିବା ଧର ।
ଦେଖିଲୁ ବିଶାଖା,
ଦଣ୍ଡୁ ନାହିଁ କହୁ ?
ଆସୁ ତ ନାହାନ୍ତି ଶଠ ?
(ବିଶାଖା ଉଠିଗଲେ)
ଶ୍ରୀମତୀ—(ଲୁହ ପୋଛୁ ଦୀର୍ଘନିଃଶ୍ୱାସ ପକାଇ)
ଯା' ଥିଲା କରମେ, ହେଲା ।
ମାନ ନାହିଁ, ଶୁଣି ନାହିଁ
ଗୁରୁଜନ-ବାଣୀ;
ଧେନ ନାହିଁ
ତେତେବେଳୁ ଲଳିତାର ହିତକଥା ।
ରୋପିଲା ତରୁର ଫଳ
ଅବଶ୍ୟ ଭୁଞ୍ଜିବି । (କ୍ଷଣେ ନୀରବ)
ଲିଭାଅ, ଲିଭାଅ ପ୍ରଦୀପ;
ଫିଙ୍ଗ ସଖି କର୍ପୂର-ଚନ୍ଦନ—
ଛିଣ୍ଡାଅ କୁସୁମହାର,
(ହାର ଛିଣ୍ଡାଇଲେ)
ଛିଣ୍ଡାଅ ତୋରଣ ।
ବୁଝିଲି ମୁଁ
ଶ୍ରୀମତୀର ପାଶେ ପ୍ରେମ—
ଛଳନା ତାଙ୍କର
ଥାପିବାକୁ ଶିରେ ମୋର
କଳଙ୍କ-ପଶରା ।
(ଗଳା ଥରଉଠିଲା)
ଧନିଷ୍ଠେ !
ତୋଳ ଫୁଲ-ଶେଜ ।
ବୁଝିଲିଣି—
ପର, ପର ସେ ନାଗର,
ନ ଆସିବେ ଆଉ ।
ଲଳିତା—ଆସିଲେ' ବା···
ଶୁଣ, ଶୁଣ ସଖିସବେ ।
ବୃନ୍ଦାବନ-ଅଧୀଶ୍ୱରୀ
ଶ୍ରୀମତୀଙ୍କ ପ୍ରିୟସହଚରୀ
ଲଳିତାର ଏ ଆଦେଶ, —
ବାରଣ କରବ କୁଞ୍ଜଦ୍ୱାର
ଆସନ୍ତି ଯଦ୍ୟପି ନନ୍ଦସୁତ,
ରାଇ-କୁଞ୍ଜଦ୍ୱାର,
ନୁହଇ ଉନ୍ମୁକ୍ତ କେବେ—
ସେ ପରବଞ୍ଚକଲାଗି ।
(ବିଶାଖା ଫେରିଲେ)
ବିଶାଖା—ସହି ।
ଝାଉଁଳିଲା ତମାଳ ଗରିମାସର;
ଟଳଟଳ ଆସୁଛନ୍ତି
ଶ୍ୟାମ ନଟବର;
ନାହିଁ ପଦେ ଚଳନ ଶକତ ।
ଘୂମର ଆମଳେ—
ମୁଦି-ମୁଦି ହୋଇଆସେ
ସେ କମଳ ଆଖି ।
ଲଳିତା—(ବିଶାଖାପ୍ରତି) ଆସନ୍ତୁ ସେ, ବସ ।
(ଶ୍ରୀମତୀଙ୍କୁ) ଫେରାଇ ବଦନ,
ବସ ଧନି ।
ହୁଅ ଅଭିମାନୀ ।
ପଢ଼ାଇବ ଆଜି ତାଙ୍କୁ—
ଗୋପନାରୀ-ପ୍ରୀତିପାଠ ।
ଦେବ, ବଞ୍ଚନାର ଉପଯୁକ୍ତ ଶିକ୍ଷା ।
(ଶ୍ରୀକୃଷ୍ଣ କୁଞ୍ଜଦ୍ୱାରରେ । ମଳିନ ମୁଖ, ଅଧରରେ କ୍ଷତ ଚିହ୍ନ, ଏଠି-ସେଠି କଜ୍ଜଳ ଲାଗିଛି, ବକ୍ଷରେ ଅଳତା-ରଞ୍ଜିତ ପଦଚିହ୍ନ, ଦେହରେ କଙ୍କଣର ଦାଗ, ଆରକ୍ତ ନୟନ । ସଖିମାନେ ଛଳରେ ଶୋଇପଡ଼ିଛନ୍ତି, ଶ୍ରୀମତୀ ମୁଖ ଫେରାଇ ଶୋଇଛନ୍ତି, ଶ୍ରୀକୃଷ୍ଣ ନୀଳଶାଢ଼ୀ ପିନ୍ଧିଛନ୍ତି । ଲଳିତାଙ୍କୁ ସେ ଡାକିଲେ ଓ ଲଳିତା ଉଠି ତାଙ୍କୁ କୁଞ୍ଜ-ବାହାରେ ଆସନ ଦେଖାଇଦେଲେ ।)
ଶ୍ରୀକୃଷ୍ଣ—ଲଳିତେ ?
ଲଳିତା —(ଉଠି ଆଖି ମଳି ଛଳରେ ଆସନ ଦେଖାଇ)
ଆସନ୍ତୁ ବଳଦେବ, ଆସନ ଗ୍ରହଣ କରନ୍ତୁ ।
ଏଡ଼େ ଭୋର କି କପର ? କୁଆଡ଼େ ଆଗମନ ?

ଦେବୀ ରୋହଣୀଙ୍କର ସମସ୍ତ କୁଶଳ ତ ? ଦାସୀର ପ୍ରଣତ ଗ୍ରହଣ କରନ୍ତୁ ।

**ଶ୍ରୀକୃଷ୍ଣ—(ହସି)** ଲଳିତେ, ନନ୍ଦ ଭୁଙ୍ଗ । ତୁମେ ବୋଧ ହୁଏ ବଡ଼ମାଅଙ୍କ କଥା ପଚାରୁଛ ? ମୁଁ ବଳଦେବ ନୁହେଁ—ତାଙ୍କ ଅନୁଜ ଶ୍ରୀକୃଷ୍ଣ ।

**ଲଳିତା—**ଓଃ, ଆପଣ । ସେ ନୁହନ୍ତି ? ତୁମେ, ବେଶ୍ ବେଶ୍—(ଘୁଞ୍ଚି ଆସିଲେ—ଶ୍ରୀକୃଷ୍ଣ କର ଧରିବାକୁ ଉଦ୍ୟତ ହେବାରୁ ବେଶି ଦୂରକୁ ଘୁଞ୍ଚି—)

(ଗୀତ)

ଛୁଅଁ ନା, ଛୁଅଁ ନା ବନ୍ଧୁ ରହ ରହ ଘୁଞ୍ଚି,
ଶ୍ରୀମୁଖ ନିରେଖି ଦେଖ ମୁକୁର ଅଣ୍ଟୁଛି ।
ନୟନର କଜ୍ଜ୍ୱଳ—ବଦନେ ତ ଲାଗିଛି,
କଳାପରେ କଳାଫଳେ ।
ପ୍ରଭାତୁଁ ଉଠି ମୁଁ—ଏ ମୁଖ ଦେଖିଲି ।
ଦିନ ଯିବ ଅଜି ଭଲେ ।
ତାମ୍ବୁଲର ଦୋଳେ ଗଣ୍ଡ କି ସୁନ୍ଦର,
ଘୁମେ ତୁଳୁତୁଳୁ ଆଖି.
ଶ୍ରୀମୁଖ ଫେରାଇ ଅନାଅଁ ଏଣିକି,
ଆଖି ଭରି ଥରେ ଥାଏଁ ଦେଖି ।

**ଶ୍ରୀକୃଷ୍ଣ—**ଲଳିତେ ! ଆଖିରୁ ତମର ନିଦ ଛାଡ଼ି ନାହିଁ ! ସେଇଥିପାଇଁ ତମକୁ ଅନ୍ୟରୂପ ଦିଶୁଛି । ତା'-ପରେ କାର୍ଯ୍ୟବ୍ୟସ୍ତ ଥାଇ ମୁଁ ଯେତେବେଳେ ଆସିପାରି ନାହିଁ, ତୁମ ମନରେ ସନ୍ଦେହ ହେବାର କଥା । ତୁମେ କଅଣ ମୋ-କଥା ଭାବି-ଭାବି ଶୋଇପଡ଼ିଥିଲ ? ନିଶ୍ଚୟ ତାହା ହିଁ ଘଟିଛି । ଠିକ୍ ତା'ପଛେ-ପଛେ ମୁଁ ଆସିବାରୁ ତୁମ ମନର କଳ୍ପନା ହିଁ ତୁମ ଆଖିଆଗେ ମୋତେ ଭିନ୍ନରୂପରେ ଛିଡ଼ା-କରାଇଛି । ପୁଣି ଭଲ ହୋଇ ତମର ନିଦ ଛାଡ଼ି ନାହିଁ ।

**ଲଳିତା** – ହଁ, ମୋର ନିଦ ଛାଡ଼ି ନାହିଁ—ଉଜାଗର ଥିବାରୁ । କପଟୀ ! ତୁମ ଛଳନା ମୋତେ ଅଜଣା ନାହିଁ । ମୁଁ ନିଜେ ସବୁ ଦେଖି ଶୁଣି ଆସିଛି । ତୁମ୍ଭେ ହୁଅ—କୁଞ୍ଜରୁ ବାହାରିଯାଅ ।

**ବିଶାଖା—**(ଉଠି) ଅହା-ହା ! ଲଳିତେ ! ବନ୍ଧୁ ଆମର କରୁଣାସିନ୍ଧୁ । ତାଙ୍କୁ ଏମିତ କଷ୍ଟ ଦେଉଛ ? ଅସ ଅସ ବନ୍ଧୁ, ଟିକିଏ ପାଖକୁ ଅସ । ଏତେ ଦୂରରେ ଥାଇ ତମ କରୁଣା-ରସ ତୃପ୍ତିପାଉନୁ ନାହିଁ ଯେ । ବୋଧହୁଏ । ଟିକିଏ ଏଣିକି ଅସ । (ନିକଟକୁ ଯାଇ) ଏ ମା, ସତେ ତ । ସ୍ୱେ କଅଣ ? ରାଧ, ଦେଖିଲଣି ? ଟିକିଏ ଶ୍ରୀମୁଖକୁ ଚାହିଁଲ ? ଉଠ ଉଠ ସଖି !

**ଶ୍ରୀମତୀ—** (ଉଠି ଅଳ୍ପ ଚାହିଁଲେ—ତୀକ୍ଷ୍ଣ ଦୃଷ୍ଟିରେ)

(ଗୀତ)

**ବିଶାଖା**—କପଳେ ସିନ୍ଦୂର-ରେଖା ଅଧରେ କଜ୍ଜ୍ୱଳ
ନୀଳକଣ୍ଠି ପାଲଟିଛି ରକତ କମଳ ॥
ବନମାଳା, ପୀତଧଡ଼ା କାହିଁଛନ୍ତି ଛାଡ଼ି,
କେ ଦେଇଛି ନୀଳଶାଢ଼ୀ ପୀତବାସ କାଢ଼ି ॥
(ଶ୍ରୀମତୀଙ୍କପ୍ରତି) ଆଖି ମେଲି ଅନାଅ ସଖି !
ଚିହ୍ନିଲ ଏଥର ?

**ଶ୍ରୀମତୀ** ଚିହ୍ନୁଛି ସଖି, ଦିଶୁଛି ସବୁ ମତେ । ପୋଡ଼ା ଆଖି ତ ମୋର ଫୁଟିଯାଇ ନାହିଁ ?

(ଗୀତ)

ଆଗତ ପରବଞ୍ଚକ ଶଠନାଗର ଶଠଧରଅ—
ନବନାଗରୀ ପଦଯାବକ ଉରେ
ସାଜଇ ସଖି ଦେଖିଅ ॥୦॥
ଦେଖ ଗୋ ଲଳିତେ ପରବଞ୍ଚକ ନାଗରବର—
ଶଠଘରଅ ନାଗରବର ।
ପଚାର ଏ ନୀଳଶାଢ଼ୀ ପିନ୍ଧିଛନ୍ତି କାହାର
ସେ ପୀତପଟିଅ ॥୧॥

**ବିଶାଖା** ଶୁଣୁଛ ତ ? କହ ବନ୍ଧୁ, କି ଉତ୍ତର ଦେବ ? ଏ ଶାଢ଼ୀ କାହା ବେଢ଼ଣ ?

**ଶ୍ରୀକୃଷ୍ଣ—**ଭ୍ରମ,
ଭ୍ରାନ୍ତ ଏ ଧାରଣା ।
ଶୁଣ ତେବେ, ସତ୍ୟ କଥା ।
ଅତ ସତ୍ୟ ଯାହା—

ଚେଇଁ ମୁଁ ରଜନୀ
ପୂଜୁଥିଲି ପଶୁପତି
ଜନନୀ ଆଦେଶେ ।
ତେଣୁ,
ମୋ ନୟନ ହୋଇଛି ରକ୍ତିମ ।
ମୃଗମଦ ସିନ୍ଦୂରେ ମୁଁ ଦେଇଛି ତିଳକ ।
ନିଶିସାରା
ଉଚ୍ଚାରି ଉଚ୍ଚାରି ମହାମନ୍ତ୍ର
ଓଷ୍ଠ ମମ ଦଶଇ ବିବର୍ଣ୍ଣ ।
ଲଳିତା—ଅଙ୍ଗରେ କଙ୍କଣ ଚିହ୍ନ ?
ଶ୍ରୀକୃଷ୍ଣ—ଜାଗି ନିଶି
ବାଧୁଛି ନୟନେ ।
ବିଶେଷରେ ବିଳମ୍ବ ହେବାରୁ
ତରତର ହୋଇ
ଆସିଅଛି ଧାଇଁ ଧନୀ ଆଶେ ।
ନିଦ୍ରାଳସ୍ୟ ସମ୍ଭାଳି ନ ପାରି
ପଥେ କାହିଁ ବାଜିଥିବ
କଣ୍ଟା-ଖୁଣ୍ଟା ଅଙ୍ଗେ ।
ଏ କି ହେଲା ଅପରାଧ ମୋର ?
ବିଶାଖା—(ହାତରେ ଠାରି ଦେଖାଇ) ଆଉ ନୀଳବାସ ?
ଶ୍ରୀକୃଷ୍ଣ—ନିଶିରେ ତ ପଶୁପତି ପୂଜାଲାଗି
ଆସିଛି ବାହାରି ଘରୁ ।
ବଦଳ ବା ହୋଇଥିବ ବାସ—
ଜ୍ୟେଷ୍ଠ ବଳଦେବ ଭୁଲେ,
ଜଣା ନାହିଁ ମୋତେ ।
ଅବିଶ୍ୱାସ କାହିଁକି ଏଥିରେ ?
କପଟ ତ କରି ନାହିଁ କିଛି ?
ଅକପଟ ସତ୍ୟ କହ
ପରମାଣ ହୋଇଲା କି ଏହା ?
ଲଳିତା—ସତ୍ୟବାଦୀ ।
ପାଇଛ ତ କେତକୀଦଳର ଲେଖ ?
ଶ୍ରୀକୃଷ୍ଣ—(ନୀରବ ହୋଇ ଚମକିପଡ଼ିଲେ)
ଶ୍ରୀମତୀ—ପଚ୍ଚରି ପଚ୍ଚରି ଲଳିତେ—
କଲଣି ନାହାନ୍ତି କିଛି
ଏଥି କି ଉତ୍ତର ?
ଲଳିତା—ବନ୍ଧୁ,
କି ଉତ୍ତର ଦେବ ?
ଶ୍ରୀମତୀ—ଯାଆନ୍ତୁ ସେ
ଚନ୍ଦ୍ରାବଳୀ-କୁଞ୍ଜେ,
ଶିଖାଇ ସେ ଦେବେ
ତାଙ୍କ ପ୍ରଶ୍ନର ଉତ୍ତର । (କିଛି କ୍ଷଣ ନୀରବ)
ବିଳମ୍ବ ନ କରି
ଚାଲନ୍ତୁ ସେ ଚନ୍ଦ୍ରାବଳୀପାଶେ,
ତେଜି କୁଞ୍ଜ ମମ ।
ଶ୍ରୀକୃଷ୍ଣ—ଧନି !
ଶ୍ରୀମତୀ—ଅହା-ହା…
ଚନ୍ଦ୍ରାବଳୀ ସିନା ।
କଳଙ୍କିନୀ ଗୁଆଳୀ ରାଧିକା
କେବେ ହେଲା ତବ ଧନୀ ପୁଣି ?
କ୍ଷମା କର ତାଙ୍କୁ,
ତେଜି କୁଞ୍ଜ—
ବିଜେ କର ଆନ ପଥେ ।
ଦେନି ଏ ବିନତି । (ସମସ୍ତେ ନୀରବ)
ବିଶାଖା—ଅପେକ୍ଷା କରି ଆଉ ଫଳ କଅଣ ? ଶୁଣିଲ
ତ ସଖୀଙ୍କ ଆଦେଶ ? ଯାଅ କୁଞ୍ଜ-ଦ୍ୱାରରୁ ଉଠ ।
ଲଳିତା—ବନ୍ଧୁବର ! ତେଣେ ବିଳମ୍ବ ହେବ,
ବେଗେ ବିଜେ କର ।
(ଇଙ୍ଗିତରେ ଶ୍ରୀକୃଷ୍ଣଙ୍କୁ ଶ୍ରୀମତୀଙ୍କ ପାଦତଳେ
କ୍ଷମା ମାଗିବାଲାଗି ଜଣାଇଲେ—ଶ୍ରୀକୃଷ୍ଣ ଧୀରେ-ଧୀରେ
ଭିତରକୁ ଗଲେ)
ଶ୍ରୀକୃଷ୍ଣ—(ଶ୍ରୀମତୀଙ୍କ ଚରଣକୁ କର ବଢ଼ାଇ)
ରାଧେ !
ଧରୁଛି ଚରଣ—
କ୍ଷମ ଅପରାଧ ।
ଛୁଇଁ ବଂଶୀ କରୁଛି ଶପଥ—
ମାନମୟୀ,

ଜୀବନରେ କେବେ ଆଜ
ବଚନରେ ଅସତ୍ୟ ନୋହିବ ।
ରସମୟୀ,
ଏକାନ୍ତ ଆଶ୍ରୟ ପଦ୍ମ ମୋର ।
କହ ତେବେ,
କାହିଁ ଯିବ ଛାଡ଼ି ଏ ଚରଣ ?
କି ଲାଗି ଗୋ ଧରିବ ଜୀବନ ?
ଯଦି ଲୋ ପ୍ରେୟସୀ,
ନ ଚାହିଁବ ଥରେ ଚନ୍ଦ୍ରାନନ,
ସ୍ଥାନ ମମ ନାହିଁ ଆନ କାହିଁ ।
କେ ଦେବ ଆଶ୍ରୟ କହ,
ତୁମ ବିନେ ରାଈ ?
ରାଧା-ଦାସ ବୋଲି ଜଣା
ବୃନ୍ଦାବନ ସାରା ।
ଭଗାଇଏ ଦେବେ କରତାଳି;
ତେଜ ମାନ, (ଟିକିଏ ନୀରବ ରହି)
ଦେଲି ଧନ,
ଚରଣରେ ଘେନାକର—
ବନଫୁଲଗୁନ୍ଥା ଏହି କଣ୍ଠହାର ମମ ।
(ମାଳାସ୍ଥାପନ)
ଚୂଡ଼ା, ବଂଶୀ,
ଚରଣରେ ଦେଲି; ଘେନ ଉପହାର ।
ବାକି କିସ ଆଉ ?
ନୁଆଁଉଛି ଶିର
ଚରଣ ତଳରେ ।
କ୍ଷମା—
କ୍ଷମା କର, ତେଜ ମାନ,
ମାନମୟୀ ରାଧେ ।
(ମୁଣ୍ଡନୁଆଁଇଲେ)
ସଖୀମାନେ—ସଖି । (ଉତ୍କଣ୍ଠାସହ)
ଶ୍ରୀମତୀ—ବୃଥା ଅନୁନୟ ।
ରାଧିକା ପାଷାଣୀ,
ବାରବାର ପ୍ରବଞ୍ଚନା ସହି
ପାଲଟିଛି ପାଷାଣ ଏ ହୃଦ—
ନ ଶୁଣିବ କାହା କଥା ଆଉ ।
କହ ସଖି,
ଯିବେ ତେଜି କୁଞ୍ଜ ।
ତାଙ୍କ ଚରଣରେ
ରାଧାର ଏ ଶେଷ ଅନୁରୋଧ । (କର ଯୋଡ଼ିଲେ)
ଶ୍ରୀକୃଷ୍ଣ—ତଥାପି ବହିଲ ସହି,
ଏ ବୃକ୍ଷୟ ମାନ ?
ଦିଅ ଗୋ ବିଦାୟ ତେବେ
ଚିରଦିନଲାଗି ମୋତେ ।
ଆଉ ନ ଆସିବି କେବେ,
ନ କରିବି ଉତ୍ୟକ୍ତ ତୁମ୍ଭଙ୍କୁ ।
ଭିଖାରି ମୁଁ—
ଆସିଥିଲି, କ୍ଷମାଭିକ୍ଷା ମାଗିବାକୁ
ଶ୍ରୀଚରଣତଳେ ।
ନୋହିଲା ଯଦ୍ୟପି,
କି ସୁଖ ଆଶାରେ ଆଉ
ଧରିବି ଜୀବନ ?
ବିସର୍ଜନ ଦେବି ପ୍ରାଣ
ରାଧା-କୁଣ୍ଡଜଳେ ।

(ଗୀତ)

ରାଈ ଗୋ ! ତୁହି ସିନା କାହ୍ନୁ-ଚିତ୍ତ,
ତୋହର କାରଣେ ରସଭକ୍ତି ଘେନି
ବ୍ରଜପୁରେ ମୋର ସ୍ଥିତି ।୦।
ଦିବାନିଶି ବସି ରାଧା-ନାମ ସାଧେ
ମୁରଲୀ ଘେନି ମୁଁ ଛଳରେ ।
ତୋହର ଆଶାରେ ସ୍ନାହାନ-ଘାଟରେ
ଥାଏଁ ଯମୁନାର ତୀରେ ।୧।
ସୁଣ ଲୋ କିଶୋରୀ, ତୋରେ ଅନୁସରି
କଦମ୍ବତଳେ ମୋ ବାସ,
ତୋ ତନୁ-ବରନ ସରସା ହେବାକୁ
ପିନ୍ଧେ ସଦା ପୀତବାସ ।୨।

ଶ ସ୍ୱନେ ସ୍ୱପନେ ଘୂମେ ଜାଗରଣେ
ତୋ ବିନୁ ନ ଜାଣେ ଆନ,
କରୁଣାବତୀ ଗୋ ! ଆଡ଼େ ନ ଗୁହିଁଲ୍
ଏଇ ହେଲ୍ ପରିଣାମ ? ।୩।
(ଗାଇଗାଇ ପ୍ରସ୍ଥାନ)

ବିଶାଖା—ସହି ! ଏତେ ଗୁରୁମାନ ଉଚିତ ହେଲି କି ?
ଟିକିଏ ବିଗୃର କର ।

ଶ୍ରୀମତୀ—(ଦୀର୍ଘନିଃଶ୍ୱାସ ପକାଇ) ବିଗୃରର ଅବସର
କାହିଁ ସଖି ମୋର ?
ଯେ ଅନଳ ଲଗାଇଅଛନ୍ତି ଦଗାଦାର,
ଅହରହ ହୁହୁ-ହୁହୁ ଜଳେ ରାଧାର ଅନ୍ତରେ ।
ବିଗୃର, ବିବେକ ସବୁ ପୋଡ଼ି
ହୁଏ ଭସ୍ମୀଭୂତ
ସେହି ଅନଳ ଶିଖାରେ ।

ସଖୀଗଣ— (ଗୀତ)
ଚରଣତଳେ ତବ ଶରଣ ମାଗେ
ଶ୍ୟାମ ରେ ଅନାଁ ଫେରି ରେ ।
କୋଟି-କୋଟି ଭୂତଳେ ଲୁଟେ
ତେଜ ମାନ ତୁ ଗୋରୀ ରେ ।୧।
ଚନ୍ଦ୍ର ସୁନ୍ଦରମଳ, ବଦନ ନିରମଳ
ଭାରି ନୟନର ବାରିରେ,
ଆଣା ଦିଅ ତୁ, ଭାଷ ମୋହିନୀ,
ଦ୍ୱାରେ ମୁରଲୀଧାରୀ ରେ ।୨।
ଅସୁ ମୋହନ, ଭାସୁ ତୋ ମନ-
ପ୍ରେମସାଗରପାରି ରେ ।
ଚରଣ-କଙ୍କରେ ମାନ ଏ ତୋର
ସାଜେ କି ବରନାରୀ ରେ ।

ଶ୍ରୀମତୀ—ସଖି !
ନ କଲାଅ ତନୁ ମୋର,
ଗାଇ ଗାଇ ଶ୍ୟାମଗୁଣ ଆଉ ।
ଯାଉ ପଛେ ରାଧା ଜୀବ,
ପ୍ରତିଜ୍ଞା ମୋହର -
ଆଜଠାରୁ
ନ ଶୁଣିବି କଳା-ନାମ,
ନ ଦେଖିବି କଳା ନବଘନ,
ଯମୁନାର ବାରି ।
କଳା ଯେତେ
ଅନ୍ତର କରି ମୋ ପାଶୁଁ ।
ଲଳିତେ;
ପ୍ରିୟସଖି ମୋର—
ପରାଣୁ ଅଧିକ,
ଶପଥ ମୁଁ କଲି ଆଜିଠାରୁ,
ଛୁଇଁ ତନୁ ତୋର ।

ଲଳିତା—ଆହା-ହା, ଥାଉ, ଥାଉ
କିଶୋରୀ !
ପଛେ ଛୁଇଁବୁ ମୋ ତନୁ—
(ଗୀତ)
ପାଶୋରିଲୁ ଦେଖି ନୀପ ଅନାଉଣି
ସ୍ୱାଗତ ଭୁଜଙ୍ଗ ମନୁଁ ।
ନିମ୍ନ କରୁ ତୁ ନ ଗୁହିଁବୁ ବୋଲି—
ପରି କଳା ନବଘନ,
କଳା ତ ଯମୁନା କଳା ସେ ତମାଳ
କଳା ପରି କୁଞ୍ଜବନ ।।

ଶ୍ରୀମତୀ—ନୟନ ନଦେବି ନୀଳ ଘନେ ଆଉ;
ନ ଆସିବି କୁଞ୍ଜବନ,
ସଜନୀରେ କହ ରଞ୍ଜାଇ ନ ଦେବେ
ନୟନେ ଆଉ ଅଞ୍ଜନ ।।

ଲଳିତା—ନଟ-ଖଞ୍ଜରୀଟ- ନୟନା ରେ କଳା-
କଜ୍ଜ୍ୱଳ ଭୁଜଙ୍ଗବେଣୀ ।
କାହିଁ ଲୁଗୁଇବୁ ଏମାନ ଏ ମାନ
ମିଛେ ତୋର କିସ ଘେନି ?

ଶ୍ରୀମତୀ—ମୁକୁର ମୋ ପାଶୁଁ ଅନ୍ତର କର ଗୋ
ବେଣୀରେ ନ ଦେବ ହାତ,
ନୋହିଲେ ତହିଁକି ଉପାୟ ଦିଶୁଛୁ
ମୁଣ୍ଡନ କର ଏ ମାଥ ।।

ଲଳିତା—ଅଚ୍ଛା କିଶୋରୀ, କହ ତ—
ସବୁ ତ କରିବୁ ସପନେ ନୟନେ
ମିଳିଲେ ସେ ମନ ଚୋରିବ,
ଚାହିଁକି ଉପାୟ କି ଅଚ୍ଛି ତୋହରି
ଯେ ଯାହାର, ସେ ତାହାର
ରେ କିଶୋରୀ,
ମନକୁ ମନ ପଶୁରି—
ଧନ୍ୱନ୍ତରୀ ହେଲେ ଦେଇକି ପାରିବେ
ଏ ରୋଗକୁ ଉପଶୁରି ?
(ପଛ କ୍ଷେପ)

---

## ଚତୁର୍ଥ ଅଙ୍କ

### ପ୍ରଥମ ଦୃଶ୍ୟ

( ବନପଥ—ଏକାକୀ ଶ୍ରୀକୃଷ୍ଣ )

( ଗୀତ )

କହ ରେ ମଧୁ ପବନ, କହ କହ ମଧୁବନ
ଯମୁନାର ନୀଳ-ଜଳବେଣୀ,
ତରୁ କଦମ୍ବର ତଳ, ଶ୍ୟାମ ତମାଳର ଦଳ
ଥିଲି ପରି ବନ୍ଧୁ କରି ଘେନି ରେ
ନବ କିଶୋରୀ,
ଗୁମାନ ତୁଟିବ କିସ କରି ।୧।
ଯିବ କି ମୋ ସଖୀ ପାଶେ, କହିବ ଏତେ ବିଶେଷେ
ତା'ଲାଗି ସରିଲା ବୃନ୍ଦାବନ,
ନ ବହେ ଯମୁନା-ନୀର, ନୀରବ କୋକିଳ, କୀର
ଅଚଳ ତ ମଳୟ ପବନ ରେ
ନବନବୀନା
ସରବ ମୋହନ ତୋହ ବିନା ।

(ମଧୁମଙ୍ଗଳ—ପ୍ରବେଶ)

ମଧୁ—ହେଇ ତ, ଏଠି ଆସି ହାଜର । ମଣିଷକୁ ହଇରାଣ କରି ମାରିଲ ସଖା । ସବୁବେଳେ ଏଇ କରୁଣ ରାଗଣୀ ଆଉ ବିରହ ଗୀତ ଗାଇ-ଗାଇ ।

ଶ୍ରୀକୃଷ୍ଣ—ତୁମେ ବୁଝିବ ନାହିଁ ସଖା । ମୋ ମନର ବେଦନା···,

ମଧୁ—ବେଶ୍, ଖୁବ୍ ବୁଝିଛି ମୁଁ । ସେଇଥିପାଇଁ ତ ତୁମକୁ ଖୋଜିଖୋଜି (ବସିପଡ଼ି) ହଁସା ଉଡ଼ି-ଗଲାଣି ମୋର । କିଏ ଛୁଙ୍କାର ହଉଛି, କିଏ ଝିଙ୍କାରି ହଉଛି; କିଏ ନାକାଳି ଦଉଛି । ତମର-ପାଇଁ ନା ? ନୋଇଲେ ଘର୍ ଗୋପର ଗୁଆଳୀ—ସେ ପୁଣି ଆଜି ମୁହଁ ଫୁଲାନ୍ତେ ? ଟୋକେ ମାରିବାକୁ ତିଆରି । ମୁହ୍ଁ ଖିକେ ବ୍ରହ୍ମଶାପରେ ଭସ୍ମ କରିଦିଅନ୍ତି ନାହିଁ ତାଙ୍କୁ ? ବାପାଙ୍କ ବିଦ୍ୟା ତ ଏତେ ଚଞ୍ଚଳ ଭୁଲିଯାଇନି ମୁଁ । ଖାଲି ଯାହା ଭଲକି ଲାଗୁଛି ସିନା ତମରି ସାଙ୍ଗରେ ପଡ଼ି ।

ଶ୍ରୀକୃଷ୍ଣ—କଅଣ ହେଲା ସଖା ?

ମଧୁ—ଯାହା ହେଲା, ହେଲା—ନାଥେ ଜାଣନ୍ତି କି ହାତେ ଜାଣନ୍ତି । ଶାସ୍ତ୍ର କହେ, "ଅପମାନଂ ତପୋଦାନଂ"—ଏସବୁ କହିଯୋଗାଏ ନାହିଁ; ମନକଥା ମନରେ ମାରିବା ଭଲ । ମୁଁ ତ ଆଉ "ତୁମେ" ନୁହେଁ ଯେ ଅପମାନ କଥାଗୁଡ଼ାକ ସ୍ତ୍ରୀ ତା ଆଗେ ଢେଙ୍କୁରା ଦେଇ ବୁଲିବି ।

ଶ୍ରୀକୃଷ୍ଣ—ମୁଁ କଅଣ ସ୍ତ୍ରୀ ତା ଆଗେ ଢେଙ୍କୁରା ଦେଇ ବୁଲିଲି ?

ମଧୁ—ଆଉ କ'ଣ କରୁଥିଲ ଏଇକ୍ଷଣି ? ବୃନ୍ଦାବନର ଏଇ ଯେ ତରୁ, ଲତା, ବଣ, ପାହାଡ଼—ଙ୍କର କି ଆଉ କାନ ନାହିଁ ମନେ କରୁଛ ? ହେଲା ଅବା, ମୁଣ୍ଡିଆ ମାରି-ମାରି ତୁମ ମୁଣ୍ଡରେ ଅବୁ ହୋଇଯାଇଛି । ହେଲା ତ କଅଣ ହେଲା ? ଆପଣା କଥାକୁ ଉପାୟ କିସ ? ସେମାନେ କି ତମର ପରାଣ ହରିନେବେ ? ଯାହା ହେଲା ହେଲା, ଅମର ଚୁପ୍ ଥାଅ । ଭଲ ଲୋକେ ଶୁଣିଲେ କଅଣ ପ୍ରଶଂସା କରିବେ ତୁମକୁ ?

ଶ୍ରୀକୃଷ୍ଣ—ସଖା । କିଶୋରୀ ମୋତେ ଅପମାନ କରିଛନ୍ତି ।

ମଧୁ—ଭାସିଗଲା କଅଣ ? ତେବେ ତୁମେ କଅଣ କହୁଛ, ନନାଙ୍କ ଅଭିଧାନରୁ ମୁଁ ଏବ୍ରକ୍ଷଣି ଦୌଡ଼ିଯାଇ ଅଭିମାନ ଶବ୍ଦଟା କାଟି ଉଡ଼ାଇ ଦେବି, ନାଁ କଅଣ ?

ଶ୍ରୀକୃଷ୍ଣ—ରାଇ ମୋତେ ତଡ଼ିଦେଲେ ।

ମଧୁ—ଭଲ କଲେ, ଅଚ୍ଛା କଲେ । ନ ଦେଇଥିଲେ ତାଙ୍କୁ ଅଣପୁରୁଷା କହୁଥାନ୍ତି । ମୂର୍ଖ କହନ୍ତି, ତଡ଼ିଦେଇଛନ୍ତି, ଭଲ କରିଛନ୍ତି ।

ଶ୍ରୀକୃଷ୍ଣ—ଭଲ କରିଛନ୍ତି ?

ମଧୁ—ହଁ, ଭଲ କରିଛନ୍ତି । ତୁମେ ବୁଝୁ ନାହଁ । ତୁମର ଶିକ୍ଷାର ଅଭାବ । ମୋ କଥା ଶୁଣ—ତୁମେ ଚୁପ୍‌ଚାପ୍ ବସିରୁହ ।

ଶ୍ରୀକୃଷ୍ଣ—ଚୁପ୍‌ଚାପ୍ ବସିରହିବି ସଖା ?

ମଧୁ—ଆଉ ?

ଶ୍ରୀକୃଷ୍ଣ— (ଗୀତ)

ସେ ଯେ ସାଥି, ମୋର ସାଥି
ମୋର ଜୀବନ-ମରଣ-ସାଥି,
ଯେ ପଥେ ଫୁଟେ ତା ଚରଣ-କମଳ
ଯାବକ ରେଖାର ଛାଇଟି ମାତର
ସେ ପଥେ ମରଣ ସରଗସମାନ,
ନ ପାଏ ପଛେ ତା ଦେଖା ।
ଯେ ପଥେ କାନନେ ଅଙ୍ଗ ପରିମଳ
ଗନ୍ଧବହ ତୁଲେ ଖେଳେ ଧୂଳିଖେଳ,
ଯେ ପଥେ ଫୁଟଇ କୁସୁମନିବହ
ବିରହ କୋଇଲି ଡାକେ ।
ଯେ ପଥେ ବନ୍ଧୁଆ ଯମୁନାବନ୍ତରେ
ଯାଏ ଫୁଲ ହାତେ ମୋହର ଆଶାରେ
ବୁଡ଼ଇ ତପନ ସଞ୍ଜୁଆ ଗଗନେ
ସେହି ପଥେ ଯିବି ନିତ
ଗାଇ-ଗାଇ ତାର ଗୀତ ।

ମଧୁ—ହେଇ ରେ, ଶେଷଂ, ଶେଷଂ, ଶେଷଂ ଚକାର । ଗୋପାଳ ବୁଦ୍ଧି ତ । କଉ, ବୁଝୁ ନାହଁ ଏଇତକ ? ସେ ତୁମକୁ ତଡ଼ିଦେଇଛନ୍ତି, ନାଁ ନିଜେ ତଡ଼ି-ହେଉଛନ୍ତି ? ଅରେ ସୂକ୍ଷ୍ମ ବୁଦ୍ଧିରେ ବିଚାର କର ? ତୁମକୁ ମୁଁ ୧୦ବର୍ଷ ସମୟ ଦେଲି; ଭାବି କହିଲ ?

ଶ୍ରୀକୃଷ୍ଣ—ମୋତେ ତ ତଡ଼ିଦେଲେ ସଖା । କହିଲେ, କୁଞ୍ଜ ତ୍ୟାଗ କର । ସ୍ୱାର ଆଉ କି ଉତ୍ତର ମୁଁ କରିବି ?

ମଧୁ—ଭୁଲ୍, ଭୁଲ୍ । ତଡ଼ିଦେଇ ନାହାନ୍ତି ସେ, ତଡ଼ା ହୋଇଛନ୍ତି ସେ, ଅବା ଖାଇଛନ୍ତି ନିଜେ ନିଜେ ।

ଶ୍ରୀକୃଷ୍ଣ—କିପରି ?

ମଧୁ—ବୁଝୁ ନାହଁ ?

(ଗୀତ)

ଅନଳ ଜାଳଇ ପରେ ଅଗେ ଜାଳି ତା ଅଙ୍ଗ
ଶୀତରେ ମରେ କାକର ଶୀତଳ ତା'ର ସଙ୍ଗ ।୧।
ଖର କରେ ରବି କାଳେ ଏ ସାରା ସଂସାର,
ଜ୍ୱାଳା ହରେ କରି ସଞ୍ଜେ ସାଗର ପରସଙ୍ଗ ।୨।
ଯେ ପାହାରେ ଜାଳିମାରେ ଆଗେ ମରେ ଆପଣେ
ଦେଖିଲ କି ନୂଆ କଥା ଏ ତ ସଂସାର-ରଙ୍ଗ ।୩।

ମଧୁ—ଦମ୍ଭ ଧରି ବସ । ଝିଲପଡ଼ିବାର ଭୟ ଥିଲେ ମୋତେ ଅବା କଦମ୍ବଗଛକୁ କିମ୍ବା ତମାଲକୁ ଆଣ୍ଠେଇ କରି ଯାକି ଧର । ମୁଁ ବେଶ୍ ଦିବ୍ୟଚକ୍ଷୁରେ ଦେଖି-ପାରୁଛି । (ଆଖି ମୁଦି) ହେଇ ! 'ତେମେ', 'ମୁଁ' ପାଲଟି ଯାଇ ଦେଖ । ହେଇ । ଶ୍ରୀମତୀ ଘନ-ଘନ ମୂର୍ଚ୍ଛା ଗଲେ, ହେଇ ସଖୀଗୁଡ଼ାକ ତାଙ୍କୁ ପଦ୍ମ-ପତ୍ରରେ ଜଳଛିଟା ଦେଇ ବାଞ୍ଚୁଛନ୍ତି । ସବୁବେଳେ ହା କୃଷ୍ଣ, ହା କମଳଲୋଚନ, ହା ଦଗାଦାର, ହା ନିଶିଶେଷେ ଆସିଲ ନାଗର, ହା ବାରବାଟ ଚରଣ ଧର—ଏଇଆ କହୁଛନ୍ତି, ଦିଶୁ ନାହିଁ ?

ଶ୍ରୀକୃଷ୍ଣ—ସେସବୁ ତ କିଛୁ ଦିଶୁ ନାହିଁ ସଖା ! ମତେ ଯେମିତ ଦିଶୁଛି—

(ଗୀତ)

ସଜଳ ନୟନେ ଚୁହିଁ ଚୁହିଁ ମୋ ଧିଆନେ
କିଛୁ ନ କହି ସେ ଗୁଲିଗଲା ଅଭିମାନେ
ବଡ଼ ବାଧେ ପ୍ରାଣେ,
ସେ କଥା ପଡ଼ିଲେ ମୋର ମନେ ।୧।

ମଧୁ—ତୁମେ ଏତେ ଅଧୀର ହେବା ତ ଆଉ କେବେ ଦେଖି ନାହିଁ କାହ୍ନୁ !

ଶ୍ରୀକୃଷ୍ଣ—ଏ ବେଦନା ଯେ ଆଉ କେବେ ପାଇ ନାହିଁ ସଖା ?

ମଧୁ—ମୋ ଅପରାଧ ଘେନିବ ନାହିଁ ସଖା । ମୋର ଯେମିତି ମନ ହୁଏ, ଏ ଖୋଜାରେ ତମର ଏ ବେଦନାଟିକ ପାଇବାର ଦରକାର ଥିଲା ।

ଶ୍ରୀକୃଷ୍ଣ—ଆଚ୍ଛା, ମାନିଲି ତୁମ କଥା; ଦରକାର ଥିଲା ଯେବେ, ସେ ତ ହେଲା—ଏବେ ଉପାୟ ?

ମଧୁ—ତା’ ବି ଅଛି । ରୋଗ ଯେମିତି ନୂଆ ନୂଆ ହେବ, ଔଷଧ ବି ସେମିତି ନୂଆନୂଆ ବାହାରିବ । ବହି-ବେଲ ବାଆ. କାଢ଼ିବେଲେ ନ ଥାଏ । ଅଜଥରେ ଚେଷ୍ଟା କର ।

ଶ୍ରୀକୃଷ୍ଣ—ଥରେ କଅଣ ସଖା, ଶହେ ଥର ଚେଷ୍ଟା କରିବାକୁ ରାଜିଅଛି; ମାନି କିଛି ଉପାୟ ତ ଦିଶୁ ନାହିଁ ମତେ ।

ମଧୁ—ବୁଝିଲି ସଖା ! ରାତି ଥିଲେ ଜ୍ୟୋତ୍ସ୍ନା ଦିନ ହେବ—ଏ ଯେମିତି ସତ, ମାନ ହେଲେ ବିରହିନ ମିଳନରେ ଛୁଟିବ ଏ ବି ସେମିତି ସତ କଥା । ତୁମେ ଖାଲି ଟିକିଏ ଦମ୍ଭ ଧର, ମୁଁ ତାର ଉପାୟ କରିଦେବି । ଅସ, ଆଉ ମନେ ରଖ, ଏ ମାନର ପରିଣତି ମିଳନରେ ନିଶ୍ଚୟ ।

(ଗୀତ)

ଜାଗିଲଣି ବନ୍ଧୁ, ଅଞ୍ଜନଭରା ପ୍ରିୟା ଆଖି
କୁସୁମ-ସୁବାସ ପିନା ମଳୟର ଲାଗି ।୦।
ଯଦି ଗୋ ଗିରିବନ କୁଟୀରେ,
ବିରହ ରାଗିଣୀ ଗାଇ ଝରଣାଟି ଝରେ,
ଆଶାର ମିଳନ ନାଏ ନଦୀପଥେ ଡାକି ।୧।
(ଗାଇ-ଗାଇ ଶ୍ରୀକୃଷ୍ଣଙ୍କ ସଙ୍ଗରେ ନେଇ ଚାଲିଗଲେ)

———

## ଦ୍ୱିତୀୟ ଦୃଶ୍ୟ

(ବିଷାଦିନୀ ଅଭିମାନିନୀ ଶ୍ରୀମତୀଙ୍କ ଗୃହପାଖରେ ସଖିମାନେ ଘେରିବସିଛନ୍ତି)

(ଗୀତ)

ଲଳିତା—ତୁ ତେଜିଲେ ଧନୀ, ଶ୍ୟାମ ଗୁଣମଣି,
ଚରଣ-ସେବକ ତୋର,
ଜୀବନେ, ମରଣେ, ଜନମେ ଜନମେ,
ବନ୍ଧା ପରି ପ୍ରୀତି ଡୋର ।
ରାଈ—ରାଧାକୁଞ୍ଜଧୂଳି, ବୋଲି ବନମାଳୀ
କ୍ଷଣେ କ୍ଷଣେ ମୋହଗତ,
ପୁଣି—ଦିବସ ରଜନୀ, ମୁଖେ ରାଧାବାଣୀ
ଚଳନେ ସେ ଅଶକତ ।୦।
ରାଧା ତା ଜୀବନ, ରାଧା ତା ମନନ,
ରାଧା ତା ହୃଦୟ ହାର,
ଚମକେ ହା ରାଧା, ସାଗ୍ନିବାଣୀ ଶୁଣି,
ରାଧା ଜୀବ ବୀଣା ତାର ।
ରାଈ, କରୁଣା କର,
ମୋହନେ ରାଈ କରୁଣା କର,
ଆଉ ନ ଚାହିଁଲେ, ଚାଲି ତ ପଡ଼ିବ,
କୁସୁମ କୋମଳ ତନୁଟି ତା’ର ।୧।
ପାଶୋରିଦେଲଣି ତ୍ରିଭଙ୍ଗିମା ଠାଣି,
ମୋହନ ମୁରଲୀ ଧରି,
ରାଧା-କୁଣ୍ଡପଙ୍କ, ଚନ୍ଦନ ହୋଇଛି,
ନାହିଁ ବନ ଫୁଲ ଝରି ॥
ରାଈ, ତେଜ ଗୁମାନ,
ଶ୍ୟାମେ, ରାଈ ତେଜ ଗୁମାନ ।
ଜାଣୁ ଜାଣୁ ବୁଦ୍ଧିବଣା ହୋଇ ରାଧେ !
ନ ଫିଙ୍ଗ ପାଦେ ନୀଳ ରତନ ।୨।
(ବିଦେଶିନୀ ବେଶେ ଶ୍ରୀକୃଷ୍ଣ ଓ ମଧୁମଙ୍ଗଳ କୁଞ୍ଜ)

ମଧୁ—ରାଧାକୁଞ୍ଜ ଦ୍ୱାରରେ ପହଞ୍ଚିଲେଣି ସଖା ! ମନେ ରଖ, ଆମେ ବିଦେଶିନୀ । ଶ୍ରୀମତୀଙ୍କ ଆଖିଲୁହ ଦେଖି ଯେମିତି ବିଚଳିତ ନ ହୁଅ, ଭୁଲି ନ ଯାଅ । ଏଇକ୍ଷଣି ଧରାପଡ଼ିବା କଥା ନ ହୁଏ । ସାବଧାନ ।

ଶ୍ରୀକୃଷ୍ଣ—ସବୁ ମନେ ଅଛି ସଖା । ଗୀତ ଧର—
ଦୁହେଁ—                (ଗୀତ)

ନନ୍ଦ ସୁନନ୍ଦନ  ଭୁବନମୋହନ
ଦରଶନେ ଦଣ୍ଡବତ ନନ୍ଦେ ।
ଜୟ ଜୟ ମାଧବ-ଜୟ ଜୟ ରାଧା
ଚରଣ-କମଳ ତବ ବନ୍ଦେ ॥

ଶ୍ରୀମତୀ—ସଖି, କୁଞ୍ଜଦ୍ୱାରରେ କିଏ ?

ବୃନ୍ଦା—ଦେଖେଁ । (ଉଠି) କିଏ ଗୋ ତୁମେ ? ଏଣେ ଆସ ।

ମଧୁ—ବିରହିଣୀ, ବିଦେଶିନୀ—
ଦୁଇ ନାରୀ,
ଆସିଅଛୁଁ
ବହୁ ଦୂର ଦେଶୁଁ ।
ଜୟ ରାଧେକୃଷ୍ଣ ।              (କହି ପ୍ରବେଶ)

ଶ୍ରୀମତୀ—ବସ ଏଇ ଶିଳାଖଣ୍ଡପରେ ।
(ଦୁହେଁ ବସିଲେ)

ବୃନ୍ଦା—ନୀଳକାନ୍ତମଣିଜିଣି ବିଦେଶିନୀର ଏ ସୁନ୍ଦର ରୂପ ।

ବିଶାଖା—ସତେ ଯେମିତ ପୂର୍ଣ୍ଣଚନ୍ଦ୍ରର ଉଦୟ । ସୁନ୍ଦର ମୁହଁଟି । ହାତ ଲଗାଇଲେ ମଇଳା ଯିବ—ଏଇ ଉପରେ ବିଧାତା ଯେମିତ ମନେ-ମନେ ଏରୂପ ଗଢ଼ିଥିଲା ।

ଲଳିତା—ଏତେ ସୁନ୍ଦର ରୂପ ତମର । ଏ ଅବସ୍ଥା କାହିଁକି ? ଆଖି ଲୁହ-ଛଳଛଳ, ଯେମିତ ନିତାନ୍ତ ଉଦାସିନୀ । ଜଣାଯାଉଛି, କାହା ଉପରେ ଅଭିମାନ କରିଛ । ତମ ଭାବ ଦେଖି ମନେ ହୁଏ, ଯେପରି ଏକ ବଡ଼ ଅଭାବ ତୁମେ ଅନୁଭବ କରୁଛ । କଅଣ ହୋଇଛି ତମର ? କେଉଁଠି ତମ ଘର ? ଗୋକୁଳକୁ କାହିଁକି ଆସିଛ ?

ଶ୍ରୀମତୀ—ବିଦେଶିନୀ ! ତୁମପରି ସୁନ୍ଦରୀ ତ କେବେ ଦେଖି ନାହିଁ । ତୁମେ ଅପସରୀ ନା ବିଦ୍ୟାଧରୀ କି ଅବା ନାଗକନ୍ୟା ? କି ଦୁଃଖରେ ଅନାଥିନୀ-ପରି ଦେଶଦେଶ ବୁଲୁଛ ? ଆହା । ତମର ଏ ରୂପରେ ଦୁଃଖରେଖା ଦେଖି ଛାତି ଫାଟିଯାଏ ମୋର । କହ ଦେଖି, ତମର କି ଦୁଃଖ । କି ଅଭାବ ? ସଙ୍ଗରେ ପୁଣି ଏ କିଏ ?

ମଧୁ—ସହଚରୀ ମୁହିଁ,
ଅଭାଗିନୀ ମୋ ପ୍ରିୟସଖୀର ।

ଶ୍ରୀକୃଷ୍ଣ—ଆହା । ଶୀତଳ ହୋଇଲା ପ୍ରାଣ—
ଶୁଣି ସୁଧା-ବାଣୀ ।
କି ଅମୃତେ ଗଢ଼ିଛି ବିଧାତା
ଏ ସୁନ୍ଦର, ସୁଗୋଲ୍, ସୁଠାମ ରୂପ ?
ଅନୁମାନ ମୋର,
ଆପଣ ନିଶ୍ଚୟ ହେବେ—
ବୃଷଭାନୁସୁତା,
ରୂପ ଗୁଣ ଯଶ ଯା'ର
ଭରେ ତ୍ରିଭୁବନ ।

ଶ୍ରୀମତୀ—ଅନୁମାନ ସତ୍ୟ ।
ରାଧା ମୁହିଁ,
ବରଜ-ଗୁଆଳୀ ।

ମଧୁ—ପୁଣ୍ୟଫଳ, ପୁଣ୍ୟଫଳ ।
ପୂର୍ବଭାଗ୍ୟବଳେ
ଆଜି ଲଭିଲୁଁ ଦର୍ଶନ ।

ଶ୍ରୀକୃଷ୍ଣ—ଦିଅ ପଦଧୂଳି ।

ଶ୍ରୀମତୀ—ଆହା, ଆହା । ବିଦେଶିନୀ
କି କର, କି କର ?
ଅତି ଅଭାଗିନୀ—
ଅପରାଧେ ନ ବୁଡ଼ାଅ ମୋତେ ।
କହ, ତବ ମର୍ମକଥା ଶୁଣେଁ,
କି ଦୁଃଖରେ ବୁଲ ଦେଶଦେଶ ?
ଏତେ ରୂପ, ଏଡ଼େ ଲାବଣ୍ୟ,
ସମ୍ଭବ ତ ନୁହେଁ ନରଲୋକେ ।

ମଧୁ—କି ପଚାର ?
ବିଷାଦ-କାହାଣୀ ଦେବୀ ।
ଅଭାଗିନୀ—
ଅତି ଅଭାଗିନୀ ସଖୀ ମୋର ।

ଥିଲି ଦିନେ ପତିସୋହାଗିନୀ,
ଶୟନେ ସ୍ୱପନେ—
ପତି ତା'ର
ଥିଲେ କିଣାଦାସପରି ।
ଦଇବ-ଘଟଣା—
ଦିନକର
ନ ଆସିପାରିଲେ ପ୍ରାଣପତି
ମୋ ସଜନୀ ପାଶେ ।
କାଟି ନିଶି ଜାଗରେ
ହେଲି ଅଭିମାନୀ ।
ପତି ତା'ର
ପ୍ରେମିକ-ରତନ
ବହୁ ଯତ୍ନ କଲେ ଭାଙ୍ଗିବାକୁ ମାନ,
ଅବଶେଷେ ଧରିଲେ ଚରଣ ।
ତଥାପି, ତଥାପି
ସଖୀଟି ମୋର ହୋଇଲା ପାଷାଣୀ ।
ଲଭି ଅପମାନ—
ବିରାଗୀ ହୋଇ ସେ
ଛାଡ଼ି, ଗଲେ ଦେଶାନ୍ତର ।
ତାଙ୍କର ଉଦ୍ଦେଶ୍ୟେ
ଦେଶେ-ଦେଶେ, ବନେ-ବନେ
ବୁଲି ଦୁହେଁ ।
ଅନାହାରେ, ଅନିଦ୍ରାରେ
ଯାପେ ସଖୀ ଦିନ ।
ଦେବି !
କାହିଁକି ପଚାର ଆଉ
ଅଭାଗୀର କରୁଣ-କାହାଣୀ ?

ବୃନ୍ଦା—ସହି ! ଗୁଣି ଯୋଉଠି, ଖୁଣ ସେଇଠି ।
ନୋହିଲେ ଲୋକେ ଦଇବକୁ ନିଷ୍ଠୁର ବିଧାତା
ବୋଲି କାହିଁକି କହନ୍ତେ ? ଦେଖୁ ନାହିଁ ନିଜ-
କଥା ।

ବିଶାଖା—ହଁ ସଖି ! ଦୁଃଖ କହିବ ନାଁ ସୁଖ କହିବ
ନାଁ ଯାହା ଅଙ୍ଗେ ଲିଭେଇଛୁ, ତା' କହିବ ?

ଶ୍ରୀମତୀ—ବିଦେଶିନୀ, ସମଦୁଃଖିନୀ ମୁଁ ଅଭାଗିନୀ ।
ସହି, ତୁମେ ମୋର ଆଜଠାରୁ···(ହାତ ଧରି
ପାଖରେ ବସାଇ) ଆସ ସହି, ବସ ପାଶେ ମୋର ।
ରହ ଦିନ ଦୁଇ-ଚାରି, ସମଦୁଃଖିନୀ ପାଖରେ
କହିଲେ ହୃଦୟ-ବ୍ୟଥା—ଲଘୁ ହୁଏ ଦୁଃଖ-
ଭାର ।ଲଳିତେ ଗୋ !
ନେଇ ଚାଲ ସହିଙ୍କୁ ମୋହର
କୁଞ୍ଜ ମଧ୍ୟେ ।
ଚାଲ ସହି,
ବସି ଦୁହେଁ ହେବା ମନ-କଥା ।
ଆଗେ ଦୂର କର ଶ୍ରାନ୍ତି,
ଆସିଅଛ ବହୁପଥ ତୁମେ ।

ମଧୁ—ତେବେ ସଖି !
ଅବଗାହି ଯମୁନାରେ ଆସୁଛି ମୁଁ ଫେରି । (ଉଠିଲେ)
ଥାଅ ତୁମ୍ଭେ ଦେବୀଙ୍କ ନିକଟେ ।
କେଜାଣି ବା ହେବ ହେଲେ,
ମନର ପ୍ରବୋଧ ।
ମଳୟପରଶେ,
ଯଥା ଚନ୍ଦନ ପାଲଟେ ନିମ୍ବ ।
ଅହା !
ମରିଯାଏଁ କିନା,
କି ସୁନ୍ଦର ସାଜୁଛି ଗୋ,
କଳା-ଗୋରି ତନୁ ?
ବିଧାତା କୃପାରେ—
ଘୁଞ୍ଚୁ ଦୁହିଁଙ୍କର ଦୁଃଖ,
ଦୁଇ ମୁଖେ ଫୁଟୁ ହସ-ରେଖା ।
ପୂରୁ ଆମ ମନର ସପନ ।
ଆସେଁ ସଖି,
ଆସୁଛି ଶ୍ରୀମତୀ,
ଅଚିରେ ଫେରିବି ପାଶେ ତବ ।

( ପ୍ରସ୍ଥାନ )

—ପଟକ୍ଷେପ—

## ତୃତୀୟ ଦୃଶ୍ୟ

ପଥ

( ଏକାକୀ ଲଳିତା )

(ଗୀତ)

ଭୁଲ କି ମନଗ୍ରେର କୁଞ୍ଜବନେ କୁହୁ ଗାଇଲୁ ?
ଅଦିନେ କି ମନେ ତୁ ଫେରଗୃହିଁଲୁ ? ।୦।
ତୋ ବିନା ସୁମନା ମନେ, ସରଗ ନାହିଁ ସପନେ
କି କର ପାଶୋର ଭୁଲିମନ ରହିଲୁ ? ।୧।
ଆଜ ରେ ଆସିଲୁ ଫେର
ସତେ କି ବସନ୍ତ ଗ୍ରେର ?
ପଞ୍ଚମରେ ମୁରଲୀରେ ସ୍ୱର ଧଇଲୁ ।୨।

(ଗାଉଗାଉ ଚୁଲିଗଲେ)

(ବିଦେଶିନୀ ବେଶେ ମଧୁ ଓ ବିଶାଖା କଥାବାର୍ତ୍ତା ହେଉହେଉ ଉପସ୍ଥିତ ହେଲେ ସେ ବାଟେ)

ବିଶାଖା—ନାଇଁ, ବାହାଦୁର ଅଛୁ ତମର ।

ମଧୁ—ତା' ସ୍ୱୀକାର କରିବାକୁ ତୁମେ ବାଧ ବୋଲି ସ୍ୱୀକାର କରୁଛ ସିନା ? ନୋହିଲେ ଜନ୍ତୁ ନ ମରିଲେ କି ଶିଙ୍ଗହଲା, ଲଙ୍ଗୁଡ଼ଛଟା ଝାଡ଼ନ୍ତି ?

ବିଶାଖା—ତମ ହିସାବରେ ଆମେ ସବୁ ତେବେ ଜନ୍ତୁ ?

ମଧୁ—କୁହଂ ନାହିଁ ଏଇଥିକୁ ? ମଣିଷ ସାଙ୍ଗରେ ମଣିଷ ରହେ, ଗଧ ସାଙ୍ଗେ ଗଧ, ଗାଈ ଗୋରୁସାଙ୍ଗେ ଯାହାର ଚଳାଚଳ, ତାକୁ କଅଣ କହିବା ?

ବିଶାଖା—ଆଖିରେ ଥରେ ଧୂଳି ଦେଇଆସିଚୁ ବୋଲି ଏ କଥା କହୁଛ ନାଁ କଅଣ ? ଆଚ୍ଛା ହଉ, ମନେ ରହିଲା ଆମର, ଏକ ମାଘରେ ତ ଶୀତ ଯାଏ ନାହିଁ ।

ମଧୁ—ହଁ, ପୁଣି ଅଛୁ, ଫେର ଅଛୁ—ଆହୁରି ଅଛୁ ।

ବିଶାଖା—ଦେଖାଯିବ ।

ମଧୁ—ସବୁ ଦେଖାଯିବ ଯେ, ବାକି ସଖୀ ଚନ୍ଦ ସଫଳ ମନରେ ଫେରନ୍ତି, ସବୁ ଭଲ ।

ବିଶାଖା—କେଜାଣି, ଯେମିତ ଭାବୁଛ, ସେତେ ସହଜ ନୁହେଁ ।

ମଧୁ—ତା' ତ ନୁହେଁ । ହୋଇଥିଲେ ସନ୍ଦେହ କାହିଁକି ହୁଅନ୍ତା ? ତେବେ ଗୋଟିଏ କଥା—ଶଙ୍କାପଡ଼ି ବେଗ ନ ବଢ଼ାଇଲେ ରକ୍ଷା । ସଖୀଙ୍କର ତ ଗୋରୁ-ରଖୁଆଳ ବୁଦ୍ଧି । ଡର ସେଇଥିକି ମୋର । କୁଞ୍ଜ ପାଖକୁ ଚୁଲ । ସେଇଠି ମୁଁ ଅପେକ୍ଷା କରିବି, ତୁମେ ଭିତରୁ ବେଳେବେଳେ ଆସି ଖବରଟା ଦେଉଥିବ,—ଭଲ ମନ୍ଦ ।

ବିଶାଖା—ତା' ମୁଁ କରିପାରିବି ।

ମଧୁ—ହଁ, ତମମାନଙ୍କ ହାତେ ଆଉ ନ ହବ ଅବା କଅଣ ? ଚକୁଳି ପିଠାପରି ଚଟ୍ ଓଲଟି ଚେଁ କରିବ ତୁମେମାନେ ।

ବିଶାଖା—ହଉ ଚୁଲ, ବେଶ ଫେର ବଦଳାଇବ ତ, ନାଁ ଏଇ ବେଶରେ କୁଞ୍ଜକୁ ବିଜେ କରାଇନେବ ?

ମଧୁ—ଆମର କାହ୍ନୁ କାହାନ୍ତି ?

ବିଶାଖା—ଆମେ ଅଛୁଁ ।

ମଧୁ—ବାଃ ।

ବିଶାଖା—ବାଃ କଅଣ ? ମରଦମାନେ ସାଧ କରି ମାଇପି ହେଲେ ଆଉ ଆମର କଅଣ ମରଦ ପାଲଟିବାକୁ ମନା ?

ମଧୁ—ନା, ଆମେ ତ ଖୋଜୁଛୁ ସେଇଟା । ସେତକ ହେଲେ ତ ଆମେ ଗୋଡ଼ଧରାରୁ ପାରପାଆନ୍ତୁ । ଆମ ଗୋଡ଼ କିଏ ଧରୁଥାଅନ୍ତା ଆଉ ଆମେ ବରାବର ରାତଦିନ ନାତେ-ଜାତେ ବଜାଉଥାନ୍ତୁ ।

ବିଶାଖା—ବଡ଼ ସୁଖ, ନାଇଁ ?

ମଧୁ—ପଗ୍ରୁରୁଛ ? ମୁଁ ମାନ କରି ବସିଥିବି, ଆଉ ତୁମେ ଯେତେବେଳେ କହିବ—
"ରାଧେ, ମୁଞ୍ଚ ମସ୍ତି ମାନ ଗୋ ସୁହାସି"—
ମୁଁ କହିବି—କାହ୍ନୁ । "ସେସବୁ କଥା ହେଲାଣି ଆଜ ବାସି" ।
—ବାଣ୍, ତା'ପରେ ତୁମେ ନେଉଡ଼ ରହିଥିବ । ପୁଣି କହିବ—"ଦେହି ପଦପଲ୍ଲବମୁଦାରମ୍ ।"

ମୁଁ ଥିବ, କହିବି—"ଘେନମଦାଘାତ ଉପହାରଂ।" ସେଇଥି କସିକରି ନାଚେ।

(ଗୋଇଠା ମାରି ପ୍ରସ୍ଥାନ)

ବିଶାଖା—ଦେଖୁଛ, ଦେଖୁଛ, ଏ ବ୍ରାହ୍ମଣକୁ। ସତରେ ସତରେ ମୋତେ ଗୋଟେ କେଡ଼େ ଜୋର୍‌ରେ ଗୋଇଠା ମାରି ପଳେଇଲା। ଆଚ୍ଛା ହଉ, ମୁଁ ଫେର୍ ଦେଖିବି ଯେ।

(ମଧୁ ନେପଥ୍ୟେ)—ଆସ ଆସ, ଦୁଃଖ କର ନାହିଁ। ସେଇଟା ତମ ଜାତର ଗୌରବର ନମୁନା।

(ବିଶାଖା ହସି-ହସି ଚାଲିଗଲେ)

---

## ଚତୁର୍ଥ ଦୃଶ୍ୟ

(ଶ୍ରୀମତୀ, ସଖୀଗଣ, ଲଳିତା ଇତ୍ୟାଦି)

ଲଳିତା— ଗୀତ

କୁଞ୍ଜବନେ ମିଛେ ଡାକେ କୁହୁକୁହୁ କୋଇଲି,
ସେ ଯେ ମୋର ଅଭିମାନେ ରହିଛି ଭୁଲି ।୦।
ନୟନେ ପଲକ ନାହିଁ,
(ଆଗୋ) ମଧୁ ନିଶି ଯାଏ ପାହି
ବଉଳର ଫୁଲ-ଶେଜ ପଡ଼ିଛି ଖାଲି ।୧।
ଲିଭିଛି ଆଖିର ଶିଖା,
ଲିଭିଛି ଚରଣ ରେଖା।
ଆଶାରେ ରଖିଛି ସେ ଯେ ପରାଣ ଖାଲି ।୨।

(ବୃନ୍ଦା ପ୍ରବେଶ)

ଶ୍ରୀମତୀ—ବିଦାୟ ଦେଇ ଆସିଲ ?

ବୃନ୍ଦା—ଦେଲି ସଖି। ଅହା, ଅଭାଗିନୀ କାନ୍ଦି-କାନ୍ଦି ଚାଲିଗଲା।

ଶ୍ରୀମତୀ—ଯାଉ ପଛେ, ଥରକୁ ଥର ମୋତେ ଶ୍ୟାମ-ସ୍ନେହପାଇଁ ଲୋଭ ଦେଖାଇବାରେ ତାର ଲାଭ କଅଣ ଥିଲା ?

ଲଳିତା—ବୁଝୁ ନାହିଁ ସଖି, ଯେ ଯାହାକୁ ସୁଖ ପାଏ, ସେ କି କେବେ ତା' ଦୁଃଖ ଦେଖି ସହିବ ? ତମ-ମନ ଦୁଃଖ ଦେଖି ତା' ଚିତ୍ତ ସହିଲା ନାହିଁ ବୋଲି ସିନା ସେ ତମକୁ ବୁଝାଉଥିଲା।

ଶ୍ରୀମତୀ—ନାଇଁ ସଖି, ତୁମେ ଜାଣନାହିଁ। ମୋର ସନ୍ଦେହ ହେଉଚି, ଏସବୁ ସେଇ ନଟକୁଟିଆର ଭିଆଣ।

(ବିଶାଖା ପ୍ରବେଶ)

ବିଶାଖା (ଶ୍ରୀମତୀଙ୍କ ପ୍ରତି)—କିଶୋରି। ଭଣ୍ଡାରଣୀଟିଏ ଅଳତା ଦବାକୁ ଆସିଛି। ବାହାରେ ଠିଆ-ହୋଇଛି, ଡାକିବି ?

ଲଳିତା—ପଚାରୁଛ କଅଣ ମ ? ସେ ତ ସବୁ କଥାକୁ ନାହିଁ କରୁଛନ୍ତି। ଅହା···ହା, କି ସୁନ୍ଦର ଦିଶୁଛି ଦେଖିଲି ପାଦ ? ଅଳତାର ଚିହ୍ନ ଅଛି ନା ଆଉ ? ଡାକ ଡାକ, ଦେଇଯାଉ।

ବିଶାଖା—ଆସ ଗୋ ବାରିକାଣୀ, ଭିତରକୁ ଆସ।

ଶ୍ରୀମତୀ—ବିଶାଖେ, ସେ ବିଦେଶିନୀର ସହଚରୀଟି ପୁଣି ଗଲା କୁଆଡ଼େ ?

(ଅଳତାବାଲୀ ପ୍ରବେଶ)

ବିଶାଖା—ତୁମେ ପରା ଆଉ କଣକୁ କୁଆଡ଼େ ଡାକିଦେଲ। ବୃନ୍ଦାଙ୍କ ସାଙ୍ଗରେ ସେ କୁଞ୍ଜ ଛାଡ଼ି ଚାଲିଗଲାବେଳକୁ ବାଟରେ ଆମେ ବି ଭେଟିଲୁଁ ତାଙ୍କୁ, ସେଦୁହେଁ ସାଙ୍ଗ ହୋଇ କୁଆଡ଼େ ଚାଲିଗଲେ।

ଶ୍ରୀମତୀ—କଅଣ ଆଉ କହୁଥିଲେ ?

ଲଳିତା—କଅଣ ଆଉ କହିଥିବେ ? ତମର କି ସୁନ୍ଦର ପ୍ରଶଂସା କରିଥିବେ। ହେଲା ଅବା ସେ ତମ ଆଗେ ଶ୍ୟାମଙ୍କ କଥା ଅବା ତାଙ୍କ ମିଳନ ଲାଗି କହିଲା। ଏଇଥିକି ତାକୁ ହଠାତ୍ ବିଦାୟ କରିଦେବା ଉଚିତ ହେଲା ? ସେ ପରା ତୁମ ଆଶ୍ରୟ ନେଇଥିଲା ?

ବୃନ୍ଦା—ସତେ ସଖି। ଭାବିପାରୁ ନାଇଁ ମୁଁ—ଏଡ଼େ କଠୋର ତୁମେ ହେଲ କିପରି ?

ଶ୍ରୀମତୀ—ମୁଁ ହୋଇ ନାହିଁ ସଖି, ଇଚ୍ଛା କରି ହୋଇ ନାହିଁ।

ବୃନ୍ଦା—ତେବେ କଅଣ କିଏ ତମକୁ କଠିନ ହେବାକୁ ରାଣ-ନିୟମ ଦେଇ ବାଧ୍ୟ କରିଛି ? ଭଲ କଥା ତ।

ଶ୍ରୀମତୀ — ଗୀତ

ନ ଥିଲା କଠିନ ରାଧା-ପରାଣ,
କରଅଛୁ ଶ୍ୟାମ-ପ୍ରୀତି ପାଷାଣ ।
ଭୁଲିଛୁ ଅଭାଗୀ ପ୍ରେମ-ସୋହାଗ,
ଅସିଛୁ କୁସୁମେ ତା'ର ବିରାଗ ଯେ,
ମୁରଲୀ-ତାନ,
ଶ୍ରବଣେ ସଖି, ମୁଁ ମୁଦିଛୁ କାନ ।୧।

ବାରକାଣୀ—ଜେମାଦେଈ ! ମୋ ଦୋଷ ଧରିବ ନାହିଁ ବୋଇଲେ ମୁଁ ପଦେ କହନ୍ତି ।

ଶ୍ରୀମତୀ—ଶ୍ୟାମ-ନାମ ଛଡ଼ା ଆଉ କିଛି କହିବାର ଥିଲେ କହ ।

ବାରକାଣୀ— ଜେମାଦେଈ, ମୁଁ ପରା କହୁଛି ମୋ ଦୋଷ ଧରିବ ନାହିଁ ବୋଲି···

ବୃନ୍ଦା—ହଉ, କହୁ ସେ ଧନ, ଥରେ ତା' କଥା ଶୁଣି ଅଗେ ।

ବାରକାଣୀ—ମୁଁ କେବେଁ ଜେମାଦେଈଙ୍କ ଚରଣରେ ଅଳତା ଦେଇ ନାହିଁ । ଆଜି ମାଉସୀ ମୋର କହିଲାରୁ ମୁଁ ଅସିଛି । ଦୂରଗାଁରେ ତ ଘର, ଅକାଳେ ସକାଳେ ଆସେଁ । ଶୁଣିଛି, କୃଷ୍ଣ ବିନା ରାଧା ନାହିଁ—ରାଧା ବିନା କୃଷ୍ଣ ନାହିଁ । ତାଟକା ହେଲି ଜେମାଦେଈଙ୍କର ଏସବୁ କଥା ଶୁଣି । ଆମେ ଗୋଟଘରର ଝିଅ ହେଲେବି ଅମ କାନ-ମନକୁ ଏସବୁ ସୁନ୍ଦର ଦଶୁ ନାହିଁ । ରାଜକୁମାରୀ ତୁମେ, କାହିଁ ଆଜି ବାସ-ଚନ୍ଦନ ବେଶ-ଭୂଷାରେ ଦନ ଯାଉଥାଆନ୍ତା, କଣ ନାଁ ଆଖିରୁ ଲୁହ ଝରାଉଛ । ଏସବୁ ଦେଖିଶୁଣି ଲୋକେ ହସିବେ ନାହିଁ ? ଜେମାଦେଈଙ୍କି ମୋର ଏତିକି ଜଣାଣ, ସେ ଏ ମାନ ଛାଡ଼ନ୍ତୁ ।

ଶ୍ରୀମତୀ—କି ଲୋ, ତୋର କାହିଁକି ସେ ଚିନ୍ତା ? ତୋତେ ସେକଥା କହିବାକୁ କିଏ ଡାକୁଛି ? ଯା, ତୁ ତୋ କାମରେ ଯା, ମୋର ଅଳତା ଦେବା ହେବ ନାହିଁ ଆଉ । (ଗୋଡ଼ ଟାଣିନେଲେ)

ବାରକାଣୀ—ଜେମାଦେଈ, କଥା ଅଟକ୍‌କଟ ହେବାରୁ ସିନା ମୁଁ ପଦେ କହିଦେଲି । ଅଗରୁ ତ ଦୋଷ କ୍ଷମା ମାଗିନେଇଛି । ରାଗୁଛ କାହିଁକି ? ଆଉ ଅଳ୍ପ ଅଛି, ସାରି ଦେଇ ମୁଁ ଯିବି ବାହାରି ।

ଶ୍ରୀମତୀ—(ପାଦ ଦେଖି କ୍ରୋଧ-ଦୃଷ୍ଟିରେ) ଦେଖିଲୁ ସଖି, ତା ଗରବ ! କି ଲୋ, ଯଉବନ-ମଦ କଅଣ ଭାଙ୍ଗି ନାହିଁ ତୋର ? କି ପାପ-କଥା ! ମୋ ପାଦରେ ଏ ନାଁ ଲେଖିବାକୁ ତୋତେ କିଏ କହିଲା ? ଚାହିଁବି ନାହିଁ ମୁଁ ତା ମୁହଁ । (ସଖିଙ୍କପ୍ରତି ଚାହିଁ) ବାହାର କରିଦିଅ ସଖି ତାକୁ କୁଞ୍ଜରୁ ମୋର ।

ସଖିମାନେ—ଦେଖି ଦେଖି, (କୃଷ୍ଣ-ନାମ ଲେଖାଥିବା ଦେଖି) କି ଲୋ, ଅଳତା ଦଉ-ଦଉ ପାଦରେ ଏ କଅଣ ଲେଖିବସିଲୁ ? ଭଲ ଜଣେ ତୁ !

ବାରକାଣୀ—ମୂରୁଖ ମୁଁ; ଜାଣୁ-ଜାଣୁ କିଛି ତ ଲେଖି ନାହିଁ । ମୁଁ କି ଜାଣେ ଅକ୍ଷର-ଫକ୍ଷର ? କାଠି ବୁଲାଉ-ବୁଲାଉ ଜଅଣପରି ହେଇଥିବ । କ୍ଷମା କର ସଖିମାନେ, ମୋ'ଲାଗି ଶ୍ରୀମତୀଙ୍କୁ ବୁଝାଇ କୁହ, ଗୋଟିଏ ପାଦରେ ଅଳତା ଦେଇଛି, ଆର ପାଦଟିରେ ଦେଇ ଚାଲିଯିବି ।

ଶ୍ରୀମତୀ—ଦରକାର ନାହିଁ ପରା କହିଲି, ଯା - ବେଗେ ଆଖି ଅଗରୁ ଯା···

ବାରକାଣୀ—ରାଗୁଛ ଯେବେ ଯାଉଛି ଜେମାଦେଈ, ବାକି ମୁଁ ତ ବୁଝିପାରିଲି ନାହିଁ. କାହିଁକି ମୋ ଉପରେ ଏଡ଼େ ରାଗ ?

ଶ୍ରୀମତୀ—ଦରକାର ନାହିଁ ତୋର ଜାଣିବା । ଅଜଣା ଭାତ ଖାଉଛୁ ? ଘୋପରି ! ନିକାଲିଦିଅ ଅଗେ ତାକୁ ସଖି !

(ସଖିମାନଙ୍କୁ ଚାହିଁ)

ବୃନ୍ଦା—ଅଳତା ଦେବାକୁ ଅସିଥିଲୁ, ଯେ କଅଣ ଲେଖିଲୁ ? କିଶୋରୀଙ୍କ ପାଦରେ କୃଷ୍ଣନାମ ? ଛି-ଛି, ପାପ-କଥାଗୁଡ଼ା ! ଯା ଯା···

ଲଳିତା— (ଗୀତ)

ବ୍ରହ୍ମା, ଇନ୍ଦ୍ର, ଚନ୍ଦ୍ର, ବରୁଣ, କୁବେର
ଲୋଡ଼ନ୍ତି ଯା' ପଦ-ଧୂଳି,
କିଶୋରୀ-ପଦରେ ତା' ନାମ ଲେଖିଲୁ,
ସାହସ ପଡ଼ୁଛି ବଳି ? ।୧।

ଚାରୁକାଣୀ—
ବଡ଼କେ ଶୁଣିଛୁ, ଲୋଟିଛୁ ଯା'ଶିର
ଚରଣେ ସହସ୍ର ବାର,
ଭ୍ରମରେ ଭୂଲକା ଭୁଲ ଯଦି ହେଲେ,
କିବା ଅପରାଧ ଧର ? ।୨।

ଲଳିତା—
ନିଯ୍ୟମ କରିଛୁ ସଜନୀ ସେ ନାମ
ପଡ଼ିବ ନାହିଁ ତ' କାନେ,
ମୋହନ-ନାମଟି ଦୂର କରିଛୁ ସେ
ନୟନେ କି'ବା ଧିଆନେ ।୩।

ଶ୍ରୀମତୀ—ଶରଧା ବଳିଲେ ସେ ନାମରେ ତୋର
ମନେ-ମନେ ଗାଇ ବୁଲ,
କପାର ବେପାରୀ ସେ ଭଲ କରିବ
ମୋତିର କାହିଁକି ମୂଲ ? ।୪।

ଚାରୁକାଣୀ—ହାତ ଛାଡ଼ କେବେ କିଶୋରୀମଣିର
ଅହିତ ମୁଁ ପାଞ୍ଚି ନାହିଁ,
ଦାଇବେ ସେ ନାମ, ଭୁଟିବାକୁ ମାନ
ପାଦେ ଲୋ ଲେଖିଦୋ'ଇ ।୫।
—ଘର କରିଥିଲେ ସଂସାରଭିତରେ
ପଥର ପଡ଼ିଲେ ସହ,
କି ଛାର କଥାରେ ଏଡ଼କି ଗୁମାନ,
କରୁଣାବତୀ ବୋଲାଇ ?।୬।

ଶ୍ରୀମତୀ—କୁଞ୍ଜ ତେଜି ଯାଅ ଲୋଡ଼ାନାହିଁ ମୋର
ତୋ ଉପଦେଶ-ବଚନ,
ଚାରୁକାଣୀ—କିଶୋରୀ । ବିରାଗ ସମ୍ବଳ କରି ଗୋ
ତେଜିଲୁ ଏ କୁଞ୍ଜବନ ।୭।

ଶ୍ରୀମତୀ—ଦେଖିଲୁ ସଖୀ ? ଭଣ୍ଡାରୁଣୀର କେଡ଼େ ଗରବ ? 'ଯହିଁକି ଡରେ, ତହିଁରେ ମରେ ।" ତୁମେମାନେ ସବୁ କଅଣ ମନେ କରୁଥିବ କେଜାଣି, ମୁଁ କହୁଛି ଏସବୁ ତାଙ୍କର ନଟକୁହ ।

ବିଶାଖା—ହେଇଥିବ ।

ଶ୍ରୀମତୀ—ହେଇଥିବ ନୁହେଁ—ନିଶ୍ଚେ । ନୋହିଲେ ଅଲତା ଦେବା ଲୋକ, ତା'ର ସେ ନାଆଁ ଲେଖିବାରେ କଅଣ ଦରକାର କହିଲ ? କପଟ କରି ସେ ନିଜେ ଆସିବାଟା କଅଣ ଅସମ୍ଭବ ?

ଲଳିତା—ଯଦିବା ତା ହେଲା, ତେବେ ତ ତୁମ ମାନ ତୁଟିଲା ନାହିଁ ସଖି । କଥା ବଳିପଡ଼ିଲେ କଅଣ ସୁନ୍ଦର ହେବ ?

ବୃନ୍ଦା—ଟିକକ କଥାରେ ହୁଡ଼ କେତେ ସହିଲେଣି ଶ୍ୟାମ, କହ ନା ? ସବୁ କଥାର ତ ସୀମା ଅଛି ଧନୀ ? କୌଣସି କଥାର ଅତଟା ମଧୁର ନୁହେଁ । ଅତ ଲେମ୍ବୁ ପରି ଚିପୁଡ଼ିଲେ ପିତା ।

ବିଶାଖା—ଦି'କୂଳର ଦୁଃଖ ଦେଖି ଆମେମାନେ ଆଉ ବେଶି ସହିପାରୁ ନାହୁଁ ସହି ।

ଶ୍ରୀମତୀ—ସହି, ତମେମାନେ ମଧ୍ୟ ଟିକିଏ ହେଲେ ମୋ ଦୁଃଖ ବୁଝିଲ ନାହିଁ ? ଭେବେକେ ମୋତେ ବାରବାର ବଳାଉଛ ? କେତେ ତମମାନଙ୍କୁ ବାରଣ କରିବି ଭଲ—ସେ କଥା ନ କହିବାକୁ ।

(ଗୀତ)

ମୁଁ ହାରିଲି ହେଜି ଏତକି ଗୋ,
କି ହାରୁଛି ଶ୍ୟାମ-ପ୍ରୀତକି ଗୋ ।୦।
ଗୁହାରି କରିବି, କାହା ଆଗେ କେତେ
ଲୁହାରେ ବନାଇ ଛାତକି ଗୋ ।୧।
ଦେହକୁ ସମର୍ପି ପ୍ରାଣଗୁଲେ,
ସ୍ନେହକୁ ସମ୍ପାଦିବା ସିନା ଭଲେ ।
ଏ ହଟହଟାରେ କେ, ମରିବ କରି
ସଙ୍ଗୋଳ ବିଷ୍ଣାସଘାତକି ଗୋ ।୨।
ନିଯ୍ୟମ କରି ନ ପାଳଇ ଯାହା,
କି ଅମଙ୍ଗଳିଆ କରଇ ତାହା ।
ଦାଅ ମୋତେ ଗାଳି ପଛେ, ମୁଁ ନ ପାରେ
ପୁରୁଷ, ପରୁଷ-ଜାତକି ଗୋ ।୩।

ବୃନ୍ଦା—ଭଲ, କିଏ ମନା କରିବ ? ତମ ମନକୁ ଯାହା ଲାଗୁଛି, କର । ପଛରେ ବାକି ଆମେ ଯେମିତ ହରବର ନ ହେଉଁ ।

(ନେପଥ୍ୟେ କାଚରାବେଶରେ ଶ୍ରୀକୃଷ୍ଣ)

ଶ୍ରୀକୃଷ୍ଣ— (ଗୀତ)

ଆସ କେ ନେବ, ଚତୁରୀ ବ୍ରଜନାଗରୀ ॥୦॥
କର-କଙ୍କଣ କାଚ ଆଣିଛି ମୁଁ ବାଛି
ଘେନ ଯାଅ ମୂଲ କରି,
ଯାହା ଅଙ୍ଗେ ଯାହା ଦିଶିବ ଗୋ ଶୋଭା
ମିଶାଇଦେବି ମୁଁ ଗୋରୀ ।୧।

ଶ୍ରୀମତୀ—ଆହା ! କି ମଧୁର କଣ୍ଠ ମ ? କିଏ ସଖୀ···

ବିଶାଖା—କାଚରା ହୋଇଥିବ । କଙ୍କଣ କାଚ ବିକି-ଆଣିଛି ବୋଲି ଡାକୁଛି ତ । ଡାକିବି ତାକୁ ? ତାଙ୍କୁ ରାଇ । ମନ ହେଲେ ରଖିବ, ନୋହିଲେ ନାହିଁ । କେଜାଣି ଭଲ କାଚ ଥିବ । (ଉଠିଗଲେ)

ଲଳିତା– କଅଣ ହବ ଡାକିଲେ ? କେଉଁଥିରେ ତାଙ୍କର ଶରଧା ଅଛି ଯେ ?

ବୃନ୍ଦା—ଦୁଷ୍ଟାଟିରେ କେବଳ ଶରଧା ଆମ କିଶୋରୀର; ତା' ଛଡ଼ା ଆଉ କେଉଁ ଭଲମନ୍ଦ ଅଛି ଯେ ?

( କାଚରାକୁ ଘେନି ପ୍ରବେଶ କଲେ ବିଶାଖା)

କାଚରା—ଡାକିଥିଲ ମତେ ?

ବୃନ୍ଦା—ହଁ, କାଚ ଆଣିଚୁ ତୁ ? ଘର କୋଉଠି ତୋର ?

କାଚରା—ଯମୁନା ଆରପାର ।

ବୃନ୍ଦା—ଭଲ ବାଛିକରି ମଣ୍ଡିକାଚ ଦେଇପାରିବୁ ?

ଲଳିତା—ଦେଖିଲୁ, ବାଛି । ଅମ ରାଇଙ୍କ କରକୁ କି କାଚ ମାନିବ ?

କାଚରା—ଆହା, ଚମ୍ପାଫୁଲପରି ରଙ୍ଗ ତାଙ୍କର । କରକୁ ନେଳୀ ନୋହିଲେ କଳା ଭଲ ମାନିବ । ଅଛି ମୋ ପାଖେ, ଦଉଛି ।

ରାଧା—କହିଲି ପରା ଲୋଡ଼ା ନାହିଁ ।

କାଚରା – ତେବେ ନେଳ କାଚ ଦିଏଁ ?

ରାଧା—ଲଳିତେ । କଳା ଆଉ ନେଳ ନାଆଁ ଛଡ଼ା କାହାର କଅଣ ଆଉ ଗତ ରହୁ ନାହିଁ ଏ ସଂସାରେ ? ମୋର ଦରକାର ନାହିଁ କାଚ-ଚିନ୍ତା । ମୋ କୁଞ୍ଜରେ କଳା ଆଉ ନେଳିକୁ ଆଦର କରିବାକୁ କେହି ନାହିଁ । ସେ ଯାଉ ବାହାର ।

ଲଳିତା—ଯା ତେବେ କାଚରା, ରଖିବେ ନାହିଁ ସହି ।

କାଚରା—ଡାକିଲ ମୋତେ, ବିଦାକରିଦେଉଚ ଖାଲି-ଖାଲି ? ମୋର ଦୋଷ କଅଣ ହେଲା ?

( ଗୀତ )

ଯହିଁକି ଯା ସାଜେ ଭଲ,
ତା ଚିନ୍ତା ମୁଁ ହେଲି କହି
କୁସୁମେ ବାସ କହିଲେ,
କି ଦୋଷ ଲେଖିଲ ତହିଁ ? ॥ ॥
ନୀଳମେଘେ ବିଦ୍ୟୁ-ରେଖା
ଭଲେ କି ଦିଅନ୍ତା ଦେଖା
ନୀଳରେ ମାଣିକ ବୋଲି
ହଳଦୀ କରଛି ବହି ।୧।
କଷିରେ ସୁନାର ବୋଲି
ଫୁଟଇ ଧବଳ ମଲ୍ଲି
ଗୋରା ଅଙ୍ଗ କନା ଖିନା
ତୋରି କି ଦିଶିବ କାହିଁ ? ॥୨॥

( ଗାଉ-ଗାଉ ପ୍ରସ୍ଥାନ )

ଶ୍ରୀମତୀ—ଦେଖିଲ ସଖି, ସେ କଅଣ ତାଙ୍କ ନଟକୂଟ ଛଡ଼ା ଆଉ କାଛି ?

ବୃନ୍ଦା—କାହିଁକି ? ସଂସାର-କଥା ତ ସେ କହିଲା ? ନଟକୂଟ କଅଣ ?

ଶ୍ରୀମତୀ—ସଂସାର-କଥା କଅଣ କେବଳ ତୁଚ୍ଛା କୃଷ୍ଣ-କଥା ? ସେଇ ନାଆଁ ? କାହିଁକି ରାମ-ନାମ କହୁ ନାହିଁ ?

ଲଳିତା—ଆହା ! ପଗ୍ଭରୁଛ ? ଲୋକେ କହନ୍ତି ରାମ ନାରାୟଣ ଅବତାର । ଦୟାଳୁ ପୁରୁଷ । ସେଇଥି-ପାଇଁକି ପରା ସୀତାଙ୍କପରି ସତୀଙ୍କର ଦହକ ଗଲ୍ଲ କାନ୍ଦ-କାନ୍ଦ । ନାଆଁ ଦେ ଘଣି ମଧ୍ୟ ତାଙ୍କ ଦୁଃଖ

ସରଳ ନାହିଁ । ଏଇଥିପାଇଁ ତାଙ୍କ ନାଆଁ
ଧରିବାକୁ ହମହମ ?
ଶ୍ରୀମତୀ—ନୋହିଲେ ଶିବ କହ ।
ଲଳିତା—ସେ ତ ଅସୁର ଭଲ ଦେବତା ! ଅସଲ
ଭିଙ୍ଗ ଭୂଙ୍ଗ କିଏ ? ଗୋଟିଏ ରମଣୀକୁ କଣ୍ଠାରେ
ବାନ୍ଧି ମୁଣ୍ଡରେ ଧରି ବୁଲୁଛନ୍ତି । ଆଉ ଗୋଟିଏ
ଟେଟେଣୀ ଘରକୋଣରେ କାନ୍ଦି ବୁଲୁବୁଲୁ ଦିନ
ସରୁନାହିଁ । ଶିବ ଏଣେ ଭିଙ୍ଗଭୋଳ । ସେଇ
ଶିବଙ୍କ ନାଆଁ ଧରିବାକୁ କହୁଛ ?
ବୃନ୍ଦା—ଜଗତରେ ଯାହା ଭଲ, ସଂସାର ଆମର ସଳ ।
କହିଲ ଦେଖି, କାହ୍ନୁଠାରୁ ବଳି ନାଆଁ ଅଛି ?
କାହା ନାଆଁ ଭଲ ମୋହନ ? କାହା ନାଆଁ
ଭଲ ନଟବର ? କାହା ନାଆଁ ଭଲ ରସରାଜ ?
ବିଶାଖା—ସେଇସବୁ ତ ଆମ ସଖୀଙ୍କି ବିଷ ?

( ଗୀତ )

ନବୀନା ! ମାନ ମୋର ସାନ କୁହା
କା ମୁଦ୍ଦେ ନା—ଆନ କଲେ ଘେନା
ମାନ ତେଜି ଶ୍ୟାମେ ଗୁହାଁ ॥ ॥
ଧାନେ ଦୋଷ ତାର—ଧ୍ୟାନେ ତୁ ନ ଧର
ମନେ କର ବିବେଚନା,
ନ ଘେନ ବଚନ—କି ଘେନିବେ ଧନ,
ଫୁରୁରୁ ତୁହାକୁ ତୁହା ॥୦॥
(କୁଞ୍ଜଦ୍ୱାରରେ ମାଲୁଣୀବେଶରେ ଶ୍ରୀକୃଷ୍ଣ ଦେଖା-
ଦେଲେ—ହାତରେ ଫୁଲହାର ।)
ବୃନ୍ଦା—ତୁ ପୁଣି କିଏ ଲୋ ଏତେବେଳେ ?
ମାଲୁଣୀ—ଅଇ ପଠାଇଦେଇଛି ମୋତେ ଶ୍ରୀମତୀଙ୍କ-
ଲାଗି ମାଳା ଦେଇ । ଏଇଟା ଶ୍ରୀମତୀଙ୍କ କୁଞ୍ଜ ନା ?
ବୃନ୍ଦା—ହଁ ଅ, ଭିତରକୁ ଅ । ଶ୍ରୀମତୀ ତ ଆଜି
ମାଳା ନାଗିହଜ ନାହାନ୍ତି । ହଁ, ଭଲ କଥା ମନେ
ପଡ଼ିଲା, ସେଥିରେ କଳାଫୁଲ କିଛି ନାହିଁ ତ ?
ମାଲୁଣୀ—ନାଇଁ, ସବୁ ସଜମଲ୍ଲୀ ।
ଲଳିତା—ଦେ ତେବେ, ଗଳାରେ ପିନ୍ଧାଇଦେଇ ଯା ।
(ମାଲୁଣୀ ଶ୍ରୀମତୀଙ୍କ ଗଳାରେ ମାଳା ଦେଲେ ।
ତହିଁସହିତ କେତକୀଦଳରେ ଗୋଟିଏ ଲେଖାଥିଲା,
ସେ ଖଣ୍ଡି ଶ୍ରୀମତୀଙ୍କଉପରେ ପଡ଼ିଗଲା । ଶ୍ରୀମତୀ
ଚମକି ଲେଖାଟି ପଢ଼ିବାକୁ ଆରମ୍ଭ କରିବାକୁ
ଗଲାବେଳେ ସଖୀମାନେ ମାଲୁଣୀକୁ କହିଲେ—)
ସଖୀମାନେ—ହଉ ତେବେ ଯା—ଆଉ କି ତୋର
କହିବୁ, ଏଣିକି କିଶୋରୀଙ୍କଲାଗି ମାଳରେ
ଯେମିତି କଳା କି ନେଳା ଫୁଲ ଗୋଟିଏ ନ ଥିବ ।
ବୁଝିଲୁ ? ଯା—
(ମାଲୁଣୀ ହସି-ହସି ଗୁଲିଗଲା)
ଶ୍ରୀମତୀ—(ପତ୍ର ପାଠ କରି ମାଲୁଣୀକୁ ଗୁହିଁଲାବେଳକୁ
ସେ ଗୁଲିଗଲାଣି) ସଖି, କାହିଁ ସେ ମାଲୁଣୀ ?
ଦେଖିଲ ଦେଖିଲ, କିଏ ସେ ?
ଲଳିତା—ଆହା, ଗୁଲି ତ ଗଲାଣି । ଦେଖେଁ—(ପ୍ରସ୍ଥାନ)
ବିଶାଖା—କାହିଁକି ସଖି ? କଅଣ ହେଲା କି ?
ଲଳିତା—(ପ୍ରବେଶି) ନାଇଁ ଧନ, ଗୁଲିଗଲାଣି କୁଆଡ଼େ
—ଡାକିବାକୁ ଯିବି ?
ଶ୍ରୀମତୀ—ଦରକାର ନାଇଁ । ଥାଉ ।
ବୃନ୍ଦା—କଅଣ ହେଲା ରାଇ ?
ଶ୍ରୀମତୀ—କିଛି ନାହିଁ, ଦେଖ, ମୁଁ ଜାଣେ, ଏସବୁ
ନଟକୂଟ ତାଙ୍କର । ମାନୁ ନ ଥିଲି ପରା ? ଏଇ
ଥର ଭଲକରି ଚନ୍ଦା ପଡ଼ିଗଲା ନା ?
ବିଶାଖା—କେମିତି ?
ବୃନ୍ଦା—କଅଣ ?
ଶ୍ରୀମତୀ—(ପତ୍ର ବଢ଼ାଇ) ଦେଖ, ବଳେ ବୁଝିବ
ପଢ଼ିଲେ ।
ଲଳିତା—(ପତ୍ରପାଠ)

( ଗୀତ )

ବୃନ୍ଦାବନବାସୀ ରେ କିଶୋରୀମଣି,
କରୁଣାବତୀ ବୋଲାଇ,
କିଣାଜନେ ମାନ, ନ ଗଲା ତ ଧନ,
ହେଲୁ କଠିନ କିପାଇଁ ? ॥୦॥
ଜନ୍ମଇ ସିନା ମୁଁ ଭାଗ୍ୟକୁ ମୋହର,
ଅଧରେ ନବୀନା ରତନ,

ଦବା କବା ନଣି, ରାଧା-ନାମ ଘୋଷି,
ଯାଉ ମୋହର ଜୀବନ ॥୧॥

ଶ୍ରୀମତୀ—ହେଲା ତ ମୋ କଥା ? ତୁମେମାନେ ଏଣିକି ସାବଧାନ ରହ । ପୁରୁଷ କି ସ୍ତ୍ରୀ କଳାବର୍ଣ୍ଣର କେହି ଯେମିତି ମୋ କୁଞ୍ଜସୀମା ନ ମାଡ଼ନ୍ତି । ଦୁଆରପାଖରେ ଚନ୍ଦ୍ରଲେଖା, ତୁଙ୍ଗବିଦ୍ୟା ଏମାନଙ୍କୁ ଡାକି ଜଗାଇଦିଅ ।

ବୃନ୍ଦା ଶ୍ରୀମତୀ, ଏ ଆଦେଶ ଦିଅ ନାହିଁ ସଖି । ଯଦି ଅବା ତୁମେ ତାଙ୍କର କୁଠ ବୋଲି କହୁଛ, ହେଲେ ମଧ୍ୟ ବହୁତ ସହିଲେଣି ସେ । ଟିକିକ ଦୋଷକୁ ଅନେକ ଶାସ୍ତି ଭୋଗିଲେଣି ବନ୍ଧୁ । ଏ ଦୁର୍ଜ୍ଜୟ ମାନ ତ୍ୟାଗ କର । କଥା ବଳିପଡ଼ୁଛି ଏଣିକି ।

ସଖୀମାନେ— ( ଗୀତ )

ବଳି ପଡ଼ିଲା ଯେ ମୋହନେ ତୋର ଗୁମାନ,
ତୁ ବିନା କିଶୋରୀ, ମନ କରି ଭାରି,
ବସିଛୁ ରେ ଜୀବଧନ ॥୦॥

ଚାଲିଗଲେ ବନ ଫେରି ନ ଆସିବ,
ବାରୁର ମନକୁ ମନ ।
ତୋ ମନ ନେବାକୁ କେତେପରି ହରି,
ସହି ନାହାନ୍ତି କଷଣ ? ॥୧॥
ତା'ଯୋଗୁଁ ତୁ ବିନା ବଡ଼ ବୋଲାଉରୁ,
ତା' ବିନା କି ଝାଣପଣ ?
ପଦ ଧରି ତୋର, ଅଭିମାନିନୀ ରେ !
କରୁଁ ଶେଷ ନିବେଦନ ॥ ॥

(ସମସ୍ତେ ଶ୍ରୀମତୀଙ୍କ ପାଦ ଧରି ଶେଷପଦ ଗାଇଲେ । )

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

(କୁଞ୍ଜବନ—ଶିଳାପରେ ଶ୍ରୀକୃଷ୍ଣ ଅଧା ଯୋଗୀ ବେଶ ହୋଇ ଉପବିଷ୍ଟ—ବେଶ କରୁଛନ୍ତି ବୃନ୍ଦା ।)

ବୃନ୍ଦା— ( ଗୀତ )

ନବୀନ କିଶୋର,
ଦୁଃଖେ ତୋର ଫାଟେ'ହିଅ ମୋର ॥୦॥

ଯେ ଅଙ୍ଗେ ଯଶୋଦା ଦିଏ କୁଙ୍କୁମ-କସ୍ତୁରୀ,
ଲେପିବି ମୁଁ ଅଭାଗିନୀ ବିଭୂତି କିପରି ? ॥୧॥
ରୋହିଣୀ ଦିଏଟି ଯହିଁ ଗୋରଚନାର ବିନ୍ଦୁ ।
ତିଳକ କି କରିଦେବି ତହିଁ ରସସିନ୍ଧୁ ? ॥୨॥
ଯେ କରେ ଶୋଭଇ ଶ୍ୟାମ ମୋହନ-ମୁରଲୀ ।
ସେ କରେ ତ୍ରିଶୂଳ ଦେବି କହ କିସ ବୋଲି ? ॥୩॥
ଯେ ଗଳେ ପିନ୍ଧାଏ ରାଈ ବନ-ଫୁଲହାର ।
ହତଭାଗୀ ଦେବି ମୁହିଁ, ରୁଦ୍ରାକ୍ଷର ଭାର ? ॥୪॥

ନ ହେଲା ଯା' ମରଣ ମୋହର—
ଛି, ଛି,
ମରେ ବାରବାର ବନ୍ଧୁ,
ନିରେଖି ଏ ନବ ଯୋଗୀବର ।

ଶ୍ରୀକୃଷ୍ଣ—ରସମୟୀ ବୃନ୍ଦେ—
ନ ହୁଅ କାତର ।
ତାଙ୍କେ ହେଲେ ଦୁଃଖ ନାହିଁ ମୋର—
ସାଜିବାକୁ ଯୋଗୀବେଶ,
ଭିକ୍ଷିବାକୁ ମୁଖେ ହର ହର ।
ଭୋଳା ଯୋଗୀ ମହେଶ୍ୱର
କି କରିନାହାନ୍ତି କହ
ପାର୍ବତୀଙ୍କଲାଗି ?
ସାଧିବାକୁ କିଶୋରୀର ପ୍ରେମ
କିବା କରି ଅଛି ମୁହିଁ
ଶିବ ତୁଳନାରେ ?
ଭିଖାରୀର ବେଶ ! (ବେଶ ଦେଖି)
ସେ ତ ଅଙ୍ଗର ଭୂଷଣ
ରାଧାଲାଗି ପ୍ରେମବଇରାଗୀ ମୁଁ ଯେ
ଅଙ୍ଗେ ଅନଙ୍ଗର ଶୋଭା ସାଜେ ।

( ଗୀତ )

ପୀରତିଲାଗି ମୁଁ ପ୍ରେମ-ବଇରାଗୀ
ପୀରତିରେ ବାନ୍ଧେ ଘର,
ପୀରତି-ଧରମ ପୀରତି-କରମ
ଅଟଇ ସବୁ ମୋହର ପର ॥୧॥

ଯାଇ ବରନରେ ପିନ୍ଧେ ପୀତବାସ
ମୁରଲୀରେ ସଦା ସାଧେ ।
ଯାଇ କେଶସର ଯମୁନା-ବାର୍ ଗୋ
ତୀରେ ଡାକେଁ ରାଧେ ରାଧେ ॥୨॥
ଯାଇ ଲାଗି ସିନା କୁସୁମ ଚନ୍ଦନ
ସୁବାସ କୁସୁମଲାଗି,
ଏଥୁ ବଳ ଭାଗ୍ୟ କି ଅଛି ମୋର ଗୋ
ତା’ ଲଗି ମୁଁ ହେଲେ ଯୋଗୀ ॥୩॥

(ଶୀଘ୍ର ମଧୁମଙ୍ଗଳ ପ୍ରବେଶ ହୋଇ ଶ୍ରୀକୃଷ୍ଣଙ୍କୁ କୁଣ୍ଢାଇ ଧରି)

ମଧୁ— କାହ୍ନୁ ! ଶୁଣିଛି ମୁଁ ସବୁ ଅନ୍ତରାଳେ ।
କେ ତୋତେ ଚହ୍ନିବ କାହ୍ନୁ,
ଏ ତନ ଭୁବନେ ?
ଶୁଣ ଶୁଣ ବ୍ରଜବାସିଗଣ,
ହର ଯା’ର ଚରଣ କିଙ୍କର,
ବ୍ରହ୍ମା ଯା’ର ନ ପାଏ ନିଗମ,
ଯୁଗ ଯୁଗ ଧରି ଯୋଗୀ ଯା’ର—
ଚରଣର ରେଣୁ।
ଯୋଗାସନେ କରି ବସେ ଆଶ,—
ସେଇ ପୀତବାସ,
ଆଜ—
ପ୍ରେମଲାଗି, ପ୍ରେମିକାରଲାଗି,
ଧରିଅଛି ଯୋଗୀବେଶ ।

( ଗୀତ )

ଖେଳ ରେ ନୟନେ ଅଜ ଶ୍ରାବଣଧାର ।
କେ ହି ଅଖି ଧରି ଅଜ ନୟନର ତାର ।
ଅହା, କିବା ସାଜିଛି ରେ,
ହରବେଶେ ହରି ମୋର, କିବା ସାଜିଛି ରେ ॥୦॥
ପୀରିତଲାଗି ଗୋବିନ୍ଦ ଯୋଗୀବେଶ ସାଧେ ।
ରାଧେ ରାଧେ ରାଧେ ବୋଲି,
କୃଷ୍ଣ କୃଷ୍ଣ କୃଷ୍ଣ ବୋଲି,ଆଜ ରାଧେ ରାଧେ ବୋଲି॥୧॥

---

## ଦ୍ୱିତୀୟ ଦୃଶ୍ୟ

(କୁଟୀର-ଦ୍ୱାର ଜଳଘଟ ହସ୍ତେ କୁଟୀଳା ଆସୁଥିଲେ, ତାଙ୍କୁ ପଛରୁ ଡାକିଲେ ବଶାଖା ।)

ବଶାଖା—କୁଟୀଳା !

( କୁଟୀଳା ନ ଶୁଣିଲାପରି ଚାଲିଗଲେ ।)

ବଶାଖା (ପୁଣି)—କୁଟୀଳା, କୁଟୀଳା ।

( କୁଟୀଳା ଫେରି ଛିଡ଼ାହେଲେ ।)

ବଶାଖା ପୁଣି ନେପଥ୍ୟେ—କୁଟୀଳା !

କୁଟୀଳା—ମଲା, ଦେଖ ମ ପୋଡ଼ାମୁହାଁର ଗରବ । ଯଉବନ-ମଦ ଲୋ, ଯଉବନ-ମଦ । ପଛରୁ ତ ଡାକିମଲା । ଅନୁକୂଳରେ ପାଣିଟାଏପାଇଁ ଯମୁନାକୁ ଯାଉଥିଲି ଯେ ବାଟରେ ଆଜ କି ଦଶା, କି ଅମଙ୍ଗଳ ଅଛି—ଜଣା ନାହିଁ । ତୋ ଡାକ ଶୁଣି ମରିବାକୁ ତ ଠିଆହେଲି । ଆଖିରୁ କଅଣ ଗୋବିନ୍ଦ ଘୁଞ୍ଚିଗଲେଣି କି ? ଫେର୍ କାହିଁକି ଡାକିମରୁଛୁ;—କୁଟୀଳା, କୁଟୀଳା ? କିଏ ସେ ଏଇଟା ଲୋ ।

(ଗୁହାଁଲେ ନିରେଖି)

ବଶାଖା—(ନେପଥ୍ୟେ) ମୁଁ ବଶାଖା । ଯାଉଛି, ପଦେ କଥା ହେଇ ଯାଉଛି ।

କୁଟୀଳା—ଓଃ, ତୁ । ହଉ, ଶୁଣିବାକୁ ଡର ନାହିଁ ମୋର । କିଏ ପାରିବ ଲୋ ମା’ ମୋର ତମ ଗଜଗମନା ଚାଲିକି ? ପନ୍ତ ଖାଇଖାଇ ଆସୁଥାଅ । (ଅଗ୍ରସର ହେଲେ) ବୋହୂସାଆନ୍ତାଣୀ ତ ଚେଗେଇଛନ୍ତି ଯେ ପଲଙ୍କରୁ ପା’ତଳେ ଲଗୁ ନାହିଁ । ପାଣିଅଣାଠୁଁ ହାଣ୍ଡିଧୁଆ—ସବୁ ମୋର କପାଳରେ । ପେଟକୁ ମୁଠେ ଖାଉଛି ଯେତେବେଳେ, ମୁଁ ତ ଏ ଘରର ପୋଇଲି । ତୋ ସବୁଙ୍କୁ ମୋର ଡର ନାହିଁ । ଅଲୋ ଅସୁଥାଅ ଲୋ ସୁଆଗୀ—ମୁଁ ଆଗରେ ଗଲି । (ଅଗ୍ରସର)

ନେପଥ୍ୟେ ପୁଣି ବଶାଖା ଡାକିଲେ—କୁଟୀଳା, ଅଉ ନିମିଷେ ରହ ମ—ହେଇ ଗଲି-ଗଲି ।

କୁଟୀଳା—ମଲ, ଫେର୍ ଡାକମଲ । ନାଇଁ, ଅଜ ତ ଯୋଗ ଭଙ୍ଗଉଛ । ବାଟରେ କଅଣ ନାଇଁ କଅଣ ଅମଙ୍ଗଳ ଥିବ । ଯାଏଁ, ଘରକୁ ଫେର ଅନକୂଳଟା ବଦଳେଇ ଦେଇ ଆସେଁ । ପୋଡ଼ାମୁହାଁ ଏ ସବୁଥିରେ ମୋର ବଇରି ହେଲେ, ସବୁବେଳେ ମୋତେ ଏଇମିତ ହଟହଟା କଲେ । ଛୁ, ତୁମକୁ ମରଣ ହଉ ।

(ଫେର ଚାଲିଗଲେ)

(ଯୋଗୀବେଶରେ ଶ୍ରୀକୃଷ୍ଣ ପ୍ରବେଶ)

ଶ୍ରୀକୃଷ୍ଣ— (ଗୀତ)

ହର ହର ଶମ୍ଭୁ ଭୋଳା ହର
ଜୟ ଶିବ ଶଙ୍କର ମହେଶ୍ୱର ।୦।
ନାଗ ନର କିନ୍ନର ଚରଣର କିଙ୍କର
ଗୌରୀ ଅରଧାଙ୍ଗ ଶୋହେ ଯୋଗୀବର ।

(କୁଟୀଳା ଗବାକ୍ଷରେ ଯୋଗୀଙ୍କୁ ଦେଖୁଥିଲା)

ଯୋଗୀ—ଜୟ ଶମ୍ଭୋ, ଜୟ ଶିବ, ହର ହର ଶମ୍ଭୋ ।

କୁଟୀଳା—(ଆତ୍ମଗତ) ଆହା । ମୋ ଧଇର୍ଯ୍ୟ ଏ ଯୋଗୀରୂପ ଦେଖି ଟଳିଯାଉଛି । (ପ୍ରକାଶ୍ୟେ) ଯୋଗୀବର । ଅଧୀନାର ପ୍ରଣାମ ଗ୍ରହଣ କରନ୍ତୁ ।

ଯୋଗୀ—ଭକ୍ତିମତୀ ହୁଅ ।

କୁଟୀଳା—ଯୋଗୀବର, ଦଣ୍ଡେ ରହ ତେବେ । ମୁଁ ଭିକ୍ଷା ଆଣିଦେଉଛି ।

(ପ୍ରସ୍ଥାନୋଦ୍ୟତ)

ଶ୍ରୀକୃଷ୍ଣ—ଶୁଣ ଦେବି !
ପଣ ମୋର କିନ୍ତୁ,
ସତୀ-କର ଛଡ଼ା
ଅନ୍ୟ ହସ୍ତୁଁ ଭିକ୍ଷାନେଲେ
ନ କରେଁ ଭୋଜନ ମୁହିଁ ।
ନେବ ନାହିଁ ଭିକ୍ଷା,—
ଅସତୀର ଦାନ ।

କୁଟୀଳା—(ବିରକ୍ତ ହୋଇ) ଆରେ, ହୁଉଛି ମୁଁ । ଯାଚିଲି ଅମୃତ ବିଷ ? ବାର ଦୁଆର ଭିକ୍ଷାମାଗି ପେଟ ପୋଷେ । ସେଥିରେ ପୁଣି ଗୁମର ଦେଖ । ଦୋଗୁଣ୍ଡୁଣୀ ପର ଦୁଶିଲି ମୁଁ ? ମାଗିଖିଆଙ୍କ କଥା ଶୁଣ ।

ଶ୍ରୀକୃଷ୍ଣ – ସେ ବିଷୟରେ ନାହିଁ ପ୍ରୟୋଜନ ମୋର ।
ଶୁଣିଛି ମୁଁ ଜନମୁଖୁଁ,
ବୃଷଭାନୁ ସୁତା,
ପରମାସତୀ ସେ.
ପତିବ୍ରତା ବରଜ ମଣ୍ଡଳେ ।
ଚିହ୍ନି ନାହିଁ, ଜାଣିନାହିଁ ତାଙ୍କୁ ।
ତୁମ୍ଭେ ଯେବେ ସେହି ରାଧା—
ଦିଅ ଭିକ୍ଷା ମୋତେ ।
ମହାନନ୍ଦେ,
କରିବି ଗ୍ରହଣ ।
ଗୁରୁ ଆଜ୍ଞା,
କିପରି ଲଙ୍ଘିବି ?

କୁଟୀଳା—ଯା, ଯା ତେବେ । ମୁଁ ରାଧା ନୁହେଁ । କଳଙ୍କୀ ବୋଲି ନାଗରୀ ଯାହା ନାଆଁରେ ବାଜୁଚି, ସେଇ ତମ ସତୀ ସାବିତ୍ରୀ ରାଧିକା କୋଉଠିଥିବେ ମୁଁ ଜାଣି ନାହିଁ, ଯା—(ରାଗରେ ଚାଲିଗଲେ)

ଶ୍ରୀକୃଷ୍ଣ—ହର ହର ଶମ୍ଭୋ, ଜୟ ହର ବଂ ବଂ ହର ହର ଶମ୍ଭୋ ।

(ବୃନ୍ଦା ପ୍ରବେଶ)

ବୃନ୍ଦା—କାହାସଙ୍ଗେ କଥା ହେଉଥିଲ କାହ୍ନୁ ? କୁଟୀଳା ଆସିଥିଲେ କି ?

ଶ୍ରୀକୃଷ୍ଣ—ହ ଗଲେଣି ସେ, କଅଣ ଦେଖିଲ ବୃନ୍ଦେ ? ରାଇ ଘରେ ଅଛନ୍ତି ତ ?

ବୃନ୍ଦା—ନ ଥାଇ ଅଉ କୁଆଡ଼େ ଯାଆନ୍ତେ ? ଅଛନ୍ତି ।

ଶ୍ରୀକୃଷ୍ଣ—କଅଣ ବୁଝିଲ ?

ବୃନ୍ଦା—ବୁଝିବାକୁ ସଜନାହିଁ କାହ୍ନୁ । ଯେମିତ ଦେଖିଲି ମାନ ତୁଟିନାହିଁ ତାଙ୍କର । କେତେ-ବେଳେ କଅଣ କହୁଛନ୍ତି । ଆସ ତୁମେ, ଚେଷ୍ଟାକରିବ ମୁଁ, ତେଣିକି ଦେଖାଯିବ ।

ଶ୍ରୀକୃଷ୍ଣ—ଏଥିରେ ଯଦି ମାନ ନ ତୁଟେ ?

ବୃନ୍ଦା— ଆଉ ଗୋଟିଏ ଉପାୟ ମୋ ମନକୁ ଆସୁଛି । ଦେଖ ! ଯଦି ତୁମେ ରାଜିହୁଅ, ତେବେ ବୋଧହୁଏ ମାନ ଭାଙ୍ଗିବାକୁ ବେଶି କଷ୍ଟ ହେବ ନାହିଁ ।

ଶ୍ରୀକୃଷ୍ଣ—ପ୍ରସ୍ତୁତ ମୁଁ ବୃନ୍ଦେ ।
ଜୀବନରେ କରିଅଛୁ ପଣ,
ରାଧିକାର ମାନ ଭଙ୍ଗ ଲାଗି ।

ବୃନ୍ଦା—ଛି, ଛି । ସେକଥା ମୁହଁରେ ଆଣନ୍ତୁ ? ଶୁଣ ମୁଁ ଯାହା କହୁଛି । ନିତନିତ ଏ ମାନ ଅଭିମାନ ଆଉ ସୁଖ ଲାଗୁନାହିଁ କହ୍ନାଇ । ତେଣୁ ମୁଁ ସ୍ଥିର କରିଛି,—ମଦନଙ୍କୁ ସାକ୍ଷୀକରି ତୁମେ ଗୋଟା ଲେଖିଦେବ ।

ଶ୍ରୀକୃଷ୍ଣ—କି ସର୍ତ୍ତରେ ?

ବୃନ୍ଦା—ରାଧାବିନା ଅନ୍ୟନାରୀ
କେବେ ନ ଦେଖିବ ।
ହସ କଉତୁକେ ମଧ୍ୟ
ନ କରିବ କେବେ ରସାଳାପ
ରାଧାବିନା—
ଯମୁନାର କୂଳେ,
ଅବା କଦମ୍ବର ମୂଳେ
ନ ଯିବ କଦାପି ତୁମ୍ଭେ ଏକା ।
ଫୁଙ୍କିବ ମୁରଲୀ ଯେବେ,
ଡାକିବ କେବଳ ରାଧା ରାଧା ।
କିଛୁ ନ କରିବ ତୁମ୍ଭେ
କିଶୋରୀର ଅନୁମତି ବିନା ।
ସ୍ୱୀକାର କି ଶ୍ୟାମ ?

ଶ୍ରୀକୃଷ୍ଣ—ଆଣ ଗୋ ଅଞ୍ଜନ ଭୂର୍ଜ୍ଜପତ୍ର ।
ଲେଖିବି ଏକ୍ଷଣି ।

ବୃନ୍ଦା—ଚାଲ ତେବେ ଶୀଘ୍ର,
ଏହି ତରୁତଳେ ମିଳିବ ସକଳ ।
ନୁହେ ଏହା ନିରାପଦ ସ୍ଥାନ ।
ଦେଖେ ଯେବେ ସଖୀ କେହି ମୋତେ,
ଦେଖେ ଯେବେ ତୁମ୍ଭଙ୍କୁ ମୋହନ,
ମାନ ଭଙ୍ଗ ହୁଏ ଥାଉ,
ରଖିବ କିଶୋରୀ,
ଅନ୍ତର କରିବ ମୋତେ ପାଶୁଁ ।
ଆସ, ଆସ ଶୀଘ୍ର ।

(ଚାଲିଗଲେ—ପଛେ ପଛେ ଗଲେ ଶ୍ରୀକୃଷ୍ଣ)

———

## ତୃତୀୟ ଦୃଶ୍ୟ

(ଶ୍ରୀମତୀଙ୍କ କକ୍ଷ—କବାଟ ମେଲା, ସଜ୍ଜିତ ପଲଙ୍କ—ବେଶ ପ୍ରତି ଲକ୍ଷ୍ୟନାହିଁ । ବାତାୟଣୀପଥ ଶ୍ରୀମତୀ ଆସି ଅଳନ୍ଦରେ ଯେପରି କାହାକୁ ଅପେକ୍ଷା କରୁଛନ୍ତି—ଆଖିରେ ଲୁହଧାରା)

(ଗୀତ)

ଶ୍ରୀମତୀ—ଆସ ବସନ୍ତ, ମଧୁ ବସନ୍ତ,
ନବ ମଳୟର ସାଥୀ ।
ନୟନେ ମୋର, ଭ୍ରମର ବିରହେ,
ଖେଳଇ ଶ୍ରାବଣ ରାତି ।୦।
ବିଜନ ମନ୍ଦିରେ ଏକା ବସି ସାରେଁ
ମାଳାର କୁସୁମ ଧୂଳି ପରେ ଝରେ
ନୟନର ତାରା ଝୁରେ ଅଗୋ ପ୍ରିୟ,
ଛାତି ଉଠେ ନିତି ତାତି ।୧।
ଆସ କୁସୁମ ଦେବତା, ପିକ କୁହୁବାଣୀ
ମାଧବୀ ବସିଥେ, ବାସ ହାସ ଘେନି
ଚନ୍ଦ୍ର-ଚକୋର, ପ୍ରିୟ ମନଚୋର
ମଧୁର ମିଳନେ ମାତି ।୨।

(ଲଳିତା ଓ ବିଶାଖା ପ୍ରବେଶ—ହାତରେ ପଙ୍ଖା ଓ ଜଳଘଟ ଇତ୍ୟାଦି ଅଛି)

ବିଶାଖା—ସ୍ୱେ କଅଣ ! ଦେହରେ ଟିକିଏ ହେଲେ ବଳନାହିଁ । ତାତି ପୂରି ରହୁଛି । ପଦ୍ମପତ୍ର ଗରମ ଲାଗୁଛି । ଆମେ ଦୁହେଁ ଟିକିଏ ଉଠି ଯାଇଥାଉ ତୁମେ ଆସି ଏଠି ହେଲଣି ?

ଲଳିତା—ସହି, ବିଶାଖେ ! ଅର୍ଜ୍ଜିଲା ଫଳ କିଏ ଭୋଗିବ କହ ? କେତେମତେ ସାଧି ନାହାନ୍ତି କହ ? କେତେ ହିତ କଥା ନ କହୁଛେଁ

ଅମେ ? ସମସ୍ତେ ଫାଟିଫୁଟି ଗଲୁଁ—କୋହଳ ।
ଦେଖ ଏବେ—ଦଶା ଦେଖ ।
ବିଶାଖା—ଚାଲ ସହି, ଘରକୁ ଚାଲ ।
ଶ୍ରୀମତୀ—ବନ୍ଧୁ ମୋତେ କଅଣ ଭୁଲିଗଲେ ସହି ।
ବୃନ୍ଦା ଅସି ନାହାନ୍ତି ? ଫେରି ନାହାନ୍ତି ?
ଲଳିତା—(ବୃନ୍ଦାଙ୍କୁ ଦେଖି) ଅସୁଛନ୍ତି ହେଇଟି ।
ଶ୍ରୀମତୀ—(ବୃନ୍ଦାଙ୍କ ନିକଟକୁ ଯାଇ) ସଖି । ଏକା
ଫେରିଲୁ ଯେ ?
ବୃନ୍ଦା—ଅଉ କଅଣ କରନ୍ତି ?
ଶ୍ରୀମତୀ—କଅଣ ହେଲା ?
ବୃନ୍ଦା—(ଛଳ ବିରକ୍ତିରେ) କହିବାକୁ ଟିକିଏ ସମୟ
ଦିଅ । ଉଃ, କେତେ ଦୂରରୁ ଅସିଛୁ—ଟିକିଏ
ବୁଝୁନାହଁ ? ବାଟରେ ବିପଦ ଅପଦ ଅବା
ଦେହ ଭଲ ମନ୍ଦ—କିଛି ନ ପଚାରି, ଅଗେ
ପଚାରିଲେ କଅଣ ନାଁ—ଏକା ଅସିଲୁ କାହିଁକି ?
ଉଃ, (ବସି ପଡ଼ିଲେ) ବସେଁ ଏଇଠି, ଅଉ ଚାଲି
ପାରୁନାହିଁ । (କିଛି କ୍ଷଣ ପରେ)
ବୃଥା, ବୃଥା ଅଶ୍ରୁ ।
ବୃଥା ଝୁରୁ କାହା ଲାଗି ?
ଅଉ ସେ ଅସିବେ ନାହିଁ,
ଶୁଣି ରାଧାନାମ—
ଫେରାନ୍ତି ବଦନ ।
ତେଜ ସଖି ଶ୍ୟାମ ଅଶା ।
ଏବେ ଶୂନ୍ୟ କୁଞ୍ଜେ ପଡ଼ିରହ,
ଶ୍ମଶାନ ସମାନ—ସେ ମାଧବ ବିନା ।
କହିଲେ ସେ—
ପଦତଳେ ପଡ଼ି ତବ,
ହୋଇଅଛି ମର୍ଯ୍ୟାଦାର ହାନି,
ପ୍ରତିଶୋଧ ନେଇପାରିଲେ ସେ···
(ବୃନ୍ଦାକଥା ଖଣ୍ଡି ରହିଗଲା)
ଶ୍ରୀମତୀ—(ଅଗ୍ରହରେ) ଅସିବେ ତ ?
ଅସିବେ ତ ତେବେ ? ସହି, ସହି,
ସତ ବୋଲି ନ ଅସେ ମନକୁ
କଥା ତୋର ।
ଆଶ୍ରିତ ବତ୍ସଳ ସେ କରୁଣାନିଧାନ
ଅତି ଦୟାମୟ,—
ତାଙ୍କ କୃପା ମୋହ ପ୍ରତି—
ସୀମାହୀନ ଅକାଶରୁ ବଳେ ।
କହ ସଖି,
କାହାନ୍ତି ମୋ ନୟନର ମଣି ?
ସହି,
ମାଗିଛୁ କି ଚରଣରେ କ୍ଷମା,
ମୋ ପକ୍ଷରୁ ତାଙ୍କୁ ?
କେବେ ନେବ ପ୍ରତିଶୋଧ ?
ଶ୍ରୀଚରଣ କିଙ୍କରୀ ମୁଁ ।
ବ୍ରଜରେ କହନ୍ତି ମୋତେ
ଅଦରିଣୀ, ଶ୍ୟାମ ସୋହାଗିନୀ ।
ମିଥ୍ୟା । ମିଥ୍ୟା କି ସେ କଥା ?
ମତିହୀନା ଏବେ ମୁହିଁ—
ବରଜ ଗୁଆଳୀ କାଙ୍ଗାଳୁଣୀ
ଶରଣି ମୋ ସେ ରଙ୍ଗାଚରଣ
କହିଚୁ କି ସବୁ ?
ବୃନ୍ଦା—ସବୁ କଥା କହିବାକୁ,
ନଥିଲା ମୋ ମନେ ।
ଅଉ,
ସତ୍ୟ କହିବାକୁ ଗଲେ—
ନଥିଲା ସମୟ ।
ଅଗ୍ନି ଶିଖା ସମ
ଦେଖି ତାଙ୍କ ରୁଦ୍ର ମୂର୍ତ୍ତି,
ଉପୁଜିଲା ଚିତ୍ତେ ମୋର ଡର ।
ନାହିଁ ସେ ଶ୍ୟାମର ମୋହନ ମୂରତି ଆଜି [illegible]
ଧୂଳିରେ ଧୂସର ଅଙ୍ଗ
ସଙ୍ଗେ ପୁଣି ଅଗ୍ନିବାଣ ସମ,
ସେ ମଧୁମଙ୍ଗଳ—
ଯାହାଇଛି, ଭର୍ତ୍ସନା କଲା,
ସହିଲି ମୁଁ ମଥାପୋତି ସବୁ ।

କି କରିବି ଉପାୟ ବିଧାନ ।
କେତେ କଥା, କେତେ ତର୍କ ପରେ,
ସ୍ଥିର ହେଲା,
ସ୍ୱହସ୍ତରେ ଯୋ ବ,
ତୁମେ ଗୋ ଶ୍ରୀମତୀ
ଲେଖିଦେବ ଗୋଟା,
ବିବେଚନା କରିବେ ସେ ତେବେ,
ଉଚିତ ହେବ କି ନାହିଁ କୁଞ୍ଜ ଅଭିସାର ।
ଶ୍ରୀମତୀ—(ଉତ୍କଣ୍ଠିତା) ଏଇ କଥା ?
ଏଇମାନ ?
ଗୋଟା ମାନ ଦେଲେ ଲେଖି
ଆସିବେ ମୋ ପୁରେ ସଖି—
ମୋ ନାଗରରାଜ ?—
ପରାଣ କହ୍ନାଇଁ ?
କହ ସଖି !
କି ଲେଖିବି କହ ?
କିବା ମର୍ମେ ଲେଖିବି ମୁଁ ?
ତାଙ୍କ ଇଚ୍ଛା ଯାହା ଦେବି ଲେଖି,
ଶତବାର କହ ।
ଅସାଧ୍ୟ ନାହିଁ ତ କିଛି ରାଧିକା ଜୀବନେ;
କୃଷ୍ଣ ପ୍ରେମ ଭିକାରିଣୀ
ଜାଣନ୍ତି ତ ଭଲକରି ନଟବର ମୋର ।
ବୃନ୍ଦା—ରାଜି ତ ?—
ଶୁଣ ତେବେ,
ଯାହା ସେ କହିଲେ ।
ନିତ ନିତ ଯିବେ ଶ୍ୟାମ
ଶତ ନାରୀ ଗୃହେ ।
ବଞ୍ଚିବେ ରଜନୀ
ଚନ୍ଦ୍ରାବଳୀ ତୁଲେ କୁଞ୍ଜେ ।
ଯଦି ବା ପ୍ରଭାତେ ନ ଆସନ୍ତି କାହ୍ନୁ
ତଥାପି କରିବୁ ନାହିଁ ଶ୍ୟାମେ ଅଭିମାନ;
ତଥାପି ଟେକିବୁ ଶ୍ୟାମେ ବିନା ଆପତ୍ତିରେ ।
ନ ଥିବ ମୁଖରେ କୋଚ,
ଦୁଃଖ ରେଖା ଲେଶ ।
ପାରୁ ଯଦି ,
ଲେଖ ଏହି ମର୍ମେ ।
ଯିବି ଘେନି ଲେଖା ।
ଆଣିବାକୁ କରିବି ଯତନ ।
ଶ୍ରୀମତୀ—ହେଉ ! ଏହି ମର୍ମେ ଦେବି ଲେଖି
ଚାଲ ଗୋ ଲଳିତେ ! ଚାଲ ବୃନ୍ଦେ!
ଚାଲ ଗୋ ବିଶାଖେ !
ଆଣ ତୁରି କେତକୀର ଦଳ ।
ଆଣ ଗୋ ଅଞ୍ଜନ ।
ଆଜନମ ଦାସୀ ବୋଲି ଗରବ ଯାହାର,
କିବା ଛାର କହ ଦେଖି
ଏହି ମର୍ମେ ଲେଖ ?
ଚାଲ ସଖି ! (ଉଠି ଭିତରକୁ ଗଲେ)
(ଯୋଗୀ ବେଶେ କୃଷ୍ଣ ପ୍ରବେଶ)
କୃଷ୍ଣ— (ଗୀତ)
ଜୟ, ଶମ୍ଭୁ ଶିବ ହର ଶଙ୍କର । ।
ଜୟ ଚନ୍ଦ୍ରମଉଳି, ବିଭୂତି ବିଭୂଷଣ
ମଧୁର ଛବି, ଗୌରୀ ସୁଖ ବର୍ଦ୍ଧନ,
ନିଗମ ଯୋଗୀଜନ ବରଦ ସୁନ୍ଦର ॥୧॥
କାମ ଗରହର ଅନ୍ଧକାରି
ମୁଖ ସୁଧାକର ମାନହାରି
କୁଟିଳ ଜଟା, ସୁରଧୁନୀ ବିରାଜିତ
ବାସ କୈଳାସ କନ୍ଦର ॥୨॥
( ଗୀତ ଶୁଣି ଶ୍ରୀମତୀ ଯାଉ ଯାଉ ଠିଆ ହେଲେ ,
ଶ୍ରୀମତୀ—(କାନଡେରି) ବହୁଦିନ,
ବହୁଦିନ ପରେ—
ଶୁଭେ,
ଶୁଭେ ସେହି ପରିଚିତ ସ୍ୱର
ଅହା ! କି ମଧୁର କଣ୍ଠ ଗୋ !
ଆକୁଳ କରଇ ପ୍ରାଣମନ ।
କିଏ ? କିଏ ଗାଏ ସଖି ?
ଦେଖିଲି ଦେଖିଲି,

(ଲଳିତା ବାହାରକୁ ଯାଇ ଦେଖି ଆସିଲେ)

ଲଳିତା—ନୂଆ ଯୋଗୀଟିଏ କିଏ,
ନାମ ଗାଇ ଗାଇ
ଭିକ୍ଷା ମାଗିବୁଲେ ଦାଣ୍ଡେ ।

ଶ୍ରୀମତୀ—ଯାଅ ସଖି ।
ଦିଅ ଭିକ୍ଷା
ଅତିଥି ବିମୁଖ ହେଲେ
ହେବ ମହାପାପ ।
(ଲଳିତା ଭିତରକୁ ଗଲେ)

ବିଶାଖା—ମନେ ପଡ଼େ ସଖି ?
କେତେ ବାର
ଅତିଥି ମୋହନେ
ଅଭିମାନେ ଫେରାଇଛ ଦ୍ୱାରୁ ।

ଶ୍ରୀମତୀ—ନ ଢାଳ ଅନଳେ ଘୃତ ।
କୃତ ଫଳ ଭୋଗୁଛି ଆପଣେ ।

ଲଳିତା—(ବାହାର ଦ୍ୱାରକୁ ଯାଇ ଯୋଗୀ ପ୍ରତି)
ଯୋଗୀବର, ଭିଖ ନିଅ ।

ଶ୍ରୀକୃଷ୍ଣ—ଭାଗ୍ୟବତୀ ଗୋପନାରୀ ।
କ୍ଷମା କର ମୋତେ ।
ଗୁରୁଙ୍କ ଆଦେଶ—
ସତୀକର ଦାନ ଭିନ୍ନ,
ନ ନିଏଁ ମୁଁ ଭିକ୍ଷା ।
ନ କରେ ଭୋଜନ ଆନ ଅନ୍ନ ।
ଆସିଥିଲି ବୃନ୍ଦାବନେ ।
ଶୁଣିଲି ମୁଁ ଲୋକମୁଖୁଁ,
ବୃନ୍ଦାବନ-ବନରାଣୀ
ସତୀ ଶିର ମଣି
କିଶୋରୀ ଶ୍ରୀମତୀ ।
ବାଞ୍ଛା ମୋର,—
ଦେଲେ ଶ୍ରୀକରରେ ତୋଳି
ଆନନ୍ଦରେ ଘେନିବି ମୁଁ ଭିକ୍ଷା ।
ଜଣାଅ ସତୀଙ୍କ
ବାଞ୍ଛା ମମ କରିବେ·ପୂରଣ,
ଅନୁଗ୍ରହ ଯେବେ ।

ଲଳିତା—(ହସି) ଅପେକ୍ଷାକର ହେ ଯୋଗୀବର ।
ଜଣାଏଁ ମୁଁ ସଖୀ ପାଶେ
ତବ ନିବେଦନ । (ଯାଉଥିଲେ ପୁଣି ଫେରି)

ଲଳିତା—ଧନ୍ୟ ।
ଅସମ୍ଭବ ଶୁଣେଁ ।
ଆଦେଶରେ ତବ
ଦେବାକୁ ମୁଁ ନେଲି ଭିକ୍ଷା ।
କହିଲେ ସେ ଯୋଗୀବର :—
ବୃନ୍ଦାବନେ ସତୀ ଏକା,
ବୃଷଭାନୁ କନ୍ୟା ।
ସତୀ କର ଭିନ୍ନ—
ଅନ୍ୟ କରେ ଭିକ୍ଷା ଦାନ
ନ ଘେନନ୍ତି କେବେ ।
ଉପବାସେ ଯାଉପଛେ ଦିନ ।

ଶ୍ରୀମତୀ—ଭ୍ରମଣ ଏ ପଣ,
ଗଲି ତେବେ ସଖି ।
ପୂଜିବି ଅତିଥି ।
ଦେବି ମୁଁ—
ସ୍ୱକରେ ଭିକ୍ଷା ।
ଦିଅ·ସଖି ।
( ଭିକ୍ଷାଘେନି ଯୋଗୀ ନିକଟକୁ ଗଲେ
ସଖୀମାନଙ୍କ ସଙ୍ଗେ)

ଶ୍ରୀମତୀ—ଯୋଗୀବର !
ପ୍ରଣତି ଶ୍ରୀପଦେ
ଘେନାକର ଭିକ୍ଷା ।

ଯୋଗୀ—ବୃନ୍ଦାବନେଶ୍ୱରୀ ।
ସତ୍ୟ ଯେବେ ଏତେ ଅନୁଗ୍ରହ—
ଏ ଭିଖାରୀ ପ୍ରତି
ସତ୍ୟକଲେ,
ମାଗିବି ମୁଁ ଭିକ୍ଷା ।

ଶ୍ରୀମତୀ—(ନୀରବରେ ଚାହିଁଲେ ସଖୀମାନଙ୍କ ମୁଖକୁ)·

ଲଳିତା—ରାଜକୁମାରୀ ।
ଅକାରଣ କାହିଁକି ସନ୍ଦେହ ?
ଭିଖାରୀ ସେ—
କିସ ବା ମାଗିବ ?
କି ଅଭାବ ତବ,
କହ ବୃନ୍ଦାବନେଶ୍ୱରୀ !
ଅତିଥିରେ କରିବ ବିମୁଖ ?

ଶ୍ରୀମତୀ—କଲ୍ ସତ୍ୟ । ଦେବି ଭିକ୍ଷା—
ବ୍ୟକତ କର ହେ,
ବାଞ୍ଛାତବ ।

ଯୋଗୀ—ସତୀ ଶିରୋମଣି !
ଏ ଭିକ୍ଷାରେ ନାହିଁ ପ୍ରୟୋଜନ ।
ଦୟାବତୀ !
କୃପା କଲ୍ ଯେବେ—
ଯେ ମାନ ବହୁଛ ଗୋବିନ୍ଦରେ,
ସେହି ମାନ ଧନ ଦାନେ
କର ଗୋ କୃତାର୍ଥ ।
ଭିଖାରୀର ପୂରାଅ ବାସନା ।

(ଶ୍ରୀମତୀ ଯୋଗୀର ଅଙ୍ଗକୁ ଅତୁଳ ନୟନରେ ହସି ଲହ ଅଖିରେ ଚାହିଁ ରହିଲେ । କୃଷ୍ଣ ଅଞ୍ଜଳି ପାତି-ଥିଲେ । ଅଜଣାରେ ଶ୍ରୀମତୀଙ୍କ ହାତ ଯୋଗୀଙ୍କ ହାତରେ ଲାଗିଗଲା)

---

—ପଟକ୍ଷେପ—

## ଦୁଇପଦ :—

୧୯୨୫ ସାଲଠାରୁ ମୋର ନାଟ୍ୟସଂଘ ଦ୍ୱାରା ରାସ (ରାଧାକୃଷ୍ଣ କେଳିଲୀଳା ବର୍ଣ୍ଣିତ ବିଷୟ) ଅଭିନୟ ପ୍ରଦର୍ଶନ କରି ଆସିଛି । 'ରାସ' ଗୀତନାଟ୍ୟ ବା ଲୀଳା ଯାତ୍ରା ନୁହେ । କାରଣ ଲୀଳା ଯାତ୍ରାର ରୀତି 'ରାସ'ରେ ଅନୁସୃତ ହୋଇନାହିଁ । ରାସ, ଗୀତ-ବହୁଳ ନାଟକ ।

'ମାନିନୀ' ଲେଖାରେ 'ରାସ' ଲେଖାର ଢଙ୍ଗ ଟିକିଏ ବଦଳି ଯାଇଛି । ତା'ର ପରବର୍ତ୍ତୀ ଲେଖା ଏଇ'ଲକ୍ଷ୍ମୀ' ନାଟକ । ଏଥିରେ ଗୀତ ସଂଖ୍ୟା, ସଂଳାପ ବା ବଚନିକା ତୁଳନାରେ ଊଣା । ନାଟକଟି ମୋର ସାକ୍ଷୀଗୋପାଳ 'ନାଟ୍ୟସଂଘ' ଦ୍ୱାରା ପରିବେଷିତ ହୁଏ ।

ସାକ୍ଷୀଗୋପାଳ ମନ୍ଦିରରେ ସେତେବେଳେ ଟ୍ରଷ୍ଟୀ ଥାଆନ୍ତି ସର୍ବସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ, ରାଧାନାଥ ରଥ, ବାସୁଦେବ ଓଝା, ବ୍ରଜସୁନ୍ଦର ଦାସ ଇତ୍ୟାଦି । ପ୍ରତିବର୍ଷ ଅଁଳା ନବମୀକୁ ମୋର ନାଟସଂଘ ସାକ୍ଷୀଗୋପାଳରେ ଅଭିନୟ ପ୍ରଦର୍ଶନ କରେ । ଏଇଟା ଥିଲି 'ଅବଶ୍ୟ' । ସଂଘ ଏଣୁ କିଛି ସାହାଯ୍ୟ ମଧ୍ୟ ପାଉଥିଲି ମନ୍ଦିର ପକ୍ଷରୁ ।

ଦିନେ ପ୍ରହରାଜେ ମୋତେ ସାକ୍ଷୀଗୋପାଳଙ୍କ ବାମପାର୍ଶ୍ୱରେ ରାଧାମୂର୍ତ୍ତି ପ୍ରତିଷ୍ଠା ସମ୍ବନ୍ଧେ ଲେଖିବାକୁ ପରାମର୍ଶ ଦେଲେ । ତାଙ୍କର ଏ ପରାମର୍ଶଟା,—ନିର୍ଦ୍ଦେଶ । କାରଣ ସେ ମୋର ପିତୃବନ୍ଧୁ- ମଉସା । ତା' ବାହାରେ ସଂଘର ଏକାନ୍ତ ଶୁଭାନୁଧ୍ୟାୟୀ । ଶ୍ରୀ କେଶବ ମହାପାତ୍ର ବୋଲି ସାକ୍ଷୀଗୋପାଳ ମନ୍ଦିରର ଜଣେ ସେବକ ଥିଲେ । ସେ ବେଲେଶ୍ୱର ମହାପାତ୍ରଙ୍କ ବଂଶଧର । ବେଲେଶ୍ୱର 'ଲକ୍ଷ୍ମୀ'ଙ୍କର ଭାଗ୍ୟଧର ପିତା । କେଶବ ମହାପାତ୍ରଙ୍କ ସହିତ ମୋର ବନ୍ଧୁତା ଥାଏ । କେତେକ ଇତିକଥା ବା ଲୋକକଥା ତାଙ୍କଠାରୁ ମୁଁ ସଂଗ୍ରହ କରି ସେଇଠି ଥାଇ ଲକ୍ଷ୍ମୀନାଟକ ଲେଖା ଆରମ୍ଭ କଲି । ୧୯୩୫ ସାଲର କାର୍ତ୍ତିକମାସ ଅଁଳା ନବମୀଦିନ ସାକ୍ଷୀଗୋପାଳଠାରେ ପ୍ରଥମ ଅଭିନୟ ପ୍ରଦର୍ଶିତ ହେଲା । ସେ ଶୁଭସନ୍ଧ୍ୟାର ଅତିଥି ଥିଲେ ମୋର ବନ୍ଧୁ ସ୍ୱର୍ଗତ ପଣ୍ଡିତ ଲିଙ୍ଗରାଜ ମିଶ୍ର ।

ତହିଁପରେ କଟକରେ ପ୍ରହରାଜଙ୍କ ହତା ଭିତରେ ଏକ ଅସ୍ଥାୟୀ ରଙ୍ଗ ମଞ୍ଚରେ ଅଭିନୀତ ହେଲା 'ଲକ୍ଷ୍ମୀ' ନାଟକ । ଏ ଦିନ ସ୍ୱର୍ଗତ ପ୍ରହରାଜ ଥିଲେ ପ୍ରଧାନ ଆଶୀର୍ବାଦକ । ଶ୍ରୀମାନ୍ ଦୀନବନ୍ଧୁ ଦାସ (ଟୀମା) ଲକ୍ଷ୍ମୀ ଭୂମିକା ଏବଂ ଶ୍ରୀମାନ୍ ଦୁଃଖିରଚନ୍ଦ୍ର ସିଂହ (ଦୁଲ୍ଲୁ) ଗୋପୀନାଥ ଭୂମିକାଂଶ ଗ୍ରହଣ କରିଥିଲେ । ଟୀମା ଏଥି ପୂର୍ବରୁ ରାସ ଅଭିନୟ ମାନଙ୍କରେ ମଧୁମଙ୍ଗଳ ଅଂଶ ଗ୍ରହଣ କରି ଦର୍ଶକମାନଙ୍କୁ ଯେପରି

ହାସ୍ୟରସ ପରଶି ମୁଗ୍ଧ କରିଥିଲେ, ଲକ୍ଷ୍ମୀ ଭୂମିକାରେ ମଧ୍ୟ ପ୍ରଥମ ଥର ପାଇଁ ଅବତୀର୍ଣ୍ଣ ହୋଇ ଦର୍ଶକମାନଙ୍କ ଆଖିରୁ ସେହିପରି ଲୁହଝରାଇ ଦେଇଥିଲେ। ରାସରେ ଲଳିତା ଭୂମିକାରେ ଅଂଶ ନେଉଥିଲେ ଦୁଲୁ। ଏଥର ସେ ଗୋପୀନାଥ ଭୂମିକାଂଶରେ ଚମତ୍କାର ଅଭିନୟ ପ୍ରଦର୍ଶନ କରି ବିଶେଷ ପ୍ରଶଂସା ଅର୍ଜନ କରିଥିଲେ।

ସ୍ୱର୍ଗତ ଶଶୀଭୂଷଣ ରାୟ ସେହି ପ୍ରଥମ ରାତ୍ରରେ ଏ ଉଭୟଙ୍କୁ ବଧାଇ ଦେଇ ସମୁତ୍ସାହିତ କରିଥିଲେ।

ରାସ ଲେଖିବା ରୀତିରୁ ଲକ୍ଷ୍ମୀ ନାଟକ ଲେଖା ଠିକଏ ଅଲଗା। ଦେଖିଲି ଦର୍ଶକବର୍ଗ ଏ ନାଟକର ଲେଖା ଓ ଅଭିନୟକୁ ବଡ଼ ପସନ୍ଦ କଲେ। କଟକରେ ତଥା ଓଡ଼ିଶା ଓ ଗଞ୍ଜାମର ବହୁ ସ୍ଥଳରେ 'ଲକ୍ଷ୍ମୀ' ରାତି ରାତି ଧରି ପ୍ରଶଂସାର ସହିତ ଅଭିନୀତ ହେଲା।

'ଲକ୍ଷ୍ମୀ' ନାଟକ ପରେ ସମାଜ ଶିବ ମଞ୍ଚରେ ପରଶିବାକୁ ମନକଲି, ଭାରି ଡର ଡର ହୋଇ। ଶୁଣିଛି, ଲୋକେ କହନ୍ତି ଭକ୍ତି ଓ ନିଷ୍ଠାରଖି କାମକଲେ ଜଗନ୍ନାଥ ସହାୟ ହୁଅନ୍ତି। କଥାଟା ଅକ୍ଷରେ ଅକ୍ଷରେ ସତ।

—ବିନୀତ—

**ନାଟ୍ୟକାର**

## ପାତ୍ର-ପରିଚୟ

ପୁରୁଷ—

ଶ୍ରୀକୃଷ୍ଣ—

ଗୋପୀନାଥ—ସତ୍ୟବାଦୀର ପ୍ରତିଷ୍ଠିତ ଦେବତା

ରାଜୁସାହେବ—ସତ୍ୟବାଦୀର ରାଜା

ବେଲେଶ୍ୱର ମହାପାତ୍ର—ପ୍ରଧାନ ପୂଜାପଣ୍ଡା

ରାମ— ମୂର୍ତ୍ତିଗଢ଼ିବା କାରିଗର

ପଢ଼ିଆରି, ପାତ୍ରାଳକ ( ପୁଷ୍ପାଳକ ) ଓ ପୂଜକ ଇତ୍ୟାଦି ।

ସ୍ତ୍ରୀ—

ଶ୍ରୀରାଧା —

ଲକ୍ଷ୍ମୀ—ବେଲେଶ୍ୱରଙ୍କ କନ୍ୟା

ନିଯୁତ, ମାୟାକନ୍ୟାଗଣ, ଓ

···କେତେକ ଗ୍ରାମ୍ୟରମଣୀ···ଇତ୍ୟାଦି

# ଅଙ୍କ ସୂଚନା

## ପ୍ରଥମ ଅଙ୍କ

୧ମ ଦୃଶ୍ୟ—ସଖିଗଣ, ଶ୍ରୀକୃଷ୍ଣ, ଶ୍ରୀରାଧା
୨ୟ ଦୃଶ୍ୟ—ଲକ୍ଷ୍ମୀ, ନାୟୃତ
୩ୟ ଦୃଶ୍ୟ—ଜମି ପସୁପାଳକ, ମଧୁ
୪ର୍ଥ ଦୃଶ୍ୟ—ରାଏ ସାହେବ, ଲୋକଗଣ, ପସୁପାଳକ, ପଡ଼ିଅସି, ବେଲେଶ୍ବର, ନାୟୃତ
୫ମ ଦୃଶ୍ୟ—ନାୟୃତ, ଲକ୍ଷ୍ମୀ

## ଦ୍ୱିତୀୟ ଅଙ୍କ

୧ମ ଦୃଶ୍ୟ—ଗୋପୀନାଥ, ଲକ୍ଷ୍ମୀ
୨ୟ ଦୃଶ୍ୟ—ନାୟୃତ
୩ୟ ଦୃଶ୍ୟ—ପୂଜକ, ଶ୍ୟାମ, ମଧୁ, ୩ୟ ବାଳକ, ୪ର୍ଥ ବାଳକ ।
୪ର୍ଥ ଦୃଶ୍ୟ—ସୁଶୀଳା, ଚଞ୍ଚଳା, ଲକ୍ଷ୍ମୀ, ପୂଜକ
୫ମ ଦୃଶ୍ୟ—ନାୟୃତ, ୧ମ ସ୍ତ୍ରୀ, ୨ୟ ସ୍ତ୍ରୀ, କାରିଗର (ରାମ)
୬ଷ୍ଠ ଦୃଶ୍ୟ—ଗୋପୀନାଥ, ଲକ୍ଷ୍ମୀ

## ତୃତୀୟ ଅଙ୍କ

୧ମ ଦୃଶ୍ୟ—ଲକ୍ଷ୍ମୀ, ପଡ଼ିଅସି, ରାଏ ସାହେବ, ପଶୁପାଳକ, ଗୋପୀନାଥ,
୨ୟ ଦୃଶ୍ୟ—ନାୟୃତ, ମାୟାକନ୍ୟାଗଣ,
୩ୟ ଦୃଶ୍ୟ—ଗୋପୀନାଥ, ପୂଜକ, ବେଲେଶ୍ବର
୪ର୍ଥ ଦୃଶ୍ୟ—ଗ୍ରାମବାସିଗଣ, ପୂଜକ, ବେଲେଶ୍ବର

## ଚତୁର୍ଥ ଅଙ୍କ

୧ମ ଦୃଶ୍ୟ—ରାମ କାରିଗର, ରାଏ ସାହେବ, ପୂଜକ
୨ୟ ଦୃଶ୍ୟ—ନାୟୃତ
୩ୟ ଦୃଶ୍ୟ—ଲକ୍ଷ୍ମୀର ଜନନୀ, ଅନ୍ୟ ସ୍ତ୍ରୀ, ଲକ୍ଷ୍ମୀ, ଗୋପୀନାଥ, ୧ମ ସ୍ତ୍ରୀ, ୨ୟା ସ୍ତ୍ରୀ, ୩ୟା ସ୍ତ୍ରୀ

## ସୂଚନା

(ବୃନ୍ଦାବନର ନିଭୃତ ନିକୁଞ୍ଜ । କୁଞ୍ଜଦୋଳାରେ ଶ୍ରୀରାଧା ଶ୍ରୀକୃଷ୍ଣ । ସଖିଗଣ ନୃତ୍ୟରତା ।)

ସଖିଗଣ— (ଗୀତ)

ଅଜ ଭ ରେ ବୃନ୍ଦାବନେ ବାଜେ ଶ୍ୟାମବାଁଶରୀ
ରାତ ଅଧେ ଏଇ ନିକୁଞ୍ଜେ ଅସେ ଶ୍ରୀଷ କିଶୋରୀ ।
ବେଣୁତାଳେ ଜମୁନା ଗୋ ଉଜାଣି ବହେ
ଗୋଠେ ଧେନୁ-ବତ୍ସା ଥକାନୟନେ ରହେ,
କେ କହେ, ସେ ନାହିଁ ଅଜ
ବୁକେ କାହ୍ନୁ ରହିଛି ସାଜ
ସେ କି ରେ ସହିପାରିବ ରହି ବୃନ୍ଦାବନ ପାଶୋରି ।୧।

———

ଶ୍ରୀକୃଷ୍ଣ—ହେର ସୁବଦନୀ
ପ୍ରଭାତଇ ଯାମିନୀ ଏଥର ।
ବୃନ୍ଦାବନ ଲତାକୁଞ୍ଜ କିର ବଧୂନତ,
ଓଠିଲଣି ପ୍ରଭାତ ଉଗରେ—
କକ୍କୁଳ ପାତଅ ।
ମନ୍ଦଗନ୍ଧବହ,—
ଗୈର ମଳୟ
ହେଲଣି ଉରଭର ।
ଚୁମ୍ବିବା ଅଗରୁ ଉଷା
କୁସୁମର ମୁଖ,
ଲୁଟିନେବ ସଜ ବାସରାଜ ।
ଦିଅ ଗୋ ମେଲଣି ଧନ ।
ଯିବ ବହୁ ଦୂରେ—
ବହୁ ଦୂର ସତ୍ୟବାଦୀ ।
ନ ଆହୁଣୁ କିଶି
ନ ବାଜୁଣୁ ପ୍ରଭାତ ଅରତବାଦ୍ୟ
ପ୍ରବେଶିବ ମନ୍ଦରମଧ୍ୟରେ ।
ଦିଅ ଗୋ ବିଦାୟ ଗୃହଶୀରେ ।

ଶ୍ରୀରାଧା—ବିଦାୟ ?
ନିତ ତ ଦେଉଛୁ ।
ନ ଦେଉଛୁ କେବେ ?
ନ ଦେଉଛୁ ଅବା କେବେ ?
କିନ୍ତୁ ବଡ଼ ଦୁଃଖ ମନେ,
ନିତ ଏ ମିଳନ ଭୁଲେ,
ନିତ ଏ ବିଦାୟ
ସହି ନ ପାରଇ ଅଉ,
ନାହିଁ କି ଉପାୟ କିଛି ?
ଯାହା ହେଲେ, ପ୍ରିୟ !
"ବିଦାୟ" ଅକ୍ଷର ତିନି
ହୋଇଯାନ୍ତା ଲୋପ ?
ବୁଝିଛ କି ହେ ମାଧବ !
ଏହି ତିନୋଟି ଅକ୍ଷରେ ଗଢ଼ା
ଶବଦ ଗୋଟିକ
କି ଯାତନା ଦିଏ ପ୍ରାଣେ ?
ନିତ ନିତ କନ୍ଦାଇ ଏ ଅବଳା-ପରାଣ,
କି ସୁଖ ଉପୁଜେ ବେଣୁଧର ?
ଦ୍ୱାପରରୁ ଆଜଯାଏ
ନ ଗଲା ଏ ଅଭ୍ୟାସ ତୁମ୍ଭର ।
ବେଢ଼େ ଭଲ ପାଅ ଶ୍ୟାମ ।
ଦେଖିବାକୁ ଅଶ୍ରୁମୁଖୀ ନାରୀ ?

ଶ୍ରୀକୃଷ୍ଣ—ପାଏଁ, ପାଏଁ ସତେ ।
ତୁମେ କି ବୁଝିବ ସଖି ?
ତୁମେ କି ପାରିବ ଦେଖି ?
ଶ୍ୟାମର ନୟନେ
କି ସୁନ୍ଦର ଦିଶେ—
ସେଇ ଗଜମୋତି ବିନ୍ଦୁ—
ଝରେ ଯେବେ ବେନିଗଣ୍ଡ ସାଜି ?
ଦେଖି କି ପାରୁଛ ଧନ ।
କି ମୋହନୀ ମୂର୍ତ୍ତି ତେବେ ଧର ?
ଦେଖନ୍ତ କି ଶ୍ୟାମର ନୟନେ ଥରେ,
ବୁଝିବାକୁ — ଜାଣିବାକୁ ନ ରହନ୍ତା ବାକି ।
ଜାଣ କି ଗୋ ସୁବଦନୀ !
ସେହି ଅଶ୍ରୁମୁଖୀ ନାରୀରେ ଶ୍ରୀମୁଖୀ
କେଡ଼େ ମନଲୋଭା !





ସେଇ ଗୃହ—ସେଇ ସ୍ମୃତି
ସେଇ ପ୍ରତିବିମ୍ବ ସ୍ମରି
ଦୀର୍ଘ ଦିବସଟି
(ନିଃଶ୍ୱାସ) କଟାଏ ମୁଁ ଉତ୍ତପ୍ତ ବିରହେ ।
ସେହି ବିନ୍ଦୁ ଜଳେ—
ସନ୍ତରି ମୁଁ ଆସେ ବାହି
ଏହି ଦୂର ପଥ ।
ନ ମାନି, ନ ଶୁଣି,
ନ ଗଣି ଝଡ଼ ବରଷା, ଘନ ଘୋର ରାତ ।
ସତେ ସଖି ! ସତେ,
ସୁଖ ପାଇଁ —
ବଡ଼ସୁଖ ପାଇଁ ଅଶ୍ରୁମୁଖୀ ନାରୀ ।
ଦେଖିଲେ ସେ ଛବି,
ମନମୋର
ଅମୃତର କଲ୍ଲୋଳନୀସର
ଆନନ୍ଦେ ଆପଣା ମନେ
ଅପଣେ ଉଜାଣି ବହେ ।
ବୁଝିଛ କି ଧନ ? (ମୁଖ ଟେକି ଧରିଲେ ।)
ଶ୍ରୀରାଧା—(ଶ୍ରୀକୃଷ୍ଣଙ୍କ ହାତ ଅଢେ଼ଇଦେଇ) ନାହିଁ,
ଇଚ୍ଛା ନାହିଁ ।
ଇଚ୍ଛାନାହିଁ ବୁଝିବାକୁ ମଧ୍ୟ ।
କିନ୍ତୁ ଶ୍ୟାମ !
ମନେ ଥାଏ ଯଥା
ଅଭିମାନ ଭଲ ଜଣା ମୋତେ ।
ବାନ୍ଧ ଜାଣେ ମୁହିଁ,
ବନ୍ଧାଇ ଜାଣେ ମୁଁ ସେହିପରି ।
ସୁଖ ଲାଗେ ମୋତେ ମଧ୍ୟ
ଦେଖିବାକୁ ସେ ମଳିନ ମୁଖ ।
ଶୁଣିବାକୁ ସେ ଅତୁର
ମୁରଲୀର ସ୍ୱନ ।
ସେହି ବିରହ-କାତର କଣ୍ଠେ,—
ରାଧା—ରାଧା—ରାଧା !
କିନ୍ତୁ ବାଧେ ମୋତେ

ଏହି ଦୀର୍ଘ ପଥ—
ନିତ ତବ ଆଗମନ ଶ୍ରମ ।—
ନିତ ଫଳେ ଦଣ୍ଡକ ମିଳନ ।
ଏ ରଜନୀ ଦୀର୍ଘ ନୁହେ ଦିବାସମ ।
ବରଂ ଶତାଂଶରୁ, ସହସ୍ରା ଅଂଶରୁ ଅଂଶେ,
ତେଣୁ ହେ ମୋହନ -
ପ୍ରଶ୍ନ ମୋର—
ନାହିଁ କି ଉପାୟ କିଛି ?
ବହିଲେ ଯା—
ଯହିଁ ଶ୍ୟାମ ତହିଁ ରାଧା
ଅଚ୍ଛିନ୍ନ ମିଳନେ ଯା'ନ୍ତା ଦିନ ?
ଶ୍ରୀକୃଷ୍ଣ—କୃତାର୍ଥ ମୁଁ ହେଲି ଅନୁଗ୍ରହେ ।
କିନ୍ତୁ ପ୍ରେମମୟୀ,
ଏ ମିଳନ—ଏ ବିଦାୟ
ତୁମ୍ଭର ଆୟତ୍ତ ସିନା ?
ତୁମ୍ଭେ ଏକା ହ୍ଲାଦିନୀ ଶକତି ।
ଲୀଳା ବିନୋଦିନୀ,
କି ନପାର କରି ?
କିଣା ମୁହିଁ—ତୁମ୍ଭର ଆୟତ୍ତ ସିନା ?
ଅଣାୟତ୍ତ ସଦା ।
ମୋତେ କି ଉପାୟ ଜଣା ?
କର ଯାହା ଆସଇ ମନକୁ ।
କୃତାର୍ଥ ମୁଁ ହେବି ସଖି,
ଲଭି ସେ ସମ୍ପଦ ।
ଫେରିଲେ ଫିରିବ ସେ ଦ୍ୱାପରେ ।
ଗୃହପାଶେ ଘେରିଥିବେ
ଲଳିତା ବିଶାଖା ବୃନ୍ଦା ସହଚରୀଗଣ ।
ମଧ୍ୟେ ତାର
ସେଇ ଅଶ୍ରୁମୁଖୀ, ନତନେତ୍ରା
ରାଇ ବିନୋଦିନୀ—
ଶିକ୍ଷା ଦେଉଥିବେ
ଗଣିବଣା ଏଣୀଦଳେ
ଗୃହିଣୀର ଭଙ୍ଗି ।

ବଡ଼ସୁଖ ଲାଗେ ସଖି ।
ବଡ଼ସୁଖ ଲାଗେ ।
ଫେରକ ଅସନ୍ତା
ସେହ୍ୱଦନ ।

ଶ୍ରୀରାଧା—ରଖ, ରଖ ନଟବର ।
ଆଉ ଗୃହ କଥା ।
କାଣେମୁହିଁ
ସେ ଶାସ୍ତ୍ରେ ପ୍ରବୀଣ ତୁମ୍ଭେ ।
ଅଳ୍ପ ନୁହେ
ବହୁଦନୁ—ଅତ ଶିଶୁକାଳୁ,—
ନନ୍ଦ ଗୋପଘରୁ ।
ଆଜ କହୁଛ ତ—
ମୋତେ ମଧ
ଜଣା ଅଭିମାନ ।

(ପକ୍ଷୀ ଡ଼ାକ)

ଶ୍ରୀକୃଷ୍ଣ—ହେଇ ଶୁଣ—ଡ଼ାକଲ ପ୍ରଭାତ ପକ୍ଷୀ,—
ଭରତଅ ବନେ ।
କ କରବ ?
ଭଲ୍ଗ ତୋରେ ବନ୍ଧା ତ ମୁଁ ସଖି ।
ଯିବ ବହୁ ପଥ,
ଅସେଁ ତେବେ ଅଳ ।
ଦଅ ଅଲିଙ୍ଗନ ସୁବଦନା ।

(ଅଲିଙ୍ଗନ)

(ଶ୍ରୀକୃଷ୍ଣ ଗୃଲିଗଲେ—ଯିବାପଥ ଶ୍ରୀମତୀ ଗୃହିଁ ରହିଛନ୍ତି, ପଛରୁ ଡ଼ାକଲେ ଲଳତା)

ଲଳତା—ସଖି ।

ଶ୍ରୀମତୀ—(ଚମକ ଫେର ଗୃହିଁରେ ଜଳଛଳ ଅଖିରେ)

ଲଳତା—(ନକଟକୁ ଅସି ଲୁହ ପୋଛିଦେଇ)
ବାବଛି ମୁଁ—
ଶୁଣିଛି ମୁଁ ସବୁ ।
ନାତ ସଙ୍ଗେ ଏ ମିଳନ,
ପ୍ରଭାତ-ବଦାୟ ।
ଏ ବରହ ଦଏ ଗୁରୁ ବାଧା ।
କନ୍ତୁ ରାଇ ।
ଲଳତା ମୁଁ ।
ଚରଦନ ନର୍ମସଖୀ ତୋର
ବହୁତ ବଧାନ ମୁହିଁ ।
ଶମିବ ତୋ ଏ ବରହ ଭାର ।
ଗୃଲ ସଖି ।
ଚେକକୁଞ୍ଜ—
ହେଲଣି ପ୍ରଭାତ ।

(ପଟକ୍ଷେପ)

## ପ୍ରସ୍ତାବନା

ମୁ କୁଳାଉ ବକୁଳ ବଳା ସାଜେ,
କେ'ଏବେ ସହି କେ'ଉସ ଗୋ
ପ୍ରେମିକ ପ୍ରେମିକା ସ୍ୱକେ । ୦ ।
ଜଗତର ସୌରଭ
ସରଟରେ ବୈଭବ
ଠୁଲ ପସ୍ୱ ଏ ବନ ଭାଗେ,
ଆକୁଳ ପିପ୍ୱାସା ମନେ ଜାଗେ
ଧୀର ମଧୁର ବେଣୁ ବାଜେ । । ୧ ।

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

(ଶ୍ରୀ ସାକ୍ଷୀଗୋପାଳଙ୍କ ମନ୍ଦିର ସମ୍ମୁଖସ୍ଥ ବେଦୀ । ସମୟ—ଗୋଧୂଳି—ବେଦୀ ଉପରେ ଲକ୍ଷ୍ମୀ ବସି ମାଳା ଗୁନ୍ଥୁଥିଲେ । ଭସବସନ୍ତ ଋତୁ)

ଲକ୍ଷ୍ମୀ— (ଗୀତ)

ମୋର, ସରମେ ଜଡ଼ିତ ମନ
ଅଧାଫୁଟା କଥା ଅଗ ଜଡ଼େ ରହେ
ତନ୍ଦ୍ରାଏ ଅଖି କୋଣ ॥୦॥
ସୁଧା ବୋଲି କଣେ ଥିଲେ ପସ୍ୱ କଏ
ଗୋପରେ ଉମର ସାଥୀ
ନାଗରବର ଗୋ, ଅଭିମାନେ ପସ୍ୱ
ଛେଛେଥର ବାନ୍ଧେ ଛାତି ॥
ଚରଣ ଧରଛ ବିନତି କରଛ
କହିଛ ଗୂଢ଼ ବଚନ,
ମନେହୁଏ ମୋର ହୃଅନ୍ତି କା ସତେ
ସେହି ସୁଧା ସରସମ ।
ଭମର ପୀରତି ଯମୁନାର ତଟେ
ଶୁଣିବ ମୁରଲୀ ଗୀତ
(ତୁମେ) ତ୍ରିଭଙ୍ଗ ହୋଇବ ବେଣୁରେ ଗାଇବ
ପୁଲକ ଉଠିବ ଚିତ୍ତ ।

(ମୁଁ) ଗୃହିଁ ଗୃହିଁ ସେହି ନଟବର ରୂପ
ଚେତନା ହାରିବ ଦନେ
ମରିବ, ଜୀବନ— ଡେଜିବ, ଲଭିବ
ସେ ଜନମ,—ସାଧୁ ମନେ ॥
(ମନ୍ଦିର ଦ୍ୱାର ଖୋଲିଗଲା । ଭିତରୁ ଶ୍ରୀ ଜୀଉଙ୍କ ମୂର୍ତ୍ତି ସମ୍ମୁଖରେ ସେବକମାନେ ଦଳବଦ୍ଧ । ଘଣ୍ଟି, ଘଣ୍ଟା ମର୍ଦ୍ଦଳ ଇତ୍ୟାଦି ବାଜି ଦେବଙ୍କର ଆରତି ବଢ଼ିଲା । ଏଣେ ଲକ୍ଷ୍ମୀ, ଅପଲକ ନୟନରେ ମନ୍ଦିର ଆଡ଼କୁ ଅନାଇଁ ରହିଲେ । ଫୁଲଗୁନ୍ଥା ବନ୍ଦ ହୋଇଗଲା । ଆରତି ଶେଷ ହେଲା । ଟହେଲ ଭାଙ୍ଗିବା ପରେ ଲକ୍ଷ୍ମୀଙ୍କର ସତେ ଯେପରି ଚେତନା ଆସିଲା)
ଲକ୍ଷ୍ମୀ—(ପ୍ରକୃତିସ୍ଥ ହୋଇ, ମାଳାକୁ ଗୃହିଁ ଡାଲାରେ ଫୁଲ ବଳିଛି ଦେଖି) ଅରେ ! ଫୁଲପୁସ୍ୱ ବଳିଛି !-ଆଳତି ବଢ଼ିଗଲା । ମାଳା ଶେଷ କର କର, ଫୁଲ ଡାଲା ସହିତ ଧରି, ନିଶ୍ୱାସ ପକାଇ, ଉଠି ମାଳା ଠାକୁରଙ୍କୁ ଦେବାକୁ ଯାଉ ଯାଉ)
(ଗୀତ)
ବଉଳର ଫୁଲହାର ମନକଥା ମୋର
କହିବୁ କି କାନେକାନେ—ସେ ମୋ ମନଚୋର ।
ତୋ ସଙ୍ଗେ ବଉଳ ବସି
ତୋ ଅଙ୍ଗେ ଯିବ ମୁ ମିଶି
ରହିବ କଣ୍ଠ ପରଶି,
ନଥିବ ଗୋ ଲୋକନିନ୍ଦା ଅପବାଦ ଡର ।୧।
(ମନ୍ଦିର ଦ୍ୱାରକୁ ଯାଇ)
ପ୍ରେମ ଡୋରେ ଛନ୍ଦା ତୁ ଗୋ ।
ଶ୍ୟାମ ଡୋରେ ବନ୍ଧା ମୁଁ ଗୋ ।
ତୋ ଅଙ୍ଗ ମହକି ବାସେ,
ମୋ ଅଙ୍ଗ ମହକେ ଲଭି ପରଶ ତୋହାର ।୦।
(ମୂର୍ତ୍ତିସମ୍ମୁଖକୁ ଯାଇ)
ଥିବ କି ନଥିବ ଚେତା,
ଅପଲକ ଅଖିପତା
ନୟନ ପୂରିଇ ଥରେ ଦେଖିବ
ଚରଣେ ଢାଳ ଫୁଲ ଉପହାର

(ଦେବତାର ଚରଣରେ ଫୁଲହାର ଥୋଇ ପ୍ରଣାମ କଲେ, ହାରଟି ସ୍ୱତଃ ଗଳାରେ ଲମ୍ବିଗଲା, ମନ୍ଦିରର ଏକ ଦିଗରେ ଲୁଚିରହିଥିବା ଦୁଇଟି ସେବକ ପିଲା ଏହା ଦେଖୁଥିଲେ)

— — —

## ଦ୍ୱିତୀୟ ଦୃଶ୍ୟ

### ଗ୍ରାମପଥ

(ଲଳିତା ହସି ହସି ଗାଇଗାଇ ପ୍ରବେଶ)

(ଗୀତ)

ଅନାଁ ରେ ଅଳି ମଳୟ । ମେଲ ଦି'ନୟନ
କୁସୁମ ଗଣ୍ଡ ପରଶେ ପ୍ରେମର ଚୁମ୍ବନ ॥ଘୋ॥
ତା'ର ନାହିଁ ଦିନ ରାତି
ପୀରତି ଉଦାସ ଛାତି
ନିରୋଳେ ଡାକଇ ନିତି—
ମୁରଲୀ ନିସ୍ୱନ ॥୧
ଯେଣିକି ଦେଖାଏ ବାଟ—
ଦେଖେ ସେ ପ୍ରେମର ନାଟ
ବସାଏ ରସର ହାଟ
ନବଘନ ଶ୍ୟାମ ॥ ୨

(ଏକ ଦିଗରୁ ଲକ୍ଷ୍ମୀ ହତାଶ, ଉଦାସ ମନେ ନିଜର କରର ଅଙ୍ଗୁଠିକୁ ଗୁହିଁଗୁହିଁ ଆସୁଥିଲେ । ପ୍ରବେଶ କଲେ ଲଳିତା )

ଲଳିତା—(ମଧୁର ହସି) ଲକ୍ଷ୍ମୀ । (ନୀରବ)

(ପୁଣି ଡାକଲେ)—ଲକ୍ଷ୍ମୀ ।

(ଲକ୍ଷ୍ମୀ ମୁଖ ଫେରାଇ ଅଚହ୍ନା ପରି ଅନାଇଁ ରହିଲେ)

ଲଳିତା—(ଅଳ୍ପହସି) ଚିହ୍ନି ପାରୁନାହଁ ପରା ।

ଲକ୍ଷ୍ମୀ—(ନୀରବରେ ଗୁହିଁ ରହିଲେ)

ଲଳିତା—ଏଡ଼େ ବେଗେ ଏମିତି ପାଶୋରି ପକାନ୍ତି ନା ?

ଲକ୍ଷ୍ମୀ—କାହାକୁ ?

ଲଳିତା—କାହିଁକି ? ମତେ ?

ଲକ୍ଷ୍ମୀ—ଚହ୍ନାଦିଅ । (ଅଶ୍ଚର୍ଯ୍ୟ ହୋଇ )

ଲଳିତା—ନା, ତମ କଥାଶୁଣି ଛାତି ମୋର ଫାଟି ଯାଉଛି । ମୁଁ ଅଭିମାନ କରିବି ।

ଲକ୍ଷ୍ମୀ—(ଚମକି) ଅଭିମାନ । କାହିଁକି ?

ଲଳିତା—ତୁମେ କ'ଣ ଏମିତି କରନ୍ତି ନାହିଁ, ତୁମ ଛାତି କ'ଣ ଫାଟି ଯା'ନ୍ତା ନାହିଁ ?

ଲକ୍ଷ୍ମୀ—କାହିଁକି ?

ଲଳିତା—ଜଣାଲୋକ, ଚହ୍ନାଲୋକ, ଆପଣାର ଲୋକ ପାଶୋରିଦେଲେ ନ ଚହ୍ନିଲେ—ନ ପଗୁରିଲେ ।

ଲକ୍ଷ୍ମୀ—କହିଲ ପରା, ଚହ୍ନାଦିଅ ।

ଲଳିତା – ମୁଁ (ହସିଲେ) ପରା କହିଲି—ମୁଁ ତମ ସାକ୍ଷୀ ।

ଲକ୍ଷ୍ମୀ— କି ସାକ୍ଷୀ ? କ'ଣ କହୁଛ, ବୁଝିଲି ନାହିଁ ।

ଲଳିତା – ଫୁଲସଙ୍ଗେ ମିତ ବସିବାବେଳେ—ସେଇ ବଉଳ-ହାର ମ ? କେତେ ଫଟେଇ ଫଟେଇ ପଗୁରୁଥାଅ ମ । ସେତେବେଳେ କିଏ ସାକ୍ଷୀ ? ମୁଁ ତ ? ପୁଣି ସେଇ ଛୁଗ୍ରିଅନା-କୁଞ୍ଜରେ···ଯାଃ, ଆଉ କହିବି ନାହିଁ ।

ଲକ୍ଷ୍ମୀ—ତୁମେ କେମିତି···(କଥା ଅଧା ରହିଗଲା— ଲଳିତା ତାଙ୍କ କଥାରେ ବାଧା ଦେଲେ)

ଲଳିତା—ଏକା କ'ଣ ତମର କି ? ମୁଁ ଏମିତି କେତେ ବାୟାଣୀଙ୍କ ସାକ୍ଷୀ ନା । ମତେ କେହି କିଛି ଲୁଗ୍ରନ୍ତି ନାହିଁ ମ । ସେଦିନ ଏମିତି ଦେଖିଛ-ନା ଠାକୁରଙ୍କର ସେ ଚନ୍ଦନ—ପୋଖରୀଟା···

ଲକ୍ଷ୍ମୀ—ଦେଖିଛି, କଣ ହେଲା ?

ଲଳିତା—ତା' ପାଖରେ ଏଠା ସେବକପିଲାମାନଙ୍କ ଯାଗାଘର ।

ଲକ୍ଷ୍ମୀ—ହଁ ।

ଲଳିତା—ସେଇଠି······

ଲକ୍ଷ୍ମୀ— ସେଠି କ'ଣ ହେଲା ?

ଲଳିତା—ଛି ଛି, ମୋତେ ଭାରି ଦୁଃଖ ଲାଗିଲା । ପ୍ରେମରେ ଯେ ବାୟାଣୀ ହେଉଥାଏ, ମୁଁ ତାପାଇଁ ମୋ ଜୀବନଟା ଭସାଇଦିଏଁ । ମରିଯାଏଁ ମୁଁ ଦିନରାତି ତା'ର ଲାଗି । ସତେ ଲକ୍ଷ୍ମୀ, ମୋତେ ଭାରି ଦୁଃଖ ଲାଗିଲା ।

ଲକ୍ଷ୍ମୀ—କାହିଁକ ?

ଲଳିତା—ଶୁଣି ନା ? ସେମାନେ ପରା କହୁଥିଲେ…

ଲକ୍ଷ୍ମୀ—କ'ଣ କହୁଥିଲେ ?

ଲଳିତା—କହୁଥିଲେ ପରା, ଲକ୍ଷ୍ମୀଟା ଏମିତି-ସେମିତି… ଏ ବ୍ରଜର ଗୋଟାଏ କଥା । ଛାଡ଼, କ ମିଳିବ ସେଥିରୁ ? ମନ୍ଦଲୋକଗୁଡ଼ାକ କେତେ କଥା କହୁଥିଲେ । ଗୁଡ଼ାକ ପଥର କରି ମୁଁ ଖାଲି ଶୁଣୁଥାଏଁ । ଆଖିରୁ ମୋ'ର ଧ'ଧାର ଲୁହ ଗଡ଼ିପଡ଼ୁଥିଲା । କେତେ କଥା କହୁଥିଲେ—ମୁହଁରେ ତାଙ୍କର ବାଡ଼ବତା ନାହିଁ ।

ଲକ୍ଷ୍ମୀ—କ'ଣ କହୁଥିଲେ ?

ଲଳିତା—ଶୁଣିବ ?…ଶୁଣି କିଛି ଲାଭ ନାହିଁ । ଅଚ୍ଛା, ହଉ ଶୁଣ । ୯ସେଇ ଠାକୁରଙ୍କ କଥା—ଆଉ ଲକ୍ଷ୍ମୀ କଥା । କୋଉ ଦିନ ପରା ଦାଅଁଙ୍କ ବଇଁଶୀଟା ଲକ୍ଷ୍ମୀଘର ଦୁଆରୁ ମିଳିଲା । ଓଢ଼ଣିଟି ପରା କୁଆଡ଼େ ଲକ୍ଷ୍ମୀ ଶୋଇବା ଶେଜରୁ ସୁଆର ପାଇକରି ଅଣିଲା । ଏଇମିତି କେତେକେତେ କଥା……ଅପବାଦ ! ଅପବାଦ । ସହୁପାରିବ ଟି ? ଡର ନାହିଁ ତମର ?

ଲକ୍ଷ୍ମୀ—କାହାକୁ ?

ଲଳିତା—ଏଇ ଅପବାଦକୁ । ଏଇ ଲୋକ-ନିନ୍ଦାକୁ । ଛାଡ଼, ସେ କଥା । କି ମିଳିବ ସେଥିରୁ ଯେ ? ତୁମେ ଆଗେ କହିବ ଟି, କୁଆଡ଼େ ଯାଇଥିଲ ଏ ସଞ୍ଜ ଅନ୍ଧାରରେ ଏକୁଟିଆ ? ଜାଣିଛ ତ ତମର ବହୁତ ଭଗାର । ଏକୁଟିଆ ଏମିତ ଯା'ନ୍ତି ନା ? କୁଆଡ଼େ ଯାଇଥିଲ ?

ଲକ୍ଷ୍ମୀ—ଯାଇଥିଲି ଦାଅଁଙ୍କ ପାଖକୁ ।

ଲଳିତା—କୋଉ ଦାଅଁ ମ ? ଏଇ ଗୋପୀନାଥଙ୍କ ପାଖକୁ ?

ଲକ୍ଷ୍ମୀ—ହଁ ।

ଲଳିତା—କଅଣ ଏଇ ଫୁଲସଞ୍ଜବେଳେ ଯାଅ ?

ଲକ୍ଷ୍ମୀ—ହଁ ।

ଲଳିତା—କାହିଁକ ?

ଲକ୍ଷ୍ମୀ—ଫୁଲ ଦେବାକୁ ।

ଲଳିତା—କଣ ନିଇତ ?

ଲକ୍ଷ୍ମୀ—ହଁ ।

ଲଳିତା—ଅଚ୍ଛା, ଦିନେ ନ ଗଲେ, ଦିନେ ଫୁଲ ନ ଦେଲେ…(ଲକ୍ଷ୍ମୀକୁ ଚାହିଁଲେ) ।

ଲକ୍ଷ୍ମୀ—(ନୀରବରେ ଲଳିତାକୁ କରୁଣ ଦୃଷ୍ଟିରେ ଅନାଇଁ ମୁହଁ ତଳକୁ କଲେ ।)

ଲଳିତା—ନାଇଁ । ନାଇଁ, ସେ କଥା ମୁଁ ପଚାରୁଛି ନାହିଁ । ଥାଉ। ଆଜି ଫୁଲ ଦେଲ ନା ?

ଲକ୍ଷ୍ମୀ—ଦେଲି ।

ଲଳିତା—କେଉଁଠି ?

ଲକ୍ଷ୍ମୀ—ତାଙ୍କ ଚରଣରେ ।

ଲଳିତା—ଦେଲାବେଳେ କ'ଣ ଭାବୁଥିଲ, ସତ କହ ।

ଲକ୍ଷ୍ମୀ—ଭାବୁଥିଲି…ମୁଁ ?

ଲଳିତା—ହଁ, ତୁମେ । ଭାବୁ ନ ଥିଲ ?

ଲକ୍ଷ୍ମୀ—କେଜାଣି ? ତୁମକୁ କିଏ କହିଲା ?

ଲଳିତା—ମ, କିଏ କହନ୍ତା କାହିଁକ ? ମୁଁ ପରା ସାକ୍ଷୀ । କଅଣ ଭାବୁଥିଲ, କହ ।

ଲକ୍ଷ୍ମୀ—(ପୁଣି ପୂର୍ବପରି ଅନାଇଁଲେ)।

ଲଳିତା—ଦୁଃଖ କଲ କି ? ନାଇଁ ନାଇଁ, ହାରଟି ଠାକୁରେ ଗଳାରେ ପିନ୍ଧିଛନ୍ତି—ପ୍ରେମରେ ଦେଲ ନା । ସରଳ ହୃଦୟଟି ଫିଟାଇ ନ କହିଲେ କଅଣ ହେଲା ? ସେ ମନକଥା ଜାଣନ୍ତି ଯେ । ତୁମେ ନିଜକୁ ସିନା ଜାଣୁ ନା । କିନ୍ତୁ… ଲୋକେ କ'ଣ ଏସବୁ ବୁଝନ୍ତି ? ବାର୍‌ଲୋକେ ବାରକଥା କହନ୍ତି—କହୁଛନ୍ତି । ସେତେବେଳେ ବି ଏମିତ କହୁଥିଲେ । (ଦୁଃଖରେ) ଅହା । କେତେ ସହିଛନ୍ତି ସେ ।

ଲକ୍ଷ୍ମୀ—କିଏ ? କାହା କଥା ? ମୁଁ ତ କିଛି ବୁଝିପାରୁ ନାହିଁ ।

ଲଳିତା—କେମିତି ବୁଝିବ ? ସେ ତ ଅନେକ ଦିନର କଥା । ରାଧା ବୋଲି ଜଣେ ଥିଲେ । ବହୁତ କଳଙ୍କ, ବହୁତ ଅପବାଦ, କେତେ ଛି-ଛାକର… ଓଃ, ବହୁତ ସହିଛନ୍ତି । ତମଠୁଁ ବହୁତ ବେଶୀ । ହୁଏ…ହୁଏ; ହୁଏ ସେମିତ ।

ଲକ୍ଷ୍ମୀ—କିଏ ତୁମେ ? କ'ଣ ଏସବୁ କହୁଛ ? ଉଃ, ମୋ ମୁଣ୍ଡ ବୁଲାଉଛି । ମୋତେ ଟିକିଏ ଛାଡ଼ି ଦେଇ ଅସ ।

ଲଳିତା—ବୁଲେଇବ ତ ! କେତେ ବୁଲେଇବ । ବୁଲେଇବାକୁ ଅଛୁରି ବାକି ଅଛି, ଅନେକ ଅଛି । ଯିବ ? ଆସ । ମୋ ସଙ୍ଗେ ଆସ । ନେଇ ଯିବ । ମୁଁ ତ ଏଇମିତି ନେଇଯାଏଁ । ଆସ । (ହାତ ବଢ଼ାଇ—ଲକ୍ଷ୍ମୀକୁ ଧରଲେ)

ଲକ୍ଷ୍ମୀ—କେଉଁଠିକି ଡାକୁଛ ? କୋଉଠିକି ଯିବ ?

ଲଳିତା— (ଗୀତ)

ଆସ ଗୋ ଆସ ଆସ—
ବଉଳ-କୁଞ୍ଜରେ, ଏ ଫୁଲ ସଞ୍ଜରେ,
ନାଗର କରୁଛି ଆଶ ଗୋ—ଆସ, ଆସ ।
ଆକୁଳ ଅନ୍ତର ମନଚୋର ତୋର
ଡାକଇ 'ଲକ୍ଷ୍ମୀ' ବଂଶୀ ବନେ ଘୋର
ଆଉ କି ନିନ୍ଦା, ଆଉ କି ଲଜ୍ଜା
ବାଏ ମୁରଲୀ ପୀତବାସ ଗୋ ।

( ଲକ୍ଷ୍ମୀ ଯନ୍ତ୍ରପିତୁଳାପରି ଗୁଲିଗଲେ )
(ପଟ୍ଟ ପରିବର୍ତ୍ତନ)

---

### ତୃତୀୟ ଦୃଶ୍ୟ

—ପଥ—

(ଜମ୍ବୁ ପଶୁପାଳକ ଏବଂ ମଧୁ ପଢ଼ିଆରୀ ଦୁହେଁ ଉଭୟ ଦିଗରୁ ପ୍ରବେଶ)

ଜମ୍ବୁ—ମିଳିଲା ହେ ପଢ଼ିଆରୀଏ ।

ମଧୁ—ମିଳିଲା ? କେମିତି ?

ଜମ୍ବୁ— ବେଲ ମହାପାତ୍ରେ ନିଜେ ନେଇ ବଇଁଶୀଟି ମଣିମାଙ୍କ ଛାମୁରେ ଦେଲେ ।

ମଧୁ—ଦିଅଁଙ୍କ ଶ୍ରୀକର ବଇଁଶୀ ବେଲ ମହାପାତ୍ରେ ପାଇଲେ କେମିତି ? ଏତେ ଖୋଜ-ତଲାସ । କାହିଁ ମିଳିଲା ନାହିଁ । ବେଲସବୁକ ବେଲ ମହାପାତ୍ରେ ପାଇଲେ କୋଉଠୁ ?

ଜମ୍ବୁ—ଅହେ, ସେ କଥା କ'ଣ ପଚାରୁଛ ? ବେଲ ମହାପାତ୍ରେ ପରା କହୁଛନ୍ତି, ବଇଁଶୀଟି ତାଙ୍କ ଝିଅ ଲକ୍ଷ୍ମୀର ଶୋଇବା ଶେଜରେ ପଡ଼ିଥିଲା ।

ମଧୁ—ଆରେ ଯାଃ, ଶୋଇବା ଶେଜ ? ବେହିଆପୋ ମାଇପା ଜଟାଳୀ ବୁଢ଼ା । ଖୋଜ-ତଲାସ ହେଲାରୁ ଅସମ୍ଭାଳ ହୋଇ ଦେଇପକେଇଲା । ଖଞ୍ଜରେ କେମିତି ହାତ ସଫେଇ କରିଥିଲା କି କ'ଣ । ଦେଖିଲା ଆଉ ଭାଉ ପଟିଲା ନାହିଁ ତାର । ସେଇଠୁ...

ଜମ୍ବୁ—ଯାଃ, ଖାସା ବୁଝୁଛ ତୁମେ । ଲକ୍ଷ୍ମୀ କଥା କ'ଣ ଜଣା ନାହିଁ ? ହେଇଥିବ ହେ । କିଓ, ସେ ଟୋକୀ ଖଣ୍ଡିକୁ ସାନ ଦେଖୁଛ ସିନା, ସଂସାର ଘର ସବୁ ଖେଳ ଜଣା ତାକୁ ଏଇଦିନୁ—ବୁଝିଲ ?

ମଧୁ—ହାଁ ? ସେ ଯାହା ହଉ—ଆଚ୍ଛା ବଇଁଶୀଟି ପାଇଲେ କିମିତି ?

ଜମ୍ବୁ—ହଁ, ଏତିକି ବୁଝୁନାହଁ ? କାଲି ପାଳି ଥିଲା ଗୋପୀନାଥର । ଦୁଆର ମୁଦ ସେଇ କରୁଛି । ବଇଁଶୀ ତେବେ ଲକ୍ଷ୍ମୀ ଶୋଇବା ଶେଜକୁ ଗଲା କିମିତି ? ଏତିକିରୁ କଥାଟା ବାରୁ ନାହିଁ ?

ମଧୁ—ଏଁ ? ସାରୁଙ୍କ ଭିତରେ ପୁଣି ମାରୁ ? ମୁଁ ଏବେ ଏତେ କଥା ଜାଣୁଛି ?

ଜମ୍ବୁ—କେତେ ଥର ନା—ଏ କ'ଣ ନୂଆ କଥା କି ? ଗୋପୀନାଥଙ୍କ ସଙ୍ଗେ ଲକ୍ଷ୍ମୀର ଭାବ ଥିବା କଥା ଲୋକେ ଯାହା କହନ୍ତି—ସେଟା କ'ଣ ମିଛ କି ? ମିଛ ବୋଇଲେ ଏତିକି—ସେ ଦିଅଁ ଗୋପୀନାଥ ନୁହଁ—ଆମ ଗୋପୀନାଥ -ଟୋପୀ ପଣ୍ଡା ।

ମଧୁ—ଅରେ, ରସିକଟାଏ । ଦଶ-ଏଗାର ବର୍ଷର ଟୋକୀଟା ସାଥିରେ କି ଭାବ ହେ ? ବେହିଆପୋର କାଳ କଳି । କ'ଣ କହିବା ? ଛି, ଛିଃ ।

ଜମ୍ବୁ—ଅହେ, ମନଟାକୁ ତାର ମନେଇ ଅଗରୁ ବାଗେଇନଉଛି । ଆଉ ସେ ଟୋକୀକି କ'ଣ ଜଣା ନାହିଁ ? ତାକୁ ଯେତେ ଛଟକ ଜଣା, ବେହିଆପୋ ବଜାରବୁଲୀଙ୍କି ଜଣା ନଥିବ । ତୁମେ ଦେଖିବ, ଠିକ୍ ଗୋପୀ ପାଳି, ନିରୋଳା ବେଳକୁ, ଦିଅଁଙ୍କ ପାଖକୁ ଫୁଲ ନେଇଯିବା ବାହାନାରେ

ଲକ୍ଷ୍ମୀ ଦେଉଳରେ ହାଜର । ଆଉ ଦେଖ, ଦେଉଳଭିତରେ ମଜ୍ଜିଜ । ମୁଁ ପରା କେତେ ଥର ଝୁପ୍‌ଝାପ୍ କଥାବାର୍ତ୍ତା ଶୁଣିଛି କାନେଇ କରି ।

ମଧୁ—ବୁଢ଼ା ଛଇଳ ଅସଲ ଭାରଦା । ଏ କଥା କ'ଣ ଜାଣୁ ନାହିଁ ?

ଜମ୍ବୀ—ଜାଣୁ ନାହିଁ କେମିତି ହେ ? ଏବେ ବଇଁଶୀଟି ନେଇ ଦେଲା କେମିତି ? ଆମ ମଣିଷ ଗୋପୀନାଥ ଦଅଁଙ୍କ ନାଁ ଧରି ପାରି । ବୁଢ଼ା ଘରକୁ,—ପୁଣି ଲକ୍ଷ୍ମୀ ଶେଜକୁ ଭଲା ବଇଁଶୀ ଗଲା କେମିତି ? ଗୋପୀନାଥ ଦେଇଛି; ବୁଢ଼ା ଛପେଇବାକୁ ବସିଥିଲା । ବଡ଼ସକାଳୁ ପାଲଅା ଖୋଜ-ତଲସ କରିବାରୁ ଅତରଛରେ ସେ ମାଲ୍ ବାହାରିପଡ଼ିଲା ।

ମଧୁ—ଏବେ ମଣିମା କଅଣ କହୁଛନ୍ତି ?

ଜମ୍ବୀ—କଅଣ କହିବେ ? ବେଲ ମହାପାତ୍ରକୁ ସନ୍ଦେହ କରୁଛନ୍ତି । ପାଉ ବୁଢ଼ା ବେହିପୋ ପାନେ । ସବୁ ଜାଣେ, ସେ ସବୁ ଜାଣେ ।

ମଧୁ—ଗୋପୀନାଥର ଏ ଭେଦସବୁ ମଣିମା ଶୁଣିଲେଣି ଟି ?

ଜମ୍ବୀ—ନା, ଅଜ ଦଉଚ ମଣିମାଙ୍କ କାନ କରି । ବେହିପୋ ନଖାଇ ନପିଇ କଇଁଥା ଗ୍ରେର ଅମେ ? କେତେବେଳେ କ'ଣ ଯିବ—ମାର୍ ମାର୍ ଭଣ୍ଡାରିଅକୁ ମାର୍ । ପଘାରେ ନାରାୟଣ ଅମେ ।

ମଧୁ—ବଇଁଶୀଖଣ୍ଡ ନ ମିଳିଥିଲେ କ'ଣ ହୋଇଥାନ୍ତା, ଜାଣୁଛ ତ ?

ଜମ୍ବୀ—ଜାଣିବି କ'ଣ ? ହରିକାଠ, ହରିକାଠ ।

ମଧୁ—ହଁ, ତେବେ ଏତକବେଳେ ପଟ୍ଟ ପଡ଼ୁଛି । ଚାଲ, ଛାମୁକୁ ଯାଇ ଏ ଗୁପ୍ତକଥା ଫୋଡ଼ଦେବା । ସେଇ ବେଲ ମହାପାତ୍ରକୁ ଜବତ୍ କଲେ ସବୁ ସତ କଥା ମିଳିଯିବ ।

ଜମ୍ବୀ—ବେହିପୋ, ମାଡ଼କୁ ମହାଦେବେ ଡରନ୍ତି । ବୁଢ଼ାକୁ ଖାଲି ଧମକେଇଦେଲେ ସତକଥା ବାହାରପଡ଼ିବ । ଚାଲ, ଅମେ ତାହାଁକ ଦୋଷୀହୋଇ ମରୁଥିବା ହେ ? ସେ ଗୋପୀନାଥ— ବୁଝୁଥାନ୍ତୁ ଏ ଗୋପୀନାଥଙ୍କ କଥା—ଅସ ।

——— (ଦୁହେଁ ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

(ରାଏ ସାହେବଙ୍କ ବୈଠକଖାନା)

ରାଏସାହେବ—ଶୁଣିଲ ତ ?

ଲୋକନ—ଶୁଣିଲି ସବୁ ମଣିମା ।

ରାଏସାହେବ—କଅଣ ଭାବୁଛ ତେବେ ?

ଲୋକନ—ଏଥିରେ ଆଉ ଭାବିବା ନ ଭାବିବା କଥା କ'ଣ ଅଛି ମଣିମା ? ଛାମୁଙ୍କ ବିଶ୍ୱାସ ।

ରାଏ—ତୁମର ?

ଲୋକନ—ନା···

ରାଏ—ତେବେ ତୁମେ କ'ଣ ମନେ କର ?

ଲୋକନ ମନେ କରିବି କ'ଣ ଆଉ ମଣିମା, ଏହିଟା ଏକାବେଳେ ନିଶ୍ଚିତ କଥା ।

ରାଯ୍—ତେବେ ତୁମେ କ'ଣ କହିବାକୁ ଚାହଁ— 'ଚୋର' । ବେଲ ମହାପାତ୍ର ଚୋର ।

ଲୋକନ—ସତ କହିବାକୁ ଗଲେ, ମଣିମାଙ୍କ ମନରେ ଯାହା ଥାଉ, ମୋର ଏକା ସେହିପରି ଧାରଣା ।

ରାଯ୍—ଆଉ ସେ ଯେ କହିଲା ଗୋପୀନାଥଙ୍କ କଥା ?

ଲୋକନ—ଯମ ନଏ—ନଛ ଦଏ । ବୁଝିଲେ ନାହିଁ କି ମଣିମା, କେହି ମଣିଷର ନାଁ କହିଲେ କି ଆଉ ମୁଣ୍ଡ ରହିବ ? ଛାମୁ ରାଜା, ଯାହା ନାଁ କହିବ ତା ମୁଣ୍ଡ କଟିଲା । ଦଅଁଙ୍କ ନାଁରେ ପାରିହେଲେ ଗଲା । ସାକ୍ଷୀ ନା —ଗୁହା ନା—ପ୍ରମାଣ ?

ରାଏ—ବେଲ ମହାପାତ୍ର ମଧ୍ୟ ଠିକ୍ କରି କହୁ ନାହିଁ; କି ଦଅଁ ତା ଘରେ ଲକ୍ଷ୍ମୀପାଖେ ପକାଇ-ଦେଇଗଲେ ? ସେ କହୁଛି, ଲକ୍ଷ୍ମୀ ଶୋଇବା ଶେଜରୁ ବଇଁଶୀଟି ପାଇକରି ଅଣିଦେଇଛି । ଲୋକେ ଦଅଁଙ୍କ କଥା କହୁଛନ୍ତି । ଏଇ ସନ୍ଦେହ ତା'ର । ଅଚ୍ଛା, ହଉ, ଏଇ ଲୋକଙ୍କ କଥା ଧର । ଯଦି

ଦଅଁ ଯା-ଆସ କରୁଛନ୍ତି,···ଯଦବା ବଇଁଶୀଖଣ୍ଡି ପକାଇ ଦେଇଗଲେ—

ଲୋକନା—(ବାଧା ଦେଇ) ହଁ,ସେଇ କଥା—କାହିଁକି ଗଲେ ? କ'ଣ ଲକ୍ଷ୍ମୀକୁ ଚିହ୍ନା ପକାଇବାକୁ ? ନାଇଁ ମଣିମା, ଆମର ଛୋଟ ବୁଦ୍ଧି, ଛୋଟ ମୁଣ୍ଡ । ଏସବୁ ଆମର ବିଶ୍ୱାସକୁ ଯାଉନାହିଁ । ଦାଣ୍ଡ-ଲୋକେ ଯାହା କହୁଛନ୍ତି, ବରଂ କଥାଟା ସେଆ ହୋଇଥିବ ।

ରାଏ—କଅଣ କହୁଛନ୍ତି ଲୋକେ ?

ଲୋକନା—ଆମ୍ଭ ଅଗରୁ ଯାହା ଭାବିଥିଲେ, ସେଇ କଥା—ଚୋର । ଅସମ୍ଭାଳ ହେଲାରୁ, ଦଅଁଙ୍କ ବଇଁଶୀ ତ ! ଲୁଚାଇ ପାରଲେ ସିନା ?

ରାଏ—ତେବେ ଏଇ ଯେ ଦଅଁଙ୍କ କଥା ? ମୁଁ ତ କେତେ ପ୍ରକାରେ ପଚାରିଲି—ସେ ଜାଣେ ନାହିଁ ବୋଲି କହିଲା । ଦଅଁଙ୍କ ନାଁ ତ ସେ କହୁ ନାହିଁ । ଯଦି କହ, ଚୋରିକଲା, ନିଜେ ନେଇ ଆସିବାର ଅଭିପ୍ରାୟ କ'ଣ ? କେଉଁଠି ଦେଉଳଭିତରେ ଲୁନକରି ପକାଇଦେଇପାରିଥାନ୍ତା ତ, କିଏ ଜାଣନ୍ତା କାହିଁକି ? ବେଲ ମହାପାତ୍ର ବୁଢ଼ା ଲୋକ, ଧାର୍ମିକ ।

ଲୋକନା—ଆମ୍ଭ ଯିମିତ ସରଳ, ଦୁନିଆଁଟାକୁ ସେଆ ଠଉରେଇଲେ । ଧାର୍ମିକ ? ଆଃ ବଡ଼ ବୈଷ୍ଣବ । ବୁଢ଼ା ଶୁଆ ମଲାବେଳକୁ ରାମନାମ ରଟୁଛି । ଦେଖନ୍ତୁ, ଯେ ମଣିମାଙ୍କର ବିଚାର । ସେ ତ ଥରକରେ ଯାଉ ନାହିଁ । ନାଉ-ଚୋର, କଖାରୁ-ଚୋର; ଚୋରାଉ ଚୋରାଉ ବଡ଼ ଚୋର ।' ପୋଥିଟା, ଲୁଗାଟା—ଏ ତ ଏପରି କେତେ ଥର ହେଲାଣି, ହଉଛି । ବଢ଼ି ବଢ଼ି ତ ବଇଁଶୀଯାଏ ଗଲାଣି । ଦେଖାଯାଉ, ଠାକୁର ଖାଇ ଖଟୁଲି ନ ଖାଇଲେ ରକ୍ଷା ।

ରାଏ—ହଁ, ସେ କଥାବି ସତ । ଚୋର ହେଉକି ହଜୁ, ଏମିତ ଅନେକ ଥର କଥା ଆମ କାନକୁ ଆସିଲାଣି । ବାକି କେବେ ତ କିଛି ପଦାର୍ଥ ଠାକୁରଙ୍କର ହଜିବାକୁ ନାହିଁ ? ସବୁ ତ ମିଳେ. ମିଳୁଛି— ଏହାର କାରଣ କ'ଣ ?

(ପଶୁପାଳକ ଓ ପଡ଼ିଆରୀ ପ୍ରବେଶ)

ଲୋକନା—ହେଇଟି ତ, ପଶୁପାଳକେ, ପଡ଼ିଆରୀ ଏ । କୁଆଡ଼େ ଦହେଁ ?

ଦୁହେଁ—ଆଜ୍ଞା, ମୁଣ୍ଡରହିଲେ ଜଣାକରିବୁ ।

ରାଏ—ହଉ, କ'ଣ କଥା, କୁହ ।

ପଶୁପାଳକ—ଆଜ୍ଞା, ମଣିମା ଧର୍ମ-ଅବତାର । ଆଜି ଯୋଉ କଥାରେ ଆମ ପଣ୍ଡାକୁଳ ଉଚ୍ଛନ୍ନ ହେଉଥିଲୁଁ, ସେକଥାର କ'ଣ ବିଚାର କରାଗଲା ? ଆଜି ଖଣ୍ଡିଏ, କାଲି ଦ'ଖଣ୍ଡି, ଏଇମିତି ତ ଗଲା ଚୋର ଲାଗିଛି । ଭଲା ଆମେ ଗରିବ ବାପୁଡ଼ା ବଞ୍ଚୁ କିମିତ ? ସମସ୍ତଙ୍କର ତ ଅବିଶ୍ୱାସ ଆମର ଉପରେ । ଭଲେଇ ହେଲେ ତ, ବେଲ ମହାପାତ୍ରେ,କୋରଡ଼ା ଖାଇଲୁଁ ଆମେ । ଯାହା ମଣିମାଙ୍କ ଛାମୁକୁ ଆସୁଛି । ଏଇ ତ ଜଣେଇଲୁ, ଆଉ ଆମେ ଦଅଁଙ୍କ ସେବା କରିପାରିବୁ ନାହିଁ ଆଜ୍ଞା । ଆମର ତ ନିତ ଡରୁ-ଡରୁ ପ୍ରାଣ ଗଲା । କେତେ ଜଗିବୁଁ ? କିମିତ ଚଳିବୁ ?

ରାଏ—ବେଶ୍, ମୁଁ ମଧ୍ୟ ସେଇ କଥା ଭାବୁଥିଲି । ଆଚ୍ଛା ତୁମେମାନେ ଏ ବିଷୟରେ କ'ଣ ଜାଣ ?

ପଡ଼ିଆରୀ—ସବୁ ଜାଣୁ ଆଜ୍ଞା,·· ଜାଣିବୁଁ ଆଉ କ'ଣ ? ଆଖିରେ ତ ଦେଖିଛୁଁ । ମୁଣ୍ଡ ରହିଲେ କହିବୁଁ । ମଣିମା ଦିବ୍ୟ ଛାଉରେ ବିଚାର କଲେ ଜଣାଇବୁଁ ।

ଲୋକନା—ମଣିମା ବିଚାର କରିବେ ନାହିଁ ତ କରିବ କିଏ ? ଯାହା ଜାଣିଛ, ଧର୍ମକୁ ଚାହିଁ କହିଯାଅ ସତ ସତ ।

ରାଏ—ତୁମେମାନେ କ'ଣ କହିବାକୁ ଚାହଁ ବଇଁଶୀଟି ଚୋରିହୋଇଯାଇଛି ?

ପଡ଼ିଆରୀ—ମଣିମା । ସମସ୍ତେ—ସମସ୍ତେ ଜାଣନ୍ତି । ଡରରେ କେହି କହୁ ନ ଥିଲେ ଏଇ କଥା । ଚୋରି ନୁହେଁ ତ,ଆଉ କଅଣ ? ଲୋକେ କହିବା ପରି ଗୋପୀନାଥେ କଅଣ ପକାଇଦେଇଗଲେ ?

ପଣ୍ଡୁ—ହଁ, ତା' ସତ ।

ରାଏ—ଆରେ ତୁମେ ଏଇନେ କହୁଛ ଚୋର, ଏଇନେ କହୁଛ ଗୋପୀନାଥେ ପକାଇଦେଇଗଲେ, କ'ଣ ତୁମର କଥା ?

ପଣ୍ଡୁ—କ'ଣ କି ମଣିମା—ଲୋକେ ଗୋପୀନାଥ ଗୋପୀନାଥ ବୋଲି ଏଇ ଯେଉଁ ଦଅଁଙ୍କ ନାଁ ରଟାଉଛନ୍ତି, ସେଇଟି ମିଛ । ଗୋପୀନାଥ କଥାଟି ସତ । ବାକି ସେ ଦଅଁ ଗୋପୀନାଥ ନୁହଁ—ମଣିଷ ଗୋପୀନାଥ । ଅମ ଗୋପୀ ପଣ୍ଡା—ଗୋପୀଆ ।

ରାଏ—ଏ ତ କଅଣ ପୁଣି ଗାଟେନୂଆକଥା । ଅଚ୍ଛା,କହ ।

ପଣ୍ଡୁ—ଗୋପୀନାଥ ସାଙ୍ଗରେ ଲକ୍ଷ୍ମୀର ଭାବ ଅଛି ।

ରାଏ—ଏହେଁ, ଲକ୍ଷ୍ମୀ ଯେ ପିଲାଟା ।

ପଣ୍ଡୁ—ମଣିମା, ଦାଣ୍ଡକୁ ଦେଖିବାକୁ ୧୧ । ୧୨ ବର୍ଷର ଝିଅପିଲା । ହେଲେ, ଏଇଦିନୁ ଗୋପୀନାଥ ବାଟ ମଣେଇ ନେଉଛି, ଏଇଥି ।

ରାଏ—ତେବେ ଲକ୍ଷ୍ମୀ ଯେ ବରାବର ଦେଉଳକୁ ଯିବା-ଆସିବା କରେ, ଫୁଲ ଦଅଁଙ୍କୁ ଦଏ—ସେସବୁ ?

ପଣ୍ଡୁ—ସେସବୁ ଗୋପୀର ସୁବିଧାଲାଗି । ଦେଉଳରେ ନାଗେଳା ଭେଟ । ଏବେ ବଇଁଶୀ ଚୋରି ଗଲା କାଲି ଗୋପୀର ଦୁଆରମୁଦ ପାଳି ଥିଲା କାଲି । ଖୋଳା-ଲୋଡ଼ା ପଡ଼ିଲା । ବଇଁଶୀଟି ତ ସାମାନ୍ୟ ଦରବ ନୁହେଁ । ଲୁଚେଇ ନ ପାରି ବେଲ-ମହାପାତ୍ରେ ମାନେ-ମାତେ ଦଅଁଙ୍କ ନାଆଁରେ ପାରିଦେଲେ ।

ରାଏ—ଅଚ୍ଛା, ଲୋକେ ଯେ ଦଅଁଙ୍କ କଥା-ଲକ୍ଷ୍ମୀ କଥା କହନ୍ତି, ସେସବୁ କ'ଣ ମିଛ ?

ପଣ୍ଡୁ—ମିଛ-ସତ ଦଅଁଙ୍କୁ ଗୋଚର ଅଜ୍ଞା । ଏ ଅମ ଆଖିଦେଖିବା କଥା । ଦହେଁଯାକ ଚୁପ୍‌ଚୁପ୍-ଚାପର, ଭୁଚୁ ଭୁଚୁ-ଭାଟରେ ଦେଉଳରେ କଅଣ ହେଉଥିବେ ଯେ ନାଗେଳାହେଲେ,—ବିଶେଷରେ ଗୋପୀର ପାଳିଦିନ । ଯେ ଅମେ ଦେଖି ଦେଖି ରହିଲୁଣି ।

ରାଏ—ଅଚ୍ଛା ସ୍ବାଭ ସ୍ଥ ମାଣ

ପଡ଼ିଆରି—ମଣିମାଙ୍କ ହୁକୁମ୍ ହେଲେ ଦେଖେଇ-ଦେବୁଁ । ହଉ, ଫେର୍ ଗୋପୀନାଥର ପାଳି ହଉ । ଜଗିରହିଲୁଁ, ମଣିମାଙ୍କୁ ଫେର୍ ଦେଖେଇ ଦେବୁଁ ।

ରାଏ—ତେବେ ବର୍ତ୍ତମାନ ବେଲେଶ୍ବରଙ୍କଠାରୁ ଏ କଥାର ପ୍ରମାଣ ମିଳିବ କିପରି ? ଗୋପୀନାଥକୁ ଡକାଅ ।

ପଡ଼ିଆରି—ନାଇଁ ମଣିମା, ସେ କି ମାନିବ ? ବୁଢ଼ା ବେଲ ମାହାପାତ୍ରେ ମରହଟିଆ । ହରିକାଠ, ବେଢ଼ ଶାଙ୍କୁଳି ଦେଲେ ସବୁ କଥା ଫିଟିଯିବ ।

ରାଏ—ନାରାୟଣ, ନାରାୟଣ । ନା, ନା, ବିନା ପ୍ରମାଣରେ ଏସବୁ···

ଲେଙ୍କା—ନା ନା, ମଣିମା ଧର୍ମାବତାର, ସ୍ବାମୀ ବିନା ପ୍ରମାଣରେ ଏସବୁ କରିବେ ?

ପଣ୍ଡୁ—ତେବେ ତାକୁ ଡକାଯାଇ ଧମକା-ଧମକି କଲେ ଅଭରଛ ୍ର ସବୁ କହିପକାଇପାରେ, ମଣିମା ।

ରାଏ—ଅଚ୍ଛା, ତୁମେସବୁ ଯାଅ । ଦୁଆରେ ସ୍ବାମୁ-ଖୁଣ୍ଟିଆକୁ କହ, ତୁରନ୍ତ ବେଲ ମହାପାତ୍ରଙ୍କୁ ଏଠିକି ଡାକି ଅଣୁ ।

ପଣ୍ଡୁ, ପଡ଼ିଆରି—ମଣିମା, ମଣିମା । (ଦୁହେଁ ଚାଲିଗଲେ)

ରାଏ—ଲେଙ୍କା, ଏ ତ ଅଦ୍ଭୁତ କଥାଏ ଶୁଣାଗଲା । ଆଜିଯାଏଁ ତ ଏ କଥା ଜଣା ଶୁଣା ନ ଥିଲା । ଗୋପୀନାଥଙ୍କର କ'ଣ ଇଚ୍ଛା, ଦେଖାଯାଉ ।

ଲେଙ୍କା—ଇଚ୍ଛା କଅଣ ଆଉ ମଣିମା ? ପାପ ପଙ୍କରୁ ଫୁଟି ବାହାରିବ । ତା ଗ୍ଧଏଁ ଗ୍ଧଏଁ ଫୁଟୁଛୁ । ଏବେ ସ୍ବାମୁ ବେଲମହାପାତ୍ରଙ୍କୁ ଛାଡ଼ିଦେଇଥିଲେ ନା ? ନିର୍ଦ୍ଦୋଷରେ ଖଲାସ୍ । କିଏ ଏ ଦହିଙ୍କି ଏଠିକି ଡାକିଲା ? ସବୁ ସେଇ ଗୋପୀନାଥେ । ତାଙ୍କର କାମ ସେ କରିଯିବେ ମଣିମା । ଯେମିତ ଅଚଳା ଭକ୍ତି ମଣିମାଙ୍କର, ସବୁ ଜାଣିପଡ଼ିବ ଆଜ୍ଞା ।

ରାଏ—ଅଚ୍ଛା ଲୋକନାଥ, ଏସବୁ ଶୁଣି ଯୁଦ୍ଧା ମୋର ମନ କାହିଁକି କହୁଛି, ବେଲ୍ ମହାପାତ୍ର ସତ କହୁଛି; ଆଉ ଲକ୍ଷ୍ମୀ ପବିତ୍ର ।

ଲୋକନାଥ—ମନ କହିଲେ କି ହେବ ଆଜ୍ଞା ? ଲୋକଙ୍କ ମୁହଁରେ କିଏ ବାଡ଼ବତା ଦବ ? ମଣିମା ତ ଏ ମୁଲକର ରାଜା ? ପାଞ୍ଚଜଣଙ୍କ କଥା ଶୁଣିବାକୁ ହେବ ।

ରାଏ—ବେଶ୍, ତୁମ ଉପରେ ଏ ଭାର ରହିଲା । ତୁମେ ଘଟଣାଟାକୁ ଯେମିତି ପାର, ତନଖି କରି କହ । ମୁଁ ବିଶ୍ୱାସ କରିବି ।

ଲୋକନାଥ—ମଣିମା, ସେଇ କଥା ହେଲା ।

ରାଏ—ଅଚ୍ଛା, ତୁମେ ଯାଅ; ବିଷୟଟାକୁ ମୁଁ ଟିକିଏ ଭାବେଁ । ବେଲ୍ ମହାପାତ୍ରେ ଆସିଲେ, ମୋ ପାଖକୁ ପଠାଇଦେବାକୁ କହିଦିଅ ।

(ଲୋକନାଥ ପ୍ରସ୍ଥାନ)

ଗୋପୀନାଥ ! ବଡ଼ ସନ୍ଦେହରେ ପକାଇଲ ପ୍ରଭୁ ! ମୁଁ ଯେ କର୍ତ୍ତବ୍ୟ ସ୍ଥିର କରିପାରୁ ନାହିଁ । ବୁଝି-ପାରୁ ନାହିଁ, କିଏ ଦୋଷୀ । ମନରେ ଧାରଣା ହୁଏ ନାହିଁ ଯେ ଲକ୍ଷ୍ମୀ ଭ୍ରଷ୍ଟା ବୋଲି । କେତେବାର ତାକୁ ମନ୍ଦିରମଧ୍ୟରେ ଦେଖିଛି । ମନେ ହୁଏ, ସାକ୍ଷାତ ଲକ୍ଷ୍ମୀ । ଏଡ଼େ ସୁନ୍ଦର ରୂପ । ଏତେ ଭକ୍ତିନକଟରେ ପାପାଚରଣ ସମ୍ଭବ କି ପ୍ରଭୁ ? ନା ନା, ବିଶ୍ୱାସ ହେଉନାହିଁ । ଆଉ ବେଲ୍ ମହାପାତ୍ର । ସେ ବୁଢ଼ା, କେବେ ତାଙ୍ଠାରୁ ମିଛକଥା ଶୁଣି ନାହିଁ । ପ୍ରଭୁ ! ଏ କି ପରୀକ୍ଷାତମର ? ରକ୍ଷାଇଦିଅ ପ୍ରଭୁ !...ଏଇ ତ ବେଲ୍‌ମହାପାତ୍ରେ । ହଉ ଦେଖେଁ, ଶାସନ-ନୀତି ପ୍ରୟୋଗ କରେଁ । ଏଣିକି ଆସ ମହାପାତ୍ରେ ।

ବେଲ୍—ମଣିମା ।

ରାଏ—ମହାପାତ୍ରେ ଯାହା ପଚାରିବି, ସତ୍ୟ କହିବ ।

ବେଲ୍—ସ୍ୱାମୀ ଅନ୍ନଦାତା । ଗୋପାଳଙ୍କ ସାକ୍ଷାତରେ କେବେ ମିଛ କହିବି ନାହିଁ ।

ରାଏ—ମୁଁ ସବୁ ପ୍ରମାଣ ପାଇ ସାରିଛି । ତୁମେ ଆଉ ଲୁଚାଅ ନାହିଁ । ସତ କହ, ମୁଁ ଅଭୟ ଦେଲି ।

ବେଲ୍—କି କଥା ମଣିମା ?

ରାଏ—ସେଇ ବଂଶୀ କଥା ।

ବେଲ୍—ପଚାରିବା ହେଉନ୍ତୁ ।

ରାଏ—କେଉଁଠୁ ପାଇଲ ?

ବେଲ୍—ଆଜ୍ଞା, ମୋ ଝିଅ ଶୋଇବା ଶେଜଉପରୁ ।

ରାଏ—ବେଶ୍, ସେଠିକି ବଂଶୀ କିଏ ସେ ନେଲା ?

ବେଲ୍—ଥରେ ତ କହିଛି ମଣିମା, ତା ମୋତେ ଜଣା ନାହିଁ ।

ରାଏ—ଝିଅକୁ ପଚାରିଥିଲ ?

ବେଲ୍—ଆଜ୍ଞା ।

ରାଏ—ସେ କ'ଣ କହିଲା ?

ବେଲ୍—ସେ କହେ—ତାକୁ ଜଣାନାହିଁ ।

ରାଏ—ଏ କିପରି କଥା ମହାପାତ୍ରେ ? ତୁମେ ହେଲ ଘରର ମାଲିକ । ତୁମ ଅଜଣାରେ ଦିଅଁଙ୍କ ବଂଶୀ ତୁମ ଘରେ ମିଳୁଛି; ଆଉ ତୁମେ କହୁଛ ଜାଣିନାହଁ । ପୁଣି କହୁଛ ଏସବୁ ସତ୍ୟ । ଏକଥା କିଏ ବିଶ୍ୱାସ କରିବ ବୋଲ ?

ବେଲ୍—କେହି ବିଶ୍ୱାସ କରନ୍ତୁ ନ କରନ୍ତୁ ମୁଁ ସତ୍ୟ କହୁଛି ମଣିମା । ମୁଁ ସ୍ୱାମୀରେ ପଦେହେଲେ ମିଛ କହି ନାହିଁ । ସ୍ୱାମୀ ଅନ୍ତର୍ଯାମୀ । ଯାହା ଜାଣେ କହିଲି ।

ରାଏ—ଲୋକେ ଏକଥା ସତ ମଣିବେ ତ ?

ବେଲ୍—ତହିଁକି ମୁଁ କ'ଣ କରିପାରିବି ?

ରାଏ—ଅଚ୍ଛା, ଗୋପୀନାଥ ପଣ୍ଡା ସହିତ ତୁମ୍ଭ କନ୍ୟାର କିଛି ସମ୍ବନ୍ଧ ଅଛି ?

ବେଲ୍—ଆଜ୍ଞା ଅଛି ।

ରାଏ—(ରାଗି) ଅଛି ? ତେବେ ? ତେବେ ? ଏଇନେ କହିଲ ସତ୍ୟ କହୁଛ ? କିଛି ଲୁଚାଇ ନାହଁ । କାଲି ଦୁଆର ମୁଦ ପାଳି କାହାର ଥିଲା ଜାଣ ?

ବେଲ୍—ଜାଣେ ।

ରାଏ—ତେବେ ବଂଶୀ କିଏ ତୁମ ଘରକୁ ନେଇଥିବ ବୋଲି ମନେକର ।

ବେଲ୍—ତାହା ଗୋପୀନାଥେ ଜାଣନ୍ତି । ମୋତେ ଜଣାନାହିଁ ମଣିମା ।

ରାଏ—ଫେର୍ ମିଛ ? ଜାଣ ମୋର ଧାରଣା ତୁମ୍ଭ ପ୍ରତି ଆଉ ତୁମ୍ଭ ଝିଅ ଲକ୍ଷ୍ମୀ ପ୍ରତି କ'ଣ ଥିଲା ? ଆଉ ଜାଣ ମିଛ କହି ମୋ ପାଖେ କ'ଣ ତାର ପରିଣାମ ?

ବେଲ୍—ଜାଣିଛି ମଣିମା । ମାତ୍ର ମୁଁ ଯାହା କହୁଛି ସତ୍ୟ । ଅକ୍ଷରେ ଅକ୍ଷରେ ସତ୍ୟ ।

ରାଏ—ଛି, ଛି, ଆଜଯାଏ ମଣିଷ ଗୋପୀନାଥକୁ ଲୋକେ ଦାଉଁ ଗୋପୀନାଥ କହି ଦାଉଁଙ୍କ ନାମରେ କଳଙ୍କ ରଟାଉଥିଲେ, କି ଧାରଣା ଲୋକଙ୍କର ? ଆଉ ତୁମେ କହୁଛ କଅଣନା କିଛିଜାଣ ନାହିଁ ? ଏବେ ମଧ୍ୟ କହ—ସତ୍ୟ କହ—କିଛି ଜାଣିନା ତୁମେ ?

ବେଲ୍—ମଣିମା, ମୁଁ ଆଉ ଅଧିକ କିଛି ଜାଣେ ନାହିଁ । ସତ୍ୟ କହୁଛି ।

ରାଏ—ହଉ, ବଳେ କହିବ, ତୁମ ଝିଅ କାଡ ଦେଉଳ କୁ ଯାଏ ?

ବେଲ୍—ଯାଏ ।

ରାଏ—କାହିଁକି ?

ବେଲ୍—ଠାକୁରଙ୍କ ହାର ଲାଗି କରିବାକୁ ।

ରାଏ—ସେଠି ଗୋପୀନାଥ ପଣ୍ଡା ସହିତ ତା'ର ଦେଖାହୁଏ ?

ବେଲ୍—ହେଉଥିବ ।

ରାଏ—କଥାବାର୍ତ୍ତା ?

ବେଲ୍—ଜାଣେ ନାହିଁ ।

ରାଏ—ଗୋପୀ ତୁମ ଘରକୁ ଯା' ଆସ କରେ ?

ବେଲ୍—କରେ ।

ରାଏ—ତେବେ ? ତେବେ ମଧ୍ୟ ତୁମେ କହିବାକୁ ଚାହଁ ଯେ ବଂଶୀ କିଏ ଆଣି ତୁମ କନ୍ୟାକୁ ଦେଇଛି ସେକଥା ତୁମେ ଜାଣିନାହଁ । ତେବେ ମଧ୍ୟ ତୁମେ କହିବାକୁ ଚାହଁ ଯେ ତୁମ କନ୍ୟା ସହିତ ଗୋପୀର ପାପ ସମ୍ପର୍କ ନାହିଁ ।

ବେଲ୍—( କାନରେ ହାତ ଦେଇ ) ନାରାୟଣ, ନାରାୟଣ । ଗୋପୀ ଯେ ଲକ୍ଷ୍ମୀର ମାଉସୀପୁଅ ଭାଇ, ମଣିମା ।

ରାଏ—ରଖ,ରଖ । ମୋର ତୁମପ୍ରତି ଅନ୍ୟ ଧାରଣା-ଥିଲା । ବେଲେଶ୍ୱର । ଏତେଦିନ ପର୍ଯ୍ୟନ୍ତ ତୁମକୁ ମୁଁ ଚହ୍ନିପାରି ନଥିଲି । ଯାଅ, ଆଜ ତୁମେ ବନ୍ଦୀ-ହୋଇ ଥାଅ । କାଲି ସର୍ବ ସମକ୍ଷରେ ତୁମର ବିଚାର ହେବ । କଠିନ ଶାସ୍ତି ଦେଇ ତୁମର ଏ ପ୍ରବଞ୍ଚନାର ପ୍ରତିଫଳ ଦେବି ।

ବେଲ୍—ହଁ, କିମ୍ଭୃତ କେଉଁ ବାଧିତେ ?

ରାଏ—ରଖ, ପାଣ୍ଡିତ୍ୟ ରଖ ।ଏ । କିଏ ଅଛରେ ?

ଲଳିତା—(ପ୍ରବେଶି) ମୁଁ ଅଛି ରାଜା ।

ରାଏ—(ଆଶ୍ଚର୍ଯ୍ୟ ହୋଇ) ତୁମେ ? କିଏ ତୁମେ ? ମୁଁ ତୁମକୁ ତ ଡାକିନାହିଁ ।

ଲଳିତା—ନା, ମତେ କେହି ଡାକିନାହିଁ । ଏମିତି ଆସେଁ । ମନକୁ ଆସେଁ ।

ରାଏ—ତେବେ ଏଠାକୁ କାହିଁକି ?

ଲଳିତା—ପ୍ରୟୋଜନ ଅଛି ।

ରାଏ—ପ୍ରୟୋଜନ ? ନାରୀର କି ପ୍ରୟୋଜନ ?

ଲଳିତା—କାହିଁକି ? ତୁମେ ଏ ଦେଶର ରାଜା । ପ୍ରୟୋଜନ ତୁମଠାରେ କି କେବଳ ନରର ? ନାରୀର ନାହିଁ ?

ରାଏ—(ଆଶ୍ଚର୍ଯ୍ୟ ହୋଇ ) ଅଦ୍ଭୁତ ।...ଏନାରୀ ।

ଲଳିତା—ଉତ୍ତର ଦିଅ ରାଜା, ତୁମହେଲ କାହିଁକି ? ନାରୀର କି ତୁମଠାରେ ପ୍ରୟୋଜନ ନାହିଁ ?

ରାଏ—ଏ କଥାର ଅର୍ଥ କ'ଣ ?

ଲଳିତା—ଅଛି ।

ରାଏ—ହଁ, ପ୍ରୟୋଜନ ଥାଇପାରେ । ନାରୀର ମଧ୍ୟ ପ୍ରୟୋଜନ ଅଛି । ଦାବୀଅଛି । ମାତ୍ର ତୁମର କି ପ୍ରୟୋଜନ ମା'ଅ ? ବିଶେଷତଃ ରାତିରେ ?

ଲଳିତା—ସେହିପରି ଗୁରୁତର ।

ରାଏ—ନିର୍ଭୟରେ କହ ମା'ଅ । ପ୍ରସ୍ତୁତ ଅଛି-ଶୁଣିବି ।

ଲଳିତା—କହିବି, କିନ୍ତୁ...( ବେଲେଶ୍ୱରଙ୍କ ପ୍ରତି ) ଏ କିଏ ?

ରାଏ—ସେ ଜଣେ ବନ୍ଦୀ ।

ଲଳିତା—କାହିଁ ? ମୁକ୍ତପରି ଛୁଡ଼ା ହୋଇଛନ୍ତି ତ ।

ରାଏ—ନା, ସେ ବନ୍ଦୀହେବେ ।

ଲଳିତା—ତେବେ କହୁଲେ ଯେ ସେ ବନ୍ଦୀ । କ'ଣ ବିଚାରର ପୂର୍ବରୁ ? ବିଚାରର କ'ଣ ଦରକାର ?

ରାଏ—ନା ।

ଲଳିତା—ତେବେ ସେ ବନ୍ଦୀ କିପରି ? ବିଚାରର ପୂର୍ବରୁ ଅନ୍ତତଃ ସେ ମୁକ୍ତ ।

ରାଏ—ନା, ସେ ଅପରାଧୀ ।

ଲଳିତା—ତା'ର ପ୍ରମାଣ ?

ରାଏ—ଲୋକମତ ।

ଲଳିତା—ତେବେ ଆଉ ମୋର ପ୍ରୟୋଜନ ନାହିଁ ତୁମଠାରେ ରାଜା । ମୋର ଦାବି ତୁମ ବିଚାରକୁ ଅପେକ୍ଷା କରେ ନାହିଁ । ଆସୁଛି ମୁଁ ।

ରାଏ—( ଉତ୍କଣ୍ଠିତଭାବେ ) କିଏ, କିଏ ତୁମେ ? ଅଦ୍ଭୁତ ! ଶୁଣ ମାଆ !

ଲଳିତା—( ଫେରିଆସି ) ଆଉ କାହିଁକି ?

ରାଏ—କି ବିଚାର ଗୁହ ?

ଲଳିତା—ତା' ପୂର୍ବରୁ ଶୁଣିବାକୁ ଚାହେଁ, ଏ ଦେଶର ରାଜାଙ୍କ ମନରେ ଦୃଢ଼ତା, ପ୍ରାଣରେ ବିଶ୍ୱାସ, ଆତ୍ମାରେ ପ୍ରତୀତି ଅଛି କି ନା ।

ରାଏ—ଅଛି, ଅଛି ମାଆ, ନିଶ୍ଚୟ ଅଛି ।

ଲଳିତା—ବାକ୍ୟରେ ମାତ୍ର !

ରାଏ—ନା ମାଆ ।

ଲଳିତା—ତେବେ କହ ରାଜା, ଏ ବ୍ରାହ୍ମଣ ଅପରାଧୀ ନା ନିରପରାଧ ? ଦୋଷୀ ନା ନିର୍ଦ୍ଦୋଷ ? ତା'ପରେ ମୋର ବିଚାର । କହ ରାଜା । ତୁମେ ଲୋକ-କଥାରେ ମାତ୍ର ନିର୍ଭର କରି ଭାସିଯାଅ— ନା ଆତ୍ମବିଶ୍ୱାସ, ନିଜ ବିବେକର ବାକ୍ୟ, ପ୍ରାଣର ଆଦେଶକୁ ଅପେକ୍ଷା କର ?

ରାଏ—ପ୍ରାଣର ଆଦେଶ ଅପେକ୍ଷା କରେଁ ମାଆ ।

ଲଳିତା—ତେବେ ପ୍ରାଣର ଧାରଣା, ବିବେକର ଆଦେଶ କଅଣ କହେ-ଏହି ବ୍ରାହ୍ମଣ ଅପରାଧୀ ?

ରାଏ—( ଅଳ୍ପ ନୀରବ ରହି ) ତୁମର କିପରି ଅନୁମାନ ମାଆ ?

ଲଳିତା—ମୋର ଅନୁମାନ ? ରାଏ ସାହେବ ଭକ୍ତ । ଅନ୍ତର ତାଙ୍କର ପବିତ୍ର—ଧାରଣା ମଧ୍ୟ ସେହିପରି ମହତ୍ ।

ରାଏ—ନା ମାଆ, ଏ ଅନୁମାନ ଠିକ୍ ନୁହେଁ । ତଥାପି ମୋର ଧାରଣା ନୁହେଁ ଯେ ଏ ବ୍ରାହ୍ମଣ ଅପରାଧୀ ।

ଲଳିତା—ତେବେ ବ୍ରାହ୍ମଣ, ତୁମେ ମୁକ୍ତ ।

ରାଏ—( ନୀରବ )

ଲଳିତା—( ବ୍ରାହ୍ମଣପ୍ରତି ) ପ୍ରଥମେ ତୁମକୁ ତ ଛାଡ଼ିଦିଆଯାଇଥିଲା । ପୁଣି ରାଜାଙ୍କ ପାଖକୁ ଅଣାଇଁ ତାଙ୍କର ତୁମପ୍ରତି ଏ ଧାରଣା ଜନ୍ମାଇଲା କିଏ ବ୍ରାହ୍ମଣ ?

ବୈଦ୍ୟ—କାହାକୁ କହିବି ମାଆ ? ସବୁ ନିୟତିର ନିର୍ଦ୍ଦେଶ ।

ଲଳିତା—କହ ରାଜା, ତୁମର ପବିତ୍ର ଧାରଣା ବା ବଦଳାଇଲା କିଏ ?

ରାଏ—ସବୁ ନିୟତି ମାଆ ।

ଲଳିତା—ତେବେ ତୁମେ କହ ରାଜା, ଏ ବ୍ରାହ୍ମଣ ବର୍ତ୍ତମାନ ମୁକ୍ତ ।

ରାଏ—କିଏ ତୁମେ ନାରୀ ? ଉତ୍ତରଶକ୍ତିପରି, ସ୍ୱପ୍ନବାଣୀପରି ତୁମର ଏ ଆଦେଶ ଲଙ୍ଘନ ଯେ ମୋପକ୍ଷରେ ଅସମ୍ଭବ ହୋଇପଡ଼ିଲାଣି ! ପ୍ରଥମେ ତୁମର ପରିଚୟ ଦିଅ ତ ମାଆ ।

ଲଳିତା—ପରିଚୟ ? ମୋର ?

ରାଏ—ହଁ ମାଆ, ତୁମର ।

ଲଳିତା—କିଛି ବିଶେଷତ୍ୱ ନାହିଁ । ସାରା ଜଗତ ବୁଲେଁ; ଜଣେ ସନ୍ନ୍ୟାସିନୀ ମାତ୍ର । ଆଉ ଅଧିକ ପରିଚୟ ପରେ ।

ରାଏ—ମୋଠାରେ ପ୍ରୟୋଜନ ?

ଲଳିତା—ଅଛି, ପରେ । କହିଲ ନାହିଁ ତ ବ୍ରାହ୍ମଣ ମୁକ୍ତ ନା ବନ୍ଦୀ ?

ରାଏ—ନା, ସେ ମୁକ୍ତ । କିନ୍ତୁ ମୋର ସନ୍ଦେହ ମୋଚନ କରିବାକୁ ହେବ ।

ଲଳିତା—ହେବ, ପରେ । ଯାଅ ବ୍ରାହ୍ମଣ । ପବନ ତୁମେ, ମୁକ୍ତ ତୁମେ, ଯାଅ ।

ବେଲ୍—ଅସୁଛି ଦେବେ ମଣିମା ।

ରାଏ—ଅଚ୍ଛା । ( ବେଲ ପ୍ରସ୍ଥାନ )

ଲଳିତା—ରାଜା ତୁମେ । ଅନ୍ଧବିଶ୍ୱାସର ବଶବର୍ତ୍ତୀ ହେବା ତୁମକୁ ସାଜେ ନାହିଁ ରାଜା । ବେଲେଶ୍ୱର ପବନ । ତୁମ୍ଭର ମୁକ୍ତିଦାନ ଆଦେଶ ଉଚିତ ହୋଇଛି ।

ରାଏ—ଉଚିତ-ଅନୁଚିତ କିପରି ବୁଝିଲ ମାଆ ? ତୁମର ପରିଚୟ ଦିଅ ମୋତେ ।

ଲଳିତା—ଅନେକବେଳୁଁ ତ ଦେଲିଣି ।

ରାଏ—କହିଲ ନାହିଁ ମଧ୍ୟ ମୋ ନିକଟରେ କି ପ୍ରୟୋଜନ ।

ଲଳିତା—ଥିଲା, ସରିଛି । ଅଧିକ ପରିଚୟ ପରେ । ( ପ୍ରସ୍ଥାନ )

ରାଏ—ଶୁଣିଯାଅ, ଶୁଣିଯାଅ ମାଆ ।

ଲଳିତା—( ନେପଥ୍ୟରୁ ) ପରେ, ପରେ ।

ରାଏ—ଏଁ, ସମସ୍ତ ଆଜି ପ୍ରହେଳିକା । ଗୋପୀନାଥ, ଏ କି ମାୟା ? ସମସ୍ତ ଯେ ମୋତେ ସ୍ୱପ୍ନପରି ଲାଗେ । ଦୈବୀବାଣୀପରି ଜଣେ ନାରୀ ଯାହା ଆଦେଶ ଦେଲା, ଦୁର୍ବଳହୃଦୟ ଲୋକଭଳି ବିନା ଆପତ୍ତିରେ ମୁଁ ତାହା ମାନିନେଲି । ତଥାପି ବୁଝିପାରିଲି ନାହିଁ, କିଏ ସେହି ନାରୀ । ପ୍ରବଞ୍ଚନା କର ନାହିଁ ପ୍ରଭୁ । ସତ୍ୟ ଉଦ୍‌ଘାଟନ କର । ଜୟ ଗୋପୀନାଥ । ଜୟ ଗୋପୀନାଥ ।। ଜୟ ଗୋପୀନାଥ ।।। ( ପଟ୍ଟପତନ )

---

## ପଞ୍ଚମ ଦୃଶ୍ୟ

( ରଘୁଚରିତାରବାଗ୍ମୀ ପଥ )

( ଲକ୍ଷ୍ମୀ ଖାଲିଫୁଲଡାଲି ଧରି ଅସୁଛି । ଲଳିତା ଗାଇ-ଗାଇ ପ୍ରବେଶ )

(ଗୀତ)

ଗୃହାଁ ରେ ଅଛ ମଳୟ, ମେଲି ଦୁ'ନୟନ
କୁସୁମ-ଗଣ୍ଡ ପରଶେ ପ୍ରେମର ଚୁମ୍ବନ ।।୦।।
ତା'ର ନାହିଁ ଦିନ-ରାତ ପୀରତି ଉଦାସ ଚିତ୍ତ
କରେ୍ଲେ ଡାକଇ କିତ ମୁରଲୀନିଃସ୍ୱନ ।।୧।।
ଯେଣିକି ଦେଖାଏ ବାଟ ଦେଖେ ସେ ପ୍ରେମର ନାଟ
ବସାଏ ରସର ହାଟ ନବଘନ ଶ୍ୟାମ ।।୨।।

ଲଳିତା—( ମଧୁର ହସି ) ଲକ୍ଷ୍ମୀ ।

ଲକ୍ଷ୍ମୀ—(ନୀରବ)

ଲଳିତା—ଲକ୍ଷ୍ମୀ । ( ଲକ୍ଷ୍ମୀ ମୁଖ ଫେରାଇ ଅଚଞ୍ଚଳା-ପରି ଅନାଇଁରହିଲେ )

ଲଳିତା—(ଅଳ୍ପ ହସି) ଚିହ୍ନିପାରୁ ନାହଁ ପରା ?

ଲକ୍ଷ୍ମୀ—( ନୀରବ )

ଲଳିତା—ଏଡ଼େ ବେଗେ ପାଶୋରିପକାନ୍ତି ନା ?

ଲକ୍ଷ୍ମୀ—କାହାକୁ ?

ଲଳିତା—କାହିଁକି ? ମତେ ?

ଲକ୍ଷ୍ମୀ—ଚନ୍ଦ୍ରାବଦଅ ।

ଲଳିତା—ନା, ତମ କଥା ଶୁଣି ଚିତ୍ତ ମୋର ଫାଟି-ଯାଉଛି । ମୁଁ ଅଭିମାନ କରିବି ।

ଲକ୍ଷ୍ମୀ—କାହିଁକି ?

ଲଳିତା—ତୁମେ କଅଣ ଏମିତ କରନ୍ତ ନାହିଁ ? ତୁମ ଚିତ୍ତ କଅଣ ଫାଟିଯାଆନ୍ତା ନାହିଁ ?

ଲକ୍ଷ୍ମୀ—କାହିଁକି ?

ଲଳିତା—କଣାଲୋକ, ସ୍ନେହୀଲୋକ, ଚିହ୍ନାଲୋକ-ନ ପଚାରିଲେ···

ଲକ୍ଷ୍ମୀ—କହିଲି ପରା ଚନ୍ଦ୍ରାବଦଅ ।

ଲଳିତା—ମୁଁ ପରା ତୁମ ସାକ୍ଷୀ ।

ଲକ୍ଷ୍ମୀ—କି ସାକ୍ଷୀ ? କଅଣ କହୁଛ, କିଛି ବୁଝିଲି ନାହିଁ ।

ଲଳିତା—ଫୁଲସାଙ୍ଗେ ମିଶ ବସିଲବେଳେ···ସେଇ ବଉଳ-ହାର ମ ? କେତେ ଫଟେଇ-ଫଟେଇ ପଚାରୁଥା' ? ସେତେବେଳେ କିଏ ସାକ୍ଷୀ ? ମୁଁ ତ, ପୁଣି ସେହି କୁସୁମବନା-କୁଞ୍ଜଭିତରେ···ଯା, ଆଉ କହିବି ନାହିଁ ।

ଲକ୍ଷ୍ମୀ—ତମେ···କେମିତ···

ଲଳିତା—( କଥାରେ ବାଧା ଦେଇ ) ଏକା କଅଣ ତମର କି ? ରାଇକଣ୍ଠାଯାକର ସାକ୍ଷୀ ନା— ସେଦିନ ସେମିତ,·· ଦେଖିଛ ନା ଠାକୁରଙ୍କର ସେ ଚନ୍ଦନ-ପୋଖରୀଟା ?

ଲକ୍ଷ୍ମୀ—ଦେଖିଛି, କଅଣ ହେଲା ?

ଲଳିତା—ତା' ପାଖରେ ସେବକ ପିଲାମାନଙ୍କର ଯାଗା-ଘର ।

ଲକ୍ଷ୍ମୀ—ହଁ ।

ଲଳିତା—ସେଇଠି···

ଲକ୍ଷ୍ମୀ—ସେଇଠି କଅଣ ହେଲା ?

ଲଳିତା—ଛି ଛି, ମୋତେ ଭାରି ଦୁଃଖ ଲାଗିଲା । ପ୍ରେମରେ ଯେ ଜୀବନଟା ଢାଳିଦିଏ, ମୁଁ ତା'ପାଇଁ ମୋ ଜୀବନଟା ଭସାଇଦିଏଁ । ମରିଯାଏଁ ମୁଁ ଦିନରାତି ତା'ଲାଗି । ସତେ ଲକ୍ଷ୍ମୀ, ମୋତେ ଭାରି ଦୁଃଖ ଲାଗିଲା ।

ଲକ୍ଷ୍ମୀ—କାହିଁକି ?

ଲଳିତା—ଶୁଣି ନାହିଁ ? ସେମାନେ ପରା କହିଲେ···

ଲକ୍ଷ୍ମୀ—କ'ଣ କହିଲେ ?

ଲଳିତା—କହିଲେ ପରା ଲକ୍ଷ୍ମୀଟା ଇମିତି, ସିମିତି···ଏ ରାଇକଗୋଠାକର କଥା । ଛାଡ଼, କି ମିଳିବ ସେଥିରୁ ? ମନ୍ଦ ଲୋକଗୁଡ଼ାକ । କେତେ କଥା କହିଗଲେ । ଛାତିକି ପଥର କରି ମୁଁ ଖାଲି ଶୁଣୁଥାଏଁ । ଆଖିରୁ ମୋ'ର ଦ'ଧାର ଲୁହ ଗଡ଼ିପଡ଼ିଲା । କେତେ କଥା କହିଗଲେ । ମୁହଁରେ ବାଡ଼ବତା ନାହିଁ । ଛିଃ ।

ଲକ୍ଷ୍ମୀ—କଅଣ କହିଲେ ?

ଲଳିତା—ଶୁଣିବ ? ଶୁଣି କିଛି ଲାଭ ନାହିଁ । କି ମିଳିବ ସେଥିରୁ ଯେ ?···ଆଚ୍ଛା ଶୁଣ, ସେଇ ଠାକୁରଙ୍କ କଥା ଆଉ ଲକ୍ଷ୍ମୀ କଥା । କୋଉଦିନ ପରା ଦିଅଁଙ୍କ ବଇଁଶୀଟା ତୁମ ଘର ଦୁଆରୁ ମିଳିଲା । ଓଢ଼ଣିଟା ପରା ତୁମ ଶୋଇବାଶେଯରୁ ପୂଜାରୀ ପାଇକରି ଆଣିଲା । ଇମିତି କେତେକେତେ କଥା ···ଅପବାଦ । ଅପବାଦ । ସହିପାରିବ ଟି ? ଡର ନାହିଁ ତମର ?

ଲକ୍ଷ୍ମୀ—କାହାକୁ ?

ଲଳିତା—ଏଇ ଅପବାଦକୁ । ଏଇ ଲୋକନିନ୍ଦାକୁ । ଛାଡ଼ ସେକଥା । କି ମିଳିବ ସେଥିରୁ ଯେ ? କୁଆଡ଼େ ଯାଇଥିଲ ଏ ସଞ୍ଜ-ଅନ୍ଧାରରେ ଏକୁଟିଆ ? ଜାଣିଛ·ତ ତମର ବହୁତ ଭଗାରି । ଏକୁଟିଆ ଏମିତ ଯାଆନ୍ତି ନା ? କୁଆଡ଼େ ଯାଇଥିଲ ?

ଲକ୍ଷ୍ମୀ—ଯାଇଥିଲି ଦିଅଁଙ୍କ ପାଖକୁ ।

ଲଳିତା—କୋଉ ଦିଅଁ ମ ? ଆମ ଗୋପୀନାଥଙ୍କ ପାଖକୁ ?

ଲକ୍ଷ୍ମୀ—ହଁ ।

ଲଳିତା—କଅଣ ନାଇତ ଯାଅ ଏଇ ଫୁଲସଞ୍ଜବେଳେ ?

ଲକ୍ଷ୍ମୀ—ଯାଏଁ ।

ଲଳିତା—କାହିଁକି ?

ଲକ୍ଷ୍ମୀ—ଫୁଲ ଦେବାକୁ ।

ଲଳିତା—କଅଣ ନାଇତ ?

ଲକ୍ଷ୍ମୀ—ହଁ ।

ଲଳିତା—ଆଚ୍ଛା, ଦିନେ ନ ଗଲେ, ଦିନେ ଫୁଲ ନ ଦେଲେ···( ଲକ୍ଷ୍ମୀକୁ ଚାହିଁଲେ )

ଲକ୍ଷ୍ମୀ—( ନୀରବରେ ଲଳିତାକୁ ଅନାଇଁ କରୁଣ ଆଖି ପକାଇ ମୁହଁ ତଳକୁ କଲେ )

ଲଳିତା—ଓହୋ, ନାଇଁ ନାଇଁ; ସେକଥା ମୁଁ ପଚାରୁ ନାଇଁ ଆଉ । ଅଜି ଫୁଲ ଦେଲ ନା ?

ଲକ୍ଷ୍ମୀ—ଦେଲି ।

ଲଳିତା—କୋଉଠି ?

ଲକ୍ଷ୍ମୀ—ଚରଣତଳେ ।

ଲଳିତା—ଦେଲାବେଳେ କ'ଣ ଭାବୁଥିଲ ?

ଲକ୍ଷ୍ମୀ—ଭାବୁଥିଲି ? ମୁଁ ?

ଲଳିତା—ହଁ, ତୁମେ । ଭାବୁ ନ ଥିଲ ?

ଲକ୍ଷ୍ମୀ—କେଜାଣି ? ତୁମକୁ କିଏ କହିଲା ?

ଲଳିତା—ମ, କିଏ କହନ୍ତା କାହିଁକି ? ମୁଁ ପରା ସାକ୍ଷୀ, କଅଣ ଭାବୁଥିଲ, କହ ।

ଲକ୍ଷ୍ମୀ—( ପୁଣି ପୂର୍ବପରି ଅନାଇଁଲେ )

ଲଳିତା—ମନଦୁଃଖ କଲ କି ? ନା ନା, ହାରଟି ଠାକୁର ଠିକ୍ ସେମିତ ଗଳାରେ ପିନ୍ଧିଛନ୍ତି ।

ପ୍ରେମରେ ଦେଲ ନା—ସରଳ ହୃଦୟଟି ଖୋଲି ନ କହିଲେ କଅଣ ହେବ ? ତୁମେ ସିନା ନିଜକୁ ଜାଣୁ ନାହିଁ, ସେ ମନକଥା ଜାଣନ୍ତି ଯେ । ଲୋକେ କଅଣ ଏସବୁ ବୁଝନ୍ତି ? ବାରଲୋକେ ବାରକଥା କହନ୍ତି । କହନ୍ତୁ । ସେତେବେଳେ ବି ଏମିତି କହୁଥିଲେ । (ଦୁଃଖରେ) ଆହା । କେତେ ସହିଛନ୍ତି ।

ଲକ୍ଷ୍ମୀ—କିଏ ? କାହାକଥା ? ମୁଁ ତ କିଛି ବୁଝିପାରୁ ନାହିଁ···

ଲଳିତା—କିମିତ ବୁଝିବ ? ସେ ତ ଅନେକ ଦିନର କଥା । ରାଧା ବୋଲି ଜଣେ ଥିଲେ । ବହୁତ ସହିଛନ୍ତି । ତୁମଠୁଁ ବେଶି । ହଁଏ, ହଁଏ ସିମିତ ।

ଲକ୍ଷ୍ମୀ—କିଏ ତୁମେ ? କଅଣ ଏସବୁ କହୁଛ ? ଧର ମୋତେ । ମୋ ମୁଣ୍ଡ ବୁଲାଉଛି । ମୋତେ ଟିକିଏ ଛାଡ଼ିଦେଇଆସ ।

ଲଳିତା—ବୁଲେଇବ ତ । ବୁଲେଇବାକୁ ଆହୁରି ବାକି ଅଛି । ବହୁତ ଅଛି । ଯିବ ? ଆସ । ମୋ ସାଙ୍ଗେ ଆସ । ନେଇଯିବି ଆସ । (ଲକ୍ଷ୍ମୀକୁ ଧରିଲେ

ଲକ୍ଷ୍ମୀ—କୋଉଠିକି ଡାକୁଛ ? କୋଉଠିକି ଯିବି ?

ଲଳିତା— (ଗୀତ)

ଆସ ଗୋ ଆସ ଆସ,
ବଉଳ-କୁଞ୍ଜରେ, ଏ ଫୁଲସଞ୍ଜରେ
ନାଗର କରଛି ଆଶ ଗୋ ।୦।
ଅକୁଳ ଅନ୍ତରେ ମନଚୋର ତୋ'ର
ଡାକଇ ଲକ୍ଷ୍ମୀ, ବସି ବନେ ଘୋର
ଅଭ କି ନିନ୍ଦା ଅଭ କି ଲଜ୍ଜା
ବାଏ ମୁରଲୀ ପୀତବାସ ଗୋ ।୧।
(ବିଷ୍ଣୁମୂର୍ତ୍ତି)

— — —

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ସାକ୍ଷୀଗୋପାଳଙ୍କ ମନ୍ଦିରର ପଶ୍ଚାତ୍‌ଭାଗର ବକୁଳ-ବନ । ଜ୍ୟୋତ୍ସ୍ନା ରାତ୍ରି, ଉପବିଷ୍ଟ ଗୋପୀନାଥ ଓ କୋଳରେ ତାଙ୍କର ଲକ୍ଷ୍ମୀ ଅର୍ଦ୍ଧଶାୟିତା )

ଶ୍ରୀ ଗୋପୀନାଥ— (ଗୀତ)

ଭାସି ଭାସି ଆସେ ନବ ନୀରଦେ
ଜୋଛନା ହସିତ ନୀରେ
ସେହି ମୁଖ ପ୍ରତିଚ୍ଛବି ନୀରବ ଚଳିବାଉଦେ ॥୦॥
କୁସୁମ ଅଧରେ ଧୀରେ
ଜାହାର ମଧୁର ସୁଧା ପରଶେ ସମୀର ଗନ୍ଧେ ।୧।
ସାରାଟି ଜୀବନ ତା'ର
ପ୍ରେମଭରେ ଥର ଥର
ତା'ଲାଗି ପରାଣ ମୋର ନିରତ କାନ୍ଦେ ।୨।
ସରଳତା ଲାବଣ୍ୟ ପ୍ରତିମା
ଜାଣେ ନାହିଁ ମାୟା ମୋହ ଛଳ ।
ଜାଣେ ଏକା ଜଗତରେ
ପ୍ରାଣଦିଆ ପ୍ରେମ ।
ଅଜାତରେ ଜାଣେ ଢାଳି ମନ ।
କାହିଁ ପ୍ରତିଦାନ ତା'ର ଏ ତିନି ଭୁବନେ ?
ଚନ୍ଦ୍ର କାହସିତ ଏହି ବକୁଳର କୁଞ୍ଜେ
ଗୁଣୁ ଗୁଞ୍ଜେ ଅଳି,
ଗାଏ ପ୍ରେମଗୀତ ଫୁଲକାନେ
ମନ୍ଦ ମନ୍ଦ ସମୀରଣ—
ବହେ ଧୀରେ ଧୀରେ ।
ବାସଚୋର—
ଚୋରିକରେ ତହିଁ ସଙ୍ଗେ କୁସୁମର ମନ ।
ବୃନ୍ତଚ୍ଛିନ୍ନ ପ୍ରଫୁଲ୍ଲ ବକୁଳ
ଟୁପ୍‌ଟୁପ୍ ପଡ଼େ ଝଡ଼ି ।
କହେ ସତେ, କେତେ ମନ-କଥା
ଗୋପନେ ଗୋପନେ ।
ବିଜନର ସେହି ଅଶରୀରୀ ଆତ୍ମା
ଶୁଣେ ତା'ର ମରମ ବେଦନା ।
ଭାଗ୍ୟଧର ଯେବା ପରଶେ କୋମଳ ତନୁ ।
ଉଠ ଲକ୍ଷ୍ମୀ । ଉଠ ସଖୀ ।
ଏସନ ସମୟେ—
ଏକାକୀ ବସାଇ ମୋତେ
ପ୍ରକୃତିର ଏ ସଜଡ଼ା କମ ରଙ୍ଗାଳୟେ —
ଘୁମାଇପଡ଼ିଲ ପରି ସରଳା ଅବଶେ ।

ଅହା, ଅହା ।
କଞ୍ଜ ନନ୍ଦ ଗୃହମୁଖ ଛବ
ପ୍ରଶାନ୍ତ ସୁନ୍ଦର
ଚର ପ୍ରେମ ରେଖାରେ ଭୂଷିତ ।
ଘୁମନ୍ତ ନୟନ ତହିଁ
କିବା ଶୋଭା ।
ମରଯାଏଁ କି ନା,
ସୁଘନ କୁନ୍ତଳ ଭେଦ—
ଉଦ୍ଭାସିତ ସତେ ସୁଧାନିଧି
ସ୍ମିତ କରେ ହସାଇ ଜଗତ ।
ସାରା ବସୁନ୍ଧରା
ସେଇ ପ୍ରେମ ସୁଧା ଘେନ—
ମତାଏ, ରସାଏ ।
ଭରା ଏ ବସନ୍ତ—
ସେହି ହସେ ମଧୁଆଳ ସିନା ।
ଉଠ, ଉଠ ଧନ, ଉଠ ଲକ୍ଷ୍ମୀ ।
ଉଠ ବନୋଦନୀ ।
ଏହି ଶୁଣ—
ତରୁଚରତଟେ
ବରହବଧୁରା ଚକୋରୀ-ନସ୍ୱନ ।
ଚନ୍ଦ୍ର ନଶା ହେଉ ପଛେ
ଅତ ସୁଖକର—
ବଢ଼ାଏ ବରହ-ଜ୍ୱାଳା
ବଧୁରା ବଧର ।
ଉଠ ସାଥୀ । ଉଠ ବନ୍ଧୁ । ଉଠ ଲକ୍ଷ୍ମୀ ।
ତନ୍ଦ୍ରାବଜଡ଼ତ ସେହ ଅଳସ ନୟନ ମେଲ
ଚୁହଁ ବାରେ ସୁବଦନୀ । (ମୁଖ ନରୀକ୍ଷଣ କଲେ)
ନାଃ,
ଘୁମଘୋରେ ଜ୍ଞାନହୀନା ।
ଦେଖେ କେଉଁ ସ୍ୱରଗର ସ୍ୱପ୍ନ ।
କନ୍ତୁ ବୁଝେ କି ସେ ? ତା'ବନା—
ଏକା ଏ ଜୀବନେ କେତେ କଷ୍ଟ ?
ତା'ବନା ଯେ ଅସୁନ୍ଦର ସବୁ ।
ପଦେ କଥା ତା'ର
ଅଧେ ହସ ତା'ର
ସେହ ମୋ ବସନ୍ତ ।
ସେହ ମୋର—
ନୀରବ ନଶୀଥବାଣୀ
ଦୂରାଗତ ବନପ୍ରାନ୍ତ ପିକର ଝଙ୍କାର ।

( ଗୀତ )

ଜୋଛନା ହସେ, ନରାଶ କୁଞ୍ଜେ,
ଏକା ଟି ପ୍ରାଣ କାଟେ ଗୋ ।
ଦ'ପଦ କଥା, ନ କହ ସାଥି,
ବୁକୁଟି ସାରା ଫାଟେ ଗୋ ।।୦।।
ବଉଳ-ବନେ, ମଳୟ ବାଜେ,
ଶିହର ମରେ ଦୁଃଖେ ମୁଁ ଗୋ ।
ପଲକ ମିଳନ, ପିଚ୍ଛିଲ ବାର,
ଭୋଗିବ କିବା ସୁଖେ ଗୋ ? ।୧।
ସରଗ ଦେଶୁଁ, ଅମଳ ଏ କ
କମଳ-ରାଣୀ କୋଳେ ,
ଅବଶ ଘୁମେ, ଅଳସ ଅଙ୍ଗ,
ବାହୁର ମାଳା ଦୋଳେ ।
ଉଠ, କଥା କହ, ଉଠ ଗୋ ସାଥି ।
ଏକା ଯେ ଭାଙ୍ଗି ପଡ଼ଇ ଛାତ,
ମରମ କାନ୍ଦେ, ନୀରବ ନୀର
ନୟନକୋଣେ ଫୁଟେ ଗୋ ।୨।

ଲକ୍ଷ୍ମୀ—(ସ୍ୱପ୍ନରୁ ଉଠିବାପରି)
ଏଁ, କିଏ ସତେ ?
କିଏ ସତେ ବଜାଏ ମୁରଲୀ ଦୂର ବନେ ?
କାହିଁ, କେତେ ଦୂର ଯାଇଥିଲି ଭାସି—
ସେହ ମୁରଲୀର ତାନେ ।
ଅଲୋକ ଧବଳ—
କେଉଁ ଦେବତାର ଦେଶେ,
ଫୁଟେ ପୁଣି ଦବ୍ୟ ଜ୍ୟୋତିଃପୁଞ୍ଜ ।
ତହିଁମଧ୍ୟ
ଚିକ୍କଣ କାଳିଆ
ତିଭଙ୍ଗ ଚୂଳିଆ
ପୀତଦୁକୂଳିଆ···କିଏ ?
ବରହବଧୁର ସେହ

ମୁରଲୀର ତାନେ
ଆକୁଳ ଅନ୍ତରେ
ଗାଏ, ରାଧା । ରାଧା ।
ବହେ ଅଶ୍ରୁ—ପୁଲକ ସର୍ବାଙ୍ଗ,
ପ୍ରେମେ ତନୁ ଜରଜର
ଗାଏ, ରାଧା । ରାଧା ।
ତାନେ ତା'ର
ଭରେ ଦଗ ଦଗ ।
ପ୍ରତିଧ୍ୱନି, ସମବେଦନାର କଣ୍ଠେ
ଗାଏ—ରାଧା, ରାଧା ।
କହ ବନ୍ଧୁ, କହ ସଖା, କହ ସାଥି,
ଦେଖିଲି ଯା—
ସପନ ନା ସତ୍ୟ ? ନିଦ୍ରିତ ନା ଜାଗ୍ରତ ମୁଁ ?
କିଏ ସେହି ରାଧା ? କାହିଁ ସେହି ବଧା ?
କାହାଲାଗି ସାଥି ମୋର
ଅଥୟ ମାନସ ?
ମନେ ହୁଏ ମୋର
ନବ ନଟବରବେଶେ
ତୁମେ, ତୁମେ ସେହି ଶ୍ୟାମ ଗୁଣମଣି ।
ତୁମେ ସେହି ଭୁବନମୋହନ ଠାମ—
ଖେଳାକର ନରରୂପେ,
କରୁଣାର ଛଳେ
ଅଧୀନାର ତୁଲେ ।
ସେଇ ତୁମେ—
ଠିକ୍ ସେଇ ତନୁ, ସେଇ ଅଙ୍ଗ ।
ଛଳଛଳ ଇନ୍ଦୀବର ନୟନଯୁଗଳ;
ଗାଉଥିଲ ତୁମେ ବନ୍ଧୁ—
ସେଇ ରାଧା, ରାଧା ।
କହ ତେବେ, କହ ମୋତେ—
କିଏ ସେହି ରାଧା ? କାହିଁ ରାଧା ?
ରଣ ଦଏ ମୋର ସାଥି ।
ନ କର କପଟ ।
ତୁମେ ନା ସେ ମୋହନ ମୁରଲୀଧର

ତ୍ରିଭଙ୍ଗସୁନ୍ଦର ନଟବର ?
ସତ୍ୟ କହ ମୋତେ—

—ଗୀତ—

ବଂଧୁଅ, ବଂଧୁଅ, ବଂଧୁଅ—
କେ' ସେ ଯମୁନାର ତୀରେ
ନବଘନ ସୁନ୍ଦର ମୁରଲୀ ମନୋହର,
ରାଧା ରାଧା ଉଚ୍ଚାରେ ॥୦॥
ଏ ତିନି ଭୁବନଭିତ୍ତର ନାହିଁ କି ସୁନ୍ଦରୀ
ମୁରଲୀ କାହିଁକି ଡାକେ ରାଧା,
କହ ଗୋ ନାଗରବର କେ'ବା ସେ ନାଗରୀର
ପ୍ରେମପାଶେ ଆଜି ଶ୍ୟାମ ବନ୍ଧା ?
କାହିଁ ସେ ଗୋପପୁର ମୋହନ ନଟବର
କାହିଁ ନବ ତରୁଣୀ ରାଈ ?
ଆକୁଳ ଅନ୍ତର ଅଥୟ ନିରନ୍ତର
ଥନଥନ ନୀର ଝରାଇ—
ଥନଥନ ନୀର ଝରାଇ···ବଂଧୁଅ ।

———

ଶ୍ରୀଗୋପୀନାଥ—(ଆଦର କରି)
ଲକ୍ଷ୍ମୀ ! ଲୋ ସରଳା !
ଏ କି ପ୍ରଶ୍ନ ଆଜି ?
କହ ଦେଖି ଆଗେ—
କିସ ବୋଲି ମନେ କର ମୋତେ ?
ଲକ୍ଷ୍ମୀ—ତୁମଙ୍କୁ···ଦେବତା ।
ଜାଣେ ମୁହିଁ, ମନ୍ଦିରର
ସେହି ଦେବ—
ସେହି ପାଷାଣ ପ୍ରତିମା—
ପ୍ରିୟ, ପ୍ରିୟବର, ପ୍ରିୟତମ ମୋର ।
ଅତି ପ୍ରିୟ—
ପ୍ରାଣଠାରୁ ବଳି ।
ନାହିଁ କେହି ଏ ସଂସାରେ ମୋର
ଅଧିକ ପ୍ରଣୟୀ ।
ଅନୁଗ୍ରହ ଅଛି—
ତେଣୁ ରୂପ ଧରି ଖେଳ ଦାସୀତୁଲେ ।

ଶ୍ରୀଗୋପୀନାଥ—ଅଉ ତୁମ୍ଭଙ୍କ୍··ତୁମ୍ଭର ଭଲ
କି ହୁଏ ପରତେ ?
ଲକ୍ଷ୍ମୀ—ଜାଣେ ମୁହିଁ,
ଜୀବନର ସ୍ନେହ-ମାୟା-ମମତା ମିଶାଇ
ହେ ମହାନ୍ ।
କୋଟି ଭକ୍ତମଧ୍ୟୁଁ ଜଣେ ମୁହିଁ ।
ଜାଣେ ନାହିଁ, କ୍ଷୁଦ୍ର ମୋର
ପ୍ରୀତି-ଉପହାରେ
କିପାଇଁ ସନ୍ତୁଷ୍ଟ ତୁମ୍ଭେ
ଏ ଅଧୀନାଠାରେ ?
ଶ୍ରୀଗୋପୀନାଥ—ଶୁଣ ଲକ୍ଷ୍ମୀ ।
ନୁହେ ମୁଁ ମହାନ୍ ତୁମ୍ଭ ପାଶେ—
ଖାଲି ପ୍ରେମର ଭିଖାରି ।
ଫଳ-ଫୁଲ-ଗନ୍ଧ ଘେନି,
ଏହି ଯେ ଦିବସ-ନିଶି
କରଇ ମୋ ପୂଜା ଲୋକ—
ମନେ କି କରଛ ଲକ୍ଷ୍ମୀ ।
ସେହି ମୋତେ କିଣେ ?
ବନ୍ଧା କି ମୁଁ ପାଶେ ତା’ର ?
ସ୍ୱାର୍ଥ ଘେନି, ମାୟା ଘେନି,
ସେ ପୂଜାରେ ପରିତୃପ୍ତ କି ମୁଁ ?
କାମନାବର୍ଜିତ—
ପ୍ରେମଭକ୍ତି ଉଦ୍‌ବେଳିତ ଲକ୍ଷ୍ମୀସମେ—
ଏହି ପ୍ରଣୟ-ଦୁଆରେ
ଚିର ଅବନତ ମୁଁ ଗୋ ।
ଅଞ୍ଜଳିଟି ପାତି
ମାଗେ ପ୍ରୀତି ।
ଅଭିମାନ, ଅପମାନ, କଟୁବାଣୀ ତା’ର—
ଅଙ୍ଗର ମୋ ଚନ୍ଦନପ୍ରକାର ।
ପଥ ଜଗି ଅପଲକନେତ୍ରେ
ଚିର ଉତ୍କଣ୍ଠ ମୋ ପ୍ରାଣ ଜାଣିବାକୁ—
କେବେ ସେ ଆସିବ ମୋ’ର,
କେବେ ସେ ଗୋ ଅଭିମାନେ
କହିବ ଦି’ପଦ କଥା ।
କେବେ ସେ ନୟନ-ନୀରେ
ଭସାଇ ଗଣ୍ଡଯୁଗଳ
ମାନଭରେ ବସିବ ଗୋ
ପୋତି ମଥା ତା’ର ।
ଲକ୍ଷ୍ମୀ । ସେହି ମୋର ରାଧା ।
ସେହି ତୁମେ ମୋର—
ଅଭିମାନୀଟି ମୋର ।
ଆଉ—ସେହି ମୁଁ ଗୋ
ତୁମ ଦୟାର ଦୁଆରେ
ଚିର ପ୍ରଣୟ-ଭିଖାରି,—
ନତଜାନୁ ହୋଇ ।
ଲକ୍ଷ୍ମୀ—ଜାଣିଥାଅ ନଟବର ।
ଗୃହଟିରେ ନ ଭୁଲିବ ଲକ୍ଷ୍ମୀ ।
ନ କହିଲେ ସତ୍ୟ,
ଫେରିଯିବି ଗୃହେ,
ଆଉ ଦିନେ ନ କହିବି କଥା । (ଉଠିଲେ)
ଶ୍ରୀଗୋପୀନାଥ—ଶୁଣ ଲୋ ସୁନ୍ଦରୀ । (ହାଣିଧରି)
ସତ୍ୟ-କଥା, ଅତି ସତ୍ୟ ଯାହା—
ସତ୍ୟ ରକ୍ଷା କରି
ସାକ୍ଷ୍ୟ ଦେବାଲାଗି
ଯେବେ ମୁଁ ତେଜିଲି ସଖି ।
ମଧୁର ସେ ବୃନ୍ଦାବନ,
ରହିଲି ମୁଁ ଏ ବକୁଳବନେ
ରାଧାହୀନ, ଗୋପୀହୀନ, ପ୍ରାଣଧ୍ୟାନଭଳି,
ବହୁ ଦୂର ବୃନ୍ଦାବନ,
ନିତ୍ୟ ମୋତେ ପଡ଼ଇ ଯିବାକୁ ।
ତେଣେ ସଖି । ଆକୁଳା ଶ୍ରୀମତୀ ।
ସହୁଛି ମୁଁ ବହୁ କଷ୍ଟ;
ଅବଶେଷେ
ମନେ ପଡ଼େ ଧନି—
ସେହି ବସନ୍ତର
ମଧୁର ସନ୍ଧ୍ୟାରେ—
ପ୍ରଥମେ ଯେ ଦିନ,
ସେହି କୁସୁମର ହାରହସ୍ତେ

ତୁମ୍ଭେ ଗୋ ପ୍ରେୟସୀ ।
ପିତାତୁଲେ
ଆସିଲ ଗୋ ପାଶେ
ନତ ମଥା କରି,
ଦେଲ ଢାଳି ସେ କୁସୁମ ପଦେ ।
ସୁକୁମାର କର ଦୁଇ (କର ଧରି)
ପରଶି ମୋ ଅଙ୍ଗେ ।
ଅପଲକ ନେତ୍ର ଦୁଇ
ମୁଗ୍ଧ ଭିକଲିଗି
ଲଖିଲ ମୋ ନେନେ ।
ଶିହରିଉଠିଲା ପ୍ରାଣ ମମ । (ଚମକି)
ପ୍ରସ୍ତର ପ୍ରତିମା,
ମର୍ମ୍ମରିଲା କି ଚଞ୍ଚଳ
କି ତଡ଼ିତ ଲଗି ।
ପ୍ରାଣ ମୋର ଆକୁଳ ହୋଇଲା,
ଡାକିବାକୁ ସଖୀ ବୋଲି ମୋ'ର (ଆଲିଙ୍ଗନ)—
ଜାଣ କି ସେ କଥା ଲକ୍ଷ୍ମୀ ?

ଲକ୍ଷ୍ମୀ—ଜାଣି ନାହିଁ ସେକଥା ମୁଁ କିନ୍ତୁ—
ବୁଝୁ ନାହିଁ ଏତେ କଥା ।
ଜାଣିଛୁ ମୁଁ ମାତ୍ର; ମନେ ଅଛୁ—
ଯେ ଦିନ ପ୍ରଥମେ ଆହେ ମନ୍ଦିର-ଦେବତା ।
ଦେଖିଲି ମୁଁ, ଭେଟିଲି ତୁମ୍ଭଙ୍କୁ,
ମନେ ହେଲା ମୋ'ର—
ନୁହେଁ ଏହା ପ୍ରଥମ ମିଳନ ।
ବହୁ ବାର, ବହୁଁବାର ଯେପରି ମୁଁ ଦେଖିଛୁ
ଏ ଚିର ପରିଚିତ,
ଚିର ଆଦରର ରୂପ ।
ନୁହେ ଏ ପାଷାଣ—
ସତ୍ୟ, ଜୀବନ୍ତ ପ୍ରତିମା ।
ଇଚ୍ଛା ହେଲା—
ଆଦରରେ—ଅତୀବ ଆଦରେ····
ନ ଥା'ନ୍ତେ କି କେହି
ନ ଥାନ୍ତେ କି ପିତା ମୋର ତୁଲେ···
ବନ୍ଧୁ ମୋର ।
ଇଚ୍ଛା ହେଲା···ଇଚ୍ଛା ହେଲା ···
ଆଦରରେ ପ୍ରାଣ ଖୋଲି
ଅତି ଆଦରରେ···
କିନ୍ତୁ···(ନୀରବରେ ମୁଖ ପୋତିଲେ)

ଶ୍ରୀଗୋପୀନାଥ—(କୋଳକୁ ନେଇ)—
ଲୋ ସରଳା,
ନାହିଁ କିନ୍ତୁ ।
ଏ ଜଗତେ 'କିନ୍ତୁ' ଶବ୍ଦ
ନାହିଁ ଅଭିଧାନେ ।
ସତେ ଲକ୍ଷ୍ମୀ,
ଏତିକି ଆଦର କର ମୋତେ ?
ଏତେ ସୁଖ ପାଅ—
ଭାଗ୍ୟବାନ୍ କେ'ବା ମୋହସମ ?
ଠିକ୍ ସେହିଦିନ ଲକ୍ଷ୍ମୀ,
ବୁଝିଲି ମୁଁ
ପ୍ରେମମୟୀ ରାଧା ମୋ'ର,
ନ ସହି ମୋ ଦୁଃଖ
ତବ ଅଙ୍ଗେ ପ୍ରକାଶିତ ।
ଧରି ନ ପାରିଲି ଧୈର୍ଯ୍ୟ ।
ଇଚ୍ଛା ହୁଏ, ସେହିଦିନୁ
ପାଶେ-ପାଶେ ତବ
ଥାଆନ୍ତି କି ଛାୟାପରି ସଦା;
ଭାଗ୍ୟେ କିନ୍ତୁ ନ ଘଟଇ ତାହା
ଏବେ ନାହିଁ ପରା ତୁମ୍ଭର ସେ ଦୟା !
ଭେଟ ନାହିଁ ପାଏଁ ସଖୀ ।
ଆକୁଳେ ମୁଁ କେତେ କାନ୍ଦି
କରିଲେ ପ୍ରାର୍ଥନା
ମିନତି ମୋ ଠେଲିଦିଅ ପଦେ ।

ଲକ୍ଷ୍ମୀ—ନୁହେଁ ସତ୍ୟ ।
ଗତି ନାହିଁ ମୋର ।
ଜାଣ ସବୁ ନଟବର,
କି ଛଳଙ୍କେ ବୁଝାଇଛ ମୋତେ ।

ଶ୍ରୀଗୋପୀନାଥ —କାନ୍ତ ସଖି,
କହ ସତ୍ୟ,
ତୁମ୍ଭେ କେବେ ଅଛ
ନସ୍ପର୍ଶ କରିବ ନାହିଁ
ଚରଣକୁ ମୋତେ
ଅଭିମାନେ ।
ଲକ୍ଷ୍ମୀ—ଅଭିମାନ ?
ସେ ତ ତବ ଦାନ ସଖା ।
ସକଳ ସମ୍ପଦ ମୋର
ହେ ହୃଦୟନାଥ,
ଅନୁଗ୍ରହ ତବ—
ଦାସୀ ବୋଲି ପଦେ
ଦେଇଅଛ ସ୍ଥାନ ।
ସେହି ମୋର ମାନ, ସେହି ମୋର ତ୍ରାଣ,
ସେହି ବଳେ ଅଛେ ଅଭିମାନ ।
କେତେ ଥର ଅଛେ ମନେ—
କେତେ କ୍ଷୁଦ୍ର ମୁହିଁ
କେତେ ହେ ମହାନ୍ ତୁମ୍ଭେ ।
କାନ୍ତ ବନ୍ଧୁ !
ଯାଏ ଭୁଲି ଦରଶନେ ।
ତୁମ୍ଭ ଦତ୍ତ ଆଦରରେ
ଅଛେ ମୋର ଅଭିମାନ,
ନ ଶୁଣେ ବାରଣ ।
କ୍ଷମିବ ସକଳ ସଖା !
ମିନତି ଚରଣେ । (ପଦ ଧରିଲେ)
ଶ୍ରୀଗୋପୀନାଥ—(ହସି)
କ୍ଷମିବ ମୁଁ ସବୁ,
କାନ୍ତ ଲୋ ଅଭିସାରିକା,
ଭୁଲି ସବୁ, ଭୁଲି ଦୋଷ ମୋର
ପ୍ରିୟ ବୋଲି,
ସାଥି ବୋଲି,
ଦିଅ ଯଦି ବାରେ ଆଲିଙ୍ଗନ
ଅସ ଯଦି କୋଳେ । (ଆଲିଙ୍ଗନ କରିବା)

ଲକ୍ଷ୍ମୀ— (ଗୀତ)
ଜୀବନ ଯୌବନ ଦେଇଛି ତ ସବୁ
ତୁମେ ପରା ମୋର ଜୀବନ-ଶଶୀ ।
ଚାହିଁ ଥାଏ ମୋର ମାନ-ଅଭିମାନ
ବାଜିଉଠେ ଯେବେ ମୋହନ-ବଂଶୀ ।୦।
ଯେଦିନ ଦେଖିଛି ମୂରତି ମଧୁର
ହଜିଛି ସେଦିନ ସବୁ ଜ୍ଞାନ ମୋର
ଇଚ୍ଛା ଯାହା, ତାହା କର ନଟବର,
କହ ଥରେ ମୋତେ ଚରଣଦାସୀ ।୧।
(ଚରଣକୁ ହାତ ବଢ଼ାଇଲେ)
ଶ୍ରୀଗୋପୀନାଥ —ଲକ୍ଷ୍ମୀ । (କୋଳେଇ ନେଇ)
ଲୋ ସୁନ୍ଦରୀ ।
ଅନୁଗ୍ରହେ ତୋର
ଭାଗ୍ୟଧର କେବା
ମୋହଠୁଲେ ? (ଆଲିଙ୍ଗନ)

—୦—

## ଦ୍ୱିତୀୟ ଦୃଶ୍ୟ
(ଲଳିତା ଗାଇ-ଗାଇ ପ୍ରବେଶ)
(ଗୀତ)

ବାଜେ ରୁନ୍ତୁ ନୂପୁର ରୁନ୍ତୁଝୁନ୍ତୁ
ନାଚୁଁଛ ସତରେ ଭରେ ବରାଙ୍ଗନା ପୁଲକେ ବନ-କନ୍ଦର ।୦।
କୋଟରେ କୋଟରେ ପଥରେ ପଥରେ
ପ୍ରେମର କାହାଣି ଫୁଟଇ ଗୋ
ପବନ ସୁହାସ ଲୁଟଇ ଗୋ
ତାହାର ମୁରଲୀ ମଧୁର ସୁରରେ
ଭରଇ କୁଞ୍ଜ-କୁଟୀର ।୧।
(ଗାଇ-ଗାଇ ପ୍ରସ୍ଥାନ)

———

## ତୃତୀୟ ଦୃଶ୍ୟ
### ବକୁଳବନ
(ଶ୍ରୀଗୋପୀନାଥଙ୍କ ପୂଜାରୀ ଶ୍ରୀଜୀଉଙ୍କର ରତ୍ନହାର ଖୋଜିବୁଲୁଥିଲେ )

ପୂଜକ—ନାଚ ତ ଏମନ୍ତ କଲ
କେତେ କାହିଁ ଖୋଜିବି ମୁଁ କହ ?
ଅଙ୍ଗ ବଂଶୀ—କାଲି ଚୂଡ଼ା
ଗୋଟି-ଗୋଟି ଯହିଁ-ତହିଁ
ପକାଇଲ ପ୍ରଭୁ,
ଚୋର ବୋଲି ଧରାଇଲ ମୋତେ ।
ତୁଳସୀ-ଚନ୍ଦନ ଦେଇ
ନିତ ସେବେ ଶ୍ରୀଚରଣ
ନୈନ ଧୂପ ପାଞ୍ଚ ଅବକାଶେ ।
ଏହି କି ତା ଯୋଗ୍ୟ ପ୍ରତିଫଳ ?
ଏହି ଅନୁଗ୍ରହ ପର୍ବ ଫଳାଇଲ ଶେଷେ ।
ରାଜେ କାଲି ଶିଙ୍ଗାର ବଢ଼ାଇ
କଲି ଚନ୍ଦ୍ରହାରଲାଗି,
ଯନ୍ତ୍ରମୁଦ ଦେଲି ସିଂହଦ୍ୱାରେ ।
ନାହିଁ ସକାଳକୁ କଣ୍ଠେ,
ବିଶ୍ୱାସ କି ଯିବେ କେହି ?
ଯେତେ ମୁଁ କହିଲେ
ଚୋର ନୁହେଁ ବୋଲି
ନିଜକୁ ତ ନ ଅସେ ପରତେ,
କାହାକୁ ବା ଦୋଷ ଦେବ
କେମନ୍ତେ ଜଗତେ ?
ଅଜ ଏବେ—
ଲକ୍ଷ୍ମୀ-ଘରେ ନାହିଁ ଚନ୍ଦ୍ରହାର,
ମନ୍ଦିରେ ତ ନାହିଁ ।
ରହିବ କି ନ ରହିବ ମୁଣ୍ଡ
ଜାଣିଲେ ପାଇଛି···
ଗୃହ କି ପାରବ ଦାଣ୍ଡେ ?
ଠେକି ପାରବ କି ମଥା
ସତ୍ୟବାଦୀ ଗ୍ରାମେ ?
ହେ ଗୋପାଳ, ଯାହା ଇଚ୍ଛା, କର ଏତେ ପ୍ରଭୋ !
ନ ବୁଡ଼ାଅ ଅନୁଗତ ଜନେ ।

(ଖୋଜୁ-ଖୋଜୁ ପ୍ରସ୍ଥାନ)

(କେତେଗୁଡ଼ିଏ ଗ୍ରାମବାଳକ ନାଚ ଗାଇ ପ୍ରବେଶ)

(ଗୀତ)

ବଉଳକୋଳି ପାଚିଛି କି ସୁନ୍ଦର
ଫାଳେକେ ହଳଦିଆ—ଫାଳେ ଶିନ୍ଦୂର-ସୁନ୍ଦର ।୦।
ପକ୍ଷି ଥାଆନ୍ତା ଉଡ଼ିଯାଆନ୍ତେ
ପାଚିଲା କୋଳି ବାଛି ଖାଆନ୍ତେ
ଅନେଇଥା ମୁଁ ଚଢ଼ିଯାଉଛି
ଦେଖିବୁ ଗୋଟେ ସୁନ୍ଦର ।୧।

(ଗୋଟିଏ ପିଲା ନାଚୁ-ନାଚୁ ଚନ୍ଦ୍ରହାର ପାଇ ଲୁଚାଇଦେବାବେଳେ ଅନ୍ୟ ପିଲାଟିଏ ଦେଖିଲା)

ଶ୍ୟାମ—ହେ ରଘୁଆ, ରଘୁଆ, କ'ଣଟାଏ ପାଇ ଅଣ୍ଟାରେ ଖୋସିଲୁ କି ରେ ? ବାଲିରୁ କ'ଣ ଗୋଟେଇ-ନେଲୁ ?

ରଘୁ—କିଛି ନାଇ ମ, ବଉଳକୋଳିଟେ ।

ଶ୍ୟାମ—ଏଁ ? ବଉଳ କୋଳିଟେ ? ଚକଚକ ଦିଶୁଥିଲା, ତୁ ନୁଚେଉଛୁ ।

ରଘୁ—ବଉଳକୋଳି କ'ଣ ଚକଚକ ଦିଶେ ନାହିଁ କି ?

ଅଜୟ—ନାହିଁ, ତୋ ଅଣ୍ଟା ଦେଖା ।

ରଘୁ—କାହିଁକି ?

ଅଜୟ—ଦେଖା କ'ଣ ପାଇଛୁ ।

୪ର୍ଥ—ଦେଖା କ'ଣ ପାଇଛୁ । ଚଟ୍ କିନା ନେଇ ଅଣ୍ଟାରେ ଖୋସିଦେଲୁ । କିରେ ।
ତୋର ତ ଦି'ଟା ଆଖି, ଆମମାନଙ୍କର କେତୁଟ ଆଖି ଅନେଇଲୁ ।

ରଘୁ—ନାଇଁ, ମୁଁ ଦେଖାଇବି ନାହିଁ । ତେମେମାନେ କ'ଣ ମୋ ଉପରେ ରଜା ? ନାଇଁ,ମୁଁ ଦେଖାଇବି ନାହିଁ, ଯାଃ ।

ଅଜୟ—ଆରେ ରଜା···ଆସିରୁଟି ରେ ଅନ୍ଧାରିଆ କହିଦେବା । ବେହିପୋକୁ କିଏ ମାଇଲା କଲେ ଗାଁକୁ ବାଟ ଦିଶିବ ନାହିଁ, ବାଲିଙ୍ଗି ଦେଖ । ଦେଖା ଯେବେ ଦେଖେଇବୁ, ନଇଲେ ଫେର୍ ଏବେନେ ବାଜିବ ଧାଗା । (ରଘୁଆକୁ ଧରିବା)

ରଘୁ—ଧାଗା ? ଭାରି ମାଇଲାବାଲା । ତୋ ବାପ ନା ଚୁ, ମାଇଲା ଦେଖି···

ଶମ୍ଭୁ—ହଇରେ ହଇରେ, କ'ଣ କହୁଛୁ ? ମୋ ବାପ ନା ମୁଁ ? ଦେଖିବୁ ଦେଖିବୁ, ତୋର ବାପ ପିଠିରେ ପଡ଼ିବ । ବଳା ତ ରେ ଶାମା, ବେହ୍ନପୋକୁ ଧାଗାଏ ।

ଶ୍ୟାମ—(ରଘୁଆକୁ ଧାଗାଏ ଦେଇ) ଦେଖାବେ, ବେହ୍ନପୋ ଗୁଡର ଝାଡ଼ୁଛୁ । ଦେଖେଇଦବୁ ତ କ'ଣ ପାଇଛୁ । ଦେଖା, ନଇଲେ ଫେର୍ ଦେଖ୍ ବାଜିବ । ଅରେ ତା ଅଣ୍ଟାରେ ହାତ ପୂରେଇ କାଢ଼ ମ । ଦେଖିବା ବେହ୍ନପୋ କ'ଣ କରିବ ।

(ସମସ୍ତେ ଜବରଦସ୍ତି କରିବାକୁ ବସିଲେ)

ରଘୁ—(ପାଟିକରି କାନ୍ଦ) ଏ ବୋଉ ଲୋ, ମତେ ମାରିପକେଇଲେ ଲୋ । (ପୂଜକ ପ୍ରବେଶ)

ପୂଜକ—ଅରେ ଅରେ, ଏ କ'ଣ କରୁଛନ୍ତି, କଥା କ'ଣ ? (ସମସ୍ତେ ରଘୁଆକୁ ଛାଡ଼ିଦେଲେ)

ଶମ୍ଭୁ—ଆମେସବୁ ସାଙ୍ଗ ହୋଇ ବଉଳକୋଳି ଖାଇବାକୁ ଆସିଥିଲୁ ।

ପୂଜକ—ସାଙ୍ଗ ହୋଇ ତ ଆସିଥିଲ, କଳି ଲାଗିଛି କାହିଁକି ଫେର୍ ?

ଶ୍ୟାମ—ରଘୁଆ ଏଇ ବାଲିରୁ କ'ଣଟାଏ ପାଇ ଅଣ୍ଟାରେ ଖୋସିଛି, ଆମେସବୁ କହିଲୁ ଦେଖାଉ ନାହିଁ ।

ପୂଜକ—ହେ ଗୋପାଳ ! ସତେ କ'ଣ ଦସ୍ୟୁ ହେଲ ତୁମର ? ଦେଖେଇଦଉ ନୁ ? ଦେଖା, ତୋତେ କେହି ମାରିବେ ନାହିଁ । ମୁଁ ଅଛି । ଦେଖା ।

ରଘୁଆ—ଏଇ ବାଲିରେ ଖେଳୁଖେଳୁ ମୁଁ ଗୋଟିଏ ରଙ୍ଗଡା ମାଳ ପାଇଲି । (ପୂଜକକୁ ଦେଖାଇବା)

ପୂଜକ—(ମାଳଟି ରଘୁ ହାତରୁ ନେଇ ମୁଣ୍ଡରେ ଲଗାଇଲେ ।) ଏଇବାଟେ ଗଲି, ଦିଶିଲା ନାହିଁ ମୋତେ । ଏସବୁ ତମର ନଟ ଗୋପାଳ ! କ'ଣ କରୁଛ କର । କେତେବେଳେ ଏଠିକି ଆସି ପକେଇଛ । ଅରେ ପିଲେ ! ଏଇଟି ଠାକୁରଙ୍କ ମାଳ । ହଜିଥିଲା, ମୁଁ ଖୋଜୁଥିଲି । ତୁମେସବୁ ଆସ । ମାଳ କଣ କରିବ, ମୁଁ ତୁମକୁ ଘନାବଉଳି, ମାଣ୍ଡୁଆ, ରସାବଳି, କାକରା ଖାଇବାକୁ ଦେବି । ଆସ ।

ରଘୁ—ଦବ ନା ? ମତେ ଏଡ଼ା ବେଶୀ ଦବ ?

ଶ୍ୟାମ—କାହିଁକି ? ତତେ ବେଶୀ ଦେବେ କାହିଁକି ? ଗେହ୍ଲାଟୁଆ—ନା ?

ରଘୁ—ଏଁ, ମୁଁ ପାଇଛି ।

ଶ୍ୟାମ—ଆମେସବୁ ତତେ ତ କୋଳି ଖାଇବାକୁ ଡାକିଲୁ ଯିନା, ତୁ ଏଠିକି ଆସିଲୁ. ଏଡ଼କ ପାଇଲୁ । ଆମର ଭାଗ ନାହିଁ କେମିତି ? ସମସ୍ତେ ସମାନ କରି ପାଇବେ ।

ପୂଜକ—ଅଚ୍ଛା, ଆସ ଆସ । ପ୍ରଭୁ ହେ । ବଡ଼ ଅନୁଗ୍ରହ ତୁମର । ମୁଣ୍ଡ ରଖିଲ ମୋର ଆଜି । ଆସରେ ପିଲେ । ଖୁବ୍ ମଉଜରେ ଗାଇ-ଗାଇ ନାଚି-ନାଚି ଆସ । ମୁଁ ଆଗରେ ଗଲି । (ପ୍ରସ୍ଥାନ)

ଶମ୍ଭୁ—ରଘୁଆ । ବେହ୍ନପୋ ମୁହଁଟା ଜହ୍ନୁଆଁ ହାଣ୍ଡି-ପରି କରିଛୁ କାହିଁକି ? ପାଇଲୁ ତ ସମସ୍ତେ ଖାଇବା—ଆସ, ବଡ଼ପଣ୍ଡା ତ କହିଗଲେଣି, ଆଉ କ'ଣ ? ଗାଇ-ଗାଇ ନାଚି-ନାଚି ଯିବା ।

(ଗୀତ)

ସମସ୍ତେ—

ଶଙ୍ଖଚିଲ ମୁହଁ ଗୃହଁ ଆସିଛେ ରେ
ଆଜି ଭାରି ମଜା ।
ଭୋଜନ ମିଳିବ ଚୁଡ଼ା-ପଖାଳ
ସଙ୍ଗେ କଦଳୀ-ଭଜା ।୦।
ଆସିବା ଏଥର ବଉଳବଣକୁ
ନାଚିତ ନାଚିତ ଭାଇ,
ହସି-ଖେଳି ମଉଜ କରି
ନାଚିବା ଗୀତ ଗାଇ ।
ନାଚିତ ଏମିତ ହୁଅନ୍ତା ସତେ
ଭୋଜୀଟା ଆମର ରାଜା ।୧।

( ଗାଇ ଗାଇ ନାଚି-ନାଚି ପ୍ରସ୍ଥାନ )

— ✻ —

## ଚତୁର୍ଥ ଦୃଶ୍ୟ

ଗାଁ-ମୁଣ୍ଡ, ତୋଟା-ମଳ

(ଗୀତ)

(ପଲ୍ଲୀକନ୍ୟାମାନେ ଖେଳୁଥିଲେ, ଅଳ୍ପ ଲକ୍ଷ୍ମୀ ବସି ଫୁଲ ଗୁନ୍ଥୁଥିଲା)

କୁଆଁର ପୂନେଇ ଜହ୍ନ ଗୋ ଫୁଲ ବଉଳବେଣୀ
ପୁଚି ଖେଳିବାକୁ ମନ ଗୋ ଫୁଲ ବଉଳବେଣୀ
କୁଆଁର କୁଆଁରୀ ହସ-କଉତୁକେ ଘୃତ ମଣିଥାଉ
ଧନ ଗୋ ।୦।

ଜନମ ଅମୃତ ସ୍ଥାନ ଗୋ ଫୁଲ ବଉଳବେଣୀ
ଦରବ ଦାନ୍ଧଣ ସବୁ ଧନପାଇଁ ନ କରନ୍ତି
ଏନ୍ତ ଧନ ଗୋ ଫୁଲ ବଉଳବେଣୀ
ଝିଅ-ଜନମ ଅସାର ଗୋ ଫୁଲ ବଉଳବେଣୀ
ବାପଘରେ ଝିଅ ଅଳ୍ପଅନ୍ତ ସିନା ପରଘରେ
ନାହିଁଖାର ଗୋ ।୧।

(ସୁଶୀଳା ପ୍ରବେଶ)

ସୁଶୀଳା—ମଲ, ଏ ଗୋଟିକଯାକ ଏଠି ଗୀତ ଗାଉଛ ବସି ? ଚାଅ, ଚାଅ ।

ଚଞ୍ଚଳା—ଆ ନାନୀ, ପୁଚି ଖେଳିବା । ଲକ୍ଷ୍ମୀ ନାନୀକି ଡାକିଲି ଯେ ନାହିଁ କଲା ପରା ।

ସୁଶୀଳା—କାହିଁ ସେ ?

ଚଞ୍ଚଳା—ହେଇଟି ମଉନମୁହାଁ ବସି ଫୁଲ ଗୁନ୍ଥୁଛି । ଅମେ ସଙ୍ଗରେ ଅଣିଲୁ, ଖେଳିବାକୁ କହିବାରୁ ମନା କଲା ପରା । ବୁଢ଼ି ଅଣି ହେବାକୁ ମଙ୍ଗିଲା ନାହିଁ ।

ସୁଶୀଳା—ଏ କିଏ, ଲକ୍ଷ୍ମୀ ନା ? ମୁଁ ତତେ କେତେ ଘରଅଡ଼େ ଖୋଜି-ଖୋଜି ଅହିଲି । ସତେ ତୋର ଏ ଗୋଟେ କି ଲକ୍ଷଣ ମ ? କୁଆଁର ପୂନେଇ ବ୍ରତ । ଜହ୍ନ ଫୁଲପରି କେଡ଼େ ସୁନ୍ଦର ଜହ୍ନ ପଡ଼ୁଛି । ସମସ୍ତେ ଖୁସିବାସରେ ଖେଳିବୁଲି କହୁଛନ୍ତି । ତୁ କାହିଁକି ମନୁହି ମାରିଦେଇ ଏମିତ ଟୁନିହି ହେଇ ବସିଥାଉ ମ ?

ଲକ୍ଷ୍ମୀ—ନାହିଁ ମ, ବସି ତ ଫୁଲ ଗୁନ୍ଥୁଛି । ଅଉ ଭୁନ-ତାନ କ'ଣ ? ସେଠି ପିଲାମାନେ ଗାଉଥିଲେ । ଶୁଣିବାକୁ ବ ଖୁସି ଲଗିଲା, ଶୁଣୁଥିଲି ।

ସୁଶୀଳା—ବଡ଼ ସଉକୀ ତ । ଅ, ଖେଳିବା—ଗୁଲ ରେ ପିଲେ ଖେଳିବା ।

ଲକ୍ଷ୍ମୀ—ତମେସବୁ ଖେଳ କି ମୁଁ ଦେଖିବି ।

ସୁଶୀଳା—ସେକଥା ପଡ଼ିବ ନାହିଁ । କାହିଁକି ? ତୁ କାହିଁକି ଖେଳିବୁ ନାହିଁ ? କଟଣ୍ଟ ଖେଳିବୁ । ମୁହଁଟା କାହିଁକି ଶୁଖେଇଥାଉ ମ ? କ'ଣ ହେଲା ଯେ ?

ଲକ୍ଷ୍ମୀ—ନାଇ ମ କିଛି ନାହିଁ । ତୁ କ'ଣ ଜାଣି ନାହୁଁ ? ସବୁ ତ ଜାଣୁ । ବାବୁ କଥା ଶୁଣି-ଶୁଣି ମନଟା କ'ଣ ହୁଏ ?

ସୁଶୀଳା—ଯା'ମ ପୋଡ଼ଯାଉ ସେ ବାବୁ କଥା ।

ପୂଜକ—(ପ୍ରବେଶି) ଲକ୍ଷ୍ମୀ । ତୁ ଏଠି ଅଛୁ ମା ? ମୁଁ କେତେ ଖୋଜିଲିଣି । ପିଲାଏ ମୋତେ ଠିକଣା ବତେଇଦେଲେ ବୋଲି ସିନା ?

ଲକ୍ଷ୍ମୀ—କାହିଁକି ମଉସା ?

ପୂଜକ—କ'ଣ କି—ତୁ ଅଜି ସକାଳେ ଦାଆଙ୍କ ପାଖକୁ ଯାଇଥିଲୁ କି ?

ଲକ୍ଷ୍ମୀ—ହଁ ।

ପୂଜକ—ସ୍ୱାମୀମୁଦିଟି ଅଣିଛୁ କି ?

ଲକ୍ଷ୍ମୀ—ମୁଁ ଅଣି ନାହିଁ ତ । ଦାଅ ଦେଇଛନ୍ତି ।

ପୂଜକ—ଦେ ସେଇଟି ତୁ ।

ଲକ୍ଷ୍ମୀ—ଦାଅ କ'ଣ ଫେର୍ ମଗେଇପଠେଇଛନ୍ତି ମୋ ପାଖକୁ ?

ପୂଜକ—ହଁ ମା । ନହେଲେ ମୁଁ ଜାଣନ୍ତି କମିତ ?

ଲକ୍ଷ୍ମୀ—ନିଅ ତେବେ । ( ମୁଦ ଦେବା )

ପୂଜକ—କେତେ ଖୋଜିଲିଣି ମା, ଏଇନେ ତ ମୋ ଜନମ ସରିଥାନ୍ତା । (ପ୍ରସ୍ଥାନ)

ଲକ୍ଷ୍ମୀ—ସୁଶୀଳା, ଦେଖିଲୁ ତ ? (ଅତି ଦୁଃଖରେ)

ସୁଶୀଳା—ସବୁ ଦେଖୁଛି, ସବୁ ଶୁଣୁଛି ।

ଲକ୍ଷ୍ମୀ—କହିଲୁ ସୁଶୀଳା, ଯାହାଁ କ'ଣ ମରିଯିବାଟା ଭଲ ନୁହେଁ ?

ସୁଶୀଳା—ଛି ଛି, ଏଗୁଡ଼ାକ ମୁହଁରେ ଧରନ୍ତି ? (ତାରା ପ୍ରବେଶ)

ତାରା—ଏ ଲକ୍ଷ୍ମୀନାନୀ, ମାଉସୀ ଡାକୁଛି, ଆ ।

ସୁଶୀଳା—ଗୁଲ୍ ଲକ୍ଷ୍ମୀ, ସାଙ୍ଗ ହୋଇ ଯିବା । ତୁମେ-ସବୁ ଅସୁଥା' ଲୋ, ଅମେ ଅଗରେ ଗଲୁ ।

(ଲକ୍ଷ୍ମୀ ସହ ପ୍ରସ୍ଥାନ)

ଚଞ୍ଚଳା—କି ମୁଦ କି ଲୋ, ଲକ୍ଷ୍ମୀଠୁଁ ରମାବାପା ନେଲା ?

ବିମଳା—କେଜାଣି ଲୋ ମା । ହଟା-ହୁର ତ ଗାଁ-ଗୋଟାକଯାକ ପଡ଼ିଛି—କିଏ ଜାଣେ କି ମୁଦ ।

ସରଳା—ଅସ ମ, ବୃଦ୍ଧ ବୁଢ଼ା ହୋଇଯାଉଛୁ । ଗା, ଗୀତଟା ତ ସରୁନ ନାହିଁ । ଲୁଚକାଳି ଖେଳିବା ଗୁଲ୍ । ଉଠ ମ ।

(ସମସ୍ତେ କୁଆଁର ପୂନେଇଁ ଗୀତ ଗାଇ-ଗାଇ ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ

ବନୂଚର ନଦୀକୂଳ ।

ଲଳିତା—(ଧାଇ-ଗାଇ ପ୍ରବେଶ)

କାଳିଆ କଳାରୂପ ବାଇ କଲା
ଅପବାଦ-ପସରା, ସହି ଜୀବନସାରା
କିଶୋରୀ ସୁକୁମାରୀ ଦିନ ଗଲା ।୧।
କେ କେତେ କଥା କହେ, ନୀରବେ ସବୁ ସହେ
ଆଚ୍ଛା ପୀରତି-ମିଠା ଚଖାଇଲା ।୨।
ଜାତି-ମହତ ସାରି, ଘର ହେଲା ଉଗାର
ମରଣ ଗୁହାଣିଟି ଶିଖାଇଲା ।୩।

(ପ୍ରସ୍ଥାନ)

(ହାତରେ ମାଠିଆ ଧରି କେତେ ଜଣ ଗ୍ରାମ୍ୟ ରମଣୀଙ୍କର ପ୍ରବେଶ)

୧ମ ରମଣୀ—ବାପ-ମା ସେମିତ କା ନା-ହିଁଅ ଝିଅ ରହିଲେ ଗଳାଏ; ଆଉ କଣ ତାକୁ ଘରେ ରଖିଯୋଗାଏ ?

୨ୟ ରମଣୀ—ଅଜ କଣ କରନ୍ତେ ଯେ ? ପେଟ-ପିଲା ତ, ସହୁଛନ୍ତି । ହେଲେ, ଜମିବୋଉ, ଆମ ପଣ୍ଡାକୁଳ ମୁହଁ ପୋଡ଼ିଯାଉଛି । କେତେ ଲୋକେ କେତେ କଥା କହୁଛନ୍ତି ।

୧ମ ରମଣୀ—ନାଇଁ ମ, ବେଲେଶ୍ୱର ମହାପାତ୍ର କ'ଣ ମନ୍ତ୍ର କରି ଦାଅଁଙ୍କୁ ବାନ୍ଧିରଖିଛି ନଇଲେ ଗାଁରେ କ'ଣ ଲକ୍ଷ୍ମୀଠୁଁ ବଳି ଆଉ ସୁନ୍ଦରୀ ଝିଅ ନାହାନ୍ତି ?

ଲଳିତା—(ପ୍ରବେଶି) ନାନୀ, କାହା କଥା କି ଲୋ ? ଭୋଉ ଲକ୍ଷ୍ମୀ ମ ?

୧ମ ରମଣୀ—କିଏ ମ ଇଏ ?

ଲଳିତା—ମୁଁ ସେ ଗାଁର, ମୋତେ ତମେ ଚହ୍ନିବ ନାଇଁ । କଥା-ଭାଷା ହେଇ ଅଯିଥିଲ ଯେ, ମୁଁ ବୋଇଲି କାହା କଥା ?

୨ୟ ରମଣୀ—ଆମ ଗାଁ ବେଲଖଣ୍ଡା-ଝିଅ ଲକ୍ଷ୍ମୀକଥା । ଯିଆଡ଼େ ଗଲି ତ ଏବେ ଖାଲି ତାଆରି କଥା ଶୁଣିବ । ତମ କାନରେ କ'ଣ କିଛି ପଡ଼ି ନାହିଁ ?

ଲଳିତା—ହଁ, ପଡ଼ି ନାହିଁ ଆଉ କ'ଣ ? ନ ଶୁଣିଥିଲେ ପଚରିଥାଆନ୍ତି କାଇଁ ?

୧ମ ରମଣୀ—ଆମ ପଣ୍ଡାକୁଳ କ'ଣ ଆଉ ଅଛି ? ସରିଲାଣି ଇଜତ୍-ମହତ୍ ସବୁ ।

ଲଳିତା—ଦାଅଁଙ୍କ ନାଁରେ ତ ଇମିତ କଳଙ୍କ, କା ତୁଣ୍ଡରେ କିଏ ବାଡ଼ଦେବା ଦବ ?

୧ମ ରମଣୀ—ଲକ୍ଷ୍ମୀ ବାପା ବେଲେଶ୍ୱର ଦାଅଁଙ୍କୁ କ'ଣ ମନ୍ତ୍ର କରିଛି ମ—ନୋହିଲେ କି ଗାଁରେ ଆଉ କେତେ ଝିଅ ନାହାନ୍ତି ?

ଲଳିତା—ହଁ ଅଛନ୍ତି ଯେ ଲକ୍ଷ୍ମୀପରି ପୁଣି କିଏ ?

୧ମ ରମଣୀ—ରୂପରେ ଗୁଣରେ ଢୋଉଥରେ ଏତେମତେ ସେ ସେଇଲା ? ସେ କଥା ନୁହେଁ—ରଘୁ ବାପା ପରା କହୁଥିଲେ, କାଲି ଏବେ ଦାଅଁଙ୍କର ହୀରାମୁଦ ଲକ୍ଷ୍ମୀ-ହାତରୁ ପାଇଛନ୍ତି । ସେସବୁ ମନ୍ତ୍ର-ଯନ୍ତ୍ରର ଗୁଣ ନୁହେଁ ଆଉ କ'ଣ ? ତା ବାପ ନିଶ୍ଚେ କି ମନ୍ତ୍ର ଜାଣେ ।

ଲଳିତା—ସ୍ୱର୍ଣ୍ଣ-ମୁଦ୍ରା ? ଦଅଁଙ୍କର ? ଲକ୍ଷ୍ମୀ-ହାତରୁ ମିଳିଲା ?

୨ୟ ରମଣୀ—କହୁଥିଲେ ତ ସବୁ ଦାଣ୍ଡରେ । କେତେକେତେ କଥା ଏମିତିନା···କହିବସିଲେ ତ ଖଣ୍ଡେ ପୁରାଣ ହବ ।

ଲଳିତା—କାହିଁକି ଏମିତି ହଉଚି ଭଲା ?

୧ମ ରମଣୀ—କିଏ ଜାଣେ ଲୋ ମା ? ଦଅଁ ପୁଣି ନାଇତି ନଙ୍ଗୁମ ରାତରେ ତାଙ୍କ ଘରକୁ ଯା-ଆସ କରନ୍ତି । କିଏ କାଣୁଛି, କାହା କଥା ? ଲକ୍ଷ୍ମୀ କ'ଣ ମନ୍ତ୍ର କରିଥିବ ।

୨ୟ ରମଣୀ—କେ ଜାଣି ଲୋ ମା, ନର-ମାୟା ନାରାୟଣଙ୍କ ଅଗୋଚର । ବାଟ ଚାଲିବ ଯେ ମାଛ ମରିବ ନାହିଁ । ସାରୁଭିତରେ ଫେର୍ ଏତେ ମାଛ ଅଛି ବୋଲି କିଏ ଜାଣିଛି ?

ଲଳିତା—ଥା ଏମ, ଥାଏ ସେମିତି । ପଦାଲୋକ ତମେ, କ'ଣ ଜାଣିବ ? ମୁଁ ଶୁଣିଲି, ଲକ୍ଷ୍ମୀ ଦଅଁଙ୍କୁ ମନ୍ତ୍ର କରି ନାହିଁ ଯେ, ଦେବତା ପରି ଲକ୍ଷ୍ମୀଙ୍କ ମନ୍ତ୍ର କରିଛନ୍ତି । ଦଅଁ ତ ସଭିଙ୍କର । ଯେ ଯେମିତି କଲା, ସେ ସେମିତି ଫଳ ପାଇଲା । କଣେ-କଣେ ଥାଆନ୍ତି ଯେ ପରଶିରୀ ଦେଖି ସହିପାରନ୍ତି ନାହିଁ । କିଏ କେତେ କଥା କହୁଛି ।

୨ୟ ରମଣୀ—ଆମର କି ମିଳିବ ସେଥିରୁ ? ଚାଲ ଚାଲ, କିଏ କଣେ ମିଣିପି ସ୍ୱାଦକୁ ଅଡ଼ିଚ । ନଇରେ ଗାଧୋଇ ଫେର୍ ଘରକୁ ଗଲାବେଳକୁ ଅନ୍ଧାର ହୋଇଯିବ । (ଦୁହେଁ ପ୍ରସ୍ଥାନ)

ଲଳିତା—(ନେପଥ୍ୟକୁ ଚାହିଁ) ବାଃ, ଠିକ୍ ଲୋକ । ରାମ ମହାପାତ୍ର କାରିଗର, ଅସୁ ଅସୁ ।

ରାମ ମହାପାତ୍ର—(ପ୍ରବେଶ)

ଲଳିତା—କାରିଗରେ, ଟିକିଏ ଶୁଣିଯିବ କି ?

ରାମ—(ପଛକୁ ଫେରି) କାହାକୁ ଡାକୁଛ ? ମେ ତେ ?

ଲଳିତା—ହଁ, ତମକୁ । ତମେ ପରା କୁଅଡ଼େ ଜଣେ ବଡ଼ କାରିଗର ?

ରାମ—ନାଇଁ ମା, ଏମିତି କାମଦାମ ମୂର୍ତ୍ତିଫୁର୍ତ୍ତି ଗଢ଼େ । ବଡ଼ କାରିଗର ଆଉ କ'ଣ ? ତହୁଁ ବଡ଼ା, ତାତହୁଁ ବଡ଼ା ପୃଥ୍ୱୀ । ବଡ଼, ସେ ଦେଉଳରେ ଅଛନ୍ତି ।

ଲଳିତା—ନାଇଁ, ଲୋକେ ତମ ନାଁ କହୁଥିଲେ ବଡ଼ କାରିଗର ବୋଲି ।

ରାମ—ତମ ଘର କୋଉଠି ମା ?

ଲଳିତା—ଆହା, ଘର କୋଉଠୁ ପାଇବ କାରିଗରେ ? ମୋର ଘର ନାଇଁ, ଦ୍ୱାର ନାଇଁ । ଏଇ ଯେଉଁ ଦେଖୁଛ ଆକାଶ, ଶୂନ୍ୟ—ଏଇ ମୋର ଘର ।

(ଗୀତ)

ସେଇ ସୁନ୍ଦର ଘନପାରେ—
ଘରଟି ବାନ୍ଧିଛି ଝଡ଼-ବତାସରେ
ନୀଳ ଯବନିକା-ଧାରେ ।
ମେଘ ଘଡ଼ଘଡ଼ି କାନ୍ଥି ଦିଆ ଘର
ହସ-କାନ୍ଦରେ ମୋ ଘରଟି ଛପର
ଉଁଆସ-ପୂନିଅଁ ଲିପାପୋଛା କରେ
କବି କଳ୍ପନା ହାରେ ।୧।

ରାମ—ତମର ଆଉ କିଏ ଅଛନ୍ତି ମା ?

ଲଳିତା—ମୂଳରୁ ତ ଘର ନାହିଁ, ଅଛି ଫେର୍ କିଏ ? ସଂସାରଟା ମୋର ଘର । ସମସ୍ତେ ମୋର ପୁଅ-ଝିଅ । ରାଇଜଟା ମୋର—

(ଗୀତ)

ସୁଖ-ଦୁଃଖ ବୋଲି ପୁଅ-ଝିଅ ମୋର
ଦିନରାତି ଲଗିଥାଏ ବାହାଘର,
ତପନ-ଶଶୀଟି ଦିହୁଡ଼ି ଜାଳଇ
ଚନ୍ଦ୍ରାଘର ତାରା ହାରେ ।୨।

ରାମ—ମୋତେ କାହିଁକି ଡାକିଲ ?

ଲଳିତା—ଦେଖିବାକୁ । ତୁମେ ପରା କୁଆଡ଼େ ଜଣେ ବଡ଼ କାରିଗର, ଦେଖିବାକୁ ଡାକିଲି ।

ରାମ—ହଉ ତେବେ, ମୁଁ ଯାଉଛି ମା । ମୋର ଡେରି ହେଉଛି ।

ଲଳିତା—ହଁ, ଯିବ ଯେ—କୁଆଡ଼େ ଯାଉଛ ?

ରାମ—ଦର୍ଶନକୁ ଯିବ ।

ଲଳିତା—କେଉଁଠିକି ? ଗୋପୀନାଥଙ୍କ ପାଖକୁ ?

ରାମ—ହଁ, ମା ।

ଲଳିତା—ଅଚ୍ଛା, ଗୋଟିଏ କଥା କହିପାରିବ ?

ରାମ—କ'ଣ ମା ?

ଲଳିତା—ସବୁଠି ତ ରାଧାକୃଷ୍ଣ ଯୁଗଳ । ତମ ଗାଁ ଗୋପୀନାଥଙ୍କ ପାଖେ କାହିଁ ରାଧା ତ ନାହାନ୍ତି ? କେହି ଗଢ଼ିପାରିଲେ ନାହିଁ ନା ?

ରାମ—ଗଢ଼ନ୍ତେ ନାହିଁ କାହିଁକି ? ଦିଅଁ ପରା ଚଳନ୍ତି ପ୍ରତିମା । ନିଜେ ଚାଲିକରି ଆସିଥିଲେ । ଏକୁଟିଆ ତ ଆସିଥିଲେ, ଆଉ ଶ୍ରୀମତୀ ମୂର୍ତ୍ତି କେଉଁଠୁ ଆସନ୍ତେ ? ସେଇଥିପାଇଁ ତ ଗାଁଯାକ କେତେ ଚୁପ୍‌ଚାପ୍ ଭୁଚ୍‌ଭାଚ୍ ଲାଗିଛି ।

ଲଳିତା— କି ମିଳିବ ଆମର ସେଥିରୁ ? ତୁମକୁ ଡାକିଲି କାହିଁକି ଜାଣ ? ମୁଁ ଗୋଟିଏ ମୂର୍ତ୍ତି ଗଢ଼ାନ୍ତି । ମନ ହେଉଛି, ଠାକୁରଙ୍କ ରାଧାସ୍ଥାନ ଖାଲି ରଖନ୍ତେ ନାହିଁ, ତୁମେ ପାରିବ ?

ରାମ—ପାରିବି ଯେ, ତା କି ହେଇପାରିବ ?

ଲଳିତା—ହେଲେ ବାକି ତୁମେ ପାରନ୍ତି, ନା ? ଠିକ୍ ଗୋପୀନାଥଙ୍କର ଲାଖି ମୂର୍ତ୍ତିଟିଏ ନା ? ମନୁଷ୍ୟକୁ ଦେଖି ତାହାରିପରି ମୂର୍ତ୍ତି ତୁମେ ଏକା ଗଢ଼ିବ । ଠିକ୍ ମୋରିପରି ଗୋଟିଏ ମୂର୍ତ୍ତି କରିପାରିବ ?

ରାମ—ପାରିବି ମା, ଠାକୁରେ ଅନୁଗ୍ରହ କଲେ ପାରିବି ।

ଲଳିତା—ତେବେ ଠାକୁରଙ୍କ ପାଖକୁ ରାଧାମୂର୍ତ୍ତି ତୁମେ ଗଢ଼ନ୍ତି । ତମେଇ ତ ଗଢ଼ିବ । ଆଉ ତ ମୋ ଆଖିକି କେହି ଦିଶୁ ନାହିଁ ।

ରାମ—(ମନେ-ମନେ) ମାଇପିଟା କ'ଣ ବାୟାଣୀ, କ'ଣ ଗୁଡ଼ାଏ ଏମିତି କହୁଛି ?

ଲଳିତା—ତମେ ଅଉ କିଛି ଭାବୁଛ କି ? ଅଚ୍ଛା, କହିଲ ତମ ଗାଁରେ ପଣ୍ଡାଘର-ଝିଅ ଲକ୍ଷ୍ମୀକି ଦେଖିଛ ନା ?

ରାମ—ହଁ, ସେ ତ ବରାବର ଆମଘର ଝିଅଭଳି ଥିଲେ । ତାର ସବୁ ଗହଣା ମୋର ହାତରେ ଗଢ଼ା । ତା'ଲାଗି ତ କେତେ କଥା ଗାଁଯାକ ହୁରିପଡ଼ିଛି ।

ଲଳିତା—ପଡ଼ୁ, ଆମର କି ଥାଏ । ତାରିପରି, ତାକୁ ଦେଖି ଠିକ୍ ଗୋଟାଏ ମୂର୍ତ୍ତି, ପାରିବ ? ମୁଁ ଗଢ଼େଇବି । ମୋ କଥା ଶୁଣି ତୁମେ ମୋତେ ଭାରି ଗରିବ ମଣିଲ, ନା ? ନାହିଁ-ନାହିଁ, ରାଇଜ-ଯାକର ଧନ ମୋର । ସୁନାର ମୂର୍ତ୍ତି କରେଇବି, ପାରିବ ? ଠିକ୍ ଲକ୍ଷ୍ମୀପରି । ଠାକୁରଙ୍କର ଲାଖି ହେବ ଏକା, ପାରିବ ? (ପ୍ରସ୍ଥାନ)

ରାମ—(ଆଶ୍ଚର୍ଯ୍ୟ ହୋଇ) କଅଣ କହିଗଲା ସେ ? ବାୟାଣୀଟାଏ ହେବ । ଯାଃ, ମୁଁ ମୋ କାମରେ ଯାଏଁ, ବେଳ ଗଲା । (ପ୍ରସ୍ଥାନ)

---

## ଷଷ୍ଠ ଦୃଶ୍ୟ

[ଚନ୍ଦ୍ରପକ୍ଷ ରାତି—ବେଲେଶ୍ୱରଙ୍କ ଘର ।
ଦ୍ୱାରଦେଶରେ ଶ୍ରୀଗୋପୀନାଥ ଦଣ୍ଡାୟମାନ ]

ଶ୍ରୀଗେପୀନାଥ— (ଗୀତ

ମଳୟ-ହାସେ କୁସୁମ-ବାସେ
ଯାମିନୀ ଜାଗିଛି ତୋହରି ଆଶେ,
ଉଠ ସହି, ଉଠ, କହ ଗୋ କଥା
ଭିକାରୀ ଆସିଛି ତୋହରି ପାଶେ ।୦।
ନିତି ନ ଥିବ ଏ ଚାନ୍ଦନୀ ରାତିଟି
ନିତି ନ ମେଳିବ ଦଉଳ ଘାଟିଟି,
ସକାଳ ଆସିଲେ ଝାଉଁଳ ପଡ଼ିବ
ଫୁଲ୍‌ଫୁଲ୍ ସଖୀ ମନ ନିରାଶେ ।୧।
ଲକ୍ଷ୍ମୀ, ଲକ୍ଷ୍ମୀ !
ଉଠ ସଖି, ଦିଅ ଦରଶନ
ଅନୁଗତେ ନ ହୁଅ ମାନିନୀ,
ବସନ୍ତର ମେଘମୁକ୍ତ ପ୍ରଶାନ୍ତ ଆକାଶୁଁ—
ତୈରି ମଳୟର
ଗୁଚ୍ଛ ଚୁମ୍ବନ ପରଶି
ମଧୁର ମଧୁତର
ସ୍ନିଗ୍ଧ ଶଶଧର—
ଢାଳେ ସୁଧାକରରାଜି ।

ଏଇ ଶୁଣ,
ଗାଇଲା ଟିଟ୍ଟିଭ ।
ଗାଏ ବାରହର ଗୀତ—
ସ୍ୱର-ସ୍ୱାତ୍ୟେ ଏ ସ୍ୱାଗିଣୀ ଅତୀବ ଦୁର୍ଲ୍ଲଭ ।
ଟାଣି ପ୍ରାଣତନ୍ତ୍ରୀ,
ଝଙ୍କାରେ ମଧୁରେ
ସ୍ଥାବ ସିନା ସାରସ୍ୱତବୀଣା ।
ଧମନୀ-ଧମନୀ ଭେଦ
ପରମାଣୁ ଦଅଇ କମ୍ପାଇ ।
ଉଠ ଧନ, ଭେଳ ନିଦ୍ରା,
ପଦେ କଥା କହ;
ନିରେଖି ସେ ଚନ୍ଦ୍ରମୁଖ
ହସିଉଠୁ ହୃଦୟ-କୁମୁଦ । (କଣ୍ଠଭ୍ ମୀରବ)
ନାହିଁ,
ନ ଭାଙ୍ଗିଲା ନିଦ୍ରା ।
ଅସମ୍ଭବ ଦେଖେଁ ଆଜ ।
ଅବା ଅଭିମାନେ
ନ କହୁଛ କଥା ?

(ଗୀତ)

ବାଫଲେ ଯାଏ ଗୋ ବସନ୍ତ-ଯାମିନୀ
ଶଶୀ-ହସଭରା ମନ୍ଦ ସମୀରଣ,
ଦୟିତାର ଦୁଆରେ, କରୁଣା-କଣାଟି
ମାଗେ ପରା ଏ ଭିକାରୀ ଗୋ ସଖି ।
ଉପହାର, ଅଖି-ନୀର,
ଘେନାକର, ଦିଅ ଦରଶନ ॥୧॥

ନା, ନୁହେଁ ନିଦ୍ରା,
ସମ୍ଭବତ ନୁହେଁ—
କ୍ଷୀଣ କଣ୍ଠସ୍ୱରେ ମୋର
ପଡ଼ଇ ଯେ ଚେତ ଘୋରନିଦ୍ରୁଁ—
କିବା ଅପରାଧେ ହେତେ
ଅଭିମାନ ଆଜି—?
ଲକ୍ଷ୍ମୀ ! ଲକ୍ଷ୍ମୀ !
ଏଡ଼କ ନିଷ୍ଠୁରା ତୁମେ ?

ଜାଣୁ ନା କି—
ଏଇ ତୁମ ଅଭିମାନ
ବଜ୍ରସବ ବାଧେ ମୋତେ ?
ଉଠ ସଖି,
ଦେଖି ମୁଖ ଭୁଲେଁ ସବୁ ଦୁଃଖ ।
ଲକ୍ଷ୍ମୀ—(ଗୃହାଭ୍ୟନ୍ତରୁ) ନଟବର ।
ଅଛୁ କି ଲକ୍ଷ୍ମୀର ମୁଖ ?
ରଖିଛ କି ମୁଖ ମୋର ?
କିସ ବା ରଖିଛ ବାକି ?
ଶଠ,
ଫେର ଗୃହେ,
ନାହିଁ ଏଥି କେହି
ତବ ଯୋଗ୍ୟ ପ୍ରଣୟିନୀ ।
ଲକ୍ଷ୍ମୀ କଳଙ୍କିନୀ,
ଲକ୍ଷ୍ମୀ ଅଭାଗିନୀ ।
ଲାଜ, ଅପମାନ,
କୁଳ, ଶୀଳ, ମହତ୍ତ୍ୱ, ଅଗୁର
କିଛି ତ ଲକ୍ଷ୍ମୀର ନାହିଁ ।
ଯେଦିନୁ ସେ
ସରଳ ପରାଣେ
ଦେଇଛି ଭସାଇ
ତା'ର ଜୀବନର ଧନ,
ନଟ ! ତବ ପଦେ—
ମରିଛି ସେଦିନୁ ଲକ୍ଷ୍ମୀ ।
ଲକ୍ଷ୍ମୀ ବୋଲି କେହି ନାହିଁ
ଟେକିବାକୁ ମୁଖ ।
ଯାଅ ଶଠ,
ଫେର, ଫେର ଗୃହେ ।
ବୁଡ଼ାଇ କଳଙ୍କେ ଅବଳାର ମାନ
ଉଡ଼ାଅ ଯା, ପତିତପାବନ-ବାନା ।
ଲୋଡ଼ା ନାହିଁ ସଙ୍ଗ ତବ
ଫେର, ଫେର ଗୃହେ ।
ଏ ଦୁଆର ଚିର ଅବରୁଦ୍ଧ
ତବ ଲାଗି ।
ଯାଅ ଧୂଉଁ ।

ଶ୍ରୀଗୋପୀନାଥ—(ସଖେଦେ) ଲକ୍ଷ୍ମୀ, ଲୋ ସରଳା ।
ଏ କି କଥା ମୁଖେ ତବ ଆଜ ?
ଭାଙ୍ଗି ପଡ଼େ ହୃଦ ମୋର ।
ଲବଣୀରୁ କୋମଳ ଯେ ହୃଦ,
କାହୁଁ ସମ୍ଭବିଲା ସଖି ।
ବଜ୍ର-କଠୋରତା ?

ଲକ୍ଷ୍ମୀ—ସମ୍ଭବିଛି, ସମ୍ଭବିଛି,
ତବ ଶଠବ୍ୟବହାରେ ଧୂର୍ତ୍ତ ।
ଥାଉ ସେ ଛଳନା,
ଗୃହଚ୍ଛିଦ୍ରେ ଆଜ
ନ ଭୁଲାଅ ମୋତେ ।
ସହିଛି—ସହିଲି—ସହୁଛି ବହୁତ ।
ଆଉ ନୁହେଁ···
କହିଲି ତ—
ଏ ଦୁଆର ଚିର ଅବରୁଦ୍ଧ ତବ ଲାଗି ।
ନାହିଁ ଏଠି କେହି
ଲକ୍ଷ୍ମୀ ବୋଲି ତବ,
ଯାଅ ଫେରି ।

ଶ୍ରୀଗୋପୀନାଥ—ଅକାରଣ ନୁହେଁ କି ଏ ମାନ ?

ଲକ୍ଷ୍ମୀ—ଅକାରଣ ?
ଶଠ !
ଆହୁରି କହୁଛ ?
ବାରବାର ପକାଉଛ ଶଙ୍କା—
କି ନ କଲ, ସ୍ୱୀକାରିଲ କଥା !
ସତ୍ୟ ପରି କରିଥିଲ ?—
ଆଉ ମୋତେ ବୁଡ଼ାଇ ଲଜ୍ଜାରେ
ସତାଇବ ନାହିଁ ?
ଲୋଡ଼ା ନାହିଁ
କପଟ ପୀରତି ।
ଯାଅ ଶଠ, ଫେରି ଗୃହେ ।
ହୁଛୁ ମୋ ଜୁହାର
ସେ ଛଳ ଭାଷା ପାଖେ ।
ଯାଅ ଶଠ, ନ କର ବିଳମ୍ବ ।

ଶ୍ରୀଗୋପୀନାଥ—ଲକ୍ଷ୍ମୀ !
ଚରଣରେ କିବା ଅପରାଧୀ ମୁହିଁ,
ସାତ ଶତ୍ରୁପରି କହ କଥା ?
ବଞ୍ଚିତ କରୁଛ ମୋତେ
ଦରଶନ-ସୁଖୁଁ ?
ଲକ୍ଷ୍ମୀ,
ଏକାନ୍ତ ଆଶ୍ରୟ ପରି ମୋର ?
ପାତି ମୁଁ ଅଞ୍ଜଳି,
ଚରଣତଳରେ ମାଗୁଛି ପ୍ରଣୟ ତବ,
ଠେଲି ଦେବ ?
ଦେବ ନାହିଁ କ୍ଷମା ?

ଲକ୍ଷ୍ମୀ—ଶତ ବାର ମାଗେ କ୍ଷମା,
ଫେରିଯାଅ ଶଠ,
ନ ଭୁଲିବ ଆଉ ଲକ୍ଷ୍ମୀ ।

ଶ୍ରୀଗୋପୀନାଥ—ଲକ୍ଷ୍ମୀ !
ଏଇ କି ଗୋ ଶେଷକଥା ତବ ?

ଲକ୍ଷ୍ମୀ—ଶେଷକଥା । ଧୂର୍ତ୍ତ,
ପ୍ରତ୍ୟୁତ୍ତର ନ ଦେବି ମୁଁ ଆଉ ।
ଯାଅ, ଫେରି ଯାଅ ।

ଶ୍ରୀଗୋପୀନାଥ—ହଉ ନ ଦିଅ ଉତ୍ତର ।
ଫେରିଲି ମୁଁ ସତ୍ୟ;
କିନ୍ତୁ ସଖୀ
ପ୍ରାଣହୀନ ପିଣ୍ଡମାନ ଯେନି ।
ଛାୟା ବିନା ମୁହିଁ
ତେଜିବି ପାରିବି କାୟା ?

(ଗୀତ)

ମୁଁ ଜୀବନ ବଦଳେ ରଚିଲି ଏ ଘର
କଳପୋଡ଼ି ମଲି ଶେଷେ
ଆଶା କରି ସ୍ୱର୍ଗ-ଗଙ୍ଗାର ଧାରେ ମୁଁ
ପରାଣ ତେଜିଲି ଶୋଷେ ।
ମୁଁ ପୀରତି-ଲତାଟି କୁସୁମିତ
ଦେଖି, କରି ବଢ଼ାଇଲି ଗେଲେ,

ପଥେ-ପଥେ କଣ୍ଟା, ପଦେ ଗଲା ଫୁଟି
ଚୋଲି ମୁଁ ବସିଲାବେଳେ ।
ନବଜଳଧର ନିରେଖି ଗଗନେ
ବାରପାନେ କଲି ଆଶା,
(ସତେ) ଜାଣିଥିଲି କି ମୁଁ ଅଶନି
ପଡ଼ିବ, ବୁଡ଼ିବ ମୋର ଭରସା ?
(ଗାଇ-ଗାଇ ପ୍ରସ୍ଥାନ କଲେ)
ଲକ୍ଷ୍ମୀ—(କିଛି କ୍ଷଣପରେ ପ୍ରବେଶି ଶ୍ରୀଗୋପୀନାଥଙ୍କ
ଯିବାପଥକୁ ଚାହିଁ ବାହ୍ୟଲତାଭାବରେ)
ସତେ କି ସେ ଗଲେ ଚାଲି ? ଅବା ଲୁଚିଛନ୍ତି କାହିଁ ?
(ଆଖିପୋଛି) ମୋର ରୋଧେ ଦୃଷ୍ଟି ।
ନ ଦିଶଇ କିଛି ହିଛି ।
ଡାକେ ଦେଖି,
ଥିଲେ ପାଖେ, ଦେବେ'ବା ଉତ୍ତର ।
ସାଥି, ସାଥି । ( ପ୍ରତ୍ୟୁତ୍ତର ଅପେକ୍ଷା)
ନାହିଁ ତ ଉତ୍ତର,
ସାଥି, ସାଥି । ହେଇ ଆସିଛି ମୁଁ, ଦେଖ
ତବ ଆଗେ ।
(ଗୀତ)
ତବ ଆଶା-ପଥ ଚାହିଁ ଆସିଛି ସଖା ।
ପବନ-ପରଶେ ବାସେ ତନୁରେ ପୁଲକ ଆସେ
ଜୋଛନା ଢାଳଇ ତବ ସୁହାସ-ଲେଖା ।୧।
ନାହିଁ ମୋର କୁଳମାନ ଭୁଲିଛି ଗୋ ଅଭିମାନ
କାହିଁ ଯିବି ନ ଦିଶେ ଚରଣ-ରେଖା ।୨।
(ବାତ୍ୟାଣୀପରି ଏକ ଦିଗକୁ ଗତ କଲେ)
ଶ୍ରୀଗୋପୀନାଥ—(ବିପରୀତ ଦିଗରୁ) ଲକ୍ଷ୍ମୀ ।
ଲୋ ସରଳା ।
ଫେରି ଚାହିଁ ଧନୀ କାହିଁରେ,
ଡାକିବି ଆସିଛି ତବ ଦୟାର ଦୁଆରେ ।
(ହଠାତ୍ ଲକ୍ଷ୍ମୀଙ୍କ ସଜଳ ନୟନ ଫେରିପଡ଼ିଲା,
ଉଭୟେ ତନ୍ମୟଭାବେ ପରସ୍ପରକୁ ଚାହିଁ-
ରହିଲେ । ) ପଟପତନ

—

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ସ୍ଥାନ—ମନ୍ଦିର-ସମ୍ମୁଖ । ମନ୍ଦିରର ମୋହନରେ ପଶୁପାଳକ, ଭିତରେ ଶ୍ରୀଗୋପୀନାଥ ଅଭି ଲକ୍ଷ୍ମୀ)
ଲକ୍ଷ୍ମୀ—ନା ନା, ମୁଁ ପିନ୍ଧାଇଦେବି,
ସେ ଦିନ ଯେ କହୁଥିଲ
ବୃନ୍ଦାବନରେ ସେଇ ମଧୁର ନୃତ୍ୟ—
ବଡ଼ ଲୋଭ ପ୍ରଭୁ, ବଡ଼ ଲୋଭ ।
(ବାହାରେ ପଡ଼ିଆରି ଓ ସ୍ଥାନସାହେବ ପ୍ରବେଶ କଲେ । ପଶୁପାଳକ ଧୀରେ-ଧୀରେ ସେମାନଙ୍କ ନିକଟକୁ ଯାଇ କହିଲେ—)
ପଡ଼ିଆରି—ଚୁପ୍ ଚୁପ୍ ଶୁଣ, ଗୋପୀନାଥ ଅଛି । ଚୁପ୍ କରି କାନଆଣ୍ଟୁ ଘୁମ ।
ଶ୍ରୀଗୋପୀନାଥ—ଲକ୍ଷ୍ମୀ । ଗାଅ ଗାଅ, ଶୁଣେ ସେଇ ଗୀତଟି ତମର ।
ଲକ୍ଷ୍ମୀ—ନାଚ ତେବେ ଦେବତା ।
କହ ସଖା ଚିରଦିନ ଏହିରୂପେ,—
ଠିକ୍ ଏହିରୂପେ ନ ରହ କାହିଁକି ?
ସତ୍ୟ କର, ଆଜି ମୋତେ ଦେବ ନାହିଁ କଷ୍ଟ ।
ପଡ଼ିଆରି—ଏଇ ଶୁଣନ୍ତୁ ମଣିମା ।
କହୁଥିଲେ ନା, ଲକ୍ଷ୍ମୀ ପିଚ୍ଛଟା ?
ସ୍ଥାନ—କିଏ କଥା କହେ, ଲକ୍ଷ୍ମୀ ନା ?
ପଶୁପାଳକ—ତେବେ କେ ସନ୍ଦେହ ମଣିମା ?
ସ୍ଥାନ—କାହା ସଙ୍ଗେ ?
ପଶୁ—ସେଇ ଗୋପୀନାଥ ।
ଶ୍ରୀଗୋପୀନାଥ—ମୁଁ ତ ଯାଏ ନା ଲକ୍ଷ୍ମୀ ।
ଇଚ୍ଛା ମଧ୍ୟ ନୁହେଁ ମୋର
ହେବାକୁ ଅନ୍ତର ।
ସଂସାର ନିଅଇ କାଢ଼ି ମନ ତବ ସଙ୍ଗ ।
ଗାଅ ଧନି,
ଗାଅ ଆଜି ସେଇ ଗୀତ ।
ଶୁଣେଁ, ଗାଅ ..

ଲକ୍ଷ୍ମୀ—ଗୀତ ?
   କି ଗୀତ ଗାଇବି ସାଥି ?
   ବଡ଼ ସାଧ ମନେ—
   ଦେଖିବି ମୁଁ ସେଇ ତବ
   ବୃନ୍ଦାବନ-ନୃତ୍ୟ ।
   କୃତାର୍ଥ କର ହେ ମୋତେ
   ଅନୁଗ୍ରହଦାନେ ।

ଶ୍ରୀଗୋପୀନାଥ—ଗାଅ ତେବେ ଧନ—
   କିଣା ମୁହିଁ
   ଅନୁରୋଧ ପାରିବି କି ଏଡ଼ି ?

ପଣ୍ଡାପାଳକ—ଏଇ ଶୁଣନ୍ତୁ ମଣିମା ।
   ପ୍ରେମ ଳାପ ଶୁଭୁଛି ତ ?

ରାଏ—ହଁ,

ପଢ଼ିଆରି—ଆଜ୍ଞା ହୁଁ-ହୁଁ କ'ଣ ମଣିମା ? ଦ୍ୱାର ଫିଟାଇ ଥରେ ଭିତରକୁ ନିଜେ ଯାଇ ଦେଖିଲେ ଆମ କଥା ସତମିଛ ଜାଣିବେ । ଆମ କାନରେ ତ ଏଥର ନୁହେଁ, ଆପଣ ନିଜେ ଚକ୍ଷୁରେ ଦେଖିଲେ ତ ଗଲା ।

ଲକ୍ଷ୍ମୀ— (ଗୀତ)

ନାଚ ଶ୍ରୀନନ୍ଦ-ଦୁଲାଳ (ହରି)

ପଣ୍ଡାପାଳକ—ଏଇ ଶୁଣନ୍ତୁ ମଣିମା, ଲକ୍ଷ୍ମୀ ଗୀତ ଗାଉଛନ୍ତି, ଆଜ୍ଞା ଏଡ଼େ ବେହିଆ ସେ ଗୋପୀନାଥ— ନାଚୁଛି ସେଇଠା ।

ଲକ୍ଷ୍ମୀ—ଶ୍ୟାମଳ ଜଳଧର ଗଞ୍ଜି ସୁମନୋହର
   ନବୀନ କିଶୋର କହ୍ନାଇ ଗୋପାଳ—
   ନାଚ ତ ଗୋପୀନାଥ ମୋହନ-ମୁରଲୀହାତ
   ଗୃହ୍ଣ ଶିଖି-ମୁକୁଟ ଶିରପର ଶୋଭିତ
   ନୂପୁର-ସିଞ୍ଜିତ ଚରଣେ ଅଳକତ
   ଝୁମୁ ଝୁମୁ ଝୁମୁ ଝୁମୁ ମଧୁର ତାଳ ॥

ରାଏସାହେବ—ଅଚ୍ଛା, ତୁମେମାନେ ଟିକିଏ ହଟିଯାଅ, ଶୁଣେଁ ମୁଁ ।

ବୁହେଁ—ଶୁଣିବେ କଅଣ ମଣିମା ? ଯାଇ ଏଇକ୍ଷଣି ଭିତରେ ଦେଖନ୍ତୁ ନା, ଏଇ ଆମେମାନେ ବାହାରକୁ ଗଲୁ । (ପ୍ରସ୍ଥାନ)

ଲକ୍ଷ୍ମୀ—(ପୁନଃ ଗୀତାନ୍ତେ)
   ଏ କି ହେଲ ?
   ନୀରବ ହୋଇଲ କିପାଁ ?
   ଅହା ଅହା ।
   ବାଧିଲା କି ସତ୍ତୁଳ ଚରଣେ ?
   କରେ ସେବା ସଖା ।

ରାଏ—ପ୍ରଭୁ ।
   ସତ୍ୟ-ମିଥ୍ୟା ଦିଅ ହେ ଦେଖାଇ,
   ଭ୍ରାନ୍ତ ମନ, କିଛୁ ଯେ ନ ପାରେ ବୁଝି,
   ପ୍ରବେଶିବି ମନ୍ଦିରମଧ୍ୟରେ ?
   (କବାଟ ଫିଟାଇବାକୁ ଉଦ୍ୟମ)

ଲକ୍ଷ୍ମୀ—ଏ କଅଣ ? ଏ କଅଣ ?
   କୁଆଡ଼େ ଗଲ ଗୋପୀନାଥ ? ଗୋପୀନାଥ, ଗୋପୀନାଥ ?
   (ରାଜା ମନ୍ଦିରମଧ୍ୟରେ ପ୍ରବେଶ କରି କେବଳ ଲକ୍ଷ୍ମୀକୁ ଦେଖି ଅସ୍ତବ୍ଧ ହୋଇ ରହିରହିଲେ ।

———

## ଦ୍ୱିତୀୟ ଦୃଶ୍ୟ

( ସକାଳ—ପଥ )

(ଗୀତ)

ଲଳିତା—
   ତାହାରି ଫଲବନେ, ତାହାରି ସଙ୍ଗେ,
      ତାହାରି ମଳୟଟି ବାସେ
   ତାହାରି ଇଚ୍ଛାରେ ତାହାରି ଭ୍ରମରଟି
      କୁଞ୍ଜଭିତରେ ମଧୁ ହାସେ । ୦ ।
   ଝୁମୁ ଝୁମୁ ଝୁମୁ ନୂପୁର ବାଜେ
      ତାହାରି ଚରଣ ରାଜେ ଗୋ
   ତାହାରି ଗୃହାଣି ମରମ ହାଣେ
      ଅଭିସାରିକା ମରେ ଲାଜେ ।

କୁହୁ କୁହୁ ଗାଏ କୋଇଲି ମାନେ
ଏ ଉତ୍‌ଫୁଲ୍ଲ ମଧୁମାସେ
ଚୂତ-ମୁକୁଳ ସଖୀ ପାଶେ । ୧ ।

ହେଲା ଆସି କାଳ,
ଜାଣିବାକୁ ଜଗତ ସଂସାର
ଲକ୍ଷ୍ମୀ କିଏ ?
କି ଅଉ ବିଳମ୍ବ ଅଛି ?
ଅନ୍ଧ ମାନବ ନୟନ
ଦେଖଇ କି ଭବିଷ୍ୟର ଛବି ?
ସେତିକି ତ ସୃଷ୍ଟିର ମହତ୍ତ୍ୱ ।
ଘୋଷିବ କୀରତି ଯୁଗେ-ଯୁଗେ
ଲକ୍ଷ୍ମୀଲାଗି ପାଗଳ ଗୋପାଳ ।
ଏଡ଼େ ସ୍ନେହ, ଏଡ଼େ ଭକ୍ତି, ଏଡ଼େ ହରକତ ।
ସମ୍ଭବ କି ଲୋକେ ?
କେ ବୁଝିବ କି ଆନନ୍ଦ ଦିନ ଆଜି ?
କାହିଁ ଗଲେ ମାୟାକନ୍ୟାଗଣ ?
ଆସ, ଗାଅ, ନୃତ୍ୟ କର,
ମତାଅ ସଂସାର,
ଫୁଟିବ କନକପଦ୍ମ ସ୍ଫଟିକ ଜଳରେ ।

ମାୟାକନ୍ୟାଗଣ— (ନୃତ୍ୟ-ଗୀତ)

ଫୁଟିବ ସୁନାର କମଳକଳିଟି ସୋହାଗ ଜଳେ
ଝଙ୍କୁରିଲେ ମଧୁପଦଳେ—ହା-ହା-ହା । ୦ ।
ଛୁଟିଛି ସାରା ତାର ପୀରତି ଭରା
ଗୁହିଁ-ଗୁହିଁ ଗୁନ୍ଦରାତି ପ୍ରେମ-ଉତ୍ତଳା
ଖୋଲିଦେବ ପୀରତି-ପେଡ଼ିଟି-ଛଇଳ ବଳେ-ବଳେ ।
(ନୃତ୍ୟପରେ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

( ଭୋର—ମନ୍ଦିରସମ୍ମୁଖ )

(ଗୀତ)

ଶ୍ରୀଗୋପୀନାଥ—

ସୁନ୍ଦର ସେ ସୁନ୍ଦର ତା'ର ସୁନ୍ଦର ସବୁ—ସୁନ୍ଦର
ତା'ର ଅଙ୍ଗ-ସଙ୍ଗ ଲଭେ ସୁନ୍ଦର—ଭବ ସୁନ୍ଦର ।୦।

ମଳୟ-ପରଶେ କୁସୁମ-ତନୁଟି
ମଧୁଲାଗି ଝୁରେ ମଧୁପ-ମନଟି
ଶଶୀ, ତାରା ଫୁଟେ ତାକୁ ଦେଖିବାକୁ
ସୁନ୍ଦର—ସବୁ ସୁନ୍ଦର । ୧ ।

ପଲକେ ସେ ଛବି ଆଖିରୁ ଲୁଚିଲେ
ନୟନର ତାରା ସେହି ରୂପ ଝୁରେ
କଳପନା ଯେବେ ରୂପଟି ଲେଖଇ
ସୁନ୍ଦର—ସବୁ ସୁନ୍ଦର । ୨ ।

(ଏକ ଦିଗରୁ ପୂଜକ ଆସୁଆସୁ ଶ୍ରୀଗୋପୀନାଥଙ୍କ ଉପରେ ନଜର ପଡ଼ିବାରୁ ଆଶ୍ଚର୍ଯ୍ୟ ହୋଇ ଠିଆ ହୋଇଥିଲେ— ତାଙ୍କ ଉପରେ ଶ୍ରୀଗୋପୀନାଥଙ୍କ ନଜର ପଡ଼ିବାରୁ ଶୀଘ୍ର ମନ୍ଦିରରେ ପ୍ରବେଶ କଲେ)

ପୂଜକ—(ଆଶ୍ଚର୍ଯ୍ୟେ)

କି ଦେଖିଲି ?
ଦିବ୍ୟ ତେଜେ
ଝଲସିଉଠିଲା ଆଖି ।
ଦୂର୍ବାଦଳ-ଶ୍ୟାମତନୁ,
ପଦ୍ମବିଙ୍କ ଚପଳ ଚରଣ,
ଗଳେ ବନମାଳ,
ଚୂଡ଼ାଧଡ଼ା ଶୋହେ କି ସୁନ୍ଦର !
କିନ୍ତୁ, ଏ ତ ନୁହେଁ ଦେବଙ୍କ ବହନ,
ଏ କି ବିପରୀତ ?
ରୁଦ୍ଧଦ୍ୱାର—ଫିଟିଲା କବାଟ ?
କେ ଫେଇଲା ?
ଦେଖେଁ...
(କବାଟ ନିକଟକୁ ଯାଇ ବନ୍ଦ ଥିବା ଦେଖି )
ପୂର୍ବପରି ରୁଦ୍ଧ !
ଭ୍ରମ କି ମୋହର ?
ଆସୁଆସୁ ଭାବିଭାବି
ଏହି ରୂପ ମୁହିଁ,
ଭ୍ରାନ୍ତ ମୋ ନୟନ ଅବା
ଜଳହେତୁ ତୃଷାର୍ତ୍ତର ମରୀଚିକାଦେଖା,

କିମ୍ବା ନୁହେ ଏହା ମନ୍ତ୍ରଶକ୍ତି ?
ଏହା କି ହେବ କାର୍ତ୍ତିକେନ୍ଦୁ ନିର୍ମଳ ଉଦକ,—
ମଣିଥିଲି ଯାହା ମନ୍ତ୍ରଶକ୍ତି ।

( ବେଲେଶ୍ୱର ପ୍ରବେଶ )

ବେଲେଶ୍ୱର—କିଓ ପୂଜାପଣ୍ଡାଏ । ମହାକାର୍ତ୍ତିକ ମାସ, ଭଉଁକ ଦ୍ୱାର ଫିଟିବ ନାହିଁ କି ? ଏଠି କ'ଣ ଗୁମ୍‌ମାର ଛୁଡ଼ାହୋଇଛ, କ'ଣ ହେଲା ହେ ?

ପୂଜାପଣ୍ଡା—ମହାପାଣେ । ଦେଖିଥିଲେ ଜାଣିଥାନ୍ତେ । ବଡ଼ ପାହାନ୍ତରୁ ଉଠି ସ୍ନାନଚନ୍ଦାର ସାରି, ଠାକୁରଙ୍କ ପହଡ଼ ଭାଙ୍ଗିବାକୁ ଅସିବାକୁ ବାହାରୁଛି । ଠିକ୍ ସେତିକିବେଳକୁ ଅଡ଼ିଅସି ଡାକିଲା—ଯିଏ ସାହେବଙ୍କ ଘରୁ ଡାକରା । ଗଲି, ଶୁଣିଲି ଅଦ୍ଭୁତ କଥା ।

ବେଲେଶ୍ୱର—କ'ଣ ଶୁଣିଲି ହେ ?

ପୂଜାପଣ୍ଡା—ପ୍ରଭୁ ପର ରାତ୍ରି ଗଲା ରାତିରେ ସ୍ୱପ୍ନରେ ଦେଖାଦେଇ କହୁଛନ୍ତି, ମୋତେ ଅଜ୍ ସ୍ୱାଧୀନ କର ରଖ ନାହିଁ, ଲକ୍ଷ୍ମୀପରି ଠିକ୍ ସୁନାପ୍ରତିମାଟିଏ ମୋ ପାଖରେ ରଖାଅ ।

ବେଲେଶ୍ୱର—କ'ଣ ଅମ ଲକ୍ଷ୍ମୀପରି ?

ପୂଜାପଣ୍ଡା—ହଁ, ସେହିପରି । ମୋତେ ହୁକୁମ ହେଲା, ବେଗେ ପହୁଡ଼ଭାଙ୍ଗି ଗ୍ରାମ ମହାପାତ୍ର କାରିଗରଙ୍କୁ ଡକାଇ ସୁନାର ପ୍ରତିମୂର୍ତ୍ତି ଗଢ଼ିପାରିବେ କି ନାହିଁ ବୁଝି ଖବର ଦେବାକୁ ।

ବେଲେଶ୍ୱର—ଓଃ, ଏତେ ଦିନେ ଅବା ସରିବ ଜଞ୍ଜାଳ ମୋର । ନିଅ, ରଖ ଦେବତାଙ୍କଲାଗି ।

(ଲୁଗା ଦେଲେ)

ଥିଲା ଏହା ଘରେ ମୋର
ସେହି ଲକ୍ଷ୍ମୀପାଖେ । କେ ଜାଣିବା
ହେଲେ ମୂର୍ତ୍ତି ଗଢ଼ା,
ପାଇବି ମୁଁ ରକ୍ଷା ।
ହେ ଗୋପାଳ ।
କର ଯାହା ଇଚ୍ଛା
ଜଳପୋଡ଼େ ମଲିଣି ମୁଁ
ସହି ଏ ଜଞ୍ଜାଳ ।

ପୂଜକ—ମାହାପାଣେ ।
ଜଞ୍ଜାଳ କାହାକୁ କହ ?
ଦେବତାଙ୍କ ଅନୁଗ୍ରହ
ଜଞ୍ଜାଳ ତୁମ୍ଭର ?
କାହା ଭାଗ୍ୟେ ଫଳେ କହ ?
ଶୁଣ ବେଲେଶ୍ୱର ।
ନାହିଁ କେହି ଭାଗ୍ୟଧର
ଏ ମହୀମଣ୍ଡଳେ
ତୁମ୍ଭସର ।
କନ୍ୟା ତବ
ନାମେ ମାତ୍ର ନୁହେଁ ଲକ୍ଷ୍ମୀ,
ଲକ୍ଷ୍ମୀ ସେହି ।
ସାର୍ଥକ କରିଛି କନ୍ୟା
ପିତା-ମାତା-କୋଡ଼ ।
ମହାପାଣେ ।
କି କହିବ ? କି କହିବ ?
କରିଥିଲି ମନେ
ତୁମ୍ଭଠାରୁ ରଖିବି ଗୋପନେ,
ଘଟିଛି ଯା ଭାଗ୍ୟେ ମୋର ଅଜ ।
ସନ୍ଦେହ ମୋ କରିଲ ଭଞ୍ଜନ ଭାଗ୍ୟଧର ।
ଆସି ମଣିମାଙ୍କ ପାଶେ
ଯେବେ ପ୍ରବେଶିଲି ଏଥି—
ଦେଖ, ଅଦ୍ୟାପି ସେ ଦ୍ୱାର ରୁଦ୍ଧ ।
ବିଶ୍ୱାସ କି ଯିବ କେହି ?
କି କହିବି ମହାପାଣେ ।
ଅନୁଭବୀ ତୁମ୍ଭେ,
ବୁଝିବା ପାରିବ—
ସହସା ଫିଟିଲା ଦ୍ୱାର ।
ନବ ନୀରଦବରଣ
ଶ୍ୟାମ ତନୁବର
ପ୍ରବେଶିଲେ ମନ୍ଦିରମଧ୍ୟରେ ।
କି ଚଞ୍ଚଳ—
ହାରିବ ତ ଚପଳା-ଚମକ ।

ଦେଖିଲି ମୁଁ,
ଯେଉଁ ବାସ ଧରିଥିଲ ତୁମ୍ଭେ
ଲଗି କରିଥିଲି ଭାଲି,
ନାହିଁ ଅଙ୍ଗେ ସେହି ବାସ,
ନୀଳ, ନୀଳବାସ ପରିଧାନ,
ନାହିଁ ପୀତାମ୍ବର ।
ଏବେ ଜାଣିଲି ମୁଁ ତଥ୍ୟ,
ବୁଝିଲି ମୁଁ ସବୁ ।
ମହାପାତ୍ରେ,
ପାଇ ଯାହା ହରାଇଲ ଅମୂଲ୍ୟ ରତନ ।
ଆସ, ଆସ,
ଦେଖିବ ମନ୍ଦିରେ ।
ହେବଯାଅ ଭାଗ୍ୟବାନ୍
କନ୍ୟାଲାଗି ଖଣ୍ଡେ ।
ଦେଖିବ ସକଳ ଆସ,
ମେଣ୍ଟିଯିବ ଚକ୍ଷୁ-କର୍ଣ୍ଣ-ବିବାଦ ତୁମ୍ଭର ।

——— (ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

—ପଥ—

( ଗ୍ରାମବାସୀମାନେ କୀର୍ତ୍ତନ ଗାଇ-ଗାଇ ଗଲେ )

ଜୟ ଯଦୁନନ୍ଦନ ଗୋପୀଜନ ଜୀବନ
ନଟବର-ବେଶ ବିହାରୀ,
କମଳ ଚରଣପର ଘୁଙ୍ଗୁର ବାଜେ
ଝୁଣୁଝୁଣୁ କାନନଚାରୀ
ବୋଲ ହରି ବୋଲ ହରି ବୋଲ ହରି ବୋଲ ।୦।
ଦୈତ୍ୟ-ତାପୁଁ ଭବ ଉଦ୍ଧାରିଲ ହେଳେ
କେଶୀ-କଂସ ହରି ମାରି
ଦଳିତାଞ୍ଜନ ଘନବରନ ଶ୍ୟାମତନୁ
ରାଧା କୁଞ୍ଜବିହାରୀ ।୧।
ଅମଳ-କମଳମୁଖରଞ୍ଜିତ ଶ୍ରୀମୁଖ
ରାସ ରଙ୍ଗ ରସକାରୀ
ଗୋପ-ଗୋପାଳିକ ମୟୂର-ଶିଖଣ୍ଡିକ
ଭକ୍ତ-ପ୍ରାଣ ଦଇତାରି ।୧।

---

## ପଞ୍ଚମ ଦୃଶ୍ୟ

—ମନ୍ଦିର—

(ନୀଳବାସପରିହିତ ଶ୍ରୀଗୋପୀନାଥ ମୂର୍ତ୍ତି । ପୂଜା-
ପଣ୍ଡା ଓ ବେଲେଶ୍ୱର)

ପୂଜକ—ମହାପାତ୍ରେ ।
ଭାଗ୍ୟଧର,
ଚିହ୍ନୁଛ ତ କାହା ଶାଢ଼ୀ ଅଙ୍ଗେ ?
ସତ୍ୟ-ମିଥ୍ୟା କର ହେ ପ୍ରତ୍ୟକ୍ଷ ।
ଏହାକୁ ନା କହୁଥିଲ
ଜଞ୍ଜାଳ ତୁମର ?

ବେଲେଶ୍ୱର—ପୂଜାପଣ୍ଡା ।
ମହାଭାଗ୍ୟବାନ୍ ତୁମ୍ଭେ
ଲଭି ସାକ୍ଷାତ ଦର୍ଶନ ।
ସଫଳ ଜନମ, ସାର୍ଥକ ଜୀବନ ।
ଦିଅ ହେ ଚରଣରେଣୁ
ଅଧମ ଜନରେ
ହୁଏ ମୁଁ କୃତାର୍ଥ
ଘେନି ଶିରେ । (ପଦତଳେ ପତନ)

ପୂଜକ—(ଘୁଞ୍ଚି, ଉଠାଇ) ଅହା, ଅହା,
ଏ କି କର ଅହେ ଭାଗ୍ୟଧର ।
ଗୋପୀନାଥ ଅତିଥି ଯାହାର,
କନ୍ୟା ଯା'ର ସାକ୍ଷାତ୍ କମଳା
ନେବ ପଦଧୂଳି ମୋର ?
ମହାପାପେ ନ ବୁଡ଼ାଅ ମୋତେ ମହାପାତ୍ରେ,
ଘେନ ହେ ପ୍ରଶଂସା,
କହ ମୁଖେ—
ଜୟ ଗୋପୀନାଥ,ଶ୍ରୀଗୋପୀନାଥ,ଜୟ ଗୋପୀନାଥ ।

ମହାପାତ୍ରେ—ଜୟ ଗୋପୀନାଥ, ଶ୍ରୀଗୋପୀନାଥ, ଜୟ
ଗୋପୀନାଥ । (ଅଦୂରେ କୀର୍ତ୍ତନ)

ପୂଜକ—ହେଇ ଶୁଣ,
ପ୍ରଭାତ ଗାଇବାପାଇଁ ଆସିଲେଣି ଲୋକେ
ମହାକାର୍ତ୍ତିକରେ,
ଗଡ଼ିଯାଏ ମଙ୍ଗଳ ଆରତିବେଳ ।

ବେଲେଶ୍ବର—ପାଲଟାଅ ବାସ
ନତୁବା ପ୍ରଘଟ ହେବ
ସକଳ ଜନରେ ।

ପୂଜକ—ନାହିଁ ବେଳ ।
ଲାଗି କରେ ଉପରେ ମୁଁ
ପୀତାମ୍ବର ଖଣ୍ଡି—
ତୁମେ ସଜାଡ଼ ଅରତି ବାଠି ।

(ଆରତି ହେଉଥିଲା—କୀର୍ତ୍ତନଦଳ ଗାଇ-ଗାଇ ପ୍ରବେଶ କଲେ)

ଧର କମଳା କୁଚମଣ୍ଡଳ, ଧାର କୁଣ୍ଡଳ
ଗଳପର ଚଳ ବନମାଳ—ଜୟ ଜୟ ଦେବ ହରେ ।
ରବି-ଛବିମଣ୍ଡନ ସୁନ୍ଦର, ଭବ-ଦଣ୍ଡର—
ଖଣ୍ଡନ, ମୁନି-ମନହଂସ—ଜୟ ଜୟ ଦେବ ହରେ ।
କାଳୀୟ ଅହି-ବିଷମର୍ଦ୍ଦନ, ସୁଖ-ବର୍ଦ୍ଧନ
ଯଦୁକୁଳ-କମଳବିକାଶୀ—ଜୟ ଜୟ ଦେବ ହରେ ।
ମଧୁ ମୁର ନରକବିନାଶନ, ଗରୁଡ଼ାସନ
ସୁରକୁଳ କେଳି-ବିଧାତା—ଜୟ ଜୟ ଦେବ ହରେ ।
ଫୁଲ୍ଲପଦ୍ମସର ଲୋଚନ, ଭୟମୋଚନ
ଭୁବନ ଭବନ ମଣିରତ୍ନ—ଜୟ ଜୟ ଦେବ ହରେ ।
ନବଜଲଧର ବପୁ ସୁନ୍ଦର, ଧର ମନ୍ଦର
ଶିରିମୁଖ ଚନ୍ଦ୍ର ଚକୋର—ଜୟ ଜୟ ଦେବ ହରେ ।
ଘେନ ପ୍ରଣତି ଚରଣେ ତବ, ଜଗବାନ୍ଧବ
ପ୍ରଣତ ଜନର ସୁଖଦାତା—ଜୟ ଜୟ ଦେବ ହରେ ।
ମୋଦ ଦାନ କରୁ ଶତେ; ଶୁଭ ଗୀତେ
ଶ୍ରୀଜୟଦେବ ଭଣେ—ଜୟ ଜୟ ଦେବ ହରେ ।

(ସମସ୍ତେ ପ୍ରଣାମ କଲେ ଓ ପୂଜକ ପାଦୁକ ଦେଲେ)

**ପଟପତନ**

—o—

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

(ଠାକୁରଙ୍କ ମୋହନ, ଅର୍ଦ୍ଧନିର୍ମିତ ରାଧିକାମୂର୍ତ୍ତି ଦୂରରୁ ରାମ ମହାପାତ୍ର କାରିଗର ମୂର୍ତ୍ତିକୁ ନିରୀକ୍ଷଣ କରୁଥିଲେ—ଥରେ ଥରେ ଆସି ବିଗ୍ରହର କୌଣସି କୌଣସି ଅଂଶ ରସାଣୁଥିଲେ)

ରାମ—କେତେ ବଡ଼ ଭାର ଏ ଗରିବ ଉପରେ ପକାଇଲ ଗୋପୀନାଥେ । ମଙ୍ଗୁ ନ ଥିଲ, ସ୍ବପ୍ନରେ କହିଲ, ତୁ ମୂର୍ତ୍ତି ଗଢ଼ିପାରିବୁ । ଅଜ୍ଞାମାଳ ମୁଣ୍ଡରେ ବାନ୍ଧି କାମକୁ ଗୃଲ । ସତକୁ ସତ ଯାହା ଗଢ଼ୁଛି, ମନ-ବଚନ-କର୍ତ୍ତବ୍ୟରେ ମୋର ଯାହା ନାହିଁ, ମୂର୍ତ୍ତିଟି ସେମିତ ହେଉଛି । କିଏ ଗଢ଼େ ? ମୋ ହାତର ଗଢ଼ା ବୋଲି ତ ମୋର ପରତେ ହେଉ ନାହିଁ । କେତେ ମୂର୍ତ୍ତି ଗଢ଼ିଛି । ବାକି ଏତେ ସୁଗଳ ହୋଇ ଉତୁରିଯିବାଟା ତ କେଉଁଠି ଦେଖି ନାହିଁ । ପୁଅରି ମାଇଲ ତ ଠିକ୍ ହୋଇଗଲା ।

(ପଛରୁ ରାୟ ସାହେବ ଓ କେତେଜଣ ପଣ୍ଡା ପ୍ରବେଶ)

ରାୟ—କି ମହାପାତ୍ରେ । କେତେଦୂର ଗଲା ?

(ରାମ ଫେରିଗୃହିଁ ପ୍ରଣାମ କଲେ)

ରାୟ—(ମୂର୍ତ୍ତିକୁ ଗୃହିଁ) ବାଃ, ବଡ଼ ସୁନ୍ଦର ମୂର୍ତ୍ତି ତ ଗଢ଼ା-ହେଉଛି । ଶିଳ୍ପଗୌରବ ନେଇ ଓଡ଼ିଶା ବଡ଼ । ତା'ର ନିଦର୍ଶନ କୋଣାର୍କ, ତା'ର ନିଦର୍ଶନ ପୁରୀ, ଭୁବନେଶ୍ବର । ତୁମେମାନଙ୍କପରି କାରିଗର-ମାନଙ୍କୁ ଘେନି ଓଡ଼ିଆ ଜାତି ଚିରକାଳ ଅଜର ଅମର; ଧନ୍ୟ ଧନ୍ୟ ମହାପାତ୍ରେ, ଧନ୍ୟ ତୁମ୍ଭର କାରିଗରି !

ରାମ—ମୋର ତ ଏଥିରେ କିଛୁ ହାତ ନାହିଁ ମଣିମା । ପ୍ରଭୁଙ୍କ ଅଜ୍ଞା ପାଳି କାମ କରିଯାଉଛି । ଅନେକ ମୂର୍ତ୍ତି ଗଢ଼ିଛି ଅଜ୍ଞା, ହେଲେ ଦିଅଙ୍କ ଇଚ୍ଛାରୁ ଏ ମୂର୍ତ୍ତିଟି ବଡ଼ ସଣ୍ଣାରେ ଉତୁରିଯିବାପରି ଲାଗୁଛି ।

ରାୟ—ନା ନା, ମହାପାତ୍ରେ । ଏଭଳି ସୁନ୍ଦର ମୂର୍ତ୍ତି ଦେଖି ନାହିଁ କେଉଁଠି । ଗଢ଼ା ଅଧା ହୋଇଛି ।

ବାଳ୍ପ ଏଣିକିବେଳ୍ତ ସବୁ ଅଙ୍ଗର ଶୋଭା ଫୁଟି ଉଠୁଛି । ଦେହ-ହାତ କେଡ଼େ ସୁନ୍ଦର । ଯେମିତ ସାକ୍ଷାତ୍ ଚଳନ୍ତ ଜୀବ, ନା କଣ ପୂଜାପଣ୍ଡାଏ ?

ପୂଜାପଣ୍ଡା—ମଣିମାଙ୍କ ନିଷ୍ଠାବଳରୁ; ଯେମିତ ଭକ୍ତ ସ୍ୱାମୁ, ଠାକୁର ସେମିତ ଗଢ଼ିଛନ୍ତି । ଗୋପୀନାଥଙ୍କ ଜଣ ମୂର୍ତ୍ତି ବାଳ୍ପ । ଓଡ଼ିଶା ରାଜା କେତେ ମୂର୍ତ୍ତି ଗଢ଼େଇ ନାହାନ୍ତି କି, ହେଲେ ଏଭଳି ମୂର୍ତ୍ତି ନାହିଁ ନ ଥିଲା । ସ୍ୱାମୁ ସାନ ଭାଇ ହୋଇ ତାଙ୍କୁ ବଳିଚଲେ ଏକା ।

ରାଏ—ନା ନା ପୂଜାପଣ୍ଡାଏ ! ବାହାହୁରି ଏଥିରେ ମୋର ତ ଦୁଳେ ନାହିଁ, ଫୁଟିଛି ରାମ ମହାପାତ୍ରଙ୍କ ହାତର କାରଗରି । ଏଇ ଧନ ଘେନି ସିନା ପୃଥିବୀ ଓଡ଼ିଆ ଜାତିକୁ ଚିହ୍ନୁଛି—ଜାଣୁଛି; ଅଜ ଜାଣୁଥିବ ମଧ୍ୟ । କୋଣାର୍କର ଅର୍କମନ୍ଦିର ଯେମିତ ବିଶ୍ୱ ମହାରଣୀର—ଧର୍ମୀର ସେହି ଅକ୍ଷୟ୍ୟ, ଅମର କୀର୍ତ୍ତି ଚିରକାଳ ଘୋଷୁ ଛି, ଘୋଷୁଥିବ; ସେହିପରି ମହାପାତ୍ରେ ଏ ଜୀବନ୍ତ ପ୍ରତିମାରେ ତୁମ୍ଭ ନାମ ଜୀବିତ ରହିଲା । କେତେ ଦିନ ଅଉ ଶେଷ ହେବାକୁ ଲାଗିବ ?

ରାମ—ସବୁ ଶେଷ ହେଲା ବୋଲନ୍ତୁ । ବାକି ମୁଖାରବିନ୍ଦଟି ଦିନ ଚାରି ଲାଗିବାପରି ମନେ କରୁଛି ।

ରାଏ—ବେଶ୍, ତା'ପରେ ତୁମ୍ଭଙ୍କୁ ପୁରୀ ଯିବାକୁ ହେବ । ମୁଁ ତୁମ୍ଭସହିତ ଲୋକ ଦେଇ ଓଡ଼ିଶା ମହାରାଜାଙ୍କ ନିକଟକୁ ପଠାଇଦେବି । ଜ୍ୟେଷ୍ଠ ସେ; ଏ ପରିଶ୍ରମର ଉପଯୁକ୍ତ ପୁରସ୍କାର ସେ ଦେବେ । ମୁଁ ତାଙ୍କର ଅନୁଗତ ମାତ୍ର । ଆସ ପୂଜାପଣ୍ଡାଏ ।

ରାମ—ରାଜେ ହେଉନ୍ତୁ ମଣିମା, ମୁଁ ବାଟେଇ ଦେଇ-ଅସେ । (ସମସ୍ତେ ପ୍ରସ୍ଥାନ)

———

## ଦ୍ୱିତୀୟ ଦୃଶ୍ୟ
(ପଥ)

(ରୋଗଶଯ୍ୟାରେ ଲକ୍ଷ୍ମୀଶୋଇ ସ୍ୱପ୍ନ ଦେଖୁଥିଲେ । ସ୍ୱପ୍ନର ଛବି ସୁସ୍ପଷ୍ଟ—ଯମୁନାତଟରେ ଶ୍ୟାମ—ଅଦୂରରେ ଲଳିତା ସ୍ୱପ୍ନର ବର୍ଣ୍ଣନା କରୁଥିଲେ)

(ଗୀତ)

ଲଳିତା—ସାଜେ ଶ୍ୟାମ ମୋହନ ଛବି
ନିନ୍ଦଇ ଶୋଭା କୋଟିଏ ରବି ।ଘ।
ସୁନୀଳ ଯମୁନା ଧୀରେ ବହିଯାଏ
ମୁରଲୀ-ତାନରେ ଲହରି ନଚାଏ
ରାଧା, ରାଧା, ରାଧା, ସାତ ସ୍ୱରେ ଗାଏ
ରୂପ କି ଲେଖିବ ସରଗ କବି ?
ନରଦେହେ ଦେବୀ,
ତେଣୁ ମଣେ ସ୍ୱପ୍ନସରି
ଜୀବନର ଚିତ୍ର ।
ହେଲା ଅସି ମହାଯାତ୍ରା-କାଳ;
ସେଇ ଯମୁନାର ତୀରେ
ଶୁଣୁ-ଶୁଣୁ ମୋହନ ମୁରଲୀ
ହରିଇଛି ଚେତା
ନାହିଁ ବାହ୍ୟ ଜ୍ଞାନ ।
ଆରମ୍ଭ ହୋଇବା ଦିନୁ
ମୂର୍ତ୍ତିର ଗଠନ,
ଯେତେ କମେ ହୁଅଇ ନିକଟ,
ସେ ସମ୍ବନ୍ଧ—ସେ ବନ୍ଧନ
ଲୋକଚକ୍ଷୁ ଦେଖେ,
ତେତେ ବଢ଼େ ରୋଗ ।
ନୁହେଁ ରୋଗ—
ଏ ଯେ ଅନୁରାଗ ।
(ନେପଥ୍ୟକୁ ଚାହିଁ)
ଅସୁଛନ୍ତି ଲକ୍ଷ୍ମୀର ଜନନୀ,
କାନ୍ଦିବ ସେ ବିଷାଦିନୀ
ମାୟାମୋହ ଘୋରେ ।
ହୋଇଲା ନିକଟ ସେହିଦିନ—
ଜାଣ କି ଗୋ ଭାଗ୍ୟବତୀ ।
କାହାକୁ ଧରିଛ କୋଳେ
କନ୍ୟାରୂପେ ତବ ?
ନିକଟ ହେଲଣି,
ଉଠ ଲକ୍ଷ୍ମୀ, ଉଠ ସତୀ ।

ସ୍ୱପ୍ନ ଭେଳ ଆସ ଗୋ ସଂସାରେ;
ଅସନ୍ତ ଜନମ୍ମା ।
ଅଲ୍ପ ଦାଲପାଇଁ ଅତ ଲଗାଇଥା’ନ୍ତା ।

(ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

(ଲକ୍ଷ୍ମୀର ଶୟନକକ୍ଷ)

(ସହସା ସ୍ୱପ୍ନଭଙ୍ଗ—ଦୃଶ୍ୟ ପରିବର୍ତ୍ତନ—ଲକ୍ଷ୍ମୀ-ବୋଉ ଓ ଜଣେ ଗ୍ରାମ୍ୟ ସ୍ତ୍ରୀ ପ୍ରବେଶ)

ଲକ୍ଷ୍ମୀ ବୋଉ—ନାଇଁଲେ ଭଉଣୀ, ରୋଗାରଇରନ ନାଇଁ । ଠାକୁରାଣୀ ଗଢ଼ାହେଲା ଦିନ ଯେମିତି ବାଜା ବାଜୁଛି, ଧନ ମୋର ଚମକିଲାପରି ଅଠିଲା । ସେଇଠୁ ତ ଅଛୁତି । ଦେହରେ ହାତ ମାରି ଦେଲ—ଦେଲକୁ ତାତ ଖଇଫୁଟୁଛି । ଗଳ—ପଡ଼ୁଛି ଯେ ପଡ଼ୁଛି ।

ଅନ୍ୟ ସ୍ତ୍ରୀ—ପଥି କ’ଣ ଦେଉଛ ନାନୀ ।

ଲକ୍ଷ୍ମୀ ଜନନୀ—ପଥି ? ପଥି ପାଖ ପଶୁଚି ସେ ? ଅନ ମୁହଁ ଦେଖିବାକୁ ନାଇଁ ।

ଅନ୍ୟ ସ୍ତ୍ରୀ—ଔଷଧ ?

ଲକ୍ଷ୍ମୀ ବୋଉ—ଔଷଧ ? ସେଇ କାହ୍ନ ବଇଦ ଦେଉଚନ୍ତି ତ । ସବୁବେଳେ ତ ଖାଲି ଶୋଷ ହେଲା, ଶୋଷହେଲା ।

ଅନ୍ୟ ସ୍ତ୍ରୀ—ଟିକିଏ ନିଦ ହେଉଚି ପରା ?

ଲକ୍ଷ୍ମୀ ବୋଉ—ହଇ, କି ନିଦ ଟେ ? ଗୃଙ୍ଗୃ ଗୃଙ୍ଗୃ ଚମକି ଉଠୁଛି । ଉଠିଲେ କହୁଚି ଶୋଷ ।

ଅନ୍ୟ ସ୍ତ୍ରୀ—ଲକ୍ଷ୍ମୀ ନନା କାହାନ୍ତି ?

ଲକ୍ଷ୍ମୀ ବୋଉ—ତାଙ୍କୁ ହେଲେ ଘର ଅଛି ? ଆଜ ପରା ଠାକୁରାଣୀଙ୍କ ଚକ୍ଷୁଦାନ, ଘଡ଼ିଏ ଘରେ ରହିପାରୁଚନ୍ତି ?

ଲକ୍ଷ୍ମୀ—(ନିଦରୁ ଉଠି ବ୍ୟସ୍ତ ହୋଇ) ଓଃ, ବୋଉ, ଛାତି ଶୁଖିଯାଉଛି । ଟୋପେ ପାଣି ଦେ’ ଭଲା ।

ଲକ୍ଷ୍ମୀ—ହେଇଟି ଶୁଣ୍ , ଖାଲି ତ ଶୋଷ ଶୋଷ ହେଲା—ତାହାଙ୍କୁ ବଇଦ କହୁଛି, ଜମା ପାଣି ନ ଦେବାକୁ, କରିବ୍ କ’ଣ କହ ?

ଅନ୍ୟ ସ୍ତ୍ରୀ—(ଲକ୍ଷ୍ମୀପାଖକୁ ଯାଇ) ଏ ମା’ ଲକ୍ଷ୍ମୀ, ଟିକିଏ ଦାନ୍ତଚିପି ରହିଯା—ଭାରି ଜରଟା ପରା ହେଉଛି; ପାଣି ପିଇଲେ ବେଶୀ ହବ ଯେ । (ଦେହ ଦେଖି) ଓଃ, ତାତ ଖାଲି ଖଇଫୁଟୁଛି ।

ଲକ୍ଷ୍ମୀ—ମାଉସି, ମାଉସି ଛାତି ମୁଣ୍ଡ ଶୁଖିଯାଉଛି, ଭାରି ଶୋଷ । ମତେ ମୁନ୍ଦେ ପାଣି ଦିଅ । ଭାରି କଷ୍ଟ । ଓଃ, ତାହାଙ୍କ ମୋ’ଠି ଆଉ ଲୋଭ କରୁଛ ? ଦିଅ, ମୋତେ ପାଣି ଦିଅ ।

ଲକ୍ଷ୍ମୀ ବୋଉ—ଛି, ଅଲକ୍ଷଣା କଥାଗୁଡ଼ା ମୁହଁରେ ଆଣନ୍ତି ? ତୁ ଟିକିଏ ଅଜ ରହ, ମୁଁ ପାଚନ ସିଝେଇଆଣି ଦଉଛି । ଶୋଷ ମରିଯିବ—ତୁ ପାଟିତୁଣ୍ଡ ନ କରି ଟିକିଏ ତୁନି ହୋଇ ଶୋଇପଡ଼ । ଆଲୋ ଭଉଣୀ । ହଟହଟା କପାଳ ତ ମୋର । କ’ଣ କରିବ ?

(ଉଭୟେ ପ୍ରସ୍ଥାନ)

ଲକ୍ଷ୍ମୀ—(ଅଦୂରେ ଦେବମୂର୍ତ୍ତି ଦେଖି) ଅସ, ଅସ ତୁମେ, ମରିଯିବ ଶୋଷ ମୋର । ଏମାନେ କି ଜାଣିବେ ଔଷଧ ? କାହିଁକି ଏ ଶୋଷ ? ପାଚନ ହରିବ ଶୋଷ ?

(ଲକ୍ଷ୍ମୀବୋଉ ଫେରିଆସିଲେ)

ଲକ୍ଷ୍ମୀ ବୋଉ—ମା’ ମ, କାହାସଙ୍ଗେ କଥା କହୁଛୁ ? କେହି ତ ନାହିଁ । ତୁନି ହୋଇ ଘୋଡ଼ଘାଡ଼ ଶୋଇପଡ଼ । ପାଟିକଲେ ବେଶୀ ଶୋଷ ହେବ । ମୁଁ ଯାଏଁ, ପାଚନ ସିଝେଇ ଆଣୁଛି ।

(ପ୍ରସ୍ଥାନ)

(ପ୍ରବେଶକଲେ ଗୋପୀନାଥ)

ଗୋପୀନାଥ—(ମୃଣ୍ଡ ଅଉଁଷି) ଲକ୍ଷ୍ମୀ !
ତୃଷା ଲଗେ ସଖୀ ?

ଲକ୍ଷ୍ମୀ—(କର ଗୁପିଧରି)
ମେଣ୍ଟିଛି ପିପାସା ଏବେ
ପରଶେ ତୁମ୍ଭର ।
ଆହେ ନବଜଳଧର,
ରଖ କର ଶିରରେ ମୋହର ।

( ଗୋପୀନାଥଙ୍କ ହାତଧରି ନିଜମଥାରେ ରଖିଲେ )

ଅହା ! କି ଶୀତଳ
ପରଶ ପାଇଲି !
କେଡ଼େ ସ୍ୱଚ୍ଛ ଲଗେ ମୋତେ !

ଗୋପୀନାଥ —ଲକ୍ଷ୍ମୀ,
କୃତାର୍ଥ ମୁଁ ହେଲି ଆଜ ।
ସୌଭାଗ୍ୟ ମୋହର
କି ସୁଯୋଗେ ପାଇଛୁ ରଜନୀ !
ତବ ସେବା ଚିରଦିନ
ଏହାପରି ଲକ୍ଷ୍ମୀ,
ଇଚ୍ଛା ହୁଏ କରନ୍ତି ମୁଁ କାଳ ।
ସୁସ୍ଥ ଲଗେ ଦେହ ?

ଲକ୍ଷ୍ମୀ—କାହାର ଏ ଦେହ ?
କାହାଲାଗି ଭଲ-ମନ୍ଦ ମୋର ?
ପାଶେ ମୋର ଥାଉ-ଥାଉଁ
ସର୍ବଦୁଃଖହାରୀ,
କି ଦୁଃଖ ମୋହର ?
ପାଶେ ବସ—ଲଭେ ମୁଁ ପରମସୁଖ ।
ଦିଅ କର ସାଥି !

ଗୋପୀନାଥ—(ହସିଲେ) ଲକ୍ଷ୍ମୀ !
ଏ ମିଳନ—ଏ ଯୁଗଳ
ଚିରଦିନ ସିନା !
ଦେଇଅଛୁ ବହୁ କଷ୍ଟ,
ବହୁ ବାଧା ।
ବହୁ ଅପମାନ
ସହିଛ ଗୋ ମୋହରହେତୁ ସଖି !
ଆଉ ନାହିଁ—
ସହିବାକୁ ନ ହୋଇବ ଆଜ ।
ହେଲା ଆସି କାଳ—
କେହି ଆଉ ଦେବେ ନାହିଁ ବାଧା ।
ତେଜି ଏ ନଶ୍ୱର ଦେହ
ଆସ ଲକ୍ଷ୍ମୀ, ବେଗେ ପାଶେ ମୋର
ସହି ନ ପାରଇ ସହି । ଏ ବିଚ୍ଛେଦ—ଦଣ୍ଡ ।
ନାହିଁ ଗୋ ବିଳମ୍ବ ।
(ନେପଥ୍ୟେ ବାଦ୍ୟ)
ଶୁଣ, ଶୁଣ, ଶୁଭେ ଶୁଣ ମଙ୍ଗଳବାଜଣା ।
ଦେଖା ତୁମ୍ଭେ,
ପାଅ ପୂଜା ମନ୍ଦିରେ ଏଣିକି ।
ଆସେ ମୁହିଁ—
ଦିବ୍ୟ ରଥେ ଆସ ସଖି ପଛେ-ପଛେ ମୋର ।
ଆସିଲେଣି ପାଶେ ତବ, ଦେଖ
ପଡ଼ୋଶୀ ସାଥିଏ ।
ଆସେ ସଖି । (ପ୍ରସ୍ଥାନ)

ଲକ୍ଷ୍ମୀ— ନ ସହେ ବିଳମ୍ବ ବନ୍ଧୁ !
ଅନ୍ତର ନ କର ଦଣ୍ଡେ ଦାସୀକୁ ପାଶରୁ ।
(ଦୂରରେ ଗୋଳମାଳ —କୀର୍ତ୍ତନ ଓ ମଙ୍ଗଳ-ବାଜଣା ବାଜିଉଠିଲା । କେତେତ ଗ୍ରାମ୍ୟ ସ୍ତ୍ରୀ ପ୍ରବେଶ)

୧ମା ସ୍ତ୍ରୀ—ଏ କ'ଣ ଘରଟାଯାକ କି ବାସନାରେ ପୂରିଯାଇଛି ମ ?

୨ୟା ସ୍ତ୍ରୀ—ସତେ ତ, କି ବାସନା ଯେ ? ଏମିତିଆ ଫୁଲ କ'ଣ ମ ? ଭାରି ମହକ ତ !

୩ୟା ସ୍ତ୍ରୀ— ଲକ୍ଷ୍ମୀ କାହିଁ ? କ'ଣ ଶୋଇଛୁ ? ନିଦରେ ? ଆହା ! ଦିନ କେଇଟାରେ କେଡ଼େ ହାରିଗଲାଣି ସତେ ! ମୁହାଁଣିଅକେ ରହିଗଲାଣି ଦିହ ତା'ର ।

୨ୟା ସ୍ତ୍ରୀ—(ଦେହ ଆଉଁସି) କେଡ଼େ ଶୀତଳ ଲାଗୁଛି । ଜର ନାହିଁ । ଛାତି ଯାଉଛି ପରି ଠିକଏ—ଶୁଣୁ ନାହିଁ ତ କିଛି ।

୧ମା ସ୍ତ୍ରୀ—(ଦେହ ଦେଖି) ନାଇଁ ମ । ଦିହ ତ କାଠର ହୋଇଯାଇଛି । ଉଁ, ପାଣି ବୋହିଲାପରି ଲାଗୁଛି । ମାଉସୀ କାହିଁ ? ଡାକ ଅନେମ—ବଇଦ ଡାକନ୍ତୁ—ଫିଅର ତ ଚେତା ନାହିଁ କି କ'ଣ । ମୁଁ ଡାକେଁ ମାଉସି କି । ମାଉସି ! ମାଉସି !
(ଗୃହକୁଗଲେ)

ଲକ୍ଷ୍ମୀ—(ଚେତା ପାଇ) ଓଃ, କିଏ ? (ହାତ ଧରି) ନାନୀ, ଆ ନାନୀ, ମନେ କରୁଥିବୁ । ଗଲି ମୁଁ, ଓଃ, ଗୋ-ପୀ-ନାଥ (ନୀରବ)

୩ୟା ସ୍ତ୍ରୀ—ଅଲୋ, ଏ କ'ଣ ହେଲା ? ଦେଖିଲୁଣି ନାନୀ ! ଗୁରୁଅଡ଼ ଗୋଟାଏ କ'ଣ ଆଲୁଅ ଦିଶିଗଲା—ଏ କ'ଣ ହେଲା ?

(ସବେଗେ ଲକ୍ଷ୍ମୀ ବୋଉ ଏବଂ ୧ମା ସ୍ତ୍ରୀ ପ୍ରବେଶ)

ଲକ୍ଷ୍ମୀ ବୋଉ—(ଲକ୍ଷ୍ମୀକୁ ହଲାଇ) ଏ ମା, ଲକ୍ଷ୍ମୀ, ଉଠ୍ ଉଠ୍ ପାଟକ ନେ । ଶୋଇ ପଡ଼ୁଥିଲୁ ପରା ?

(କନ୍ୟାର ଦେହ ଦେଖି ଉଚ୍ଚ କ୍ରନ୍ଦନ ଓ ସମସ୍ତେ କାନ୍ଦିଉଠିଲେ । ସହସା ଆଲୋକାପ୍ଳୁତ-ବେଶା ଲଳିତା ପ୍ରବେଶ କଲେ)

---

## ଯବନିକା ପତନ

